# ମୋ ଦୃଷ୍ଟିରେ ସାଂପ୍ରତିକ ସାହିତ୍ୟ

[ ସାହିତ୍ୟର ବିଭିନ୍ନ ବିଭାଗ ଓ କବିତାର ବିଶେଷ ଆଲୋଚନା ]


ସ୍ୱତନ୍ତ୍ର ମୁଖବନ୍ଧ :

ପ୍ରଫେସର ବିଧୁଭୂଷଣ ଦାସ

(ଉଚ୍ଚ ଶିକ୍ଷା-ନିର୍ଦ୍ଦେଶକ, ଓଡ଼ିଶା)

ସଂପାଦକ :

ଅଧ୍ୟାପକ ପରୀକ୍ଷିତ ନନ୍ଦ, ଏମ୍. ଏ.



ଜଗନ୍ନାଥ ରଥ

ବିନୋଦ ବିହାରୀ, କଟକ-୨

# ମୋ ଦୃଷ୍ଟିରେ ସାଂପ୍ରତିକ ସାହିତ୍ୟ

ପ୍ରକାଶକ : ଜ୍ଞାନମନ୍ଦିର
କଟକ

ସଂପାଦକ : ଅଧ୍ୟାପକ ପରୀକ୍ଷିତ ନନ୍ଦ, ଏମ୍. ଏ.
ସାମନ୍ତ ଚନ୍ଦ୍ରଶେଖର ସାନ୍ଧ୍ୟ କଲେଜ, ପୁରୀ

ପ୍ରଥମ ପ୍ରକାଶ : ୧୯୭୩

ମୂଲ୍ୟ : ଟ ୧୫-୦୦
ବନ୍ଧେଇ ଅତିରିକ୍ତ : ଟ ୨-୫୦

ମୁଦ୍ରାକର : ଆଲୋକ ପ୍ରଭା ପ୍ରିଣ୍ଟର୍ସ
ଖଟବିନ୍ ସାହି, କଟକ-୮

# MO DRUSTIRE SAMPRATIKA SAHITYA

( An Anthology of Contemporary Oriya literature )

Publisher Gyana Mandira
Cuttack

Editor : Parikshita Nanda, M. A.
Lecturer, S. C. Evening College, Puri

**First Published : 1973**

**Price : Rupees Fifteen only**
**Extra Binding : Rs 2 · 50**

**Printer : Alok Prabha Printers**
Khatbin Shahi, Cuttack-8

# ସୂଚୀ

# ସାଂପ୍ରତିକ ସାହିତ୍ୟର ମୁଖବନ୍ଧ

**ମୋ ଦୃଷ୍ଟିରେ ସାମ୍ପ୍ରତିକ ସାହିତ୍ୟ** କେତେଗୁଡ଼ିଏ ପ୍ରବନ୍ଧର ସଂକଳନ । ଏହାର ଲେଖକମାନେ ବିଭିନ୍ନ ଶ୍ରେଣୀର, ଯଥା : ସୃଜନଶୀଳ ଲେଖକ, ସମାଲୋଚକ; ଏମାନଙ୍କ ମଧ୍ୟରୁ ଅନେକେ ଅଧ୍ୟାପକ ମଧ୍ୟ । ସେହି ଦୃଷ୍ଟିରୁ ଲେଖାଗୁଡ଼ିକରେ ଆଭିମୁଖ୍ୟ, ଶୈଳୀ ଓ ଉପସ୍ଥାପନାରେ ଅନେକ ପାର୍ଥକ୍ୟ ରହିଛି ଓ ତାହା ହେବା ସ୍ୱାଭାବିକ ; କିନ୍ତୁ ଏପରି ଏକ ସଂକଳନର ଲେଖାରେ ସ୍ତରର ସମତା ରହିବା ବାଞ୍ଛନୀୟ; ସେହି ସମତା ସବୁ ସ୍ଥାନରେ ରକ୍ଷା କରାଯାଇ ନାହିଁ । ତାହାର କାରଣ ପ୍ରଧାନତଃ ଦୁଇଟି : ପ୍ରଥମତଃ ଲେଖକମାନଙ୍କର ଶ୍ରେଣୀର ଭିନ୍ନତା ଯୋଗୁଁ ସେମାନଙ୍କର ଦୃଷ୍ଟିକୋଣ ସମାନ ନୁହେଁ । ଔପନ୍ୟାସିକ ବା କବି ଅର୍ଥାତ୍ ସୃଜନଶୀଳ ସାହିତ୍ୟିକ ସବୁ କ୍ଷେତ୍ରରେ ଦକ୍ଷ ସମାଲୋଚକ ମଧ୍ୟ ନୁହନ୍ତି । ଦ୍ୱିତୀୟତଃ, ଓଡ଼ିଆ ସାହିତ୍ୟରେ ସମାଲୋଚନା ମଧ୍ୟ ଏ ପର୍ଯ୍ୟନ୍ତ ତାତ୍ତ୍ୱିକ ଦୃଷ୍ଟିକୋଣରୁ ଉପଯୁକ୍ତ ଭାବରେ ଯଥେଷ୍ଟ ଲେଖା ହୋଇ ନାହିଁ । ଏହି ଦୃଷ୍ଟିରୁ କେତେଗୁଡ଼ିଏ ପ୍ରବନ୍ଧରେ ଏକଦେଶଦର୍ଶିତା ଦେଖାଯାଏ । କେତେକ ଲେଖକ ସମାଲୋଚନା ଓ ସାହିତ୍ୟର ଇତିହାସ ମଧ୍ୟରେ ଯେଉଁ ସମ୍ପର୍କ ରହିଛି ସେ ବିଷୟରେ ସଚେତନ ନୁହନ୍ତି ; ଅଥବା ତାହା ଭଲ ଭାବରେ ଉପଲବ୍ଧି କରି ଫୁଟାଇ ପାରି ନାହାନ୍ତି । କେତେଜଣ ସାହିତ୍ୟକୁ କେବଳ ମାର୍କସବାଦୀ ଦୃଷ୍ଟିକୋଣରୁ ବିଗ୍ରହ କରିଛନ୍ତି । କେହି ମଧ୍ୟ ତାକୁ କେବଳ ମାନବିକତା ଦୃଷ୍ଟି-କୋଣରୁ ଦେଖିଛନ୍ତି; କିନ୍ତୁ ଅଧିକାଂଶ ଲେଖକ ସାମ୍ପ୍ରତିକ ଓ ଆଧୁନିକତା ମଧ୍ୟରେ ଯେଉଁ ପାର୍ଥକ୍ୟ ରହିଛି ତାକୁ ଭଲ ଭାବରେ ଉପଲବ୍ଧି କରି ପ୍ରକାଶ କରିପାରି ନାହାନ୍ତି । ଫଳରେ ସାମ୍ପ୍ରତିକତାକୁ ବୁଝାଇବାକୁ ଯାଇ ପାଶ୍ଚାତ୍ୟ ଓ ପ୍ରାଚ୍ୟ ସାହିତ୍ୟର ଇତିହାସର କ୍ରମ-ବିକାଶକୁ ଆଲୋଚନା କରିଛନ୍ତି ।

କିନ୍ତୁ ସାଧାରଣ ଭାବରେ ଦେଖିବାକୁ ଗଲେ ପ୍ରାୟ ସବୁ ଲେଖକ ପାଶ୍ଚାତ୍ୟ ସାହିତ୍ୟରେ ଆଧୁନିକତାର ଯେଉଁ ବ୍ୟାଖ୍ୟା କରାଯାଇଛି,ତାହାକୁ ହିଁ

କେବଳ ଉଦ୍ଧାର କରିଛନ୍ତି ଏବଂ ସେହି ଆଧୁନିକତାର ଇତିହାସରେ ଥିବା ମୁଖ୍ୟ ବିଭାଗଗୁଡ଼ିକୁ ବର୍ଣ୍ଣନା କରିଛନ୍ତି । ଆଧୁନିକତାର ପୃଷ୍ଠଭୂମିକୁ ବିଶ୍ଳେଷଣ କରି ଅଧ୍ୟାପକ ମେଘନାଦ ପ୍ରଧାନ ଯାହା ଲେଖିଛନ୍ତି ତାହା ଏଠାରେ ଉଦ୍ଧାର କରିବା ପ୍ରାସଙ୍ଗିକ ହେବ :

"ପ୍ରାଚୀନ ପରମ୍ପରାରେ ସାହିତ୍ୟ ସହିତ ସାମ୍ପ୍ରତିକ ସାହିତ୍ୟକୁ ତୁଳନା କରି ଦେଖିଲେ ଜଣାଯାଏ ଯେ ତତ୍କାଳୀନ ଜୀବନ ପରି ଜୀବନର ପ୍ରତିଚ୍ଛବିକୁ କୋଳାଗ୍ରତ କରି ପ୍ରକାଶ ପାଇଥିବା କଳା ଓ ସାହିତ୍ୟକ୍ଷେତ୍ରରେ ବିଷୟବସ୍ତୁର ପରିଧି ଥିଲା ସୀମିତ । ମୁଖ୍ୟତଃ ଧର୍ମ, ପ୍ରେମ ଓ ପ୍ରକୃତି ଥିଲା ସେ ସବୁର ବହୁ ଚର୍ଚ୍ଚିତ ବିଷୟ । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଧର୍ମର ପ୍ରତିପତ୍ତି ସହଜରେ ଧରି ହୁଏ । ରୀତିଯୁଗରେ କାବ୍ୟରୀତିର ବହୁଳ ଚର୍ଚ୍ଚା ଭିତରେ ପ୍ରେମର ଯଥେଷ୍ଟ ବର୍ଣ୍ଣନା ଦେଖିବାକୁ ମିଳେ, ପରବର୍ତ୍ତୀ ରାଧାନାଥୀ ସାହିତ୍ୟରେ ମଧ୍ୟ ପରିସ୍ଥିତି-ପରିବର୍ତ୍ତିତ ପ୍ରେମର ପରବର୍ତ୍ତୀ ରୂପ ଆଖିରେ ପଡ଼େ । ଏପରି କି ପ୍ରେମ କୁତ୍ସିତ-କାମମୟ ବହୁରୂପ-ବିଭବ ଆଧୁନିକ ଚେତନାକୁ ମଧ୍ୟ ନିଜ ରଙ୍ଗରେ ରଙ୍ଗେଇବାର ଅପଚେଷ୍ଟା କରିଛି ଓ କରୁଛି । (ବାସ୍ତବତା ନାମରେ ସବୁ ଚଳନ୍ତି ଅଚଳନ୍ତି ସତେ ଯେପରି ଆଜି ଚଳଚଞ୍ଚଳ ହୋଇ ଉଠିଛନ୍ତି ।) ସେହିପରି ପ୍ରାକୃତିକ ରୂପଚୟନ ପ୍ରାଚୀନ ସାହିତ୍ୟରେ ଯେପରି ମିଳେ ତାହା ଠିକ୍ ସେହି ରୂପରେ ଅତ୍ୟାଧୁନିକ ସାହିତ୍ୟରେ ସ୍ଥାନ ପାଇପାରୁ ନାହିଁ ।···ଅଥଚ ଏସବୁ ସ୍ଥାନରେ ସାମ୍ପ୍ରତିକ ଚେତନାର ସ୍ୱର ଏପରି ଝଙ୍କୃତ ହୋଇ ଉଠିଛି ଯେ ତାକୁ ବହୁ ବିଚିତ୍ର ଶବ୍ଦ—ଚିତ୍ରସମ୍ପଦ ଓ ସ୍ୱରଝଙ୍କାର ଭିତରେ ବାନ୍ଧି ରଖିବା ପାଇଁ ଏ ଯୁଗର କବି-କଳାକାର ତାର ଆପ୍ରାଣ ଉଦ୍ୟୋଗ ଆରମ୍ଭ କରି ଦେଇଛି । ବିଷୟ ଚୟନରେ ସେ ପୂର୍ବପରି କେତୋଟି ନିର୍ଦ୍ଦିଷ୍ଟ କ୍ଷେତ୍ର ଉପରେ ଦୃଷ୍ଟି ନିବଦ୍ଧ ନ କରି ବିଶ୍ୱର ଏ ମୁଣ୍ଡରୁ ସେ ମୁଣ୍ଡ ଜୀବନର ପ୍ରତି ଗଳିକନ୍ଦି, ମଣିଷ ମନର ଅନ୍ଧାର ଗୁହା—ଚେତନ, ଅବଚେତନ, ମଗ୍ନଚେତନ, ସମଷ୍ଟିଚେତନ ପ୍ରଭୃତି ଯାବତୀୟ ଅଦ୍ୟାପି ଅନାବିଷ୍କୃତ ସ୍ଥାନ-ଅସ୍ଥାନ; ଦର୍ଶନ, ବିଜ୍ଞାନ, ଅର୍ଥନୀତି,

ସମାଜମାତ, ନୂତତ୍ତ୍ୱ ପ୍ରଭୃତିର ନିତ୍ୟନୂତନ ସତ୍ୟ ଓ ତଥ୍ୟ, ଦୈନନ୍ଦିନ ଜୀବନର ଅନିଶ୍ଚିତତା, ଚିତ୍ତଗ୍ଲାନି, ଅନ୍ତଃସାର ଶୂନ୍ୟତା, ଶୂନ୍ୟଗର୍ଭତା, ନୈରାଶ୍ୟ, ସମସ୍ୟାଚ୍ଛନ୍ନତା, ବ୍ୟସ୍ତ-ବିବ୍ରତ ଭାବ, ସବୁଠି ନାହିଁ ନାହିଁର ମୁଖବ୍ୟାଦନ, ଭବିଷ୍ୟତର ଆତ୍ମନିର୍ଭରଶୀଳତା ହେତୁ ବିଶୃଙ୍ଖଳା-ବିଭ୍ରାଟ; ସବୁ ଭାଙ୍ଗିଯିବାର ଜଳିଯିବାର ଧ୍ୱଂସ ପାଇବାର ବିକଟ ରୂପ ସହ ପରିଚିତ ହୋଇ ଆଜିର କବି-କଳାକାର ଏସବୁ ପୂର୍ବ ପରିଚିତ ପନ୍ଥାରେ ଅତି-ସହଜ ସ୍ୱାଭାବିକ ରୂପରେ ରୂପାୟନ ପାଇଁ ଚେଷ୍ଟା କରି ଯେ ଅସଫଳ ହେବ ଏଥିରେ ଆଶ୍ଚର୍ଯ୍ୟ-ଚକିତ ହେବାର କିଛି ନାହିଁ । ତେଣୁ ପ୍ରକାଶଭଙ୍ଗୀରେ ସେ ଆଜି ବହୁ ବିଚିତ୍ର କାରସାଦି ଆରମ୍ଭ କରିଦେଇଛି ।"

ଏହି ଉଦ୍ଧୃତାଂଶରେ ଆଧୁନିକ ଜୀବନର ଯେଉଁ ସଙ୍କେତ ଦିଆ-ଯାଇଛି, ଅନ୍ୟ କୌଣସି ଲେଖକ ତାହାକୁ ଯୁଗ-ଯନ୍ତ୍ରଣା ବୋଲି ଅଭିହିତ କରିଛନ୍ତି । ଏହିପରି ଯୁଗଯନ୍ତ୍ରଣା ଅନୁଭବ କରି କୌଣସି ସାହିତ୍ୟିକ 'ସହଜ ସ୍ୱାଭାବିକ ରୂପ'ରେ ତାହାର ଅନୁଭୂତି ବା ଅଭିଜ୍ଞତାକୁ ପ୍ରକାଶ କରିପାରେ ନାହିଁ । ସେଥିପାଇଁ ତାକୁ ବିଚିତ୍ର କାରସାଦି ମଧ୍ୟ କରିବାକୁ ପଡ଼େ ନାହିଁ । କବି-କଳାକାରର ଚେତନା ତାହାର ଯୁଗର ଓ ତାହାର ପାରିପାର୍ଶ୍ୱିକ ଅବସ୍ଥା ଦ୍ୱାରା ପ୍ରଭାବିତ ଓ ନିୟନ୍ତ୍ରିତ ହୋଇଥାଏ, ଯାହା ଫରାସୀ ସାହିତ୍ୟ ଇତିହାସର-ଲେଖକ Taineଙ୍କ ଦ୍ୱାରା "Race: Milieu: Moment theory" (ଜାତି, ପାରିପାର୍ଶ୍ୱିକ ଅବସ୍ଥା ଓ ମୁହୂର୍ତ୍ତ ମତବାଦ) ନାମରେ ପରିଚିତ । ପ୍ରତ୍ୟେକ ଯୁଗର ସାମୂହିକ ବୋଧ (Sensibility) ଓ ସାମୂହିକ ଚେତନାରେ ଯେଉଁ ପରିବର୍ତ୍ତନ ଆସେ ତାହା ସାହିତ୍ୟ ଓ କଳାର ଗତିର ଧାରାକୁ ନିୟନ୍ତ୍ରିତ କରେ । ସେହି ଚେତନାରେ ପରିବର୍ତ୍ତନ ଯୋଗୁଁ କଳାର ଆଙ୍ଗିକରେ ପରିବର୍ତ୍ତନ ଆସେ । କୌଣସି ଲେଖକ ଯୁଗ ଓ ସମୟର ପ୍ରଭାବରେ ପ୍ରଭାବିତ ନ ହୋଇ ଯଦି ଆଙ୍ଗିକରେ ପରିବର୍ତ୍ତନ ଆଣିବାକୁ ଚେଷ୍ଟା କରେ, ତାହା କେବଳ କୃତ୍ରିମତାରେ ପରିଣତ ହୁଏ । ସେହି କୃତ୍ରିମତାଜନିତ କ୍ଲିଷ୍ଟତା ବା ଦୁର୍ବୋଧତା ଗ୍ରହଣୀୟ ବା ସ୍ପୃହଣୀୟ ନୁହେଁ ।

କିନ୍ତୁ ସାହିତ୍ୟରେ ଲେଖକ ଓ ପାଠକ ମଧ୍ୟରେ ଯୋଗସୂତ୍ର ସ୍ଥାପନ କରୁଥିବା ମାଧ୍ୟମ ବା ଭାଷାର ପ୍ରକୃତିକୁ ନ ବୁଝିଲେ ଆଧୁନିକ

ଲେଖାର ବୈଶିଷ୍ଟ୍ୟ ଉପଲବ୍ଧି କରିବା କଷ୍ଟକର । ଯୁଗର ପରିବର୍ତ୍ତନ ସହିତ ଭାଷାର ପରିବର୍ତ୍ତନ ହୁଏ ; କିନ୍ତୁ ଏହି ପରିବର୍ତ୍ତନ ସବୁ ସମୟରେ ସୃଜନଧର୍ମୀ ନୁହେଁ । ଆଧୁନିକ ଯୁଗରେ ଲେଖାର ପ୍ରସାର ସାମଗ୍ରିକ ସଂଯୋଗ ମାଧ୍ୟମ (Mass Communication media) ଉପରେ ନିର୍ଭରଶୀଳ * । ଏହି ମାଧ୍ୟମ ଦ୍ୱାରା ଭାଷା ପରିମାର୍ଜିତ ହେବା ପରିବର୍ତ୍ତେ ସ୍ଥୂଳ (Crude) ହୋଇଯାଉଛି । ଯୁଗଯନ୍ତ୍ରଣା ଦ୍ୱାରା ଆକ୍ରାନ୍ତ କବି ବା ଲେଖକ ସେହି ଭାଷାର ମାଧ୍ୟମରେ ତାହାର ଅଭିଜ୍ଞତାକୁ ପ୍ରକାଶ କରିବାକୁ ପ୍ରାୟ ଅକ୍ଷମ ବୋଲି କହିଲେ ଚଳେ । ତେଣୁ ସେ ଖୋଜେ ନୂତନ ଭାଷା ଯାହା ଅଜର ଯାନ୍ତ୍ରିକସଭ୍ୟତାସୃଷ୍ଟ ଗଣମାନବ (mass man)ର ଭାଷାଠାରୁ ପୃଥକ୍; ତେଣୁ ଅନ୍ତର୍କେନ୍ଦ୍ରିକ । ପରୀକ୍ଷା ଓ ନିରୀକ୍ଷାଦ୍ୱାରା ଅଜର ଲେଖକ ତାହାର ଅଭିଜ୍ଞତାର ପ୍ରକାଶ ପାଇଁ ଭାଷା ଆବିଷ୍କାର କରେ । ସେ ଲେଖାର ଉତ୍କର୍ଷ ବା ଅପକର୍ଷ ବିଚାର କରିବାକୁ ଗଲେ ତାହାର ଆନ୍ତରିକତାକୁ ବିଚାର କରିବା ପାଠକର ପ୍ରଥମ କର୍ତ୍ତବ୍ୟ । ସେଇଠି ଆତ୍ମିକ ଓ ଆଙ୍ଗିକର ମିଳନ ହୁଏ ଏବଂ ପରମ୍ପରା ସହିତ ବ୍ୟକ୍ତିଗତ ପ୍ରତିଭାର ସମ୍ପର୍କ ପ୍ରତିଷ୍ଠିତ ଓ ଉଦ୍ଭାସିତ ହୁଏ ।

କେତେକ ସମାଲୋଚକଙ୍କ ମତରେ ଓଡ଼ିଶାରେ ସାଂପ୍ରତିକ ସାହିତ୍ୟରେ ବୈଚିତ୍ର୍ୟ ଥାଇପାରେ କିନ୍ତୁ ଆବେଦନ ନାହିଁ । ତେଣୁ ସେ ସାହିତ୍ୟ ଆଦୃତ ବା ପ୍ରତିଷ୍ଠିତ ହେବାର ସମ୍ଭାବନା କମ୍ । ଏହିପ୍ରକାର ମନ୍ତବ୍ୟ କରିବା ପୂର୍ବରୁ ଆମକୁ ବିଚାର କରିବାକୁ ହେବ ଭଞ୍ଜଙ୍କ ସାହିତ୍ୟର ଦୁର୍ବୋଧତା ବା କ୍ଲିଷ୍ଟତାଠାରୁ ସଚ୍ଚି ରାଉତରାୟ, ଗୁରୁପ୍ରସାଦ ମହାନ୍ତି, ଭାନୁଜୀ ରାଓ, ସୀତାକାନ୍ତ ମହାପାତ୍ର ଓ ରମାକାନ୍ତ ରଥଙ୍କର କବିତା ବା ଗୋପୀନାଥ ମହାନ୍ତିଙ୍କର **ଆକାଶ ସୁନ୍ଦରୀ** ପରି ଉପନ୍ୟାସ କଣ ଅଧିକ ଦୁର୍ବୋଧ ? ସେମାନେ ପାଶ୍ଚାତ୍ୟ ସାହିତ୍ୟ ଦ୍ୱାରା ପ୍ରଭାବିତ ହୋଇ ଏହିପରି ସାହିତ୍ୟ ସୃଷ୍ଟି କରିଛନ୍ତି ବୋଲି ଅଭିଯୋଗ ଦ୍ୱାରା ସେ ସାହିତ୍ୟର ମୂଲ୍ୟକୁ ହ୍ରାସ କରାଯାଇ ପାରିବ ନାହିଁ । ଯେଉଁ-ମାନେ ରାଧାନାଥଙ୍କର ରୋମାଣ୍ଟିକଧର୍ମୀ କବିତା ବା ଗଙ୍ଗାଧର ମେହେରଙ୍କର ସ୍ୱଭାବ-କବିତାକୁ ଆଦର କରି ଆସିଛନ୍ତି ସେମାନଙ୍କର ରୁଚି ଭିନ୍ନ ପ୍ରକାରର । ସେମାନଙ୍କ ପାଇଁ କବିତା "ପ୍ରବଳ ଭାବାବେଗର

* ଏଗୁଡ଼ିକ ହେଲେ ଖବରକାଗଜ, ସିନେମା, ରେଡ଼ିଓ ଏବଂ ଟେଲିଭିଜନ ।

ସ୍ୱତଃ ଉତ୍ସରଣ" (A spontaneous overflow of powerful feelings)* ବା "ରସାତ୍ମକ ବାକ୍ୟ ।" କିନ୍ତୁ କବିତା କେବଳ ଆବେଗ ବା ରସସମ୍ପୃକ୍ତ ହେଲେ ତାହାର ମୂଲ୍ୟ ଅପେକ୍ଷାକୃତ କମ ହୁଏ; କାରଣ କବିର ସୃଜନୀଶକ୍ତି ଆବେଗ ଓ ବୁଦ୍ଧି (feeling and reason) ଉଭୟକୁ ଆଶ୍ରୟ କରି ରୂପାୟିତ ହୁଏ ସେଥିପାଇଁ କୁହାଯାଇଛି ଯେ "ଉତ୍ତମ ପଦ୍ୟରେ ଉତ୍ତମ ଗଦ୍ୟର ସବିନମ୍ର ଗୁଣଗୁଡ଼ିକ ଥିବା ଉଚିତ ।"

ଏଠାରେ ଏହି ବିଷୟର ଅବତାରଣା କରିବାର ଉଦ୍ଦେଶ୍ୟ ଆଧୁନିକତା ଓ ସାମ୍ପ୍ରତିକତା ମଧ୍ୟରେ ପାର୍ଥକ୍ୟ ନିର୍ଦ୍ଦିଷ୍ଟ ଭାବରେ ପ୍ରତିଷ୍ଠିତ କରିବା । ଆଧୁନିକତା ମୂଲ୍ୟାୟନର ଗୋଟିଏ ମାପକାଠି । ଜୀବନ ଦର୍ଶନ ଓ ଦୃଷ୍ଟିଭଙ୍ଗୀ ଉପରେ ଆଧୁନିକତା ନିର୍ଭର କରେ । ଆଜି ମଧ୍ୟ ଗୋଲକଚନ୍ଦ୍ର ପ୍ରଧାନଙ୍କ ଭଳି ରୋମାଣ୍ଟିକଧର୍ମୀ କବି ଲେଖୁଛନ୍ତି । ଅପର ପକ୍ଷରେ ଯଥାର୍ଥ ଆଧୁନିକ ଲେଖକ ତାହାର ନିଜ ପରମ୍ପରାକୁ ଭୁଲି କେବଳ ପାଶ୍ଚାତ୍ୟ ସାହିତ୍ୟକୁ ଅନୁକରଣ କରି ଯଥାର୍ଥରେ ଆଧୁନିକ ହୋଇ ପାରିବ ନାହିଁ । ରାଧାନାଥ ଯୁଗର ଲେଖକମାନଙ୍କୁ 'ଆଧୁନିକ' କହିଲେ, ଗତ ଦୁଇ ବା ତିନି ଦଶକର ଲେଖକମାନଙ୍କୁ 'ଅତ୍ୟାଧୁନିକ' ବା ସାମ୍ପ୍ରତିକ କହିଲେ ତାହା ସାହିତ୍ୟର ଇତିହାସ ଦୃଷ୍ଟିକୋଣରୁ ଭ୍ରମାତ୍ମକ ହେବ । ଓଡ଼ିଆ ସାହିତ୍ୟରେ 'ସାମ୍ପ୍ରତିକ' ଲେଖକମାନେ ମଧ୍ୟ 'ଆଧୁନିକ' । ଆଧୁନିକତା କହିଲେ ଯାହା ବୁଝାଯାଏ ତାହା ଲେଖକର ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ—ଯେଉଁ ଦୃଷ୍ଟିଭଙ୍ଗୀ ଆଧୁନିକ ଜଗତର ବୈଜ୍ଞାନିକ ଓ ଯାନ୍ତ୍ରିକ ସଭ୍ୟତାଦ୍ୱାରା ନିୟନ୍ତ୍ରିତ ହୋଇ ସମ୍ପ୍ରତିରେ ସଙ୍କଟ ସୃଷ୍ଟି କରି ସୂକ୍ଷ୍ମବୋଧୀ (sensitive) ମଣିଷକୁ ବିଚ୍ଛିନ୍ନତା (alienation) ଓ ନିଃସଙ୍ଗତା (Loneliness)ର ଆବର୍ତ୍ତ ମଧ୍ୟକୁ ଟାଣି ନେଇଛି । ଏଇ ବିଚ୍ଛିନ୍ନତା କେବଳ ଏକ ଦେଶରେ ଘଟୁ ନାହିଁ । ଊଣାଅଧିକେ ବିଶ୍ୱର ସବୁ ସାହିତ୍ୟରେ କବିମାନସକୁ ଏହା ଆଚ୍ଛନ୍ନ କରିଛି । ଏହାକୁ ବିଶ୍ଳେଷଣ କରି Marx କହିଥିଲେ ଯେ ପୁଞ୍ଜିବାଦର ପ୍ରାଧାନ୍ୟ ଯୋଗୁ ଏହା ଘଟିଛି ; କିନ୍ତୁ ବିଜ୍ଞାନ ଓ ଯନ୍ତ୍ରିକ ସଭ୍ୟତା ଯୋଗୁଁ ଯେତେବେଳେ ସାରା ସଭ୍ୟତାର ରୂପ ବଦଳିଲା, ସେତେବେଳେ ଲେଖକ ସେହି ବେଷ୍ଟନୀର ବାହାରେ ରହିପାରିଲା ନାହିଁ । ଏହାକୁ ଅନୁଶୀଳନ କରିବାକୁ ହେଲେ ଦର୍ଶନର ଇତିହାସ ଆଲୋଚନା କରିବାକୁ ହେବ ; କିନ୍ତୁ ସେଥିପାଇଁ ଏହି ପ୍ରବନ୍ଧର ପରିଧି ମଧ୍ୟରେ ସମୟ

---

* Wordsworthଙ୍କର ସଂଜ୍ଞା ।

ନାହିଁ ; କିନ୍ତୁ ଏଠାରେ ଏତିକି କହିଲେ ଯଥେଷ୍ଟ ହେବ ଯେ Freud ତାଙ୍କର Civilization and Its Discontents ବା Sorokin, The Crisis of our Age ବା Mumford Technics and Civilizationରେ ଯେଉଁସବୁ ତଥ୍ୟ ପରିବେଷଣ କରିଛନ୍ତି, ତାହାର ମୂଳରେ ରହିଛି ଗତ ତିନି ଚାରି ଶତାବ୍ଦୀ ଧରି ସଭ୍ୟତା ଓ ସଂସ୍କୃତିରେ ଘଟିଥିବା ରୂପାନ୍ତର । ଏହି ରୂପାନ୍ତର ଦ୍ୱାରା ଆଜି ଏକ ଅଖଣ୍ଡିତ କୃଷିପ୍ରଧାନ ଗୋଷ୍ଠୀ (integrated agricultral Community) ସ୍ଥାନରେ ଆସିଛି ଅତିକାୟ ସହର । ତାହାର ରୂପରେଖ ଓ ଆତ୍ମାର ବର୍ଣ୍ଣନା କେବଳ Carl Sandburg, T. S. Eliot ବା Allen Ginsburg କରିନାହାନ୍ତି । ଆଜି ବିଶ୍ୱର ସବୁ ସାହିତ୍ୟରେ ଊଣା-ଅଧିକେ ସବୁଠି ଏହି ଭୟାର୍ତ୍ତିତା (terror), ଘୃଣାମିଶ୍ରିତ ଭୟ (horror), କୁତ୍ସିତତା (ugliness), ଅବସାଦ (boredom)ର ପ୍ରକାଶନ । ସେଥିପାଇଁ ଆଧୁନିକ ଓଡ଼ିଆ ଲେଖକଙ୍କୁ ଅନୁକରଣଶୀଳ କହିଲେ ଠିକ୍ ହେବ ନାହିଁ । ଓଡ଼ିଆ ସାହିତ୍ୟରେ ଯଦି ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ହେଉଛି ତାହାର କାରଣ ହେଉଛି ଏହି ଲେଖକମାନେ ସେଥିରେ ନିଜ ଅନୁଭୂତିର ପ୍ରତିଫଳନ ଦେଖିଛନ୍ତି । ଏମାନେ ସମସ୍ତେ ଆଧୁନିକ ସାହିତ୍ୟ ଅଧ୍ୟୟନ କରିଛନ୍ତି ଏବଂ ଅନୁକରଣ ଓ ବ୍ୟକ୍ତିଗତ ତଥା ସଂସ୍କୃତିଗତ ଗ୍ରହଣ (assimilation) ମଧ୍ୟରେ ପାର୍ଥକ୍ୟ ବିଷୟରେ ସଚେତନ । ଆଜିର ଦୁନିଆ ଏକ ଦୁନିଆରେ ପରିଣତ ହୋଇଛି; ତେଣୁ ସଂସ୍କୃତିଗତ ଦୃଷ୍ଟିରୁ ଏହାର ସାତଂଜମିନ ବିଭାବଗୁଡ଼ିକରେ ବୋଧଶକ୍ତି ଓ ମତବାଦର ଐକ୍ୟ ସବୁ ସାହିତ୍ୟର ସୂକ୍ଷ୍ମବୋଧୀ କବିମାନସର ଚେତନାରେ ଦେଖିବାକୁ ମିଳେ । Ezra Pound ଓ T. S. Eliot ମଧ୍ୟ ଏଥିପାଇଁ ଯଥେଷ୍ଟ କିଛି ଅନ୍ୟ ସଂସ୍କୃତି ଓ ସାହିତ୍ୟରୁ ଅଭିନିବେଶ କରିଛନ୍ତି । Provencal କବିତା, ଚୀନାକବିତା ବା ଫରାସୀ ପ୍ରତୀକବାଦୀ କବିତାର ପ୍ରଭାବ ଏମାନଙ୍କ କବିତାରେ ସ୍ପଷ୍ଟଭାବରେ ପରିଲକ୍ଷିତ ହୁଏ । ସୀତାକାନ୍ତ ମହାପାତ୍ର ବା ରମାକାନ୍ତ ରଥଙ୍କ ପରି ଲେଖକ ଆଜି ପ୍ରେରଣା ପାଇଁ ବିଦେଶୀ ସାହିତ୍ୟକୁ କେବଳ ଦେଖୁ ନାହାନ୍ତି; ଓଡ଼ିଆ ସଂସ୍କୃତି ଓ ସାହିତ୍ୟର ପରମ୍ପରା ମଧ୍ୟ ସେମାନେ ଅଧ୍ୟୟନ କରିଛନ୍ତି ନିଜ କବିତାର ଉତ୍ସ ଓ ଅନୁପ୍ରେରଣାର ସନ୍ଧାନରେ । ତାଙ୍କ କବିତାରେ ସେ ଅଧ୍ୟୟନ ଓ ମୂଲ୍ୟବୋଧର ଚିହ୍ନ ସୁସ୍ପଷ୍ଟ । ଏହି ମୂଲ୍ୟାୟନ ଦ୍ୱାରା ସେମାନେ ଆଜିର

ଷପ୍ରିଷ୍ଟ ସଭ୍ୟତାର ପ୍ରକୃତ ରୂପରେଖ ହୃଦୟଙ୍ଗମ କରିଛନ୍ତି ଏବଂ ତାହା ହିଁ ସେମାନଙ୍କ ମାନସିକ ଯନ୍ତ୍ରଣାର କାରଣ ।

ଏଠାରେ ଏହି ଯନ୍ତ୍ରଣାର ଅବତାରଣା ପ୍ରାସଙ୍ଗିକ ହେବ ; କାରଣ ଅନେକ ପାଠକ ସାମ୍ପ୍ରତିକ ଲେଖକମାନଙ୍କ ଲେଖାର ମୂଲ୍ୟକୁ ପ୍ରଶ୍ନ କରୁଛନ୍ତି । ଏହା ପାଠକ ଓ ଲେଖକ ମଧ୍ୟରେ କି ସମ୍ପର୍କ ରହିବ ସେ ସମ୍ବନ୍ଧରେ ଗୋଟିଏ ଜଟିଳ ପ୍ରଶ୍ନ ଏବଂ ଏଥିର ଉତ୍ତର ଦେବାକୁ ହେଲେ ଆମକୁ ସାହିତ୍ୟର ସମାଜଶାସ୍ତ୍ର (Sociology of Literature)ର ତାତ୍ପର୍ଯ୍ୟ ବୁଝିବାକୁ ପଡ଼ିବ । ଆମ ସମାଜରେ ବର୍ତ୍ତମାନ ପ୍ରାୟ ଶତକଡ଼ା ୨୫ ଲୋକ ନିରକ୍ଷର । ବାକି ୨୫ ଜଣଙ୍କର ଶିକ୍ଷାର ବିସ୍ତାର ସାକ୍ଷରତା (Literacy)ଠାରୁ ସ୍ନାତକୋତ୍ତର ଶ୍ରେଣୀ ପର୍ଯ୍ୟନ୍ତ । ସେହିପରି ଅର୍ଥ-ନୈତିକ କ୍ଷେତ୍ରରେ ଶତକଡ଼ା ୬୫ ଜଣ ଦାରିଦ୍ର୍ୟ ସୀମା(Poverty line)ର ତଳେ । ବାକି ଯେଉଁ ୩୫ ଜଣ ରହିଲେ, ସେମାନଙ୍କର ଆୟରେ ପାର୍ଥକ୍ୟ ବ୍ୟାପକ । ତାହା ଛଡ଼ା ଗାଁରେ ରହୁଥିବା ଲୋକଙ୍କ ସଂଖ୍ୟା ସହରରେ ରହୁଥିବା ଲୋକଙ୍କ ସଂଖ୍ୟା ଅପେକ୍ଷା ଅନେକ ବେଶୀ । କିନ୍ତୁ ଗତ ୩୦ ବର୍ଷ ଭିତରେ ଆମର ସାମାଜିକ ଜୀବନରେ ଅନେକ ପରିବର୍ତ୍ତନ ଆସିଛି ଓ ଆସୁଛି । ତାହାର ମୂଲ୍ୟାୟନ ଏ ପର୍ଯ୍ୟନ୍ତ ଠିକ୍ ଭାବରେ ନ ହୋଇଥିଲେ ମଧ୍ୟ କ୍ରମଶଃ "ଦୁଇ ସଂସ୍କୃତି" (Two Cultures)*ର ଲକ୍ଷଣ ଆମ ସମାଜରେ ଦେଖାଯାଉଛି । ଏହି ପରିପ୍ରେକ୍ଷୀରେ ଲେଖକ ଲେଖିବ କାହା ପାଇଁ ? ଯଦି ସେ ନିରକ୍ଷର ୭୫ ପ୍ରତିଶତଙ୍କ ପାଇଁ ଲେଖେ ତେବେ ତାକୁ ପଢ଼ିବ କିଏ ? ଯଦି ଅନ୍ୟ ୨୫ ପ୍ରତିଶତଙ୍କ ପାଇଁ ଲେଖିବ ତାହାହେଲେ କେଉଁ ପ୍ରକାର ଶୈଳୀ ଓ କେଉଁ ଭାଷାରେ ଲେଖିବ ? ଏ ସମସ୍ୟା ଅଧିକାଂଶ ନୂତନ ଲେଖକଙ୍କ ଆଗରେ ରହିଛି । ଏହି ସମସ୍ୟା ହେଲା ପରମ୍ପରା ଓ ପରିବର୍ତ୍ତନ (Tradition and Change) ମଧ୍ୟରେ ଥିବା ସମ୍ପର୍କର ସମସ୍ୟା; ଏହା ମଧ୍ୟ ସଂଖ୍ୟାନ୍ୟୂନ ସଂସ୍କୃତି (minority-culture)ର ସମସ୍ୟା । ଏହା ଆମ ନିଜ ଦେଶର ସାଂପ୍ରତିକ ପରିବର୍ତ୍ତନ-ଶୀଳ ସମାଜରେ କ୍ରମଶଃ ପରିଲକ୍ଷିତ ହେଉଛି । ସାହିତ୍ୟ ଓ ପାଠକ ମଧ୍ୟରେ ସମ୍ପର୍କ ବିଷୟରେ ଆମ ଦେଶରେ ଏ ପର୍ଯ୍ୟନ୍ତ କୌଣସି ଅନୁସନ୍ଧାନ ପ୍ରାପ୍ତ ହୋଇ ନାହିଁ ।

---

* C. P. Snowଙ୍କର ସିଦ୍ଧାନ୍ତ ।

ଏ ସମସ୍ୟାର କୌଣସି ଗୋଟିଏ ସମାଧାନ ସୂତ୍ର ନାହିଁ, ‘ଅଜ୍ଞେୟ’ ବା ବିଷ୍ଣୁ ଦେ, ସୁଭାଷ ମୁଖୋପାଧ୍ୟାୟ ବା Gottfried Benn; ଭାନୁଜୀ ରାଓ ବା କେତକୀ କୁଶାରୀ ଡାଇସନ, ବା Yves Boniface ସମସ୍ତେ ନୂତନ କବି, ସେମାନଙ୍କ ପନ୍ଥା ଭିନ୍ନ; କିନ୍ତୁ ସେମାନେ ସମସ୍ତେ ନିଜ ନିଜ ସାହିତ୍ୟର ପରମ୍ପରା ପ୍ରତି ଧ୍ୟାନଶୀଳ । ଏହି ଧ୍ୟାନ ସେମାନଙ୍କର ଜୀବନଦର୍ଶନ ଓ ମନନଶୀଳତାରେ ପରିଲକ୍ଷିତ । ସଚି ରାଉତରାୟ ଓଡ଼ିଆ କବିତାରେ ଯେଉଁ ଆଧୁନିକତାର ସୂତ୍ରପାତ କଲେ ଏବଂ ତାଙ୍କର ପରବର୍ତ୍ତୀ କବିମାନେ ଯେଉଁ କାବ୍ୟଧାରାକୁ ଅନୁସରଣ କରୁଛନ୍ତି; ଗଦ୍ୟ ସାହିତ୍ୟରେ ଗୋପୀନାଥ ମହାନ୍ତି ଓ ସୁରେନ୍ଦ୍ର ମହାନ୍ତି ଅଥବା ନାଟ୍ୟସାହିତ୍ୟରେ ମନୋରଞ୍ଜନ ଦାସ ବିଶ୍ୱଜିତ୍ ଦାସ କିମ୍ବା ବିଜୟ ମିଶ୍ର ଯେଉଁ ପରୀକ୍ଷାନିରୀକ୍ଷା କରୁଛନ୍ତି ଏବଂ ତାହା ଦ୍ୱାରା ଓଡ଼ିଆ ସାହିତ୍ୟର ପରମ୍ପରା କିପରି ପରିବର୍ତ୍ତିତ, ପରିବର୍ଦ୍ଧିତ ଓ ପରି-ମାର୍ଜିତ ହେଉଛି ତାହା ବୁଝିହେବ ସେମାନଙ୍କ ଭାଷାକୁ ଅଧ୍ୟୟନ କଲେ । ଶାରଳା ଦାସ ଓଡ଼ିଆ ଭାଷାର ଯେଉଁ ଶକ୍ତି ଆବିଷ୍କାର କରିଥିଲେ ସେହି ଶକ୍ତିର ସ୍ରୋତ ଜଗନ୍ନାଥ ଦାସ, ବଳରାମ ଦାସ, ଫକୀରମୋହନ, ଗୋପୀନାଥ ମହାନ୍ତି, ସୁରେନ୍ଦ୍ର ମହାନ୍ତି, ନିତ୍ୟାନନ୍ଦ ମହାପାତ୍ର, ଗୁରୁପ୍ରସାଦ ମହାନ୍ତି, ରମାକାନ୍ତ ରଥ ଓ ସୀତାକାନ୍ତ ମହାପାତ୍ରଙ୍କ ଲେଖାରେ ଅବିଚ୍ଛିନ୍ନ ଭାବରେ ପ୍ରବାହିତ ।

ତେଣୁ ସଂପ୍ରତିକ ଓଡ଼ିଆ ସାହିତ୍ୟ କୌଣସି ଗୋଟାଏ ମଲ୍ଲଙ୍ଗ ନୁହେଁ । ସେ ସାହିତ୍ୟକୁ ମାନସିକ ଦୁର୍ବଳତା ବା ବିକଳତାର ନିଦର୍ଶନ ବୋଲି କହିବା ଉଚିତ ନୁହେଁ । ଯେତେଦିନ ପର୍ଯ୍ୟନ୍ତ ଓଡ଼ିଆ ଭାଷାର ପାରମ୍ପରିକ ଧାରାକୁ ଆଗରେ ରଖି ସାମ୍ପ୍ରତିକ ଲେଖକ ତାହାର ଶୈଳୀଗତ ପରୀକ୍ଷା ଚଳେଇବ, ସେତେଦିନ ପର୍ଯ୍ୟନ୍ତ ସେ ସାହିତ୍ୟ ଆହ୍ୱାନ ଓ ଉତ୍ତର (Challenge and Response)ର ସାହିତ୍ୟ ହୋଇ ରହିବ । ଏହି ପରୀକ୍ଷା ମଧ୍ୟରେ ଲେଖକ ଆତ୍ମକେନ୍ଦ୍ରିକ ହେବା ସ୍ୱାଭାବିକ । କାରଣ ତାହାର ପାଠକସଂଖ୍ୟା ସୀମିତ । ଯେତେବେଳେ ଲେଖକର ଚେତନା ଓ ପାଠକର ଚେତନା ଏକା ସ୍ତରକୁ ଆସି ମିଶି ପାରନ୍ତି ସେତେ-ବେଳେ ଗଣସାହିତ୍ୟର ସମ୍ଭାବନା ଆସେ । ଆଜି ସେପରି ସାହିତ୍ୟ ଓଡ଼ିଆରେ ସୃଷ୍ଟି କରିବା ଅସମ୍ଭବ; କାରଣ ସଂପ୍ରତିକ ଲେଖକଗୋଷ୍ଠୀର ବୌଦ୍ଧିକ ସ୍ତର ସାଧାରଣ ପାଠକର ବୌଦ୍ଧିକ ସ୍ତର ସମାନ ନୁହେଁ ।

ଯେଉଁ ମନ୍ଥର ଗତିରେ ଅର୍ଥନୈତିକ ପ୍ରଗତି ଓ ଶିକ୍ଷାର ପ୍ରଚାର ହେଉଛି, ନିକଟଭବିଷ୍ୟତରେ ସେ ସ୍ତର ସମାନ ତ ଦୂରର କଥା, ନିକଟବର୍ତ୍ତୀ ହେବାର ମଧ୍ୟ ସମ୍ଭାବନା ନାହିଁ ।

ଏହି ଶ୍ରେଣୀର ଲେଖକମାନଙ୍କୁ ମଧ୍ୟ "Bourgeoise" ବା ପ୍ରତିକ୍ରିୟାଶୀଳ ବୋଲି କହିବା କିମ୍ବା ସେମାନେ ସାଧାରଣ କୃଷୀ, ମୂଲିଆ ବା ଗାଉଁଲି ଲୋକର ଜୀବନ ବିଷୟରେ ଲେଖି ନାହାନ୍ତି ବୋଲି ସେମାନଙ୍କୁ ସମାଲୋଚନା କରିବା ମଧ୍ୟ ଅସମୀଚୀନ । କୌଣସି କଳାକାର ଯଦି ତାହାର ଅଭିଜ୍ଞତାର ପରିସର ବାହାରକୁ ଯାଇ ଲେଖେ, ତେବେ ସେ ସାହିତ୍ୟରେ ଆନ୍ତରିକତା ରହିବ ନାହିଁ ।

ସ୍ୱାପ୍ରତିକ ଲେଖକ ଯେଉଁ ପରିପ୍ରେକ୍ଷୀରେ ଲେଖୁଛି ତାହା ସୀମିତ; ତାହାର ଲେଖା ଆତ୍ମକେନ୍ଦ୍ରିକ; କାରଣ ଇତିହାସକୁ ସେ ଦେଖୁଛି କେତେକ ମୁହୂର୍ତ୍ତ ବା ସମୟ ଏକକ (time unit)ର ସମଷ୍ଟି ହିସାବରେ । ସେ ସତ୍ୟ (Reality)କୁ ଦେଖୁଛି ନିଜର ଦୃଷ୍ଟିକୋଣରୁ ଏବଂ ସେଥିପାଇଁ ଗୁରୁପ୍ରସାଦ ମହାନ୍ତି **କାଳପୁରୁଷ**ରେ କିମ୍ବା ରମାକାନ୍ତ ରଥ **ଅନେକ କୋଠରୀ**ରେ ଦୁଇଟି ଯୁଗ ବା ଦୁଇଟି କାଳ ନିରୂପଣ କରିଛନ୍ତି । ଗୋଟିଏ କାଳରେ ରହିଛି ସ୍ଥିତି (Stasis) ଏବଂ ଅନ୍ୟଟିରେ କେବଳ ଗତି (Movement) । ଏହି ଗତିଶୀଳ ଐତିହାସିକ କାଳର ସ୍ରୋତରେ ଆମ ସତ୍ତାକୁ ଆବିଷ୍କାର କରିବାକୁ ଯାଇ ସେମାନେ ଯଦି ଆତ୍ମକେନ୍ଦ୍ରିକ ହୋଇଛନ୍ତି; ଅନ୍ୟ ପକ୍ଷରେ ଗୋପୀନାଥ ମହାନ୍ତି **ଆକାଶ ସୁନ୍ଦରୀ**ରେ ସେହି ବ୍ୟକ୍ତିସତ୍ତା (ego)କୁ ଚିନ୍ନ ଚିନ୍ନ କରି ବିଶ୍ଳେଷଣ କରିଛନ୍ତି ଓ ମନୋରଞ୍ଜନ ଦାସ **ଅରଣ୍ୟ ଫସଲ**ରେ ସେହି ବ୍ୟକ୍ତିସତ୍ତା ମଧ୍ୟରୁ ବାହାରିଯିବାକୁ ଚେଷ୍ଟା କରିଛନ୍ତି ।

ଏପରି ସାହିତ୍ୟକୁ ରାଧାନାଥ ଯୁଗ ବା ସବୁଜଯୁଗର ସାହିତ୍ୟ ସହିତ ତୁଳନା କଲେ ଆମେ ଦେଖିବାକୁ ପାଇବା ଯେ ଏହି ସାହିତ୍ୟ ପଛରେ ଏକ ତୀବ୍ର ମନସ୍ତାତ୍ତ୍ୱିକ ଓ ନୈତିକ ପ୍ରୟୋଜନୀୟତା ରହିଛି । ଏମାନେ ସର୍ବଦା ପରୀକ୍ଷାମୂଳକ ଓ ପ୍ରୟୋଗାତ୍ମକ ସାହିତ୍ୟ ସୃଷ୍ଟି କରିବାରେ ବ୍ରତୀ; କାରଣ ଆଧୁନିକ ଜୀବନରେ ବା ସମାଜରେ ସ୍ଥିରତାର ଅଭାବ ଅନୁଭବ କରି ଏମାନେ ଆଦର୍ଶ ଓ ବାସ୍ତବ ଭିତରେ ଥିବା Chasm (ପ୍ରାର୍ଥକ୍ୟ)କୁ ବୁଝିବାକୁ ଚେଷ୍ଟା କରୁଛନ୍ତି । ସେମାନଙ୍କର ଏ ଚେଷ୍ଟା

ସଫଳ ହୋଇଛି କି ନାହିଁ ତାହା ସେମାନଙ୍କ ଲେଖାର ପ୍ରକାଶଭଙ୍ଗୀ ଓ ଆଙ୍ଗିକରୁ ହିଁ ଜଣାଯାଏ । ଜୀବନର ମୂଲ୍ୟବୋଧ ଯେତେବେଳେ ଅନିଶ୍ଚିତ ହୋଇ ଉଠେ ସେତେବେଳେ କାବ୍ୟକବିତାକୁ ବାଚନାତ୍ମକ କରିବା ମାନେ ଜୀବନର ସତ୍ୟଠାରୁ ଦୂରେଇ ଯିବା । ଆଧୁନିକ ଯୁଗର ଜୀବନର ପ୍ରତିଫଳନ ହୋଇ ପାରେ କେବଳ ସେଇ ଆଣବିକୃତ ଶବ୍ଦଯନ୍ତ୍ରର ଦ୍ୱାରା ଯାହା ଇଙ୍ଗିତଧର୍ମୀ (Suggestive) । ଏହିପରି ସାହିତ୍ୟରେ ଯେଉଁ ବ୍ୟକ୍ତିତ୍ୱ ପ୍ରକାଶିତ ହେଉଛି ତାହା Passive ନୁହେଁ ଏବଂ ଏହି ଲେଖକମାନେ Baudelaireଙ୍କ ପରି ଅନିଷ୍ଟ ମାଧ୍ୟମରେ ଇଷ୍ଟକୁ ଆବିଷ୍କାର କରିବା ପାଇଁ ତତ୍ପର ।

ଏହି ପ୍ରଚେଷ୍ଟା ସେମାନେ ସାହିତ୍ୟକୁ ସୌନ୍ଦର୍ଯ୍ୟ ବୋଧଠାରୁ ଦୂରରେ ରଖିବାକୁ ବାଧ୍ୟ; କାରଣ ସେମାନଙ୍କ ମତରେ ସମସ୍ତ ସତ୍ୟ ଆପେକ୍ଷିକ ଓ ପରିବର୍ତ୍ତନଶୀଳ । ଏଇ ପରିବର୍ତ୍ତନକୁ ଅନୁସରଣ କରି ଇତିହାସରେ ସେମାନେ ଦେଖୁଛନ୍ତି ନୂତନ ଓ ପୁରାତନର ସଂଘର୍ଷ ଓ ସନ୍ଧିତ ଏକ ଦିଗରେ ସେମାନେ ସାଂପ୍ରତିକ ଚେତନାର ବାହକ, ତଥାପି ଏହି ଚେତନା ଅସହ୍ୟ ହେବା ଯୋଗୁଁ ଅତୀତକୁ ଫେରିଯାଇ ସେଠି ମଣିଷର ସମଷ୍ଟିଗତ (archetypal) ଚେତନାର ଆଶ୍ରୟ ନେଇଛନ୍ତି ଏବଂ ସଂବେଦଶକ୍ତିର ସଂଯୋଜନର (Unified sensibility) ଆବଶ୍ୟକତା ଉପଲବ୍ଧି କରିଛନ୍ତି ।

ଓଡ଼ିଆ ସାହିତ୍ୟରେ ପାଶ୍ଚାତ୍ୟ ସାହିତ୍ୟ ପରି ଅନୁତ୍ତରାଧିକୃତ ମାନସ (Disinherited mind)ର ସ୍ୱାକ୍ଷର ଅଧିକ ନାହିଁ । କାଫ୍‌କେ-ଗାଡ଼ ଜୀବନର ଅସ୍ତିତ୍ୱରେ ଯେଉଁ ଭୟ ଓ ଜୁଗୁପ୍ସା ନିର୍ଣ୍ଣୟ କରିଥିଲେ ତାହା ମଧ୍ୟ ଖୁବ୍ ବିଶେଷ ପରିମାଣରେ ନାହିଁ । ତାହାର କାରଣ ଓଡ଼ିଶାର ସାମାଜିକ ବିବର୍ତ୍ତନ ପାଶ୍ଚାତ୍ୟ ଦେଶ ତୁଳନାରେ ଅନେକ କମ୍ । ଏଠି ବଞ୍ଚିବାର ସ୍ପୃହା ଏ ପର୍ଯ୍ୟନ୍ତ ଅରୁଚି (Nausea) ସ୍ତରକୁ ଖସିଆସି ନାହିଁ । ତାହାର କାରଣ ଆମର ବ୍ୟକ୍ତିଗତ ଓ ସମଷ୍ଟିଗତ ଜୀବନ ଉପରେ ଧର୍ମର ପ୍ରଭାବ ଏ ପର୍ଯ୍ୟନ୍ତ ଅନେକଟା ଅପ୍ରତିହତ । ଏ ପ୍ରଭାବ କ୍ରମଶଃ ଦୁର୍ବଳ ହେଉଛି ; କିନ୍ତୁ ଏହା ଏ ପର୍ଯ୍ୟନ୍ତ ସୁଦ୍ଧା ଆମ ଦେଶର ସାମୂହିକ ଅଚେତନ (Collective Unconscious)ରେ ଏଭଳି ଦୃଢ଼ଭାବରେ ନିବଦ୍ଧ ଯେ ତାହାର ପ୍ରଭାବରୁ ଓଡ଼ିଆ ଲେଖକ ବା ପାଠକ ମୁକ୍ତ

ନୁହନ୍ତି । କିନ୍ତୁ ଏହି ଧର୍ମ ବିଶ୍ୱାସର ଦୃଢ଼ତା କ୍ରମେ ହ୍ରାସ ପାଉଛି । ମଧ୍ୟ-ଯୁଗର ସାହିତ୍ୟ ସହିତ ଏ ଯୁଗର ସାହିତ୍ୟକୁ ତୁଳନା କଲେ ଏହା ସ୍ପଷ୍ଟ ହୁଏ । ତେବେ ପାଶ୍ଚାତ୍ୟ ସାହିତ୍ୟରେ ଯେଉଁ ଯୁଗଯନ୍ତ୍ରଣା (angst) ଅଥବା ନାସ୍ତିକଭାବର ପ୍ରଚୁର ହୋଇଛି ତାହା ବର୍ତ୍ତମାନ ପର୍ଯ୍ୟନ୍ତ ଆମ ସାହିତ୍ୟକୁ ଗ୍ରାସ କରି ନାହିଁ ।

ଏହା କହିବାର ଅର୍ଥ ନୁହେଁ ଯେ ଓଡ଼ିଆ ସାମ୍ପ୍ରତିକ ସାହିତ୍ୟ ଗତି-ସାହିତ୍ୟ । ବିଶେଷ କରି କବିତାକ୍ଷେତ୍ରରେ ଏହି ଯୁବଗୋଷ୍ଠୀ ଯେଉଁ ପରୀକ୍ଷା କରି ଚାଲିଛନ୍ତି ତାହା ସେମାନଙ୍କୁ ଏ ପରିବର୍ତ୍ତନଶୀଳ ଯୁଗର ପ୍ରତିନିଧି ବୋଲି ସୂଚିତ କରୁଛି । ତାହା ସଙ୍ଗେ ଏହା ମଧ୍ୟ ପ୍ରତିପାଦନ କରୁଛି ଯେ ଆଜିର କବିତା ଏକାଧାରରେ ବିଲର ଚଷା ଓ ଅନ୍ତଃପୁରର ଯୋଷା ପାଇଁ ଏକ ସଙ୍ଗେ ଉଦ୍ଦିଷ୍ଟ ହୋଇପାରିବ ନାହିଁ । George Lukacs ଯଥାର୍ଥରେ କହିଛନ୍ତି ଯେ ଆଧୁନିକ ଲେଖକ ସାବଜନୀନ ମାନବିକ ଅବସ୍ଥାକୁ ନିଜ ମନରେ ଯେତେ ପ୍ରତିଷ୍ଠା କଲେ ମଧ୍ୟ ସେ ପରିବର୍ତ୍ତନ ଓ ପ୍ରତିକ୍ରିୟା ଦ୍ୱାରା ସଦାସର୍ବଦା ଜୀବନର ସତ୍ୟକୁ ଆବିଷ୍କାର କରୁଛି । ଭାଷାର ପ୍ରୟୋଗାତ୍ମକ ମାଧ୍ୟମରେ ପରିବର୍ତ୍ତନଶୀଳ ଜଟିଳତାକୁ ଆବିଷ୍କାର କରିବା ହିଁ ସାମ୍ପ୍ରତିକ ସାହିତ୍ୟର ଆଭିମୁଖ୍ୟ । ସେଥିପାଇଁ ବୋଦଲେୟାର କହିଥିଲେ :—

> Every man who refuses to accept the conditions of life sells his soul.

ଆଜିର ସାହିତ୍ୟିକ ତା'ର ଆତ୍ମାକୁ ବିକ୍ରୟ କରିବାକୁ ସର୍ବଦା ଅନିଚ୍ଛୁକ ଏବଂ ଆଧୁନିକ ଓଡ଼ିଆ ସାହିତ୍ୟର କେନ୍ଦ୍ରବିନ୍ଦୁ ହେଲା ସେହି ମୂଲ୍ୟବୋଧ । ଯେଉଁ ଲେଖକମାନଙ୍କର ସେହି ମୂଲ୍ୟବୋଧ ଅଛି ସେହି-ମାନେ ହିଁ ଯଥାର୍ଥରେ ସାମ୍ପ୍ରତିକ ସାହିତ୍ୟିକ । ତେବେ ଏହିଭଳି ସାହିତ୍ୟିକଙ୍କର ସଂଖ୍ୟା ଓଡ଼ିଆ ସାହିତ୍ୟ ବା ଭାରତୀୟ ସାହିତ୍ୟ କାହିଁକି, ବିଶ୍ୱସାହିତ୍ୟରେ ମଧ୍ୟ ଖୁବ୍ ସୀମିତ; କାରଣ ସେମାନଙ୍କ ଦୃଷ୍ଟିରେ ସାହିତ୍ୟ ଜୀବନଧର୍ମୀ । Michael Polaniyiଙ୍କ ଦ୍ୱାରା ଏହି ଶ୍ରେଣୀର ଲେଖକ-ମାନେ 'ପ୍ରତି-ନେତିବାଦୀ' (Anti-nihilist) ବୋଲି ଅଭିହିତ ।

ଏହି ପ୍ରତି-ନେତିବାଦ ମନୋବୃତ୍ତି ବିଶିଷ୍ଟ ସାମ୍ପ୍ରତିକ ସାହିତ୍ୟରେ ନାନା ରୂପରେ ପ୍ରକାଶ ପାଇଛି । କେତେକ ସମାଲୋଚକ

ଆଧୁନିକ ସାହିତ୍ୟରେ ଯୌନସମସ୍ୟା ବା ବିସ୍ଫୋରଣକୁ ଅଶ୍ଳୀଳ ବୋଲି ମନେ କରନ୍ତି । ଏ ବିଷୟଟି ପ୍ରକୃତରେ ଜଟିଳ; କାରଣ ସାହିତ୍ୟରେ ଅଶ୍ଳୀଳତାକୁ ବୁଝିବାକୁ ହେଲେ ସାମାଜିକ ରୁଚି ସଙ୍ଗେ ସଙ୍ଗେ ଲେଖକର ଦୃଷ୍ଟିଭଙ୍ଗୀକୁ ମଧ୍ୟ ବିଚାରକୁ ନେବା ପାଇଁ ହେବ । ଏହି ଦୃଷ୍ଟିଭଙ୍ଗୀ ରଚନା ଶୈଳୀ ଓ ଅଙ୍ଗିକ ମଧ୍ୟରୁ ହିଁ ଉପଲବ୍ଧି କରିହେବ । ପାଶ୍ଚାତ୍ୟ ସାହିତ୍ୟରେ ଯେତେବେଳେ D.H. Lawrence ଏହି ସମସ୍ୟାକୁ ଭିତ୍ତି କରି ତାଙ୍କର ସାହିତ୍ୟ ରଚନା କରିଥିଲେ, ସେତେବେଳେ ଯେଉଁ ଆଲୋଡ଼ନ ସୃଷ୍ଟି ହୋଇଥିଲା ତାହାର ବର୍ତ୍ତମାନ ଅବସାନ ହୋଇଗଲାଣି । ଆମ ସମାଜରେ ସେ ଧରଣର ରୁଚି ଏ ପର୍ଯ୍ୟନ୍ତ ପ୍ରଚଳିତ ହୋଇ ନାହିଁ କିନ୍ତୁ କଳା ଓ ଅଶ୍ଳୀଳତା ମଧ୍ୟରେ ପାର୍ଥକ୍ୟକୁ ବିଚାରକୁ ନେଲେ ଆମେ ଦେଖିପାରିବୁ ଯେ ଯେଉଁଠି ଅଶ୍ଳୀଳତାର ପ୍ରାଧାନ୍ୟ ସେଠି ସାହିତ୍ୟ ଉପଲବ୍ଧି (Perception)ର ସ୍ତରକୁ ଯାଇପାରେ ନାହିଁ; ଇନ୍ଦ୍ରିୟାନୁଭୂତି (Sensation) ରେ ହିଁ ରହିଯାଏ । Sorokinଙ୍କ ଭାଷାରେ ଆଜିର ଇନ୍ଦ୍ରିୟାନୁଭୂତି-ସର୍ବସ୍ୱ ସଂସ୍କୃତିରେ ଇନ୍ଦ୍ରିୟାନୁଭୂତିକୁ ପ୍ରଚାର କରିବା ଏକ ବୃତ୍ତି, କିନ୍ତୁ ଯେଉଁ ପାଠକମାନେ Lawrenceଙ୍କର ସାହିତ୍ୟ ମନନଶୀଳତା ଓ ବିଶ୍ଳେଷଣ ପୂର୍ବକ ଅଧ୍ୟୟନ କରିଛନ୍ତି, ସେମାନେ ଜାଣନ୍ତି ତାଙ୍କର ଜୀବନ-ଦର୍ଶନ କେଡ଼େ ଟ୍ରାଜିକ୍ ଓ ସେ କେଡ଼େ ଗଭୀର ଭାବରେ ଆଧୁନିକ ଜୀବନର ବିଖଣ୍ଡିତ ଚେତନାକୁ ଉପଲବ୍ଧି କରିଥିଲେ । ପାଶ୍ଚାତ୍ୟ ସାହିତ୍ୟରେ ରେନାସାଁ ଯୁଗ ପରେ ସମ୍ବେଦଶକ୍ତିର ବିୟୋଜନର (Dissociation of sensibility) ଯେଉଁ ସୂତ୍ରପାତ ହୋଇଥିଲା ତାହାର ଚରମ ପରିଣତି ଊନବିଂଶ ଶତାବ୍ଦୀର ରୋମାଣ୍ଟିକ ଯନ୍ତ୍ରଣା (Romantic Agony) । ସେହି ବିଖଣ୍ଡିତ ମାନସର ଯନ୍ତ୍ରଣାରୁ ମୁକ୍ତି ପାଇବା ପାଇଁ ଲେଖକ ବିଭିନ୍ନ ପ୍ରତିରୂପ ବିଶ୍ୱାସ (Surrogate faith)ର ଅନ୍ୱେଷଣ କରିଛି ଏବଂ ତାହା ଭିତରୁ ଯୌନମୋହ ଅନ୍ୟତମ । ଏହି ମୋହରେ ଅନ୍ଧ ହେବା ଏକ କଥା, ତାହା ମଧ୍ୟରୁ କୌଣସି ତତ୍ତ୍ୱ ଆବିଷ୍କାର କରିବା ଅନ୍ୟ କଥା; କିମ୍ବା ଏହି ମୋହର ମୂଲ୍ୟାୟନ କରି ତାହାକୁ ବକ୍ରୋକ୍ତି (irony)ରେ ପ୍ରକାଶ କରିବା ସମ୍ପୂର୍ଣ୍ଣ ଭିନ୍ନ କଥା :—

> "ମୁଁ ନିର୍ବୋଧ ଶୁଣିଲି ତାହାର
> (ସତେ କି ସେ ଅଧା ସାବଜା ଏବଂ ଅଧା ହଳଦିଆ ପକ୍ଷ
> ଯାହା ଖସୁଥିଲା ବହୁ ଉଚ୍ଚ ଗଛର ଡାଳରୁ, କିମ୍ବା

ଖଣ୍ଡ ଖଣ୍ଡ ମାଂସ ତାର ପଞ୍ଜରରୁ ଖସି ପଡ଼ୁଥିଲା ।
ବା ସେ ଦଗ୍ଧ ସୂର୍ଯ୍ୟାସ୍ତର ଅଗ୍ନିରେ ଓ ଯେତେ ତା'ର ବେମାନ୍ଧ ସତରେ
ଏକ ମୃତ୍ୟୁ-ନାଚ ଅଗ୍ନି ସମ୍ମୁଖରେ ଶରତର ସାପ୍ତାହିକ ପର୍ବରେ)
କାନ୍ଦଣା ଯେ ଆପୁଡ଼ାଅ ନାହିଁ ମୋର ଲଙ୍ଗଳା ଜଂଘକୁ
ମୁଁ ସ୍ନେହରେ ଭିଜିଯିବ ବେଶି ବେଳ ଜଳିବ କେବଳ ।"

(ରମାକାନ୍ତ ରଥ)

ଏହି ଉଦ୍ଧୃତାଂଶରେ ୧ମ, ୭ମ ଓ ୮ମ ଧାଡ଼ିରେ ଯେଉଁ Paradox (ବିରୋଧାଭାସ) ରହିଛି—ଭିଜିଯିବ ଓ ଜଳିବ—ତାହା ପଛରେ ରହିଛି ଦୁଇଟି ଚିତ୍ରକଳ୍ପ । ପ୍ରଥମଟି ବନ୍ଧନୀ ମଧ୍ୟରେ ଥିବା ଅଂଶରେ ମଣିଷର ଜୀବନର କ୍ଷୟ, ଯେଉଁ କ୍ଷୟ ଆସେ କାଳର ପ୍ରଭାବରୁ । ଯାହା Shakespeare ଙ୍କର ଚତୁର୍ଦ୍ଦଶପଦୀ "That time of the year thou may'st in me behold......"ରେ କିମ୍ବା ଆମର କଥାରେ ଥିବା "ତଳ ବରଡ଼ା ଖସୁଛି, ଉପର ବରଡ଼ା ହସୁଛି···"ରେ ଦେଖାଯାଏ ଏବଂ ସେହି କ୍ଷୟ ପତନ କିମ୍ବା ଜ୍ୱଳନଦ୍ୱାରା ସମ୍ଭାବିତ । ଏହି ଜ୍ୱଳନ Dance of Death (ମୃତ୍ୟୁନାଚ) ର ପ୍ରତୀକ—ଯାହା ଆମ ସଂସ୍କୃତିରେ ପ୍ରଳୟ ନାଚ ଓ ସତୀଙ୍କର ଦେହ ଖଣ୍ଡ ଖଣ୍ଡ ହୋଇ ପଡ଼ିବାରେ ଓ ପାଶ୍ଚାତ୍ୟ ସାହିତ୍ୟରେ Holbeinଙ୍କର ପ୍ରସିଦ୍ଧ କାଠଖୋଦାଇ ଚିତ୍ରରେ ପ୍ରେମିକ-ପ୍ରେମିକାଙ୍କର ମୃତ୍ୟୁର ଅନିବାର୍ଯ୍ୟ କବଳରେ ପତନର ପ୍ରତିକୃତି । ଏ କ୍ଷେତ୍ରରେ ପ୍ରେମର ଅନୁକମ୍ପା—ଆର୍ଦ୍ରତା ଜ୍ୱଳନର ଗୋଟିଏ ରୂପାନ୍ତର; ତେଣୁ ତାହାର ଅସ୍ତିତ୍ୱ ନାହିଁ; ଯେହେତୁ ଭିଜିବା ଓ ଜଳିବା ପରସ୍ପର ବିରୋଧୀ ; ତେଣୁ ଦୁହେଁ ପରସ୍ପରକୁ ନିଷ୍କ୍ରିୟ (neutralize) କରିଛନ୍ତି । ଏଠି "ଲଙ୍ଗଳା-ଜଘ"ର ଚିତ୍ରକଳ୍ପରୁ ଅଶ୍ଳୀଳତା ଆବିଷ୍କାର କରିବା ଭ୍ରମାତ୍ମକ ।

ସାହିତ୍ୟ ସତ୍ୟକୁ ଆବିଷ୍କାର କଲାବେଳେ ନାନା ସ୍ତରରେ ପହଞ୍ଚି ଥାଏ । ଯାହାକୁ ନୃତତ୍ତ୍ୱବିତ୍‌ମାନେ God-Nature-Man complex (ଈଶ୍ୱର-ପ୍ରକୃତି-ମନୁଷ୍ୟ ଗ୍ରନ୍ଥି) ବୋଲି ବ୍ୟାଖ୍ୟା କରିଛନ୍ତି । ଏହି ଗ୍ରନ୍ଥିରେ ପ୍ରତ୍ୟେକ ସ୍ତରରେ ଲେଖକ ତା'ର ନିଜର ଅଭିଜ୍ଞତା ଭିତରେ ସତ୍ୟର ଅନ୍ୱେଷଣ କରେ ; ସେଥିପାଇଁ କେବଳ ଐଶ୍ୱରିକ, ପ୍ରାକୃତିକ, ମାନବିକ ବା ସାମାଜିକ ଏଥିମଧ୍ୟରୁ ଯେ କୌଣସି ଗୋଟିଏ ବିଷୟରେ ହିଁ ସାହିତ୍ୟ

ଲେଖା ହେବ ଏହି ରନ୍ଧ୍ରାଧାର ନେଇ ଆଧୁନିକ ସାହିତ୍ୟକୁ ଅଧ୍ୟୟନ କଲେ ତାହାର ମୂଲ୍ୟାୟନ କରିବା କଷ୍ଟସାଧ୍ୟ ହେବ ।

ଆଜିର ଲେଖକର ମନ-ଦିଗନ୍ତ (mental horizon) ସୁଦୂର-ପ୍ରସାରୀ । ସେ ସ୍ଥାନ ଓ କାଳ ଦୁଇଟି ଆୟାମ (dimension)କୁ ଧରି ତା'ର ଜୀବନଧର୍ମକୁ ଆବିଷ୍କାର କରି ଚାଲିଛି ଏବଂ ଏଇ ଆବିଷ୍କାରର ପଥରେ ସେ ଆଧୁନିକ ସଭ୍ୟତା ଓ ସଂସ୍କୃତିର ମୂଲ୍ୟାୟନ ମଧ୍ୟ କରୁଛି । ଆମର ଯେଉଁ ସାହିତ୍ୟିକମାନେ ନିର୍ଭୀକତା ଓ ନିଷ୍ଠାପରତା ସହ ସେହି ମୂଲ୍ୟାୟନ କରୁଛନ୍ତି, ସେମାନେ ସାର୍ଥକ ସାହିତ୍ୟ ସୃଷ୍ଟି କରୁଛନ୍ତି ଏଥିରେ ସନ୍ଦେହ ନାହିଁ ।

"ହେ ପରମ ଆଦିମୂଳ
ଆଜି ତେଣୁ ମୁକ୍ତି ମାଗେ
ଅଭିଶପ୍ତ ମଥୁରାର ବନ୍ଦୀ ନରଲୋକ
ତୋ ଚରଣ ରେଣୁ ସ୍ପର୍ଶେ
ଝରିଯାଉ ଜୀବନର ଅସାର ନିର୍ମୋକ
ଶେଷ ହେଉ ଧୂସରର,ମୂର୍ଖ ଆଉ ବିଭଙ୍ଗ କାଳର
ଅନ୍ତ ହେଉ ଅଶ୍ଳୀଳ ଓ କୁତ୍ସିତର ରାଜ-ପୂଜା
ଶୁଖିଲା ଆକାଶେ ଜାଗୁ ମେଘମାଳା, ଧ୍ୱାନ୍ତି କଳା ଘୁମର ଘୁମର ।"

(ସୀତାକାନ୍ତ ମହାପାତ୍ର)

ଏହି ଲାଇନଗୁଡ଼ିକୁ ପଢ଼ିଲେ କବି ଭାଷା ଓ ଛନ୍ଦର ମାଧ୍ୟମରେ ପୁରାତନ ଓ ନୂତନ ଯୁଗକୁ ସଂଯୋଗ କରିବା ପାଇଁ କିପରି ପ୍ରୟାସ କରିଛନ୍ତି ଓ ସେହି ପ୍ରୟାସ ବାଟରେ myth ବା ଉପକଥାର କ୍ରିୟା ବେଶ ଜଣାଯାଏ । କୁବୁଜା ଏଠି ଉପଲକ୍ଷ୍ୟ ଏବଂ ଏହି ଚରିତ୍ରଦ୍ୱାରା କବି ତାଙ୍କ ବକ୍ତବ୍ୟକୁ ନାଟକୀୟ ରୂପରେ ବ୍ୟକ୍ତ କରି ନୈର୍ବ୍ୟକ୍ତିକତା ବା impersonalityର ଅବତାରଣା କରିଛନ୍ତି । ଏଠି ଭାଗବତର ବାଣୀ ଓ 'ନରଲୋକ' ପରି ପୁରାତନ ଶବ୍ଦ ପ୍ରୟୋଗଦ୍ୱାରା କାଳର ସଂକୋଚନ କରାଯାଇଛି । 'ଧୂସର'ର ପ୍ରୟୋଗରେ ବିଶେଷଣକୁ ବିଶେଷ୍ୟରେ ପରିଣତ କରାଯାଇ ଅମୂର୍ତ୍ତ (abstract) କୁ ମୂର୍ତ୍ତିମାନ (concrete) କରିବାକୁ ଚେଷ୍ଟା କରାଯାଇଛି । ଏହା ଦ୍ୱାରା ଧୂସରତାର ବ୍ୟାପ୍ତି ସୂଚିତ ହୋଇ ତାହା ଆଧୁନିକ ସଭ୍ୟତାର

ପ୍ରଶ୍ନକରୂପେ ପ୍ରକାଶିତ ହେଉଛି ; ଶବ୍ଦଟିରୁ ହିଁ ଏହି ସଭ୍ୟତା ପ୍ରତି କବିଙ୍କର ବିତୃଷ୍ଣାର ସଂକେତ ମିଳେ । ଏହି ଧୂସରତାର ଶେଷ ପରିଣତି "ମୃତ୍ୟୁ" । ମୃତ୍ୟୁ ସର୍ବଜୟୀ କାଳର ଦୁନ୍ଦୁଭି କିନ୍ତୁ ଆଧୁନିକ ଚେତନାରେ ଏହା "Time's winged chariot" ନ ହୋଇ ମଠରକାରର ଘର୍ଘର ଶବ୍ଦ । ଏଠାରେ କାଳ "ବିଭଙ୍ଗ" ; ଆଜିର "ବିଭଙ୍ଗ" ବା ଆଣବିକୃତ ଚେତନାରେ ଏହି ବିଭଙ୍ଗ କାଳର ଝଙ୍କାର ସ୍ୱାଭାବିକ । ଶେଷରେ କବିଙ୍କର ପ୍ରାର୍ଥନା ଶୁଣିଲି ଆକାଶରେ ମେଘ ପାଇଁ ସେହି ହାଣ୍ଡିକଳା ଘୁମର ଘୁମରରେ Eliotଙ୍କର "Then spoke the thunder" ଅଥବା "The black clouds/Gathered far distant over Himavant." ସଙ୍ଗେ ସଙ୍ଗେ ବେଶି ସୁସ୍ପଷ୍ଟ ଲୋକଗୀତର ଆଭାସ (ମହାନଦୀ ପାଣି କଳା ଘୁମର ଲୋ) ଓ ଚଳନ୍ତି ଭାଷାର ଗ୍ରୁପ୍ (କଳା-ହାଣ୍ଡିଆ ମେଘ) ଓ ଚିତ୍ରକଳ୍ପର ଗୃଢ଼ୁଯ୍ୟ । ଏହି ଆପାତଃ ସରଳ ସଂରଚନ (texture) ଭିତରେ ଯେଉଁ ବ୍ୟଞ୍ଜନା ଏବଂ ଓଡ଼ିଆ ସାହିତ୍ୟର ପରମ୍ପରାର ଯେଉଁ ଉପଲବ୍ଧି ରହିଛି, ତା' ପ୍ରଶଂସନୀୟ ।

ଏହା କହିବାର ଅର୍ଥ ନୁହେଁ ଯେ ସବୁ ସ୍ଥଳରେ ଆଧୁନିକ କବି ବା ଲେଖକ ତାହାର କୃତିରେ ସମାନ ସଫଳତା ପାଇଛି । ସେ ଯେଉଁଠି ଆଧୁନିକ ଚେତନାକୁ ଉପଯୁକ୍ତ ଭାଷାରେ ପ୍ରକାଶ କରିଛି ସେଠି ସେ ସଫଳତା ପାଇଛି ; ସେଇ ସଫଳତାକୁ ବିଚାର କରିବାକୁ ହେଲେ ଆମକୁ I. A. Richardsଙ୍କ ଉକ୍ତିକୁ ମନେ ରଖିବାକୁ ହେବ । "It is never what a poem says that matters but what it is" ଏବଂ Poetry ଜାଗାରେ 'Literature' ବା 'ସାହିତ୍ୟ' ଶବ୍ଦ ପ୍ରତିସ୍ଥାପନା କଲେ ସାହିତ୍ୟ ଉପରେ ସ୍ୱୟଂସଂପୂର୍ଣ୍ଣ କ୍ରିୟା ଏବଂ ସେଥି ସଙ୍ଗେ ଶିଳ୍ପକଳାର କି ସମ୍ପର୍କ ରହିଛି ତାହା ବୁଝିହେବ । ଓଡ଼ିଶାର ସାଂପ୍ରତିକ ସାହିତ୍ୟରେ ତେଣୁ ଦେଖିବାକୁ ମିଳେ ଆଧୁନିକ ଜୀବନର ଘାତପ୍ରତିଘାତ ଏବଂ ତାହା ପ୍ରତି ସାହିତ୍ୟିକର ପ୍ରତିକ୍ରିୟା । ଏହି ପ୍ରତିକ୍ରିୟାରେ ରହିଛି ଜୀବନ ପ୍ରତି କଳାର ପ୍ରାସଙ୍ଗିକତା ବିଷୟରେ ସଚେତନତା । ସେହି ଆଭିମୁଖ୍ୟ ସୂଚିତ ହୋଇଛି ତିର୍ଯ୍ୟକ (oblique) ଉକ୍ତିରେ । ଯେଉଁ ସାହିତ୍ୟରେ ଏହି ପ୍ରକାର ଉତ୍କର୍ଷ ରହିଛି ତାହା ବୁଝିବା ପାଇଁ ଯେତେ କଷ୍ଟସାଧ ହେଲେ ମଧ୍ୟ ପ୍ରଣିଧାନର ଯୋଗ୍ୟ କାରଣ ; ତାହା ପାଠକର ବୁଦ୍ଧି ପ୍ରତି ଏକ

ଆହ୍ୱାନ । ଏପରି ସାହିତ୍ୟର ଅଧ୍ୟୟନ ପାଇଁ Eliotଙ୍କ ମତରେ "fundamental brain work"ର ପ୍ରୟୋଜନ । ସେହି "brain work" ଆଜିର ସାଧାରଣ ପାଠକ ପକ୍ଷରେ ବିବିଧ କାରଣ ଯୋଗୁଁ ଦୁଷ୍କର ହୋଇଛି । ସେଥିପାଇଁ ଜଣେ ପ୍ରସିଦ୍ଧ ସମାଲୋଚକ ଯଥାର୍ଥରେ କହିଛନ୍ତି : "Poetry mattrs little to the modern world ଅର୍ଥାତ୍ ଆଧୁନିକ ଦୁନିଆରେ କବିତା (ସାହିତ୍ୟ)ର ମୂଲ୍ୟ ନାହିଁ ।

ପ୍ରଫେସର ବିଧୁ ଭୂଷଣ ଦାସ

ଏମ୍: ଏ (ପାଟ୍ନା), ଏ : ଏମ୍ (କଲମ୍ବିଆ), ଡି : ଲିଟ୍ (ଅକ୍ସଫୋର୍ଡ୍)

ଏଫ୍ : ଇ : ଡି : ଆଇ (ୱାଶିଂଟନ)

ଉଚ୍ଚ ଶିକ୍ଷା ନିର୍ଦ୍ଦେଶକ, ଓଡ଼ିଶା

ଭୁବନେଶ୍ୱର

# ସାଂପ୍ରତିକ ସାହିତ୍ୟ—
# ଏକ ବିଶେଷ ଦୃଷ୍ଟିକୋଣ

ଶିକ୍ଷା ଓ ସଂସ୍କୃତିର ସଂପ୍ରସାରଣ ସହିତ ସାହିତ୍ୟ କ୍ଷେତ୍ରରେ ଅପୂର୍ବ ଜାଗରଣ ଦେଖାଦେଇଛି ଓ ଏହି ଜାଗରଣକୁ ବର୍ଦ୍ଧନ ନିମନ୍ତେ ଉପକରଣ ସବୁ ବହୁଦୂର ଆଗେଇ ନେଇଛି । ଫଳରେ ଯେଉଁ ସୁଦୂର ଗାଁ-ଗହଳରେ ଦିନେ ଲୋକେ ତାଳପତ୍ର ପୋଥି ଛଡ଼ା ଅନ୍ୟ କିଛି ଦେଖି ନ ଥିଲେ, ଶହେ ଜଣରେ ଜଣେ ବି ଅକ୍ଷର ଚିହ୍ନି ନ ଥିଲେ, ସେଠି ଏବେ ଶିଶୁମାନେ ସ୍କୁଲକୁ ଯାଉଛନ୍ତି, ଗାଁ-ଗହଳ କ୍ଲବଘରେ ସାହିତ୍ୟ ଚର୍ଚ୍ଚା ଚାଲିଛି । ଯେଉଁମାନେ ବେଶି ପାଠଶାଠ ପଢ଼ିଛନ୍ତି, ସେମାନେ କାଗଜପତ୍ରରେ ନିଜ ନାଁ ଦେଖିବାକୁ ବିକଳ ହେଉଛନ୍ତି । ତେଣୁ ବଡ଼ ବଡ଼ ପତ୍ରପତ୍ରିକା ଜୀବନ ସଙ୍କଟରେ ପଡ଼ିଥିଲାବେଳେ ବି ଛୋଟ ଛୋଟ ବହୁ ପତ୍ରପତ୍ରିକା ଆତ୍ମପ୍ରକାଶ କରିବା ପାଇଁ ଚେଷ୍ଟା କରୁଛନ୍ତି । ସ୍କୁଲ-କଲେଜ ମାଗାଜିନଠାରୁ ଆରମ୍ଭ କରି 'ଝଙ୍କାର' ଓ 'କୋଣାର୍କ' ପର୍ଯ୍ୟନ୍ତ ପତ୍ରପତ୍ରିକା କେତେବେଳେ କ୍ଷୀଣ, କେତେବେଳେ ଈଷତ୍ ସ୍ଥୂଳ ରୂପ ଧରି ବାହାରୁଛନ୍ତି । ଏ ଦେଶରେ ମାଗାଜିନ ପ୍ରକାଶ କରିବା ଓ ତାକୁ ବଞ୍ଚାଇ ରଖିବା କିଛି କମ୍ କଷ୍ଟ ନୁହେଁ ।

'ସଂଚୟନ' ଓ 'ସଙ୍କଳନ' ଅନ୍ୟ ଏକ ପନ୍ଥା । ବିଶ୍ୱବିଦ୍ୟାଳୟ ପାଠ୍ୟପୁସ୍ତକମାନଙ୍କ ମଧ୍ୟରେ ଏମାନଙ୍କର କାଟତି ଖୁବ୍ ଭଲ । 'ପରିକ୍ରମା' ମଧ୍ୟ ଏହିପରି ଆଉ ଏକ ଉଦ୍ୟମ । ଆମ ଦେଶରେ ଯେଉଁମାନେ ପତ୍ରପତ୍ରିକା ଚଳାନ୍ତି, ସଂଚୟନ ଓ ସଙ୍କଳନ ଇତ୍ୟାଦି କରନ୍ତି, ସେମାନଙ୍କୁ ବହୁତ ଧାଁ-ଦଉଡ଼ କରିବାକୁ ପଡ଼େ; କାରଣ ଲେଖା ଅର୍ଥକାମୀ ନୁହେଁ ବୋଲି ବହୁ କଷ୍ଟରେ ଲେଖକମାନଙ୍କଠାରୁ ଅନୁଗ୍ରହ ମିଳେ । ଶେଷରେ ଫଳାଫଳ ହୁଏ ତ ବେଶି ଲୋଭନୀୟ ହୁଏ ନାହିଁ । ଶ୍ରୀମାନ୍ ପରୀକ୍ଷିତ ନନ୍ଦ ଗତ ଦୁଇ ବର୍ଷ ହେଲା ତାଙ୍କର ସଙ୍କଳନ ପାଇଁ ଯେପରି ପରିଶ୍ରମ କରିଛନ୍ତି, ତା' ମୁଁ ଆଖିରେ ଦେଖିଛି ଓ ତାଙ୍କଦ୍ୱାରା ସଙ୍କଳିତ 'ମୋ ଦୃଷ୍ଟିରେ ସାଂପ୍ରତିକ ସାହିତ୍ୟ'ର ପ୍ରଥମ ଭାଗ ସାଧାରଣ ଓ କବିତା ଆଲୋଚନା ପଢ଼ିଛି । ଏଥିରେ ବହୁ ପ୍ରସିଦ୍ଧ ସାହିତ୍ୟିକଙ୍କଠାରୁ ଆରମ୍ଭ କରି ବହୁ

ପ୍ରଗତିଶୀଳ ସାହିତ୍ୟିକମାନେ ଲେଖିଛନ୍ତି । ସବୁ ମିଶାଇ ଗୋଟିଏ କଥାରେ କହିଲେ ଏହା ଏକ ଉପାଦେୟ ସଂକଳନ ଓ ସଂକଳକଙ୍କର ଶ୍ରମ ଯଥାର୍ଥ ।

ଏ ପୁସ୍ତକର ପ୍ରଥମ ଭାଗର ମୁଖବନ୍ଧ ଲେଖିବା ପାଇଁ ମୋତେ କହିବା ନିଶ୍ଚୟ ମୋ ପ୍ରତି ଅନୁଗ୍ରହ ଓ ସଂଗ୍ରାହକଙ୍କର ନିଜ ପ୍ରତି ନିଷ୍ଠୁରତା । ତଥାପି କବିତା ଏପରି ଗୋଟାଏ ଜିନିଷ ଯାହା ଅଜ୍ଞ ମଧ୍ୟ ଅଳ୍ପବହୁତ ବୁଝେ । ତେବେ ସାହିତ୍ୟ ଓ କାବ୍ୟକବିତା ବିଷୟରେ ସାହିତ୍ୟିକମାନେ କ'ଣ କହିଛନ୍ତି, ତାହା ଦେଖିବା ପୂର୍ବରୁ ଭାଷାବିତ୍‌ମାନେ ସାହିତ୍ୟ ସଂପର୍କରେ କ'ଣ କହିଛନ୍ତି, ସଂକ୍ଷେପରେ ଆଲୋଚନା କରାଯାଇପାରେ ।

ଭାଷାବିତ୍ ଓ ସାହିତ୍ୟିକ ଉଭୟେ ଭାଷାକୁ ନେଇ କାମ କରନ୍ତି । ଭାଷାବିତ୍‌ମାନେ ଭାଷାକୁ ବିଶ୍ଳେଷଣ କରି ତା'ର ଅନ୍ତର୍ନିହିତ ଶକ୍ତି ଓ ପଦ୍ଧତି ପରୀକ୍ଷା କରନ୍ତି ଓ ସାହିତ୍ୟିକମାନେ ଭାଷା ସାହାଯ୍ୟରେ ସାହିତ୍ୟର ସୌଧ ନିର୍ମାଣ କରନ୍ତି । ତଥାପି ପ୍ରାଚୀନ ବିଚାରଧାରାରେ ଯେ କାଳର ଭାଷାବିତ୍ ଅର୍ଥାତ୍ ବୈୟାକରଣମାନଙ୍କୁ ସାହିତ୍ୟଦୃଷ୍ଟିରୁ ବେରସିକ ବୋଲି ମନେ କରାଯାଉଥିଲା । ଏବେ ମଧ୍ୟ ପୃଥିବୀର ଉନ୍ନତ ଦେଶମାନଙ୍କରେ ସାହିତ୍ୟିକ ଓ ଭାଷାବିତ୍‌ମାନଙ୍କ ମଧ୍ୟରେ ଏକପ୍ରକାର ଅବୁଝାମଣା ରହିଛି ; କିନ୍ତୁ ଭାଷାବିତ୍‌ମାନେ ଭାଷାଶିକ୍ଷାକୁ ସହଜ କରି ସାହିତ୍ୟକ୍ଷେତ୍ରରେ ଅଧିକ ପ୍ରବେଶ ପାଇଁ ରାସ୍ତା ସଫା କରନ୍ତି, ଏଥିରେ ସନ୍ଦେହ ନାହିଁ ।

ନୃତ୍ୟ, ଗୀତ, ସଙ୍ଗୀତ, ଭାସ୍କର୍ଯ୍ୟ ପରି ସାହିତ୍ୟ ଏକ କଳା । ଭାଷା-କଞ୍ଚାମାଲରୁ ଏହା ପ୍ରସ୍ତୁତ ହୁଏ । ଭାଷାବିତ୍‌ଙ୍କ ଅସଲ ବିଚାର୍ଯ୍ୟ ମଣିଷର ମୁଖନିଃସୃତ ଭାଷା । ଭାଷାବିତ୍ ସି. ଏଫ୍. ହକେଟ୍‌ଙ୍କ ମତରେ ସାହିତ୍ୟ ହେଲା, "Excellence of speech and special style" ମନୁଷ୍ୟ ଯେଉଁ ଭାଷାରେ କଥା କହେ ତାକୁ-ଇ ନେଇ ସାହିତ୍ୟ ଗଢ଼େ । ସେହି କଥିତ ଭାଷାର ମାର୍ଜିତ ରସମୟ ତଥା ଶୈଳୀମୟ ପ୍ରକାଶ । ସାହିତ୍ୟର ଲକ୍ଷ୍ୟ ମନୁଷ୍ୟ ଯେଉଁ କଥା କହୁଛି, ସାହିତ୍ୟିକ ଗଳ୍ପ ଲେଖିଲାବେଳେ ସେହି କଥାକୁ କେମିତି ଅବାରିତ ଭାବରେ ସହଜରେ ଲେଖିପାରିବ, ସେଥିପାଇଁ ଭାଷାକୁ ପ୍ରସ୍ତୁତ କରିବା ଭାଷାବିତ୍‌ର କାମ ।

ସାହିତ୍ୟକୁ ପ୍ରକାଶ କରାଯାଏ ଗଦ୍ୟ ଓ ପଦ୍ୟରେ । ପଦ୍ୟ ସବୁ ଭାଷାରେ ନ ଥାଇ ପାରେ । ତଥାପି ଗଦ୍ୟ-ପଦ୍ୟ ମଧ୍ୟରେ ଯେଉଁ ମୌଳିକ

ତଫାତ୍ ଅଛି, ଭାଷାତତ୍ତ୍ୱ ଦୃଷ୍ଟିରୁ ତାହାକୁ ଦୁଇଟି ବିଭିନ୍ନ ପାର୍ଶ୍ୱରୁ ବୁଝାଯାଏ। ଗଦ୍ୟରେ ଶବ୍ଦମାନଙ୍କର ସାଜସଜ୍ଜାର ପଦ୍ଧତି ପଦ୍ୟ ସାଜସଜ୍ଜାଠାରୁ ଭିନ୍ନ। ଗଦ୍ୟରେ ସାଧାରଣ ବ୍ୟାକରଣକୁ ଯେମିତି ସମ୍ମାନ କରାଯାଏ, ପଦ୍ୟରେ ସେପରି କରାଯାଏ ନାହିଁ ; ବରଂ ପଦ୍ୟରେ ଧ୍ୱନି ଓ ସେମାନଙ୍କର ସାଜସଜ୍ଜା ପ୍ରତି ବେଶି ଦୃଷ୍ଟି ଦିଆଯାଏ। ଅଧିକାଂଶ କବିତା ଛନ୍ଦଯୁକ୍ତ ଓ ଏହି ଛନ୍ଦରେ ବ୍ୟାକରଣ ଅପେକ୍ଷା ଧ୍ୱନିର ବିଚାର ଅଧିକ। ଭାଷାବିତ୍ କହନ୍ତି :—

> "The definition of verse obviously depends on phonological rather than grammatical properties of the discourse."

ଯେତେବେଳେ ଛାପାଖାନାର ପ୍ରଚଳନ ନ ଥିଲା, ସେତେବେଳେ ଅଧିକାଂଶ କାବ୍ୟକବିତାର ସ୍ୱରୂପ ଆଖିରେ ଦେଖି ହେଉ ନ ଥିଲା, କେବଳ କାନରେ ଯାହା ଶୁଣାଯାଉଥିଲା। କିନ୍ତୁ ମୁଦ୍ରଣ କୌଶଳ ପ୍ରଚଳିତ ହେବା ପରେ କାବ୍ୟକବିତାର ସ୍ୱରୂପ କିପରି ପରିବର୍ତ୍ତିତ ହେଲା, ତାହା ଭାଷାବିତ୍‌ମାନଙ୍କର ଦୃଷ୍ଟି ଆକର୍ଷଣ କରିଛି। ପଦ୍ୟ ଯେମିତି ଲେଖାଯାଏ, ଗଦ୍ୟ ସେମିତି ଲେଖାଯାଏ ନାହିଁ। ପଦ୍ୟ ପାଦକୁ ପାଦ, ଚରଣକୁ ଚରଣ ଲେଖାଯାଏ ; କିନ୍ତୁ ଗଦ୍ୟ ବାକ୍ୟ ପରେ ବାକ୍ୟ ଲେଖାଯାଏ। କିନ୍ତୁ ପଦ୍ୟକୁ ଗଦ୍ୟ ଆକାରରେ ଲେଖି ସ୍ୱତନ୍ତ୍ର ପ୍ରଭାବ ସୃଷ୍ଟି କରିବାର ପ୍ରଥା ଇଂରେଜୀରେ ଅନେକ ଦିନୁ ଆରମ୍ଭ ହୋଇଛି। ଉଦାହରଣ ସ୍ୱରୂପ :—

> "The day is done, and the darkness
> Falls from the winds of Night
> As a feather is wafted down words
> From an eagle in his flight."

 କବିତାଂଶ ଅନୁସରଣରେ ଗଦ୍ୟଶୈଳୀରେ ମଧ୍ୟ ଯାହା ଲେଖାଯାଇଛି ତାହା କବିତାର ଅନ୍ୟ ଏକ ରୂପ ବୋଲି ଗୃହୀତ ହୋଇଛି :—

> "The day is done, and the darkness falls from the winds of Night, as a feather is wafted downward from an eagle in the flight. I see the lights of the village gleam through the vain and mist,......"

ଏହାପରେ ମୁଦ୍ରଣ ଶିଳ୍ପର ବିକାଶ ପରେ କବିତାର ପଙ୍‌କ୍ତି ସଜ୍ଜାରେ ନାନା ପ୍ରକାର ନୂତନ ପରୀକ୍ଷା ଚାଲିଲା ଓ ଏବେ ମଧ୍ୟ ଚାଲିଛି । ସପ୍ତଦଶ ଶତାବ୍ଦୀରେ ଜର୍ଜ ହର୍ବର୍ଟ ଗୋଟିଏ କବିତା ଲେଖିଥିଲେ, ନାଁ "The Altar" । ସେଥିରେ ପଙ୍‌କ୍ତିସବୁ ଏମିତି ସଜା ହୋଇଥିଲା ଯେ କବିତାର ଛପାଟା ଗୋଟାଏ ବେଦୀ ପରି ଦେଖାଯାଉଥିଲା । ପ୍ରଥମ ଧାଡ଼ି ଓ ଶେଷ ଧାଡ଼ି ସବୁଠୁ ଲମ୍ବା । କବିତାର ମଧ୍ୟମ ଧାଡ଼ି ସବୁଠୁ ଛୋଟ । ତଳୁ ଓ ଉପରୁ ଧାଡ଼ିସବୁ ଆସ୍ତେ ଆସ୍ତେ ଛୋଟ ହୋଇ ଆସି ସବୁଠୁ ଛୋଟ ମଧ୍ୟମ ଧାଡ଼ିରେ ପହଞ୍ଚିଥିଲା । "Fury said to a mouse" ପଙ୍‌କ୍ତିରେ ଲୁଇ କାର୍ଲଙ୍କର ଯେଉଁ କବିତା ଆରମ୍ଭ ହୋଇଥିଲା, ତାହା ତଳକୁ ତଳ ମୂଷାଲାଞ୍ଜ ପରି ପୃଷ୍ଠାର ତଳ ପର୍ଯ୍ୟନ୍ତ ଲମ୍ବି ଯାଇଥିଲା ।

ମୁଦ୍ରଣ ଶିଳ୍ପର ପ୍ରଚଳନ ପୂର୍ବରୁ ଲୋକମୁଖରେ ଯେଉଁସବୁ କବିତା ପ୍ରଚଳିତ ହେଉଥିଲା, ତାହା ଭାଷାର ପରିବର୍ତ୍ତନ ଅନୁସାରେ କାଳକ୍ରମେ ପରିବର୍ତ୍ତିତ ହୋଇ ତାହା ପ୍ରଚଳିତ ଭାଷା ସଙ୍ଗେ ତାଳ ରଖି ଚାଲୁଥିଲା । ଏବେ କିନ୍ତୁ କବିତାଗୁଡ଼ିକ ଥରେ ଛପା ହୋଇଗଲା ପରେ ଭାଷା ସହିତ ତା'ର ଆଉ ପରିବର୍ତ୍ତନ ହୋଇପାରୁ ନାହିଁ । କେତେକ ଭାଷାବିତ୍ କହନ୍ତି, ସେକ୍‌ସପିଅରଙ୍କ କବିତା ମାତ୍ର ଚାରି ଶହ ବର୍ଷର ହେଲେ ମଧ୍ୟ ଏହି ଅପରିବର୍ତ୍ତନ ଯୋଗୁଁ ତାହା ବୁଝିବା କଷ୍ଟକର ହେଲାଣି । ତଥାପି ତାହା ଏପରି କୌଶଳରେ ରଚିତ ଯେ ଏବେ ମଧ୍ୟ ତାହା ଲୋକମାନଙ୍କୁ ପ୍ରଭାବିତ କରୁଛି । ତଥାପି ସମୟକ୍ରମେ ତାହା ମଧ୍ୟ ଲୋକଙ୍କ ପାଇଁ ଅବୋଧ୍ୟ ହୋଇ ପଡ଼ିବ ; ଅଳ୍ପ ଯେଉଁ କେତେଜଣ ପ୍ରାଚୀନ ଭାଷା ଓ ସାହିତ୍ୟରେ କାମ କରିବେ ସେମାନଙ୍କ ପାଇଁ ତାହା ଉପାଦାନ ଯୋଗାଇବ । * ଅନେକଙ୍କର ଧାରଣା ଯେ ସେକ୍‌ସପିଅର

---

* The poetry of Shakespeare written only four hundred odd years ago is still largely understandable and was so extremely will cortrived that if still moves many of us deeply, yet nothing can prevent it from suffering in the end the same fate its stylistic merits will in due time be lost forever to all but a handful of antiquarians.

(A course in modern linguistics by C. F. Hockett Chap. Literature. )

ଓ ମିଲ୍‌ଟନ୍‌ଙ୍କ ପରି ବଡ଼ ବଡ଼ କବିମାନେ ସାହିତ୍ୟର ଭାଷାକୁ ବଦଳାଇ ଦିଅନ୍ତି, କିନ୍ତୁ ଭାଷାବିତ୍‌ମାନେ କହନ୍ତି ଯେ ସେମାନେ ପ୍ରକୃତରେ ଭାଷାକୁ ବଦଳାନ୍ତି ନାହିଁ। ବରଂ ଯେଉଁ କବି ଲୋକଭାଷାରେ ଯେତିକି ବ୍ୟୁତ୍ପତ୍ତି-ଲାଭ କରିଥାନ୍ତି, ସେମାନେ ସେତିକି ଅଧିକ ଲୋକପ୍ରିୟ ହୁଅନ୍ତି ଓ ସେମାନଙ୍କର ସୃଷ୍ଟି ସେତିକି ଅଧିକ କାଳ ପାଠକମାନଙ୍କୁ ପ୍ରଭାବିତ କରେ। ପ୍ରକୃତରେ ଦେଖିବାକୁ ଗଲେ ପ୍ରକୃତ ବଡ଼ କବି ଭାଷାକୁ ଯେତିକି ଦାନ ଦେଇଥାନ୍ତି, ଭାଷାରୁ ତା'ଠାରୁ ଢେର ବେଶୀ ଦାନ ଗ୍ରହଣ କରିଥାନ୍ତି। ସେହି କଥାକୁ ଭାଷାବିତ୍ କହନ୍ତି, "So far as language is concerned, the greatest of literary artists is infinitely more a recipient than a donor."

ମୋଟ ଉପରେ କେବଳ ଭାଷାତତ୍ତ୍ୱ ଦୃଷ୍ଟିରୁ ବିଚାର କଲେ ଗଦ୍ୟ ଓ ପଦ୍ୟ ଭାଷା ଷ୍ଟ୍ରକ୍‌ଚରର ବିଭିନ୍ନ ପ୍ରୟୋଗ। ଲିଖନ ପଦ୍ଧତି, ବିଶେଷତଃ ଛାପାଖାନାର ପ୍ରଚଳନ ପରେ କବିତାର ଲିଖନଭଙ୍ଗୀରେ ବହୁ ପରିବର୍ତ୍ତନ ଦେଖାଦେଇଛି। ଏବେ ଯେଉଁ ସଜ୍ଜୀକରଣ ପଦ୍ଧତିକୁ ଆଧୁନିକ ପଦ୍ଧତି ନାମରେ ଭାରତୀୟ କବିତାମାନଙ୍କରେ ବ୍ୟବହାର କରାଯାଉଛି, ତାହା ତିନି ଶହ ବର୍ଷ ତଳେ ଇଂରେଜ କବିତା କ୍ଷେତ୍ରରେ ଦେଖାଯାଇଥିବା କଥା ଆଗରୁ କୁହାଯାଇଛି। ଭାଷାତତ୍ତ୍ୱବିତ୍ ଭାବ କଥା ବିଚାର ନ କରି ଯଦି କେବଳ ଭାଷା କଥା ବିଚାର କରନ୍ତି, ତେବେ ବି ଦେଖାଯିବ ଓଡ଼ିଆ କାବ୍ୟକବିତାର ଭାଷାରୂପ ଏବେ ଅନେକ ବଦଳି ଯାଇଛି।

ଆଲୋଚ୍ୟ ପୁସ୍ତକରେ ପ୍ରାଚୀନ-ଆଧୁନିକ ଉଭୟ ସାହିତ୍ୟ କଥା କେଉଁ କେଉଁ ଆଲୋଚନା କରିଥିଲେ ମଧ୍ୟ ସମସ୍ତେ ଆଧୁନିକ କବିତା ଉପରେ ବିଶେଷ ଭାବରେ ବିଚାର କରିଛନ୍ତି। ଦେବ, ଦେହ ଓ ଦେଶର ଚିନ୍ତା ଅତିକ୍ରମ କରି ଆଧୁନିକ କବିତା କିପରି ବ୍ୟକ୍ତି ନିକଟରେ ପହଞ୍ଚି ନିତାନ୍ତ ଅବୋଧ ହୋଇ ଉଠିଛି, ସେହି କଥା ଅନେକେ କହିଛନ୍ତି। ପ୍ରଥମେ ଆମ କାବ୍ୟକବିତାରେ ଦେବତାର ଚିନ୍ତା ଅଧିକ କରାଯାଇଥିଲା। ତେଣୁ ସାହିତ୍ୟ କହିଲେ ପୁରାଣ, ଭାଗବତ, ଯୋଗ, ତନ୍ତ୍ର ଏହିସବୁ ବୁଝାଉଥିଲା। ତା' ପରେ ରୀତିଯୁଗରେ ଶରୀରର ସୌନ୍ଦର୍ଯ୍ୟ ଓ ସ୍ଥୂଳପ୍ରଣୟ ନେଇ ଯେଉଁ କାବ୍ୟକବିତା ସବୁ ଲେଖାହେଲା, ସେଥିରେ 'ନାରୀ ଓ ଭକ୍ତସନାରୀ' ଦୁଇଟି କଥା ପ୍ରଧାନ ହୋଇ ଉଠିଲା। ଏହି ପ୍ରାଚୀନତାର ଭୂମିକାରେ

ଯେଉଁମାନେ ନୂତନ ବୋଲାଇଲେ, ସେମାନଙ୍କ ମଧ୍ୟରେ ଦେଶାତ୍ମବୋଧ ଓ ଦେଶପ୍ରୀତି, ଅତୀତର ଇତିହାସ ଓ କିମ୍ବଦନ୍ତୀର ପୁନରୁତ୍ଥାନ ଥିଲା କାବ୍ୟକବିତାର ପ୍ରଧାନ ଉପଜୀବ୍ୟ । ଏବେ କିନ୍ତୁ ଏହି ବିଜ୍ଞାନଯୁଗରେ ବହୁପ୍ରକାର ବୈଜ୍ଞାନିକ ଆବିଷ୍କାର, ମନୋବୈଜ୍ଞାନିକ ତଥା ସାମାଜିକ ବିପ୍ଳବ, ମାର୍କ୍ସ୍‌ବାଦୀ ଚିନ୍ତାଧାରା ଆଧୁନିକ ଜୀବନର ବ୍ୟସ୍ତତା ବିଖଣ୍ଡିତା ନେଇ ନୂତନ କବିତାର ସଂସାର ଗଢ଼ିଉଠିଛି ଓ ଏହି ସଂସାର ପୂର୍ବ ଅପେକ୍ଷା ଟେଷ୍ଟିମ ଅଡ଼ଳୁ ବେଶି ମୁହାଁ କରି ରହିଛି । କାର୍ଲ୍ ମାର୍କସଙ୍କର ଧବହୂର୍ଚ୍ଚର ସ୍ୱପ୍ନ ଓ ଫ୍ରଏଡ଼ଙ୍କର ଅବଚେତନ ମନର ଅଦେଖା ସାମ୍ରାଜ୍ୟ ଆଧୁନିକ କବିମାନଙ୍କୁ ସାଧାରଣ ଜନତାଠାରୁ ବହୁଦୂରକୁ ନେଇଯାଇଛି । ଫଳରେ ଏହି ବିଚାରଧାରାଠାରୁ ଦୂରରେ ଥିବା ସାଧାରଣ ପାଠକ ଓ ଆଧୁନିକ କବିମାନଙ୍କ ଭିତରେ ଦୂରତା ବଢ଼ିଯାଇଛି । କେବଳ ସାଧାରଣ ପାଠକ ନୁହନ୍ତି; ଏହି ପୁସ୍ତକରେ ସମାଲୋଚନା କରିଥିବା ବଡ଼ ବଡ଼ କବି ଓ ଲେଖକ ମଧ୍ୟ ଆଧୁନିକ କବିତା ବୁଝି ନ ପାରି ବିଶେଷ ଭାବରେ ବ୍ୟସ୍ତ-ବ୍ୟାକୁଳ ହୋଇ ଉଠିଛନ୍ତି । ତେଣୁ ଏହି ପୁସ୍ତକରେ ଆଧୁନିକ କବିତାର ସପକ୍ଷ-ବିପକ୍ଷ ଦୁଇପ୍ରକାର ଆଲୋଚନା ଦେଖିବାକୁ ମିଳେ ।

ସପକ୍ଷବାଦୀମାନେ କହନ୍ତି, ନୂତନର ଆଗମନରେ ପୁରାତନର ଯେଉଁ ଭୟ, ସେହି ଭୟରେ ପାଠକମାନେ ବୋଧହୁଏ ବିଚଳିତ । ଯେ କୌଣସି ନୂତନ ଚିନ୍ତାକୁ ପ୍ରଥମେ ଯେମିତି ପ୍ରତିରୋଧର ସମ୍ମୁଖୀନ ହେବାକୁ ପଡ଼େ; କିନ୍ତୁ କାଳକ୍ରମେ ପ୍ରତିରୋଧର ସ୍ୱର ପୁଣି ସ୍ୱାଗତ ସଙ୍ଗୀତରେ ପରିଣତ ହୁଏ, ଏହି ନୂତନ କବିତାକ୍ଷେତ୍ରରେ ଠିକ ସେହି କଥା ହେବ; ସେଥିପାଇଁ ଆମ୍ଭମାନଙ୍କୁ କେବଳ ସହାନୁଭୂତିର ସହିତ ଅପେକ୍ଷା କରିବାକୁ ହେବ । ଆଧୁନିକ କବିତାର ଗୁଣ ଅନେକ । ପୃଥିବୀର ସବୁ ଦେଶର ବର୍ତ୍ତମାନ ସାହିତ୍ୟରେ କବିତାର ଏହି ଆଧୁନିକ ଧାରା ପ୍ରଚଳିତ ଥିବାରୁ ଓ ତାହା ବର୍ତ୍ତମାନ ଓଡ଼ିଆ ସାହିତ୍ୟରେ ଆତ୍ମପ୍ରକାଶ କରିଥିବାରୁ ଓଡ଼ିଆ ସାହିତ୍ୟ ନିଶ୍ଚୟ ଆନ୍ତର୍ଜାତିକ ଉଚ୍ଚତାକୁ ଉନ୍ନୀତ ହୋଇଛି । ଅନ୍ୟ ପକ୍ଷରେ ଆଧୁନିକ କବିତା, ଗଦ୍ୟ କବିତା ଓ ଆଧୁନିକ କବିମାନେ ଗଣର କବି । ଏହି ଆଧୁନିକ ଓଡ଼ିଆ କବିମାନଙ୍କ ମଧ୍ୟରେ ଇଲିଅଟ୍ ଓ ଏଜରା ପାଉଣ୍ଡଙ୍କ ସମ୍ମାନ ପାଇବା ଭଳି ଲୋକଙ୍କର ଅଭାବ ନାହିଁ । ବର୍ତ୍ତମାନ କବି ଓ ପାଠକମାନଙ୍କ ମଧ୍ୟରେ ଯେଉଁ ବ୍ୟବଧାନ ରହିଛି, ତାହା କାଳକ୍ରମେ ସୁଧୁରି ଯିବ ।

ଅନ୍ୟ ପକ୍ଷରେ ବିପକ୍ଷବାଦୀମାନଙ୍କ ମଧ୍ୟରୁ ଜଣେ କହନ୍ତି, "ଇଂଲଣ୍ଡରେ, ଆମେରିକାରେ, ଫ୍ରାନ୍ସରେ ଯେପରି ଏଲିୟଟ୍, ମାଲର୍ମେ ଇତ୍ୟାଦିଙ୍କର ଅମଳ ସରିଯାଇଛି, ଓଡ଼ିଶାରେ ଯେହେତୁ ଆଧୁନିକ କବିତାର ସାମାଜିକ ଭିତ୍ତି ନାହିଁ, ତେଣୁ ତାହା ଏକ କୃତ୍ରିମ ବିଦ୍ରୋହ ; ଅତଏବ ଓଡ଼ିଶାରେ ଏହାର ଅବସାନ ପୂର୍ବ-ୟୁରୋପଠାରୁ ଆହୁରି ତୁରନ୍ତ 'ହୋଇଯିବ" (ପୃ. ୪୯) । ଆଉ ଜଣେ ସମାଲୋଚକ କେବଳ ଆଧୁନିକ କବିତା ନୁହେଁ ; ସମଗ୍ର ଆଧୁନିକ ଓଡ଼ିଆ ସାହିତ୍ୟ ବିଷୟରେ କହନ୍ତି, "ଅଶୀତର ସାହିତ୍ୟରେ ଗଣର ଆଭିମୁଖ୍ୟ ଦାରୁଣ ଅବହେଳିତ ବୋଲି ଅଭିଯୋଗ ହେଉଛି । ମାତ୍ର ବେଳେବେଳେ ସଂପ୍ରତିକ ଭାବରେ ସାହିତ୍ୟ ଗଣର ତ ନୁହେଁ, ସାଧାରଣ ଶିକ୍ଷିତ ସମାଜର ମଧ୍ୟ ନୁହେଁ, ଏହା ଅତ୍ୟନ୍ତ 'ଗଣ୍ୟ' ମାନଙ୍କର ହୋଇ ରହିଯାଇଛି (ପୃ. ୧୦୭) । ବାସ୍ତବିକ ଆଧୁନିକ ଲେଖକ ନିଜ ପ୍ରତିଭାର ଜ୍ୱାଳାରେ ଜର୍ଜରିତ । ସେ ପୁଣି ଏପରି ଲେଖେ, ଏପରି ଚିନ୍ତା କରେ ଯେ ତାହା କେବଳ ତାହାର ନିଜସ୍ୱ ହୋଇଯାଏ" (ପୃ. ୧୦୮) । ଏହା ଆଧୁନିକ ସାଧାରଣ ସାହିତ୍ୟ ପ୍ରତି ପ୍ରଯୁଜ୍ୟ ହେଲେ ମଧ୍ୟ ଆଧୁନିକ ଓଡ଼ିଆ କବିତା ପାଇଁ ବିଶେଷ ପ୍ରଯୁଜ୍ୟ । ଆଉ ଜଣେ ସମାଲୋଚକ କହନ୍ତି, "ଦୁର୍ବୋଧ୍ୟତା ନାମରେ କବିତାରେ ଯେଉଁ ଆତସବାଜି ଚାଲିଛି, ତାହା ଚିରକାଳ କବିତାକୁ ପଙ୍ଗୁ କରିଦେବ, ଏଥିରେ ସନ୍ଦେହ ନାହିଁ । କେବଳ ମସ୍ତିଷ୍କର ବଡ଼େଇ କରି କମ୍ପ୍ୟୁଟର ମଧ୍ୟ କବିତା ଲେଖିପାରେ । ତାହାର ଯେପରି କୌଣସି ଅର୍ଥ ନାହିଁ, ହୃଦୟବିହୀନ କବିତାର ମଧ୍ୟ କୌଣସି ଅର୍ଥ ନାହିଁ (ପୃ. ୨୦୪) ।

"ମୋଟ ଉପରେ ଦେଖିବାକୁ ଗଲେ ଓଡ଼ିଆ କବିତା-ରାଜ୍ୟରେ ଏକ ଅନିର୍ଦ୍ଦିଷ୍ଟ ସମୟ ଆସି ପହଞ୍ଚିଛି । ଅନେକ ପ୍ରକାର ପରୀକ୍ଷାନିରୀକ୍ଷା ଚାଲିଛି । କାଳର କରାଳ କଷଟି ନିକଟରେ କିଏ ତିଷ୍ଠିବ, କିଏ ଧ୍ୱଂସ ଲଭିବ କହିବା ମୁସ୍କିଲ । ଖୁଦ କିଏ, କୁଣ୍ଡା କିଏ, ତାହା ପରେ ନିଶ୍ଚୟ ଜଣାପଡ଼ିବ ; କିନ୍ତୁ ଈଶପଙ୍କ କାହାଣୀର ଅଦୃଶ୍ୟ ପୋଷାକ ଆଉ କେତେ ଦିନ ପିନ୍ଧି ଆମ୍ଭମାନଙ୍କୁ ଭଲ ପୋଷାକ ବୋଲି କହିବାକୁ ପଡ଼ିବ ଦେଖିବାକୁ ବାକି ରହିଲା" (ପୃ. ୨୦୫) ।

ସାଧାରଣ ଭାବରେ କହିବାକୁ ଗଲେ ଓଡ଼ିଶାର ଆଧୁନିକ ସାହିତ୍ୟ ବିଶେଷତଃ ଆଧୁନିକ କବିତା, ଉଦ୍ଭଟ ନାଟକ ଓ ଉଦ୍ଭଟ

କ୍ଷୁଦ୍ରଗଳ୍ପ ଇତ୍ୟାଦି ସପକ୍ଷରେ କମ ଓ ବିପକ୍ଷରେ ଅଧିକ ଯୁକ୍ତି ଦେଖିବାକୁ ମିଳୁଛି । ଆଧୁନିକ ସାହିତ୍ୟ ବିଷୟରେ ଯୁକ୍ତି ହେଉଛି ଯେ ଆମ ଦେଶରେ ଆଧୁନିକ ସାହିତ୍ୟ କେବଳ ଅଳ୍ପ କେତେକଜଣଙ୍କ ଉଦ୍ଦେଶ୍ୟରେ ଲିଖିତ; ସାଧାରଣ ସ୍ୱଳ୍ପଶିକ୍ଷିତ ଜନତାଠାରୁ ତାହା ବହୁତ ଦୂରରେ । ଶିକ୍ଷିତ ପାଠକ ମଧ୍ୟରେ ଯଦି ଆଧୁନିକ ସାହିତ୍ୟ ଅବୋଧ, ତାହାହେଲେ ସାଧାରଣ ପାଠକ ନିକଟରେ ତାହା ଏକାନ୍ତ ଅପରିଚିତ । କେତେକଙ୍କ ମତରେ ତାହା ଖାଲି 'ନିରର୍ଥକ ପାଣି ଘାଣ୍ଟିଆ' । ବାସ୍ତବରେ ଆମ ଦେଶରେ ଅନେକ ଆଧୁନିକ ଲେଖା ଦେଖିଲେ ମନେହୁଏ, ଲେଖକ ବୋଧହୁଏ ବର୍ତ୍ତମାନର ପାଠକମାନଙ୍କ ପାଇଁ ନ ଲେଖି ଭବିଷ୍ୟତର କାହା ପାଇଁ ହୁଏ ତ ଲେଖିଛନ୍ତି । ଯେ କୌଣସି ଲେଖାର ବିଶିଷ୍ଟ ଅଙ୍ଗ ତାର ଭାଷା । ତୁଣ୍ଡ ଯାହା ଥାଉ ପଛେ, ରୂପଟା ଅସୁନ୍ଦର ହେଲେ ମୂଳରୁ ମନ ଭାଙ୍ଗିଯାଏ । ଏହା ଏକ ସାଧାରଣ କଥା । ସେଇଥିପାଇଁ କଥାରେ ଅଛି—ଭେକ ନ ଥିଲେ ଭିକ ମିଳେ ନାହିଁ । ଆଜିକାଲି ଯୁଗରେ ସାଧାରଣ ଲୋକ କେଉଁ ଭାଷାରେ ବୁଝେ, କେଉଁ ଭାଷାରେ ନିଜକୁ ପ୍ରକାଶ କରେ, ଏହାର ପରୀକ୍ଷା ଅନେକ ଦେଶରେ ଚାଲିଛି ; କିନ୍ତୁ ଆମ ସାହିତ୍ୟରେ ଆମେ ଦେଖୁ ଯେଉଁମାନଙ୍କ ପାଇଁ ଆମେ ଲେଖୁ, ସେମାନଙ୍କ ଭାଷା ଉପରେ ଆମର ଦଖଲ ନ ଥାଏ । ଶିଶୁ ପାଇଁ ଲେଖିଲେ ପ୍ରୌଢ଼ଭାଷା ପ୍ରୟୋଗ କରୁ, ପ୍ରୌଢ଼ ପାଇଁ ଲେଖିଲେ ପଣ୍ଡିତମାନଙ୍କର ଭାଷା ପ୍ରୟୋଗ କରୁ । ରୁଷଦେଶର ମାର୍‌ବୋଲ ଜଣେ ଭାଷାବିତ୍ କହୁଥିଲେ, ଯଦି ଜନତାର ନିର୍ଦ୍ଦେଶରେ ଶାସନ ଚାଲିବ, ତା' ହେଲେ ଜନତାର ଭାଷାରେ ସବୁ କାର୍ଯ୍ୟ କରାଯିବ । ଉପର ଶ୍ରେଣୀର ଅବୋଧ ଭାଷାକୁ ପରିତ୍ୟାଗ କରିବାକୁ ହେବ । ଏପରି ଏକ ଉଗ୍ର ଚିନ୍ତାକୁ ପ୍ରୟୋଗ କରିବା ଯଦିଓ ସହଜ ନୁହେଁ, ତଥାପି କବି ଓ ଲେଖକମାନେ ଜନତାକୁ ଚାହିଁ ଲେଖିଲାବେଳେ ଭାଷା ଜନତାର ଅବୋଧ ହେଲେ ଉଦ୍ଦେଶ୍ୟ ନଷ୍ଟପ୍ରାୟ ହିଁ ହେବ । ଯେଉଁ ସାହିତ୍ୟକୁ ଦେଶ ସାରା ସମସ୍ତେ ମୁଣ୍ଡରେ ବୋହି ଚାଲନ୍ତେ, ତାହା ଯଦି ଅଳ୍ପ କେତେଜଣ ବହନ କରିବାକୁ ବାଧ୍ୟ ହେବେ, ତେବେ ସାହିତ୍ୟିକ ଅଗ୍ରଗତିରେ ବାଧା ଉପୁଜିବାର ଯଥେଷ୍ଟ ସମ୍ଭାବନା ଅଛି ।

ଆଧୁନିକ କବିତା ଅବୋଧ—ଏହି ହେଲା ଚରମ ଅଭିଯୋଗ । ଏହି ଅଭିଯୋଗର ଉପାଦାନ ହେଲେ ବ୍ୟକ୍ତିକେନ୍ଦ୍ରିକତା, ବୌଦ୍ଧିକତା ଓ ଭାଷାପ୍ରୟୋଗ ବିଧିର ନୂତନତା ।

କବି ଯୁକ୍ତି କରନ୍ତି ଯେ ନିଜର କବିତା ସୃଷ୍ଟିରେ ସେ ନିତାନ୍ତ ଏକାନ୍ତ, ନିଜ ଅନୁଭୂତି ଓ ଅଭିବ୍ୟକ୍ତିରେ ସେ ବିଭୋର । ଅନ୍ୟ କିଏ କ'ଣ ଭାବୁଛି, ବୁଝୁଛି, ସେ ବିଷୟରେ ଚିନ୍ତା କରିବାର ତା'ର ସମୟ ନାହିଁ । ତା' ହେଲେ ବୁଝିବାକୁ ହେବ, ଆମ ଦେଶରେ ପୂର୍ବକାଳରେ କାବ୍ୟରଚନା ପାଇଁ ଯେଉଁ ନିର୍ଦ୍ଦେଶ ଥିଲା ଆଜି ତା'ର କୌଣସି ଅର୍ଥ ନାହିଁ । 'କାବ୍ୟଂ ଯଶସେ, ଅର୍ଥକୃତେ ଶିବେତରକ୍ଷତୟେ କାନ୍ତାସମ୍ମିତୋପଦେଶ ଯୁଜେ ।' —ଯଶ, ଅର୍ଥ, ଅଶୁଭବିନାଶ, ଉପଭୋଗ ଥିଲା କବିତାର ଲକ୍ଷ୍ୟ । ଏବେ ଯେ ସେ ଲକ୍ଷ୍ୟ ଲୁପ୍ତ ହୋଇଛି ତା ବି ନୁହେଁ । ବରଂ ତା'ର ବିରୁଦ୍ଧାଚରଣ କରି କାବ୍ୟକବିତା କେବେ ତିଷ୍ଠିପାରି ନାହିଁ । କବି ନିଜ ଆବେଗର ଆଲୋଡ଼ନରେ କାବ୍ୟ ଲେଖେ ସତ, କିନ୍ତୁ ସେହି ଆଲୋଡ଼ନ ଯେତେ ବୈୟକ୍ତିକ ହେଲେ ମଧ୍ୟ ସେଥିରେ ବିଶ୍ୱ ଆବେଦନରେ ଅଭାବ ନ ଥାଏ । ସେହି ଆବେଦନର ଚିରନ୍ତନତା ହିଁ ବ୍ୟକ୍ତିଭାବନାକୁ ବିଶ୍ୱଭାବନାରେ ପରିଣତ କରେ; ଫଳରେ କବିର ଚିନ୍ତାରେ ନିଖିଳର ଅନୁଭୂତି ରୂପଲାଭ କରେ । ସେଇଥିପାଇଁ କାଳିଦାସ କିମ୍ବା ସେକ୍ସପିଅର ଯାହା କହିଯାଇଛନ୍ତି, ତାହା ଯେ ବ୍ୟକ୍ତିଗତ ନୁହେଁ, ତା ନୁହେଁ ; ବରଂ ବ୍ୟକ୍ତିବିକାଶ ମଧ୍ୟରେ ଯେଉଁ ଚିରନ୍ତନ ସତ୍ୟ ଉଦ୍‌ଘାଟିତ ହୋଇଛି ତାରି ଫଳରେ ସେମାନେ ଶହ ଶହ ବର୍ଷର ସଭ୍ୟତା ଓ ରୁଚି ପରିବର୍ତ୍ତନ ସତ୍ତ୍ୱେ ଏବେ ବି ବିଶ୍ୱବନ୍ଦିତ ହୋଇ ରହିଛନ୍ତି ; ଅଥଚ ବ୍ୟକ୍ତିବିକାଶ ନାମରେ ଏବେ ଯେଉଁ କବିତା ଲେଖାଯାଉଛି ସେଥିରୁ କେତେକ ଛପାକାଗଜ ଶରିବା ପୂର୍ବରୁ ଲୋକେ ଭୁଲିଯାଇଛନ୍ତି ।

ଏ କଥା ନିଶ୍ଚିତ ଯେ ଆଧୁନିକ କବିତା ବେଶି ମାତ୍ରାରେ ପାଶ୍ଚାତ୍ୟୋନ୍ମୁଖୀ । ଭାଷା, ଭାବ, ଶୈଳୀ, ଚିନ୍ତାସବୁ ପାଶ୍ଚାତ୍ୟ ଅନୁପ୍ରାଣିତ । ଏହାର ଗୋଟିଏ ସୁନ୍ଦର ଉଦାହରଣ କବି ମାନସିଂ ଦେଇଛନ୍ତି ତାଙ୍କ ଓଡ଼ିଆ ସାହିତ୍ୟର ଇତିହାସରେ (ପୃ ୩୮୯) । ଓଡ଼ିଆ ଝିଅ ଚିଠି ଲେଖୁଛି ଇଂଲଣ୍ଡରେ ପଢ଼ୁଥିବା ତା'ର ପ୍ରଣୟୀ ନିକଟକୁ । ସେ ପୁଣି ଲେଖୁ ନି ତା ଦେଶର ଗାଁ ଗହଳରୁ ସହର ବଜାରରୁ ଲେଖୁଛି କାଲିଂପଙ୍ଗ ସହରରୁ । ତା ଛଡ଼ା ଯାହାସବୁ ଲେଖିଛି, ତାହା ଗୋପୀଙ୍କର କୃଷ୍ଣଙ୍କ ପାଖକୁ ବିରହ-ବେଦନା-ସିକ୍ତ ଆକୁଳ ଆର୍ତ୍ତିପ୍ରକାଶ ନୁହେଁ, ସୀତାଙ୍କ ବିରହରେ ରାମଙ୍କର ଅନୁଚିନ୍ତା ନୁହେଁ, ଲବଣ୍ୟବତୀର ସ୍ୱପ୍ନ ଦର୍ଶନ କିମ୍ବା ନନ୍ଦକାର ଅନୁଶୋଚନା ନୁହେଁ । ବରଂ ଇଂଲଣ୍ଡର ହାଇଡ଼ପାର୍କ, ରୁଷର ଲେନିନଗ୍ରାଡ୍,

ଇଟାଲିର ଟ୍ୟୁରନ୍ ପ୍ରଭୃତି ସହର, ଟଲଷ୍ଟୟ୍ ଟୁର୍ଗେନଭ୍, ଡାରଉଇନ୍, ସେଲି, କାଟସ୍, ବାଇରନ ପ୍ରଭୃତି କବି ଓ ଲେଖକମାନଙ୍କର ନାମତାଲିକା ମାର୍କସବାଦ, ଡାରଉଇନ ଥିଓରି ଅକ୍ସଫୋର୍ଡ଼ ଉଲିଟ୍ ପ୍ରଭୃତି ଚିନ୍ତା ନେଇ ଏକ ଶୃଙ୍ଖଳ ଚିଠି । ବିରହୀ ପ୍ରଣୟୀ ଇଂଲଣ୍ଡ ପରି ଏକ ଦୂର-ଦେଶରେ ଥିବାରୁ ପ୍ରଣୟିନୀର ପ୍ରେମ ଭାଷା ବୁଝୁ ବା ନ ବୁଝୁ, ହାତ ଅକ୍ଷର ଦେଖିବା ପାଇଁ ବ୍ୟାକୁଳ ହୋଇ ପାରଥାଏ; କିନ୍ତୁ କୌଣସି ଓଡ଼ିଆ ପାଠକ କେବେ ସେ ଚିଠିକୁ ଖୋଲିବା ପାଇଁ ସାହସ କରିବେ ନାହିଁ । ସେଇଥିପାଇଁ ବୋଧହୁଏ ଓଡ଼ିଶାର ଜଣାଶୁଣା କବି, ଲେଖକ ତଥା ଶିକ୍ଷକ ଆଧୁନିକ ଓଡ଼ିଆ କବିତା ପଢ଼ିବା ପାଇଁ ଉତ୍ସାହିତ ହୁଅନ୍ତି ନାହିଁ । ପ୍ରଣୟ କବିତାରେ ଯଦି ପ୍ରାଣ କିମ୍ବା ପ୍ରଣୟର ପ୍ରସ୍ରବଣ ନାହିଁ,ଭୂଗୋଳର ଶୃଙ୍ଖଳ ପାହାଡ଼ ତଳୁ ପଥର ଗୋଟାଇବା ପାଇଁ କିଏ କାହିଁକି ଚେଷ୍ଟା କରିବ ? କବି ଯେଉଁ ଢଙ୍ଗରେ କହନ୍ତୁ ପଛକେ ନିଜର ଜାତି, ସମାଜ, ସଂସ୍କୃତିକୁ ଛାଡ଼ି କବିତା ଲେଖିଲେ ଦେଶର ଲୋକଙ୍କ ଭିତରେ ତାହା ବୋଧହୁଏ ସହଜରେ ଗୃହୀତ ହୋଇପାରିବ ନାହିଁ । ଆଧୁନିକ କବିତା ପଢ଼ିବା ପାଇଁ ଯଦି କବି, ଲେଖକ, ଶିକ୍ଷକମାନେ ମଧ୍ୟ ଅବୋଧତା ଉପରେ ଅନିଚ୍ଛୁକ ହୁଅନ୍ତି, ତେବେ ଦେଶର ସାଧାରଣ ପାଠକଙ୍କ ମଧ୍ୟରେ ପ୍ରସାରିତ ହେବା ପାଇଁ ତାହା କେତେ ସମୟ ଲାଗିବ କେଜାଣି ?

ଏହି ଅବସରରେ ଆଧୁନିକ କବିତା ବିଷୟରେ ଆଉ ଗୋଟିଏ କଥା ମଧ୍ୟ ବିଚାର୍ଯ୍ୟ । ଆଧୁନିକ କବିତା ବିଷୟରେ ଆଜି ଏତେ କୋଳାହଳ ଶୁଣାଯାଉଥିବାବେଳେ ସେ ବିଷୟରେ କୌଣସି ଉଚ୍ଚାଙ୍ଗ ସମାଲୋଚନା ପୁସ୍ତକ ଦେଖିବାକୁ ମିଳେ ନାହିଁ । କେତେକ କବି ସେମାନଙ୍କର କବିତା-ପୁସ୍ତକରେ ମୁଖବନ୍ଧ ହିସାବରେ ଯାହା କିଛି ଆଲୋଚନା କରିଛନ୍ତି । ପାଠକମାନେ ଆଧୁନିକ କବିତାର ମର୍ମଭେଦ କରିବାର କ୍ଷମତା ହାସଲ କରି ନାହାନ୍ତି କିମ୍ବା ନିଜ ସମାଜ, ସଂସ୍କୃତି ସହିତ ଖାପଛଡ଼ା ବିଷୟବସ୍ତୁ ପ୍ରତି ବୀତସ୍ପୃହ ହୋଇ ପଡ଼ିଛନ୍ତି । ମାତ୍ର ଏ ପ୍ରକାର ଉଦାସୀନତା ସାହିତ୍ୟିକ ସମୃଦ୍ଧି ପାଇଁ ହତାଶାଜନକ ନିଶ୍ଚୟ । ସେଥିପାଇଁ ଏ କ୍ଷେତ୍ରରେ ଅଧିକ ସମାଲୋଚନା ପୁସ୍ତକ ପ୍ରସ୍ତୁତ ହୋଇ ମାର୍ଗ ପ୍ରଦର୍ଶିତ ହେବା ଉଚିତ ।

ଜଣେ ବିଶିଷ୍ଟ ସାହିତ୍ୟସେବୀ ସମାଲୋଚକ ତଥା ପଦସ୍ଥ ଅଧ୍ୟାପକ ଥରେ ଗୋଟିଏ ପତ୍ରିକାରେ ପ୍ରକାଶିତ କେତେଗୁଡ଼ିଏ ଆଧୁନିକ କବିତା

ନେଇ ଜଣେ ବଶିଷ୍ଟ ଆଧୁନକ କବଙ୍କ ପାଖକୁ ଯାଇ ସେଗୁଡ଼ିକୁ ତାଙ୍କୁ ବୁଝାଇ ଦେବା ପାଇଁ ତାଙ୍କୁ ଅନୁରୋଧ କରଥିଲେ । ମାତ୍ର କବ ଘଣ୍ଟାଧିକ କାଳ ଗଳଦ୍‌ଘର୍ମ ହୋଇ ଶେଷରେ ସେ ଭଲ ଭାବରେ ବୁଝିପାରୁ ନାହାନ୍ତ ବୋଲ କହଲେ । ଏହପର ଦୁଇ ଜଣ ଉଚ୍ଚକୋଟୀର କବ ଓ ପାଠକଙ୍କ ମଧ୍ୟରେ ଯଦ ଏପର ଦୁର୍ଯୋଗ ଘଟେ, ତେବେ ଆଧୁନକ କବତାର ଭବଷ୍ୟତ ସୁଯୋଗ ବଷୟରେ ସନ୍ଦହାନ ହେବା ଅସ୍ୱାଭାବକ ନୁହେଁ ।

ଆଧୁନକ କବତାକୁ ପରମ୍ପରାଗତ ଓଡ଼ିଆ କବତା ସହତ ମିଳାଇ ଦେଖିଲେ ତାର କ୍ରମବବର୍ତ୍ତନ ଆଖିରେ ଦେଖାପଡ଼େ ନାହିଁ । ହଠାତ୍ ଅନ୍ୟ ଜଳବାୟୁରୁ ଆସି ରୋପିତ ହେଲ ପର ଜଣାପଡ଼େ । ପାଶ୍ଚାତ୍ୟ ଜଗତର ବଜ୍ଞାନ, ଯାନ୍ତ୍ରିକ ସମୃଦ୍ଧି, ଯୁଦ୍ଧବଗ୍ରହ, ଶ୍ରେଣୀସଂଘର୍ଷ, ଆଧୁନକ ଜୀବନର ବ୍ୟସ୍ତତାରୁ ସେ ଦେଶରେ କବତା ଯେପର ସ୍ୱତଃସ୍ଫୂର୍ତ୍ତ ହୋଇ ପ୍ରବାହିତ ହୋଇଛି ଓ ସେ ଦେଶର କଳା ଓ ସାହିତ୍ୟ ଯେଉଁ ଯେଉଁ ସ୍ତର ଦେଇ ସମସାମୟିକ ଅବସ୍ଥାରେ ପହଞ୍ଚିଛି, ଆମ ଦେଶରେ ସେପର ପରସ୍ଥିତି ଦେଖାଦେଇ ନାହିଁ । ତେଣୁ ଯାହା ପାରପାର୍ଶ୍ୱିକ ପରସ୍ଥିତିରୁ ସହଜରେ ଜାତ ହୋଇ ନାହିଁ, ତାହା ଆପଣାର ମନେ ନ ହେବା ଖୁବ୍ ସ୍ୱାଭାବକ । ଏଲୟଟଙ୍କ ଓ୍ୱେଷ୍ଟଲାଣ୍ଡର ଯୁଗଯନ୍ତ୍ରଣା କମ୍ବା ଏଜରା ପାଉଣ୍ଡଙ୍କ ବୌଦ୍ଧିକ ବସ୍ତୁର ସେଥିରେ ନ ଥିବାରୁ ତାହା ନଷ୍ପ୍ରାଣ ନକଲ ପର ମନେ ହେଉଛି ।

ଏ କଥା ସତ୍ୟ ଯେ ପୂର୍ବ ଅପେକ୍ଷା ପୃଥିବୀ ବହୁତ ଛୋଟ ହୋଇ-ଗଲଣି । ଆଜ ବମ୍ବେରେ ବ୍ରେକଫାଷ୍ଟ ଖାଇ କାଏରୋରେ ଲଞ୍ଚ ପରେ ଲଣ୍ଡନରେ ଡନର ଖିଆଯାଉଛି । ତେଣୁ ଲଣ୍ଡନ ବା ନଉୟର୍କରେ ଆଜ ଯାହା ଘଟୁଛି କାଲ ତା'ର ସମ୍ବାଦ ପ୍ରାଚ୍ୟ ପୃଥିବୀରେ ପ୍ରସର ଯାଉଛି । ତେଣୁ ସେ ଦେଶର ଭାବଧାରା, ଶୈଳୀ, ଢଙ୍ଗଢାଙ୍ଗ ଆମେ ଯେ ଏବେ ଖୁବ ଅନୁସରଣ ଓ ଅନୁକରଣ କରପାରୁଛୁ ସେଥିରେ ଆଶ୍ଚର୍ଯ୍ୟ ହେବାର କଛି ନାହିଁ । ଅନୁସରଣ ବା ଅନୁକରଣ ସାହିତ୍ୟ ରାଜ୍ୟରେ ନୂତନ ନୁହେଁ ; କନ୍ତୁ ସେହି ଅନୁସରଣ ମଧ୍ୟରେ ଯଦ ନଜର ମୌଳକତା ନ ଫୁଟିଲ, ତା ହେଲେ ତାହା କେବେ ସ୍ୱାଦ୍ୟ ବା ଅଭନନ୍ଦ୍ୟ ହୋଇପାରେ ନାହିଁ । ପାଶ୍ଚାତ୍ୟ ଦେଶରୁ ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ଇତ୍ୟାଦ ଆମେ ଗ୍ରହଣ କରଛୁ ଓ ସେ କ୍ଷେତ୍ରରେ ଆମ ମୌଳକତା ବେଶ ସ୍ପଷ୍ଟ ଓ ସେଥି-

ପାଇଁ କେହି କେବେ ଆମକୁ ଅଭିଯୁକ୍ତ କରନ୍ତି ନାହିଁ; କିନ୍ତୁ ଆଧୁନିକ କବିତା ବେଳକୁ ଅଭିଯୋଗ ନ କରି କେହି ଛାଡ଼ନ୍ତି ନାହିଁ । ପ୍ରାକୃତିକ ତଥା ଗ୍ରାହ୍ୟ ହେବା ପାଇଁ ହୁଏ ତ ଆମକୁ ଆହୁରି କିଛିକାଳ ଅପେକ୍ଷା କରିବାକୁ ପଡ଼ିବ ।

ପୃଥିବୀ ଶ୍ରେଷ୍ଠ ହୋଇଯିବା ଫଳରେ ଅନେକ କଥା ଆମେ ସହଜରେ ଦେଖିପାରୁ ଓ ଆମ ଜିନିଷ ସହିତ ତାଙ୍କ ଜିନିଷକୁ ତୁଳନା କରି ବିଗ୍ଭର କରିପାରୁ । ଧରନ୍ତୁ, ଭ୍ରମଣ କାହାଣୀ । କେନ୍ଦୁଝର ସହରର ଗିରିନଦୀ ଦେଖି, ଡେରାଡୁନ ଅଞ୍ଚଳର ଗିରିନଦୀ କଥା କୁହାଯାଇ ପାରେ । ଟେନିସ୍ ଗେଷ୍ଟ ହାଉସରେ ରହି ସିମଳା କଥା ବି ଏକା ନିଃଶ୍ୱାସରେ ଚିନ୍ତା କରିହୁଏ । ଦିଲ୍ଲୀ ଅଶୋକ ହୋଟେଲରେ ରହି ଲଣ୍ଡନର ସାଭଏ ହୋଟେଲ କଥା କୁହାଯାଇପାରେ । କିନ୍ତୁ ସେଥିରେ ବୋଧହୁଏ ପାଠକ ବେଶୀ ଅସୁବିଧାରେ ପଡ଼େ ନାହିଁ । କାରଣ ଦୀର୍ଘ କାହାଣୀ ଭିତରେ ସ୍ୱଳ୍ପ ସଂଖ୍ୟାରେ କେଉଁଠି କେମିତି ଗୋଟାଏ ଅଧେ ବାହାର ଜିନିଷ ଆଣି ଥୋଇଦେଲେ ବୁଝି ହୋଇଯାଏ; କିନ୍ତୁ କବିତାର ସ୍ୱଳ୍ପ ସୀମା ଭିତରେ ବହୁତ ଗୁଡ଼ାଏ ଦୂରଦୂରାନ୍ତ ଅଚିହ୍ନା ବିଦେଶୀ ତଥା ଦୂରଦେଶୀ କଥା ଖାପଛଡ଼ା ଭାବରେ କହିଲେ ବିଷୟବସ୍ତୁକୁ 'ସମ୍ପୂର୍ଣ୍ଣ' ରୂପେ ଧରିପାରିବା କଷ୍ଟକର ହୁଏ; ତେଣୁ ପାଠକ ହତାଶ ହୋଇ ଛାଡ଼ିଦିଏ ।

ଏହି ଅବୋଧତା କଥା ଉଠିଲେ ଉପେନ୍ଦ୍ର ଭଞ୍ଜ ଓ ଅଚ୍ୟୁତାନନ୍ଦଙ୍କ କଥା ମଧ୍ୟ ଉଠେ । ସେମାନେ ବି ସହଜବୋଧ ନୁହନ୍ତି । ଉପେନ୍ଦ୍ରଙ୍କୁ ଅଧ୍ୟୟନ କରିବା ପାଇଁ ଯେମିତି ସ୍ୱତନ୍ତ୍ର ଡିକ୍ସନାରୀ ଦରକାର, ଅଚ୍ୟୁତା-ନନ୍ଦଙ୍କୁ ବୁଝିବା ପାଇଁ ସେମିତି ସେ କାଳର ତନ୍ତ୍ରମନ୍ତ୍ର ଘଟଚକ୍ର ଯୋଗ-ସାଧନାର ଇତିହାସ ଜାଣିବା ଦରକାର । ତା ନ ହେଲେ ପଙ୍କ୍ତିଟିଏ ବି ସେଥିରୁ ବୁଝିହେବ ନାହିଁ; କିନ୍ତୁ ରକ୍ଷା ଏତିକି ଯେ, ଉପେନ୍ଦ୍ରଙ୍କ ଅବୋଧ କବିତା ମଧ୍ୟରେ ସଂଗୀତର ଯେଉଁ ହୃଦୟଗ୍ରାହୀ ଉଦ୍ଦାମ ଲହରୀ ଜାତିଟାକୁ ଉଦ୍‌ବେଳିତ କରୁଥିଲା, ତାହା ଆଧୁନିକ କବିତାରେ ନାହିଁ । ଯାହାକୁ 'ବିଲେ ଗାଏ ଚଷା, ଅନ୍ତଃପୁରେ ଯୋଷା' ତାହା ଜାତୀୟ ସାହିତ୍ୟ ଛଡ଼ା ଅନ୍ୟ କ'ଣ ହୋଇପାରେ ? ଅଚ୍ୟୁତାନନ୍ଦ ସହର ବଜାରର ଆଜକାଲିକା ପାଠୁଆଙ୍କ ପାଇଁ ଅବୋଧ ହେଲେ ମଧ୍ୟ ଗାଁ-ଗହଳର ନିରକ୍ଷର ଟୀକାକାର-ମାନଙ୍କର ଅଭାବ ନାହିଁ । ତେଣୁ ଆଧୁନିକ କବିତାର ଅବୋଧତା ଅଭି-ଯୋଗକୁ ଖଣ୍ଡନ କରିବା ପାଇଁ ଉପେନ୍ଦ୍ର, ଅଚ୍ୟୁତାନନ୍ଦଙ୍କ କଥା ଉଠାଇ

ଲଭ ନାହିଁ । ବରଂ ଗାଁ-ଗହଳକୁ, କ୍ଷେତର ଶୃଷ୍ଟି ପାଖକୁ, କିମ୍ବା ଅନ୍ତଃ-ପୁରର ନାରୀ ପାଖରେ ସହଜିବା ଯାଏ ଆଧୁନିକ କବିତା ଯଦି ବଞ୍ଚେ, ତା ହେଲେ ସେ ମରଣବିଜୟୀ ହେଲା ବୋଲି ବୁଝିବାକୁ ହେବ ।

ଆଧୁନିକ କବିତାର ଦୂରଗତ ଭାବକୁ ଅଧିକ କୁହୁକା କରେ ତାର ଭାଷା । କବିତା କହିଲେ ସାଧାରଣ ଭାବରେ ପୃଥିବୀର ଯେ କୌଣସି ଭାଷାରେ ଛନ୍ଦୋବଦ୍ଧ ପଙ୍କ୍ତିକୁ ବୁଝାଏ । ମାତ୍ର ଆଧୁନିକ କବିତା ସର୍ବାଦୌ ତାହାକୁ ପରିତ୍ୟାଗ କରି ଗଦ୍ୟପଦ୍ୟର ସମ୍ମିଶ୍ରଣରେ ରଚିତ ଅନେକ ସମୟରେ ଯାହାକୁ କବିତା ବୋଲି କୁହାଯାଏ, ତାହାକୁ ନ ଜାଣି-ଥିବା ଲୋକ ଆଦୌ କବିତା ବୋଲି କହିପାରିବ ନାହିଁ । ନିମ୍ନ ପ୍ରଦତ୍ତ କବିତାଂଶଟି ଦେଖନ୍ତୁ ।

"କାମନାର ସମୁଦ୍ରରେ ଯେତେବେଳେ ଝଡ଼ ଆସେ କଳା କଳା ଢେଉଗୁଡ଼ାକ ହୋଇ ଉଠନ୍ତି ଉଚ୍ଛ୍ୱଳ,—ସର୍ବଗ୍ରାସୀ । ଯେତେବେଳେ ମୋ ଦେହର ଜାହାଜ ବିଗ ହରାଏ, ଶିଶୁର ତାଡ଼ନାରେ ଧନ୍ଦହୁଏ··· ।"

ଆଧୁନିକ କବିତାର ଏହି ଗଦ୍ୟରୂପକୁ ବହୁତ କମ ଲୋକ ଜାଣନ୍ତି । ତେଣୁ ପଦ୍ୟର ଏହି ସ୍ୱରୂପକୁ ସେମାନେ କବିତା ବୋଲି ଗ୍ରହଣ କରିବା ପାଇଁ ରାଜି ନୁହନ୍ତି । ସାରଳା ମହାଭାରତର ଦାଣ୍ଡୀବୃତ୍ତ, ରୁଦ୍ରସୁଧାନିଧି ଓ ଚତୁରବିନୋଦର ଅନ୍ତର୍ଚ୍ଛନ୍ଦ, ଗଦ୍ୟପଦ୍ୟ ମିଶ୍ରଣରେ ବାକ୍‌ଛନ୍ଦର ପ୍ରୟୋଗ ଓଡ଼ିଆ ସାହିତ୍ୟରେ ଦେଖାଯାଉଥିଲେ ମଧ୍ୟ ସଙ୍ଗୀତଧର୍ମୀ ଛନ୍ଦୋବଦ୍ଧ କାବ୍ୟକବିତା ସହିତ ଆମ୍ଭେମାନେ ଏତେ ପରିଚିତ ଯେ ସାଧାରଣରେ ଅପ୍ରଚଳିତ ବାକ୍‌ଛନ୍ଦକୁ କାବ୍ୟକବିତାରେ ସ୍ୱୀକାର କରିବା ପାଇଁ ଅନେକେ ନାରାଜ । ଆଧୁନିକ କବିତାରେ ଯେଉଁ ଉପମା ସବୁ ବ୍ୟବହୃତ ହୁଏ, ସେଗୁଡ଼ିକ ପ୍ରଚଳିତ ପରମ୍ପରାଠାରୁ ବହୁତ ଭିନ୍ନ ହୋଇ ଥିବାରୁ ପାଠକ ତାହା ସହଜରେ ଗ୍ରହଣ କରିପାରେ ନାହିଁ । ଉଦାହରଣ ସ୍ୱରୂପ—ଟିଣର ଜହ୍ନ, ଚର୍ବି ପରି ସ୍ନିଗ୍ଧ ନଦୀ, ସାଇକଲ ପରି ପୁସ୍ତକ ଓ ମିନିଟ ସେକେଣ୍ଡର ଝର ଝର ସୁଅ । ଏହାକୁ ବୁଝିବା ପାଇଁ ପାଠକର ଯେଉଁ ବୌଦ୍ଧିକ ଉନ୍ମେଷ ଆବଶ୍ୟକ, ତାହା ଖୁବ୍ କମ ସାଧାରଣ ପାଠକଙ୍କ ଠାରୁ ଆଶା କରାଯାଏ ।

ନୂତନ ପ୍ରତୀକ ଓ ନୂତନ ରୂପକଳ୍ପ ଆଧୁନିକ କବିତାର ନୂତନତା ବୋଲି କେତେକେ କହନ୍ତି ; କିନ୍ତୁ ବିଚାର କରି ଦେଖିଲେ ଏହି ପ୍ରକାର

ପ୍ରଣାଳୀ ସମ୍ପୂର୍ଣ୍ଣ ନୂତନ ନୁହେଁ । ଋଗ୍‌ବେଦ ପରି ପ୍ରାଚୀନତମ ପଦ୍ୟରେ ଅନେକ ସୁନ୍ଦର ସୁନ୍ଦର ଶବ୍ଦ କଳ୍ପନା କରାଯାଇଛି ଯାହାକୁ ଦେଖିଲା ମାତ୍ରେ ଆଧୁନିକ କବିତା କଥା ମନେପଡ଼େ । କାରଣ ସେହି ଶ୍ଳୋକଗୁଡ଼ିକର ସିମ୍ବଲିକ୍ ଅର୍ଥ ନ ବୁଝିଲେ ସାଧାରଣ ଭାବରେ ତାହା'ର କୌଣସି ଅର୍ଥ ବୁଝି ହୁଏ ନାହିଁ । ଉଦାହରଣ ସ୍ୱରୂପ—ଋଗ୍‌ବେଦର ସବିତୃ ସୂକ୍ତରୁ ଗୋଟିଏ ଉଦାହରଣ ନିଆଯାଇପାରେ—

ଜନାନ୍‌ଶ୍ୟାବାଃ ଶିତପାଦୋ ଆଖ୍ୟନ୍
ରଥଂ ହିରଣ୍ୟ ପ୍ରଉଗଂ ବହନ୍ତଃ ।

ଅର୍ଥାତ୍ ସବିତା ରଥରେ ଆସୁଛନ୍ତି, ସେଥିରେ ସ୍ୱର୍ଣ୍ଣମୟ ଦଣ୍ଡ ଲାଗିଛି । ସେହି ଅଶ୍ୱମାନଙ୍କର ପାଦ ଧଳା ଯଦିଓ ସେମାନେ ଧଳା ନୁହନ୍ତି । ତାର ମର୍ମ ହେଉଛି, ଅନ୍ଧକାର ଉପରକୁ ଉଠିଗଲାବେଳକୁ ତଳେ ଉଜ୍ଜ୍ୱଳ ଆଲୋକ ଝରି ଆସୁଛି ଏବଂ ତତ୍‌ସଙ୍ଗେ ସ୍ୱର୍ଣ୍ଣ ଆଲୋକ ମଧ୍ୟ ବାହାରି ହୋଇ ପଡ଼ୁଛି । ଋଗ୍‌ବେଦର ପୁରୁଷସୂକ୍ତରେ ଏହିପରି ପ୍ରତୀକାତ୍ମ ଛକ ଯଥେଷ୍ଟ ଦେଖାଯାଏ । ତେଣୁ ଆଧୁନିକ କବିତାରେ ଏ ପ୍ରକାର ପ୍ରୟୋଗ ଯେ ସଂପୂର୍ଣ୍ଣ ନୂତନତା ନୁହେଁ, ସେଗୁଡ଼ିକର ପ୍ରୟୋଗ କେବଳ ନୂତନ ପରିପ୍ରେକ୍ଷିରେ କରାଯାଇଛି ଯାହା ।

ଏହି ସବୁ ଦୃଷ୍ଟିରୁ ବିଚାର କଲେ ଯେଉଁମାନେ ଆଧୁନିକ କବିତା ଗଣ ପାଇଁ ଗଣର ଭାଷାରେ ଲିଖିତ ବୋଲି ଦାବୀ କରନ୍ତି ସେ ଦାବୀକୁ ଆଦୌ ସ୍ୱୀକାର କରାଯାଇ ପାରେ ନାହିଁ । ଗଣ ତ ଦୂରରେ, 'ଗଣ୍ୟ'ଙ୍କ-ଠାରୁ ଆରମ୍ଭ କରି 'ମହାଗଣ୍ୟ' ପର୍ଯ୍ୟନ୍ତ କାହା ପାଇଁ ହେଲେ ଏ କବିତା ସହଜବୋଧ ହୋଇନାହିଁ । ତେବେ ସ୍କୁଲ, କଲେଜ ଗ୍ରନ୍ଥମାନେ ଯେତେ ସହଜରେ ଆଧୁନିକ କବିତା ଲେଖୁଛନ୍ତି, ସେତିକି ସହଜରେ ଅନ୍ୟର ଆଧୁନିକ କବିତା ବୁଝୁଛନ୍ତି କି ନାହିଁ, ତାର ସର୍ଭେ ବୋଧହୁଏ କେହି କରି ନାହାନ୍ତି । କାରଣ ପ୍ରବୀଣ ସାହିତ୍ୟିକମାନେ ଆଧୁନିକ କବିତା ବୁଝୁ ନାହାନ୍ତି ବୋଲି ବେଶୀ ଚିତ୍କାର ନ କଲେ ମଧ୍ୟ ଅସନ୍ତୋଷ ଯେ ଅନୁଭବ କରୁଛନ୍ତି, ଏଥିରେ ଦ୍ୱିମତ ନାହିଁ । ଯେଉଁମାନେ ଭାବୁଛନ୍ତି, ପୁରୁଣା ଯାକ ସବୁ ଭଲ ଥିଲା, ନୂତନତା ଅବୋଧ ଦୁର୍ଗ୍ରାହ୍ୟ, ସେମାନଙ୍କୁ କାଳିଦାସଙ୍କ କଥାରେ କୁହାଯାଇପାରେ—'ପୁରାଣ ମିତ୍ୟେବ ନ ସାଧୁ ସର୍ବଂ ନ ଚାପି କାବ୍ୟଂ ନବମିତ୍ୟବଦ୍ୟମ୍ ।' ପ୍ରାଚୀନ କମ୍ବା ଆଧୁନିକ ବୋଲି କୌଣସି

କାବ୍ୟକବିତା ଭଲ କିମ୍ବା ମନ୍ଦ ବୋଲି ବିଶ୍ଳେଷ କରାଯାଏ ନାହିଁ । ପାଠକ ଓ ଗ୍ରାହକ ନିଜ ବୁଦ୍ଧି ବଳରେ ତାର ମୂଲ୍ୟ କଳନା କରେ । ଆଶାୟୀ ଆଧୁନିକ କବିମାନଙ୍କ ପାଇଁ ଭବଭୂତିଙ୍କ ଭାଷାରେ କୁହାଯାଇପାରେ, 'ସମୁତ୍ପତ୍ସ୍ୟତେ ମମ କୋଽପି ସମାନଧର୍ମା ।' ଆଜି ନ ହେଲେ ବି କାଲି ମୋର ସମାନଧର୍ମା କେହି ଦେଖାଦେଇପାରେ । ଏହି ସମାନଧର୍ମା ସୃଷ୍ଟି କରିବା ପାଇଁ କବିମାନଙ୍କର ଚିନ୍ତାଧାରାର ଆଲୋଚନା-ପ୍ରତ୍ୟାଲୋଚନା ବହୁତ ଦରକାର । ତେଣୁ ଶ୍ରୀମାନ ନନ୍ଦ ଯେଉଁ ସଂକଳନ କରିଛନ୍ତି, ତାହା ସେହି କ୍ଷେତ୍ରରେ ନିଶ୍ଚୟ ସହାୟକ ହେବ । ଆଧୁନିକ କବିତାର ଆଉ କେତେକ ଜଣାଶୁଣା ସମାଲୋଚକଙ୍କର ଚିନ୍ତାଧାରା ଏଥିରେ ସନ୍ନିବେଶିତ ହୋଇ ପାରିଥିଲେ ଗ୍ରନ୍ଥଟି ଅଧିକ ଉପାଦେୟ ହୋଇ ପାରିଥାନ୍ତା ବୋଲି ମନେହୁଏ ।

**ଶ୍ରୀ ଗୋଲୋକ ବିହାରୀ ଧଳ**
ଏମ୍. ଏ. (ପାଟନା), ଏମ୍. ଏ. (ଲଣ୍ଡନ)
ଡିପ୍ଲୋମା ଇନ୍ ଟୁଇସନ୍ (ଉତ୍କଳ)
ପ୍ରଫେସର ଓ ବିଭାଗୀୟ ମୁଖ୍ୟ,
ସ୍ନାତକୋତ୍ତର ବିଭାଗ, ରେଭେନ୍ସା କଲେଜ ।

# ସାଂପ୍ରତିକତାର ପରମ୍ପରା-

## ଗୋଟିଏ ଦୃଷ୍ଟି ଓ ସଂକଳନ

"ଆଧୁନିକ ବାଦ"ର ସ୍ୱର କେବଳ ଆଜି ନୁହେଁ, ଯୁଗେ ଯୁଗେ ଉଚ୍ଚାରିତ ହୋଇ ଆସିଛି । ପୁରାତନ ବା ପରମ୍ପରାର ବିଦ୍ରୋହରେ ହେଉ କିମ୍ବା ନୂଆ କରି ଆତ୍ମସ୍ୱୀକୃତିରେ ହେଉ—ଏ ସ୍ୱର ହେଉଛି ସ୍ୱାତନ୍ତ୍ର୍ୟର । ଚଳନ୍ତି ଧାରାରେ ଏକ ନୂଆ ମୋଡ଼ । କେଉଁଠି ପୁରାତନ ଆଧୁନିକକୁ ସମ୍ବର୍ଦ୍ଧନା କରିଛି, ଯେପରି ବାଲ୍ମୀକିଙ୍କ କବି ହୃଦୟରୁ ଉଚ୍ଚାରିତ 'ଆଧୁନିକ'କୁ । କେଉଁଠି ଅବା ପୁରାତନ ଆଗନ୍ତୁକ ଆଧୁନିକ ପ୍ରତି ଉଦାସୀନ (ପକ୍ଷାନ୍ତରେ, ବିରୋଧୀ) ରହିଛି, ଯେପରି କାଳିଦାସଙ୍କ ନୂତନ ନାଟ୍ୟକୃତିରେ । ସେତେବେଳେ, ପୁରାତନ ଓ ଆଧୁନିକ ବୋଲି ଆତ୍ମ-ପ୍ରତିଷ୍ଠ, ଆତ୍ମସର୍ବସ୍ୱ ଓ ଆତ୍ମସ୍ୱୀକୃତ ଦୁଇଟି ସ୍ୱାତନ୍ତ୍ର୍ୟ ସମ୍ପର୍କରେ କାଳିଦାସ କହିଥିବା ମନ୍ତବ୍ୟଗର୍ଭିତ ବାଣୀ—ପୁରାଣମିତ୍ୟେବ ନ ସାଧୁ ସର୍ବଂ/ନ ଚାପି କାବ୍ୟଂ ନବମିତ୍ୟବଦ୍ୟମ୍—ଅମର ହୋଇ ରହିଛି । ଯେତେ ପୁରୁଣା କାବ୍ୟ, ସମସ୍ତ ସାଧୁ ନୁହେଁ ; ଯେତେ ନୂଆ, ସମସ୍ତ ନିନ୍ଦନୀୟ ନୁହେଁ । ପୁନଶ୍ଚ, ରୀତିବାଦର ପରମ୍ପରାରେ ନୂତନ ଦିଗନ୍ତ ଉଦ୍‌ଘାଟିତ ହେଲା ଶ୍ରୀହର୍ଷଙ୍କ ବାଗ୍‌ବିଳାସରେ, ଚିତ୍ରକୁମ୍ଭରେ । ଏହି ଆଧୁନିକତାର ପ୍ରଭାବ ସବୁ ପ୍ରାନ୍ତୀୟ ସାହିତ୍ୟକୁ ବନ୍ୟା ପରି ବ୍ୟାପିଗଲା । କହିବାର କଥା —ସାହିତ୍ୟେତିହାସରେ ଏହିପରି 'ଏକ ପରେ ଏକ ତା ପରେ ଅନେକ' ଆଧୁନିକତା (ଓରଫ୍ ନୂତନତା) ମଧ୍ୟରେ ବର୍ତ୍ତମାନର ଆଧୁନିକତା ବା ସାଂପ୍ରତିକତାର ବୈଶିଷ୍ଟ୍ୟ କ'ଣ, ନୂଆ ନୂତନତା କ'ଣ ?

ବସ୍ତୁତଃ ଆଧୁନିକ ଓ ସାଂପ୍ରତିକ—ଏ ଉଭୟର ଅର୍ଥ ଏକ ଓ ଅଭିନ୍ନ । ଅଧୁନା ଯାହା ସଂପ୍ରତି ତାହା । ତଥାପି ପ୍ରଚଳନରେ, ଆମ ବ୍ୟବହାରରେ ଓ ଅଭ୍ୟାସରେ ସେ ଉଭୟର କିଛି ତାରତମ୍ୟ ମଧ୍ୟ

ଅଛି । ଆଧୁନିକ ବୋଲନ୍ତେ, 'ଆଜିକାଲି' କହିବାର ନିର୍ଦ୍ଦିଷ୍ଟ ଦୁଇଟି ଦିବସ ନ ବୁଝାଇ, ବୁଝାଉଛି—ଅତୀତରୁ ବର୍ତ୍ତମାନ ପର୍ଯ୍ୟନ୍ତ, ଏପରିକି ଭବିଷ୍ୟତର କିଛି ଝିଲ୍‌ମିଲ୍ ଓ ଝାପ୍‌ସା ଇଲାକାକୁ ମିଶାଇ ଆଚ୍ଛା-କରି ଗୋଟିଏ ଭଲ ବ୍ୟାପ୍ତି, ନିର୍ଦ୍ଦିଷ୍ଟ ଅତୀତ ଭବିଷ୍ୟତ୍ ସୀମାରେଖା ନ ଥାଇ ଗୋଟିଏ ଅନିର୍ଦ୍ଦିଷ୍ଟ ସ୍ୱତନ୍ତ୍ର ଇଲାକା ବା ଆୟତନ । (ଅଥଚ ଭାବିଲେ ବି, ସାହିତ୍ୟର ସମଗ୍ର ପରମ୍ପରାରେ ଅନବଚ୍ଛିନ୍ନତା ଦୃଷ୍ଟିରୁ ଆଧୁନିକ କିଛି ନାହିଁ ବୋଲି କୁହାଯାଇପାରେ । ଏ କେବଳ ଗୋଟିଏ ସାପେକ୍ଷ ଅବସ୍ଥା ।) ଏଇ ସ୍ୱତନ୍ତ୍ର ଆୟତନକୁ ଆମେ କହୁଛୁ ମଡର୍ଣ୍ଣ୍ । କଥିତ ଅନିର୍ଦ୍ଦିଷ୍ଟତା ଯୋଗୁଁ ଓଡ଼ିଆରେ ଆଧୁନିକ କହିଲେ କେତେବେଳେ ରାଧାନାଥଙ୍କଠାରୁ ଏ ଯାଏ ବୁଝାଏ । କେତେବେଳେ ସବୁଜବାଲାଙ୍କଠାରୁ ବୁଝାଏ, କେତେବେଳେ 'ସବୁଜ'-ପତନଠାରୁ ବୁଝାଏ ତ କେତେବେଳେ ଦ୍ୱିତୀୟ ମହାଯୁଦ୍ଧ-ପରବର୍ତ୍ତୀ ବା ଆମ ସ୍ୱାଧୀନତା-ପରବର୍ତ୍ତୀ ସମୟରୁ ବୁଝାଏ, ଏ ପର୍ଯ୍ୟନ୍ତ । ଇଂରେଜୀରେ ମଧ୍ୟ ବୌଦ୍ଧିକାଂଶ କିମ୍ବା କ୍ଲାସି-କାଲ୍‌ମନା ଏଲିଅଟ୍‌ଙ୍କୁ ମିଶାଇ, ଅଥବା ବିଲ୍‌କୁଲ୍ ନ ମିଶାଇ ଆଧୁନିକତାର ବିଚାର କରାଯାଉଛି । ଆମେରିକାରେ ଏଇ ଆଧୁନିକ ଯୁଗକୁ ବହୁ ପର୍ଯ୍ୟାୟ ଖଣ୍ଡରେ ବିଭକ୍ତ କରି ପ୍ରତ୍ୟେକର—ପ୍ରାଚୀନ ଆଧୁନିକ, ଆଧୁନିକ ନୂତନ, ଆଧୁନିକ ବା ଆଧୁନିକୋତ୍ତର ପରି କ୍ରମିକ ନାମକରଣ କରାଗଲାଣି, ଆଧୁନିକ କବିସମାଲୋଚକ ଆର୍କିବାଲ୍‌ଡ୍ ମାକ୍‌ଲିଶ୍‌ଙ୍କ ଭାଷାରେ । ଏ ଅବସ୍ଥା ଠିକ୍ ଗୋଟିଏ ମାଂସପିଣ୍ଡୁଲାରୁ କୌରବ ଶହେଭାଇଙ୍କ ଜନ୍ମ ପରି, ସେମାନଙ୍କର କ୍ରମିକ ନାମକରଣ ପରି, ସାମୂହିକ ଏକତ୍ୱ ପରି ତଥା ବ୍ୟକ୍ତିଗତ ସ୍ୱତନ୍ତ୍ର ଐକିକ ଅସ୍ତିତ୍ୱ ପରି । ତଥାପି ଆଧୁନିକତାର ଏହି ଖଣ୍ଡ ବା ବିଭକ୍ତି ସତ୍ତ୍ୱେ ସାମୂହିକ ସ୍ୱଭାବରେ ଐକିକତା ଦୃଷ୍ଟିରୁ ଗୋଟିଏ ବ୍ୟାପ୍ତି ଅନୁଭୂତ ହୁଏ । ଠିକ୍ ଏହି ବିବେଚନା ଅଧିକତର ଭାବରେ ପ୍ରଯୋଜ୍ୟ ବର୍ଣ୍ଣ-ଶିଳ୍ପ ଓ ବାକ୍ୟଶିଳ୍ପ ପ୍ରଭୃତିରେ ଆଧୁନିକତାର ଅର୍ଥ ଫ୍ରାନ୍‌ସ୍‌ରେ/ପ୍ୟାରିସ୍‌ରେ ।

'ସାଂପ୍ରତିକ' ଆଧୁନିକର ପର୍ଯ୍ୟାୟବାଚୀ ହେଲେ ସୁଦ୍ଧା ଏହା ବିଲ୍‌କୁଲ୍ 'ଏଇ ଏବେ' ବୁଝାଉଛି । ଯାହା ଲେଖକର, ସ୍ରଷ୍ଟାର ସମକାଳୀନ/କଣ୍ଟେମ୍ପୋରାରି । ଏହା ଆଧୁନିକତାର ବ୍ୟାପ୍ତ ଆୟତନ ଭିତରେ ଅନ୍ତର୍ଭୁକ୍ତ ; ତେଣୁ ସଙ୍କୁଚିତ । ଏ ଦୃଷ୍ଟିରେ, ସାମ୍ପ୍ରତିକ ସାହିତ୍ୟର ବିଚାର

ପ୍ରସଙ୍ଗ ଉଠିଲେ ରାଧାନାଥ, ଫକୀରମୋହନ, ଇବ୍‌ସେନ୍, ଶ, ଏଲିଅଟ୍, ରବୀନ୍ଦ୍ର ପ୍ରଭୃତି କେହି ଆସିବେ ନାହିଁ । ସେମାନେ ପ୍ରାଚୀନ ଆଧୁନିକ କିମ୍ବା ଆଧୁନିକ ମାତ୍ର ହୋଇ ଆଧୁନିକତାର ସୀମା ଭିତରେ ସ୍ଥିର ଥିବା ସତ୍ତ୍ୱେ ସାମ୍ପ୍ରତିକ ନୁହନ୍ତି । ଏମାନେ ସ୍ୱୀକୃତ ହେଉଥିବା ସତ୍ତ୍ୱେ ଆଉ ଅନୁକୃତ ହେଉନାହାନ୍ତି । ଏମାନେ ବରଂ କ୍ଲାସିକାଲ୍ ହୋଇ ଯାଇଛନ୍ତି । ସାଂପ୍ରତିକ-ତାକୁ ଘନୀଭୂତ ଆଧୁନିକତା ( Intensified modernity ) କୁହାଯାଇପାରେ ।

ତଥାପି ଆଧୁନିକ ଯେତେବେଳେ ସାହିତ୍ୟର, ଇତିହାସର ସ୍ୱାକ୍ଷର ଅଙ୍କନ କରେ ଓ ଏକ ନୂଆ ଅଧ୍ୟାୟର ଦାବୀ କରେ, ତାହା ପୂର୍ବତନ ଅଧ୍ୟାୟରୁ ସ୍ୱାତନ୍ତ୍ର୍ୟ, ଭିନ୍ନତା ଓ ବୈଶିଷ୍ଟ୍ୟ ଯୋଗୁଁ ସମ୍ଭବ ହୋଇଥାଏ । ଅଧିକନ୍ତୁ, ଏ ସ୍ୱାତନ୍ତ୍ର୍ୟ ନୂତନ, ଜୀବନ ସମ୍ପୃକ୍ତ ଓ ବଳିଷ୍ଠ ହୋଇ ନ ଥିଲେ ତଥା ଅନିର୍ଦ୍ଦେଶ୍ୟ କିଛି-ନା-କିଛି ଗୋଟାଏ ( ଯାହା ପ୍ରାଣକୁ ଛୁଇଁ ଯାଉଥିବ, ସମ୍ବାହନ କରାଯାଉଥିବ ) ହୋଇ ନ ଥିଲେ—ପୂର୍ବତନ ଅଧ୍ୟାୟରେ ସାମିଲ୍ ହୋଇଯିବା ନିଶ୍ଚିତ କିମ୍ବା ସ୍ୱାକ୍ଷର ନଉଭିବା ନିଶ୍ଚିତ । ଦୃଷ୍ଟାନ୍ତ ନିଆଯାଉ । ବୈଦିକ ଗୀତ ଓ ସୂକ୍ତ ଆଦି ସାହିତ୍ୟର ପରେ ବାଲ୍ମୀକଙ୍କ ଆଧୁନିକତାର ଭିତ୍ତି ହେଉଛି କ୍ରୌଞ୍ଚନିଧନଜନିତ କାରୁଣ୍ୟରେ, ତା'ର ଉତ୍ତରଣ ପୁଣି କରୁଣରେ । ଏଇ 'କରୁଣ' ହେଉଛି ତାଙ୍କର ସାଂପ୍ରତିକ ପରିପ୍ରେକ୍ଷୀରେ ଆଧୁନିକତାର ଆତ୍ମା । ପରସ୍ପର ସ୍ନେହ ଯହିଁ-ଥାଏ ନିରନ୍ତର; ବୈକୁଣ୍ଠ ସମାନ ଆହା ଅଟେ ସେହି ଘର । ନଗର, ବନ, ରାଜ୍ୟ, ଜନସମାଜ ଇତ୍ୟାଦି ତାଙ୍କ ଆଧୁନିକତାର ପିଣ୍ଡ । ଏ ସମସ୍ତର ଯୋଗସୂତ୍ର ହେଉଛି—ବେଦନା ଓ ବେଦନାବୋଧ । ନିଜ ଅପେକ୍ଷା ଅନ୍ୟଙ୍କର ସ୍ୱୀକାର ଏଠି ବଡ଼ । ତେଣୁ ପ୍ରାଣିଜପ୍ରେମ, ପାରିବାରିକ ଆଦର୍ଶ ଇତ୍ୟାଦି ବହୁ ଲଳିତ ବିଭବ ଉପୁଜୁଛି ବାଲ୍ମୀକଙ୍କ ରାମାୟଣରୁ । ବ୍ୟାସଙ୍କୁ ସେହିପରି ସମାଜଚେତନା, ରାଷ୍ଟ୍ରଚେତନା ଓ ଧର୍ମଚେତନାର ନୂତନତା ଦୃଷ୍ଟିରୁ ବିଚାର କରାଯାଇପାରେ । କାଳିଦାସଙ୍କୁ ବିଚାର କରାଯାଇପାରେ, ସୈ୍ୱରତା-ଭିତ୍ତିକ ବା ଆବଶ୍ୟକତା-ଭିତ୍ତିକ ଜୀବନରେ ଦିବ୍ୟାନୁଭୂତି ଦୃଷ୍ଟିରୁ ; ଇନ୍ଦ୍ରିୟଜ୍ୱାଳାରୁ ଇନ୍ଦ୍ରିୟୋତ୍ତର ପ୍ରଶାନ୍ତିକୁ ଉତ୍ତରଣ ଦୃଷ୍ଟିରୁ । ଏ ସମସ୍ତ ପରିବେଷିତ ହୋଇଛି ରସସୂତ୍ରରେ । ଶୃଙ୍ଗାର ହେଉ ବା ଅନ୍ୟ କୌଣସି ରସ ହେଉ, କାଳିଦାସଙ୍କ ଲେଖନୀରେ ରସ ହେଉଛି ରସ—ଇତେସାତ୍ତର ରସ ; ସତେ ଯେପରି ନିର୍ଦ୍ଦିଷ୍ଟ କୌଣସି ରସ ନୁହେଁ । ଏହା

ତାଙ୍କର ନୂତନ ରସଚେତନା । ଭବଭୂତି/ଶ୍ରୀହର୍ଷ ଅନୁରୂପ ପରିପ୍ରେକ୍ଷୀରେ ବିଗ୍ରହଧର୍ମୀ । ଜଣକର କରୁଣରସ ସୂତ୍ରରେ ଆତ୍ମିକ ଚେତନା ଓ ଅନ୍ୟ ଜଣକର କଳ୍ପନାଗୃତ୍ନୁଧର୍ମୀ ସୂତ୍ରରେ ମାନସିକ ଚେତନା ମାତ୍ର ।

ଓଡ଼ିଆ ସାହିତ୍ୟ ଇତିହାସରେ ସାରଳାଦାସ, ଉପେନ୍ଦ୍ର ଭଞ୍ଜ, ବଳଦେବ ରଥ, ରାଧାନାଥ, ଫକୀରମୋହନ ନିଜ ନିଜର ସାଂପ୍ରତିକ/ ସମକାଳୀନ ବା ତତ୍‌କାଳୀନ ଭାବରେ ଆଧୁନିକ ରୂପ ଓ ଆଧୁନିକତାର ଆଦର୍ଶ ରୂପ ଗୃହୀତ । ପ୍ରତ୍ୟେକ ପରଂପରାରୁ କିଛି କିଛି ଉଦ୍ଧାର ଆସି କିଛି-ନା-କିଛି ନୂତନତା ଦେଇଛନ୍ତି ଓଡ଼ିଆ ସାହିତ୍ୟକୁ । ଏ ନୂତନତାର ସ୍ୱାତନ୍ତ୍ର୍ୟ କାହାର କିପରି ଓ କେତେ—ତାହା ପ୍ରତ୍ୟେକଙ୍କ ଦୃଷ୍ଟିଭଙ୍ଗୀ, ପ୍ରାଣଶକ୍ତି ଓ ପ୍ରଭାବଶାଳିତା ଉପରେ ବିବେଚ୍ୟ । ବହୁ ଦୋଷତ୍ରୁଟି ଓ ଅଜବ୍ ବିଷୟ ସତ୍ତ୍ୱେ ବାଲ୍ମୀକି, ବ୍ୟାସ ଓ କାଳିଦାସଙ୍କ ପରି ଏମାନେ, ଅନେକତଃ, ଆଧୁନିକ ହୋଇ ରହିପାରି ନାହାନ୍ତି । ପୁରୁଣା ହୋଇଗଲେଣି ବରଂ, କ୍ଲାସିକାଲ୍ ହୋଇଗଲେଣି ।

ରାଧାନାଥଙ୍କ ସମସ୍ତ ଦୃଷ୍ଟିରୁ, ସେ ଓଡ଼ିଆ ସାହିତ୍ୟକୁ ଯେଉଁ ନୂତନତା ଦେଇଛନ୍ତି, ତାହା ପୂର୍ବତନ କବିମାନଙ୍କ ତୁଳନାରେ ତାଙ୍କ କବିମାନସର ଅଧିକତର ପ୍ରସାର ଓ ବ୍ୟାପ୍ତି ମାତ୍ର । ପ୍ରାଦେଶିକ, ଭାରତୀୟ ବା ସଂସ୍କୃତ ସାହିତ୍ୟର ସୀମା ଭିତରେ ସେଇମାନଙ୍କର କଳ୍ପନା, କଥାବସ୍ତୁ ରସଚର୍ଯ୍ୟା, ଭାବବିନ୍ୟାସ, ବାଗ୍‌ବିଳାସ ଆଦି ସାରସ୍ୱତ ପୁଞ୍ଜି ଆବଦ୍ଧ ଥିଲା । ରାଧାନାଥ ସେଇ ଭାରତୀୟ ସୀମାକୁ ଭାଙ୍ଗିଦେଇ ଗ୍ରୀକ୍ ସାହିତ୍ୟ ଓ ଇଂରେଜି ସାହିତ୍ୟ ପର୍ଯ୍ୟନ୍ତ ବିସ୍ତାରିଗଲେ । ତାଙ୍କ କାବ୍ୟକୃତି ୟୁରୋପୀୟ ସାରସ୍ୱତ ଅଞ୍ଚଳରୁ ଓଡ଼ିଶାକୁ ଆହୃତ ହୋଇ ଆସିଲା । ଏଇ ପ୍ରସାରଣ ଚେତନା ପୂର୍ବାପର ବୈପ୍ଳବିକ ଏବଂ କବିଙ୍କର ବହୁପାଠିତା ତଥା ପ୍ରତିଭାଶକ୍ତିରୁ ଉପୁଜିଛି । ଏଥିରେ ସାମାଜିକ ଚେତନା କି (ତାଙ୍କ ସମୟର) ସାଂପ୍ରତିକ ଚେତନା ଦରବାରି ବ୍ୟତିରେକେ ଅନ୍ୟତ୍ର ପ୍ରାପ୍ୟ ନାହିଁ । (ଦରବାରରେ କବି-ସଜାତ ଚେତନା ଯେ କୌଣସି କାଳର କ୍ଷମତା ଓ ପଦମର୍ଯ୍ୟାଦାଲୋଭୀ ଅହଂମନ୍ୟ ମଣିଷଙ୍କ ପାଇଁ ସମାନ ପ୍ରଯୋଜ୍ୟ । ଏହାର ଫର୍ମ ବ୍ୟତୀତ ଓଡ଼ିଆରେ ଅନ୍ୟ କିଛି ବସ୍ତୁତଃ, ନୂଆ ନୁହେଁ ।) ଏହା ବ୍ୟତୀତ, ପ୍ରକୃତିର ନୂତନ ସ୍ୱୀକୃତି ଓ ଭୂମିକା, ଐତିହାସିକ ବା ଭୌଗୋଳିକ ସଂଯୋଗ, ପୂର୍ବୀ ଓ ପଶ୍ଚିମୀ ମହାକାବ୍ୟ

ଚେତନା-ଶୈଳୀର ସମନ୍ୱୟ, ଉପଧା ପ୍ରୟୋଗ, ଜାତୀୟବୋଧ ଇତ୍ୟାଦି କୁହାଯାଉଥିବା ଆଧୁନିକତାର ଅନ୍ୟାନ୍ୟ ଲକ୍ଷଣ ଏଇ ବ୍ୟାପ୍ତି ଓ ଚେହେରଠାରୁ ବଡ଼ ନୁହେଁ ।

ସତ୍ୟବାଦୀଗୋଷ୍ଠୀର କବିମାନେ ରାଧାନାଥୀୟ ଜାତିପ୍ରବୋଧକୁ ଅଧିକ ତୀବ୍ର ଓ ଉନ୍ମୁଖ କରିଛନ୍ତି ସାଂପ୍ରତିକ, ରାଜନୈତିକ ପ୍ରୟୋଜନରୁ । ସେତେବେଳେ ଦେଶମୁକ୍ତି ପାଇଁ ଆନ୍ଦୋଳନର ଆରମ୍ଭ ହୋଇଯାଇ ନ ଥିଲେ ଗୋପବନ୍ଧୁ ବୋଧହୁଏ ରାଧାନାଥଙ୍କ ପରି ଜଣେ ନିଛକ କବି ମାତ୍ର ହୋଇଥାନ୍ତେ । ନୀଳକଣ୍ଠଙ୍କର କାବ୍ୟକବିତା ଆମେ ଦେଖି ନ ଥାନ୍ତୁ । କେବଳ ଗୋଦାବରୀଶ ଯାହା ଅଛନ୍ତି, ତାହାହିଁ ଥାନ୍ତେ ବୋଲି ମନେ ହୁଏ ; କିନ୍ତୁ ସତ୍ୟବାଦୀଗୋଷ୍ଠୀର ତତ୍କାଳୀନ ସାଂପ୍ରତିକ ଚେତନା (!)— କବିଙ୍କର ଶକ୍ତି ଥିବା ନ ଥିବା ସତ୍ତ୍ୱେ ଅସାଧାରଣ ନୁହେଁ । ତାହା ସାଧାରଣ ଓ ବୈଶିଷ୍ଟ୍ୟହୀନ ।

ସବୁଜ କବିମାନଙ୍କର ବହିର୍ମୁଖ୍ୟ ଓ ଅଭିମୁଖ୍ୟ ବିଶେଷ ନ ଥିଲା । ସାଂପ୍ରତିକ ଚେତନା ଅପେକ୍ଷା ସାଂପ୍ରତିକ ଅନୁକରଣ ଥିଲା ସେମାନଙ୍କର ଶେଷ କଥା । ଏପରି କି ଅସହଯୋଗ ଆନ୍ଦୋଳନ ବା ପ୍ରଥମ ମହାସମରର ସଂପୃକ୍ତ କୌଣସି ପ୍ରତିକ୍ରିୟା ପର୍ଯ୍ୟନ୍ତ ସବୁଜ କବିତାରେ ନାହିଁ କହିଲେ ଚଳେ । ଏଥିରେ ଉର୍ଦ୍ଧ୍ୱ କବିତାସୁଲଭ ଶୃଙ୍ଗାର ଯେମିତି କି ଜୀବନର ମୁଖ୍ୟ ବିଷୟ । ତଥାପି ବିବାହ ଉତ୍ସବର କୁମ୍ଭି, ହାବେଳି, ଚନ୍ଦ୍ରଉଦିଆ, ଚନ୍ଦି ଆଦି ସମାରୋହର ବର୍ଣ୍ଣନା ପରି ଏହା (ତାତ୍କାଳିକ) ମନୋରମ । ମୁଖ୍ୟତଃ ଯୌବନର ଶ୍ଳୋକ ଗାଇବା ସତ୍ତ୍ୱେ ସବୁଜ କବିତା ଜୀବନ-ଦରିଦ୍ର, ଭାବ ଦରିଦ୍ର ।

କବିଠାରେ ପରିବେଷ୍ଟନୀଗତ ତା'ର ସମକାଳୀନ ବା ସାଂପ୍ରତିକ ଚେତନା ପ୍ରଥମେ ଓଡ଼ିଆ ସାହିତ୍ୟରେ ବସ୍ତୁତଃ ଦେଖାଦେଲା ସଚି ରାଉତରାୟଙ୍କଠାରେ ଏବଂ ଅନନ୍ତ ପଟ୍ଟନାୟକଙ୍କଠାରେ । କାର୍ଲ ମାର୍କସ୍‌ଙ୍କ ନୂତନ ସାମ୍ୟବାଦୀ ଦର୍ଶନରେ ଏମାନେ ପ୍ରଭାବିତ ହେଲେ । କାରଣ, ସମଗ୍ର ପୃଥିବୀରେ—ସପକ୍ଷରେ ହେଉ କି ବିପକ୍ଷରେ ହେଉ—ଏହା ପ୍ରତିକ୍ରିୟା ସୃଷ୍ଟି କରିଥିଲା । ବିଶେଷତଃ ଦରିଦ୍ର ଓ ଶୋଷିତବହୁଳ ଦେଶମାନଙ୍କରେ ଏହା ସ୍ୱାଗତ ଲାଭ କଲା । କବି ଓ ସାହିତ୍ୟିକ ଦୃଷ୍ଟିରୁ ବିଚାରିଲେ,

ଶୋଷିତ ଓ ନିଷ୍ପେଷିତମାନଙ୍କର ଉଚ୍ଚ ଜୀବନ ପାଇଁ ମାର୍କସ୍ ଦେଇଗଲେ ଶୋଷକ ପୁଞ୍ଜିବାଦୀଙ୍କ ବିରୋଧରେ ସଂଗ୍ରାମର ବାସ୍ତବବାଦୀ ନୀତି ଓ ତା'ର ସ୍ପର୍ଷ । ସଚ୍ଚିବାବୁ ମଣିଷର ଏଇ ବାର୍ତ୍ତା ଓଡ଼ିଶାରେ ପ୍ରଥମେ କବିତାରେ ଶୁଣାଇଲେ । ଯେମିତି ମୁଁ ଶିକାର କରେଁ ଜଙ୍ଗଲର ସେଇ ଉଚ୍ଛିଷ୍ଟଭୋଗୀ ମଖମଲଦେହୀ ବାଘ । କବି ନିର୍ଦ୍ଦୁରଙ୍କର I hunt the velvet tiger in the Prussian jungle—ସ୍ୱର ପରି ତାହାଙ୍କର ବାଣୀ ବ୍ୟର୍ଥ ହୋଇଗଲା ଓଡ଼ିଆ କବିତା କ୍ଷେତ୍ରରେ । ଏ ଶତକର ଚତୁର୍ଥ ଦଶନ୍ଧିରେ ତାଙ୍କର ଥିଲା ପୀଡ଼ିତ ଓ ଦରିଦ୍ରଙ୍କ ପାଇଁ ଏଇ ବ୍ୟର୍ଥ ବାଣୀ ଓ ବ୍ୟର୍ଥ ସ୍ୱର ବ୍ୟର୍ଥ, ପ୍ରଭାବ ପକାଇ ପାରିଲା ନାହିଁ ବୋଲି । ତାହା ଉଦ୍ଦିଷ୍ଟ ଶୋଷିତ ପୀଡ଼ିତମାନଙ୍କର ଜୀବନ ଜଡ଼ିତ ହୋଇପାରିଲା ନାହିଁ ବୋଲି । କାରଣ ଏ ସାମ୍ୟବାଦୀ ପ୍ରତ୍ୟୟ ଓ ନିଷ୍ଠା କବିଙ୍କର ଜୀବନରୁ ବା ଅନ୍ତର୍ଜୀବନରୁ ନ ଉପୁଜି କେବଳ ମାନସରୁ ସମ୍ଭବିଲା । ଫଳତଃ, ତାହା (ସାଂପ୍ରତିକ) ଚେତନା ନ ହୋଇ ତତ୍କାଳୀନ ସାଂପ୍ରତିକ ବାର୍ତ୍ତା ବା ଚେତନାଭାସ ମାତ୍ର ହୋଇଗଲା । କମ୍ବା କବିର ଆନ୍ତରିକତା (?) ତତ୍କାଳୀନ ମାନସିକ ଫେସନରେ ଲୀନ ହୋଇଗଲା । ସେହିପରି, ତାଙ୍କର ଗୃହୀତ ମାନବବାଦୀ ସ୍ୱର—'ତୁମେ ମୋର ଛପାବହି ଯେତେବେଳେ ଛୁଅଁ/ଛୁଅଁ ନୂଆ ମଣିଷର ଗ୍ରନ୍ଥ' ହୁଇଟ୍‌ମ୍ୟାନଙ୍କର ଅମୃତ ସ୍ୱର—Comerado this is no book/Who touches this touches a man ପରି ପ୍ରଭାବକାରୀ ହୋଇପାରିଲା ନାହିଁ । ଆତ୍ମସ୍ଥ ବା ଚେତନା ଅନୁକୃତ କମ୍ବା ଉଦ୍ଭାବିତ ହେଲେ କଥା ସରିଲା ; କିନ୍ତୁ ସେଇ ସମୟରେ ଅନନ୍ତବାବୁଙ୍କ କବିତାର ସାମ୍ୟବାଦୀ ଚେତନା ପାଠକମାନଙ୍କୁ ପ୍ରଭାବିତ କରିଛି । କ୍ରମଶଃ ତାହା ଗତାନୁଗତିକ ଏବଂ ରୂପକଳ୍ପ—ପୀଡ଼ିତ ହୋଇପାଇ ଯଥେଷ୍ଟ ବେଗ ଓ ଆବେଗ ହରାଇଛି ;—ଯେପରି ଉର୍ଣ୍ଣନାଭ ତାହାର ଜାଲରେ ବନ୍ଦୀ ହୋଇ ନିଜର ମୁକ୍ତି ହଜାଇ ଦିଏ ।

ଦ୍ୱିତୀୟ ମହାଯୁଦ୍ଧ ପୃଥିବୀର ବିଭିନ୍ନ ଦେଶରେ ଅଳ୍ପ ବହୁତେ ଯେପରି ଅପଘାତ ଦେଲା, ତାହାର ପ୍ରତିକ୍ରିୟା ଆମ କବିମାନଙ୍କର ହୃଦୟରେ ବିଶେଷ ଗାର କାଟିପାରିଲା ନାହିଁ । ସେତେବେଳର ଧ୍ୱଂସ ବିଭୀଷିକା, ଯେତେ ହତାହତ, ମୈତ୍ରୀ ବା ପ୍ରୀତି ଇତ୍ୟାଦିରେ ମୂଲ୍ୟବୋଧର ବିପର୍ଯ୍ୟୟ ପ୍ରଭୃତିକୁ ନେଇ କବିର ଆହତ ଚେତନା ସାର୍ଥକ ରୂପେ ଆମ ସାହିତ୍ୟରେ ଫୁଟିପାରିଛି ବୋଲି ମନେ ହୁଏ ନାହିଁ । ଯୁଦ୍ଧର ପ୍ରତ୍ୟକ୍ଷ କମ୍ବା ପରୋକ୍ଷ

ଅନୁଭୂତି ଆମର ନ ଥିବାରୁ, ଅର୍ଥାତ୍ ତାହା ଅଙ୍ଗେ ନିଭାଇଲା ହୋଇ ନ ଥିବାରୁ ସେତେବେଳର ଚେତନା, 'କିଛି ସତ କହିବି' ବେଶୀ ମିଛ କହିବି ଅବସ୍ଥାର ହୋଇଯାଇଛି ।

ମୋଟ କଥା, ୧୯୪୭ ପର୍ଯ୍ୟନ୍ତ ସାଂପ୍ରତିକତା ବା ସାଂପ୍ରତିକ ଚେତନା ବୋଲି କୌଣସି ବିଧିବଦ୍ଧ ସଚେତନ ଅବସ୍ଥା ଆମ ଦେଶରେ ଉପୁଜି ନାହିଁ । ତେଣୁ ସେ କାଳରେ ସାଂପ୍ରତିକ ଚେତନାର ପ୍ରବାହ ଆମ କାବ୍ୟକବିତାରେ ଖୋଜିଲେ ଶୃଙ୍ଖଳିତ ଭାବରେ ମିଳିବା ସମ୍ଭବ ନୁହେଁ ।

ଆମେ ପରାଧୀନତାରୁ ମୁକ୍ତ ହେବା ପରେ ବସ୍ତୁତଃ ସାହିତ୍ୟରେ ଏବଂବିଧ ଚେତନା-ସଚେତନ ହୋଇଛୁଁ । ପାଶ୍ଚାତ୍ୟ ସାହିତ୍ୟ-ସଂସାରରେ ଯାହା ପୁରୁଣା ହୋଇଯାଉଥିଲା ତଥା ହୋଇଯାଇଲା, ତାହା ଆମେ ସଦ୍ୟ ସାଂପ୍ରତିକ ରୂପରେ ଏଇ ସମୟରୁ ଗ୍ରହଣ କରିବାକୁ ଶାନ୍ତମତ ଆରମ୍ଭ କଲୁଁ । ସାହିତ୍ୟ ସୃଷ୍ଟି ପାଇଁ ସେତେବେଳେ ଆମର ବିଶେଷ ପରିସ୍ଥିତି କିଛି ନ ଥିଲା ଯେମିତି ! ଆମର ପରିବେଷ୍ଟନୀ କବିଙ୍କ ପ୍ରାଣରେ କୌଣସି ସ୍ୱୟଂଭୂ ଚେତନା ଉପୁଜେଇବା ପାଇଁ ସମର୍ଥ ନ ଥିଲା ଯେମିତି ! ଏପରି କି ଏ ଭିତରେ ପୂର୍ବୋକ୍ତ ସାମ୍ୟବାଦର ସ୍ୱର ବି ଉଭେଇଗଲା ! ଯେଉଁ ପତିତ, ନିପୀଡ଼ିତ ଓ ଶୋଷିତ ସଂପ୍ରଦାୟ କବିଙ୍କ ଲେଖନୀରେ ସାମ୍ୟବାଦର କବିତା ସୃଷ୍ଟି ନିମନ୍ତେ ପ୍ରେରଣା ସ୍ୱରୂପ ଥିଲା, ତାହାର ସାମାଜିକ ବୈଷମ୍ୟ-ଜାତ ଦୁଃସ୍ଥିତି ଓ ଦୁରବସ୍ଥା କ'ଣ ବଦଳିଗଲା ? କିଛିଦିନ ପାଇଁ ସାମ୍ୟବାଦ ଦେବତାର କାଳସି-ଲଗା ବ୍ୟକ୍ତିତ୍ୱରେ କବି, ଗଳ୍ପଶିଳ୍ପୀ ବା ନାଟ୍ୟକାରମାନେ କିଛି ସାମ୍ୟବାଦୀୟ ରଚନା ଦାନ କରି, ଦୁଃସ୍ଥ ମଣିଷଙ୍କ ପ୍ରତି ଆବେଦନର ଦାୟିତ୍ୱ ତୁଟେଇଦେଲେ ଅବା !

ଏମିତି ଗୋଟିଏ ଅବସ୍ଥାରେ ବା ସମୟର ପୀଢ଼ରେ ଆମ କବିଏ ତଥା [illegible]ତର ସାହିତ୍ୟକାରମାନେ ସଂଜୟର ଦୃଷ୍ଟିନେଇ ଇଂଲଣ୍ଡ, ଆମେରିକା, ଫ୍ରାନ୍ସ, ରୁଷ୍ ପ୍ରଭୃତିର ସାହିତ୍ୟ-କୁରୁକ୍ଷେତ୍ରକୁ (ଆମ ଶିଳ୍ପୀଏ ଆଲେଖନ ଜଗତକୁ ତଥା ଅନ୍ୟାନ୍ୟମାନେ ଅନ୍ୟାନ୍ୟ କିସମର ଜଗତକୁ ଦେଖିବା ଭଳି) ଚାହିଁଲେ । ସେ ଦେଶମାନଙ୍କରେ ସମରଗତ, ସମାଜଗତ, ଜୀବନଗତ ବିଭିନ୍ନ ବିପର୍ଯ୍ୟୟର ଘାତପ୍ରତିଘାତ-ସଙ୍ଘାତରେ ଅଙ୍ଗେ ନିଭାଇଲା ଆଦ୍ୟ ଅଭିଜ୍ଞତା ଓ ଅନୁଭୂତିରୁ ଯେଉଁ ସୃଷ୍ଟିମାନ ହେଲା, ତାହା

ହେଲା ବଳିଷ୍ଠ ଓ ପ୍ରଭାବକାରୀ । କୁରୁକ୍ଷେତ୍ରର ସୈନିକମାନଙ୍କ ପରି ସେମାନେ ତାଙ୍କର ସମ୍ମୁଖୀନ ପରିସ୍ଥିତିକୁ ଭୋଗିଲେ । ତହିଁରୁ ସଂଜାତ ସୃଷ୍ଟି ତଦ୍‌ଗତ ସାଂପ୍ରତିକତାର ସ୍ୱାକ୍ଷର ବହନ କଲା । ଏଇଟି ହେଉଛି କଥା ଯେ ଧୃତରାଷ୍ଟ୍ରଙ୍କଠାରେ ସଞ୍ଜୟ କୁରୁକ୍ଷେତ୍ରରେ ଘଟିତ ସମସ୍ତ ସଙ୍ଘର୍ଷମୟ ଦୃଶ୍ୟର ପରିବେଷଣ କରୁଥିଲେ ମାତ୍ର । ତହିଁର ପ୍ରତିକ୍ରିୟା ଓ ବେଦାନୁଭବ ହେଉଥିଲା ଧୃତରାଷ୍ଟ୍ରଙ୍କର ; ଯେଉଁ ଧୃତରାଷ୍ଟ୍ର ଦେଖିପାରନ୍ତି ନାହିଁ ମାତ୍ର ବୁଝିପାରନ୍ତି ପାଠକ ପରି । ଏ ସମସ୍ତ ବ୍ୟାପାରକୁ ଅନୁଭବ କରିବା—ଥିଲା ଧୃତରାଷ୍ଟ୍ରଙ୍କ ଅବସ୍ଥା ଏବଂ ତାହାର ପରିବେଷଣ ବା ଉପସ୍ଥାପନା ମାତ୍ର ଥିଲା ସଞ୍ଜୟଙ୍କର ଦାୟିତ୍ୱ । ଆମ କବି ଓ କଥାକାର ସାହିତ୍ୟକାରମାନେ ଠିକ୍ (ଧୃତରାଷ୍ଟ୍ରଙ୍କ ଏଜେଣ୍ଟ) ସଞ୍ଜୟ ମହାଶୟଙ୍କ ପରି ପରିବେଷଣକାରୀ—ବିଦେଶୀ ସାଂପ୍ରତିକ ସାହିତ୍ୟରେ ସେଇ ଅନୁଭବୀ ଓ ଆତ୍ମଦଗ୍ଧ ସାହିତ୍ୟକାରମାନଙ୍କ ଉତ୍ସାରିତ ଚେତନାର । ସେମାନେ ତାଙ୍କର ବହିରଙ୍ଗରେ ଓ ଅନ୍ତରଙ୍ଗରେ ଯାହା ଭୋଗିଛନ୍ତି ଏବଂ ସେଇ ବେଦନାବର୍ତ୍ତରେ ଯେଉଁ ସାରସ୍ୱତ ଭ୍ରୂଣ କରିଛନ୍ତି, ସେଭଳି ପରିସ୍ଥିତି ଆମ ଦେଶରେ ହୋଇନାହିଁ । ସେଭଳି ପରିସ୍ଥିତି ପାଠକଙ୍କ ଏଜେଣ୍ଟ ସ୍ୱରୂପ ( ଉପନିଷଦରେ କବିର ଏପରି ଭୂମିକା 'ପରିଭୂ' ) ଆମ ସ୍ରଷ୍ଟାଏ ଅନୁଭବ ନାହାନ୍ତି । ସେମାନଙ୍କ ପ୍ରଥମାନୁଭବ ବା ପ୍ରତ୍ୟକ୍ଷ ଅଭିଜ୍ଞତାକୁ ଦେବଦେବୀଭଳି ଭୂମିକା ଦେଲେ, ଆମର ଦେହୁରିସ୍ୱରୂପ ବାକ୍‌ସ୍ରଷ୍ଟା-ମାନଙ୍କର ତଦ୍‌ଗୃହୀତ ଚେତନାକୁ କାଳିସି-ପଣରେ ନିରୂପିତ କରାଯାଇ ପାରିବ । ଇଂରେଜୀ ଶିକ୍ଷା ଏବଂ ତାହାର ମାଧ୍ୟମରେ ବିଦେଶୀ ସାହିତ୍ୟର ଅଭିନିବିଷ୍ଟ ଅଧ୍ୟୟନ ସେଠାରେ ଘଟିତ ସାଂପ୍ରତିକ ଚେତନାର କାଳିସି ଲଗାଇଛି ଆମ ଦେହୁରିଆମାନଙ୍କ ସୃଜନସମର୍ଥ ବ୍ୟକ୍ତିତ୍ୱରେ ।

ଏଇ କାରଣରୁ, ଅର୍ଥାତ୍ ଆମର 'ଏଠି-ସେମିତିକା-କିଛି-ନାହିଁ । ଯାହା-ଅଛି-ତାଙ୍କର-ସେଇଠି' କାରଣରୁ ଆମ କବି, ନାଟ୍ୟକାର ଓ ଗଳ୍ପକାର ପ୍ରଭୃତିଙ୍କର ସାରସ୍ୱତ ଗୁରୁ ଅଛନ୍ତି । ସ୍ରଷ୍ଟା ପକ୍ଷରେ ଦୀକ୍ଷା-ସିଦ୍ଧ ଗୁରୁ ବରଣ କରିବାର ଅର୍ଥାତ୍ କାହାକୁ ଆଦର୍ଶ ରୂପେ ଗ୍ରହଣ କରିବାର ଅର୍ଥ ନାହିଁ । ଆଦର୍ଶର ପ୍ରଭାବ କଟେଇ ନ ପାରିଲେ ସ୍ରଷ୍ଟା ବିଫଳ ହେବ ! କାଳିଦାସ ଶକୁନ୍ତଳା-ଦୁଷ୍ମନ୍ତ ବ୍ୟାପାରରେ ଗୁରୁ ବ୍ୟାସଦେବଙ୍କ ପ୍ରଭାବ କାଟି, ନିଜର ଭାବ, ଅନୁଭବ ଓ କଳ୍ପନାକୁ ଗୁରୁ କଲେ, ଆଦର୍ଶ କଲେ । କବିଶେଖର ଚିନ୍ତାମଣି ଗୁରୁ ରାଧାନାଥଙ୍କ ପ୍ରଭାବ କାଟିପାରିଲେ ନାହିଁ ;

ବ୍ୟର୍ଥ ହେଲେ (ପରୀକ୍ଷାସ୍ୱରୂପ, ଚଳିକା ସହିତ ଧୂମସରକାବ୍ୟ, କିମ୍ବା 'ମହାଯାତ୍ରା' ସହିତ 'ବହ୍ନମାହିତ୍ୟ' ପଢ଼ା ଯାଇପାରେ ) । ଆଲୋଚ୍ୟ ସମସ୍ତର ଦୃଷ୍ଟିରୁ ସଚ୍ଚିଦାନନ୍ଦ ରାଉତରାୟଙ୍କ କବିତାବଳି ଅଧ୍ୟୟନ କଲେ (ରବୀନ୍ଦ୍ରନାଥ, ଜୀବନାନନ୍ଦ ଦାଶ ପ୍ରଭୃତି ଦେଶୀ କି ଅପ୍ରଦେଶୀ କବିଙ୍କୁ ବାଦ ଦେଇ ) ଦେଖାଯିବ ଯେ ହୁଇଟ୍‌ମ୍ୟାନ, ମାୟାକୋଭ୍‌ସ୍କି, ଟର୍ଣର, ଏଲିଅଟ୍ ପ୍ରଭୃତି ବହୁ କବିଙ୍କର ଭାବ ଓ ବାକ୍ୟମାନ ଏଗୁଡ଼ିକରେ ଗୃହୀତ ବା ପ୍ରତିଧ୍ୱନିତ ହୋଇଛି । ସେମାନେ ପ୍ରତ୍ୟେକେ ଏହାଙ୍କ ପାଇଁ କିଛି କିଛି ସାମୟିକ ଆଦର୍ଶ ହୋଇଥିଲେ ହେଁ ନିର୍ଦ୍ଦିଷ୍ଟ ଗୁରୁ ହୋଇ କେହି ନାହାନ୍ତି ବୋଲି ମନେହୁଏ । ଏପରି ଅବସ୍ଥା ଭଲ କି ମନ୍ଦ କହିହେବ ନାହିଁ, ପାଠକ କେବଳ ବୁଝିପାରିବ । ଅବଧୂତଙ୍କର ଚବିଶ ଗୁରୁ ଥିଲେ ବୋଲି କେହି ଦୋଷ ଦିଅନ୍ତି ନାହିଁ । ଦୋଷ ଦେଇଥାନ୍ତେ ଯଦି ସେ ଜଣେ ଗୁରୁଙ୍କୁ ନେଇ ମାତିଥାନ୍ତେ । ସେ ପ୍ରତ୍ୟେକର ଭାବମାନ ସ୍ୱୀକାର କରିଥିଲେ— ଅଧିକନ୍ତୁ ତାହା ସବୁ ଜୀବନର ବିଶ୍ୱାସରୂପେ ଧେନିଥିଲେ । କାବ୍ୟକବିତା କ୍ଷେତ୍ରରେ ଏ ଅବସ୍ଥାଟି କିଞ୍ଚିତ୍ ନଆସୁ । ସଚ୍ଚି ରାଉତରାୟଙ୍କ କବିତାରୁ ତାଙ୍କର ପ୍ରତିଭା ଅବଶ୍ୟ ବାରିହୁଏ, ମାତ୍ର ଅନେକତଃ ତାହା ଚିତ୍ତରେ ପ୍ରଭାବ ଅଙ୍କନ କରିପାରେ ନାହିଁ, ଅନ୍ତର୍ଭେଦ କରେ ନାହିଁ ।

ଗ୍ରହଣସାମର୍ଥ୍ୟ ଓ ଅନୁଭବ ତାରତମ୍ୟରେ ପାଠକରୁ ପାଠକର ଭିନ୍ନତା ସତ୍ତ୍ୱେ କୁହାଯାଇପାରେ ଯେ ତହିଁରେ କବିର ଆନ୍ତରିକତା ଅପେକ୍ଷା ଶୂନ୍ୟତା ଅଧିକ, ଏଇ ଶୂନ୍ୟତାକୁ ଆଧୁନିକ ଚେତନା ବୋଲି କହିହେବ ନାହିଁ । ପକ୍ଷାନ୍ତରେ ତହିଁରେ ଅନ୍ତରଙ୍ଗ ଅପେକ୍ଷା ବହିରଙ୍ଗ ବା ଆଟୋପ ଅଧିକ । ତହିଁରେ ଅନେକତଃ ଆନ୍ତର୍ଜାତିକତାର ବ୍ୟାପ୍ତି-ପ୍ରୟାସ ଥିବା ସତ୍ତ୍ୱେ ସାଂପ୍ରତିକ ଯୁଗଚେତନା ଅପେକ୍ଷା ଯୁଗଫେସନର ମାତ୍ରା ଅଧିକ । କବିଙ୍କ ସୃଷ୍ଟିରେ ପ୍ରାଣ-ସ୍ପର୍ଶର ଅନୁଭବ ଯେତେ ନ ହୁଏ, ଚମକ ଓ ଚମତ୍କାରିତା ସେତିକି ଗୁଞ୍ଜିଥାଏ । ସୁତରାଂ, ସାଂପ୍ରତିକ ଚେତନା-ବୋଧରେ ସଚ୍ଚିବାବୁଙ୍କ କବିତା ହୋଇ ନାହିଁ କିମ୍ବା ହେଲା ନାହିଁ' ବୋଲି କହିହେବ ନାହିଁ—'ହୋଇଛି' କିମ୍ବା 'ହେଲା' ବୋଲି ମଧ୍ୟ କହି ହେବ ନାହିଁ ।

ଅନ୍ୟ ଗୋଟିଏ କବିତାର ଦୃଷ୍ଟାନ୍ତ ନିଆଯାଉ । ଗୁରୁ ପ୍ରସାଦ ମହାନ୍ତିଙ୍କର 'କାଳପୁରୁଷ' । ପ୍ରଥମ ମହାଯୁଦ୍ଧର ଧ୍ୱଂସାବଶେଷ ଉପରେ

କବି ଏଲିଅଟ୍ ମର୍ମନ୍ତୁଦ ପ୍ରତ୍ୟକ୍ଷ ଅନୁଭବକୁ ନେଇ ୧୯୨୨ରେ ଲେଖିଲେ Waste Land. ସେଥିରେ ଥିଲା ଶିଳ୍ପସୂତ୍ରରେ ଜୀବନର ଉଷରତା ; ତତ୍‌କାଳୀନ ସାଂପ୍ରତିକ ଅଧଃପତନ ଓ ନୈରାଶ୍ୟ ; ସହରର କଦର୍ଯ୍ୟତା ; ଆଧୁନିକ ଯନ୍ତ୍ର-ନିୟନ୍ତ୍ରିତ ଯାନ୍ତ୍ରିକ ଜୀବନ ; ଦୁର୍ଭିକ୍ଷ ଓ ଅନାଚାର ସୂତ୍ରରେ ଅବକ୍ଷୟ ଓ ଶୂନ୍ୟତା—ନିଃସାରତା । କବିତାଟି ଠିକନାହିଁ ଜଣେ ପାଠକ ବୁଝୁ କି ନ ବୁଝୁ, ଏ କବିତାର ସମଗ୍ରତା ତାକୁ ପ୍ରଭାବିତ କରେ, ଅଭିଭୂତ କରେ । କବିତାର ଏ ଶକ୍ତି ବା ଇଂପାକ୍ଟର ହେତୁ ହେଉଛି କବିଙ୍କର ପ୍ରତ୍ୟକ୍ଷାନୁଭୂତି, ପ୍ରତ୍ୟକ୍ଷ ଅଭିଜ୍ଞତା, ବେଦନା ତଥା ତଜ୍ଜନିତ ନୈରାଶ୍ୟର ଅଙ୍ଗୀକାର ।

ଗୁରୁପ୍ରସାଦଙ୍କ ଅନୁଭବ ପାଇଁ ସେପରି ପ୍ରତ୍ୟକ୍ଷ କ୍ଷେତ୍ର କି ପରିସ୍ଥିତି କିଛି ନ ଥିଲା । ସେ ପ୍ରତିଭାବାନ୍,—ଅଧ୍ୟୟନ ମାଧ୍ୟମରେ ପରୋକ୍ଷା-ନୁଭବ କରିଛନ୍ତି ଏଲିଏଟ୍‌ଙ୍କ କବିତାକୁ, ଏଲିଏଟ୍-ଅନୁଭୂତ Waste-Landର ଭିତ୍ତିକୁ ନୁହେଁ । ଏଇ କାରଣରୁ 'କାଳପୁରୁଷ' ପଢ଼ିବାବେଳେ ଚମତ୍କାର ଲାଗେ, ପାଠକକୁ କାଳସି ଲାଗେ । ଏ କାଳସି-ସୀତ୍‌କାର ଛୁଟି-ଯିବାପରେ ପାଠକ ବୁଝିପାରେ, ତାକୁ କାଳସି ଲାଗିଥିଲା ; ତା ପ୍ରାଣରେ ଦେବାବତରଣ ହୋଇ ନାହିଁ । ବସ୍ତୁତଃ, ଏଲିଅଟ୍‌ଙ୍କ କବିପ୍ରାଣରେ ଦେବା-ବତରଣ ହୋଇଥିଲା । ସେଥିପାଇଁ ତ ତାଙ୍କର ଅନ୍ତରଙ୍ଗତାର ପ୍ରଭାବ ବଳରେ ସେ ବହୁ କବିଙ୍କର ଆଦର୍ଶ ହୋଇଗଲେ । ସେ କାଳର ସାଂପ୍ରତିକ ଚେତନା ପରିବର୍ତ୍ତିତ ହୋଇଗଲାଣି । ଏବେ ଚଳନ୍ତି ଚେତନା ତହିଁରୁ ବହୁତ ଭିନ୍ନ । ତେଣୁ 'କାଳପୁରୁଷ'ର (ବହିରଙ୍ଗ) ଶୈଳୀ ହିଁ ଆଦୃତ ହୋଇ ରହିବ । ତା'ର (ଅନ୍ତରଙ୍ଗ) ଆତ୍ମା ଆମ ପରିପାର୍ଶ୍ୱର ଓ ଜୀବନର ପ୍ରତିନିଧିତ୍ୱ କରୁନାହିଁ ବୋଲି ସାଧାରଣରେ ଯଥେଷ୍ଟ ନ ରହି ତା'ର ଆଦର ଏଲିଅଟାସକ୍ତ ବା ଇଂରେଜ କବିତାଧିପୁନପ୍ରବଣ, ଏବଂ ପାଶ୍ଚାତ୍ୟ ସମାଲୋଚନା ମୁଷ୍ଟିମେୟ ପାଠକଙ୍କଠାରେ ରହିବା ସମ୍ଭବ । 'କାଳପୁରୁଷ' ଚମତ୍କାର ଶୈଳୀର କବିତା ହେଲେ ହେଁ ଉଚ୍ଚକବିତା ହେବ ନାହିଁ । ତହିଁର ଚେତନା କେବଳ ସାଂପ୍ରତିକ (?) ନୁହେଁ, ପୁରୁଣା (୧୯୨୨) ସାଂପ୍ରତିକ, ଅଧିକନ୍ତୁ ଆହୃତ । ଆଦର୍ଶ ନିୟନ୍ତ୍ରିତ । ଏପରି ଅବସ୍ଥାରେ କୌଣସି ସୃଷ୍ଟି (ଦେଶ) କାଳପାତ୍ର ଅତିକ୍ରାନ୍ତ ହୋଇପାରିବା ସାଧାରଣତଃ ସମ୍ଭବ ନୁହେଁ । କିନ୍ତୁ ଅସଲ କଥା, ଏ କବିତାଟି ନାଟ-କୀୟତାର ଶୈଳୀରେ ମୁଗ୍ଧ କରିବା ସତ୍ତ୍ୱେ ପରିଣାମରେ କିଛି ଗୋଟାଏ

'ରହସ୍ୟାଏ ଅଭାବ ତଥାପି'—ଯେଉଁ ଅନିର୍ଦ୍ଦେଶ୍ୟ ଅଭାବର ବୃତ୍ତଟି ବଢ଼ି-ବଢ଼ି ଯାଉଥାଏ ପାଠକର ଚିତ୍ତରେ । ଅଥଚ ଏ ଅଭାବଟି ଶୂନ୍ୟତାବୋଧ ବି ନୁହେଁ ।

ସ୍ଥୂଳତଃ, ଆମର ସ୍ୱାଧୀନତା-ପରବର୍ତ୍ତୀ କାଳରୁ ଏ ପର୍ଯ୍ୟନ୍ତ ଆମ ସାହିତ୍ୟକାରମାନେ ବିଦେଶୀ ସାହିତ୍ୟସ୍ରଷ୍ଟାଙ୍କ ଅନୁକରଣ କିମ୍ବା ଅନୁ-ସରଣ କରିଆସୁଛନ୍ତି—କବିତାରେ, ନାଟକରେ, ଗଳ୍ପ-ଉପନ୍ୟାସରେ । ଅଥଚ ସେଇ ବିଦେଶୀ ସ୍ରଷ୍ଟାମାନଙ୍କର ପୁରୁଣା ହୋଇଯାଇଥିବା-ଅଥବା ହୋଇଯାଉଥିବା ସାଂପ୍ରତିକ ଚେତନାକୁ ନୂଆ ରୂପରେ ଆମେ ଗ୍ରହଣ କରିଆସିଛୁଁ । ଏଥିରେ ସାଧାରଣ ପାଠକ ବା ସାହିତ୍ୟ-ନିର୍ଲିପ୍ତମାନଙ୍କ ଭିତରେ ଆପଣାକୁ ଉର୍ଦ୍ଧ୍ୱତନ ମନେ କରିଆସିଛୁଁ ଗୌରବବୋଧରେ । ଏଲିଅଟ୍ ଯେଉଁ ଚେତନାନୁଭବର ମର୍ମିକ ବ୍ୟାପାର Waste Land ମାଧ୍ୟମରେ ୧୯୨୨ରେ ବ୍ୟକ୍ତ କଲେ, ଆମେ ତାହା ୧୯୬୦ରେ (ପ୍ରଜ୍ଞା ପତ୍ରିକାରେ ପ୍ରକାଶିତ) 'କାଳପୁରୁଷ' କବିତାରେ ପାଇଲୁଁ—ଯାହା ଆମକୁ ସଦ୍ୟ ବୋଲି ମନେ ହେଲା । ଅଥଚ, ଏଇ ଭିତରେ ୧୯୪୩ରେ ଜାଁ-ପଲ୍ ସାର୍ତ୍ରେ Being and Nothingness ଗ୍ରନ୍ଥ ଛପାଇ ସ୍ଥିତିବାଦ ଦର୍ଶନର ଗୃହୀତମତ ଉପସ୍ଥାପନା କଲେଣି । ୧୯୫୦ ବେଳକୁ Absurd ବା ଅଜବ ନାଟକର ଜନ୍ମହେଲାଣି ତଥା ୧୯୬୨ ବେଳକୁ ତା'ର ସମାପ୍ତି ଘଟିଲାଣି । ଆମେ ସ୍ଥିତିବାଦ ଜାଣି ଆଲୋଚନା ଆରମ୍ଭ କଲୁଁ ପ୍ରାୟ ୧୯୬୫/୬୬ ପାଖରୁ, ଏବଂ Absurd ଓରଫ୍ ଅଜବ ଚଜ ପାଇଲୁଁ ୧୯୬୯ରେ—ମନୋରଞ୍ଜନ ଦାସଙ୍କ 'ବନହଂସୀ' ନାଟକରେ ।

ଏପରି ଅବସ୍ଥାରେ, ଆମ-ନିଜର-ହୋଇ କୌଣସି ସାଂପ୍ରତିକ ଚେତନା ରୂପ ନେଉଛି, କିମ୍ବା ସେଥିପାଇଁ କୌଣସି ପରିସ୍ଥିତି (situa-tion) ଅଛି—ଯାହା ଆମ ସାହିତ୍ୟ ସୃଷ୍ଟିମାନଙ୍କରେ ଫୁଟିଛି, ସେପରି ମନେହେଉ ନାହିଁ । ଯେଉଁଠି ଯାହା ବା କିଛି ରହୁଛି, ତାହା ସମୁଦ୍ରକୁ ଶଙ୍ଖେ ପାଣି । ଏଥିପାଇଁ ଆଉ ଏକ କାରଣ ଅଛି—ଆମର ପ୍ରାୟ ସମସ୍ତ (ଜଣାଶୁଣା/ଆଦୃତ ହୋଇଥିବା) ଲେଖକ ହୁଏ ତ ଉଚ୍ଚ ଇଂରେଜି-ଶିକ୍ଷିତ ତଥା ଇଂରେଜିଶିକ୍ଷା ଭିତ୍ତିରେ ଉଚ୍ଚ ଚାକିରି-ଧାରୀ, ନଚେତ୍ ମଧ୍ୟବିତ୍ତ କିମ୍ବା ତହିଁରୁ ଉର୍ଦ୍ଧ୍ୱତର ଅବସ୍ଥାରେ । ଏହି କାରଣରୁ ମଧ୍ୟ ନିଜ ଆଡ଼କୁ ଚାହିଁବା ଅପେକ୍ଷା (ଇଂରେଜଜ୍ଞାନର ବିଦେଶୀ ଦର୍ପଣର ଆକର୍ଷଣରେ) ଅନ୍ୟ ଆଡ଼କୁ

ଗ୍ରହିଁବା ସ୍ୱାଭାବିକ ହୋଇପଡ଼ୁଛି । ଯେହେତୁ ଇଂରେଜୀଜ୍ଞାନ ଦିଗନ୍ତବିସ୍ତାରୀ ( ବିଶେଷତଃ, ଇଂଲଣ୍ଡ୍-ଆମେରିକାଭେଦୀ ) ସଂଜୟ-ଦୃଷ୍ଟି ଦେଇଛି । ଫଳରେ, ଆମ ସାଂପ୍ରତିକ ସାହିତ୍ୟରେ ସେ ଆଡ଼ର ବିଭିନ୍ନ ଚେତନାର ଶୀର୍ଷକମାନ ହୋଇଆସିଛି—ଯୁଗଯନ୍ତ୍ରଣା, ଜୀବନ ଜଟିଳତା, ଜ୍ୱାଳାଯନ୍ତ୍ରଣା, ବ୍ୟକ୍ତିବିଚ୍ଛିନ୍ନତା, ଅସହାୟବୋଧ, ଆତ୍ମନିର୍ବାସନ, ଖଣ୍ଡଚୈତନ୍ୟ, ବାସ୍ତବାପୂ ସମ୍ପର୍କସୂତ୍ର (Objective Correlative), ମୃତ୍ୟୁ-ସଚେତନତା, ବ୍ୟର୍ଥତା/ନୈରାଶ୍ୟ, ଆର୍କେଟାଇପ୍, ଚେତନା ପ୍ରବାହ ଆଦି ବହୁ ସାରସ୍ୱତ ସଙ୍ଗ ବା ସ୍ଲୋଗାନ୍ (ବ୍ୟାକରଣର ସୂତ୍ରମାଳା ପରି) । ବିଦେଶୀ ସମାଲୋଚକମାନେ ଯେଉଁ ଆଲୋଚନାମାନ କଲେ, ତାକୁ ଗ୍ରହିଁ ତାହା ସହିତ ଖାପିବା ଭଳି ଆମର ଲେଖା ହେଲା—କବିତା, ନାଟକ, ଗଳ୍ପ, ଉପନ୍ୟାସ । ସେଇ ଅନୁସାରେ ଆମର ମନକୁ ମାଜିମୁଜି ସଜାଡ଼ି-ନେଲୁଁ, ଆଧୁନିକ ଓରଫ୍ ସାଂପ୍ରତିକ ଚେତନାଧାରୀ ହେଲୁଁ । ଆମର ନୂଆ ସାହିତ୍ୟ ସୃଷ୍ଟିରେ ପରମ୍ପରା-ପ୍ରବାହିତ ଅତୀତ ସାହିତ୍ୟର ସମ୍ବନ୍ଧ-ସୂତ୍ର କିଛି ନାହିଁ କହିଲେ ଚଳେ । ଯେଉଁଠି ଯେମିତି ପୁରାବୃତ୍ତ (Myth)ର ପ୍ରୟୋଗ ହୋଇଛି, ଅଧିକାଂଶ ସ୍ଥଳରେ ତାତ୍ପର୍ଯ୍ୟହୀନ ହୋଇଛି । ବହୁ କାରଣରୁ ଆମ ସାଂପ୍ରତିକ ସାହିତ୍ୟ ଆମ ଗ୍ରାମର ଚଟିଘରେ ଆଶ୍ରିତ ବାଟୋଇ ପରି ଅତିଥିସ୍ୱରୂପ ହେଲେ ମଧ୍ୟ ଆପଣାର ହୋଇପାରି ନାହିଁ ।

ଏବେ ଆମର ସାଂପ୍ରତିକ କବିତାର ମୁଖ୍ୟତଃ ଦୁଇଟି ଲକ୍ଷଣ ଧରି ହେବ—ନିତାନ୍ତ ଆତ୍ମକେନ୍ଦ୍ରିକତା ବା ବ୍ୟକ୍ତିସର୍ବସ୍ୱତା, ଏବଂ ବୌଦ୍ଧିକତା । ସାଧାରଣ ଶିକ୍ଷିତ-ପାଠକଙ୍କ ପାଖରେ ଆଜିର କବିତା ଦୁର୍ବୋଧ ହେବାର ଏହା ବଡ଼ କାରଣ । ଏପରି କି ତାହା ବୁଝି ପାରୁଥିବାର ଭାନ କରୁଥିବା କିମ୍ବା ମନେକରୁଥିବା ଆପାତତଃ ସମଜଦାର ଶିକ୍ଷିତ-ପାଠକ ଠିକ୍ ବୁଝେ ବୋଲି ମନେହେଉ ନାହିଁ । ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ କବିତାର ଅର୍ଥ ଏଭଳି ଭିନ୍ନ ଭିନ୍ନ ପାଠକଠାରେ ଭିନ୍ନ ଭିନ୍ନ ହେବାରେ, ତଥା ତାହାର ବାସ୍ତବ ଆଲୋଚନାରେ ଧରାପଡ଼େ । ଏଭଳି ପାଠକ ଅନେକାଂଶରେ ଠକ ଓ ଆତ୍ମବିଡ଼ମ୍ବିତ । ନିତାନ୍ତ ଆତ୍ମକେନ୍ଦ୍ରିକତା କବିତ୍ୱର ବ୍ୟକ୍ତିଠାରେ ଅସ୍ପଷ୍ଟ ରହିଯାଏ । ଏ ଗୁଣ (?) କବିର ଆତ୍ମ-ସଂକୋଚନର ଗୋଟିଏ ପରିଣାମ । ପୁନଶ୍ଚ, ନିତାନ୍ତ ବୌଦ୍ଧିକତା ପର୍ଯ୍ୟାନ୍ତରେ କୃତ୍ରିମତା ମଧ୍ୟ ଅବକ୍ଷୟର ଲକ୍ଷଣ । ସାହିତ୍ୟର ଇତିହାସରେ

ନେଇ ବିବେଚନା କରିହେବ । ଏ ଯୁଗର ଅବକ୍ଷୟର ବଡ଼ କବି ହେଉଛନ୍ତି ଏଲିଅଟ୍ । ସେ ବଡ଼ କବି ; କାରଣ ସରସ୍ୱତୀ ନିର୍ବୋଧ କାଳିଦାସଙ୍କୁ ବାରମ୍ବାର ଜନ୍ମ ଦେଇ ବିଦଗ୍ଧ କଲା ପରି, ଅବକ୍ଷୟକୁ ସେ ନିଜ ଅନୁଭବରୁ ବହୁ ଯନ୍ତ୍ରଣା ଭିତରେ ବାରମ୍ବାର ଜନ୍ମାଇ ମାର୍ମିକ କବିତାରେ ପରିଣତ କରିପାରିଛନ୍ତି । ଯେ କୌଣସି କାଳର ହେଉ ଉଚ୍ଚ କବିତା ଅନୁଭବ ସଞ୍ଜାତ ହୋଇଥିବା ନିଶ୍ଚିତ । ଏ ସତ୍ତ୍ୱେ, ବର୍ଣ୍ଣିତ ଅବକ୍ଷୟର ପରିସ୍ଥିତି ବଦଳିଯାଇ ଥିବାରୁ ଏବେ ଏଲିଅଟ୍ ଆଉ କବିଜଗତର ଅବ୍ୟବହିତ ଆଦର୍ଶ ନୁହନ୍ତି । ଏଲିଅଟ୍ ତାଙ୍କର ସମସ୍ୟାବିଧାରଣାର ପ୍ରେରଣା ଆଣିଥିଲେ ସାଲଭଡ଼ାର ଡାଲିଙ୍କର ଭ୍ରାନ୍ତିବାସ୍ତବବାଦୀ ଆଲେଖ୍ୟ— ଖୋଟା ଘଡ଼ି (Limping Clock), ବୋହି ଯାଉଥିବା ଘଡ଼ି ପ୍ରଭୃତିରୁ ଲାଭ କରିଥିବା ପରି ଅନ୍ୟାନ୍ୟ କବି, ନାଟ୍ୟକାରମାନେ ପିକାସୋଙ୍କ ପରୀକ୍ଷା ନିରୀକ୍ଷାରୁ ବିଶେଷତଃ ଜ୍ୟାକ୍‌ସନ୍ ପୋଲେକ୍‌ଙ୍କ ସ୍ୱୟଂକ୍ରିୟ ବିକ୍ଷେପଣ (action painting ବା obstract-expressionism) ପ୍ରଭୃତିରୁ ପ୍ରଭାବ ଗ୍ରହଣ କରିଥିଲେ । ପରିଣାମରେ ଦୁର୍ବୋଧତା ବଢ଼ି- ଯାଇଛି—ନୂଆ କବିତାରେ, ଅଜବ ଜାତୀୟ ନାଟକରେ । ଗଳ୍ପରେ ମଧ୍ୟ । ଆମ ସାହିତ୍ୟ ସ୍ରଷ୍ଟାମାନେ ବିଦେଶୀ ସାହିତ୍ୟ ସୂତ୍ରରେ ଦୁର୍ବୋଧ ହେବା ଶିଖିଛନ୍ତି । ବୌଦ୍ଧିକତା ବୌଦ୍ଧିକତା ହେଲେ ବି କବିତା କିମ୍ବା ସମସ୍ତ କଳାଗତ ସୃଜନ ପାଇଁ ଅବକ୍ଷୟ ଓ ଅଧଃପତନ—ଏଥିରେ ସନ୍ଦେହ ନାହିଁ । ଏଇ ଦୁରବସ୍ଥା ସଂପ୍ରତି ସମସ୍ତ ଭାରତୀୟ ସାହିତ୍ୟକ୍ଷେତ୍ରରେ ମଧ୍ୟ ବିଦ୍ୟମାନ । ତେଣୁ ଆନ୍ତର୍ଜାତିକ ସ୍ୱୀକୃତି ଲାଭ କରିବାରେ ଆଜିର ଭାରତୀୟ ସାହିତ୍ୟ ହକ୍‌ଦାର ହୋଇପାରି ନାହିଁ । ସେ ଦେଶମାନଙ୍କର ପାଠକ ନିଜର ସାହିତ୍ୟ ପିଧାସଳଖ ନ ପଢ଼ି ତା ସାହିତ୍ୟରୁ ଅନୁକୃତ ଚେତନାର ସାହିତ୍ୟ ପଢ଼ିବ କାହିଁକି ? (ତଥାପି ଆମର ଗୋଟିଏ ମାସିକ ସାହିତ୍ୟ- ପତ୍ରିକାର ମୁଖ୍ୟ ସଂପାଦକ ଏବେ ବିଚିତ୍ର ଧାରଣା ଦେଉଛନ୍ତି ଯେ ଅନୂଦିତ ହୋଇ ଇଂରେଜୀରେ ଛପା ହେଲେ ଆନ୍ତର୍ଜାତିକ ଖ୍ୟାତି ମିଳିଯାଏ ।)

ଆଲୋଚନାକ୍ଷେତ୍ରରେ ମଧ୍ୟ ବିଦେଶୀ ଆଲୋଚକମାନଙ୍କ ସ୍ୱରର ପ୍ରତିଧ୍ୱନି ମାତ୍ର କରୁଛନ୍ତି ଆମ ସମାଲୋଚକମାନେ । ଯେ କୌଣସି ପତ୍ର- ପତ୍ରିକାରେ, ଏ ଶ୍ରେଣୀର ଆଲୋଚନା ସଙ୍କଳନରେ, ବହୁ କବିତା- ସଂକଳନର ମୁଖବନ୍ଧରେ ଏ ଉକ୍ତିର ପ୍ରଚୁର ସାକ୍ଷ୍ୟ ମିଳିବ । ଆମର ସାଂପ୍ରତିକ ସାହିତ୍ୟାଲୋଚନା ମଧ୍ୟ ଆମଦାନି ଜାତିର । ବିଦେଶୀ

ଆଲୋଚନା ପଦ୍ଧତି ସହିତ ଆମର ଆଲୋଚନା ଧାରା ସମ୍ପର୍କରେ ଜ୍ଞାନର ତଥା ନିଜସ୍ୱ ବିବେଚନାର ସମନ୍ୱୟ ରହିଲେ ଉତ୍ତମ ହୁଅନ୍ତା । ତାହା ହୋଇ ନାହିଁ ବୋଲି ସାଂପ୍ରତିକ ଆଲୋଚନାରାଶି ପ୍ରାୟ ଏକତରଫା ହୋଇ-ଯାଇଛି । ସେଥିପାଇଁ, ଦୃଷ୍ଟାନ୍ତ ସ୍ୱରୂପ—କେହି କେହି ଜଣାଶୁଣା କବି ତଥା ଆଲୋଚକ ଭଞ୍ଜସାହିତ୍ୟରେ ମୃତ୍ୟୁ ସଚେତନତା ନାହିଁ ବୋଲି ଯୁକ୍ତି ବାଢ଼ି ତାହାକୁ ବାଜେ ସାହିତ୍ୟ କହିପାରୁଛନ୍ତି । ତେବେ, ଆଧୁନିକ ପାଶ୍ଚାତ୍ୟ ଆଲୋଚକମାନଙ୍କର ଅନେକ ଅନେକ ଚଳନ୍ତି ଉକ୍ତି ଓ ମତ ବହୁପୂର୍ବରୁ ଆମ ଦେଶରେ ସାହିତ୍ୟତତ୍ତ୍ୱ-ବିବେଚକମାନେ ଅବିକଳ ଲେଖିଯାଇଛନ୍ତି । ସେକ୍‌ସପିୟର୍ ତଥା ଏଲିଅଟ୍‌ଙ୍କର କୁମ୍ଭୀଲକବୃତ୍ତି ବା ଆହରଣବୃତ୍ତି ସତ୍ତ୍ୱେ ମୌଳିକତାର ନିର୍ଦ୍ଦେଶ କରିବାକୁ ଯାଇ ପାଶ୍ଚାତ୍ୟ ଆଲୋଚକଙ୍କ ଉକ୍ତି ବା ଯୁକ୍ତି ସହିତ ୮୦୦/୯୦୦ ବର୍ଷ ତଳର ଆନନ୍ଦ-ବର୍ଦ୍ଧନଙ୍କର ମୌଳିକତା ସମ୍ପର୍କୀୟ ପ୍ରଖ୍ୟାତ ଶ୍ଳୋକଟି ବିଚାର କରାଯାଇ-ପାରେ ।

ସମଗ୍ରତଃ, ଆମର ସାଂପ୍ରତିକ ସାହିତ୍ୟ-ଚେତନା ପ୍ରସଙ୍ଗରେ କୁହାଯାଇପାରେ ଯେ ଆମର ବାକ୍‌ସ୍ରଷ୍ଟାଙ୍କର ମାନସରେ ଦାସତ୍ୱ-ପ୍ରବୃତ୍ତି ରହିଯାଇଛି ଓ ସମ୍ୟକ୍ ବଢ଼ିଯାଇଛି—ଶ୍ୱେତାଙ୍ଗମାନେ ଆମ ଦେଶ ଛାଡ଼ି ଚାଲିଯାଇଥିବା ସତ୍ତ୍ୱେ । ଏତିକି ବିବେଚନା କରାଯାଇପାରେ—ଜାପାନ ଭଳି ଆମ ଆଖପାଖର ଦେଶ ତ ପୁଣି ପାଶ୍ଚାତ୍ୟ ପ୍ରଭାବରୁ ମୁକ୍ତ ରହି ଉଚ୍ଚସାହିତ୍ୟ ସୃଷ୍ଟି କରିପାରୁଛି ! ଆମର ନିଜସ୍ୱ ଯେମିତି ଶୂନ୍ୟତା, ମାନସିକ ଦାସତ୍ୱ, ବେଦନା ଓ ସଂବେଦନାର ଅଭାବ ; ଏବଂ ଏହା ହିଁ ଯେମିତି ଆମ ସାଂପ୍ରତିକତାର ଲକ୍ଷଣ । ବହୁକାଳ ବ୍ୟାପୀ ଅବକ୍ଷୟର ଛିନ୍ନ ସୀମାରୁ ଆମର ମୁକ୍ତି ଦରକାର ; କିନ୍ତୁ ଏଥିପାଇଁ ବ୍ୟାକୁଳତା କି କାହିଁ ?

ଏ ବ୍ୟାକୁଳତାର ଚିହ୍ନ ସାଂପ୍ରତିକ ସାହିତ୍ୟରେ କ୍ୱଚିତ୍ ଦେଖି-ହେବ । ଏଥିରେ ଜୀବନର ଅନ୍ତର୍ବୋଧ ବ୍ୟକ୍ତ ହୋଇଥିବା ପ୍ରାୟ ଅନୁଭୂତ ହୁଏ ନାହିଁ । ତେଣୁ କବିତା ହେଉ କି ନାଟକ ହେଉ କି ଗଳ୍ପ ହେଉ—ସ୍ୱଭାବରେ ଏବଂ ଆଦବକାଇଦାରେ ହୋଇଯାଇଛି ବଡ଼ଲୋକୀ (Sophisticated) । ଏ ବଡ଼ଲୋକୀର ବଡ଼ ଲକ୍ଷଣ ଆତ୍ମକେନ୍ଦ୍ରିକତା ଓ ବୌଦ୍ଧିକତା, ପକ୍ଷାନ୍ତରେ ସ୍ୱାର୍ଥସର୍ବସ୍ୱତା—ଯାହା ଜୀବନରୁ ଜୀବନକୁ ସଂକ୍ରମେ ନାହିଁ, ଜୀବନକୁ ସ୍ପର୍ଶ କରେ ନାହିଁ କି ବ୍ୟାକୁଳତା ଫୁଟାଇପାରେ ନାହିଁ । ବ୍ୟାକୁଳତା ଜନ୍ମେ ଜୀବନବୋଧରୁ—ଯାହା ନିଜର ବେଦନା-

ଜଡ଼ିତ, ତଥା ପରପାର୍ଶ୍ୱର ଦୁଃଖ ଓ ଯନ୍ତ୍ରଣାଜଡ଼ିତ । ଆମ୍ଭେମାନଙ୍କ ଜୀବନରେ ଏଇ ବ୍ୟାକୁଳତା ଯନ୍ତ୍ରଣାଜର୍ଜର ଏବଂ ବେଦନାମୟ ହୋଇ କବିଜୀବନର ଅଭ୍ୟନ୍ତରରୁ କପରି ସମ୍ଭବପାରେ, ତାହାର ପ୍ରାଣ-ଶବଳ ସାକ୍ଷ ସାଂପ୍ରତିକ ଯୁଗଚେତନାର ଯୁଗଯନ୍ତ୍ରଣାର ତଥା କବିଯନ୍ତ୍ରଣାର ପ୍ରଥମ ଓଡ଼ିଆକବି ଗ୍ରାମୀଣ ଭୀମଭୋଇଙ୍କର ବାକ୍ୟରୁ ଉପଲବ୍ଧ ହୁଏ—ତାହା ପୁଣି ବିଗତ ଶତାବ୍ଦୀର ଅନ୍ତିମ ଭାଗରେ :—

ବେଳୁବେଳ ପୃଥି ହେଲଣି ଉତ୍ପାତ ଘୋର କଳିକାଳ ପଶୁଁ ।
ଏ ଜଗତଜନରେ ଅନ୍ୟାୟ ଆଗ୍ନରେ ବହୁସିବେ ଦେଖୁଁ ଦେଖୁଁ ॥
ଭୁଲାଇଛ କେତେ କହୁ ନାନାମତେ ବୁଝାମଣା ନାହିଁ ବେଗ ।
ଗୁଣ୍ଡିଦଅ ମୋତେ ଗୁରୁଦେବ ସ୍ୱାମି, ଭରଣା କରିବ ଯୁଗ ॥

.... ... ... ... ...

ଏକା ଅବସରେ କ୍ଷଣକ ଭିତରେ ଦ୍ୟନ୍ତ ପୃଥି ଲେଉଟାଇ ।
ଦନ୍ତ କାମୁଡ଼ି, କସ ବୁଦ୍ଧି କରିବ ଶ୍ରୀଗୁରୁଙ୍କ ଆଜ୍ଞା ନାହିଁ ॥
କେହୁଛି ସଂସାରେ ସତୈଶ ଅଙ୍କରେ ସାଧନା ନୋହିଲେ ପୃଥୀ ।
ନିଷ୍ଠୁର ବଚନ ସାଧୁ ସୁଜ୍ଞଜନ ଶୁଣ ଶୁଣ ମୋର ସ୍ୱିତ ॥
ବସିଥାଇଁ କୂଳ ମହାନଦୀ ଜଳ ଛୁଇଁଅଛୁ ସତ୍ୟ କର ।
ଧର୍ମକୁ ଲଙ୍ଘି ସୁରା ପାନ କରିବ ହରିବ ବ୍ରାହ୍ମଣସ୍ତ୍ରିଷ ॥
ପ୍ରାଣୀଙ୍କ ଦୂଷଣ ଭେଦୁଅଛୁ ମନ ଜୀବନକୁ ମୋର ବାଧେ ।
ଭୀମ ଅରକ୍ଷିତ କର ଦଣ୍ଡବତ କାରଣ ମାଗୁଛି ପାଦେ ॥

ବୋଧହୁଏ, ଆଜ ଆମେ ବାରମ୍ବାର ଆବୃତ୍ତି କରୁଥିବା ଆଧୁନିକ ଯନ୍ତ୍ରଣା ଓ ବେଦନାର ଆନ୍ତରିକ ଏବଂ ବର୍ଣ୍ଣମୟ ବାର୍ତ୍ତା ପ୍ରଥମେ ଦେଇଛନ୍ତି ଆମ କାବ୍ୟକବିତାରେ ଭୀମଭୋଇ । ଏଥିରେ ଛଳନା ନାହିଁ ।

ତେବେ ଆମ ଅନୁକୃତ ବା ଅନୁସୃତ ଆଧୁନିକତାର ବୌଦ୍ଧିକ ସୃଷ୍ଟିମାନ ଦେଖିଲେ ବେଳେବେଳେ ଲାଗେ—ତାହା ସବୁ, ଯେମିତିକି, ସେଇ କାହାଣୀର ରଜାଙ୍କ ଅଦ୍ଭୁତ ପୋଷାକ, ଏବଂ ତାହାର ସ୍ରଷ୍ଟା ହେଉଛନ୍ତି. ସେଇ ରଜା—ଯାହାଙ୍କୁ ଭଯ୍ଯାକୁ ଓ ଛଳକାରୀ ପାରିଷଦବର୍ଗ କହୁଥିଲେ—ଆଃ, ମଣିମାଙ୍କ ପୋଷାକ କ ଚମତ୍କାର ! ରଜା ଏମାନଙ୍କ ସ୍ତୁତିବାକ୍ୟରେ ଆନନ୍ଦ ଓ ପ୍ରତ୍ୟୟ ପାଉଥିବା ସତ୍ତ୍ୱେ ସମ୍ଭବତଃ, ଏମାନଙ୍କଠାରୁ ସତ୍ୟୋକ୍ତି ଶୁଣୁଥିଲେ ; କିନ୍ତୁ ଛଳନା ଶିଖି ନ ଥିବା ବାଳକଟିହିଁ ସତ୍ୟ କଥନ କଲା—ଆରେ, ରଜା ଲଙ୍ଗଳା, ରଜା ଲଙ୍ଗଳା !

ଅବଷସ୍ଥ କାଳରେ ସାହିତ୍ୟର ବା କାଳର ମହାନ୍ ସୃଷ୍ଟି ପ୍ରାପ୍ୟ ହୋଇ ନ ଥାଏ । ସେଇ ବିବେଚନାରେ ଦେଖିହେବ—ଭଲ କବିତା, ଭଲ ଗଳ୍ପଉପନ୍ୟାସ, ଭଲ ନାଟକ—ଆଦି ବହୁ ଭଲ ସାରସ୍ୱତ ସୃଜନ ରହିଛି ଆମ ସାଂପ୍ରତିକ ସାହିତ୍ୟରେ । ଏ ନିବନ୍ଧରେ ମୋର ଅନୁଶୀଳିତ ଅନୁଭବ ମାତ୍ର ବ୍ୟକ୍ତ କରିଛି । ଅଧିକନ୍ତୁ ମୁଁ ସ୍ୱୀକାର କରୁଛି, ଆମ ଲେଖକବୃନ୍ଦଙ୍କ ମଧ୍ୟରୁ ଅନେକେ ପ୍ରତିଭାବନ୍ତ ; ମାତ୍ର ତାଙ୍କୁ ଛଳନାର ବନ୍ଧ ଭାଙ୍ଗିବାକୁ ହେବ, ଆତ୍ମମୁକ୍ତି ପାଇଁ ସାଧନା କରିବାକୁ ହେବ । ଏ ସାଧନା—ପ୍ରାଣର, ପ୍ରାଣ ସନ୍ଧାନର, ବେଦନାର, ସଂବେଦନାର ।



ପରିଶେଷରେ; ଏଇ ସଂକଳନ ସମ୍ବନ୍ଧରେ ଏତିକ କୁହାଯାଇ-ପାରେ ଯେ ବିଭିନ୍ନ କିସମର ପାଠକ ତଥା ଲେଖକଙ୍କର ସାଂପ୍ରତିକ ସାହିତ୍ୟ ସମ୍ପର୍କୀୟ ବିଚାର-ବିବେଚନା ଏହାକୁ ବିଭିନ୍ନ ଦିଗନ୍ତ-ସ୍ପର୍ଶୀ ଏବଂ ସୁନ୍ଦର କରିଛି—ଯେପରି ସୁନ୍ଦର ହୋଇଥାଏ ଗୋଟିଏ ଗ୍ରୁପ୍-ଫଟୋ । ସାମଗ୍ରିକ ସୌନ୍ଦର୍ଯ୍ୟରେ ପ୍ରତ୍ୟେକ ଚେହେରାର ବ୍ୟକ୍ତିକ ସ୍ୱାତନ୍ତ୍ର୍ୟ ଥିବା ପରି—ଏ ସଂକଳନର ପ୍ରତିଟି ନିବନ୍ଧ ନିଜ ପରିଧିରେ ସ୍ୱତନ୍ତ୍ର । ଅନେକ ପରିଚିତ ଲେଖକ, ଆଲୋଚକ ଓ ଅଧ୍ୟାପକ ମୋର ସ୍ନେହ ଶ୍ରୀ ପରୀକ୍ଷିତ ନନ୍ଦଙ୍କ ଅନୁରୋଧ ସତ୍ତ୍ୱେ ସେମାନଙ୍କ ନିବନ୍ଧ ଦେଇପାରି ନାହାନ୍ତି । ତାହା ହୋଇଥିଲେ ଏ ସଂକଳନ ଅଧିକ ସମୃଦ୍ଧ ହୋଇଥାନ୍ତା, ସନ୍ଦେହ ନାହିଁ । ଶ୍ରୀନନ୍ଦ ତିନି ବର୍ଷରୁ ଊର୍ଦ୍ଧ୍ୱ କାଳ ଧରି ଏ ସଂକଳନ ପାଇଁ ଉଦ୍ୟମ କରି ଆସିଛନ୍ତି । ତାଙ୍କର ଏ ମହତ୍ ଉଦ୍ୟମ ସାର୍ଥକ ହେବ—ଯଦି ପାଠକ ଆନ୍ତରିକତା ସହିତ ଏହା ପାଠ କରିବେ । ତାଙ୍କୁ ଭଲ ଲାଗିଲେ ତ ଆନନ୍ଦର ବିଷୟ । ଭଲ ନ ଲାଗିଲେ ବୋଲି ଏହାକୁ ଆଡ଼େଇ ଦେଲେ ସୁଦ୍ଧା ସେଇ ଆନ୍ତରିକ ଅନାଦର ହେବ ପରମ ଆଦରଣୀୟ ।

**ଅଧ୍ୟାପକ ବେଣୁଧର ରାଉତ,** ଏମ୍. ଏ.
(ରିଡ଼ର) ଓଡ଼ିଆ ବିଭାଗ
ରେଭେନ୍ସା କଲେଜ
**କଟକ**

# ସଂପାଦନାର ସାମାନ୍ୟକଥନ

ବି. ଏ. ପଢ଼ୁଥାଏ । ଅନର୍ସ ଶ୍ରେଣୀରେ ଆଧୁନିକ କବିତା ଉପରେ ଆଲୋଚନା ଚାଲିଥାଏ । ପିଲାମାନେ ଏଇ ଆଲୋଚନାକୁ ବୁଝି ନ ଥିଲେ ସୁଦ୍ଧା ଛାତ୍ରସୁଲଭ ମନ ନେଇ ହଁ ହଁ ମାରୁଥା'ନ୍ତି; କିନ୍ତୁ ମୁଁ ସେତେବେଳେ ଆଧୁନିକ କବିତା, ଏହାର ଶୈଳୀ, ଆଙ୍ଗିକ ଓ ଲୋକପ୍ରିୟତା ନେଇ ବହୁ ପ୍ରଶ୍ନ ଅଧ୍ୟାପକଙ୍କୁ ପଚାରିଥିଲେ ସୁଦ୍ଧା କୌଣସି ପ୍ରଶ୍ନର ସନ୍ତୋଷ-ଜନକ ଉତ୍ତର ପାଇପାରି ନ ଥିଲି । ସେଇ ସମୟରେ ଆଧୁନିକ କବିତା ଉପରେ କେତେଗୁଡ଼ିଏ ପ୍ରବନ୍ଧ କାଁ ଭାଁ ପତ୍ରପତ୍ରିକାରେ ପ୍ରକାଶ ପାଉଥାଏ । ଖୋଜାଖୋଜି କରି ସେଗୁଡ଼ିକ ପଢ଼ି ଦେଖିଲି, ସେଥିରେ ଖାଲି ଇଲିୟଟ୍ ଓ ଏଜରା ଇତ୍ୟାଦି କବି ଓ କବିତାର ବ୍ୟକ୍ତିକ କବିତାର ଉଦ୍ଧୃତି ଓ ପାଶ୍ଚାତ୍ୟ ସମାଲୋଚକଙ୍କର ଲମ୍ବା ଲମ୍ବା ଇଂରାଜୀ ଉଦାହରଣ ପରିପୂର୍ଣ୍ଣ ହୋଇଛି ଏବଂ କେତୋଟି ତଥାକଥିତ ଓଡ଼ିଆ କବିଙ୍କର କବିତାକୁ ଆଲୋଚନା କରିବାରେ ବୌଦ୍ଧିକତାର ବିଫଳ ପ୍ରୟାସ ରହିଛି । ଯେ "ଷଣ୍ଢ" ଶବ୍ଦର ଅର୍ଥ ଜାଣିନାହିଁ, ସେ ବୃଷଭର ଅର୍ଥ ବୁଝିବ କାହୁଁ ? ଯେତେବେଳେ ଆଧୁନିକ କବିତା ବିଷୟରେ ବହୁତ ସଚେତନ କବି ଓ ସଜ୍ଞାନ ପାଠକଙ୍କର ପ୍ରାଥମିକ ଜ୍ଞାନ ନ ଥିଲା, ସେହି ସମୟରେ ପାଶ୍ଚାତ୍ୟ ସାହିତ୍ୟର ଧାର୍ଯ୍ୟ ଉଦ୍ଧୃତି ଦେଇ ପାଠକମାନଙ୍କୁ ଆହୁରି ବିରକ୍ତି-କର ପରିବେଶ ମଧ୍ୟକୁ ଟାଣି ନିଆଯାଉଥିଲା ବୋଲି ବୋଧ ହେଉଥିଲା । ପୁଣି ଯେଉଁମାନେ ସମାଲୋଚନାମୂଳକ ପ୍ରବନ୍ଧମାନ ଲେଖୁଥିଲେ, ସେମାନେ ଥିଲେ ଆଧୁନିକ କବି । ତେଣୁ ନିଜକୁ ସୁହାଇଲା ଭଳି ଓ ନିଜ କବିତା ସପକ୍ଷରେ ସେମାନେ ନାନା ଶସ୍ତା ଯୁକ୍ତି ବାଢ଼ି "ଛୁଞ୍ଚି ମାଗିଥିବା ପାଠକକୁ ପାଳଗଦା ଦେଖାଉଥିଲେ ।" ବହୁ ପାଠକ ଓ ସଚେତନ ନିରପେକ୍ଷ ସମାଲୋଚକ ଆଧୁନିକ କବିତାକୁ ଦୁର୍ବୋଧ୍ୟ, ଅବୋଧ୍ୟ ଓ ଅନ୍ତଃସାରଶୂନ୍ୟ ବୋଲି ଅଭିଯୋଗ କରୁଥିଲେ । ଫଳରେ ପାଠକ ଓ ଲେଖକ ମଧ୍ୟରେ ଏକ ବିବାଦୀୟ ପରିବେଶ ସୃଷ୍ଟି ହେଲା । ଏଇ ଝଡ଼-ଝଞ୍ଜାବେଳେ ଆମ ସେମିନାର୍ ତରଫରୁ ଆଧୁନିକ କବିତା ଉପରେ ଆଲୋଚନା ସଭା କରିବା ପାଇଁ ମୁଁ ପ୍ରସ୍ତାବଟିଏ ଦେଲି । ପ୍ରସ୍ତାବଟି ସଙ୍ଗେ

ସଙ୍ଗେ ଗୃହୀତ ହେଲା ଏବଂ ପ୍ରବନ୍ଧଟିଏ ଲେଖିବା ପାଇଁ ମୋ ଉପରେ ଦାୟିତ୍ୱ ଦିଆଗଲା । ମୁଁ ତ ପ୍ରସ୍ତାବ ଆଣିଛି । ତେଣୁ ମୋତେ ପ୍ରବନ୍ଧଟି ଲେଖିବାକୁ ହେବ । ପଢ଼ାପଢ଼ି ଆରମ୍ଭ କଲି । ଆଧୁନିକ କବି ଓ ସମାଲୋଚକଙ୍କ ସହିତ ବ୍ୟକ୍ତିଗତ ସଂଯୋଗ ସ୍ଥାପନ କରି ପ୍ରବନ୍ଧଟିର ଲେଖା ଆରମ୍ଭ କଲି । ସେଥିରେ ଏତିକି ଲେଖିଥିଲି, "ଆଧୁନିକ କବିତା ପାଇଁ ଓଡ଼ିଶାରେ ପାଣିପାଗ ସୃଷ୍ଟି ହୋଇ ନାହିଁ । ପ୍ରଥମେ ପାଠକର ରୁଚିକୁ ବଦଳାଇବାକୁ ପଡ଼ିବ ଏବଂ ଏଇ ରୁଚି ବଦଳାଇବା ପାଇଁ ସାତ ସମୁଦ୍ର ତେର ନଈ ପାରି ହୋଇ ପାଶ୍ଚାତ୍ୟ ପ୍ରତୀକ, ରୂପକଳ୍ପ ନ ଖୋଜି ଖୋଜିବାକୁ ପଡ଼ିବ ଆମରି ଦେଶରୁ, ଆମରି ସାହିତ୍ୟରୁ ଓ ଆମରି ସଂସ୍କୃତିରୁ । ତା ନ ହେଲେ ଆଧୁନିକ କବିତା ସୃଷ୍ଟି ହୋଇ ଚାଲିଥିବ । ତା'ର ଗତି ଶିଥିଳ ହୋଇଯିବ ଓ ତା'ର ପ୍ରକୃତି ଲୋକଙ୍କ ପ୍ରାଣକୁ ଛୁଇଁ ପାରିବ ନାହିଁ ଏବଂ ନିକଟ-ଭବିଷ୍ୟତରେ ଲୋକପ୍ରିୟତା ହରାଇ ବସିବ । ଏଥିପାଇଁ ଲେଖକ ପ୍ରଥମେ ଦାୟୀ ହେବ ଓ ପରେ ପାଠକ ଏବଂ ସମାଲୋଚକ ଦାୟୀ ହେବେ ।" ପ୍ରବନ୍ଧଟି ପଢ଼ିସାରିଲା ପରେ ସପକ୍ଷ ଓ ବିପକ୍ଷରେ ବହୁ ଯୁକ୍ତିତର୍କ ହେଲା; କିନ୍ତୁ ମୁଁ ସେତିକିରେ ନୀରବ ରହି ପାରିଲି ନାହିଁ । ଚିନ୍ତା କଲି, ସାହିତ୍ୟକ୍ଷେତ୍ରକୁ ଯେତେବେଳେ ଗୋଟିଏ ନୂଆ ଧାରା ଆନ୍ତର୍ଜାତିକ ସ୍ତରରେ ପ୍ରବେଶ କଲାଣି, ତାହା ଆମ ଓଡ଼ିଶା ମାଟିକୁ ଆସିବା ଅବଶ୍ୟମ୍ଭାବୀ । ତେଣୁ ସେଇ ଚିନ୍ତାଧାରାର ପ୍ରକୃତ ସ୍ୱରୂପ ଓ ଦର୍ଶନ ସହିତ ଆମ ପାଠକମାନଙ୍କୁ ସମ୍ପୂର୍ଣ୍ଣରୂପେ ପରିଚିତ କରାଇ ଦେବା ଉଚିତ । ଏଇ ଯୋଜନାଟି ମନରେ ଥାଏ । ବି. ଏ. ପରୀକ୍ଷା ସରିଲା ପରେ ଏମ୍. ଏ.ରେ ନାଁ ଲେଖାଇଲି । ସେଠି ବି ଆଧୁନିକତାର ଯନ୍ତ୍ରା ଭିତରେ ଆତୁରି ଗୁରୁତରଭାବେ ପଢ଼ିବାକୁ ହେଲା । ବିଜ୍ଞ ଅଧ୍ୟାପକ ବହୁ ରେଫରେନ୍‌ସ ଦେଇ ପଢ଼ାଉଥାନ୍ତି । ଆମେ ତାଙ୍କର ରେଫରେନ୍‌ସରେ ମୁଗ୍ଧ ହେଉଥାଉଁ ସିନା, କିନ୍ତୁ ଆଧୁନିକତାର ତାତ୍ତ୍ୱିକ ଦିଗଠାରୁ ଦୂରରେ ରହୁଥିଲୁ । ସେଇ ସମୟରେ ଏମ୍. ଏ. ଶ୍ରେଣୀରେ ସାଙ୍ଗମାନଙ୍କୁ ନେଇ ଏକ ସାପ୍ତାହିକ ଆଲୋଚନାଚକ୍ରର ଆୟୋଜନ କଲି । ଉଦ୍ଦେଶ୍ୟ, ଆଧୁନିକ କବିତା ଉପରେ ପ୍ରତ୍ୟେକ ପିଲାଙ୍କର ଚିନ୍ତାଧାରା ହିସାବ ପରିଚିତ ହେବା । ମୋ ଉପରେ ଏ ଆଲୋଚନାଚକ୍ରର ସମସ୍ତ ଦାୟିତ୍ୱ ଲଦା ହେଲା । କିଛିଦିନ ଚାଲିଲା ପରେ ପିଲାମାନଙ୍କର ବିମୁଖତା ଯୋଗୁଁ ସେ ଆଲୋଚନାଚକ୍ରକୁ ପ୍ରଫେସର ପ୍ରହ୍ଲାଦ ପ୍ରଧାନଙ୍କର ପ୍ରଧାନାଚାର୍ଯ୍ୟରେ ଉଠାଇ ଦିଆଗଲା ।

ମୁଁ ମୋ ପ୍ରଚେଷ୍ଟାରୁ ବିରତ ହେଲି ନାହିଁ । ପୁଣି ଦେଖାଗଲା, ଆଧୁନିକ କବିତା ପରି ଆଧୁନିକ କ୍ଷୁଦ୍ରଗଳ୍ପ ଓ ନାଟକ ମଧ୍ୟ ଅବୋଧ୍ୟ ଓ Abstract ହୋଇଯାଉଛି । ଧୀରେ ଧୀରେ Abstract, Absurd ଆଡ଼କୁ ଗତି କରୁଛି । Abstract ଓ Absurd ଉଭୟେ ଭିନ୍ନ ଭିନ୍ନ ପରିପ୍ରେକ୍ଷୀରେ ବୋଧଗମ୍ୟ ହେବ ; କିନ୍ତୁ Abstract, Absurd ହୋଇଗଲେ ସାହିତ୍ୟକୁ ବନ୍ଧ୍ୟାତ୍ୱ ଗ୍ରାସ କରିଯିବ । ଏହି ଦୃଷ୍ଟିରୁ ବିଚାର କଲି, ପ୍ରଥମେ ଲେଖକ, ପାଠକ ଓ ସମାଲୋଚକଙ୍କ ଠାରୁ ଆଧୁନିକ ସାହିତ୍ୟ ( କବିତା, କ୍ଷୁଦ୍ରଗଳ୍ପ, ନାଟକ ) ଉପରେ ସେମାନଙ୍କର ନିରପେକ୍ଷ ମତାମତ ଆହ୍ୱାନ କରାଯାଉ । ଏଥିରେ ରହିବେ ପୁରାତନପନ୍ଥୀ, ମାଧ୍ୟମିକପନ୍ଥୀ, ଆଧୁନିକପନ୍ଥୀ ଓ ସର୍ବାଧୁନିକପନ୍ଥୀ । ପ୍ରତ୍ୟେକେ ପ୍ରତ୍ୟେକଙ୍କର ମୌଳିକ ଦୃଷ୍ଟିକୋଣରୁ ଆଧୁନିକ ସାହିତ୍ୟର ଯେ କୌଣସି ଗୋଟିଏ ବିଭାଗକୁ ବିଚାରାଲୋଚନା କରିବେ ଅର୍ଥାତ୍ ଲେଖକ କେଉଁ ଦୃଷ୍ଟିକୋଣରୁ ଲେଖୁଛି, ପାଠକ କେଉଁ ଦୃଷ୍ଟିକୋଣରୁ ପଢ଼ୁଛି ଓ ସମାଲୋଚକ କେଉଁ ଦୃଷ୍ଟିକୋଣରୁ ସମାଲୋଚନା କରୁଛି, ଇତ୍ୟାଦି । କାରଣ ଦେଖାଗଲା ଯେ କେତେକ କବି ଯଥାରୀତି ଆଧୁନିକତା ମଡ଼ାଇଲେ । ଏହି ଅକବିଗୁଡ଼ିକ ଅକବିତାଗୁଡ଼ିଏ ସୃଷ୍ଟି କରି ସମସ୍ୟାକୁ ଆହୁରି ଜଟିଳ କରିଦେଲେ । କେବଳ ମାତ୍ର କେତେକ କବିଙ୍କୁ ଛାଡ଼ିଦେଲେ ଅନ୍ୟମାନଙ୍କ କବିତାରେ ବୌଦ୍ଧିକତା, ଅର୍ଥାନୁହରଣ, ମାନସିକ ସ୍ତରର ସୂକ୍ଷ୍ମ ବିଶ୍ଳେଷଣ ନୂତନ ପ୍ରତୀକ ରୂପକଳ୍ପର ସଙ୍ଗତ ପ୍ରୟୋଗର ଚରମ ଅଭାବ ପାଠକ ଓ ଲେଖକ ମଧ୍ୟରେ ଏକ ଦୀର୍ଘ ବ୍ୟବଧାନ ସୃଷ୍ଟି କରିଦେଲା । ଫଳରେ ଯେଉଁ ଲେଖକକୁ ଯେଉଁ ପାଠକ ୧୯୬୦ ମସିହାରେ ବୁଝିପାରୁଥିଲା, ସେହି ଲେଖକକୁ ସେହି ପାଠକ ୧୯୬୫ ମସିହାରେ ବୁଝିପାରିଲା ନାହିଁ । ସେହି ଭାଷା ଅଛି, ସେହି ଲେଖକ ଲେଖିଛି, ସେହି ପାଠକ ମଧ୍ୟ ପଢ଼ୁଛି ; କିନ୍ତୁ ବୁଝି ନ ପାରିବାର କାରଣ କ'ଣ ? ହୋଇପାରେ, ଲେଖକଙ୍କ ଚିନ୍ତାଧାରା ବଦଳିଛି । କିନ୍ତୁ ଲେଖକ ଓ ପାଠକ ଉଭୟେ ଗୋଟିଏ ସମାଜ, ସମୟ ଓ ଭୌଗୋଳିକ ପରିବେଶ ମଧ୍ୟରେ ବାସ କରୁଅଛନ୍ତି । ଲେଖକର ଚିନ୍ତାଧାରା ସହିତ ପାଠକର ଚିନ୍ତାଧାରା ବଦଳିଲା ନାହିଁ କାହିଁକି ? ଏହି 'କାହିଁକି', ହିଁ ଲେଖକ ଓ ପାଠକ ମଧ୍ୟରେ ସାହିତ୍ୟିକ ବ୍ୟବଧାନ ସୃଷ୍ଟିର କାରଣ ହୋଇ ପଡ଼ିଲା । ଲେଖକ ତା'ର ଆଗୁଆ ଚିନ୍ତାଧାରାକୁ ପାଠକ ପାଖରେ ପହଞ୍ଚାଇ ପାରିଲା ନାହିଁ । ଯଦିବା ପହଞ୍ଚାଇଲେ, ତାହା ବୌଦ୍ଧିକତାର

ଗ୍ରୁପ ନେଇ ପହଞ୍ଚିଲା । ଫଳରେ ସାହିତ୍ୟକ୍ଷେତ୍ରକୁ ଚାହିଁଦେଲେ ଦେଖାଗଲା ଲେଖକ କହୁଛି ତା'ର କବିତା ବୁଝିବା ପାଇଁ ପାଠକର ଆହୁରି ଜ୍ଞାନ-ଦରକାର ; ପାଠକ କହୁଛି—ଲେଖକ ଖାଲି ଆତ୍ମକୃତ ଦୁର୍ବୋଧତା ତା'ରି ଲେଖାରେ ପୂରାଉଛନ୍ତି ଏବଂ ଏହି ଦୁର୍ବୋଧତାର ବହଳ ଚାଦର ତଳେ ଆତ୍ମଗୋପନ କରୁଛନ୍ତି । ସାହିତ୍ୟରେ ଗୋଟିଏ ସମୟରେ ଦୁର୍ବୋଧତା ହିଁ ବୌଦ୍ଧିକତା ମାପକାଠି ହୋଇ ପଡ଼ିଲା ଏବଂ ଏହାର ସୁଯୋଗ ନେଇ ବହୁ ଅକବି ଏହାକୁ ଫେସନ୍‌ରେ ପରିଣତ କଲେ । ପ୍ରତ୍ୟେକେ ପ୍ରତ୍ୟେକଙ୍କୁ ନାନା ଅଭିଯୋଗରେ ଅଭିଯୁକ୍ତ କଲେ । ଉଭୟଙ୍କ ଅଭିଯୋଗ ମଧ୍ୟ ନ୍ୟାୟସଙ୍ଗତ । କାରଣ ଲେଖକ ଭବିଷ୍ୟତ ବକ୍ତା ଓ ଦ୍ରଷ୍ଟା । ସେ ସାମ୍ପ୍ରତିକ ସମାଜରେ ରହି ଆଗାମୀ ଯୁଗର ବିଷୟକୁ ତା'ର ଦିବ୍ୟଚକ୍ଷୁରେ ଦେଖିପାରେ । ତେଣୁ ତା'ର ଚିନ୍ତାଧାରାର ଅଂଶ ପରିବର୍ତ୍ତନ ଅବଶ୍ୟମ୍ଭାବୀ । ପାଠକ ସାମ୍ପ୍ରତିକ ସମାଜରେ ରହି ଲେଖକର ଲେଖାକୁ ବୁଝି ନ ପାରିଲେ ସେ ମଧ୍ୟ ବାତସ୍ପୃଷ୍ଟ ହେବ, କିନ୍ତୁ ସବୁ କବି ତ ଦୂରଦ୍ରଷ୍ଟା ନୁହଁନ୍ତି । ଯେଉଁ କବି ଦୂରଦ୍ରଷ୍ଟା, ସେ କାଳଜୟୀ ଏବଂ ତାଙ୍କର ସଂଖ୍ୟା ମୁଷ୍ଟିମେୟ । ଲେଖକର ଲେଖାର ମୂଲ୍ୟାୟନ ଦାୟିତ୍ୱ ପାଠକ ଉପରେ । ଯଦି ପାଠକ କୌଣସି ଲେଖକର ଲେଖା ବୁଝିବାକୁ ଅକ୍ଷମ ହୁଏ, ତେବେ ସମ୍ପୃକ୍ତ ଲେଖକ ପାଖକୁ ଯାଇ ବୁଝିପାରିବ । ଯଦି ଲେଖକ ବୁଝାଇବାକୁ ଅକ୍ଷମ ହୁଏ ? ଏହିପରି ଗୋଟିଏ ଘଟିଥିବା ଘଟଣାର ଉଦାହରଣ ଏଠାରେ ଅବାନ୍ତର ହେବ ନାହିଁ । ଘଟଣାଟି ହେଲା—ଜଣେ ସଚେତନ ପାଠକ ତଥା ସମାଲୋଚକ ଜଣେ ଖ୍ୟାତନାମା କବିଙ୍କର କବିତା ବୁଝି ନ ପାରି ସେହି ଲେଖକଙ୍କ ପାଖକୁ ଗଲେ । ସେ ଲେଖକ ଜଣକ "ଷଣ୍ଢ ବୃଷଭ" ନ୍ୟାୟରେ ବୁଝାଇବାକୁ ଆରମ୍ଭ କଲେ । ବହୁ ଯୁକ୍ତିତର୍କ ପରେ କବି କହିଲେ, ଏହି କବିତାଟି ଲେଖିବାକୁ ମୋତେ ୧୫-୨୦ ମିନଟ୍ ସମୟ ଲାଗିଛି ଏବଂ ଏହି ସମୟ ଭିତରେ ମୁଁ ରୁଷିୟାର ରାଜନୀତି, ଭିଏତ୍‌ନାମରେ ପର୍ଯ୍ୟାୟ କ୍ରମିକ ସଂଗ୍ରାମ, ଚୀନର ସାଂସ୍କୃତିକ ବିପ୍ଳବ, ହିଟଲରର ନାଜିବାଦ୍, ଭାରତର ଗଣତନ୍ତ୍ରୀ ରାଜନୀତି ଓ ମୋର ଜନୈକା ପ୍ରେମିକାଙ୍କ ସହିତ ମୋର ପରିବାର କଥା ମଧ୍ୟ ଚିନ୍ତା କରିଛି ଏବଂ ଏହିସବୁର ଗ୍ରୁପ ଏହି କବିତାରେ ରହିଛି । ପୁଣି ଘଟଣା ସହିତ ଚିନ୍ତାଧାରାର ସଂହତି ପାଇଁ ମୁଁ ପ୍ରତ୍ୟେକ ସମ୍ପୃକ୍ତ ଦେଶରୁ ଗ୍ରହଣ କରିଛି ରୂପକଳ୍ପ ଓ ପ୍ରତୀକ ।" ଏଠାରେ ଟିକିଏ ଚିନ୍ତା କଲେ ଦେଖାଯିବ ଯେ ନାଜିବାଦ ଓ କମ୍ୟୁନିଜିମ୍, ଗଣତନ୍ତ୍ର ଓ

କମ୍ୟୁନିଜମ୍, ପ୍ରେମ ଓ ବିପ୍ଳବ ତଥା ଦରବାର ପ୍ରତ୍ୟେକେ ପରସ୍ପର ବିରୋଧୀ । ଏତେଗୁଡ଼ିଏ ଚିନ୍ତାଧାରା ଦଶ ମିନିଟ୍‌ରେ ଜଣେ ଲୋକର ମୁଣ୍ଡରେ ପଶି ବାହାରିଗଲେ ଏବଂ କିଛି କିଛି କବିତାରେ ରହିଗଲା । କିନ୍ତୁ ଜଣେ ପାଠକ ଏତେଗୁଡ଼ିଏ ସଂହତିହୀନ ସମ୍ପର୍କଶୂନ୍ୟ ବିରୋଧାତ୍ମକ ବିଷୟବସ୍ତୁ ସମ୍ବଳିତ କବିତା ପରିଚିତ ହୋଇପାରିବେ ? ଆଜି ଜଣେ ଭଦ୍ର କବି ସ୍ୱୀକାରୋକ୍ତି ପ୍ରକାଶ କଲେ କି "ଆମେ କବି ଲେଖିବୁ ; ତମେ ପାଠକ ପଢ଼ିବ ଓ ତମ ଚିନ୍ତାଧାରା ଦୃଷ୍ଟିରୁ ବିଚାର ଆଲୋଚନା କରିବ ।" ତା'ପରେ ଦେଖାଗଲା, କେତେକ ସମାଲୋଚକ ଆଧୁନିକ କବିତା ଉପରେ ଆଲୋଚନା ଆରମ୍ଭ କରିଦେଲେ । କିନ୍ତୁ ଆଶ୍ଚର୍ଯ୍ୟ କଥା, ସ୍ରଷ୍ଟା ସହନଶୀଳ ନ ହୋଇ ସେ ସମାଲୋଚକଙ୍କ ଉପରେ ଗାଳିବର୍ଷଣ କଲେ । କେତେକ ବ୍ୟକ୍ତି ଗୋଟିଏ ଗୋଟିଏ ଅନୁଷ୍ଠାନ କରି ତା'ର ମୁଖପତ୍ରରେ ନିଜ କବିତା ଉପରେ ଅନ୍ୟମାନଙ୍କ ଦ୍ୱାରା ବିବରଣୀ ସମାଲୋଚନା ଲେଖି ଛପାଇଲେ । କିନ୍ତୁ ସମାଲୋଚନା ସମାଲୋଚକର ନିର୍ଦ୍ଦେଶାନୁଯାୟୀ ଲେଖାଗଲେ ମହତ୍ତ୍ୱ ହରାଇ ବସେ । କୌଣସି ବସ୍ତୁ ନିରପେକ୍ଷ ସମାଲୋଚନା ବିନା ମାର୍ଜିତ ଓ ସଂସ୍କୃତ ହୋଇପାରେ ନାହିଁ । ଆମ ସାହିତ୍ୟରେ ସେହି ଅଭାବବୋଧ ଉତ୍କଟ ହେଲା । ବିନା ସମାଲୋଚନାରେ ସାହିତ୍ୟର ମୂଲ୍ୟାୟନ କରିବା ଅସମ୍ଭବ । ସ୍ରଷ୍ଟା ଅପେକ୍ଷା ସମାଲୋଚକର ଦାୟିତ୍ୱ ବ୍ୟାପକ । ଯେପରି ଜନ୍ମକଲା ବାପ ଅପେକ୍ଷା ପାଳିନାଳି ମଣିଷ କରିଥିବା ବାପ ସମ୍ମାନାସ୍ପଦ, ସେହିପରି ସ୍ରଷ୍ଟା ଅପେକ୍ଷା ସମାଲୋଚକ ବେଶି ସମ୍ମାନାସ୍ପଦ । ସ୍ରଷ୍ଟାର ସୃଷ୍ଟିକୁ ବୁଝାଇ ରଖିପାରେ ଏକମାତ୍ର ସମାଲୋଚକ । ସ୍ରଷ୍ଟାକୁ ସମ୍ମାନାସ୍ପଦ ସାହିତ୍ୟକର ଆସନ ଦେଇପାରେ ସେହି ସମାଲୋଚକ । ସମାଲୋଚକ ସେହିପରି ଦାମ୍ଭିକ, ସହାନୁଭୂତିଶୀଳ, ନିରପେକ୍ଷ ଓ ବିଜ୍ଞ ପାଠକ ହେବା ଉଚିତ ; କିନ୍ତୁ ଏହି ଧର୍ମୀ ସମାଲୋଚକଙ୍କୁ ଆମ ସାହିତ୍ୟରେ ସମାଲୋଚନା କ୍ଷେତ୍ରରେ ଦେଖିବା ପାଇଁ ଏବେ ମଧ୍ୟ ସମୟକୁ ଅପେକ୍ଷା କରାଯାଏ । ସେହି ଯୋଗୁଁ, ବୋଧହୁଏ ଆଧୁନିକ ସାହିତ୍ୟ ଉପରେ ଏ ପର୍ଯ୍ୟନ୍ତ ଖଣ୍ଡେ ଦୁଇ-ଖଣ୍ଡ ଭଲ ସମାଲୋଚନା ପୁସ୍ତକ ତ ନାହିଁ; ଅଧିକନ୍ତୁ ଗୋଟିଏ ତାତ୍ତ୍ୱିକ ପ୍ରବନ୍ଧ ମଧ୍ୟ ସପ୍ତମ ଦଶକର ଶେଷଭାଗ ପର୍ଯ୍ୟନ୍ତ ଦେଖିବାକୁ ମିଳିନାହିଁ । ଯେଉଁ ଦେଶର ସାହିତ୍ୟର ସମାଲୋଚନା ଯେତେ ଉନ୍ନତ, ସେହି ଦେଶର ସାହିତ୍ୟ ସେତେ ଉନ୍ନତ । ଆମ ସାହିତ୍ୟରେ ଏହି ଅଭାବ ପୂରଣ କରିବା ଏ ମୋର କ୍ଷୁଦ୍ରପ୍ରୟାସ ।

କେତେକ ଶ୍ରେଣୀ ସାର୍ଥୀଙ୍କ ପାଖରେ ମୋ'ର ଚିନ୍ତାଧାରା ପ୍ରକାଶ କଲି । ସେମାନେ ତତ୍‌କ୍ଷଣାତ୍ ରାଜି ହୋଇଗଲେ "ସାଂପ୍ରତିକ" ନାମରେ ଗୋଟିଏ ସାହିତ୍ୟ-ଅନୁଷ୍ଠାନ ଗଢ଼ା ହୋଇ ତାହାର ମାଧ୍ୟମରେ କାର୍ଯ୍ୟ କରାହେବାର ସ୍ଥିରହେଲା । ସାଙ୍ଗେ ସାଙ୍ଗେ କାମ ଆରମ୍ଭ ହୋଇଗଲା । ପ୍ରଥମେ ପଚିଶ ଜଣ ପର୍ଯ୍ୟନ୍ତ ଲେଖକ, ପାଠକ ଓ ସମାଲୋଚକଙ୍କୁ ଚିଠି ଲେଖି "ତାଙ୍କ ଦୃଷ୍ଟିରେ ସାଂପ୍ରତିକ ସାହିତ୍ୟ" ଉପରେ ପ୍ରବନ୍ଧ ଆହ୍ୱାନ କଲୁ । ସ୍ମାରକ ପରେ ସ୍ମାରକ ପଠାଗଲା । ଚାରି ପାଞ୍ଚ ମାସ ଭିତରେ ମାତ୍ର ପାଞ୍ଚ ଛଅଟି ଲେଖା ମିଳିଲା । ଇତିମଧ୍ୟରେ ବନ୍ଧୁମାନଙ୍କଠାରେ ପ୍ରାରମ୍ଭିକ ଉତ୍ସାହ ନ ଥିବାର ଲକ୍ଷ୍ୟ କଲି । ଗୋଟାଏ ବର୍ଷ କଟିଗଲା । ଯେଉଁମାନେ ଲେଖା ପଠାଇଥିଲେ, ସେମାନେ ଫେରାଇ ନେବାକୁ ଲେଖିଲେ । ବନ୍ଧୁମାନଙ୍କୁ ଏ କଥା କହିଲି ; ମାତ୍ର ବନ୍ଧୁମାନଙ୍କଠାରେ ପୂର୍ବବତ୍ ସାହାଯ୍ୟ ସହାନୁଭୂତିର ଅଭାବ ଅନୁଭବ କଲି । ଏତେ ବଡ଼ ଗୁରୁଦାୟିତ୍ୱ ତୁଲାଇବି କିପରି ? ବି. ଏ. ବେଳରୁ ଯେଉଁ ଯୋଜନା ପ୍ରସ୍ତୁତ କରିଛି, ତାହା ପୂରଣ ହେବ କିପରି ? ନିରୁତ୍ସାହିତ ନ ହୋଇ ଆରମ୍ଭ କଲି ଏକକ ଅଭିଯାନ । ବ୍ୟକ୍ତିଗତ ଭାବରେ ଚିଠି ଲେଖିଲି । ପ୍ରତି ସପ୍ତାହରେ ତିରିଶ ଚାଳିଶଟି ଚିଠି ବିଭିନ୍ନ ବ୍ୟକ୍ତିଙ୍କ ପାଖକୁ ପଠାଇଲି, କିନ୍ତୁ ଦୁଇ ତିନି ଖଣ୍ଡ ଚିଠି ବ୍ୟତୀତ ଆଉ ଉତ୍ତର ପାଏ ନା । କେହି କେହି ସାଂପ୍ରତିକ ସାହିତ୍ୟ ଉପରେ କୌଣସି ରେଫରେନ୍‌ସ ବହି ପାଉ ନ ଥିବାରୁ ପ୍ରବନ୍ଧଟି ଲେଖିବା ଅସମ୍ଭବ ବୋଲି ଚିଠି ଲେଖିଲେ । ଏହିପରି ପୁଣି ଦୁଇ ମାସ କଟିଗଲା । ଆଉ ଚିଠି ନ ଲେଖି ବ୍ୟକ୍ତିଗତ ଭାବରେ ସାକ୍ଷାତ କରିବା ପାଇଁ ବାରିପଦା, ବାଲେଶ୍ୱର, ସମ୍ବଲପୁର, ବ୍ରହ୍ମପୁର, ପୁରୀ, ଢେଙ୍କାନାଳ, କେଉଁଝର ଓ ଆହୁରି କେତେକ ଜାଗାକୁ ଗଲି । ବହୁ ଅର୍ଥବ୍ୟୟ ଓ ପରିଶ୍ରମ ପରେ କୋଡ଼ିଏଟି ଲେଖା ପାଇଲି । ଛପାକାମ ଆରମ୍ଭ କରିବି; କିନ୍ତୁ ଅର୍ଥ ? ସେ ଗୋଟିଏ ବିରାଟ ସମସ୍ୟା ରୂପେ ଦେଖାଦେଲା । ସାହିତ୍ୟ ଏକାଡେମୀ ଓ ସାଂସ୍କୃତିକ ବ୍ୟାପାର ବିଭାଗକୁ ପାଣ୍ଡୁଲିପିର କପି ସହ ଅର୍ଥସାହାଯ୍ୟ ପାଇଁ ଆବେଦନ କଲି । ସାହିତ୍ୟ ଏକାଡେମୀରେ ମୋ ଦରଖାସ୍ତଟି ଏ ପର୍ଯ୍ୟନ୍ତ ପଡ଼ିଛି; ଆଉ ସାଂସ୍କୃତିକ ବ୍ୟାପାର ବିଭାଗ ଏପରି ସଂକଳନ ପାଇଁ ଅର୍ଥ ମଞ୍ଜୁର କରିବେ ନାହିଁ ବୋଲି ମନା କରିଦେଲେ । ସେ ଯାହାହେଉ, ଛପାକାର୍ଯ୍ୟ ଆରମ୍ଭ କରିବା ପାଇଁ ବ୍ୟକ୍ତିଗତ ଅଭାବଅନଟନ ଭିତରେ ଏକ ଦୁଃସାହସିକ ପଦକ୍ଷେପ ନେଲି । ଛପାକାର୍ଯ୍ୟ ଆରମ୍ଭ ହେଲା,

ଛପା କାର୍ଯ୍ୟ ଚାଲିଥାଏ, ପ୍ରୁଫ୍ ଦେଖୁଥାଏ, ଆଉ ଯେଉଁମାନେ ଲେଖା ପଠାଇବା ପାଇଁ ସ୍ୱୀକୃତ ଦେଇଥିଲେ, ସେମାନଙ୍କ ପାଖକୁ ଏକ୍ସପ୍ରେସ ଚିଠିଠାରୁ ଆରମ୍ଭ କରି ଟେଲିଗ୍ରାମ୍ ପର୍ଯ୍ୟନ୍ତ ପଠାଇଥାଏ । ବେଳେ ବେଳେ ନିଜେ ମଧ୍ୟ ଯାଉଥାଏ । ଏବଂ ଛପାକାର୍ଯ୍ୟ ଆରମ୍ଭର ପ୍ରମାଣ ସ୍ୱରୂପ ମୁଦ୍ରିତ ଅଂଶକୁ ସେମାନଙ୍କୁ ଦେଖାଉଥାଏ । କାରଣ ଛପାକାର୍ଯ୍ୟ ଆରମ୍ଭ ବିଷୟରେ ବହୁ ବ୍ୟକ୍ତି ସନ୍ଦିହାନ ଥିଲେ । ତେଣୁ ପୁସ୍ତକଟିର ପ୍ରକାଶନରେ ବହୁ ବିଳମ୍ବ ଘଟିଛି ।

ଆଧୁନିକ ନାଟକ, ଗଳ୍ପ ଓ ଆଲେଖନ (Arts and Painting) ଉପରେ ଆଶାନୁରୂପ ଲେଖା ମିଳିପାରିଲି ନାହିଁ । ଯେତିକି ମିଳିଛି, ତାକୁ ଏହି ସଂକଳନରେ ଯୋଗକରିଯାଇ ପାରିନାହିଁ । ଏହି ପୁସ୍ତକର ପରେ ପରେ ଏହାର ଦ୍ୱିତୀୟ ଭାଗ "ସାଂପ୍ରତିକ କଥା, ରେଖା ଓ ସଂଳାପ" ନାମରେ ଶୀଘ୍ର ପ୍ରକାଶ ପାଇବାର ଆଶା କରୁଛି ଏବଂ ଯେଉଁ ବନ୍ଧୁମାନେ ଅଗ୍ରିମ ଲେଖା ପଠାଇ ଦେଇଛନ୍ତି, ସେମାନଙ୍କୁ ମୁଁ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।

ଏହି ସଂକଳନଟିରେ ଓଡ଼ିଶାର ବରିଷ୍ଠ ଲେଖକ, କବି, ପାଠକ, ସମାଲୋଚକ ତଥା ଅଧ୍ୟାପକମାନଙ୍କର (ପୁରାତନ, ମାଧ୍ୟମିକ ଓ ଆଧୁନିକ-ପନ୍ଥୀ )ସାଂପ୍ରତିକ ସାହିତ୍ୟ ଉପରେ ମୌଳିକ ମତାମତ ସଂଗ୍ରହ କରିଯାଇଛି ଏବଂ ପ୍ରତ୍ୟେକ ସାଂପ୍ରତିକ ସାହିତ୍ୟକୁ ସ୍ୱ-ସ୍ୱ ଦୃଷ୍ଟିକୋଣରୁ ବିଚାର କରି ପ୍ରବନ୍ଧ ଲେଖିଥିବାରୁ ସଂକଳନଟିର ନାମ **"ମୋ ଦୃଷ୍ଟିରେ ସାଂପ୍ରତିକ ସାହିତ୍ୟ"** ରଖାଯାଇଛି । ଏହି ସଂକଳନଟି ସୂଚାଇଦେବ ସାଂପ୍ରତିକ ସାହିତ୍ୟର ଗତି, ପ୍ରକୃତି ଓ ସ୍ଥିତି ଆସନ୍ତା ଦଶାବ୍ଦୀରେ କ'ଣ ହେବ । ଆଉ ବହୁ ବିଜ୍ଞ ଲେଖକ, ପ୍ରବୀଣ ସମାଲୋଚକ ଓ ସଚେତନ ପାଠକଙ୍କର ମତାମତ ସଂଗ୍ରହ କରିଯାଇ ପାରି ନ ଥିବାରୁ ମୁଁ ଦୁଃଖପ୍ରକାଶ କରୁଛି । ଏହି ମତାମତକୁ ଉପଜୀବ୍ୟ କରି ଆଜିର ଲେଖକ ତା'ର ନୂତନ ସୃଷ୍ଟି କରିବାକୁ ପ୍ରୟାସୀ ହେଉନ୍ତୁ ।

ଦୀର୍ଘଦିନର ଏକକ ପ୍ରଚେଷ୍ଟାର ଫଳ ଇଏ । ମୋର ବନ୍ଧୁ ନାରାୟଣ ପ୍ରସାଦ ପରିଜା, ସୁରେନ୍ଦ୍ରନାଥ ମହାରଣା, ଅର୍ଚ୍ଚନା ନାୟକ, କୈଳାସଚନ୍ଦ୍ର ଟିକାୟତ ରାୟ ଓ ଅଜୟକୁମାର ମହାନ୍ତିଙ୍କର ପ୍ରାରମ୍ଭିକ ପ୍ରେରଣା, ସାହାଯ୍ୟ ନିମିତ୍ତ ସେମାନେ ମୋର ଧନ୍ୟବାଦାର୍ହ । ଏହାଛଡ଼ା

ମୋର ଅଧ୍ୟାପକ ଶ୍ରୀଯୁକ୍ତ ବେଣୁଧର ରାଉତଙ୍କର ଉତ୍ସାହ, ଏ ଅବଧି ଏ ସଂକଳନର ପ୍ରକାଶ ପାଇଁ ସମ୍ପୂର୍ଣ୍ଣ ରୂପେ ଦାୟୀ, ପୂଜ୍ୟ ପ୍ରଫେସର ବିଧୁଭୂଷଣ ଦାସ ଡି. ପି. ଆଇ. ଓ ପୂଜ୍ୟ ପ୍ରଫେସର ଗୋଲୋକବିହାରୀ ଧଳ ମୋର ଅନୁରୋଧ ରକ୍ଷା କରି ସମସ୍ତ ପାଣ୍ଡୁଲିପିକୁ ପାଠକରି ମୁଖବନ୍ଧ ଦେଇଥିବାରୁ ମୁଁ ତାଙ୍କ ପାଖରେ କୃତଜ୍ଞ । ଏତଦ୍‌ବ୍ୟତୀତ ବନ୍ଧୁ ହରିପଦ-ବିଶ୍ୱାଳ, ମୁକ୍ତିକାନ୍ତ ଦାସ, ଅଧ୍ୟାପକ କ୍ଷେତ୍ରବାସୀ ନାୟକ, ଅଧ୍ୟାପକ ତତ୍ତ୍ୱକନ୍ଦର ମିଶ୍ର, ଅଧ୍ୟାପକ ଚିନ୍ତାମଣି ବେହେରା, ନାଟ୍ୟକାର ମନୋରଞ୍ଜନ ଦାସ, ଅଧ୍ୟାପିକା ବୀଣାପାଣି ମହାନ୍ତି, ଅଧ୍ୟାପକ ନିମାଇଁଚରଣ ପଟ୍ଟନାୟକ, ଅଧ୍ୟାପକ ହରିହର ମିଶ୍ର, ପ୍ରସନ୍ନକୁମାର ପାଟଶାଣୀ, ଉତ୍ତମଚରଣ ନାୟକ, ଶିଶିର ମହାପାତ୍ର, ସଦାଶିବ ଦାସ, ନିତ୍ୟାନନ୍ଦ ମହାନ୍ତି, ନିତ୍ୟାନନ୍ଦ କାନୁନ୍‌ଗୋ, ପ୍ରଭଞ୍ଜନ ପରିଡ଼ା, ଡାକ୍ତର ଗଗନ ଚନ୍ଦ୍ର ମିଶ୍ର, ଡାକ୍ତର ବସନ୍ତକୁମାର ମହାପାତ୍ର, ଅଧ୍ୟାପକ ବୈରାଗୀଚରଣ ଜେନା, ଅଧ୍ୟାପକ ରାଜେନ୍ଦ୍ରପ୍ରସାଦ ମହାନ୍ତି, ଦୁର୍ଗାଚରଣ ଭୂୟାଁ, ଆର୍ତ୍ତତ୍ରାଣ ଶତପଥୀ, ବ୍ରଜବନ୍ଧୁ ଶତପଥୀ ଓ ଯେଉଁମାନଙ୍କ ସାଧନାରେ ଏହି ପୁସ୍ତକଟିର ଅଙ୍ଗସଜ୍ଜା ସମ୍ଭବ ହୋଇପାରିଛି, ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି ।

ପରିଶେଷରେ ପ୍ରକାଶକ ବନ୍ଧୁ ଶ୍ରୀ ଜଗନ୍ନାଥ ରଥ, ଯାହାଙ୍କର ସାହିତ୍ୟିକ ରୁଚି ଓ ପୁସ୍ତକର ପ୍ରଚ୍ଛଦପଟ ମୋତେ ବହୁଦିନରୁ ଆକୃଷ୍ଟ କରିଥିଲା, ସେ ମହାଶୟ ଏ ବହିଟିର ପରିବେଷଣ ଦାୟିତ୍ୱ ବହନ କରିଥିବାରୁ ମୁଁ ତାଙ୍କୁ ଧନ୍ୟବାଦ ଜଣାଉଛି ।

ପୁସ୍ତକଟି ଓଡ଼ିଆ ସାହିତ୍ୟର ଉତ୍ତରୋତ୍ତର ବୌଦ୍ଧିକ ଉନ୍ନତିରେ କିଞ୍ଚିତ୍ ସାହାଯ୍ୟ କରିପାରିଲେ ମୋର ଏତେଦିନର ଶ୍ରମ ସାର୍ଥକ ହେବ ବୋଲି ଆଶା କରି ରହିଲି ।

**ପରୀକ୍ଷିତ ନନ୍ଦ, ଏମ୍. ଏ. (ଉତ୍କଳ)**

ଅଧ୍ୟାପକ, ଓଡ଼ିଆ ବିଭାଗ

ସାମନ୍ତ ଚନ୍ଦ୍ରଶେଖର କଲେଜ (ସାନ୍ଧ୍ୟ), ପୁରୀ

# ଓଡ଼ିଆ ସାହିତ୍ୟରେ ପ୍ରାଚୀନତା ଓ ଆଧୁନିକତା

**ଅଧ୍ୟାପକ ଗୌରୀକୁମାର ବ୍ରହ୍ମା**

ଆଜିକାଲି ଆଧୁନିକ ଓଡ଼ିଆ ସାହିତ୍ୟ ଯେ କେବଳ ଯେ ଚର୍ଚ୍ଚା ହେଉଅଛି ତାହା ନୁହେଁ, ବାଦବିବାଦ ମଧ୍ୟ ହେଉଛି ! ଯେପରି ଜଣାଯାଉଛି, ଆମ ଦେଶର ସାହିତ୍ୟ ସୃଷ୍ଟି ଦୁଇଭାଗରେ ବିଭକ୍ତ ହୋଇ ଯାଇଛି । ଗୋଟିଏ ବିଭାଗରେ ମୋଟାମୋଟି ଗତ ଶତାବ୍ଦୀର ତୃତୀୟ ପାଦ ପର୍ଯ୍ୟନ୍ତ ଲିଖିତ ହୋଇଥିବାର ସାହିତ୍ୟ ସ୍ଥାନଲାଭ କରେ । ଅପର ବିଭାଗରେ ଗତ ପ୍ରାୟ ଏକ ଶତାବ୍ଦୀର ସାହିତ୍ୟ ଅନ୍ତର୍ଭୁକ୍ତ କରାଯାଇ-ଥାଏ । ସଭାସମିତିରେ ଅନେକ ସମୟରେ 'ପ୍ରାଚୀନତା' 'ଆଧୁନିକତା'ର ଅନୁଗାମୀମାନଙ୍କ ମଧ୍ୟରେ ଘୋର ମତଭେଦ ପ୍ରକାଶ ପାଇଥାଏ । ସାହିତ୍ୟର ସମୃଦ୍ଧ ବିକାଶ ଲାଗି ଏହା ଯେପରି ଅବାଞ୍ଛନୀୟ, ସେହିପରି ଦୁଃଖଦାୟକ ମଧ୍ୟ ।

## ନାମକରଣର ଅପବ୍ୟାଖ୍ୟାନ

ସଭାସମିତି ବହୁଳ ବର୍ତ୍ତମାନ ଯୁଗରେ ଅନେକ ସୁସାହିତ୍ୟିକ ବକ୍ତା ଭାବରେ ଯାଆନ୍ତି ; ଅନ୍ୟମାନେ ମଧ୍ୟ ଯାଆନ୍ତି । ଅନ୍ୟମାନେ କହିଲେ, ସମାଜର ବିଭିନ୍ନ କ୍ଷେତ୍ର ଏବଂ ଆସନରେ ପ୍ରତିଷ୍ଠିତ ବ୍ୟକ୍ତି ବୁଝାଯାଆନ୍ତି । ସେମାନେ ଯେ ଅସାହିତ୍ୟିକ, ତାହା ନୁହେଁ କିମ୍ବା ସେମାନଙ୍କର ସାହିତ୍ୟ ସେବା ଯେ ନାହିଁ, ତାହା ମଧ୍ୟ ନୁହେଁ । କିନ୍ତୁ, କବି, ଲେଖକ, ସାହିତ୍ୟ ଅଧ୍ୟାପକ ତଥା ଗବେଷକମାନେ ଯେଉଁଭଳି ଭାବରେ ସାହିତ୍ୟକ୍ଷେତ୍ର ସଙ୍ଗେ ସଂପୃକ୍ତ, ସେମାନେ ସେପରି ଭାବରେ ନୁହଁନ୍ତି ।

ବହୁ ସମୟରେ ସାହିତ୍ୟ ଆଲୋଚକମାନଙ୍କର ମତ ଉଦ୍ଧାର କରି ସେମାନେ କହିଥାଆନ୍ତି ଯେ, ସାହିତ୍ୟରେ, 'ଆଧୁନିକ' ଓ 'ପ୍ରାଚୀନ' ବୋଲି ନାମକରଣ ଆଦୌ ସଙ୍ଗତ ନୁହେଁ । ଏପରି କି, ପ୍ରାଚୀନ ଏବଂ ଆଧୁନିକ ଶବ୍ଦ ପ୍ରୟୋଗ କରି ବକ୍ତା ଯଦି ସାହିତ୍ୟର ପରିଚୟ ଦେଇ-ଥାଆନ୍ତି, ସେମାନଙ୍କ ଉପରେ ଆକ୍ଷେପ ବାଣ ମଧ୍ୟ ନିକ୍ଷେପ କରାଯାଏ । ପ୍ରକୃତ କଥା ହେଉଛି, ଯେଉଁମାନେ 'ପ୍ରାଚୀନ-ସାହିତ୍ୟ' କିମ୍ବା 'ଆଧୁନିକ-ସାହିତ୍ୟ' ଶବ୍ଦ ପ୍ରୟୋଗ କରନ୍ତି, ସାହିତ୍ୟର ଅଖଣ୍ଡ ପ୍ରବାହ କଥା ସେମାନେ ଯେ ଜାଣନ୍ତି ନାହିଁ, ତାହା ନୁହେଁ । କିନ୍ତୁ ବିଚାରର ସୌକର୍ଯ୍ୟ ଲାଗି ଆଲୋଚିତ କାବ୍ୟମାନଙ୍କର ପରିଚୟ ପ୍ରଦାନ ଉଦ୍ଦେଶ୍ୟରେ ସେମାନେ ଏପରି କହିଥାଆନ୍ତି । ଭବଭୂତି କହିଅଛନ୍ତି—

'ଆବର୍ତ୍ତବୁଦ୍‌ବୁଦତରଙ୍ଗପରଂପରାଭିଃ'

ଅର୍ଥାତ୍ ଭଉଁରୀ, ପାଣିଫୋଟକା, ତରଙ୍ଗ, ସ୍ରୋତ-ଏସବୁ ଏକମାତ୍ର ଜଳର ବିଭିନ୍ନ ରୂପାନ୍ତର । ଭିନ୍ନ ଭିନ୍ନ ଅବସ୍ଥାରେ ଜଳ ଭିନ୍ନ ନାମ ଧାରଣ କଲାପରି ପ୍ରକାଶାତ୍ମକ ରୂପ ବିବେଚନ ପ୍ରସଙ୍ଗରେ ସାହିତ୍ୟର କାଳଗତ ବିଭାଜନ ତତ୍ତ୍ୱବୋଧର ସୁଗମତା ଆଣି ଦେଇଥାଏ । ଏହି ଦୃଷ୍ଟିରୁ ଯେଉଁମାନେ 'ପ୍ରାଚୀନ' ଏବଂ 'ଆଧୁନିକ' ରୂପେ ସାହିତ୍ୟର ବିଭାଗ ନିର୍ଦ୍ଦେଶ କରନ୍ତି, ସେମାନଙ୍କର ଅବିଜ୍ଞତା ପରିବର୍ତ୍ତେ ଅଭିଜ୍ଞତା ହିଁ ସ୍ୱୀକାର କରିବାକୁ ପଡ଼ିବ ।

## 'ପ୍ରାଚୀନ'–ଏକ ଆପେକ୍ଷିକ ଶବ୍ଦ

ଓଡ଼ିଆ ସାହିତ୍ୟର ଆଲୋଚନା ପ୍ରସଙ୍ଗରେ ଆମେ 'ପ୍ରାଚୀନ' ଶବ୍ଦ ପ୍ରୟୋଗ କରୁ ସତ, କିନ୍ତୁ ତାହାର ଗୋଟିଏ ବ୍ୟଞ୍ଜନା ଭୁଲିଯାଇ ଥାଉ । ଆଧୁନିକର ପ୍ରତିଯୋଗୀ ଶବ୍ଦ 'ପ୍ରାଚୀନ' ବୋଲି ଧରାଗଲେ ମଧ୍ୟ ତହିଁରୁ କୌଣସି ସମୟ ସୀମା ପ୍ରକାଶ ପାଏ ନାହିଁ । ଜାତୀୟ ଇତିହାସ ଭେଦରେ ଓ ଭାଷାର ଇତିହାସ ଭେଦରେ ପ୍ରାଚୀନତାର ସମୟସୀମା ନିରୂପଣୀୟ । ଚୀନ ସାହିତ୍ୟର ଇତିହାସରେ ଯାହା ପ୍ରାଚୀନ, ଅନେକ ଇଉରୋପୀୟ ସାହିତ୍ୟର ଇତିହାସ ବିଚାରରେ ତାହା ପ୍ରାଚୀନ ନୁହେଁ । ସଂସ୍କୃତ ସାହିତ୍ୟ ଇତିହାସରେ ପ୍ରାଚୀନ ଶବ୍ଦ ଯେଉଁ ସମୟସୀମାର ସଙ୍କେତ ପ୍ରଦାନ କରେ, ଆଧୁନିକ ଭାରତୀୟ ପ୍ରାଦେଶିକ ସାହିତ୍ୟମାନଙ୍କର

ଇତିହାସରେ ତାହା ସେହି ସଙ୍କେତ ପ୍ରକାଶ କରେ ନାହିଁ । ଆଜିର ପ୍ରାୟ ଏକ ହଜାର ବର୍ଷ ପୂର୍ବରୁ ସାତ-ଆଠ ଶହ ବର୍ଷ ପଛ ପର୍ଯ୍ୟନ୍ତ ସଂସ୍କୃତ କାବ୍ୟ-ସାହିତ୍ୟର ପ୍ରାଚୀନ ଯୁଗ, ଅଥଚ ତାମିଲ ଭାଷା ପରି ଗୋଟିଏ ଦୁଇଟି ପ୍ରାଦେଶିକ ଭାଷା ଛାଡ଼ିଦେଲେ (ଏପରିକି କେବଳ ତାମିଲକୁ ଛାଡ଼ିଦେଲେ) ଅନ୍ୟ ଭାରତୀୟ ସାହିତ୍ୟମାନଙ୍କର ଉଲ୍ଲେଖଯୋଗ୍ୟ ପ୍ରକାଶ ହିଁ ସେହି ସମୟରେ ସାଧିତ ହୋଇ ନ ଥିଲା । ସୁତରାଂ, ଓଡ଼ିଆ ସାହିତ୍ୟର ଆଲୋଚନା ପ୍ରସଙ୍ଗରେ ଯେଉଁମାନେ 'ପ୍ରାଚୀନ' ଓ 'ପ୍ରାଚୀନତା' ଶବ୍ଦ ପ୍ରୟୋଗ କରନ୍ତି, ସେମାନେ ସବୁବେଳେ ମନେରଖିବା ଉଚିତ, ଏହା ପ୍ରାୟ ଏକ ହଜାର ବର୍ଷର ପୂର୍ବକୁ ଯାଇ ପାରିବ ନାହିଁ ।

## ଓଡ଼ିଆ ସାହିତ୍ୟରେ ଆଧୁନିକତାର ସମୟସୀମା

ଓଡ଼ିଆ ସାହିତ୍ୟକୁ ପ୍ରାଚୀନ ସାହିତ୍ୟଯୁଗ ଏବଂ ଆଧୁନିକ ସାହିତ୍ୟଯୁଗ, ଏଭଳି ଦ୍ୱିବିଧ ବିଭାଗ କଲେ, ଆଧୁନିକତାର ବୟସ ପ୍ରାୟ ଏକ ଶତାବ୍ଦୀ ରୂପେ ଗ୍ରହଣ କରିବାକୁ ପଡ଼ିବ । ଅନ୍ୟ ଭାବରେ କହିଲେ ସ୍ଥୂଳତଃ ୧୮୭୦-୭୫ର ପୂର୍ବେ ରଚିତ ଓଡ଼ିଆ ସାହିତ୍ୟ ହିଁ ପ୍ରାଚୀନ ଓଡ଼ିଆ ସାହିତ୍ୟ । ସେହି ପ୍ରାଚୀନ ସାହିତ୍ୟକୁ ପୁଣି ଯଦି ଦୁଇ ଭାଗରେ ବିଭକ୍ତ କରାଯାଏ, ତାହା ହେଲେ ମୋଟାମୋଟି ୧୫୫୦-୬୦ରୁ ୧୮୭୦-୭୫ ପର୍ଯ୍ୟନ୍ତ ସମୟକୁ ଓଡ଼ିଆ ସାହିତ୍ୟର ମଧ୍ୟଯୁଗ ରୂପେ ଗ୍ରହଣ କରାଯାଇପାରେ । ସାଧାରଣତଃ, ଓଡ଼ିଆ ସାହିତ୍ୟର ଐତିହାସିକ ତଥା ଆଲୋଚକମାନେ ଏଭଳି କାଳ ବିଭାଜନ ଗ୍ରହଣ କରିଥାଆନ୍ତି । ତେବେ ଗୋଟାଏ ଅର୍ଥରେ ମଧ୍ୟଯୁଗ ଓଡ଼ିଆ ସାହିତ୍ୟ ମଧ୍ୟ ଆଧୁନିକତାର ପ୍ରତିପକ୍ଷତାରେ ପ୍ରାଚୀନ ଯୁଗ ମଧ୍ୟରେ ଗଣ୍ୟ ।

ଏ ପ୍ରସଙ୍ଗରେ ଆଉରି ଗୋଟିଏ କଥା ଯେପରି ଉଲ୍ଲେଖଯୋଗ୍ୟ, ସେହିପରି ପ୍ରଣିଧାନଯୋଗ୍ୟ । ଆଜକୁ ପ୍ରାୟ ୨୫ । ୩୦ ବର୍ଷ ତଳେ ଓଡ଼ିଶାର ଯେଉଁ ପଣ୍ଡିତମାନେ ସାହିତ୍ୟ ସମୀକ୍ଷା କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ, ସେମାନେ ମୋଟାମୋଟି ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରୁ ହିଁ ଆଧୁନିକ ଓଡ଼ିଆସାହିତ୍ୟର ଉତ୍ପତ୍ତି ଓ କ୍ରମବିକାଶ ନିର୍ଦ୍ଦେଶ କରୁଥିଲେ । ଅନ୍ୟ ଭାବରେ କହିଲେ ରାଧାନାଥ, ମଧୁସୂଦନ ପ୍ରଭୃତିଙ୍କର ସାହିତ୍ୟକୁ ଭିତ୍ତି କରି ଓଡ଼ିଆ ସାହିତ୍ୟରେ ଆଧୁନିକ ଶୈଳୀ, ରୁଚି ଏବଂ ଆଭିମୁଖ୍ୟର

ବିକାଶ ସେମାନେ ନିର୍ଦ୍ଦେଶ କରୁଥିଲେ । ଅବଶ୍ୟ ଭଲକରି ବିଚାର କଲେ ଊନବିଂଶ ଶତାବ୍ଦୀର ଶେଷ ପାଦରୁ ରାଧାନାଥ ଯୁଗର ଉଦ୍‌ଗମ ଓ ବିକାଶ ନିରୂପିତ ହେବା ବାଞ୍ଛନୀୟ—୨୦ । ୨୫ ବର୍ଷ ଏପଟ ସେପଟ ହୋଇପାରେ ।

ସେ ଯାହାହେଉ, ପ୍ରାୟ ପଚଶ ବର୍ଷ ତଳର ଏହି ଚିନ୍ତାଧାରା ଏବେ ପରିବର୍ତ୍ତିତ ହୋଇ ଯାଉଥିବାର ଲକ୍ଷ୍ୟ କରାଯାଉଛି । ଯେଉଁ ସାହିତ୍ୟିକମାନେ ବର୍ତ୍ତମାନ ସେମାନଙ୍କ ଜୀବନର ଚତୁର୍ଥପାଦରେ ପଦାର୍ପଣ କଲେଣି ଏବଂ ପ୍ରାୟ ତିନିଦଶକ ତଳେ ଯେଉଁମାନେ ସାହିତ୍ୟ ଚର୍ଚ୍ଚାରେ ଉଲ୍ଲେଖଯୋଗ୍ୟ ସକ୍ରିୟତା ପ୍ରକାଶ କରୁଥିଲେ, ସେମାନେ ଏବେ ମଧ୍ୟ ରାଧାନାଥ ଯୁଗକୁ ହିଁ ଓଡ଼ିଆ ସାହିତ୍ୟର ଆଧୁନିକ ଯୁଗ ରୂପେ ଗ୍ରହଣ କରିଥାଆନ୍ତି, କିନ୍ତୁ ଏହି ଗତ ଦୁଇ ତିନି ଦଶକ ମଧ୍ୟରେ ସର୍ଜ୍ଜନାମୂଳକ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଅଭାବନୀୟ ତତ୍ପରତା ପ୍ରକାଶ ପାଇଛି । ୧୯୪୩ରେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା, ଭାରତ ସ୍ୱାଧୀନ ହେବା ପରଠାରୁ ବିଭିନ୍ନ ଶିକ୍ଷାନୁଷ୍ଠାନମାନଙ୍କରେ ବ୍ୟାପକ ସାହିତ୍ୟ ଚର୍ଚ୍ଚା, ସ୍ଥାନେ ସ୍ଥାନେ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନମାନଙ୍କର ସଂଗଠନ ତଥା ସାହିତ୍ୟଚର୍ଚ୍ଚାମୂଳକ ଆୟୋଜନ, ନାନାବିଧ ପତ୍ରପତ୍ରିକାର ପ୍ରକାଶ, କବି, ସାହିତ୍ୟିକ ତଥା ଜନନାୟକମାନଙ୍କର ଜୟନ୍ତୀ ପାଳନ ତଥା ଶ୍ରାଦ୍ଧୋପଲକ୍ଷେ ସାହିତ୍ୟିକ ପ୍ରଚେଷ୍ଟା ଏବଂ ସର୍ବୋପରି ନିବିଡ଼ରୁ ନିବିଡ଼ତର ଭାବରେ ଇଂରାଜୀ ସାହିତ୍ୟ ତଥା ଉନ୍ନତ ଭାରତୀୟ ସାହିତ୍ୟମାନଙ୍କ ସଙ୍ଗେ ସଂପର୍କ ସ୍ଥାପନ—ଏହିସବୁ କାରଣରୁ ସୃଷ୍ଟିମୂଳକ ଓଡ଼ିଆ ସାହିତ୍ୟ-ରାଜ୍ୟରେ ବିଲକ୍ଷଣ ମୌଳିକତା ପ୍ରକାଶ ପାଇଅଛି । ଏହା ଫଳରେ କେବଳ ଯେ ବହୁ ସଂଖ୍ୟକ ରଚନା ଓଡ଼ିଆ ସାହିତ୍ୟ ସମ୍ଭାରରେ ବିକଶିତ ହୋଇଅଛି, ତାହା ନୁହେଁ । ବହୁ ପ୍ରକାର ଆତ୍ମିକ ଓ ଆଙ୍ଗିକ ଅଭିନବତ୍ୱରେ ସେଗୁଡ଼ିକ ଅଭିମଣ୍ଡିତ ହୋଇଉଠିଛି । ସେଥିପାଇଁ ଆଜି ଆଧୁନିକ ଓଡ଼ିଆ ସାହିତ୍ୟ କଥା କହିଲାବେଳେ ରାଧାନାଥ ଏବଂ ଦ୍ୱିତୀୟ ମହାଯୁଦ୍ଧର ଆରମ୍ଭ କାଳ ପର୍ଯ୍ୟନ୍ତ ତାଙ୍କର ଆଦର୍ଶ ଅନୁସରଣକାରୀ ସ୍ରଷ୍ଟାମାନଙ୍କୁ 'ଆଧୁନିକ ଯୁଗ'ର ବୋଲି ମଧ୍ୟ ଗ୍ରହଣ କରିବାକୁ କେହି କେହି ପ୍ରସ୍ତୁତ ନୁହନ୍ତି । ରାଧାନାଥ ଯେପରି କାବ୍ୟକବିତା ବିଷୟରେ, ଫକୀରମୋହନ ସେହିପରି କଥାସାହିତ୍ୟ ବିଷୟରେ 'ଆଧୁନିକ ଓଡ଼ିଆ ସାହିତ୍ୟ'ର ପ୍ରତିଷ୍ଠାପକ, ଯଦିଓ କାବ୍ୟକବିତାର ପାରଂପରିକ ଗୌରବ

ଦୃଷ୍ଟିରୁ ସାଧାରଣତଃ ପଦ୍ୟସାହିତ୍ୟର ଭିତ୍ତିକତାରେ ରାଧାନାଥ ଯୁଗର ନାମକରଣ ଗୃହୀତ ହୋଇଥାଏ ।

ଏହି ଦୃଷ୍ଟିରୁ ଦେଖିଲେ, ଗୋଟାଏ ଅର୍ଥରେ ଆଧୁନିକ ଓଡ଼ିଆ ସାହିତ୍ୟ ପ୍ରାୟ ତିରିଶ ବର୍ଷରୁ ବେଶି ନୁହେଁ, ଯଦିଓ ଟିକିଏ ବ୍ୟାପକ ଅର୍ଥରେ, ଏହା ଗତ ଶତାବ୍ଦୀର ଶେଷ ପାଦ ପର୍ଯ୍ୟନ୍ତ ସମ୍ପ୍ରସାରିତ ହେବା ସାମୀଚୀନ । ଏ ଯୁଗର ନାମକରଣରେ ଏ ପ୍ରକାର ମତନୈକ୍ୟ ଦେଖି କେହି କେହି ରାଧାନାଥ ଯୁଗକୁ ଆଧୁନିକ ଯୁଗ ଏବଂ ଏହି ପ୍ରାୟ ତିରିଶ-ବର୍ଷର ସାହିତ୍ୟ ସୃଷ୍ଟିକୁ ଅତ୍ୟାଧୁନିକ ଯୁଗ (Ultra-Modern) ରୂପେ ନାମିତ କରିଥାଅନ୍ତି ।

## ଆଧୁନିକତା, କାଳଗତ ନା ଆଦର୍ଶଗତ ?

ଉପର ଆଲୋଚନାରୁ ଆପାତତଃ ପ୍ରତିପନ୍ନ ହୁଏ ଯେ, ଗୋଟିଏ ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ଯେଉଁ ସାହିତ୍ୟ ସୃଷ୍ଟି ହୁଏ, ତାହା ଯୁଗର ନାମକରଣ ଦୃଷ୍ଟିରୁ ସେହି ଯୁଗର ସାହିତ୍ୟ ରୂପେ ଗୃହୀତ ହେବା ସୁନିଶ୍ଚିତ ; କିନ୍ତୁ ଏହା ଆଦୌ ଯଥାର୍ଥ ନୁହେଁ । ଅନ୍ୟ ଭାବରେ କହିଲେ, ଏହି ପ୍ରାୟ ତିରିଶ ବର୍ଷ ମଧ୍ୟରେ ଯାହାସବୁ ରଚିତ ହୋଇଅଛି, ତାହା 'ଆଧୁନିକ ସାହିତ୍ୟ' ବୋଲି ଗୃହୀତ ହେବା ଅନୁଚିତ । ସାହିତ୍ୟରେ ରୁଚି ବିଭଞ୍ଜନ କରାଯାଏ ଆଲୋଚନାର ସୌନ୍ଦର୍ଯ୍ୟ ନୀତି ; କିନ୍ତୁ କାଳ ବିଭାଗ ସାହିତ୍ୟକ ଯୁଗାଦର୍ଶର ଏକମାତ୍ର ପରିଚ୍ଛେଦକ କିମ୍ବା ପରିନିର୍ଦ୍ଦେଶକ ନୁହେଁ । ଉଦାହରଣ ସ୍ୱରୂପ, ଏହି ତିରିଶ ବର୍ଷ ମଧ୍ୟରେ ବୈଦେହୀଶ-ବିଳାସ, ଲାବଣ୍ୟବତୀ, ମନବୋଧ ଚଉତିଶା, କେଶବ କୋଇଲି ପ୍ରଭୃତିର ଅନୁସରଣରେ ଅନେକ କାବ୍ୟକବିତା ଲେଖାଯାଇଛି । ପ୍ରାୟ ଚାରି ଶହ ବର୍ଷ ପୂର୍ବେ ଅଚ୍ୟୁତାନନ୍ଦ, ଯଶୋବନ୍ତ ପ୍ରମୁଖ ସାଧକମାନେ ଯେଉଁଭଳି ଭାଷାରେ, ଯେଉଁଭଳି ଧର୍ମ ସାହିତ୍ୟ ରଚନା କରୁଥିଲେ, ସେଭଳି ପୁସ୍ତକମାନ ଏବେ ମଧ୍ୟ ରଚିତ ଓ ପ୍ରକାଶିତ ହେଉଅଛି । ଆଧୁନିକ ଯୁଗରେ, ଆମ୍ଭମାନଙ୍କର ଏହି ଜୀବନ କାଳ ମଧ୍ୟରେ ସେସବୁ ରଚିତ ହୋଇଥିଲେ ହେଁ ସେଗୁଡ଼ିକ 'ଆଧୁନିକ ଓଡ଼ିଆ ସାହିତ୍ୟ' ରୂପେ ଗୃହୀତ ହୋଇ ନ ପାରନ୍ତି । ଏହାର ପ୍ରଧାନ କାରଣ ହେଉଛି, ଆଧୁନିକତା କାଳଗତ ନୁହେଁ, ସାହିତ୍ୟର ଆତ୍ମଗତ, ପ୍ରାଣଗତ, ଅଭିମୁଖ୍ୟ

ଓ ଆଦର୍ଶଗତ । ସୁତରାଂ, ଯେଉଁମାନେ ଏବେ ମଧ୍ୟ ପୁରୁଣାକାଳିଆ ଢଙ୍ଗରେ କାବ୍ୟକବିତା ରଚନା କରି ଆଧୁନିକ କବି ରୂପେ ଆତ୍ମ-ପରିଚୟ ପ୍ରଦାନ କରନ୍ତି, ସେମାନେ ଆତ୍ମପ୍ରବଂଚନାରେ ପଡ଼ି ଆତ୍ମ-ପ୍ରତାରଣା କରନ୍ତି ମାତ୍ର ।

ଅବଶ୍ୟ ଦୁର୍ଭାଗ୍ୟକ୍ରମେ, ସାହିତ୍ୟସେବୀମାନଙ୍କ ମଧ୍ୟରେ ଉକ୍ତ ମତଭେଦ ପ୍ରକାଶ ପାଉଅଛି ଏବଂ ବେଳେ ବେଳେ ମତାନ୍ତର ମଧ୍ୟ ମନାନ୍ତରରେ ପରିଣତ ହେଉଅଛି । କିନ୍ତୁ ସତ୍ୟ ଲୁଚିବାର ବସ୍ତୁ ନୁହେଁ । ପ୍ରାୟ କୋଡ଼ିଏ ବର୍ଷ ତଳେ କଳାହାଣ୍ଡି ପୁରସ୍କାରପ୍ରାପ୍ତ ପଣ୍ଡିତ ନୀଳକଣ୍ଠ ରଥଙ୍କର 'ସୀତା ପ୍ରେମ ତରଙ୍ଗିଣୀ' କାବ୍ୟ ଯଦି ଆଧୁନିକ ଓଡ଼ିଆ ସାହିତ୍ୟରେ ଉଚ୍ଚ ଆସନ ଦାବୀ କରେ, ତାହାହେଲେ ତାକୁ ବଡ଼ମ୍ବିତ ହେବାକୁ ପଡ଼ିବ । ଅନ୍ୟ ପକ୍ଷରେ, ବହୁ ପ୍ରାଚୀନ ରଚନା, ( ଯଥା— ରାମଚନ୍ଦ୍ର ପଟ୍ଟନାୟକଙ୍କର 'ହାରାବଳୀ କାବ୍ୟ' ) ଅଧିକତର ଭାବରେ ଆଧୁନିକ ଯୁଗାଦର୍ଶର ବାହକ ରୂପେ ବର୍ତ୍ତମାନ ଯୁଗରେ ମଧ୍ୟ ନିଜର ଦାବୀ ଉପସ୍ଥାପନ କରିପାରେ ।

## ପ୍ରାଚୀନ ଓଡ଼ିଆ ସାହିତ୍ୟର ସ୍ୱରୂପ

ପ୍ରାଚୀନ ଓଡ଼ିଆ ସାହିତ୍ୟ ବ୍ୟାପକ ଅର୍ଥରେ ଊନବିଂଶ ଶତାବ୍ଦୀର ଶେଷପ୍ରାୟ ପାଦ ପର୍ଯ୍ୟନ୍ତ ପ୍ରସାରିତ । ସେ ଯୁଗର ଆଦର୍ଶ ଥିଲା ସଂସ୍କୃତ ପୁରାଣ ସାହିତ୍ୟ ଓ କାବ୍ୟ ସାହିତ୍ୟ ପାଞ୍ଚ ଶହ ବର୍ଷ ପୂର୍ବେ ସାରଳା ଦାସ ତାଙ୍କର ମହାଭାରତ ଲେଖିଲାବେଳକୁ ସଂସ୍କୃତ ସାହିତ୍ୟ ପୂର୍ଣ୍ଣ ବିକାଶ ଲାଭ କରି ବି-ପରିଣାମ ବା ପ୍ରୌଢ଼ୋତ୍ତର ଅବସ୍ଥାରେ ଆସି ଉପନୀତ ହୋଇ-ଥିଲା । ସେଥିପାଇଁ ଓଡ଼ିଶାରେ ତଥା ବିଭିନ୍ନ ପ୍ରାଦେଶିକ ଭାଷାରେ ଯେଉଁ-ମାନେ ସାହିତ୍ୟ ସୃଷ୍ଟି କରୁଥିଲେ, ସେମାନଙ୍କର ଆଦର୍ଶ ଥିଲା ସଂସ୍କୃତ ସାହିତ୍ୟ । ଓଡ଼ିଶାରେ ଓଡ଼ିଆ ଲେଖକମାନେ ସଂସ୍କୃତ ପଣ୍ଡିତମାନଙ୍କର ପ୍ରତିଯୋଗୀ ରୂପେ ଆତ୍ମପ୍ରକାଶ କରିଥିଲେ । ସେଥିପାଇଁ ସେମାନଙ୍କୁ ବହୁ ବାଧାବିଘ୍ନ ଅତିକ୍ରମ କରିବାକୁ ପଡ଼ିଥିଲା । ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀରେ ପୁରାଣଠାରୁ ଜଣାଣ ପର୍ଯ୍ୟନ୍ତ ରଚିତ ହୋଇଥିଲେ ହେଁ କାବ୍ୟ-ସାହିତ୍ୟ ପୂର୍ଣ୍ଣ ଭାବରେ ବିକଶିତ ହୋଇ ନ ଥିଲା । ତେବେ କାବ୍ୟ-ସାହିତ୍ୟକୁ ଯେଉଁମାନେ ରୂପ ଦାନ କଲେ, ସେମାନଙ୍କୁ ଦୁଇଟି ସମସ୍ୟା ପ୍ରତି ଦୃଷ୍ଟି

ଦେବାକୁ ପଡ଼ିଥିଲା । ଗୋଟିଏ ହେଉଛି, ସଂସ୍କୃତ ସାହିତ୍ୟର ଅନୁବର୍ତ୍ତିତା ଏବଂ ଅନ୍ୟଟି ହେଉଛି ପ୍ରାକୃତ ସାହିତ୍ୟ, ପଡ଼ୋଶୀ ପ୍ରାଦେଶିକ ସାହିତ୍ୟ ତଥା ଓଡ଼ିଶାର ସ୍ୱକୀୟ ଅଭିରୁଚି ମଧ୍ୟରେ ସମନ୍ୱୟ ସାଧନ କରିବା । ସେଥିରୁ ବାହାରି ପଡ଼ିଲା ଛାନ୍ଦ ସାହିତ୍ୟ । ଏହା ତେଲୁଗୁ 'ପ୍ରବନ୍ଧ' ସାହିତ୍ୟର ଅନୁରୂପ । ଭୋଜରାଜଙ୍କର 'ଶୃଙ୍ଗାରଚେତ କବୟଃ' ଆଦର୍ଶର ପ୍ରବଳ ଅନୁଶାସନ ମଧ୍ୟରେ ଓଡ଼ିଆ ଛାନ୍ଦ ସାହିତ୍ୟର ସୃଷ୍ଟି । ପୁରାଣ ସାହିତ୍ୟ ଥିଲା, 'ଦେବ ପ୍ରଧାନ' କିନ୍ତୁ ଛାନ୍ଦ ସାହିତ୍ୟ ହେଲା, 'ଦେହ-ପ୍ରଧାନ' । 'ଦେଶ-ପ୍ରଧାନ' ରାଧାନାଥ ଯୁଗସାହିତ୍ୟ ବିକଶିତ ହେବାରୁ ପ୍ରବହମାନ ଓଡ଼ିଆ ସାହିତ୍ୟରେ ତରଙ୍ଗ ଭଙ୍ଗ ଲକ୍ଷିତ ହେଲା । ତାହା ହିଁ ହେଲା ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି । ସାହିତ୍ୟ କ୍ରମେ 'ଜଣ' ଆଦର୍ଶରୁ ବିମୁକ୍ତ ହୋଇ 'ଗଣ' ଆଦର୍ଶରେ ଉଦ୍‌ବୁଦ୍ଧ ହେଲା । ଆମର ସମସାମୟିକ ଓଡ଼ିଆ ସାହିତ୍ୟ ସେହି ଗଣ ଆଦର୍ଶର ପ୍ରଶସ୍ତ ପରିବେଶ ମଧ୍ୟରେ ନୂତନତାର ସୁନୀଳ ଚିରାଳ ପ୍ରତିଷ୍ଠା କରିବାକୁ ଉଦ୍ୟତ ହେଉଅଛି ।

ଆଧୁନିକ ଓଡ଼ିଆ ସାହିତ୍ୟର ସ୍ୱରୂପ ଅବବୋଧ ଲାଗି ମଧ୍ୟଯୁଗୀ ଓଡ଼ିଆ ସାହିତ୍ୟ ପର୍ଯ୍ୟନ୍ତ ଆମକୁ ଗତିଶୀଳ ହେବାକୁ ପଡ଼ିବ । ତହିଁରେ ପ୍ରବେଶ କଲେ ଧୀରେ ଧୀରେ ଉପଲବ୍ଧ ହେବ ଯେ, ଏହି କେତୋଟି କଥା ସେ ଯୁଗର ସାହିତ୍ୟିକ ଆଦର୍ଶ ବା ବିଶେଷତ୍ୱର ପରିଚାୟକ; ଯଥା :—

(୧) ପୌରାଣିକ ଉପାଖ୍ୟାନ, କଥା, କାଳ୍ପନିକ ଚରିତ ଅବଲମ୍ବନରେ କାବ୍ୟ ବିରଚନ ।

(୨) ପୁରାଣ ଗ୍ରନ୍ଥମାନଙ୍କର ଅସମାକ୍ଷରବିଶିଷ୍ଟ ପଂକ୍ତି ବା ପଦ-ମାନଙ୍କ ପରିବର୍ତ୍ତେ ଅକ୍ଷର ନିୟନ୍ତ୍ରିତ ଓ ରାଗରାଗିଣୀ ଯୁକ୍ତ ବୃତ୍ତମାନଙ୍କର ପ୍ରୟୋଗ ।

(୩) ଭାଷା ପ୍ରୟୋଗରେ ଶବ୍ଦମାନଙ୍କର ଗୁରୁଚଣ୍ଡାଳ ଦୋଷ ପ୍ରତି ଦୃଷ୍ଟି ନ ଦେଇ, ଗୀତି-ମୟତା ବା ସଙ୍ଗୀତମୟତାରେ ସେ ସବୁର ସ୍ୱକୀୟତାର ଅନ୍ତର୍ଭାବ ।

(୪) ବିଷୟବସ୍ତୁର ରୂପାୟନରେ ଅଳଂକାର ଶାସ୍ତ୍ର ପ୍ରତିପାଦିତ ରସମାନଙ୍କର ପ୍ରତିଫଳନ ପ୍ରତି ସର୍ବାଧିକ ଦୃଷ୍ଟି ପ୍ରଦାନ ।

(୫) ବିଷୟବସ୍ତୁ ଯେଉଁଠାରେ ମୁଖ୍ୟତଃ ଧର୍ମମୂଳକ କମ୍ବା ଦେବଦେବୀ ବିଷୟକ ନୁହେଁ, ସେଠାରେ ମଝେ ମଝେ ଦେବାଦେବୀଙ୍କର ଗୁଣକୀର୍ତ୍ତନ ଓ ଆଶୀର୍ବାଦ କାମନାର ପ୍ରକଟନ ।

(୬) ସଂସ୍କୃତ ପଣ୍ଡିତ ସମାଜ ଓଡ଼ିଆ ସାହିତ୍ୟର ପ୍ରବଳ ପ୍ରତିପକ୍ଷ ହୋଇଥିବାରୁ, ସେମାନଙ୍କ ମନରେ ମାତୃଭାଷାର ସାହିତ୍ୟ ପ୍ରତି ଶ୍ରଦ୍ଧା ଓ ଅନୁରାଗ ସର୍ଜନା ଲାଗି ବିଦଗ୍ଧତା ଫୁଟାଇବାର ପ୍ରଚେଷ୍ଟା—ଏହା କେତେବେଳେ ଆଲଂକାରିକ ଗୂଢ଼ତା, କେତେବେଳେ ଶାସ୍ତ୍ର ପାଣ୍ଡିତ୍ୟ, କେତେବେଳେ ବା ଶାବ୍ଦିକ ଚାତୁର୍ଯ୍ୟ ଓ ବିଚିତ୍ର କଳ୍ପନା ବିଳାସ ମାଧ୍ୟମରେ ପ୍ରକାଶ ଲାଭ କରୁଥିଲା ।

(୭) ମୁଖ୍ୟତଃ କଳାତ୍ମକ ହେଲେ ହେଁ ତତ୍କାଳଗତ ବା ସମସାମୟିକ ସାମାଜିକ ଜୀବନର ଅନୁକୂଳ ତଥା ଉପଦେୟ ହେବା ଭଳି କେତେକ ତଥ୍ୟ ବା ମର୍ମୋକ୍ତି ସମାବେଶ କରି, ପାଠକଙ୍କ ମନରେ ସମାଜ-ସଚେତନ ଭାବ ସୃଷ୍ଟି କରିବା ।

(୮) ଆଧୁନିକ ଅର୍ଥରେ ଦେଶପ୍ରେମର ଆଦର୍ଶ ପ୍ରକାଶ ପାଇ ନ ଥିଲେ ହେଁ ଶ୍ରୀକ୍ଷେତ୍ର ତଥା ଜଗନ୍ନାଥଙ୍କର ମହତ୍ତ୍ୱ କୀର୍ତ୍ତନ କରି ଓଡ଼ିଆ ପାଠକଙ୍କ ପ୍ରାଣରେ ସ୍ୱଦେଶ ପ୍ରତି ଅକୃତ୍ରିମ ପ୍ରେମ ସୃଷ୍ଟି କରିବା ।

(୯) ମୁଖ୍ୟତଃ ସଂସ୍କୃତ ସାହିତ୍ୟର ଅନୁବର୍ତ୍ତିତାରେ କାବ୍ୟ-କବିତା ରଚନା କରି, ଅନୁସରଣ (Imitation) ସହିତ ସଂସ୍କୃତ କବିମାନଙ୍କର ଶୈଳୀ ଓ ଆଦର୍ଶର ଅତିକ୍ରମଣ (Emulation) ଲାଗି ଚେଷ୍ଟା କରିବା ।

(୧୦) ପରଂପରା ପ୍ରତି ଅସୀମ ଆସ୍ଥା ସ୍ଥାପନ କରି, ନିତାନ୍ତ ଆବଶ୍ୟକ ସ୍ଥଳରେ ବର୍ଣ୍ଣନାଶୈଳୀ ପ୍ରଭୃତିରେ ନବୀନତା ପ୍ରଦର୍ଶନ କରିବା ।

(୧୧) ଚରିତ୍ର ଚିତ୍ରଣରେ ସଂସ୍କୃତସାହିତ୍ୟଗତ, ବିଶେଷତଃ ଅଲଂକାର ଶାସ୍ତ୍ର ନିର୍ଦ୍ଦେଶିତ, ଭଙ୍ଗୀଗୁଡ଼ିକୁ ଏକପ୍ରକାର ଅନ୍ଧଭାବରେ ଅନୁସରଣ କରିବା ।

(୧୨) ନାଟକାଦି ସାହିତ୍ୟିକ ବିଭାବର ସ୍ୱଳ୍ପତା ଓ ମୁଖ୍ୟତଃ ପଦ୍ୟ ସାହିତ୍ୟର କେତେଗୋଟି ପ୍ରତିଷ୍ଠିତ ଆକୃତି (form) ଯଥା କାବ୍ୟ, (ଛାନ୍ଦ) ଜଣାଣ, ଚଉତିଶା, ଚୌପଦୀ ପ୍ରଭୃତିରେ ସାହିତ୍ୟିକ ସର୍ଜନା ଶକ୍ତିର ବିକାଶ ସାଧନ କରିବା ।

କିନ୍ତୁ ରାଧାନାଥଙ୍କ ସମୟରୁ ଅର୍ଥାତ୍ ଗତ ଶତାବ୍ଦୀର ତୃତୀୟ ପାଦରୁ ଏହି ଧାରା, ପ୍ରବାହ, ରୀତି, ଢଙ୍ଗ ବା ଆଦର୍ଶରେ ପରିବର୍ତ୍ତନ ସଂଘଟିତ ହେଲା । ଯଦିଓ ଅର୍ଦ୍ଧଶତାବ୍ଦୀର ପ୍ରବୀଣ ସାହିତ୍ୟ ସମୀକ୍ଷକମାନେ ରାଧାନାଥଙ୍କୁ ଏକ ନୂତନ ଯୁଗର ପ୍ରବର୍ତ୍ତକ ଭାବରେ ସମ୍ମାନିତ କରି ଆସିଅଛନ୍ତି, ତଥାପି କେହି କେହି ରାଧାନାଥଙ୍କୁ ମଧ୍ୟ ଭଞ୍ଜଯୁଗର ଶେଷ ମହିମମୟ ପ୍ରକାଶ ରୂପେ ଚିହ୍ନଣ କରିବାକୁ କୁଣ୍ଠିତ ହୋଇ ନାହାନ୍ତି । ପ୍ରକୃତରେ କହିବାକୁ ଗଲେ, ରାଧାନାଥଙ୍କ ସମୟରୁ ଓଡ଼ିଶାରେ ସାରସ୍ୱତ ଅଭିରୁଚି ଏବଂ ସାହିତ୍ୟର ଆତ୍ମିକ ତଥା ଆଙ୍ଗିକ ପରିବର୍ତ୍ତନ ଯେ ସୁସ୍ପଷ୍ଟ ଭାବରେ ଘଟିଥିଲା, ଏହା ଅସ୍ୱୀକାର କରି ହେବନାହିଁ । ରାଧାନାଥଙ୍କ ସମସାମୟିକ ଉତ୍କଳର ସାମାଜିକ, ଶିକ୍ଷାଗତ ଓ ସଂସ୍କୃତିମୂଳକ ବାତାବରଣ ହିଁ ତାଙ୍କଦ୍ୱାରା ପ୍ରବର୍ତ୍ତିତ ନବୀନତା ନିମନ୍ତେ ମୁଖ୍ୟତଃ ଦାୟୀ । ଯେଉଁ ସକଳ ସଂକେତ ବହନ କରି ନୂତନ ଯୁଗ ଗଢ଼ିଉଠିଲା, ସେଗୁଡ଼ିକ ଅନେକାଂଶରେ ମଧ୍ୟଯୁଗର ସାହିତ୍ୟିକ ବିଭାବଠାରୁ ଭିନ୍ନ । ସେହି ସଙ୍କେତମାନଙ୍କ ଭିତ୍ତିରେ ବିଚାର କଲେ, ରାଧାନାଥଙ୍କୁ ମଧ୍ୟଯୁଗୀୟ ମହିମାମୟ ପରିପ୍ରକାଶର ଅନ୍ତିମ ବିଭୂତି ରୂପେ ଗ୍ରହଣ କରିବା ଆଦୌ ସମୀଚୀନ ହେବ ନାହିଁ ।

## ରାଧାନାଥ ଯୁଗର ବିଶେଷତ୍ୱ

(୧) ମଧ୍ୟଯୁଗରେ ସଂସ୍କୃତ ସାହିତ୍ୟ ଯେପରି ଅଖଣ୍ଡ ଆଧିପତ୍ୟ ବିସ୍ତାର କରିଥିଲା, ତାହା ଏ ଯୁଗରେ ଆଉ ରହିଲା ନାହିଁ । ତାହା ସ୍ଥାନରେ ବଙ୍ଗଳା, ହିନ୍ଦୀ ଏବଂ ବିଶେଷ ଭାବରେ, ଇଂରାଜୀ ସାହିତ୍ୟ ଓଡ଼ିଆ କବିମାନଙ୍କ ଲେଖନୀ ଉପରେ ପ୍ରଭାବ ବିସ୍ତାର କଲା ।

(୨) ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ପ୍ରାଚ୍ୟ ଘଟଣାବଳୀ ହିଁ ରୂପାୟିତ ହେଉଥିଲା । ରାଧାନାଥ କିନ୍ତୁ ପ୍ରାଚ୍ୟଭୂମିରେ ପାଶ୍ଚାତ୍ୟ କଥାବସ୍ତୁର ବୀଜବପନ କରି ଏକ ଅପୂର୍ବ ସମନ୍ୱୟ ସଂପାଦନ କରିବାକୁ ଚେଷ୍ଟା କଲେ । ଏବେ ଆମ୍ଭମାନଙ୍କର ସମସାମୟିକ କବି ସମାଜରେ ପାଶ୍ଚାତ୍ୟ ସାହିତ୍ୟରେ ଯେଉଁ ଅଖଣ୍ଡ ପ୍ରଭାବ, ସେ ସବୁର ମୂଳ ରାଧାନାଥଙ୍କର ସମସାମୟିକ ସାହିତ୍ୟରେ ଅନୁସନ୍ଧାନ କରିବାକୁ ପଡ଼ିବ ।

(୩) ଓଡ଼ିଶାର ଶିକ୍ଷାର ଇତିହାସରେ ଊନବିଂଶ ଶତାବ୍ଦୀ ଅସାଧାରଣ ଗୁରୁତ୍ୱପୂର୍ଣ୍ଣ । ବିଶେଷତଃ ଗତ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ

ଇଂରାଜୀ ଶିକ୍ଷାପଦ୍ଧତିର ଯେଉଁଭଳି ପ୍ରୟୋଗ ଓ ପ୍ରସାର ଘଟିଥିଲା, ତାହା ଫଳରେ ଓଡ଼ିଆ ସାହିତ୍ୟର ଭାଷା ପ୍ରୟୋଗ କ୍ଷେତ୍ରରେ ଭୂମୂଳ ପରିବର୍ତ୍ତନ ଘଟିଥିଲା । ନିଜର ବିଦଗ୍ଧତା ଦେଖାଇବାକୁ ହେଉ କିମ୍ବା କୌଣସି ଆଲଙ୍କାରିକ ଚମତ୍କାରିତା ଫୁଟାଇବାକୁ ହେଉ, ଏଭଳି କୌଣସି କାରଣରୁ ମଧ୍ୟଯୁଗୀୟ ସାହିତ୍ୟ ଏକାନ୍ତ କ୍ଳିଷ୍ଟ ହୋଇ ଉଠିଥିଲା । କିନ୍ତୁ ରାଧାନାଥଙ୍କ ସମୟରୁ ସାହିତ୍ୟର ଭାଷା ଅଧିକତର ସାବଲୀଳ, ମାର୍ଜିତ ଏବଂ ସୁଖବୋଧ ହେବାକୁ ଲାଗିଲା ।

(୪) ମଧ୍ୟଯୁଗ ସାହିତ୍ୟ ଯେପରି ସଂଗୀତନିଷ୍ଠ ଥିଲା, ରାଧାନାଥ ଯୁଗର ପଦ୍ୟ ସାହିତ୍ୟ ସେପରି ହେଲା ନାହିଁ । ବରଂ, ରାଗ-ରାଗିଣୀରେ ଗାନ କରାଯାଇ ପାରିବା ଭଳି ଯେଉଁସବୁ ସଙ୍ଗୀତମୟ ରାଗ-ରାଗିଣୀର ପ୍ରୟୋଗ ହେଉଥିଲା, ସେଗୁଡ଼ିକ ସ୍ଥାନରେ ଅଧିକ ସୁଖପାଠ୍ୟ ଛନ୍ଦର ପ୍ରୟୋଗ କରାଗଲା । ବସନ୍ତ ବରାଡ଼ି, ଚନ୍ଦ୍ରାଦେଶାକ୍ଷ ପ୍ରଭୃତି ସ୍ଥାନରେ ବଙ୍ଗଳାଶ୍ରୀ, କଳହଂସକେଦାର ପ୍ରଭୃତି ସୁଖପାଠ୍ୟ ଛନ୍ଦ ଅଧିକରୁ ଅଧିକ ଭାବରେ ପ୍ରଯୁକ୍ତ ହେଲା ।

(୫) ସଂସ୍କୃତ ଅଳଙ୍କାର ଶାସ୍ତ୍ରର ଅଖଣ୍ଡ ପ୍ରଭାବ ଏବଂ ତଜ୍ଜନିତ ଏକାନ୍ତ ଅନୁବର୍ତ୍ତିତା ଆଉ ରହିଲା ନାହିଁ । ତାହା ଫଳରେ କବି ଲେଖନୀ ସ୍ୱଚ୍ଛନ୍ଦ ବା ଅପ୍ରତିବନ୍ଧ ହୋଇ ଆତ୍ମପ୍ରକାଶ କରିବା ନିମନ୍ତେ ଅଧିକ ସମର୍ଥ ହୋଇ ଉଠିଲା ।

(୬) ସାହିତ୍ୟ ରାଜ୍ୟରେ ଧର୍ମର ଅନିବାର୍ଯ୍ୟ ପ୍ରଭାବ ସ୍ୱୀକୃତ ହେଲା ନାହିଁ । ଫଳରେ ଦେବମନ୍ଦିର ତଥା ରାଜଭବନ ଆଉ ସାହିତ୍ୟ ଲକ୍ଷ୍ମୀଙ୍କର ମୁଖ୍ୟ ବିହାରସ୍ଥଳ ହେଲା ନାହିଁ ।

(୭) ଏଥିରୁ କବି ପକ୍ଷରେ ସମାଜଚେତନା ଅଧିକ ଜାଗ୍ରତ ହୋଇ ଉଠିଲା । ସାହିତ୍ୟ ଯେତେବେଳେ ନବର ଏବଂ ମନ୍ଦିର ତ୍ୟାଗ କରି ଜନତାର ରାଜମାର୍ଗରେ ପ୍ରସାରିତ ହେଲା, କବିସମାଜର ଦୃଷ୍ଟି ସମାଜର ବିଭିନ୍ନ ସ୍ତର ଓ କକ୍ଷ ଉପରେ ପଡ଼ିବାକୁ ଲାଗିଲା । ଦୃଷ୍ଟି-ଭଙ୍ଗୀର ଏହି ଆଦର୍ଶ ଇଂରାଜୀ ସାହିତ୍ୟର ଖଣ୍ଡକବିତା, ଉପନ୍ୟାସ ଏବଂ ଗଳ୍ପ ଦ୍ୱାରା ଅଧିକରୁ ଅଧିକ ଗଂଭୀର ହୋଇ ଉଠିଲା । ଏହି କାରଣରୁ ଓଡ଼ିଆ କଥାସାହିତ୍ୟ ଏବଂ ଶହ ଶହ କବିତା ସମାଜର ଅବହେଳିତ ବ୍ୟକ୍ତିଙ୍କୁ କେନ୍ଦ୍ରକରି ତଥା ଅବହେଳିତ ସ୍ଥାନ ବା

ମାନବସମ୍ପର୍କକୁ କେନ୍ଦ୍ରକରି ଗଢ଼ିଉଠିଲା । ଫକୀରମୋହନଙ୍କର 'ଛମାଣ ଆଠଗୁଣ୍ଠ'ଠାରୁ ଗୋପୀନାଥଙ୍କ 'ଅମୃତର ସନ୍ତାନ' ପର୍ଯ୍ୟନ୍ତ ଏହି ଦୃଷ୍ଟିକୋଣର ଏକ ସମ୍ପ୍ରସାରିତ ରୂପାୟନ ।

(୮) ଶିକ୍ଷାର ପ୍ରସାର ସଙ୍ଗେ ସଙ୍ଗେ ଏ କଥା ଅନୁଭୂତ ହେଲା ଯେ ପୁରାଣ, ଜଣାଣ, ଚୌତିଶା, ଚଉପଦୀ, ଛାନ୍ଦ, ବନ୍ଧ, ପ୍ରବନ୍ଧ ଓ ସଙ୍ଗୀତ ଦେଶର ପ୍ରଗତି ଲାଗି ଯଥେଷ୍ଟ ନୁହେଁ । ସେଥିପାଇଁ ସାହିତ୍ୟର ଆକାର (Form) କ୍ଷେତ୍ରରେ କେତେକ ନୂତନତା ଫୁଟିଉଠିଲା । ଗଳ୍ପ, ଉପନ୍ୟାସ, ନାଟକ, ପ୍ରବନ୍ଧ, ଆଲୋଚନା, ନିବନ୍ଧ, ଭ୍ରମଣ ବୃତ୍ତାନ୍ତ, ଶିଶୁସାହିତ୍ୟ ଇତ୍ୟାଦି ଇତ୍ୟାଦିର ପ୍ରକାଶ ଏବଂ ପ୍ରସାର ବଳିଷ୍ଠ ଏବଂ ବ୍ୟାପକ ହୋଇ ଉଠିଲା ।

(୯) ସାହିତ୍ୟର ଆକୃତି ସହିତ ପ୍ରକୃତିର ମଧ୍ୟ ପରିବର୍ତ୍ତନ ହେଲା । ଭଗବାନଙ୍କର ନାମ ଓ ଗୁଣକୀର୍ତ୍ତନଦ୍ୱାରା ମୁକ୍ତିଲାଭ ଆଉ ସାହିତ୍ୟର ଲକ୍ଷ୍ୟ ବୋଲି ଧରାଗଲା ନାହିଁ । ସେହିପରି, କବିର ଆତ୍ମପ୍ରତିଷ୍ଠା ମଧ୍ୟ କାବ୍ୟକୃତିର କାରଣ ରୂପେ ବିବେଚିତ ହେଲା ନାହିଁ । ତାହାର ଆତ୍ମାର ଏକ ଆମୂଳ ପରିବର୍ତ୍ତନ ଧୀରେ ଧୀରେ ପ୍ରକାଶିତ ହେଲା । ସ୍ୱଦେଶପ୍ରୀତି, ଜାତିସ୍ୱଭାବ, ଜାତୀୟ ଏକତା, ଆତ୍ମତ୍ୟାଗ ଇତ୍ୟାଦି ଇତ୍ୟାଦି ଗୁଣାବଳୀର ବିକାଶ ପାଠକମାନଙ୍କଠାରେ କିପରି ସାଧିତ ହେବ, ଏହି ଆଦର୍ଶ କିମ୍ବା ଆଭିମୁଖ୍ୟ ହିଁ ସାହିତ୍ୟର ପ୍ରକୃତିଗତ ବିଶେଷତ୍ୱ ପ୍ରତିପାଦନ କଲା ।

(୧୦) ବିଶେଷରେ, ଆଳଙ୍କାରିକ ପାରଂପରିକତା ବର୍ଜିତ ହେଲା ସିନା, ନୂତନ ଆଲଂକାରିକତା ଅର୍ଜିତ ହେବାରେ ଆପତ୍ତି ରହିଲା ନାହିଁ । ଯୁଗ ଯୁଗ ଧରି ଓଡ଼ିଆ ପଦ୍ୟସାହିତ୍ୟରେ ପ୍ରାନ୍ତଅକ୍ଷରର ମିଳନ ମୂଳକ ଉପଧା ଥିଲା । କିନ୍ତୁ ପ୍ରାନ୍ତ ଅକ୍ଷର ସହିତ ଉପାନ୍ତ ଅକ୍ଷରର ଅନ୍ତର୍ବର୍ତ୍ତୀ ସ୍ୱରବର୍ଣ୍ଣ ସହିତ ଶେଷ ଅକ୍ଷରର ସମତାକୁ ଏକ ବଳିଷ୍ଠ ନିୟମରୂପେ ରାଧାନାଥ ଗ୍ରହଣ କଲେ । ଏହା ଇଂରାଜୀ, ବଙ୍ଗ ସାହିତ୍ୟର ପ୍ରତ୍ୟକ୍ଷ ପ୍ରଭାବ ସୂଚିତ କରେ । ରାଧାନାଥ ଏବଂ ତାଙ୍କର ଅନୁଗାମୀମାନେ ଏହି 'ରାଧାନାଥୀ ଉପଧା'କୁ ବଡ଼ ନିଷ୍ଠାର ସହିତ ପ୍ରୟୋଗ କରୁଥିଲେ । ଚଳିତ ଶତାବ୍ଦୀର ପ୍ରଥମ ପାଦରେ ସତ୍ୟବାଦୀର ସାହିତ୍ୟ ସାଧକମାନେ ଏହା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଏହାକୁ ବର୍ଜନ କରିଥିଲେ ।

ଏହିପରି ଭାବରେ ରାଧାନାଥଙ୍କ ସମୟରୁ ଓଡ଼ିଆ ସାହିତ୍ୟର ଅନୁଭୂତି ଓ ପ୍ରକୃତିଗତ ତଥା ଆତ୍ମିକ ଓ ଆଙ୍ଗିକ ସ୍ୱଭାବଗତ ନାନା ପରିବର୍ତ୍ତନ ସଂଘଟିତ ହେଲା । ଚଳିତ ଶତାବ୍ଦୀର ଦ୍ୱିତୀୟ ଦଶକରେ ସତ୍ୟବାଦୀ ଗୋଷ୍ଠୀ ଏବଂ ତୃତୀୟ ଦଶକରେ ସବୁଜ ଗୋଷ୍ଠୀ ନାନା ଭାବରେ ଓଡ଼ିଆ ସାହିତ୍ୟକୁ ଅତ୍ୟାଧୁନିକତାର ଅଭିମୁଖୀ କରାଇବାକୁ ଅଲକ୍ଷିତରେ, ଏପରି କି ଅଜ୍ଞାତସାରରେ ମଧ୍ୟ ଉଦ୍ୟମ କରିଥିବାର ପ୍ରତିଭାତ ହୁଏ ।

## ଆଧୁନିକତା କାଳଗତ ନୁହେଁ, ଆତ୍ମଗତ—

ଉପର ଆଲୋଚନାରୁ ଆପାତତଃ ଏ କଥା ଜଣାଯାଇପାରେ ଯେ, ଆଧୁନିକତା ହେଉଛି କାଳଗତ, କିନ୍ତୁ ଅନ୍ୟ ସ୍ଥଳରେ ଏ ପ୍ରକାର ଧାରଣାର ସ୍ପଷ୍ଟୀକରଣ କରି ଦିଆଯାଇଛି ମଧ୍ୟ । ଏହି ୧୯୭୧ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ପୁରପଲ୍ଲୀ ଅଞ୍ଚଳରେ ବୁଲି ଆସିଲେ ଅନେକ କବି ଆଖିରେ ପଡ଼ିବେ, ଯେଉଁମାନେ ଦେହରେ ଆମର ସମସାମୟିକ; କିନ୍ତୁ ମନରେ ଭଞ୍ଜଙ୍କର ସମସାମୟିକ । ସୁତରାଂ, ଓଡ଼ିଆ ସାହିତ୍ୟର ଆଧୁନିକତା ଆଦୌ କାଳଗତ ନୁହେଁ, ଏହା ସର୍ବଥା କବିତାର ଆତ୍ମଗତ, ପ୍ରାଣଗତ, ଆଦର୍ଶଗତ ।

## ଆଧୁନିକତାର ମୂଳ ନିର୍ଦ୍ଦେଶ—

ଆଜି ଭାରତରେ ଯେଉଁ ସାମାଜିକ ଜୀବନ ଦେଖାଦେଇଛି, କାଳ ବିଗ୍ରହରେ ତାହାର ମୂଳ ହେଉଛି—ଭାରତରେ ବିଲାତି ଶାସନ ଏବଂ ସ୍ଥାନ ବିଗ୍ରହରେ ତାହାର ମୂଳ ହେଉଛି, ବିଲାତ । ଆଜିର ଶିକ୍ଷାପଦ୍ଧତି, ବେଶଭୂଷା, ଆଦବକାଇଦାଠାରୁ ଆରମ୍ଭ କରି ସାମାଜିକ ଚିନ୍ତା, ଧର୍ମ-ଧାରଣା ଏବଂ ଆଧ୍ୟାତ୍ମିକ ବିଶ୍ୱାସ ପର୍ଯ୍ୟନ୍ତ ସବୁ ଏକ ନୂତନତା ଭିତରେ ଗତି କରୁଛି । ଶହ ଶହ ବର୍ଷ ଧରି ଭାରତରେ ଯେଉଁସବୁ ସାମାଜିକ ରୀତି ନୀତି ପ୍ରଚଳିତ ଥିଲା, ଦୁଇଶହ ବର୍ଷର ବିଲାତି ଶାସନ ମଧ୍ୟରେ ସେ ସବୁ କୁଆଡ଼େ ଅନ୍ତର୍ହିତ ହୋଇଗଲା । ସମାଜ ଭିତରୁ ହିଁ ସାହିତ୍ୟର ସୃଷ୍ଟି । ମାନବ ସମାଜ ହିଁ ସାହିତ୍ୟକୁ ପ୍ରାଣପ୍ରାଚୁର୍ଯ୍ୟ ଯୋଗାଇଦିଏ । ସୁତରାଂ, ଭାରତରେ ବିଦେଶୀ ଶାସନ କେବଳ ଯେ ବହୁବିଧ ସାମାଜିକ ପରିବର୍ତ୍ତନ ଆଣିଦେଲା, ତାହା ନୁହେଁ; ତହିଁ ସଙ୍ଗେ ସଙ୍ଗେ ଭୂମୂଳ ଭାବଗତ ଓ

ଚିନ୍ତାତ୍ମକ ପରିବର୍ତ୍ତନ ମଧ୍ୟ ସଂଗଠିତ କଲା । ଏହି ପରିପ୍ରେକ୍ଷୀରେ ସମସ୍ତ ଆଧୁନିକ ଭାରତୀୟ ଭାଷା ଏକ ନୂତନ ରୂପ ଲାଭକଲା । ନୂତନ ସାହିତ୍ୟର ସୃଷ୍ଟି ସଙ୍ଗେ ସଙ୍ଗେ ସାମାଜିକ ଅଗ୍ରଗତି ମଧ୍ୟ ଦ୍ରୁତରୁ ଦ୍ରୁତତର ହେବାକୁ ଲାଗିଲା । ଏହା ଏକ ସାଧାରଣ ସତ୍ୟ ଯେ, ସାମାଜିକ ପରିବର୍ତ୍ତନ ଘଟିଲେ ସାହିତ୍ୟିକ ପରିବର୍ତ୍ତନ ଅନିବାର୍ଯ୍ୟ ହୋଇଉଠେ । ପୁଣି ସାହିତ୍ୟ ଯେତେବେଳେ ବଳିଷ୍ଠ ଭାବରେ ଆତ୍ମପ୍ରକାଶ କରେ, ସମାଜର ଗତିଶୀଳତା ଅଧିକରୁ ଅଧିକତର ହୁଏ । ଓଡ଼ିଶାରେ ରାଧାନାଥ, ଫକୀରମୋହନ, ମଧୁସୂଦନ ପ୍ରଭୃତି ସାହିତ୍ୟରଥୀମାନେ ପରିବର୍ତ୍ତିତ ବାତାବରଣର ସଙ୍କେତ ଦେଇ ଉତ୍କଳର ସାରସ୍ୱତକୁଞ୍ଜରେ ନୂତନ ମୁରଲୀ ଧ୍ୱନି ଶୁଣାଇଥିଲେ ।

ପଦେ କଥାରେ କହିଲେ, ଆଧୁନିକତା କେବଳ ଓଡ଼ିଶାରେ ନୁହେଁ, କିମ୍ବା ଭାରତରେ ନୁହେଁ; ପୃଥିବୀରେ ସର୍ବତ୍ର ପ୍ରକାଶ ପାଇଛି । ଓଡ଼ିଶାରେ ଯେଉଁମାନେ ଆଧୁନିକତାର ବାର୍ତ୍ତାବହ, ସେମାନଙ୍କର ପୁରଣ-ଭୂମି ହେଉଛି, ଆଧୁନିକ ଇଂରାଜୀ ସାହିତ୍ୟ । ଇଂରାଜୀ ସାହିତ୍ୟର ପ୍ରତିଫଳନ ଓଡ଼ିଶା ଅପେକ୍ଷା ବଙ୍ଗଦେଶରେ ଅଧିକତର । କଲିକତା ମହାନଗରୀ ନାନା ସୂତ୍ରରେ ବିଲାତ ସଙ୍ଗେ ନିବିଡ଼ ଭାବେ ସଂପୃକ୍ତ ଥିଲା । ସେଥିପାଇଁ ଆଧୁନିକତାର ମୃଦୁ ମନ୍ଦ ହିଲ୍ଲୋଳ ଅତି ସହଜରେ ପ୍ରକାଶ ପାଉଥିଲା ବଙ୍ଗଭୂମିରେ । ସୁତରାଂ, ବଙ୍ଗଳା ସାହିତ୍ୟର ଆଧୁନିକତା ଓଡ଼ିଶାର ତରୁଣ ଲେଖକମାନଙ୍କୁ ପଦେ ପଦେ ପ୍ରୋତ୍ସାହ ଦେଉଥିଲା । ଓଡ଼ିଶାରେ ଆଧୁନିକତାର ବାର୍ତ୍ତାବହମାନେ ଇଂରାଜୀରେ ମଧ୍ୟ ଉଚ୍ଚଶିକ୍ଷିତ । ସୁତରାଂ, ପ୍ରତ୍ୟକ୍ଷ ଭାବରେ ସେମାନେ ଇଂରାଜୀ ସାହିତ୍ୟରୁ ପ୍ରେରଣା ପାଇବାକୁ ଚେଷ୍ଟା କରିଥିବା ମଧ୍ୟ ସହଜରେ ଅନୁମେୟ ।

ଗତ ଦଶୃଶ ବର୍ଷ ମଧ୍ୟରେ ପାଶ୍ଚାତ୍ୟ ଜଗତ ଘୋରତର ସାମାଜିକ ଓ ଚିନ୍ତାତ୍ମକ ପରିବର୍ତ୍ତନ ଦେଇ ଗତି କରିଛି । ଇଉରୋପରେ ଯାନ୍ତ୍ରିକ ବିପ୍ଳବ ସମୟରୁ ଯେଉଁ ସାମାଜିକ ପରିବର୍ତ୍ତନର ସୂତ୍ରପାତ ହୋଇଥିଲା, ତାହା ପରବର୍ତ୍ତୀ କାଳରେ ବିବିଧ ବୈଜ୍ଞାନିକ ଆବିଷ୍କୃତି ଦ୍ୱାରା ଶତଗୁଣିତ ହୋଇ ଯାଇଥିଲା । ମନସ୍ତତ୍ତ୍ୱ ରାଜ୍ୟରେ ଫ୍ରଏଡ୍, ଦର୍ଶନ ରାଜ୍ୟରେ ହିଗଲ୍, ସମାଜତତ୍ତ୍ୱ କ୍ଷେତ୍ରରେ ମାର୍କସ୍, ପଦାର୍ଥତତ୍ତ୍ୱ କ୍ଷେତ୍ରରେ ଆଇନ୍‌ଷ୍ଟାଇନ୍ ଓ ଅନ୍ୟ ଅନେକ ବୈଜ୍ଞାନିକ ଗବେଷଣାଦ୍ୱାରା ବହୁ

ନୂତନ ଚିନ୍ତାଧାରରେ ବିଶ୍ୱମାନବଙ୍କୁ ପରିପ୍ଲୁତ କରିଗଲେ । ଫଳରେ କେବଳ ଯେ ଗତାନୁଗତିକତା ପ୍ରତି ଆଜିର ମାନବ ବିତୃଷ୍ଣ ହୋଇଉଠିଲା, ତାହା ନୁହେଁ; ତହିଁ ସଙ୍ଗେ ସଙ୍ଗେ କୌଣସି କଥା ମାମୁଲି ଭାବରେ ସେ ଗ୍ରହଣ କରିବାକୁ ପ୍ରସ୍ତୁତ ହେଲା ନାହିଁ । ସାମାଜିକ ଅନୁଷ୍ଠାନମାନଙ୍କର ଯାହା ମୂଲ୍ୟ ବା ମହତ୍ତ୍ୱ ଥିଲା, ତାହା ମଧ୍ୟ ପରିବର୍ତ୍ତିତ ହୋଇଗଲା । ପାରଂପରିକ ମୂଲ୍ୟବୋଧ ଧୀରେ ଧୀରେ ନିର୍ବାସିତ ହେବା ସଙ୍ଗେ ସଙ୍ଗେ ବୈଜ୍ଞାନିକର ଦୃଷ୍ଟିଭଙ୍ଗୀ ନେଇ ମାନବ ପ୍ରତି କଥାରେ ପ୍ରଶ୍ନ କରିବାକୁ ଲାଗିଲା ।

ବିଜ୍ଞାନର ସମୁନ୍ନତି ଘଟିଲେ କଳାର ଉନ୍ନତି ବାଧାପ୍ରାପ୍ତ ହୁଏ । କାରଣ କଳା ଭାବନିଷ୍ଠ, ଭାବାତ୍ମକ ଓ ଭାବପ୍ରବଣ ; କିନ୍ତୁ ବିଜ୍ଞାନ ହେଉଛି ବିଶ୍ଳେଷଣପନ୍ଥୀ । କଳାକାରର ଦୃଷ୍ଟି ବିକଚ ଶତଦଳ ଉପରେ ନିପତିତ ହେଲେ ସେ ଆନନ୍ଦରେ ଆତ୍ମହରା ହୁଏ, ନାରୀର ମୁଖମଣ୍ଡଳ ସଙ୍ଗେ ତାହାକୁ ତୁଳନା କରେ ; କିନ୍ତୁ ବୈଜ୍ଞାନିକ ଫୁଲର ପାଦାର୍ଥିକ ଉପାଦାନ ବିଶ୍ଳେଷଣ କରିବାକୁ ହିଁ ବ୍ୟଗ୍ର ହୋଇଉଠେ । କଳା ଓ ବିଜ୍ଞାନର ଦୃଷ୍ଟିକୋଣରେ ସେଥିପାଇଁ ସମରୂପତା ଦେଖାଯାଏ ନାହିଁ । ସେହିପରି ମନସ୍ତତ୍ତ୍ୱରେ ଅବଚେତନ ଓ ଅଚେତନ ମନର ଆବିଷ୍କୃତି ଭାବନାର ଦିଗ୍‌ବଳୟକୁ ସମ୍ପ୍ରସାରିତ କରିଦେଲା । ଆଇନ୍‌ଷ୍ଟାଇନ୍‌ଙ୍କର Relativity ମତବାଦ, ୧୮୭୫ ଖ୍ରୀଷ୍ଟାବ୍ଦରେ Theosophical Society ପ୍ରତିଷ୍ଠା ପାଶ୍ଚାତ୍ୟ ଜଗତରେ ବୌଦ୍ଧ ତାନ୍ତ୍ରିକତାର ଅଧ୍ୟୟନ ଏବଂ ସର୍ବୋପରି, ବିଭିନ୍ନ କ୍ଷେତ୍ରରେ ବୈଜ୍ଞାନିକ ଚିନ୍ତାଧାରାର କ୍ଷିପ୍ରଗତିକର ଅଗ୍ରଗତି । ଏହିସବୁ ଦ୍ୱାରା ଆଜିର ମାନବ ଏକାବେଳକେ ଅନୁକଂପିତ ହୋଇ ଉଠିଲା । ସେଥିପାଇଁ ବିଲାତରେ ଏବଂ ଇଉରୋପର ଅନେକ ସାହିତ୍ୟରେ ନାନା ସ୍ତର ଦେଇ ଆଧୁନିକ ସାହିତ୍ୟ ବିକଶିତ ହେଲା । କେତେବେଳେ ରୂପକବାଦ, କେତେବେଳେ ପ୍ରତୀକରୂପବାଦ ବା ଅବଚ୍ଛ-କଳ୍ପବାଦ । ସାହିତ୍ୟିକ ବିବର୍ତ୍ତନର ଗୋଟିଏ ଗୋଟିଏ ଉନ୍ମେଷ ରୂପେ ଆତ୍ମପ୍ରକାଶ କଲା । ୧୯୩୨ରେ ପ୍ରକାଶିତ କବିତା ସଂଗ୍ରହ New Signatures ନବୀନତାର ସନ୍ଦେଶ ବହନ କରି ଆତ୍ମପ୍ରକାଶ କଲା । ନବୀନତା ଏକ ବ୍ୟାପକ ଓ ବୃହତ୍ତର ପ୍ରକାଶ ଶକ୍ତିର ନାମାନ୍ତର । ବର୍ଷାକାଳରେ ବ୍ୟାପକ ଅଞ୍ଚଳରେ ପ୍ରବଳ ବୃଷ୍ଟିପାତ ହେଲେ ସ୍ରୋତ ବଢ଼ି ଅସଂଖ୍ୟ ନର୍ଦ୍ଦମାର ତହିଁରୁ ସୃଷ୍ଟି ହୋଇଯାଏ । ରାଜନୈତିକ, ସାମାଜିକ,

ଜଡ଼ବୈଜ୍ଞାନିକ, ଦାର୍ଶନିକ, ମନସ୍ତାତ୍ତ୍ୱିକ ଓ ଧର୍ମନୈତିକ—ସମସ୍ତ କ୍ଷେତ୍ରରେ ଯେଉଁ ବିପୁଳ ଆଲୋଡ଼ନ ସୃଷ୍ଟି ହେଲା, ତାହାର ପରିଣତିରେ ନାନା ଭାବ, ଭଙ୍ଗୀ, ରୂପ ଓ ମାଧ୍ୟମ ଦେଇ ତାହାର ଆତ୍ମପ୍ରକାଶ ସାଧିତ ହେଲା । ଆଧୁନିକ ସାହିତ୍ୟ ପୃଷ୍ଠଦେଶରେ ଗତ ପ୍ରାୟ ଏକ ଶତାବ୍ଦୀର ଏବଂ ବିଶେଷ କରି ଅର୍ଦ୍ଧଶତାବ୍ଦୀର ଯେଉଁ ବୌଦ୍ଧିକ ବିକାଶ ଲୁକ୍କାୟିତ ରହିଛି, ତାକୁ ନ ବୁଝିଲେ ଆଧୁନିକ ସାହିତ୍ୟ ବୁଝି ହେବନାହିଁ ।

## ଆଧୁନିକତା ଅନିବାର୍ଯ୍ୟ କି ?

/ଏବେ ମଧ୍ୟ ଅନେକ ଲେଖକ ଓ ପାଠକ ଆମ ଦେଶରେ ଅଛନ୍ତି, ଯେଉଁମାନେ ଓଡ଼ିଶାର ଉପବନରେ ନବୋଦ୍‌ଗତ ସାହିତ୍ୟ ଅଙ୍କୁରମାନଙ୍କୁ ବିଷଦୃଷ୍ଟିରେ ଦେଖୁଅଛନ୍ତି । ଏକ ପକ୍ଷରେ ପ୍ରାଚୀନ ସାହିତ୍ୟ ପ୍ରତି ସେମାନଙ୍କର ଆନୁଗତ୍ୟ ସେମାନଙ୍କର ଏ ପ୍ରକାର ଦୃଷ୍ଟିକୋଣର ପ୍ରଧାନ କାରଣ । ହୁଏ ତ ସେମାନେ ଯେଉଁ ଶିକ୍ଷା ଦୀକ୍ଷା ଲାଭ କରିଅଛନ୍ତି, ତହିଁରେ ପ୍ରାଚୀନ ସାହିତ୍ୟ ପ୍ରତି ଅନୁରାଗ ଜନ୍ମାଇବାର ଉପାଦାନ ପ୍ରଚୁର ପରିମାଣରେ ଥିଲା । କିମ୍ବା ଆଧୁନିକ ସାହିତ୍ୟ ଯେଉଁ ପରିପ୍ରେକ୍ଷୀରେ ଏବଂ ଯାହା ଉପରେ ଗଢ଼ିଉଠିଛି, ତାହା ଉତ୍ତମରୂପେ ଅଧ୍ୟୟନ କରିବାଲାଗି ସେମାନେ ଅବକାଶ କିମ୍ବା ସୁଯୋଗ ଲାଭ କରିନାହାଁନ୍ତି । ସେଥିପାଇଁ ଆଜି ସ୍ଥାନେ ସ୍ଥାନେ ପ୍ରାଚୀନତାର ଓ ନବୀନତାର ଭିତ୍ତି ଉପରେ ମତାନ୍ତର. ଆରମ୍ଭ ହୋଇ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ, ବ୍ୟକ୍ତି-ଗୋଷ୍ଠୀ ମଧ୍ୟରେ ଏବଂ ଗୋଷ୍ଠୀ-ଗୋଷ୍ଠୀ ମଧ୍ୟରେ ମନାନ୍ତର ମଧ୍ୟ ସୃଷ୍ଟି କରୁଛି । ଏହା ସାହିତ୍ୟର ପ୍ରଗତି ପକ୍ଷରେ ଏକାବେଳକେ ଅହିତକର ।

ଯେଉଁମାନେ ପ୍ରାଚୀନତାର ଦୋହାଇ ଦେଇ ଆଧୁନିକତାର ନିରୋଧ ବା ବିରୋଧ କରୁଅଛନ୍ତି, ସେମାନଙ୍କ ମତରେ ଆଧୁନିକତା ଅନିବାର୍ଯ୍ୟ ନୁହେଁ । କେବଳ କୌଣସି ଆଦର୍ଶ ନ ପାଇ, ବାଟବଣା ହୋଇ ଲେଖକ-ମାନେ ଅତୀତ ସଙ୍ଗେ ପରିଚିତ ହୋଇପାରୁ ନ ଥିବାରୁ କ'ଣ ଗୁଡ଼ାଏ ଲେଖି ଯାଉଛନ୍ତି, କିନ୍ତୁ ଏହା ଯୁକ୍ତିଯୁକ୍ତ ନୁହେ । ପ୍ରାଚୀନ ସାହିତ୍ୟର ପରିପୋଷକମାନେ ଭଞ୍ଜଯୁଗ ସାହିତ୍ୟ ଯଦି ଅଧ୍ୟୟନ କରନ୍ତି, ତେବେ ଆଧୁନିକତା ଅନିବାର୍ଯ୍ୟ କି ନୁହେଁ, ଏ ପ୍ରଶ୍ନର ଉତ୍ତର ବଳେ ବଳେ ସେ ପାଇଯିବେ ।

ମଧ୍ୟଯୁଗ ଓଡ଼ିଆ ସାହିତ୍ୟର ପ୍ରଚଣ୍ଡ ମାର୍ତ୍ତଣ୍ଡ ଉପେନ୍ଦ୍ରଭଞ୍ଜ ବହୁସ୍ଥଳରେ ଅନେକ ନୂତନ କଥା ଲେଖି ଯାଇଛନ୍ତି । ଲତା ପରି ସାହିତ୍ୟ ବିକାଶଶୀଳ । ବାୟୁପ୍ରବାହ ପରି ସେ ପ୍ରବହମାନ । ଯଦି ନିଷ୍ପନ୍ଦତା ଭିତରେ ଆତ୍ମପ୍ରକାଶ କରେ ସ୍ଥବିରତା ଅନିବାର୍ଯ୍ୟ ହୋଇ ଉଠିବ । ସୁତରାଂ ପୃଥିବୀର ସବୁ ଦେଶରେ ଯୁଗେ ଯୁଗେ ସାହିତ୍ୟର ଗତି ନବୀନ ମାର୍ଗରେ ନିୟନ୍ତ୍ରିତ ହୋଇଥିବାର ଦେଖାଯାଏ । ନୂତନତା କେବଳ ପୁରାତନଠାରୁ ଭିନ୍ନ ବୋଲି ନିନ୍ଦିତ ହେବା ଘୋର ନିନ୍ଦନୀୟ । ଆଜି ଯେଉଁମାନେ ମଧ୍ୟଯୁଗ ଓଡ଼ିଆ ସାହିତ୍ୟର ପକ୍ଷ ସମର୍ଥନ କରୁଛନ୍ତି, ସେମାନେ ଭାବି ଦେଖନ୍ତୁ, ସେମାନେ ଆଉ ଭଞ୍ଜଯୁଗର ସାମାଜିକ ପରିପାର୍ଶ୍ୱ ମଧ୍ୟରେ ନାହାଁନ୍ତି ।

ସେ ଯୁଗର ଘରଦ୍ୱାର, ଯାନବାହନ, ଘରକରଣା ଜିନିଷ, ବେଶଭୂଷା, ଗହଣାଗାଣ୍ଠି ଆଉ ସେପରି ନାହିଁ । ମଧ୍ୟଯୁଗର ନାୟିକା-ମାନେ ଆପାଦମସ୍ତକ ଅନେକ ଅଳଙ୍କାର ଲଗାଉଥିବାର ବର୍ଣ୍ଣନା ଅଛି, କିନ୍ତୁ ସେ ଭିତରୁ ଅନେକ ଅଳଙ୍କାର ଚିହ୍ନି ବାହାର କରିବା ଆଜି ଆମ୍ଭମାନଙ୍କ ପକ୍ଷରେ କାଠିକର ପାଠ । ଖାଦ୍ୟପେୟ ଏବଂ କେତେକ ସାଧାରଣ ଆସ୍ବାବ ଆଜି ବଦଳି ଗଲାଣି । ଯେଉଁସବୁ ମୂଳ ଗ୍ରନ୍ଥ ପଢ଼ିଲେ ପ୍ରାଚୀନ ସାହିତ୍ୟ ବୁଝି ହେଉଥିଲା, ଆଜି ସେସବୁ ସାଧାରଣଙ୍କର ପାଠ୍ୟ-ତାଲିକାରେ ନାହିଁ । ଯେଉଁ ରାଜାମାନେ ସାହିତ୍ୟିକ ବିଳାସର କେନ୍ଦ୍ରସ୍ଥଳ ଥିଲେ, ସେମାନେ ଆଜି ଚାଲିଗଲେଣି । ସୁତରାଂ ସେଭଳି ସାମାଜିକ ପରିସ୍ଥିତିରେ ଯେଉଁଭଳି ସାହିତ୍ୟ ଗଢ଼ି ଉଠୁଥିଲା, ତାହା ପାଇଁ ଆଜି ଆଉ ସ୍ଥାନ ନାହିଁ କହିଲେ ଚଳେ । ଏହାର ଅର୍ଥ ନୁହେଁ ଯେ, ସେସବୁକୁ ଚର୍ଚ୍ଚା କରିବା ଉଚିତ ନୁହେଁ । ଏହାର ଆଦୌ ଅର୍ଥ ନୁହେଁ ଯେ, ଓଡ଼ିଆ ସଂସ୍କୃତିର ଇତିହାସରେ କିମ୍ବା ଓଡ଼ିଆ ସାହିତ୍ୟର ଇତି-ହାସରେ ସେସବୁର ଗୌରବୋଜ୍ଜ୍ୱଳ ସ୍ଥାନ ନାହିଁ । ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର, ପୁରୀ ଜଗନ୍ନାଥ ମନ୍ଦିର, କୋଣାର୍କ ମନ୍ଦିର, ମୟୂରଭଞ୍ଜର ଖିଚିଙ୍ଗ୍ ମନ୍ଦିର କେବଳ ଓଡ଼ିଶାର ନୁହେଁ, ସମଗ୍ର ଭାରତୀୟ ସ୍ଥାପତ୍ୟକଳାର ତଥା ଶିଳା-ଶିଳ୍ପର ଗୋଟିଏ ଗୋଟିଏ ଅକ୍ଷୟକୀର୍ତ୍ତି । କିନ୍ତୁ ଆଜି ଆମର ହୀରାକୁଦ ବନ୍ଧ ଦରକାର, ରାଉରକେଲାର ଲୁହା କାରଖାନା ଦରକାର ଏବଂ ଡୁଡ଼ୁମା ଓ ବାଲିମେଲାର ବିଦ୍ୟୁତ୍‌କେନ୍ଦ୍ର ଦରକାର । ଏଗୁଡ଼ିକ ଆଧୁନିକ ସମାଜର ଗୃହଦାରୁ ହିଁ ଅଦ୍ଭୁତ । ଯେଉଁଭଳି ପରିସ୍ଥିତିରେ

ଏଭଳି ଅନୁଷ୍ଠାନମାନ ଗଢ଼ିଉଠେ, ସେଭଳି ପରିସ୍ଥିତି ଇଉରୋପରେ ବହୁ ଆଗରୁ ହୋଇଗଲାଣି ।

ସାଂସ୍କୃତିକ ସଂସ୍ରବ ଫଳରେ ଭାରତବର୍ଷ ବୈଷୟିକ ଜଗତରେ ଇଉରୋପଠାରୁ ଯେଉଁ ଆଲୋକ, ଉଦ୍ଦୀପନା ଓ ଆତ୍ମମୁଖ୍ୟ ଲାଭ କରିଥିଲା, ତାହା ଫଳରେ ଭାରତର ବିଭିନ୍ନ ପ୍ରଦେଶରେ ଏଭଳି ଅନେକ ନବ୍ୟ ଅନୁଷ୍ଠାନ ଗଢ଼ି ଉଠିଲାଣି । ଦୈନନ୍ଦିନ ଜୀବନର ବ୍ୟକ୍ତିଗତ ଗୃହବିବାଦଠାରୁ ଆରମ୍ଭ କରି ଜାତିର ସାମୂହିକ ଆବଶ୍ୟକତା ପୂରଣରେ ବିଜ୍ଞାନ ପ୍ରତିଷ୍ଠିତ । ଏହିସବୁ ବଡ଼ ବଡ଼ କାର୍ଯ୍ୟ କିଭଳି ଉପାଦେୟ, ତାହା ବୁଝାଇ ଦେବା ଦରକାର ନାହିଁ । ଏପରି କି ମଧ୍ୟଯୁଗର ଓଡ଼ିଆ ଭାଷା ମଧ୍ୟ ଆଜି ପରିବର୍ତ୍ତିତ ହେବା ଉପରେ । ପିତା, ଗୁରୁ, ସମ୍ମାନାସ୍ପଦ ବ୍ୟକ୍ତି—ଏମାନଙ୍କୁ ସମ୍ମାନ ଦେଖାଇବାକୁ ଅନୁରୂପ ଭାଷା ପ୍ରୟୋଗର ବିଧି ଥିଲା—'ଶିକ୍ଷକ ଆସିଛନ୍ତି', 'ବାପା କହୁଛନ୍ତି' 'ଜିଲ୍ଲାପାଳ ଆସିଥିଲେ' । ଏହି ବାକ୍ୟଗୁଡ଼ିକରୁ ଜଣାଯାଏ, କ୍ରିୟାପଦଗୁଡ଼ିକ ସମ୍ମାନ-ସୂଚକ । କିନ୍ତୁ ବର୍ତ୍ତମାନ ଗୋଟିଏ ବହିର ନାମ ହେଲା 'ବାଣଭଟ୍ଟର ଆତ୍ମକଥା' । ମଧ୍ୟଯୁଗର ଭାଷା ହୋଇଥିଲେ 'ବାଣଭଟ୍ଟଙ୍କ ଆତ୍ମକଥା' ହୋଇଥାଆନ୍ତା । ଏଥିରୁ ଶିକ୍ଷା କରି ଅଶିକ୍ଷିତ ଅଳ୍ପଶିକ୍ଷିତ ଏପରି କି ବିଶିଷ୍ଟ ଶିକ୍ଷାନୁଷ୍ଠାନର କିନ୍ନସ୍ତରୀୟ ଲୋକେ 'ବାପା ଆସିଛି', 'ଆମ କ୍ଲାସ ଶିକ୍ଷକ କହୁଥିଲା', 'ଜିଲ୍ଲାପାଳ ଆସିଥିଲା' ଏଭଳି ଭାବରେ କହିବାକୁ ଆରମ୍ଭ କଲେଣି । ଏଭଳି ଗଣ୍ଡି ଗଣ୍ଡି ଶବ୍ଦ ଆଜି ଆମେ ଖାଣ୍ଟି ଓଡ଼ିଆ ପରି ବ୍ୟବହାର କରୁଛୁ, ଯାହା ଶୁଣିଲେ ଜଗନ୍ନାଥ ଦାସ, ଉପେନ୍ଦ୍ର ଭଞ୍ଜ ଓ ଧାନକୃଷ୍ଣ ଦାସ ତାଟକା ହୋଇଯାଇ ଥାଆନ୍ତେ । ରେଲ, ମଟର, ସାଇକେଲ, ରେଡ଼ିଓ, ଟର୍ଚ୍ଚ-ଲାଇଟ୍, ସ୍କୁଲ୍, କଲେଜ, ଷ୍ଟେସନ ପ୍ରଭୃତି ଶବ୍ଦ ଆଜି ଏକାବେଳକେ ଓଡ଼ିଆ ହୋଇଗଲାଣି । ସେ କାଳର ବ୍ୟାକରଣ ତୁଳନାରେ ଅନେକ ପରିବର୍ତ୍ତନ ଘଟିଯାଇଛି । ଭାବି ଦେଖିବାର କଥା, ସମାଜରେ ଏତେଗୁଡ଼ିଏ ପରିବର୍ତ୍ତନ ହେବା ପରେ ସାହିତ୍ୟର ପରିବର୍ତ୍ତନ ନ ହେବ କିପରି ? କଥାରେ ଅଛି—'ତୁଣ୍ଡ ବାଇଦ ସହସ୍ର କୋଶ ।' ଭାଷା କ୍ଷିପ୍ରତର ଭାବରେ ଗତି କରିଥାଏ । ଭାଷା ଉପରେ ସାହିତ୍ୟ ପ୍ରତିଷ୍ଠିତ । ଭାଷା ହିଁ ତା'ର ବାହନ । ସୁତରାଂ ଆଜି ପରିବର୍ତ୍ତିତ ଅବସ୍ଥାରେ ସାହିତ୍ୟର ସ୍ୱରୂପ ପ୍ରଭୃତି ଓ ଗତିପଥ ଯଦି ପରିବର୍ତ୍ତିତ ହୁଏ, ତାହା ଇତିହାସର ଏକ ସ୍ୱାଭାବିକ ପରିଣତି ବୋଲି ଧରିବାକୁ ହେବ ।

## ଆଧୁନିକ ସାହିତ୍ୟର ବହୁରୂପତା—

ଆଧୁନିକ ସାହିତ୍ୟରେ ପଦ୍ୟ ଅପେକ୍ଷା ଗଦ୍ୟର ପ୍ରାଧାନ୍ୟ, ଭାବ ଅପେକ୍ଷା ଚିନ୍ତାର ପ୍ରାଧାନ୍ୟ, କଳ୍ପନା ଅପେକ୍ଷା ବାସ୍ତବତାର ପ୍ରାଧାନ୍ୟ ଦେଖାଯାଏ । ପଦ୍ୟ ଯୁଗ ଯୁଗ ଧରି ଭାବପ୍ରକାଶର ମାଧ୍ୟମ ଥିଲା । ପୃଥିବୀର ସବୁ ଦେଶର ସାହିତ୍ୟ ପ୍ରାଥମିକ ଅବସ୍ଥାରେ ପଦ୍ୟମୟ ଥିଲା ; କିନ୍ତୁ ତାହାର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଗଦ୍ୟର ପ୍ରାଧାନ୍ୟ ବଢ଼ିଯାଇଛି । ସଂସ୍କୃତରେ ଗଦ୍ୟର ଅର୍ଥ ହେଉଛି—ବ୍ୟକ୍ତ ବଚନ—ଭାବମାନଙ୍କୁ ପୂର୍ଣ୍ଣାଙ୍ଗ ଭାଷା ସାହାଯ୍ୟରେ ପରିପୂର୍ଣ୍ଣ ରୂପରେ ପ୍ରକାଶ କରିବା । ଯେତେ-ବେଳେ ସଂସ୍କୃତ ପଦ୍ୟସାହିତ୍ୟର ଉନ୍ମାଦ ଯୌବନ ସେତିକବେଳେ ସେ କାଳର ସାହିତ୍ୟ ସମାଲୋଚକ କହିଥିଲେ—

"ଗଦ୍ୟଂ କବିନାଂ ନିକଷଂ ବଦନ୍ତି ।"

ଜଣେ ଲେଖକର ପ୍ରକୃତ ଶକ୍ତି ପରୀକ୍ଷା ପଦ୍ୟରେ ନୁହେ, ଗଦ୍ୟରେ ହିଁ କରାଯିବା ଉଚିତ । ଏଭଳି ଏକ ମନ୍ତବ୍ୟରୁ ଜଣାଯାଏ, ଇଂରାଜୀ ସାହିତ୍ୟ ଜନ୍ମ ହେବା ବହୁ ପୂର୍ବରୁ ଭାରତରେ ଗଦ୍ୟକୁ ଉଚ୍ଚସ୍ଥାନ ଦିଆ-ଯାଇଛି ; କିନ୍ତୁ କେତେକ ବିଶିଷ୍ଟ କାରଣରୁ ଗଦ୍ୟ ଅପେକ୍ଷା ପଦ୍ୟ ହିଁ ସାହିତ୍ୟର ଅଧିକତର ଉପାଦେୟ ମାଧ୍ୟମରୂପେ ବ୍ୟବହୃତ ହୋଇ ଆସିଛି ।

ପଦ୍ୟ କଥା କହିଲାବେଳେ ବୃତ୍ତ ବା ଛନ୍ଦର ପ୍ରଶ୍ନ ଉଠେ । ଯେତେବେଳେ ମୁଦ୍ରାଯନ୍ତ୍ର ନ ଥିଲା ଏବଂ ସାହିତ୍ୟ ପରିବେଷଣ ଲାଗି କଣ୍ଠ ଉପରେ ଅଧିକ ନିର୍ଭର କରିବାକୁ ପଡ଼ୁଥିଲା, ସେତେବେଳେ ଛନ୍ଦ ବା ରାଗମୟତାର ଉପାଦେୟତା ଉପଲବ୍ଧ ହେଉଥିଲା । ଏହା ଏକ ବିଶ୍ୱ-ଜନୀନ ଅନୁଭୂତି ଯେ, ଗଦ୍ୟ ଅପେକ୍ଷା ପଦ୍ୟର ପଂକ୍ତି ସହଜରେ ମନେ ରଖି ହୁଏ ଏବଂ ଆବଶ୍ୟକ ବେଳେ ବ୍ୟବହାର କରିହୁଏ ; କିନ୍ତୁ ବର୍ତ୍ତମାନ ଯୁଗରେ ଆଉ ସେ ପ୍ରଶ୍ନ ନାହିଁ । ସେତେବେଳର ସମାଜରେ ଲୋକଙ୍କର ପ୍ରଚୁର ସମୟ ଥିଲା, ଦୀର୍ଘ ସମୟ ଧରି ରାଗରାଗିଣୀରେ କବିତା ଗାନ କରୁଥିଲେ । ରଚନାର ପରିମାଣ ମଧ୍ୟ ଅପେକ୍ଷାକୃତ ଅଳ୍ପ ଥିଲା । ବର୍ତ୍ତମାନ ଯୁଗରେ ରଚନାର ପରିମାଣ, କର୍ମଜଞ୍ଜାଳ ହେତୁକ ଅବକାଶର ଅଭାବ ଏବଂ ମୁଦ୍ରାଯନ୍ତ୍ରର ବହୁଳ ପ୍ରସାର ପ୍ରଭୃତି କାରଣରୁ ଆଉ ଗାନ କରିବା

ଆବଶ୍ୟକ ହେଉ ନାହିଁ । ସେଥିପାଇଁ ବାକ୍‌ଛନ୍ଦର ଆବିର୍ଭାବ । ପ୍ରଥମେ ଓଡ଼ିଆରେ ଯେତେବେଳେ ଛନ୍ଦହୀନ କବିତା ରଚିତ ହେଲା, ତାକୁ ହନୁକରଣ କାବ୍ୟକବିତା (ଗଦ୍ୟକବିତା ବଦଳରେ) ପ୍ରଭୃତି ନାମରେ ବିଦ୍ରୂପ କରାଯାଉଥିଲା । ସେତେବେଳେ ଯେଉଁମାନେ ପାଶ୍ଚାତ୍ୟ ସାହିତ୍ୟର ସିଧାସଳଖ ହେଉ ବା ବଙ୍ଗ ସାହିତ୍ୟ ଭାବେ ସଙ୍କେତ ଲାଭ କରି ଓଡ଼ିଆରେ ଏ ପ୍ରକାର କବିତା ଲେଖୁଥିଲେ, ସେମାନେ ନିଜେ ହୁଏତ ବୈଜ୍ଞାନିକ ଭାବରେ ସେଭଳି କବିତାର ତତ୍ତ୍ୱ ଭଲକରି ଜାଣୁ ନ ଥିଲେ କିମ୍ବା ବୁଝାଇପାରୁ ନ ଥିଲେ ; କିନ୍ତୁ ଜୁଆର ପରି ସେହି ଧାରା ମାଡ଼ି ଆସିଲା । ଯୁଗ ପ୍ରଭାବକୁ ଏଡ଼ିବାର ଶକ୍ତି ମାନବର ନାହିଁ । ରକ୍ଷଣଶୀଳ କୌଣସି କୌଣସି ବ୍ୟକ୍ତି ପ୍ରାୟ ୩୦।୪୦ ବର୍ଷ ତଳେ ପଲ୍ଲୀଗ୍ରାମର ନିକଟବର୍ତ୍ତୀ ସହର ବଜାରକୁ ଯାଇ ଫେରିବା ପରେ ପିନ୍ଧା ଲୁଗାକୁ ଅଲଗା କରି ରଖୁଥିଲେ । ସେତେ-ବେଳର ସାମାଜିକ ଆଚରଣରେ ଏଭଳି ବିଧି ପ୍ରତିଷ୍ଠିତ ଥିଲା ; କିନ୍ତୁ ପରେ ଦେଖାଗଲା, ସେହି ବ୍ୟକ୍ତି ଯେତେବେଳେ ବାର୍ଦ୍ଧକ୍ୟରେ ଉପନୀତ ହେଲେ, ସେତେବେଳେ ତାଙ୍କର ପୁଅ-ପୁତୁରା, ଝିଅ-ଝିଆରୀ, ନାତି-ନାତୁଣୀ, ସହରର ବିଦ୍ୟାଳୟରେ ଯାଇ ପଢ଼ିଲେ । ସୁତରାଂ ଅନିଚ୍ଛାସତ୍ତ୍ୱେ ବୃଦ୍ଧ-ମାନଙ୍କୁ ପରଂପରାଗତ ଆଚରଣ ବଦଳାଇବାକୁ ପଡ଼ିଲା । ଆଜିର ଓଡ଼ିଆ ସାହିତ୍ୟରେ ଠିକ୍ ସେହି କଥା । ଆଧୁନିକତାର ଅଭିମନ୍ତ୍ରଣରେ ସାହିତ୍ୟରୁ ରାଗରାଗିଣୀ ବିଦାୟ ନେବା ଉପରେ । ଏହାର ମଧ୍ୟ ଅର୍ଥ ନୁହେଁ ଯେ ଗଦ୍ୟ କବିତାରେ ଛନ୍ଦ ନାହିଁ । ଛନ୍ଦ କେବଳ ଶବ୍ଦଧର୍ମୀ ନୁହେଁ, ଭାବଧର୍ମୀ ମଧ୍ୟ । ସୁତରାଂ ଗଦ୍ୟ ଛନ୍ଦ ଅଧିକ ମଞ୍ଜୁଳ ଓ ରସାଳ ହୋଇଉଠେ, ଯଦି କବିଙ୍କଠାରେ ସେହିଭଳି ନୈସର୍ଗିକ ଶକ୍ତି କିମ୍ବା ନିଷ୍ଠାପର ସାଧନା ଥାଏ । ଛନ୍ଦ ନ ଥାଇ ଭଲ ଧରଣର ଗଦ୍ୟକବିତା ମଧ୍ୟ ହୋଇପାରିବ ନାହିଁ । କିନ୍ତୁ ତାହାର କଳା, କୌଶଳ ଓ ଭଙ୍ଗୀ ବର୍ଣ୍ଣ ନିୟନ୍ତ୍ରିତ ଛନ୍ଦ ସାହିତ୍ୟର ଛନ୍ଦଠାରୁ ଭିନ୍ନ ।

ଅନେକଙ୍କର ଏହି ଭ୍ରମ ଧାରଣା ଥିବାରୁ ଗଦ୍ୟ ଛନ୍ଦର ନାମ ଶୁଣିଲେ ସେମାନେ ଖଡ୍‌ଗହସ୍ତ ହୋଇ ଉଠନ୍ତି । ବହୁ ବର୍ଷର ଅନୁଭୂତିରୁ ଏହି ଲେଖକ ଜାଣିଛି ପଦ୍ୟ ଛଡ଼ା ଗଦ୍ୟ ବାକ୍ୟରେ ଅଳଙ୍କାର ଥାଇପାରେ ବୋଲି ଅନେକେ ଜାଣି ସୁଦ୍ଧା ପରମ ଜ୍ଞାନହୀନତା ପ୍ରକାଶ କରିଥାଆନ୍ତି । କଲେଜମାନଙ୍କରେ ଓଡ଼ିଆ ପାଠ୍ୟ ଭିତରେ ଅଳଙ୍କାର ପଢ଼ାଯାଏ । ପ୍ରଶ୍ନ ଆସେ ଉପମା, ରୂପକ, ସମାସୋକ୍ତି ଇତ୍ୟାଦି

ଅଳଙ୍କାରର ଉଦାହରଣ ଦିଅ । ଏହାର ଉତ୍ତରରେ କୌଣସି କବିତାରୁ ଗୋଟିଏ ପଦ ଉଦ୍ଧାର କରି ଦୃଷ୍ଟାନ୍ତ ଦିଆଯାଇ ପାରେ କିମ୍ବା ମନରୁ ଗୋଟିଏ ଗୋଟିଏ ବାକ୍ୟ (ଗଦ୍ୟରେ) ରଚନା କରି ଦୃଷ୍ଟାନ୍ତ ଦିଆଯାଇ ପାରେ ; କିନ୍ତୁ ଆମର ପଦ୍ୟ ପ୍ରତି ମମତା ଏତେ ବେଶୀ ଯେ ଗଦ୍ୟରେ ଅଳଙ୍କାରର ଉଦାହରଣ ଦେଲେ ଠିକ୍ ହେବ ନାହିଁ ବୋଲି ଅନେକେ ଭାବି ଥାଆନ୍ତି । ପଦ୍ୟ, କବିତା ଓ ଛନ୍ଦ ସମ୍ପର୍କରେ ମଧ୍ୟ ଏଭଳି ଏକ ଭ୍ରମାତ୍ମକ ମତ ଅନେକେ ପୋଷଣ କରିଥାଆନ୍ତି ; କିନ୍ତୁ ଏ କଥା ଭୁଲିଯିବା ଉଚିତ ନୁହେ ଯେ, କବିତା ପାଇଁ ରାଗରାଗିଣୀନିଷ୍ଠ ଛନ୍ଦର ପ୍ରୟୋଗ ଆଦୌ ଅପରିହାର୍ଯ୍ୟ ନୁହେଁ ଏବଂ ଗଦ୍ୟକବିତାର ମଧ୍ୟ ଛନ୍ଦର ମଞ୍ଜୁଳ ବିଳାସ ପ୍ରକାଶ କରାଯାଇ ପାରେ ।

ଆଧୁନିକ ସାହିତ୍ୟ ଗଦ୍ୟପ୍ରଧାନ, ଏ କଥା ଆଗରୁ କୁହାଯାଇଛି । କାବ୍ୟ ନୁହେ, ଉପନ୍ୟାସ ହିଁ ଆଜିର ଯଥାର୍ଥ କାବ୍ୟ । କବିତା ନୁହେଁ, କ୍ଷୁଦ୍ରଗଳ୍ପ ହିଁ ଆଜିର ମନୋରମ ଗଦ୍ୟକୃତି । ଗଦ୍ୟ ନାନା ଧାରାରେ, ନାନା ସରଣୀରେ ପ୍ରବାହିତ ହୋଇ ଚାଲିଛି । ଯେଉଁ ସମୟରେ 'ରୁଦ୍ର ସୁଧାନିଧି' ଓ 'ଚତୁର ବିନୋଦ' ଲେଖାଯାଉଥିଲା, ସେତେବେଳେ ଗଦ୍ୟର ପରିସର ଯେ ଅତ୍ୟନ୍ତ ସଙ୍କୀର୍ଣ୍ଣ ଥିଲା, କହିବା ଅନାବଶ୍ୟକ ; କିନ୍ତୁ ଆଜି ଗଦ୍ୟ ଦେବତା ଶତଦ୍ୱାର ଉଦ୍‌ଘାଟନ କରି ଚଳପ୍ରଚଳ ହେଉଛନ୍ତି । ଉପନ୍ୟାସ, କ୍ଷୁଦ୍ରଗଳ୍ପ, ବିବିଧ ଆଲୋଚନା, ପ୍ରବନ୍ଧ, ରମ୍ୟରଚନା, ଭ୍ରମଣ-ସାହିତ୍ୟ, ଶିଶୁସାହିତ୍ୟ, ଜୀବନୀ, ଆତ୍ମଜୀବନୀ, ନିବନ୍ଧ, ସନ୍ଦର୍ଭ, ଟୀକା-ଟିପ୍ପଣୀ ଇତ୍ୟାଦି ଇତ୍ୟାଦି ନାନା ଦିଗରେ ଗଦ୍ୟର ଭୂୟୋ ବିକାଶ ଘଟୁଅଛି ।

ଆଧୁନିକ ସାହିତ୍ୟର ମଉଡ଼ମଣି ଗଳ୍ପ ଉପନ୍ୟାସ ମଧ୍ୟ ବିବିଧ ଆତ୍ମିକ ସୌନ୍ଦର୍ଯ୍ୟରେ ବିଭୂଷିତ ହୋଇ ଉଠୁଛି । କେବଳ ବଡ଼ବଡ଼ଙ୍କୁ ଆଶ୍ରୟ କରି କିମ୍ବା ସମାଜର ଓ ଦେଶର ଶିଷ୍ଟ ବା ବିଶିଷ୍ଟମାନଙ୍କୁ କେନ୍ଦ୍ର କରି ଆଉ ଆଧୁନିକ ସାହିତ୍ୟ ଗଢ଼ି ଉଠୁନାହିଁ । କବିତା ରାଜ୍ୟରେ ଯେପରି ଅଖିତର ଧାରା ପ୍ରତି ଅନାସ୍ଥା, କଥା ସାହିତ୍ୟରେ ସେହିପରି ପରଂପରାଗତ ଶୈଳୀ ଓ ପ୍ରାଣ ସମ୍ପଦ ଲାଗି ଅନାଦୃତ ପ୍ରକାଶ ପାଉଛି । ସମାଜରେ ଯେଉଁମାନେ ଥିଲେ କ୍ଷୁଦ୍ର ଓ ଖଣ୍ଡିତ, କବି ଓ ଲେଖକମାନେ ଯାହାଙ୍କ ପାଇଁ ସଂରକ୍ଷିତ ଆସନ ପ୍ରତିଷ୍ଠା କରିବାକୁ ପରାଙ୍ମୁଖ ଥିଲେ,

ସେହିମାନଙ୍କ ପାଇଁ ସାହିତ୍ୟର ଦ୍ୱାର ଉନ୍ମୋଚନ କରିବା ହେଲା ଆଧୁନିକ କଥାସାହିତ୍ୟର ଲକ୍ଷ୍ୟ । ଶିଶୁଜନୋଚିତ କଳ୍ପନା ବିଳାସ ସ୍ଥାନରେ ସମାଜର ବାସ୍ତବ ଚିତ୍ର ଉପସ୍ଥାପନ ଲାଗି ବ୍ୟଗ୍ରତା ପ୍ରକାଶ ଏ ଯୁଗର ଏକ ବିଶିଷ୍ଟ ଲକ୍ଷଣ । ଏହା ଫଳରେ ନୂଆ ନୂଆ ତଥ୍ୟ, ବିଷୟବସ୍ତୁ, ଘଟଣା, ଉପାଦାନ, ଚରିତ୍ର ଏବଂ ଚରିତ୍ର ସାହିତ୍ୟ ଭିତରକୁ ପଶିଆସିବା ଲାଗି ପ୍ରବେଶପତ୍ର ଲାଭ କରିଛନ୍ତି । ସମାଜର ହିତସାଧନା କରିବା ଯଦି ସାହିତ୍ୟର ଗୋଟାଏ ଅର୍ଥ ଓ ଲକ୍ଷ୍ୟ ହୁଏ, ତାହାହେଲେ ଗଳ୍ପ ଏବଂ ଉପନ୍ୟାସର ଆତ୍ମଗୌରବ ବୃଦ୍ଧି ସଙ୍ଗେ ସଙ୍ଗେ ସେହି ଅର୍ଥ ଓ ଲକ୍ଷ୍ୟ ଯଥାର୍ଥରେ ଚରିତାର୍ଥ ହେଉଥିବାର ଅନୁଭୂତ ହୁଏ । ହୃଦୟର ସଂକୀର୍ଣ୍ଣତା, ଚରିତ୍ରର ଦୁର୍ବଳତା, ଜାତିଗତ ବୈଷମ୍ୟ, ଅର୍ଥନୈତିକ ଅସମାନତା, ରାଜନୈତିକ ଶୃଙ୍ଖଳା ପ୍ରତିଷ୍ଠା ଇତ୍ୟାଦି ଇତ୍ୟାଦି ଲକ୍ଷ୍ୟ ସାଧନ ଦିଗରେ ମଧ୍ୟ କଥାସାହିତ୍ୟ ତାହାର କର୍ତ୍ତବ୍ୟ ସଂପାଦନ କରୁଅଛି ।

କିନ୍ତୁ ଆଜିର କଥାସାହିତ୍ୟ କେବଳ ଏଭଳି ସାମାଜିକ ଲକ୍ଷ୍ୟ ପୂରଣ କରୁନାହିଁ । ତହିଁ ସଙ୍ଗେ ସଙ୍ଗେ ବିମଳ ଆନନ୍ଦ, ସନ୍ତୋଷ ଏବଂ ଚିତ୍ତର ପ୍ରସନ୍ନତା କରିବାକୁ ମଧ୍ୟ ଚେଷ୍ଟା କରୁଛି । ମନସ୍ତତ୍ତ୍ୱର ନାନାବିଧ ବିଶ୍ଳେଷଣ, କଥାବସ୍ତୁ ବିନ୍ୟାସର ବିବିଧ କୌଶଳ, ଶବ୍ଦ ଓ ବାକ୍ୟର ରୁଚିପୂର୍ଣ୍ଣ, ଯଥୋପଯୁକ୍ତ ଓ କଳାତ୍ମକ ପ୍ରୟୋଗଦ୍ୱାରା ଏବଂ ଭାବଉଦ୍ଦୀପକ ଘଟଣା ଓ ପରିସ୍ଥିତିର ରୂପାୟନ ଦ୍ୱାରା କଥାସାହିତ୍ୟ ବେଳକୁ ବେଳ ତାହାର କଳେବର ବୃଦ୍ଧି କରିବାକୁ ମଧ୍ୟ ପ୍ରୟାସ କରୁଅଛି ।

## ଆଧୁନିକତା ଓ ଆଧୁନିକ କବିତା—

ବର୍ତ୍ତମାନ କାଳରେ ବେଳେବେଳେ ଜଣାଯାଉଛି, ଯେପରି କି ଆଧୁନିକ କବିତା ହିଁ ପ୍ରାଚୀନ ମତବାଦୀମାନଙ୍କ ଦ୍ୱାରା ତଥା ଆଧୁନିକତାରେ ଦୀକ୍ଷିତ ହୋଇ ନ ଥିବା ସାଧାରଣ ପାଠକଙ୍କଦ୍ୱାରା ସର୍ବାଧିକ ପରିମାଣରେ ସମାଲୋଚିତ ହେଉଅଛି । ଏଭଳି କବିତା ସଂପର୍କରେ ତିନୋଟି ଅଭିଯୋଗ ଉପସ୍ଥାପିତ ହୋଇଥିବାର ଦେଖାଯାଏ । ପ୍ରଥମ—ଛନ୍ଦବିହୀନତା, ଦ୍ୱିତୀୟ—ଦୁର୍ବୋଧତା ଓ ଅସ୍ପଷ୍ଟତା, ତୃତୀୟ—ନଗ୍ନତା ଓ ରୁଚିହୀନତା । ଏଥିପୂର୍ବେ ଛନ୍ଦ ବିଷୟ ଆଲୋଚିତ ହୋଇଅଛି । ସୁତରାଂ, ତହିଁର ପୁନରାବୃତ୍ତି ଏଠାରେ ଅନାବଶ୍ୟକ । ଅନ୍ୟ ଦୁଇଟି ଅଭିଯୋଗର ଆଲୋଚନା ଏଠାରେ କରାଯାଉ ।

ଆଧୁନିକ ଓଡ଼ିଆ କବିତାର ଅସ୍ପଷ୍ଟତା କଥା ଯାହା କୁହାଯାଉଛି, ତାହାର ଉତ୍ତର ଦେବା ପୂର୍ବରୁ ଅନ୍ୟ କେତୋଟି କଥାର ଉଲ୍ଲେଖ ଆବଶ୍ୟକ ମନେହୁଏ । ପ୍ରଥମ କଥା—ଆଧୁନିକ କବିତାର ଜନ୍ମଭୂମି ଆଧୁନିକ ଇଂରାଜୀ ସାହିତ୍ୟ, ଅନ୍ତତଃ ଆମ୍ଭମାନଙ୍କ ପକ୍ଷରେ । ସେ ଦେଶରେ ଯେଉଁଭଳି ସାମାଜିକ, ଶିକ୍ଷାଗତ ଓ କୃଷ୍ଟିଗତ ବାତାବରଣରୁ ଆଧୁନିକ କବିତାର ଜନ୍ମ, ସେଭଳି ଅବସ୍ଥା ଆମର ଏଠାରେ ନାହିଁ । ଏବେ ମଧ୍ୟ ଆମର ଅଧିକାଂଶ ସାମାଜିକ ଜୀବନ ପ୍ରାଚୀନତାରେ ଅନୁରଞ୍ଜିତ । ସୁତରାଂ ଆମର ଆଧୁନିକ କବିତା ବର୍ତ୍ତମାନ ପର୍ଯ୍ୟନ୍ତ ଏହି ଜଳବାୟୁର ଏକ ସ୍ୱାଭାବିକ ଉଦ୍ଭିଦ ରୂପେ ପ୍ରକାଶ ପାଇନାହିଁ । ଦ୍ୱିତୀୟ କଥା—ଆମର ଯେଉଁମାନେ ହେଲେ ଅଧୁନିକତାରେ ଉଦ୍ଦୀପିତ ହୋଇ ଓଡ଼ିଆ ସାହିତ୍ୟ-ଜଗତରେ ନୂତନ ସୌଧ ତୋଳିବାକୁ ଉଦ୍ୟମ କରୁଛନ୍ତି, ସେମାନଙ୍କର ସଂଖ୍ୟା, ଅନ୍ତତଃ ପ୍ରବର୍ତ୍ତକମାନଙ୍କ ସଂଖ୍ୟା ଅତ୍ୟଳ୍ପ ମାତ୍ର । ହୁଏ ତ ସେମାନେ ପାଶ୍ଚାତ୍ୟ ସାହିତ୍ୟରୁ ଆଧୁନିକତାର ମୂଳ ଯଥାର୍ଥରେ ଗ୍ରହଣ କରିଛନ୍ତି ; କିନ୍ତୁ ଏହି ମାଟିରେ ଯେଉଁଭଳି କୃତିତ୍ୱର ସହିତ ତାକୁ ପଚାଇବାକୁ ଚେଷ୍ଟା କରିଛନ୍ତି, ସେଭଳି ଭାବରେ ତାହା କରି ନାହାନ୍ତି । ପ୍ରାଥମିକ ସ୍ତରରେ ଏପରି ହେବା ଅତ୍ୟନ୍ତ ସ୍ୱାଭାବିକ ଏବଂ ଏଭଳି ଉଦ୍ୟମ ବିରୋଧରେ ଅଯଥା ଆକ୍ଷେପ ଆଦୌ ଗ୍ରାହ୍ୟ କିମ୍ବା ପ୍ରଶଂସନୀୟ ନୁହେଁ । ତୃତୀୟ କଥା—ପ୍ରବର୍ତ୍ତକମାନଙ୍କର ଅନୁବର୍ତ୍ତୀ ହେବା ପାଇଁ ଯେଉଁ ତରୁଣମାନେ ଏହି ଆଧୁନିକତାର ପ୍ରାଙ୍ଗଣରେ ଉପସ୍ଥିତ ହୋଇଅଛନ୍ତି, ସେମାନେ ପ୍ରବର୍ତ୍ତକମାନଙ୍କ ଭଳି ମୂଳତତ୍ତ୍ୱ ବୁଝିବାକୁ ଚେଷ୍ଟା କରି ନାହାନ୍ତି କିମ୍ବା କରୁ ନାହାନ୍ତି, ଯାହା ଫଳରେ ସେମାନେ ଯେଉଁ ଆଧୁନିକ କବିତା ସୃଷ୍ଟି କରୁଅଛନ୍ତି, ତାହା ବିରୁଦ୍ଧବାଦୀମାନଙ୍କୁ ଅଧିକ ସୁବିଧା ଦେଉଅଛି । ଚତୁର୍ଥରେ ଆଧୁନିକ ସାହିତ୍ୟର ବିଶେଷତ୍ୱ, ସ୍ୱରୂପ, ସୌନ୍ଦର୍ଯ୍ୟ, କୌଶଳ ପ୍ରଭୃତି ସାଧାରଣରେ ବୁଝାଇବା ପାଇଁ ସେଭଳି କୌଣସି ବିଧିବଦ୍ଧ ଉଦ୍ୟମ ହେଉନାହିଁ । ଫଳରେ ଆଧୁନିକ କବିତା ବିପକ୍ଷରେ ଠାଏ ଠାଏ ସାଧାରଣ ପାଠକ ମହଲରୁ ଯେଉଁ ଆକ୍ଷେପ ଉକ୍ତି ପ୍ରକାଶ ପାଉଛି, ତାହାର କୌଣସି ମୁକାବିଲା ହୋଇ ପାରୁନାହିଁ । ଫଳରେ କବି ଓ ପାଠକ ପରସ୍ପରଠାରୁ ଦୂରେଇ ଯାଉଛନ୍ତି । ସାହିତ୍ୟର ପ୍ରଗତି ପକ୍ଷରେ ଏଭଳି ପରିସ୍ଥିତି ଏକାନ୍ତ ପ୍ରତିକୂଳ ।

ଆମର ଯେଉଁ କେତେ ଜଣ ପ୍ରବୀଣ ଆଧୁନିକ କବି ଅଛନ୍ତି, ଏ କ୍ଷେତ୍ରରେ ସେମାନଙ୍କର ଦାୟିତ୍ୱ ଅତ୍ୟଧିକ । ଆଧୁନିକତାର ପ୍ରତିଷ୍ଠା ଦିଗରେ କେବଳ ସାହିତ୍ୟ ସୃଷ୍ଟି ଯଥେଷ୍ଟ ନୁହେଁ, ସେହି ସୃଷ୍ଟିର ସୌରଭ ବିତରଣ ମଧ୍ୟ ସେମାନଙ୍କର ପ୍ରିୟ କର୍ତ୍ତବ୍ୟ ହେବା ଦରକାର । ଅବୋଧତା ବୋଲି ଯାହା କୁହାଯାଉଛି, ତାକୁ ଦୋଷ ବୋଲି ଉଡ଼ାଇ ଦେଲେ ଚଳିବ ନାହିଁ । ପ୍ରାଚୀନ ସାହିତ୍ୟରେ ମଧ୍ୟ ଅବୋଧତା ଥିଲା । ସେ ଅବୋଧତା ମୁଖ୍ୟତଃ ଶବ୍ଦଗତ ଓ ଅଳଙ୍କାରଗତ ; କିନ୍ତୁ ଗୋଟାଏ ଧରାବନ୍ଧା ଗତିରେ ସେ ସବୁ କ୍ରମବଦ୍ଧ ହୋଇ ଯାଇଥିବାରୁ ପାଣ୍ଡିତ୍ୟ ବଳରେ ସେଗୁଡ଼ିକର ଅର୍ଥବୋଧ ସହଜସାଧ୍ୟ ହୋଇଥାଏ । ଆଧୁନିକ କବିତାରେ ଶବ୍ଦଗତ ଅସ୍ପଷ୍ଟତା ନାହିଁ, ଅଛି ଭାବଗତ, ଚିନ୍ତାଗତ, ମନସ୍ତତ୍ତ୍ୱଗତ । ସେଥିପାଇଁ ଆମକୁ ଏକ ବାତାବରଣ ସୃଷ୍ଟି କରିବାକୁ ପଡ଼ିବ, ଯାହା ଫଳରେ ପ୍ରବୀଣମାନଙ୍କର ସାର୍ଥକ ସୃଷ୍ଟିରେ ଥିବା ଅସ୍ପଷ୍ଟତା ଧୀରେ ଧୀରେ ଦୂର ହୋଇଯିବ । ଏଥିରୁ ବୁଝିବା ଉଚିତ ନୁହେଁ ଯେ, ଆଧୁନିକ କବିତା ନାମରେ ଛନ୍ଦହୀନ ଯେଉଁ ରାଶି ରାଶି ରଚନା ପତ୍ରପତ୍ରିକାରେ ପ୍ରକାଶ ପାଉଛି, ସେଗୁଡ଼ିକର ଅସ୍ପଷ୍ଟତାକୁ ସ୍ୱୀକାର କରାଯାଉ ନାହିଁ କିମ୍ବା ସେହି ଦୋଷକୁ ଗୁଣ ରୂପେ ଉପସ୍ଥାପନ କରାଯାଉଛି । ପ୍ରକୃତ କଥା ହେଉଛି, ରାଶି ରାଶି କବିତାରେ ଅବୋଧତା ଅଛି, କାରଣ ବହୁସ୍ଥଳରେ ସେଗୁଡ଼ିକ ପରିପକ୍ୱତାରୁ ଉଦ୍‌ଭୂତ ନୁହେଁ । ଏହା ସତ୍ତ୍ୱେ ତରୁଣମାନଙ୍କୁ ନିରୁତ୍ସାହିତ କରିବା ପ୍ରମାଦିତ । ଶିଶୁ ଯଦି ଦୌଡ଼ି ପାରୁଛି, ବାଟରେ ଓ ଅବାଟରେ ଦୌଡ଼ୁଛି, ତେବେ ତା'ର ଦୌଡ଼ିବା ଶକ୍ତିକୁ ନଷ୍ଟ କରିଦେବା ବିଜ୍ଞତା ହେବ ନାହିଁ ବରଂ ଦୌଡ଼ିବାର ଶକ୍ତିକୁ କିପରି ନିୟନ୍ତ୍ରିତ କରାଯାଇ ପାରିବ, ସେହି ଦିଗରେ ଚେଷ୍ଟା କରାଯିବା ଦରକାର । ଠିକ୍ ସେହିପରି ଆଜିର ତରୁଣମାନେ ଯଦି ସାହିତ୍ୟ ପ୍ରତି ଏକାନ୍ତ ଅନୁରାଗୀ ଓ କବିତା ରଚନା କରିବାକୁ ଅଦମ୍ୟ ଉଦ୍ୟମ କରୁଅଛନ୍ତି, ତାହାହେଲେ ଅପରିପକ୍ୱତାର ଦୋହାଇ ଦେଇ ସେମାନଙ୍କର ମାର୍ଗ ରୋଧ କରିବା ଯଥାର୍ଥ ହେବ ନାହିଁ; ବରଂ ସେମାନଙ୍କର ଉତ୍ସାହ ଓ ଉଦ୍ଦୀପନା କିପରି ଉନ୍ନତ ଓ ଉପଯୁକ୍ତ ମାର୍ଗରେ ପରିଚାଳିତ ହେବ, ପ୍ରବୀଣମାନେ ତଥା ପାଠକ ସାଧାରଣ ସେଥିପାଇଁ ଧ୍ୟାନ ଦେବା ଦରକାର ।

ତାହା ପରେ ଅତିବାସ୍ତବତା । ଯୌବନର ଉଦ୍ଦାମ ଅଭିବ୍ୟକ୍ତି ଉଚ୍ଛୃଙ୍ଖଳ ହୋଇଉଠେ । ମନସ୍ତତ୍ତ୍ୱ ଦୃଷ୍ଟିରୁ ତାହାର ଅବଦମନ (Suppression) ଅପେକ୍ଷା ସମୋନ୍ନୟନ (Sublimation) ଆବଶ୍ୟକ । ଅତିବାସ୍ତବତା ବେଳେବେଳେ ଆମକୁ ଏଭଳି ଚିତ୍ରଶାଳାରେ ନେଇ ପହଞ୍ଚାଇ ଦିଏ, ଯାହା ମନରେ ମାର୍ଜିତ ରୁଚି ପରିବର୍ତ୍ତେ ବିତୃଷ୍ଣା ଓ ଘୃଣା ମଧ୍ୟ ସୃଷ୍ଟି କରେ । ସାହିତ୍ୟ ହେଉଛି ଭାରତୀପୂଙ୍କର ଆରାଧନା ମନ୍ଦିର । ସେଠାରେ ଅପବିତ୍ରତାର ସ୍ଥାନ ନାହିଁ । ଏଭଳି ଚିତ୍ର ଥିବାରୁ ତ ପ୍ରାଚୀନ ସାହିତ୍ୟର ଗୋଟିଏ ଦିଗ ଆଜି ସମାଲୋଚିତ ହେଉଅଛି । ସୁତରାଂ ଆମର ତରୁଣ ଶିଳ୍ପୀମାନେ ରଙ୍ଗି ରଙ୍ଗୀ କୌଶଳ ମଧ୍ୟରେ ଅତିବାସ୍ତବ ଚିତ୍ରମାନଙ୍କୁ କାହିଁକି ଯେ ପରିତ୍ୟାଗ କରିବେ ନାହିଁ, ଜାଣି ହେଉନାହିଁ ।

ଆଧୁନିକ ଓଡ଼ିଆ ସାହିତ୍ୟ ତାହାର ସ୍ଥିତି ବଜାୟ ରଖିବାକୁ ହେଲେ ସିଦ୍ଧିମୂଳକ ସାଧନାର ଆଶ୍ରୟ ନେବାକୁ ହେବ । ସେଥିପାଇଁ କୌଣସି ଜଣେ କବିଙ୍କର ସାଧନା ଯଥେଷ୍ଟ ନୁହେଁ । ତାହା ସତ୍ତ୍ୱେ ଏ କଥା ମଧ୍ୟ ମନେ ରଖିବାକୁ ପଡ଼ିବ ଯେ, ଏହାକୁ ପ୍ରତିଷ୍ଠିତ କରିବା ଲାଗି ଜଣେ ଦୁଇଜଣ ବିଶିଷ୍ଟ ଓ ପ୍ରତିଭାଶାଳୀ ସାଧକଙ୍କର ପଥପ୍ରଦର୍ଶନ ଏକାନ୍ତ ଆବଶ୍ୟକ । ଆଧୁନିକତା କ୍ଷେତ୍ରରେ ଯେଉଁମାନେ କାର୍ଯ୍ୟ କରୁଛନ୍ତି, ସେମାନଙ୍କର ମଧ୍ୟଯୁଗୀୟ ସମଧର୍ମା ସାଧକମାନଙ୍କ ଅପେକ୍ଷା ସେମାନଙ୍କ ନିଜ ଦାୟିତ୍ୱ ଅଧିକ ଗୁରୁତ୍ୱତର । କାରଣ ସେତେବେଳେ ସାଧକମାନଙ୍କୁ ସେହି ସମୟର ଆଦର୍ଶ ଓ ଅଭିରୁଚି ଦୃଷ୍ଟିରୁ ସର୍ବଭାରତୀୟ ସ୍ତରକୁ ଓଡ଼ିଆ ସାହିତ୍ୟକୁ ଉନ୍ନୀତ କରିବା ଲାଗି ଚେଷ୍ଟା କରିବାକୁ ପଡ଼ୁଥିଲା । ଅନ୍ୟ ଭାବରେ କହିଲେ ସେତେବେଳେ ଭାଷା ଓ ସାହିତ୍ୟର ସର୍ବୋଚ୍ଚ ଆଦର୍ଶ ଥିଲା ସଂସ୍କୃତ ସାହିତ୍ୟ । ଓଡ଼ିଆ ସାହିତ୍ୟକୁ ସମୁନ୍ନତ, ପରିପୁଷ୍ଟ ବା ପୂର୍ଣ୍ଣାଙ୍ଗ କରିବାକୁ ଯେଉଁମାନେ ଚେଷ୍ଟା କରୁଥିଲେ, ସେମାନେ ଓଡ଼ିଆ ସାହିତ୍ୟକୁ ସେତେବେଳର ସର୍ବଭାରତୀୟ ସାହିତ୍ୟ ଅର୍ଥାତ୍ ସଂସ୍କୃତ ସାହିତ୍ୟ ସ୍ତରକୁ ଉଠାଇ ନେଇ ମହତ୍କର୍ଷର ଗୌରବ ଲାଭ କରିପାରୁଥିଲେ । ଆଜିକାଲି ସେ ଅବସ୍ଥା ଆଉ ନାହିଁ । ବର୍ତ୍ତମାନ ବିଜ୍ଞାନର ଅକଳ୍ପନୀୟ ବିକାଶ ଫଳରେ ସମୟ ଓ ଦୂରତା ଏକପ୍ରକାର ମାନବର କରାୟତ୍ତ ହୋଇଯାଇଛି । ସେଥିପାଇଁ ସାହିତ୍ୟ କହିଲେ, ବର୍ତ୍ତମାନ ବିଶ୍ୱସାହିତ୍ୟ ବୋଲି ବୁଝିବାକୁ ହେଉଛି । ଆଜି ପୃଥିବୀର ସମସ୍ତ ଉନ୍ନତ ଭାଷାରେ

ଆଧୁନିକତାର ଅପ୍ସରା ତାହାର ଛବିଳ ପକ୍ଷ ବିସ୍ତାର କରି ପାଠକ ମନରେ ବୌଦ୍ଧିକତାର ବର୍ଣ୍ଣୋଜ୍ଜ୍ୱଳ ଯେପରି ସୃଷ୍ଟି କରୁଛି, ଏତିକବେଳେ ଯେ ଯେଉଁ ଭାଷାରେ ଲେଖୁନା କାହିଁକି, ତାହାର ତୁଳନାତ୍ମକ ଉତ୍କର୍ଷ କଳନା କରିବାକୁ ହେଲେ ବିଶ୍ୱସାହିତ୍ୟର ଦରବାରରେ ଆସନ ଲାଭ କରିବାର ଯୋଗ୍ୟତା ହିଁ ପ୍ରଥମ ଧ୍ୟେୟ ହେଉଅଛି । ତେଣୁ ଆଧୁନିକତାର ସେବକ, ଉପାସକ, ସ୍ରଷ୍ଟା ଓ ପରିବେଷକ ଏମାନଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟର ଗୁରୁତ୍ୱ ବଢ଼ିଯାଇଛି । ଅତଏବ ବିଶ୍ୱ ସାହିତ୍ୟର ପରିପ୍ରେକ୍ଷୀରେ ଆଧୁନିକ ଓଡ଼ିଆ କବିତା କେତେ ଦୂର ଉତ୍କର୍ଷ ଦାବୀ କରିପାରୁଛି, ତାହା ହିଁ ଲକ୍ଷ୍ୟ କରାଯିବାର କଥା ।

---

# ମୋ ଦୃଷ୍ଟିରେ ସାଂପ୍ରତିକ ଓଡ଼ିଆ ସାହିତ୍ୟର ଗୁଣ ଓ ପ୍ରବୃତ୍ତି

ମନମୋହନ ମିଶ୍ର

ସାଂପ୍ରତିକ ଓଡ଼ିଆ ସାହିତ୍ୟ ବୋଲି କହିଲେ ଆମେ କ'ଣ ବୁଝୁଁଛୁ ? ତାହା ସାଂପ୍ରତିକ କାଳରେ ଲେଖାଯାଉଥିବା ସବୁପ୍ରକାର କବିତା, ଗଳ୍ପ, ଉପନ୍ୟାସ, ନାଟକ, ଲିରିକ୍ ବା ଗୀତିକା ଲଳିକା ବା ରମ୍ୟରଚନା ନୁହେଁ, ଯେଉଁଗୁଡ଼ିକ ବନ୍ଧା ଧ୍ରୁବପଦ ବା ଗତାନୁଗତିକ ଲେଖା, ଯେଉଁଗୁଡ଼ିକ ରାଧାନାଥ ରାୟଙ୍କଠାରୁ ଆଜି ପର୍ଯ୍ୟନ୍ତ ଗଡ଼ିଆସିଛି । ଯେଉଁଗୁଡ଼ିକ, ଯେଉଁ ବିଷୟ ବି କହନ୍ତୁ, କହିବାର ଢ଼ଙ୍ଗରେ ହେଉଛନ୍ତି ପୁରୁଣା; ତେଣୁ ସେଗୁଡ଼ିକ କାଳଭେଦରେ ଯେତେ ନୂତନ ହେଲେ ବି ଆଧୁନିକ ନୁହନ୍ତି । ତେଣୁ ସାଂପ୍ରତିକ ସାହିତ୍ୟର ପଂକ୍ତିରେ ସେମାନେ ବସିବାକୁ ଭାଜନ ହୋଇନାହାନ୍ତି ।

ସାଂପ୍ରତିକ ସାହିତ୍ୟର ସବୁଠୁଁ ସାଂପ୍ରତିକ ଏଟମ୍ ବୋମା ହେଲା 'ଆଧୁନିକ କବିତା' । ତା'ପଛକୁ ଏବେ ଧାଡ଼ି ଦେଲେଣି 'ଉଦ୍ଭଟ ନାଟକ' । ତା'ଛଡ଼ା କିଛି ପରିମାଣରେ ଉଦ୍ଭଟ ହିପି 'କ୍ଷୁଦ୍ରଗଳ୍ପ', ଯେଉଁଥିରେ ନାୟକ ହେଉଛି ବିଖଣ୍ଡିତ ମୁହୂର୍ତ୍ତର ଗୋଟାଏ ଭାବନା ବା ବହୁଭାବନାର ଟିକି ଟିକି ହୋଇ ଭାଜିଯାଇଥିବା ଆଇନାକାଚ (ଯାହାକୁ ଯୋଡ଼ୁ ଯୋଡ଼ୁ ପାଠକର ଆୟୁଷ ପ୍ରାୟ ଶେଷ) । ଏସବୁ ପ୍ରକାର ସାହିତ୍ୟରେ ନାୟକ ଜଣେ । ସେ ଜଣକ ଖୋଦ୍ ଲେଖକ ହୋଇଥିଲେ ବି ବରଦାସ୍ତ କରିହୁଅନ୍ତା । କାରଣ ଏଭଳି ଲେଖକ ଭୋକ ହେଲେ କିଛି କିଛି ଖାଦ୍ୟପଦାର୍ଥ ଗିଳେ, ଯୌନ କ୍ଷୁଧା ହେଲେ ବିବାହ କରେ ବା ବ୍ରହ୍ମଚର୍ଯ୍ୟ ବହି ପଢ଼େ ଅଥବା କିଛି ଆଧୁନିକ କବି ତାଙ୍କର କବିତା ମାଧ୍ୟମରେ ଯୌନକଣ୍ଡୁ ମେଣ୍ଟାଇବା ପାଇଁ ଯେଉଁସବୁ ସେବନ ଅନୁପାନର ଖସଡ଼ା ଦେଇଛନ୍ତି ସେଥିରୁ ଆପଣାର ଇଚ୍ଛା ଅନୁସାରେ କିଛି କିଛି

ବାଛନ୍ତିନାଏ । ଏଭଳି ଲେଖକ ବି ଡାକବଙ୍ଗଳାରେ ଆରାମରେ ଶୁଏ, ଉପର ଅଫିସରଙ୍କୁ ତା'ର ଅନୁପସ୍ଥିତି ବେଳେ ମନେ ମନେ ଦୁଇ ଅକ୍ଷରରେ ଓ ଇଂରାଜି ପଢ଼ୁଆ ହୋଇଥିଲେ ଇଂରାଜି ଗୁରୁ ଅକ୍ଷରିଆ ପଦ ଲଗାଇ ଶୋଧେ ; ଓ ଉକ୍ତ ଅଫିସର ସାମନାରେ ଏତେ ଗୋଲାମିର ନାଳ ଗଢ଼ାଏ ଯେ ସମସ୍ତ ମହୋଦଧିର ପାଣି ବି ତାହାର ବହଳ ପଣକୁ ପାଣିଚିଆ କରିପାରିବ ନାହିଁ !

ଆଧୁନିକ ସାହିତ୍ୟର ଲେଖକ ତା'ର ସାହିତ୍ୟର ନାୟକ ନୁହେଁ । ନାୟକ ହେଲା ଏକ ବିଚିତ୍ର ଜୀବ । ଯାହାର କବି-ଧର୍ମ, ଉପନ୍ୟାସ-ଧର୍ମ, ନାଟକ-ଧର୍ମ ହେଉଛି ଆତୁର ବିଚିତ୍ର । ଏହାକୁ ଆଧୁନିକ କବି, ଲେଖକ, ନାଟ୍ୟକାର ସ୍ୱୀକାର କରିଛନ୍ତି ଯେ ସେମାନେ ଖାଇବା ପିଇବା, ଶୋଇବା, ପ୍ରେମ ବା ରତି କରିବା ଇତ୍ୟାଦି ସବୁଥିରେ ଜନ୍ତୁ, କବିତାରେ ନାଟକରେ ପ୍ରକାଶ କରିବାରେ ବି ଜନ୍ତୁ; କିନ୍ତୁ ଆଶା କରନ୍ତି ଯେ ପାଠକ ସେମାନଙ୍କୁ ଅଜନ୍ତୁ ଭାବରେ ଦେଖି ଓ ତାଙ୍କର ଲେଖାକୁ ଅନୁପାନର ମାତ୍ରା ଅନୁସାରେ ଠିକଣା ମାତ୍ରାରେ ଗିଳନ୍ତୁ । ଏଥିରୁ ବେଶି ଗିଳିଲେ ବା କମ୍ ଗିଳିଲେ ଯଦି ଅମ୍ଳରସ ଜାତ ହୁଏ ବା ପାଠକର ମାନସରେ ବା ଉଦରରେ ବା ନାଭିମୂଳରେ ବା ତା'ର ଆତୁର ତଳକୁ କୌଣସି ବିକାର ଘଟେ ସେ ସବୁ ଦୈବ ଦୁର୍ଘଟଣା; ସେଥିପାଇଁ ଲେଖକ ଦାୟୀ ନୁହନ୍ତି । ଅଥବା ସେ ସବୁ ବିକାର ହେଉଛି ବୈଦ୍ୟୁତିକ ସିଡ୍କାର । ତେଣୁ ସେଥିପାଇଁ ଲେଖକ ଷୋଳଅଣା ଦାୟୀ ଓ ତାହାହିଁ ଲେଖକର କୃତିମତ୍ତ ।

## ସିଧାସଳଖ କଥା

ଓଡ଼ିଶା ମାଟିରେ ଜନ୍ମ ଲଭିଥିବା ଜଣେ ପ୍ରତିନିଧି ସ୍ଥାନୀୟ ପ୍ରତିଷ୍ଠିତ ଆଧୁନିକ କବି ତାଙ୍କର ଗୋଟିଏ କବିତାବହିର ପୃଷ୍ଠବନ୍ଧରେ ଉପରଲିଖିତ ବିଷୟଟିକୁ ସ୍ପଷ୍ଟ କରିଛନ୍ତି । ତାହା ତାଙ୍କର ଭାଷାରେ ଶୁଣାଯାଉ :—

> ତେବେ ମୋର ଏଠାରେ ଏହା କହିବା କଥା ଯେ ଆମର ସାହିତ୍ୟ ଐତିହ୍ୟରେ ଗଢ଼ି ଉଠିଥିବା ମନୋବୃତ୍ତି ଆଧୁନିକ ସାହିତ୍ୟ ଦୃଷ୍ଟିର ସହାୟକ ନୁହେଁ ଏବଂ ଜୀବନ ଭିତରେ ଏପର୍ଯ୍ୟନ୍ତ ଅନ୍ତର୍ଭୁକ୍ତ ହୋଇ ନ ଥିବା କେତେଗୁଡ଼ିଏ ବସ୍ତୁପ୍ରତି ଦୃଷ୍ଟି ପଡ଼ିବା କି ଆଦରକାର ହେଉଛି ।
> ("ଅନେକ କୋଠରୀ" ପୃଷ୍ଠବନ୍ଧ ପୃ୬ଂଷ୍ଠା—ରମାକାନ୍ତ ରଥ)

ସେହି 'ଜୀବନ ଭିତରେ ଯେପର୍ଯ୍ୟନ୍ତ ଅନ୍ତର୍ଭୁକ୍ତ ହୋଇ ନ ଥିବା କେତେଗୁଡ଼ିଏ ବସ୍ତୁ' କ'ଣ କ'ଣ ? ସେ ବିଷୟରେ ବି ଏଠାରେ କଳା ଚତୁର୍ଦର୍ଶୀ କବି ନିଃସନ୍ଦେହ। ତାହା ଜୀବଙ୍କ ପ୍ରେମ ନୁହେଁ; ଯେଉଁଥିରେ ଅଛି ଧଳକିରି ଶିବଲିଙ୍ଗ ପରି ଦିଗମ୍ବର କାମଲାଳସା ଅଥବା ତାହା ଆମଘେରି ସୁଲଭ ବୈରାଗ୍ୟ ନୁହେଁ, ଯାହା ଜୀବନର ସବୁ ଶାରୀରିକ ଭୋଗକୁ ଅନିତ୍ୟ ବୋଲି ଘୋଷଣା କରେ। ତେଣୁ ଓଡ଼ିଆ ସାହିତ୍ୟର ଐତିହ୍ୟ ହେଲା 'ଦ୍ରୁଏଡ ଦଶୁପରି ରତିସୁଖରେ ମାତି ନୋହିଲେ ଏ ସୁଖ ଅନିତ୍ୟ ବୋଲି ପୋଖତ ବୈରାଗ୍ୟ ଦେଖାଇ ତାହାକୁ ନାମଞ୍ଜୁର କର।' କିନ୍ତୁ ବିଦେଶୀ ଅର୍ଥାତ୍ ଇଂରାଜି ସାହିତ୍ୟ ଐତିହ୍ୟରେ ଯେପରି ପ୍ରେମିକାର ଗୋଟିଏ ଲେତିକ ବିନ୍ଦୁ ପାଇଁ ପ୍ରେମିକ ସାରା ସାମ୍ରାଜ୍ୟ, ବିଭବ, ଗୀରଭର ଅହଂକାର ମୁକ୍ତି ଦେଇପାରେ, ଉକ୍ତ କବିତାଙ୍କ ମତ ଯଥା ଅଣ୍ଟୋନି ଓ କ୍ଲିଓପାଟ୍ରା) ତେଣୁ ଏଠାରେ ପ୍ରେମ ଇନ୍ଦ୍ରିୟ ବା ଦେହସର୍ବସ୍ୱ ନୁହେଁ। ଏପରିକି ଯୌନସର୍ବସ୍ୱ ଉଦ୍ଦେଶ୍ୟ ଥିଲେ ବି 'ଲକ୍ରେସି ଧର୍ଷଣ' ରେ ସେକ୍ସପିଅର୍‌ଙ୍କର ଧର୍ଷକ-ନାୟକ ଟାରକ୍ୱିନୟସ ଯେଭଳି ଗୋଲାପୀ ମହୁଆ ଭାଷାରେ ଭାବୀ-ଧର୍ଷିତାକୁ ସ୍ତୁତି କରିଛନ୍ତି—

ତୋର ମୁହଁର ରଙ୍ଗ ଦେଖି
ଈଷାରେ ଲିଲିର ମୁହଁ ସେତା ପଡ଼ିଯାଏ
ଓ ରକ୍ତ ଗୋଲାପି ବି ଆପଣାର ବୃନ୍ତମାନରେ
ଲଜ୍ଜାରୁଣ ହୋଇଯାଏ

ସେଭଳି 'ନିର୍ବିବାଦରେ ସୁନ୍ଦର ବସ୍ତୁକୁ ପସନ୍ଦ କରିବା ନୀଜ' ଓଡ଼ିଆ ସାହିତ୍ୟ ଐତିହ୍ୟର ଫୁରୁସତ ନାହିଁ କି ନଥିଲା।

ତେଣୁ—

ଯାହା ଦୃଶ୍ୟ ଓ ଇନ୍ଦ୍ରିୟ ମାନଙ୍କଦ୍ୱାରା ଗ୍ରାହ୍ୟ ସେଥିରୁ ଆମ ମନ ଖଳାସ ହୋଇ ପାରୁନାହିଁ ଏବଂ ଯେଉଁ ପର୍ଯ୍ୟନ୍ତ ସେଥିପ୍ରତି ସେକି ଉଦାସୀନତା, ଏବଂ ଏସବୁକୁ ଛାଡ଼ି ଖସିଯିବାର ଇଚ୍ଛା ବଳବତ୍ତର ହୋଇନାହିଁ ସେ ପର୍ଯ୍ୟନ୍ତ ଖଳାସ ହେବା ଏକ ଦୁଃସ୍ୱପ୍ନ। ଯେଉଁ ପର୍ଯ୍ୟନ୍ତ ଏସବୁ ପ୍ରତି ଆମର ମୋହ ଅଛି ସେ ପର୍ଯ୍ୟନ୍ତ ଉଦାସୀନତା ସୁତରାଂ ଖଳାସ ଅସମ୍ଭବ।

( ସେଇ ବନ୍ଧ—୭୯ ପୃଷ୍ଠା-ରମାକାନ୍ତ ରଥ )

## ଅନ୍ଧାର, ଆହୁରି ନିର୍ଜନ ଅନ୍ଧାର

ତେଣୁ ଆଧୁନିକ ସାହିତ୍ୟ ବିଶେଷତଃ କବିତା ହେଲା ନିର୍ବେଦ । ନିର୍ଜନ ଅନ୍ଧକାର "ଆଭ୍ୟନ୍ତରୀଣ ଅନ୍ଧକାର ସବୁ ସଂବଳର ଉଚ୍ଛେଦ ଓ ଅବଲୁପ୍ତ, ଇନ୍ଦ୍ରିୟଗୋଚର ଦୁନିଆର ସନ୍ନିପାତ, କଳ୍ପନା-ଜଗତରୁ ଆତ୍ମନିର୍ବାସନ, ଆଧ୍ୟାତ୍ମିକ ସଂସାରର ଚଳଣିରହିତ ଅବସ୍ଥା" (ପୋଡ଼ା ନର୍ଟନ୍-ଏଲିୟଟ୍) ଓ ସେକାଳର ଆରବ ଲୋକଙ୍କର ମନୋବୃତ୍ତି ଭଳି ଏହା ଗତାନୁଗତିକ ଜୀବନ ପ୍ରତି ଉତ୍ସାହହୀନ, ନିର୍ବିକାର, ଲାଳସାହୀନ, ଉଦାସୀନ, ତେଣୁ ସ୍ୱୟଂ-ବିଚ୍ଛିନ୍ନ । କବି ରମାକାନ୍ତ ରଥଙ୍କର ସ୍ପଷ୍ଟ ବୟାନ ହେଲା "ଯଦି ଆମେ ଉପସ୍ଥିତ ଜୀବନ ପାଖରେ ବକ ହୋଇ ଯାଇଛୁ ତେବେ ତା'ର ଭାଷା ଓ ଚିତ୍ରକଳା, ଆମର ଉପରୋକ୍ତ ପୃଥକ୍ ଜଗତକୁ ଯିବାରେ ପ୍ରତିବନ୍ଧକ ହେବେ ।" ତେଣୁ କବିଙ୍କ ମତରେ, ଆଧୁନିକ କବିତା ଗତାନୁଗତିକ ଭାଷାରୁ ମୁକୁଳି ଯାଇଥିବାରୁ ଓ ତାହାର ଚିତ୍ରକଳ୍ପ ଏହି ଅଦ୍ଭୁତ ପୃଥକ୍ ଜଗତର ଚିତ୍ରକଳ୍ପ ହୋଇଥିବାରୁ ଏହା ଦୁର୍ବୋଧ ହୋଇପଡ଼ୁଛି । ଅବଶ୍ୟ ଜଗନ୍ନାଥ ଦାସ ଏତେ ଦାର୍ଶନିକ ତତ୍ତ୍ୱକୁ ସହଜ ଭାଷାରେ କହି ପାରିଲେ ; କିନ୍ତୁ ଆଧୁନିକ କବି ତାଙ୍କର ତତ୍ତ୍ୱକୁ କହି ପାରିଲେ ନାହିଁ ବୋଲି କବିଙ୍କ ମନରେ ଖୁବ୍ କ୍ଳେଶ ଓ କ୍ଷୋଭ । କିନ୍ତୁ ଏ ବିଷୟରେ କେବଳ ଓଡ଼ିଶାର ଆଧୁନିକ କବି କାହିଁକି ବିଲାତର ଏଲିୟଟ୍-ପରି କବିମାନେ ବି ନାଚାର । ତେଣୁ ଇଂରାଜୀ ପ୍ରବଚନ ଅନୁସାରେ ଯେ ରୋଗର ଆରୋଗ୍ୟ ନାହିଁ ତାହା ଭୋଗିବାକୁ ପଡ଼ିବ ।

ତେବେ ଏହି ନିର୍ବେଦ ଅନ୍ଧକାର ଭିତରେ କ'ଣ କିଛି ପଥ ଅଛି ? ଭକ୍ତ କବିଙ୍କ ମତରେ ଅଛି । ଏ କଥା ବି ତାଙ୍କର ମନ୍ତ୍ରଗୁରୁ ଏଲିୟେଟ୍ ସାହେବ ଆଗରୁ ଦର୍ଶାଇ ଦେଇଥିଲେ । ଏଲିଏଟ୍ ସାହେବଙ୍କର ଏହି ନିର୍ଜନ ଅନ୍ଧକାର ଭିତରେ ଖ୍ରୀଷ୍ଟୀୟ ଚିନ୍ତାଧାରା ଓ ସଂସ୍କୃତିର ସଫଳ ଓ ଜୀବନ୍ତ ବ୍ୟବହାର କରାଯାଇଛି । କବି ରମାକାନ୍ତ ରଥ ବଡ଼ ଅବଶୋଷ କରିଛନ୍ତି ଯେ ଆମର (ଓଡ଼ିଶାର) ସାହିତ୍ୟରେ ତାହାର ଦୃଷ୍ଟାନ୍ତ ବିରଳ । ତେଣୁ ସେହି କବିଙ୍କର ପରୀକ୍ଷାମୂଳକ ଭାବେ ଏହି ପୃଥକ୍ ଅନ୍ଧାର ଦୁନିଆ ଭିତରେ ଶ୍ରାଦ୍ଧପଦ୍ଧତି, ପାଠ୍ୟପୁସ୍ତକ, ଈଶ୍ୱରବନ୍ଦନା, ବ୍ରାହ୍ମଧର୍ମ, ସୁନାନାକୀ ଝିଅ, ଯିଶୁ, ମେରି, ଚଣ୍ଡୀମାତା,

ଇତ୍ୟାଦି ନାନାପ୍ରକାର ଶବ୍ଦ, ସୃଷ୍ଟିର ମାରିବ ପଟୁଆର ଗ୍ଭଲିଛି । (ତେଣୁ ବୋଧହୁଏ ଅନ୍ଧକାରଟା ଖୁବ୍ ନିର୍ଜନ ନୁହେଁ ! )

ଉକ୍ତ ଅଧୁନିକ କବି ଖୁବ୍ ସତର୍କ ଯେ ତାଙ୍କ ମତକୁ ଯେପରି କେହି ଭୁଲ ବୁଝି ଅଧୁନିକ କବିମାନେ ସନ୍ନ୍ୟାସୀ ହେବା ଉଚିତ ବୋଲି ଭାବନ୍ତି ! ମୋଟେ ନୁହେଁ, ମୋଟେ ନୁହେଁ, ଆଧୁନିକ କବି ସନ୍ନ୍ୟାସୀ ତ ନୁହନ୍ତି, ବରଂ ତାର ଓଲଟା । ତାଙ୍କର ଶବ୍ଦକଳ୍ପ ଭାଷା, ଇତ୍ୟାଦି ବି ଏହି ଦୁନିଆର । ତେବେ ସେ ଆଶା କରନ୍ତି ଏହାକୁ ଏଭଳି ଭାବରେ ଟେର୍ଚ୍ଛା, ତେଡ଼ା, ଅଟଙ୍ଗା ବା ଖାଡ଼ା (ଶିବଲିଙ୍ଗ ସ୍ମରଣୀୟ) କରି ଥୋଇବେ ଯେପରି ଏକ ପୃଥକ୍ ନିର୍ଜନ ଅନ୍ଧକାର—ଦୁନିଆ ସୃଷ୍ଟି ହେବ ଯେଉଁ ଦୁନିଆରେ ମ୍ୟାକ୍‌ବେଥଙ୍କର ଡାକୁଣୀଙ୍କ ଭାଷା ପରି ଏକ ଅଦ୍ଭୁତ ଭାଷା ଓ ଶବ୍ଦକଳ୍ପ ତିଆରି ହେବ । ସେଠାରୁ ଅବଶ୍ୟ ଏ ଜୀବନ ପ୍ରତି ମୋହ ମମତା ସବୁ ନିର୍ବାସିତ ହେବ; କିନ୍ତୁ ସେଥିରେ ପିତୃପୁରୁଷ ଶ୍ରାଦ୍ଧ, ଖ୍ରୀଷ୍ଟୀୟ ଧର୍ମ ଓ କିଛି କିଛି ରାଧାକୃଷ୍ଣ, ଇତ୍ୟାଦି ଇତ୍ୟାଦି ରହି ଆମର ପୂର୍ବଜ ବଡ଼ବଡ଼ିଆଙ୍କୁ ସ୍ମରଣ କରାଉଥିବ କିନ୍ତୁ ସେଥିରେ ବର୍ତ୍ତମାନ ଏ ଜଗତର ଶୋକ, ଦୁର୍ଭିକ୍ଷ, ଲାଲସା, ଅତ୍ୟାଗ୍ଭର, ଶୋଷିତର ମୁକ୍ତି ସଗ୍ରାମ ଇତ୍ୟାଦିର କୌଣସି ସ୍ଥାନ ନ ଥିବ । କାରଣ ତାହା ରହିଗଲେ ମାନେ କବିତାର ଯାଦୁକର ପୃଥକ୍ ଦୁନିଆର ମ୍ୟାଜିକ୍‌ଟା ଭାଙ୍ଗିଯିବ ଓ ଭାଙ୍ଗିଗଲେ ସବୁ ଭଣ୍ଡୁର । ତେଣୁ ଜୀବନଠାରୁ ଯେତେ ସଂପର୍କଚ୍ୟୁତ ହୋଇପାରିବ ସେତିକି ବେଶି ବେଶି କଳାର ପ୍ରତିଷ୍ଠା...'କାରଣ କଳା ହେଲା ନିର୍ଜନ ଅନ୍ଧକାର; ଏହା କେବଳ ସାହିତ୍ୟ କ୍ଷେତ୍ରରେ ସତ୍ୟ ନୁହେଁ, ଏହା ପୁଣି ସବୁ ପ୍ରକାର କଳା ପକ୍ଷରେ ସତ୍ୟ !' ସେଥିପାଇଁ ବୋଧହୁଏ ନିର୍ଜନ ଅନ୍ଧକାର ହିଁ କଳା !

## ଗୋଟିଏ ଚେହେରା, ବିଭିନ୍ନ ମୁଖା

'ଆଧୁନିକ' ନାମଧେୟ ଏହି ସାହିତ୍ୟର ଗୋଟିଏ ଚେହେରା, ମୁଖା କେବଳ ବିଭିନ୍ନ । ମନେ ହୋଇପାରେ, ରମାକାନ୍ତ ରଥଙ୍କର ବିଗ୍ଭର ହେଉଛି ତାଙ୍କର ମୌଳିକ ବିଗ୍ଭର, କେବଳ ମାତ୍ର ମନ୍ତ୍ରଗୁରୁ ଏଲିୟଟ୍‌ଙ୍କର କିଛି କିଛି ବିଗ୍ଭରର ଛାପ ତାଙ୍କର ମାନସହିସ୍ଥାରେ ପଡ଼ିଛି । କିନ୍ତୁ ମୋଟ ଉପରେ ଉକ୍ତ ଆଧୁନିକ କବି, ରମାକାନ୍ତ ରଥେ, ଓଡ଼ିଶାର କାର୍ଯ୍ୟଧର୍ମ ଓ ଚେତନାର ଅନୁଭୂତି ଭିତରେ ଅଭାବ

ଦେଖାଉଛନ୍ତି ଓ ତଥାପି ସେଥିରେ ବୁଡ଼ି ରହିଲେ ବି ତାଙ୍କର ପୃଥକ୍ ପୃଥିବୀର ଅରମା ଜଙ୍ଗଲକୁ ଅନ୍ଧକାରମୟ କରିବାକୁ ବହୁତ ଖୋରାକ ସେଥିରୁ ସେ ଗାଢ଼ କରିପାରିଛନ୍ତି । ଏହି ହିସାବରେ ସେ ହେଉଛନ୍ତି ବହୁ ପରିମାଣରେ ଦେଶୀ । ଏଥି ପାଇଁ ସେ କିଛି କିଛି ଗର୍ବିତ ଥିଲା ପରି ମନେ ହୁଏ । କିନ୍ତୁ ତାଙ୍କର କାବ୍ୟଚେତନା ଯେ ପ୍ରତିନଧିମୂଳକ ଏଥିରେ ସନ୍ଦେହ ନାହିଁ ।

ଉଦାହରଣସ୍ୱରୂପ ଆଉଜଣେ ଭାଷ୍ୟକାର, ଆଧୁନିକ କବିତାର ଭୂମିକା ଲେଖକଙ୍କର ବୟାନକୁ ରମାକାନ୍ତ ରଥଙ୍କର ବକ୍ତବ୍ୟ ସଙ୍ଗେ ତୁଳନା କଲେ ମନେହୁଏ ସବୁ ଆଧୁନିକ କବିତାର ହେହି ଗୋଟିଏ ଚେହେରା—କେବଳ ମୁଖା ହିଁ ଭିନ୍ନ ଭିନ୍ନ । ମୁଖାଟିକୁ ଉତ୍ତାରି ଦେଲେ ସବୁ ଆଧୁନିକ କବିତାର ଗୋଟିଏ ମାତ୍ର ରୂପ ବାହାରି ପଡ଼େ ।

> **ଜୀବନ ଅଭିଜ୍ଞତାର ଅଭିବୃଦ୍ଧି ଓ ମୂଲ୍ୟାୟନରେ ସ୍ଥାନ ଓ କାଳର ପାର୍ଥକ୍ୟ ନଗଣ୍ୟ ଓ ସେହି ଦୃଷ୍ଟିରୁ 'ଅଷ୍ଟପଦୀ'ର ଆଧୁନିକ ନାୟକର ଜୀବନ-ଅନୁଭୂତି ମହାଭାରତ ଚରିତ୍ରର ଜୀବନ-ଅନୁଭୂତିଠାରୁ ବିଶେଷ ଭିନ୍ନ ନୁହେଁ ।**
>
> **(ଯତୀନ୍ଦ୍ର ମୋହନ ମହାନ୍ତି—ଅଷ୍ଟପଦୀର ଭୂମିକା : ପୃଷ୍ଠା—ଜ)**

ପୁଣି—

> **ଏହି ନରକରେ ଜୀବନ ନାହିଁ କି ମୃତ୍ୟୁ ନାହିଁ, ଏକ ଜୀବନମୃତ ଅବସ୍ଥା, ଯେଉଁଠି ପାପପୁଣ୍ୟର ଅନୁଭୂତି ଭ୍ରଷ୍ଟ ଓ ବିପର୍ଯ୍ୟସ୍ତ, କେବଳ ଦେବକୀର ଅଷ୍ଟମ ଗର୍ଭ, ଭୀମର କାଳରଜ୍ଜୁ, କୁରୁକାର ପରିବର୍ତ୍ତନ ବା ସୋଲେମନ୍‌ର ସମୁଦ୍ର ସହିତ ଘନିଷ୍ଠ ସମ୍ପର୍କରେ ହୁଏତ ଏହି ନରକରୁ ଉଦ୍ଧାରର ସମ୍ଭାବନା ଅଛି ଓ ଏହି ସମ୍ଭାବନା ହିଁ ସନ୍ତାପିତ ନାୟକର ଜୀବନରେ ଏକମାତ୍ର ଆଶା ।** **(ସେହି ବହି, ସେହି ଲେଖକ)**

ତେଣୁ ସେହି 'କାବ୍ୟଚେତନା'ର ଦୁନିଆ ହେଲା ନିର୍ଜନ ଅନ୍ଧକାର; ତେଣୁ ଏକମାତ୍ର ଉପାୟ ହେଲା ଶାରୀରିକ ମୃତ୍ୟୁ ।

> "ହରୁଭଗ୍ନ ଲଗ୍ନ ଆଉ ଆଜି କେତେ ଦୂର ?
> କେତେ ଦୂର ରଜନୀର ଅନ୍ତିମ ପ୍ରହର ?"
>
> (ସୀତାକାନ୍ତ ମହାପାତ୍ର—ଅଷ୍ଟପଦୀ)

ଏହା ସବୁ ଯାହା ଘଟୁଛି, ସବୁ ଦୈବ୍ୟ ; ଏଥିରେ ମାନବୀୟ କିଛି ନାହିଁ; କାରଣ ମାନବୀ ବୋଲି ମାନିନେଲେ ବର୍ତ୍ତମାନ ଦୁନିଆରେ ଲେଖକର

ସ୍ଥିତି ଅସମ୍ଭବ । ତେଣୁ ବୈଚିତ୍ର୍ୟ ବୋଲି ଗ୍ରହଣ କରି ଏକ ପୃଥକ୍ ପୃଥିବୀ ସଜାଡ଼ିବାକୁ ହେବ । ସେଇଠି କିଛି ସମୁଦ୍ର, କିଛି ବାଲି, କିଛି ଭଙ୍ଗା ଶାମୁକା, ଆଉ କିଛି ଛିଣ୍ଡା ଛିଣ୍ଡା ଅର୍ଜନାନନ୍ଦ ଓ ସୃଜନାନନ୍ଦଙ୍କର ମାନ୍ଧାତା ଅମଳର ପୁରାଣ କଥାକୁ ଗୋଟେଇ ପୋଟେଇ ଅରମା ଜଙ୍ଗଲ ତିଆରି କରିବାକୁ ହେବ । ଏହାର ନାମ ହେବ 'କାବ୍ୟ-ଚେତନା' ଓ ଏହାକୁ ପାଠକକୁ ଗିଳାଇବା ପାଇଁ ଏକ ନୂତନ ପ୍ରଶସ୍ତି ଭୂମିକା ଲେଖିବାକୁ ହେବ । ଯାହା ହେଲା ସେବନ-ବିଧି ।

## କବିତା କଣ ?

'ଆଧୁନିକ କବିତା' ବିଷୟରେ କବି ରମାକାନ୍ତ ରଥେ ଯେଉଁ ଦାବି ଜଣାଇଛନ୍ତି ସେ ବିଷୟରେ କାହାରି ବିବାଦ ନ ରହିବାର କଥା । କବିର ଦୁନିଆ ଯେ ବାସ୍ତବତାକୁ ଏକ ଅଲଗା ଦୁନିଆ ଏକଥା ସମସ୍ତେ ମାନିଛନ୍ତି । ଭାରତରେ, ଗ୍ରିସରେ, ଇଉରୋପରେ, ଚୀନରେ, ଜାପାନ୍‌ରେ ସବୁଠି । କାରଣ କବିତା ପ୍ରକୃତରେ ଏକ ମିଛି ମିଛିକିଆ ଦୁନିଆକୁ ତିଆରି କରିବାରେ ହିଁ ଗଢ଼ାଯାଇଥିଲା ମନୁଷ୍ୟର ଆଦିମ ବନ୍ୟ ଜୀବନରୁ । ତେଣୁ ଏଥିପାଇଁ ଉପନିଷଦ ବା ବେଦର ଅନ୍ଧକାରର ନଜିର ଦେବା ଆବଶ୍ୟକ ନାହିଁ । ଯେତେବେଳେ ସାରା ମନୁଷ୍ୟଗୋଷ୍ଠୀର ଆଦିମ ସାହିତ୍ୟ, ପୁରାଣ, ଶାସ୍ତ୍ର, ଆୟୁର୍ବେଦ, ବିଜ୍ଞାନ, ଗାଥାର ସବୁ ଥିଲା କବିତା ସେତେବେଳେ ବି କବିତା ଥିଲା ମାୟା କି ବିଭ୍ରମ । 'କବି ଭୁଣ୍ଡି, ମେଣ୍ଢା ମୁଣ୍ଡି' ବା କବି ଯେ ସତ ମିଛ କରି କହନ୍ତି, କବିତା ଶୃଙ୍ଖଳରେ ମନ ମୋହନ୍ତି, ଏହା ତ ଆମର ଓଡ଼ିଆ କବିଙ୍କର ଅତି ଜଣାଶୁଣା ପଦଟିଏ । ଆଉ ଟିକେ ସମ୍ଭ୍ରାନ୍ତ ହେଲେ, ଏରିଷ୍ଟୋଟଲଙ୍କର ପୋଏଟିକସ୍‌ରୁ କୁହାଯାଇପାରିବ—ମହାକାବ୍ୟ ହେଲା ମିଛିମିଛିକା ଇତିହାସ, ନାଟକ ଛଳନାର ଦୃଶ୍ୟକର୍ମ; ଏପରିକି ପ୍ରେମ କବିତାରେ ଯେଉଁଠି କବି କହୁଛି 'ମୁଁ ମିତାକୁ ଝୁରି ଝୁରି ମରିଗଲି' । ସେତେବେଳେ 'ମିତା' ବୋଲି କୌଣସି ସୋହାଗିନୀ (ବା ହତଭାଗିନୀ)ର ଅସ୍ତିତ୍ୱ ବି ନଥିବ । ତେଣୁ ଗ୍ରୀକ୍‌ମାନଙ୍କ ପାଇଁ କବିତାର ସାରସ୍ୱତ ହେଲା ମାୟା ! ଏକ ଚେତନ ମାୟା । ସେଥିପାଇଁ ପ୍ଲାଟୋ ତାଙ୍କର 'ରିପବ୍ଲିକ'ରୁ ମିଛୁଆ କବିମାନଙ୍କୁ ବାସନ୍ଦ କରି ଦେଇଥିଲେ ।

କବି କଲରିଜ ମଧ୍ୟ ଠିକ୍ ଏହି କାରଣରୁ କହିଥିଲେ ଯେ କବିତାର ଦୁନିଆ ହେଉଛି ଏକ ଅବାସ୍ତବ ଦୁନିଆ । ଏଠାରେ ସବୁ

କଥାକୁ ବିଶ୍ୱାସ କରିବାର କଥା ଉଠେ ନାହିଁ । ଏଇଠି ଆପଣାର ଅବିଶ୍ୱାସକୁ ମନେ ମନେ ଭୁଲାଇ ଦେଇ ପାଠକ ପ୍ରବେଶ କରିବା ଉଚିତ । ତାହା ହିଁ ସେହି ମୁହୂର୍ତ୍ତ ଲାଗି କାବ୍ୟକ ଆତ୍ମା ବୋଲି ଧରି ନେବାକୁ ହୁଏ ।

A willing suspension of disbelief which for the moment constitutes poetic faith ରବି ଠାକୁରଙ୍କ ଭଳି ରୋମାଣ୍ଟିକ କାବ୍ୟଲେଖାଳୀ ମଧ୍ୟ କହିଛନ୍ତି "କବିତା ଅଚିନ୍ତ୍ୟମୟ, ସଙ୍ଗୀତ ଅନିର୍ବଚନୀୟ ।" ଯାହା ଚିନ୍ତା କରାଯାଇପାରେ ନାହିଁ—ଅର୍ଥାତ ଯାହା ସଂସାରରେ କୁହାପି ଦେଖିବାକୁ ମିଳେ ନାହିଁ, ତାହା ହିଁ କବିତା ।

ବିବାଦ ଏହିଠାରେ ଯେ ଆଧୁନିକ କବିତାର କେତେକ ପ୍ରବକ୍ତାଙ୍କ ମତରେ ରୋମାଣ୍ଟିକ କବିତାର ଯୁଗ ଶେଷ ହୋଇଛି । ଓଡ଼ିଆ ସାହିତ୍ୟରେ ସେ କବିତାର ଭବିଷ୍ୟତ ନାହିଁ । ତେଣୁ ରାଧାନାଥୀ କବିତା-ଠାରୁ ଆରମ୍ଭ କରି ଏପର୍ଯ୍ୟନ୍ତ ବିଦଗ୍ଧ ପାଠକମାନେ କବିତା ବୋଲି ଯାହା ବୁଝୁଛନ୍ତି ତାହାର ଦିନ କାଳ ଆଉ ନାହିଁ । ସେ କବିତାମାନଙ୍କରେ ବକ୍ତବ୍ୟ ଥିଲା ମୁଖ୍ୟ ଆଉ ତାର ଆଙ୍ଗିକ, ରୂପକଳ୍ପ, ଅଳଙ୍କାର ଥିଲା ବକ୍ତବ୍ୟକୁ ସ୍ପଷ୍ଟ ଓ ଉଜ୍ଜ୍ୱଳ କରିବାର ଉଦ୍ଦେଶ୍ୟରେ ; କିନ୍ତୁ ଏବର କବିତା ଅର୍ଥାତ୍ ଆଧୁନିକ କବିତା ହେଲା କହିବାର କୌଶଳରେ, ବୁଦ୍ଧି ଚାତୁର୍ଯ୍ୟରେ ମହୀୟାନ; ତେଣୁ ଏହି ଆଧୁନିକ କବିତାର ବ୍ୟଙ୍ଗ, ଶ୍ଳେଷ ଓ ଗାଣିତ ଯୁକ୍ତି ହେଲା ପ୍ରଧାନ । ତେଣୁ କ'ଣ ଘଟିଛି ? —

> "ରୋମାଣ୍ଟିକ କବିତା ପରି ଏହି କବିତାଗୁଡ଼ିକରେ କେବଳ କବିର ବ୍ୟକ୍ତିତ୍ୱ ପ୍ରକାଶ ପାଇ ନାହିଁ; ବରଂ ଏକ ନିର୍ଦ୍ଦିଷ୍ଟ ମାଧ୍ୟମରେ କବିର ବହୁ ବିଭିନ୍ନ ଧାରଣା ଓ ଅନୁଭୂତିର ପରିଣତ ସମନ୍ୱୟ ଘଟିଛି ଓ ଏହି ସମନ୍ୱୟର ଗଭୀରତା ଘନିଷ୍ଠତା ଯୋଗୁ ହିଁ ଏହି କବିତାଗୁଡ଼ିକ ଏକ ନୂତନ କାବ୍ୟରୁ ଆବେଗର ସ୍ପଷ୍ଟ ପରିଚୟ ମିଳେ ।"

ପୁଣି

> "ବିଭିନ୍ନ ଅନୁଭୂତିର ଏହି ସମନ୍ୱୟ ସାଧନ କରିବା ଖୁବ୍ କଷ୍ଟ; କିନ୍ତୁ ଏହି ସମନ୍ୱୟ-କ୍ଷମ କବିମାନସକୁ କାବ୍ୟରେ ପ୍ରକାଶ କରିବା ଆହୁରି କଷ୍ଟକର ।"

କେବଳ ସେତିକି ନୁହେଁ, ପ୍ରବକ୍ତା ଇଂରେଜ ମହାକବି ଏଲିୟଟ୍‌ଙ୍କଠାରୁ ଉଦ୍ଧାର କରି କହିଛନ୍ତି ଯେ ଏହାକୁ କୁହାଯାଉଛି

ଇନ୍ଦ୍ରିୟାନୁଭୂତିର ସମନ୍ୱୟ। କିଛି ଦୂର ପରେ ଉକ୍ତ ଭୂମିକାରେ ପ୍ରବକ୍ତା କହିଛନ୍ତି—

"ଏହାର ନୂତନତା କେବଳ କାବ୍ୟ-ଆବେଗ, ଆଙ୍ଗିକ ବା ଶୃଙ୍ଖଳାରେ ସୀମାବଦ୍ଧ ନୁହେଁ; କାବ୍ୟ ଅନ୍ତର୍ନିହିତ ଦୃଷ୍ଟିଭଙ୍ଗୀ ମଧ୍ୟ ଓଡ଼ିଆ କବିତାରେ ଅଭିନବ। (ଯତୀନ୍ଦ୍ର ମୋହନ ମହାନ୍ତି—'ନୂତନ କବିତା'ର ଭୂମିକା)

ଉଭୟ ରମାକାନ୍ତ ରଥେ ଓ ଯତୀନ୍ଦ୍ର ମୋହନ ମହାନ୍ତି ଏଲିଏଟଙ୍କୁ ଆଦର୍ଶ କରି ମାନିଛନ୍ତି। ଆଜି ବି ଯେଉଁମାନେ ଏହି 'ଆଧୁନିକ' ପଙ୍ଗତରେ ବସିବାର ଭାଜନ ନୁହନ୍ତି, ସେଭଳି ବହୁ ସାଂପ୍ରତିକ କାଳର କବି ଏହି ସମନ୍ୱୟ କଥାଟାକୁ କହିଛନ୍ତି (ନୃସିଂହ କୁମାର ରଥ, ଛବି ଓ ଗ୍ରୀଷ୍ମ)। ତେବେ ତାଙ୍କ କ୍ଷେତ୍ରରେ ସମନ୍ୱୟଟା ଟିକିଏ ନିରସିଆ ଅର୍ଥାତ୍ ଏଥିରେ କୁତ୍ସିତ ଓ କଦାକାର ସଙ୍ଗେ ସୁନ୍ଦରର ସମନ୍ୱୟଟା ସେ ଦର୍ଶାଇଛନ୍ତି। ତେବେ ବି ମନେ ହେଉଛି ଏ 'ସମନ୍ୱୟ' ବା 'Unification of Sensibility' ଗୋଟାଏ ବଡ଼ ସିଂହଦ୍ୱାର। ଏଠାକୁ ନ ଗଲେ ଓ ଏହାର ଭିତରେ ପ୍ରବେଶ ନ କଲେ ଓଡ଼ିଆ କବିତାର ଭବିଷ୍ୟତ ନାହିଁ।

## ସମନ୍ୱୟ ଓ ବିଚ୍ଛେଦ

ଏକାବେଳକେ ହଜାର ହଜାର ଇନ୍ଦ୍ରିୟାନୁଭୂତିକୁ ସମନ୍ୱୟ କରି ତାହାକୁ ଆବେଗ, ଶୃଙ୍ଖଳା, ଆଙ୍ଗିକରେ ଚଉଡ଼ି ଦେବାର ଏ ଯେଉଁ ଶିଳ୍ପକର୍ମ ତାହା ଏଥିପୂର୍ବରୁ ଓଡ଼ିଆ ଭାଷାରେ ହୋଇଛି ନା ନାହିଁ—ଗୋଟିଏ ଉଦାହରଣ ଆମର ପିଲାଦିନର ଖେଳଗୀତରୁ ନିଆଯାଉ—

ଉଦୁଦୁମା, ତାଳଗୋଟମା, ତାଳ ପାଚୁରାଣି, ପିତଳ ସମା, ଆଗେ କେ, ପଛେ କେ, ରାମଜେନାଙ୍କର ଭାଇ ସେ, ରାମଜେନାଙ୍କର ଭାଇ ମଲା, ଉକତ ହାଣ୍ଡିଏ ଭାସିଗଲା, ଉମୁଦୁମ୍ ଖଇରକାଢ଼, ରାଜା ବିଜେ କଲେ ମହାବଳ ହାତୀ, ମହାବଳ ହାତୀ ସେ ଗରୁଡ଼ ଖମ୍ବ, ଲୁଲୁଯାଉ ଥାଏ ଦମ୍ଭ ଦମ୍; କୁଅମୂଳେ ତେଲଘଡ଼ି, ବାଘଜେଜା ଗେଲ୍କରେ। ଆମ୍ବଟିଏ ଖାଉଁ ଖାଉଁ କୋଇଲିଟିଏ କଷା, କି ମାଡ଼ ମାଇଲୁ ଭାଇ ଗୁରକୋଣିଆ ପଶା—

ପିଲାଦିନେ ବିଚାରିଥିଲି ଏ କବିତା ନିରର୍ଥକ। ଏହା ସମାଜ ସହିତ ସମ୍ପର୍କରହିତ ମିଛିମିଛିକା ଶବ୍ଦର ଫୁଲଝରି। ଏବେ ଆଧୁନିକ କବିତାର ନୂତନ ବ୍ୟାଖ୍ୟାନ ଶୁଣି ଏହାର ଭିତରକୁ ଗଭୀର ଭାବରେ ପ୍ରବେଶ କରିବାକୁ ହେବ। କାରଣ ଉଦୁଦୁମା ଅର୍ଥ ମାଡ଼ର ସଙ୍କେତ;

ତାଳଗୋଛମା ହେଉଛି ବିଧା, ତାଳ ପାହୁଗୁଣି ପିତଳ ସମା ହେଲା ଚଣକଲ୍ପ—ହୁଏତ ମାଡ଼ ପିତ୍ତଳ ଗୋବ ଥିବା ବାଡ଼ର ଠେସାରେ ମରିଯାଉଛି···କିଏ ମାଡ଼ ଖାଇଲା ?···ଗ୍ରାମଜେନାଙ୍କର ଝିଅ···ଆଗ ଲୋକ ବୋଧ ହୁଏ ବଞ୍ଚିଗଲା···ଇତ୍ୟାଦି ଇତ୍ୟାଦି ।

ତେବେ ଏଭଳି ଏକାବେଳକେ ଯଦି ଶହ ଶହ ବିଖଣ୍ଡିତ ଅନୁଭୂତିର ସମନ୍ୱୟ ଘଟେ ଓ ତାହାକୁ କବିତାର ରୂପକଳ୍ପ ଓ ଆଙ୍ଗିକ ଓ ଆବେଗ ଦେଇ ବାନ୍ଧି ଦିଆଯାଏ, ତେବେ ସେଥିରୁ ଆଉ କିଛି ନମିଳୁ ଅନ୍ତତଃ ପାଠକକୁ ଧାରଣା ମିଳିବ ଯେ କବି ଜଣକ ବଡ଼ ପାରିବାର ଓ ତାଙ୍କୁ ଏକାବେଳକେ ଦଶଟା ଟିକଟ କାଟି ଦଶଟା ଗାଡ଼ିରେ ଚଢ଼ିଆସେ । ତେବେ ଆମେ ତାଙ୍କୁ କେଉଁ ଗାଡ଼ିରେ ଖୋଜିବୁ ତାହା ହେଲା ସମସ୍ୟା ।

ଏତେ ଦୁଃଖ କାହିଁକି ପଡ଼ୁଛି ? କବିତାକୁ କୌଣସି କାଳେ କେହି ଅନ୍ୱୟ କରି ପଢ଼ୁ ନ ଥିଲା । ଅନ୍ୱୟ କରି ତାହାର ଭାବାର୍ଥ ବୁଝିବା ପାଇଁ ସ୍କୁଲ କଲେଜରେ ଯେଉଁ ଚେଷ୍ଟା ହୁଏ ତାହା କବିତାକୁ ହତ୍ୟା କରିବା ସଙ୍ଗେ ସମାନ । କବିତାର ଭାଷା ଥିଲା ଶବ୍ଦରେ । ଭାବରେ ନୁହେଁ । ବିଭିନ୍ନ ଶବ୍ଦ ପଛରେ ଯେଉଁ ବ୍ୟଞ୍ଜନା ତାହାହିଁ କବିତାକୁ ବ୍ୟକ୍ତ-ଠାରୁ ଅବ୍ୟକ୍ତର ଦିଗନ୍ତକୁ ନେଇ ଯାଉଥିଲା । କବିତାର ଅର୍ଥ ବୁଝିବାକୁ ଚେଷ୍ଟା କଲେ ଫୁଲକୁ ଛିଣ୍ଡାଇ ତାହାର ସୁବାସର ସ୍ଥାନ ନିରୂପଣ କଲାଭଳି ହୁଏ । ତେଣୁ କବିତା ଅନୁବାଦ-ସାପେକ୍ଷ ନୁହେଁ, କବିତା ଯୁକ୍ତିଶାଣିତ ନୁହେଁ, କବିତା ହେଉଛି ଛନ୍ଦୋବଦ୍ଧ, କବିତା ଅସାଙ୍କେତିକ, (Non-Symbolic), କବିତା ହେଉଛି ସାକାର, କବିତା ସାରସ୍ୱତର ନିର୍ଯ୍ୟାସରେ ଅନନ୍ୟ, ଏକଥା ପ୍ରତ୍ୟେକ କାବ୍ୟରସିକ ଓଡ଼ିଆ ଅଧିକେ ଜାଣିଥିଲା । ଏବେ ଏହି ଆଧୁନିକ କବିତା ଅମଳରେ ଆମକୁ ବାରମ୍ବାର କୈଫିୟତ ଦେବାକୁ ଓ ଭୂମିକା ଲେଖିବାକୁ ପଡୁଛି ଠିକ୍ ଯେମିତି ପାଲାଗାୟକକୁ ଭଞ୍ଜୀୟ ଗୀତ କବିତାର ଭାବାର୍ଥ ବୁଝାଇବାକୁ ପଡ଼େ ! ଅର୍ଥାତ୍ 'ଆଧୁନିକ' କବିର ଅତ୍ୟଧିକ କାବ୍ୟକ୍ଷମତା ଯୋଗୁଁ କବିତାର ସବୁ କବିତାଗୁଣର ସନ୍ନିପାତ ହୋଇ ଯାଇଛି ।

## କବି ଚେତୁରା !

ରଷା ହୋଇଛି ଯେ ଓଡ଼ିଶାର 'ଆଧୁନିକ' କବିମାନେ କେବଳ ଇଂରେଜି ଭାଷା ଜାଣନ୍ତି । ବୁର୍ଜୋୟା-ସାମ୍ରାଜ୍ୟବାଦୀ ଦେଶମାନଙ୍କର

ଆଉ କେଉଁ ଭାଷା ଯଦି ଓଡ଼ିଆ କବିଏ ଜାଣିଥାଆନ୍ତେ ତେବେ ତ ଆଉ ରକ୍ଷା ନ ଥିଲା । ବିଶେଷତଃ ଫରାସୀଭାଷାର ପାର୍ନାସାର୍ସ୍, ସିମ୍ବଲିଷ୍ଟ, ଫିଉଚରିଷ୍ଟ ଓ ସୁରରିଅଲିଷ୍ଟ ନାମକ ଢାଁସବୁ ଇଂରାଜୀର ପ୍ରତିଫଳିତ ଧ୍ୱନିରେ ଓଡ଼ିଆ କବିମାନେ ଶୁଣିଛନ୍ତି । ଯଦି ସତକୁ ସତ ସେମାନେ ସେହି କବିମାନଙ୍କୁ ସେମାନଙ୍କର କବିତାର ବିଚିତ୍ର ହରଫଙ୍ଗୀ କାଚଘରେ ଭେଟି ଥାଆନ୍ତେ, ତେବେ ତ ଆଉ ଓଡ଼ିଆ ପାଠକର ଶାହି ନଥାନ୍ତା । କାରଣ ଏଲିଏଟ୍ ତ ସେହି ସୁରରିଆଲିଷ୍ଟମାନଙ୍କର ଏକ କ୍ଷୀଣ ପ୍ରତିବିମ୍ବ । ଆପଣାର ଜନ୍ମଭୂମି ମାର୍କିନ ମୁଲକର ହାର୍ଭାର୍ଡ଼ରେ ଉଣେଇଶ ବର୍ଷ ବୟସର ଏଲିଏଟ୍ ପ୍ରଥମେ ଇଂରାଜି ସମାଲୋଚକ ଆର୍ଥର ସିମନସ୍‌ଙ୍କର 'ସାହିତ୍ୟରେ ସିମ୍ବଲିଷ୍ଟ ଆନ୍ଦୋଳନ' ନାମକ ବହି ପଢ଼ି ବୋଦଲେଆରଠାରୁ ମାଲର୍ମେଙ୍କ ଯାଏ ସମୁଦାୟ ଫରାସୀ କବିକୁଳଙ୍କ ଦ୍ୱାରା ଆକୃଷ୍ଟ ହେଲେ । ଏମାନଙ୍କ ଭିତରେ ଜୁଲସ୍ ଲାଫୋର୍ଗ ହେଲେ ତାଙ୍କର ଦ୍ରୋଣଗୁରୁ ; ତେଣୁ ଏଲିଏଟ୍ ଲେଖିଛନ୍ତି—

> **"୧୯୦୮ ବା ୧୯୦୯ ବେଳେ ଯେଉଁ ଆଙ୍ଗିକରେ ମୁଁ ଲେଖିବାକୁ ଆରମ୍ଭ କଲି ସେଗୁଡ଼ିକ ଲାଫୋର୍ଗ ଓ ଶେଷକାଳର ଏଲିଜାବେଥୀୟ ନାଟକର ଅଧ୍ୟୟନର ଫଳ । ମୁଁ ଜାଣେ ନାହିଁ ଆଉ କିଏ ଠିକ୍ ସେହି ପଏଣ୍ଟରୁ ଯାତ୍ରା ଆରମ୍ଭ କରିଛନ୍ତି ।"**

ଏକଥା ଅତି ସ୍ପଷ୍ଟ ଏଲିଏଟ୍‌ଙ୍କର କବି-ଜୀବନର ଆରମ୍ଭ ଶଙ୍କୁ ବିନ୍ଦୁ ହେଲେ ଲାଫୋର୍ଗ । କାରଣ 'ପରବର୍ତ୍ତୀ କାଳର ଏଲିଜାବେଥୀୟ ନାଟକ' ତାଙ୍କର କବିତା ରାଜ୍ୟରେ 'ଜେରୋନ୍‌ସନ୍' ଲେଖା ହେବାଯାଏ ପ୍ରବେଶ କରି ନ ଥିଲେ । 'ଜେରୋନ୍‌ସନ' ହେଉଛି ଏହି ଲାଫୋର୍ଗ ଅନୁଭୂତିର ଦଶବର୍ଷ ପରର ଲେଖା ।

ତେବେ ଏକଥା କ'ଣ ଧରିନେବା ଯେ ଏଲିଏଟ୍ ଫରାସୀ ସୁର-ରିଅଲିଷ୍ଟ, ସିମ୍ବଲିଷ୍ଟମାନଙ୍କ ପ୍ରଭାବରେ ପଡ଼ି କୁଳରୁ ଗଲେ, ଅର୍ଥାତ୍ ଆପଣାର ମାର୍କିନ ଓ ପରବର୍ତ୍ତୀ ଇଂରାଜି ଐତିହ୍ୟ ହରାଇ ବସିଲେ (ଯେଉଁ ଐତିହ୍ୟ କବିତାକ୍ଷେତ୍ରରେ ବି ସାମାନ୍ୟ ନ ଥିଲା ! ) ଓ ତାହା ସାଙ୍ଗେ ସାଙ୍ଗେ କ'ଣ ଧରି ନେବା ଯେ ଓଡ଼ିଶାର ଏତେଗୁଡ଼ାଏ ଖୁବ୍ ଆବେଗଦୀପ୍ତ, ପ୍ରାଚୁର୍ଯ୍ୟପ୍ରାଣ କବି ଯଥା ରମାକାନ୍ତ ରଥ, ଗୁରୁପ୍ରସାଦ ମହାନ୍ତି, ସୀତାକାନ୍ତ ମହାପାତ୍ର, ସୌଭାଗ୍ୟ ମିଶ୍ର ଓ ତାଙ୍କଠାରୁ ଟିକିଏ ପରମ୍ପରାଶ୍ରୟୀ ବିନୋଦ ନାୟକ, ନୃସିଂହ କୁମାର ରଥ ଓ ଚିନ୍ତାମଣି

ବୈଦେହୀ, ପ୍ରତିଭା ଶତପଥୀ, ଦୀପକ ମିଶ୍ର, ବେଣୁଧର ରାଉତ ଓ ନାଲି ଅବଧୂତ ଦଳ ଇତ୍ୟାଦି ଇତ୍ୟାଦି ପ୍ରଜ୍ଞାବନ୍ତ କବିମାନେ ସମସ୍ତେ ଏଲିଏଟ୍‌ଙ୍କ ପାଲରେ ପଡ଼ି ଓଡ଼ିଆ କୂଳରୁ ଗଲେ ? ନାଃ, ଏକଥା ଠିକ୍ ନୁହେଁ । (ଏଠାରେ ଯେଉଁମାନଙ୍କ ନାଁ ନ ଧରିଛି ସେମାନେ ମନେ ନ କରନ୍ତୁ ଯେ ସେମାନଙ୍କୁ ହତମାନ କରାଯାଇଛି । କାରଣ ଏଠାରେ ମୁଁ ଯୁକ୍ତି କରୁଛି—କବିମାନଙ୍କ ପରିଚିତି ଦେଉନାହିଁ ।)

ଏ କି କ ଭଳି କଥା ? ଯାହା କୁହାଯାଏ ଯେ 'ବାଜି ରାଉତ'ର କବି ସଚ୍ଚି ରାଉତରାୟ ପରବର୍ତ୍ତୀ କାଳରେ ପାଣ୍ଡୁର ହୋଇଯାଉଥିବା ବିପ୍ଳବୀ ତେଜର ଶେଷ-କିରଣ 'ପାଣ୍ଡୁଲିପି'ରେ ବିକୀର୍ଣ୍ଣ କରିଦେଇ 'ହାନୁମଣ୍ଡିର ଦେଶ' ବେଳକୁ 'ଆଧୁନିକ କବିତା'ର ଜନ୍ମଦାତା ଭାବରେ ଅବତାର ହୋଇଗଲେ ଓ ସେହି ଅବତାର ଫଳରେ ଯେମିତି କୁହାଯାଏ ଯେ ରାଧାନାଥଙ୍କର 'ଗ୍ରାମ୍ୟ' କାଟି ହେଲା ନାହିଁ, ରବୀନ୍ଦ୍ରନାଥଙ୍କର ପ୍ରଭାବରୁ ଉଦ୍ଧାର ହେଲା ନାହିଁ, ଠିକ୍ ସେମିତି ସଚ୍ଚି ରାଉତରାୟଙ୍କର ପ୍ରଚଣ୍ଡ ଲେଖନୀ ପ୍ରଭାବରୁ ଉଦ୍ଧାର ହେଲା ନାହିଁ । ତେଣୁ ସେହି ପ୍ରକାର କବିତା ଲେଖା ଓଡ଼ିଶାର କବିକୁଳଙ୍କର ନଲୀପେଣ୍ଟ ଓ ଗାଲମୋଚ୍ଛ ଭଳି ଫେସନ୍ ହୋଇଗଲା ! ଶୁଣାଯାଏ—ମୁଁ ନିଜେ ଶୁଣିଛି ଯେ—ସ୍ୱୟଂ ସେହି କବି ନିଜେ ଓଡ଼ିଆରେ 'ଆଧୁନିକ କବିତା'ର ଜନ୍ମଦାତା ବୋଲି ଗର୍ବିତ !

ଏଭଳି କଥା ହେଉଛି ଗୁଲଖଟି ଗପ, ସାହିତ୍ୟ ଇତିହାସର ବା କୌଣସି ଇତିହାସର କଥା ନୁହେଁ । ସମୁଦ୍ରପାଣିରେ ଦିଆସିଲି ମାରିଲେ ସମୁଦ୍ର ଜଳେ ନାହିଁ ; ପେଟ୍ରୋଲର ଗୋଟିଏ ବନ୍ଦୁରେ ଦିଆସିଲି ମାରିଲେ ତାହା ଦାଉ କରି ଜଳି ଉଠେ । ଠିକ୍ ସେପରି କାହାରି ପ୍ରଭାବ ସୂଅରେ ଯେ ପ୍ରତିଭାବନ୍ତ କବିମାନେ ଯଥା ଏଲିଏଟ୍ ବା ବର୍ତ୍ତମାନର ଓଡିଶାର ବହୁକବି (ଏମାନଙ୍କ ଭିତରେ ଯେ ଡିଟେକ୍‌ଟିଭ ଗଳ୍ପ ଲେଖାଳୀ-ସୁଲଭ ବା ସାମ୍ବାଦିକ-ସୁଲଭ ଲେଖକ ନ ଥିବେ ଏକଥା ମୁଁ କହୁନାହିଁ ; ସେମାନେ କେବଳ ବ୍ୟତିକ୍ରମ; କେବଳ ମୋର ଯୁକ୍ତିକୁ ପ୍ରମାଣ କରିବାକୁ ନିପାତନସିଦ୍ଧିର ଉଦାହରଣ) ଯେଉଁମାନଙ୍କର କାବ୍ୟକର୍ମ ଓ ଶିଳ୍ପପାଟବ ଉଚ୍ଚକୋଟୀର ବୋଲି ମାନିବାକୁ ପଡ଼ିବ, ଏମାନେ ସମସ୍ତେ ଭାସିଗଲେ—ଏକଥା ସାହିତ୍ୟ ଇତିହାସର କଥା ନୁହେଁ । ମନୁଷ୍ୟର ଇତିହାସର ଧାରା ଯେପରି ସୁସମ୍ବଦ୍ଧ କାରଣରୁ ପ୍ରବାହିତ ହୁଏ, ମନୁଷ୍ୟ ଇତିହାସର ଏକ ବିଶିଷ୍ଟ ଅଙ୍ଗ ସାହିତ୍ୟ ବି କାରଣଦୋରସ୍ତ ରୀତିରେ ପ୍ରବାହିତ ହୁଏ । ଏହି

କାରଣରୁ ଓଡ଼ିଆ ସାହିତ୍ୟ-କ୍ଷେତ୍ରରେ ଆମର ଅନୁସନ୍ଧାନ ହୋଇ ନାହିଁ କହିଲେ ଚଳେ ।

ଏକ ସମୟରେ ଆଦିମ ମନୁଷ୍ୟସମାଜରେ କବିତା ଥିଲା ସମସ୍ତ ଗୋତ୍ରର ଶିଳ୍ପକର୍ମ, ତା'ପରେ ଆସିଥିଲା ମହାକାବ୍ୟର ଯୁଗ । ତା'ପରେ କବିତାରୁ ଗଳ୍ପ, ନାଟକ, ଇତ୍ୟାଦି ଫିଟିଯାଇ ବିଭିନ୍ନ ସାହିତ୍ୟିକ ବିଭାଗ ହୋଇଯାଇଥିଲା । ଏସବୁ ସାମାଜିକ-ଐତିହାସିକ କାରଣର ଶୃଙ୍ଖଳାରେ ବନ୍ଧା । ଠିକ୍ ସେପରି ସାରଳାଦାସଙ୍କର ଦାଣ୍ଡିବୃତ୍ତରେ ମହାଭାରତ ଲେଖା, ତା'ପରେ ପଞ୍ଚସଖାଙ୍କର କବିତା, ଛାନ୍ଦ, ଚଉତିଶା, ଜଣାଣ, ତା'ପରେ ଭଞ୍ଜଙ୍କର ରୀତି କବିତା, ଚମ୍ପୂ ଚଉପଦୀ, ତା'ପରେ ରାଧାନାଥଙ୍କ-ଠାରୁ ଆଧୁନିକ ଓଡ଼ିଆ ସାହିତ୍ୟର ଯୁଗ···ଏଗୁଡ଼ିକ ଆକସ୍ମିକ ବିଚ୍ଛିନ୍ନ ଘଟଣା ନୁହେଁ ବା ଏଗୁଡ଼ିକ ବିନା କାରଣରେ ଘଟି ନଥିଲା ।

ଫରାସୀ ସିମ୍ବଲିଷ୍ଟ ଓ ସୁରରିୟଲିଷ୍ଟମାନେ ଯେ ଏଲିଏଟ୍ଙ୍କର ଅଗ୍ରଦୂତ ଥିଲେ ଏହାର ବି ଐତିହାସିକ କାରଣ ରହିଛି । ତେଣୁ ଐତି-ହାସିକ କାରଣ ପ୍ରତି ଧ୍ୟାନ ନ ଦେଇ ବ୍ୟକ୍ତି ବିଶେଷକୁ କୌଣସି ଯୁଗର ପ୍ରବର୍ତ୍ତକ ବୋଲି ଚିନ୍ତା କରିବା ବାତୁଳତା ଓ ବାଳୁତପଣ । ଓଡ଼ିଆ ସାହିତ୍ୟରେ ଏବେ ଯେ 'ଆଧୁନିକ' କବିତା, ଉଦ୍ଭଟ ନାଟକ ବା ମିନି ହିପ୍ପି କ୍ଷୁଦ୍ର ଗଳ୍ପର ବନ୍ୟା ଛୁଟିଛି, ଏହାର ବି କାରଣ ରହିଛି । ଏଥିପାଇଁ କୌଣସି ବେ-ଗୁରୁ କବିକୁ ଦାୟୀ କରିବା ବା କୌଣସି ମହାତ୍ମାଙ୍କୁ କୃତିତ୍ୱ ଦେବାର ଅବୈଜ୍ଞାନିକ ପ୍ରଳାପ । ଓଡ଼ିଆ ସାହିତ୍ୟରେ ଯାହା ତାହା ନାଁରେ ଯଥା 'ରାଧାନାଥ ଯୁଗ', 'ଭଞ୍ଜଯୁଗ' ଇତ୍ୟାଦି କରି ଯେଉଁ ବିଭାଗ କରାଯାଇଥାଏ ତାହା ଏଭଳି ବାତୁଳ ବ୍ୟକ୍ତି-ପ୍ରେମର ଅବାଞ୍ଛିତ ପ୍ରମାଦ ଓ ଅବୈଜ୍ଞାନିକ ଗ୍ରାମ୍ୟତା ।

## ଦେଶ-କାଳ-ପାତ୍ର

ଯେହେତୁ ସାଂପ୍ରତିକ ସାହିତ୍ୟ ବିଶେଷତଃ 'ଆଧୁନିକ କବିତା'ର ଏହି ଫରାସୀ (କିଛି କିଛି ଇଟାଲୀୟ, ସ୍ପେନୀୟ ଓ ରୁଷୀୟ) ଓ ଶେଷରେ ଇଂରାଜି ସିମ୍ବଲିଷ୍ଟ ବା ସୁରରିୟଲିଷ୍ଟମାନଙ୍କ ବିଷୟରେ ଏତେ କୋଳାହଳ ଶୁଣାଯାଉଛି, ସେହିହେତୁରୁ ଏମାନେ କେଉଁ ପଦାର୍ଥ ଓ କିପରି ଅଙ୍କୁରି-ଥିଲେ ଏବେ ସେମାନଙ୍କର ଦାୟାଦମାନେ କ'ଣ କରୁଛନ୍ତି, ଏ ବିଷୟରେ ଟିକିଏ ଦୃଷ୍ଟି ପକାଇବା ଦରକାର । ଯୁକ୍ତି ଛଳରେ କେତେକ କହୁଛନ୍ତି

ଯେ ସାରା ବିଶ୍ୱଟା ଏବେ ଗୋଟାଏ ହୋଇଯାଇଛି; ତେଣୁ ଏବେ ଇଂରାଜୀ, ଫରାସୀ, ଆମେରିକା, ବଙ୍ଗଳା, ହିନ୍ଦି, ଓଡ଼ିଆ ଇତ୍ୟାଦି ବାଛବିଚାର ନାହିଁ । ତେଣୁ ଯାହା ଫରାସୀ ମାଟିରେ ଫଳିବ, ତାହା ବି ମହାନଦୀ ପଠାରେ ଫଳିବ, ତାହା ଭଦ୍ରମଣ୍ଡଳର ଚର୍ଚ୍ଚାରେ ବି ଫଳିବ । କିନ୍ତୁ ଏକଥା ପୁରାପୁରି ଠିକ୍ ନୁହେଁ । ବିଶ୍ୱଟା ଏକାକାର ଗୋଟିଏ ଅର୍ଥରେ ଯେ ଏହା ଏକାକାର ହେବା ଆଡ଼କୁ ଗତି କରୁଛି । ଆଉ ଗୋଟିଏ ଅର୍ଥରେ ଯେ ପୃଥିବୀର ଯେଉଁ କେତୋଟି ଅଞ୍ଚଳ ସାମ୍ରାଜ୍ୟବାଦ-ପୁଞ୍ଜିବାଦ ପଞ୍ଝାରୁ ଉଦ୍ଧାର ପାଇଛନ୍ତି ସେମାନଙ୍କୁ ଛାଡ଼ି ଦେଲେ ବାକୀତକ ସାରା ବିଶ୍ୱକୁ ସାମ୍ରାଜ୍ୟବାଦ-ପୁଞ୍ଜିବାଦର ପଞ୍ଝା ଜାବୋଡ଼ି ଧରିଛି । ସେଥିପାଇଁ ଯେଉଁମାନେ ସେହି ବ୍ୟବସ୍ଥାରେ ଲାଭବାନ୍ ଅର୍ଥାତ୍ ସାହୁକାରଗୋଷ୍ଠୀ, ସେମାନେ ଇଚ୍ଛା କଲେ ସଂସାରର ଏ କୋଣରୁ ସେ କୋଣକୁ ଯାଇ ପାରୁଛନ୍ତି । ଏଠାର ନାଟକକୁ ସେଠାର ନାଟକରେ ମିଳେଇ ସେଥିରୁ ରସ ଚାଖି ପାରୁଛନ୍ତି, ଇତ୍ୟାଦି ଇତ୍ୟାଦି କରି ପାରୁଛନ୍ତି, ସେମାନଙ୍କର ଉଚ୍ଛିଷ୍ଟରୁ ଯାହା କିଛି ବଳକା ରହି ଯାଉଛି ସେଥିରୁ ହୁଏତ କିଞ୍ଚିତ ପରିମାଣ ତଳଆ ଶ୍ରେଣୀ ମଧ୍ୟବିତ୍ତ ଜୀବିକାଧାରୀ, ବୁଦ୍ଧି-ବିଚାର-ଜୀବୀ, ଲେଖକ, ଶିକ୍ଷକ, ଡାକ୍ତର, ସାମ୍ବାଦିକ ଇତ୍ୟାଦିଙ୍କର କପାଳରେ ଯୁଟି ଯାଉଛି । କିନ୍ତୁ ଅସଲରେ ଏ ବିଶ୍ୱର ମନୁଷ୍ୟ ଗୋଷ୍ଠୀ ଆଦିମ ଗୋଷ୍ଠ ସମାଜପରଠାରୁ କେବେ ଏକ ନଥିଲା ଓ ଏବେ ବି ନାହିଁ, ତେଣୁ ଦେଶ-କାଳ ଓ ପାତ୍ର ଭେଦରେ ଏ ବିଶ୍ୱ ଏକ ନୁହେଁ—ଦେଶ ଭେଦରେ ଅନେକ; କାଳ ଭେଦରେ ଅନେକ ଓ ପାତ୍ର ଭେଦରେ ଅନ୍ତତଃ ଦୁଇ ଓ ବେଳେବେଳେ ତିନି କିମ୍ବା ଚାରି । (ଏଠାରେ ପାତ୍ର ବୋଲି କହିଲେ ସମାଜରେ ଶୋଷିତ-ଉତ୍ପାଦକ ଶ୍ରେଣୀ ଓ ଶୋଷକ-ପରାଙ୍ଗପୁଷ୍ଟ ଶ୍ରେଣୀମାନଙ୍କୁ ଗ୍ରହଣ କରାଯାଇଛି ।)

କବିତା ଆକାଶ କୁସୁମ ନୁହେଁ ତାହା ଏହି ମାଟିର ଫୁଲ, ଯେହେତୁ ମାଟି ଗୁଣେ ଋତୁ ଗୁଣେ ଫୁଲ ଠିକ୍ ସେପରି ଦେଶ ଓ କାଳ ଭେଦରେ କବିତା ଅବଶ୍ୟ ଏହି କବିତାରେ ବ୍ୟକ୍ତିଗତ କବିଙ୍କର କ୍ଷମତା ଓ ପାଠକ ଯେ ଏକ ପ୍ରଧାନ ଭୂମିକା ଗ୍ରହଣ କରିବ ଏକଥା ନିଃସନ୍ଦେହ । ଫ୍ରାନ୍ସର ସିମ୍ବଲିଷ୍ଟ ଓ ସୁରରିଅଲିଷ୍ଟ ହେଲେ ଫ୍ରାନ୍ସର ବୁର୍ଜୋୟା-କାଳର ଅପରାହ୍ଣ ବା ସନ୍ଧ୍ୟାବେଳର ଫସଲ । ବିଲାତ ସାରା ପୃଥିବୀରେ ପୁଞ୍ଜିବାଦର ବିକାଶରେ ସବୁଠୁ ଆଗୁଆ ଥିଲା ସତ କିନ୍ତୁ ବିଲାତର ବିସ୍ତୀର୍ଣ୍ଣ ସାମ୍ରାଜ୍ୟ ଯେଣୁ ସେଠାରେ ପୁଞ୍ଜିବାଦୀ ସଭ୍ୟତା ଲେଖକ, କବି, ଶିକ୍ଷକ,

କଳାକାର ପ୍ରଭୃତି ବୁଦ୍ଧିଜୀବୀଙ୍କୁ ଓ ଅନ୍ୟାନ୍ୟ କାରିଗରମାନଙ୍କୁ ଏକାବେଳକେ କାଙ୍ଗାଳ ଅବସ୍ଥାକୁ ଓହ୍ଲାଇ ଦେଇନଥିଲା । କିନ୍ତୁ ଫ୍ରାନସର ବୁଦ୍ଧିଜୀବୀ ଓ କାରିଗରମାନେ ପୁଞ୍ଜିବାଦର ବିକାଶ-ପ୍ରକ୍ରିୟାରେ ଦେଖିଲେ, ସେମାନେ କେବଳ ଧନରେ କାଙ୍ଗାଳ ହେଉନାହାନ୍ତି । ସେମାନଙ୍କର ପ୍ରତିଭାକୁ ମଧ୍ୟ ପୁଞ୍ଜିବାଦ କୌଣସି ମହତ୍ତ୍ୱ ଦେବାକୁ ନାରାଜ । କୋଟି କୋଟି ମିଟର ତିଆରି କରୁଥିବା ଲୁଗାକଳ ଯେପରି ଢାକାର ଶାଢ଼ି ବା ସମ୍ବଲପୁରୀ ବାନ୍ଧଣି କଳାଟାକୁ ଅସ୍ୱୀକାର କରେ, ସେପରି ପୁଞ୍ଜିବାଦୀ ସଭ୍ୟତା ଯେତେବେଳେ ଫରାସୀ କାରୁକର୍ମୀ କଳାକାରର ସୌମ୍ୟ ସୁଠାମ ଟେକ୍‌ନିକ୍‌କୁ ଅମଳରେ ନ ଆଣିଲା, ବରଂ ବଜାରୀ ଗୋଏନ୍ଦା ଗପ, କାମଳ ସମ୍ବାଦପତ୍ର ଅଥବା ହତ୍ୟା, ଧର୍ଷଣ, ଯୌନ-କାହାଣୀ ସମାଜରେ ସାହିତ୍ୟର ସ୍ଥାନ ଅଧିକାର କଲା; କାରଣ ତାହାହେଲା 'ଗଣ-ସାହିତ୍ୟ' । ସେତେବେଳେ ଏହି କବିମାନେ ବୁର୍ଜୋୟା ସଭ୍ୟତା ବିରୁଦ୍ଧରେ ପ୍ରତିକ୍ରିୟା ସ୍ୱରୂପ ଆପଣାକୁ ସମାଜରୁ ବିଚ୍ଛିନ୍ନ କରିଦେଲେ । ଏମାନେ ମନେ କଲେ ଯେ ଏମାନେ ସବୁ ବନ୍ଧନ ଓ ଶୃଙ୍ଖଳାରୁ ମୁକ୍ତ; କାରଣ ଏମାନଙ୍କ ମନରେ ଯାହା ଆସିଲା ତାହା ହେଲା ଏମାନଙ୍କର 'ମୁକ୍ତି' । କିନ୍ତୁ ଏହି 'ମୁକ୍ତି' ଯେ କେବଳ ଆପଣାର ହେତୁହୀନ ସମାଜ ଛଡ଼ା ସହଜଜ୍ଞାନ ନିକଟରେ ପୂରାପୂରି ବନ୍ଧନ ଏକଥା ଏମାନେ ବୁଝିଲେ ନାହିଁ । ତେଣୁ —

'In free associate in the images are controlled by the iron hand of the unconscious instints and it is, therefore, no more free than the 'thinking' of the ant.

> ମୁକ୍ତ ଚିନ୍ତାସ୍ରୋତରେ ଅଚେତନ ସହଜଜ୍ଞାନରେ ଲୌହ-କଠୋର କବଳରେ ହିଁ ରୂପକଳ୍ପଗୁଡ଼ିକ ନିୟନ୍ତ୍ରିତ ହୋଇଥାଆନ୍ତି, ତେଣୁ ଏଗୁଡ଼ିକ ପିମ୍ପୁଡ଼ିର 'ଚିନ୍ତା'ଠାରୁ ଆଉ କୌଣସି ଗୁଣରେ ମୁକ୍ତ ନୁହନ୍ତି ।

( Illusion and Reality, cland well, Page 110 )

ବୁର୍ଜୋୟା ଉତ୍ପାଦନର ଅନ୍ତର୍ବିରୋଧ ଯେତିକି ବଢ଼ିଗଲେ, ସେତିକି ତାହା ଆପଣାର ମୂଳଦୁଆକୁ ପରିବର୍ତ୍ତନ କରିଗଲେ ! ଉତ୍ପାଦନର ପଦ୍ଧତି ସେତିକି ନୂଆ ନୂଆ ଭାବରେ ପ୍ରକଟିତ ହୁଏ; ତେଣୁ କବିତା ଉତ୍ପାଦନ ପଦ୍ଧତି ବି ନୂଆ ହୋଇଯାଏ । ତେଣୁ ଆଙ୍ଗିକର ନୂଆ ନୂଆ କୌଶଳ ଦେଖାଦିଏ । ଶେଷ ଇଂରାଜ କବିତାରେ ବି ଏହାର ପ୍ରକାଶ ଘଟିଲା ଓ ତାହାର ଶ୍ରେଷ୍ଠ ଉଦାହରଣ ହେଲେ ଏଲିୟଟ୍ ସାହେବ ।

କିନ୍ତୁ ଏହା ତ ଆଉ ଚିରକାଳ ଚାଲିପାରିବ ନାହିଁ । କାରଣ ଏଭଳି ଆଙ୍ଗିକକୁ ନୂଆ ପ୍ରକାରରେ ଘଷି ମାଜି କେତେ ବାଟ ନିଆଯାଇ ପାରିବ । ଶେଷରେ ଏ ପରିସ୍ଥିତିରେ ଏକ ନୂତନ ବିସ୍ଫୋରଣ ହେବାକୁ ବାଧ୍ୟ ହେବ, ଯାହା ହେଲା କବିତାର ଆତ୍ମାର ପରିବର୍ତ୍ତନ । ତାହା ଏବେ ଇଂରାଜି କବିତାରେ ଓ ପୃଥିବୀର ବହୁ ଦେଶର କବିତାରେ ଆରମ୍ଭ ହୋଇଯାଇଛି । ଅର୍ଥାତ୍ ଆଙ୍ଗିକ ବଦଳରେ ବର୍ତ୍ତମାନ ବିଷୟବସ୍ତୁରେ ବିପ୍ଳବ ବା ପରିବର୍ତ୍ତନ ଆସିଛି; ତେଣୁ ଶବ୍ଦମାନଙ୍କର ସାମାଜିକ ତାତ୍ପର୍ଯ୍ୟରେ ବି ପରିବର୍ତ୍ତନ ଘଟିଛି । ଏବେ ବୁର୍ଜୋୟା କବିତା ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନୀ, ସ୍ପେନ ଇତ୍ୟାଦି ଦେଶରେ ନୂତନ ସାୟଂକାଳ ଭିତରେ ଗତି କରୁଛି । ଏବେ ଆଉ ସେ କାଳର ଏଲିଅଟୀୟ ଆଙ୍ଗିକପ୍ରାଣତା ନାହିଁ । ବରଂ ତାହା ସ୍ଥାନରେ ନୂତନ ବିଷୟବସ୍ତୁ ସରଳ, ସାମାଜିକ, ତାତ୍ପର୍ଯ୍ୟପୂର୍ଣ୍ଣ ଆଙ୍ଗିକକୁ ଅନୁସରଣ କରୁଛି ।

ଏ ଧାରା ଏ ପର୍ଯ୍ୟନ୍ତ ସିଧ ନାହିଁ । କାରଣ ସାମାଜିକ ପରିବର୍ତ୍ତନ, ଯୁଦ୍ଧ ଓ ବୈଜ୍ଞାନିକ ଇତ୍ୟାଦି ବହୁ ଘାତପ୍ରତିଘାତ ଭିତରେ ହିଁ ରୂପ ପାଏ; ତେଣୁ ଏହି ଧାରା ଯେ ସହଜ ସରଳରେଖାରେ ଗଡ଼ି ଚାଲିବ ତାହା ଭାବିବା ଭୁଲ୍ । ତେବେ ଏତିକି ମାତ୍ର ସତ୍ୟ ଯେ ସୁରରିୟଲିଷ୍ଟଙ୍କର ଯେଉଁ ନିର୍ଜନ ନିର୍ବେଦ ସର୍ବଜଜ୍ଞାନସର୍ବସ୍ୱ ଅଧିକାର ଥିଲା, ତାହା ଏବେ ହୁଏତ କେଉଁଠି ନୈରାଶ୍ୟବାଦୀ ଧ୍ୱଂସକ୍ରିୟାସଙ୍କୁଳ ଅଭିଯାନ ଅଥବା କେଉଁଠି ଆଗାମୀ ସମାଜର ଆବାହନ ପାଇଁ ଅଗ୍ରଦୂତ । ଏହି ଧାରା ସାରା ସଂସାରରେ ସାମାଜିକ ବିପ୍ଳବର ମୋଟାମୋଟି ବିଜୟ ପର୍ଯ୍ୟନ୍ତ ଯେ ଚାଲିବ, ଏ କଥା ସ୍ପଷ୍ଟ ।

## ଆମର ସ୍ଥିତି

ଏ ପରିସ୍ଥିତି ଭିତରେ ଆମର ସ୍ଥିତି କେଉଁଠି ? ଆମର ଓଡ଼ିଆ ସାହିତ୍ୟର ? ଏଠାରେ ସମାଜର ଉତ୍ପାଦନ ପ୍ରକ୍ରିୟା କ'ଣ ? ଓ ସେହି ଉତ୍ପାଦନ ପ୍ରକ୍ରିୟା ସହିତ ଆମର କବି, ଲେଖକ, ଗାଳ୍ପିକ, ଔପନ୍ୟାସିକ ବା ନାଟ୍ୟକାରର କି ସଂପର୍କ ?

ଏ କଥା ତ ସ୍ପଷ୍ଟ ଯେ ଆମ ଉପରେ ହଜାର ରକମର ବୋଝ । ଏଠାରୁ ସାମନ୍ତବାଦ ଏ ପର୍ଯ୍ୟନ୍ତ ଖଲାସ ହୋଇନାହିଁ । ତା ଉପରେ ଆସିଛି କୁଣ୍ଠିତ ପୁଞ୍ଜିବାଦ । ସେହି ପୁଞ୍ଜିବାଦ ସହିତ ଆସିଛି ଆଧୁନିକ

ଗ୍ୟକଚକ୍ୟ । ଏଣେ ଶଗଡ ରହିଛି, ତେବେ ଉଡ଼ାଜାହାଜଠାରୁ ରକେଟ ଯାଏ ଆସିଗଲେଣି—ସଭ୍ୟତାର ପଲସ୍ତରା ଉପରେ ରହିଛି ; ତଳେ ରହିଛି ଅତଳ କୁମ୍ଭୀପାକ । ଏଠାରେ ପ୍ରତ୍ୟେକ ଲେଖକ ଜାଣେ ଯେ ତା'ର ଗ୍ରାହକ ବା ପାଠକ ହେଉଛନ୍ତି ମୁଷ୍ଟିମେୟ । କୋଟି କୋଟି ଲୋକ, ଯିଏ ସଂସ୍କୃତିର ଆଲୋକଠାରୁ ଉହାଡ଼ରେ ରହିଛନ୍ତି, ସେମାନେ ଏବେ ବି ଆଜକୁ ଦୁଇ ଶହ ବା ଦେଢ଼ ଶହ ବର୍ଷ ତଳର ଲେଖା ବା ସେହି ଲେଖାର ପରମ୍ପରା, ସେହି ଆଙ୍ଗିକ, ସେହି ବସ୍ତୁର ଭିତରେ ଆପଣାର ସଂସ୍କୃତିର ସାଧ ମେଣ୍ଟାଉଛନ୍ତି । ଆଧୁନିକ ବୋଲି କହିଲେ ସେମାନଙ୍କ ଜୀବନରେ ଆସିଛି କୋଣାର୍କର ପ୍ରାଚୀରଗାତ୍ରର ମୂର୍ତ୍ତି ଭଳି କେତେକ ଯୌନବର୍ଣ୍ଣନାର ବହି, କିଛି କିଛି ଗୋଏନ୍ଦା ଉପନ୍ୟାସ, ରୋମାଞ୍ଚ ଲେଖା ଓ ସମ୍ବାଦପତ୍ର । ଚଳଚ୍ଚିତ୍ରରେ ଯାହା ଦେଖିବାକୁ ମିଳୁଛି ତାହା ସେମାନଙ୍କର ଜୀବନ ସହିତ ସଂଯୁକ୍ତ ନୁହେଁ । ତାହା ଯେପରି ଏକ ଅଭାବନୀୟ ଲୋଭନୀୟ ଅଫିମ ନିଶା ।

ଯେତେବେଳେ ସୁରେନ୍ଦ୍ର ମହାନ୍ତିଙ୍କ ଭଳି ଗଳ୍ପଲେଖକମାନେ ବା ଗୋପୀନାଥ ମହାନ୍ତିଙ୍କ ଭଳି ଔପନ୍ୟାସିକମାନେ ଆପଣାର ସାହିତ୍ୟିକ ରୁଚି ଆଭିଜାତ୍ୟ ଘେନି କହନ୍ତି ଯେ ସେମାନେ ଗଣର ଉପାସକ ନୁହନ୍ତି, ବରଂ ସେମାନେ ନ ଲେଖିବେ କିନ୍ତୁ ସେମାନେ ମିଛ ସାହିତ୍ୟ ଲେଖିବେ ନାହିଁ, ସେତେବେଳେ ବେଳେ ବେଳେ ମନରେ ଏହି ପଦ ମନେ ପଡ଼େ । "ଏ ଗୁମାନ କରି ଗୋପୀ ରହିପାରିବୁ କି ରେ ?" କାରଣ ସେମାନେ ଯଦି ଆପଣାର ପେଟପାଟଣା ଓ ଦାନାପାଣି ପାଇଁ ସାହିତ୍ୟକୁ ଜୀବିକା କରିବାକୁ ବସନ୍ତି, ତେବେ ଏଭଳି ଶୁଚିବାୟୁ ରହିବ ନାହିଁ । ପୃଥିବୀର ଉପନ୍ୟାସ ରାଜ୍ୟରେ କେବଳ ନୂତନ ଚେତନାରେ ଜାଗ୍ରତ ହେଉଥିବା ଜନସାଧାରଣଙ୍କର ଦେଶକୁ ଛାଡ଼ିଦେଲେ ଉପନ୍ୟାସର ଯେ ସନ୍ନିପାତ ଅବସ୍ଥା ଘୋଟିଛି, ଏହାର ପ୍ରଧାନ କାରଣ ବୁର୍ଜୋୟା ସଭ୍ୟତାର ରାତି ଆସିଯାଇଛି । ତେଣୁ ଏଠାରେ ମନୁଷ୍ୟ ଚରିତ୍ରର ମହାନତା ବା ଘଟଣାର ବିଶ୍ଳେଷଣ ଆଉ ବୁର୍ଜୋୟାର ମାପକାଠିରେ ସମ୍ଭବ ନୁହେଁ । ତେଣୁ ଓଡ଼ିଆ ଔପନ୍ୟାସିକ ବା ଗଳ୍ପଲେଖକ ହୁଏ ତ ବୁର୍ଜୋୟାର ଚରିତ୍ର ଓ ଗୁଣ ଛାଡ଼ିବ ନଚେତ୍ ତାକୁ ସମ୍ବାଦ ଓ ଟାଇମ ରିପୋର୍ଟର ସ୍ତରକୁ ଓହ୍ଲାଇବାକୁ ପଡ଼ିବ । ତେଣୁ ଓଡ଼ିଆ ଔପନ୍ୟାସିକ ବା ଗଳ୍ପଲେଖକକୁ ହୁଏତ ଗଣଚେତନା ଜାଗ୍ରତ କରିବାରେ ସାହିତ୍ୟକୁ ବ୍ୟବହାର କରିବାକୁ ହେବ, ନଚେତ୍

ସେହି 'ଗଣ'ର ଅତଳ ଗହ୍ୱରତଳର ସ୍ତରକୁ 'ନଷ୍ଟଚ୍ଛେଗୀ', 'ରସ ଯା ଗୁଳ ଯା'ଠାରୁ ଆରମ୍ଭ କରି ଶସ୍ତା ଗୋଏନ୍ଦା, ରୋମାଞ୍ଚ, ଯୌନତତ୍ତ୍ୱପନ୍ୟାସ ବଢ଼ାଇ ଦେବାକୁ ହେବ । ଅବଶ୍ୟ ସାହିତ୍ୟକୁ ସୌଖୀନ୍ କରି ଲେଖିବାକୁ ଇଚ୍ଛା ଥିଲେ ତ ତାହାକୁ ଏକ ଅବସର ବିନୋଦନର କାର୍ଯ୍ୟ ରୂପେ କରାଯାଇପାରେ (ଯେପରି ଡାକଟିକଟ ସଂଗ୍ରହ); କିନ୍ତୁ ତାହା ନିଷ୍ଠାପର ଜୀବିକାଧର୍ମୀ ସାହିତ୍ୟକର୍ମ ହେବ ନାହିଁ ।

ପଶ୍ଚିମ ଦେଶର ବୁର୍ଜୋୟା ଅବକ୍ଷୟୀ ସାହିତ୍ୟ-ମହାରଥୀଙ୍କର ଛଳନାରୁ ଉଦ୍ଧାର କରି ଆମେ ଏବେ କହିବାକୁ ଶିଖିଛୁ—

"ଏ ଦୁନିଆ ଆଜି ଗଭୀର ଭାବରେ ହଲଚଲ ଓ ବ୍ୟାଧିଗ୍ରସ୍ତ ହୋଇ ପଡ଼ିଛି । ଅବଶ୍ୟ ଯୁଦ୍ଧ ଓ ନିଷ୍ଠୁରତା ରାମାୟଣ, ମହାଭାରତ କାଳରୁ ଥିଲା, କିନ୍ତୁ ଏହି ବିଂଶ ଶତାବ୍ଦୀର ଯୁଦ୍ଧ ଓ ନିଷ୍ଠୁରତା ପୂର୍ବର ସବୁ ପ୍ରକାର ଘଟଣାଠାରୁ କେତେକାଂଶରେ ଅଲଗା । ପ୍ରଥମ କଥା ଏହି ଗଣ-ଦୁର୍ବୃତ୍ତି ବର୍ତ୍ତମାନର ଗଣସମାଜର ବିଶାଳତା ସାଙ୍ଗରେ ଟକ୍କର ଦେଲାଣି । ଏବେ ଆଉ ଯୁଦ୍ଧ ସ୍ଥାନୀୟ ନୁହେଁ, ତାହା ବିଶ୍ୱଯୁଦ୍ଧ । ଯୁଦ୍ଧ ସାମରିକ ହତ୍ୟା ନୁହେଁ, ଏହା ଏବେ ବେସାମରିକ ଗଣହତ୍ୟା ବି; ସେତେବେଳେ ପେଶାଦାର ସୈନ୍ୟ ମୂଳ-ପୋଛ ହେଉଥିଲେ, ଏବେ ଗୋଟା ଗୋଟା ସହର ନିଶ୍ଚିହ୍ନ ହେଉଛି । ବ୍ୟକ୍ତିଗତ ବ୍ୟଭିଚାର ଓ ପାଗଳ-ଜୁଲୁମ ଏବେ ବୈଜ୍ଞାନିକ ଭିତ୍ତିରେ ଗ୍ଠିତ ମଣ୍ଡଳ କାର୍ଯ୍ୟରେ ପରିଣତ ହୋଇଛି । ଦ୍ୱିତୀୟ କଥା, ଏବେ ଏହି ବାହ୍ୟଦୁର୍ବୃତ୍ତି ଆସି ଆମର ଅନ୍ତରର ଦୁର୍ବୃତ୍ତିରେ ପରିଣତ ହୋଇଛି । ଏହାକୁ ଜାଗ୍ରତ କରିଛି ମନଗହନ-ବିଶ୍ଳେଷଣ । ଅର୍ଥାତ୍ ବାହ୍ୟ ଗଣଦୁର୍ବୃତ୍ତି ଆମର ଅନ୍ତର ଭିତରେ କାର୍ଯ୍ୟ କରିବା ଜଣାପଡ଼ୁଛି । ହିଟଲରୀ ବନ୍ଦୀ-ଶାଳାରେ କଏଦୀ ହୋଇଥିବା ମନୁଷ୍ୟର ମନ ଭିତରେ ବାହାରର ଅତ୍ୟାଚାର ଓ ନୃଶଂସତା ପ୍ରତିଫଳିତ ହୋଇଛି । ଦଙ୍ଗା, ନରହତ୍ୟା ଇତ୍ୟାଦି ମନୁଷ୍ୟର ଅନ୍ତରରେ ବି ତା'ର ପ୍ରତିଫଳନ ରଖୁଛି ।"

ହେଲେ, ଏ ବାହାନା କ'ଣ ଆମର ଓଡ଼ିଶାର ଜନମାନସ ପାଇଁ ପ୍ରଯୋଜ୍ୟ ? ଏଠାରେ ହତ୍ୟା ହେଲା ପ୍ରବଳର ଦୁର୍ବଳକୁ ତିଳ ତିଳ ହତ୍ୟା; ଏଠାରେ ହତ୍ୟା ହେଲା ଆତ୍ମହତ୍ୟା, ଅଥବା ଜମିବାଡ଼ିର ଦଙ୍ଗା; ଏଠାରେ ମୃତ୍ୟୁ ହେଲା ବେକାରି, ଅନାହାରର ମୃତ୍ୟୁ । ଯଦି ଫ୍ରଏଡ଼ ସାହେବ ଭିଏନାରେ ଜନ୍ମ ନ ହୋଇ କଟକରେ ଜନ୍ମ ହୋଇଥାଆନ୍ତେ, ତେବେ ସେ ମନଗହନ-ବିଶ୍ଳେଷଣରେ ନ ପହଞ୍ଚି ଯାଇ ଅନାହାର-ମୃତ୍ୟୁର ମାନସିକ ବିକାରରେ ପହଞ୍ଚିଥାଆନ୍ତେ ! ତା' ଛଡ଼ା ଏବେ ଏ ଦୁନିଆରେ ଯୁଦ୍ଧ ଓ

ପରମାଣୁ-ବିସ୍ଫୋରିକା ଯେପରି ସତ୍ୟ, ମନୁଷ୍ୟର ମୁକ୍ତିସଂଗ୍ରାମ ମଧ୍ୟ ସେହିପରି ସତ୍ୟ । ଭିଏତ୍‌ନାମ, ପାଲେଷ୍ଟାଇନ୍, ବାଂଲାଦେଶ, ଲଓସ, କାମ୍ବୋଡ଼ିଆ, ଏପରି କି ପରମାଣୁ-ବିସ୍ଫୋରିକାର ପିତୃଭୂମି ଆମେରିକା ଓ ତାହାର ଆଘାତ ସ୍ଥଳ ଜାପାନରେ ଜନବିକ୍ଷୋଭ, ସମଗ୍ର ଏସିଆ, ଆଫ୍ରିକା, ଲାଟିନ୍ ଆମେରିକାର ଜନତାର ପ୍ରଚଣ୍ଡ ଆନ୍ଦୋଳନ ପରମାଣୁ-ଯୁଦ୍ଧ ଓ ଗଣ-ଦୁର୍ଗତିର ଅନ୍ଧାର-ପାଷାଣକୁ ଫୁଟାଇ ଏକ ନବୀନ ତାଜା ମୁକ୍ତିର ଅଙ୍କୁରକୁ ମହାଗ୍ରହରେ ପରିଣତ କରିଛି । ତେଣୁ ଏଲିୟଟ୍‌ଙ୍କ ବେଳର ହତାଶା, 'ହାହତୋଽସ୍ମି' ଭାବ ଏବେ ସଂସାରରେ ଅଛି କି ?

ଏହି ତଥାକଥିତ ହତାଶା ଉପରେ ବାହାନା କରି ଆଜି ଯେଉଁ ପ୍ରତିକ୍ରିୟାର ଅନ୍ଧଗଳିରେ ଏ ଦେଶର ବୁଦ୍ଧିଜୀବୀ ସାହିତ୍ୟିକମାନେ ଜୀବନର ଚେତନା ଓ ବିଶ୍ୱାସକୁ ନିନ୍ଦୁକତାରେ ବୁଡ଼ାଇବାକୁ ବସିଛନ୍ତି, ତାହାର ମୂଳ କେଉଁଠି ? ତାହାର ଏକମାତ୍ର ନିର୍ଦ୍ଦେଶ ହେଲା ଯଦି ଜୀବନଟା ଏଭଳି ଅନିଶ୍ଚିତ, ତେବେ ଆତ୍ମସର୍ବସ୍ୱ ହୁଅ, ସ୍ୱାର୍ଥପର ହୁଅ, ଏ ଦୁନିଆରେ କେହି କାହାର ନୁହେଁ, ଯେତେଦିନ ଯାଏ ଏ ସଂସାରର ସମ୍ଭୋଗ ଓ ରତିସୁଖରେ ମାତ, ତାହା ହିଁ ପରମ ଗତି । ଏହାକୁ ପ୍ରଚାର କରିବାର ଛଦ୍ମବେଶରେ କଳା ଓ ସାହିତ୍ୟ ବୋଲି ନାମ ଦେଇ ଆମେ ଯେଉଁ ତଥାକଥିତ 'ପ୍ରଚାରହୀନତା' ଓ ଆର୍ଟ ଆଦର୍ଶରେ ମାତିଛୁ ଏହା ଆମକୁ କେବଳ ଆଙ୍ଗିକସର୍ବସ୍ୱ ମହାକାଳଫଳ ସୃଷ୍ଟି କରିବାରେ ସାହାଯ୍ୟ କରିଛି ।

ଏକଥା ଠିକ୍, ଆଜି ଜୀବନଟା ଜଟିଳ ହୋଇ ଯାଇଛି । ତେବେ ପ୍ରଶ୍ନ ହୁଏ, ମନୁଷ୍ୟର ଜୀବନ କେବେ ଜଟିଳ ନ ଥିଲା ? ମନୁଷ୍ୟର ସର୍ଜନା କାଳରୁ ଆଜିଯାଏ ତା'ର ଜୀବନ ସଂଘର୍ଷ ଭିତରେ ଗତି କରିଛି । ପ୍ରକୃତି ସହିତ ସଂଘର୍ଷ, ତା'ପରେ ଉତ୍ପାଦନ କରୁଥିବା ଶ୍ରେଣୀ ଓ ଭୋଗ କରୁଥିବା ଶ୍ରେଣୀ ଭିତରେ ସଂଘର୍ଷ,···ଯାହାର ପରିଣାମ ସିନା ରାଜ୍ୟ, ସରକାର, ଧର୍ମ, ଦର୍ଶନ, ବିଜ୍ଞାନ, ସଭ୍ୟତା ଓ ଶେଷରେ ସାମ୍ରାଜ୍ୟବାଦ, ଉପନିବେଶବାଦ, ସଶସ୍ତ୍ର ମୁକାବିଲା ଓ ଯୁଦ୍ଧ । ତେଣୁ ସଂଘର୍ଷ-ଜଟିଳ ଏ ମନୁଷ୍ୟ ଜୀବନ ! କେବଳ ଏ ଜଟିଳତାର ଗୁଣ, ଚରିତ୍ର ଓ ପ୍ରକୋପ ବିଭିନ୍ନ ଯୁଗରେ ଭିନ୍ନ ଭିନ୍ନ । ଗ୍ରୀକ୍ ଟ୍ରାଜେଡ଼ିର ଅଜାଣତରେ ପୁତ୍ର, ଆପଣା ପିତାକୁ ହତ୍ୟା କରିବା, ତା'ର ସିଂହାସନ ଅଧିକାର କରିବା ଓ ପିତାର ସ୍ତ୍ରୀ ଅର୍ଥାତ୍ ଆପଣାର ମାତାକୁ ବିବାହ କରି ସେହି ବିବାହରୁ ସନ୍ତାନସନ୍ତତିର ଜନକ

ହେବାର ଯେଉଁ ଗଭୀର ଅନ୍ତର୍ଦାହୀ ମରଣମଙ୍ଗଳ ଧୂର୍ଣ୍ଣିବର୍ଷିକା ସୃଷ୍ଟି, ତାହାର ନାମ ତ ହେଲା ଏଡ଼ିପସ୍—ସେହି ଦାରୁଣ, ବିଦାରକ, ଛିନ୍ନଚ୍ଛିନ୍ନ ମୃତ୍ୟୁର ଦାନବୀୟ ଆଘାତର ସମ୍ମୁଖୀନ ଜୀବନଟା ଜଟିଳ ଥିଲା ନା ନାହିଁ ? ଅଥବା ହ୍ୟାମଲେଟର ବା ଲିଅର, ବା ଅଥେଲୋ ବା ମ୍ୟାକ୍-ବେଥର ଜୀବନ କ'ଣ ଜଟିଳ ନ ଥିଲା ? ଆଜିର ଜୀବନ ଯେ ଏହାଠାରୁ ପ୍ରକୋପରେ, ଚରିତ୍ରରେ, ଗୁଣରେ ଅଧିକ ଜଟିଳ, ତାହାର ଏକମାତ୍ର କାରଣ ହେଲା ଆଜି ଏ ଜଟିଳତା ନୂତନ ଶ୍ରେଣୀଚେତନାରେ ସମୃଦ୍ଧ ଜଟିଳତା । ଏ ଜଟିଳତାରେ ମନୁଷ୍ୟ ଏକାକୀ ଅସହାୟ ବାଟୋଇ ନୁହେଁ । ଚାଷୀ, ମୂଲିଆ, ଶ୍ରମଜୀବୀ, ଶିକ୍ଷକ, କିରାନି, ଅମଲା, ଡାକ୍ତର, ଇଂଜିନିୟର, ଛାତ୍ର, ଯୁବକ ଓ କୋଟି କୋଟି ପଦଦଳିତ ଜନତା ଆପଣାର ମେଣ୍ଟ ଗଢ଼ି ଏହି ସଂଘର୍ଷର ମୁକାବିଲା କରିବାକୁ ରଣାଙ୍ଗନରେ ଦଣ୍ଡାୟମାନ ହୋଇଛନ୍ତି । କଠୋର, ନିଷ୍କରୁଣ ବାସ୍ତବତା ସାଙ୍ଗରେ ଆଜି ଜୀବନଯଜ୍ଞର ମହାସମ୍ଭାରରେ ଓଡ଼ିଶା ମଧ୍ୟ ପ୍ରସ୍ତୁତ ହେଉଛି । ଏହି ସଂଘର୍ଷ କଣ ଜୀବନ ଜଟିଳତାର ସଂଘର୍ଷ ନୁହେଁ ?

## ଶିଳ୍ପ ଓ ସାହିତ୍ୟର ଭୂମିକା

ସାହିତ୍ୟ ଓ ବିଭିନ୍ନ ଶିଳ୍ପ-କଳା, ଯାହା ବା ହେଉ ନା କାହିଁକି, ଯେଉଁ ଯୁଗର ହେଉ ନା କାହିଁକି, ତଥାପି ତାହାର ଗୋଟିଏ ସର୍ବବ୍ୟାପକ ସଂଜ୍ଞା ରହି ଆସିଛି । ତାହା ନ ହେଲେ, କଳାର ଅସ୍ତିତ୍ୱ ନିରର୍ଥକ । ସେହି ସଂଜ୍ଞାଟି ହେଲା "All art is communication" ( Tolstoy ). "ସମସ୍ତ କଳା ହେଉଛି ବାର୍ତ୍ତାପ୍ରେରଣ" । କଳାକାର ବା ଶିଳ୍ପୀଠାରୁ ପାଠକ ସମାଜ ପାଇଁ ହିଁ ଏହି ବାର୍ତ୍ତା । ଏହି ବାର୍ତ୍ତା ବା ଉଦ୍‌ଘୋଷଣା ଯଦି ସାମାନ୍ୟ ବା ମାମୁଲି, ଯଦି ଏହି ବାର୍ତ୍ତା ଅତି ନିକୃଷ୍ଟ ତେବେ ତାହା ଦୁଇଟି କାରଣ ଉପରେ ନିର୍ଭର କରିଥାଏ । ଗୋଟିଏ କାରଣ ହେଲା ବାର୍ତ୍ତାର ଆଙ୍ଗିକ ଓ ମାଧ୍ୟମ ଏପରି ଅଗଭୀର ଯେ ତାହା ପାଠକ ମନରେ ଆଲୋଡ଼ନ ସୃଷ୍ଟି କରିପାରେ ନାହିଁ; ତାହା ପାଠକକୁ ଅଚ୍ଛେଦ୍ୟ ଭାବରେ ବାନ୍ଧି ରଖିପାରେ ନାହିଁ । ଦ୍ୱିତୀୟ କାରଣଟି ହେଲା, ଯାହା ମଧ୍ୟ ସମାନ ଭାବରେ ମୁଖ୍ୟ କାରଣ—ସେହି ବାର୍ତ୍ତା ଅତ୍ୟନ୍ତ ବ୍ୟକ୍ତିଗତ, ଅତ୍ୟନ୍ତ ମାମୁଲି-ସାଧାରଣ । ତାହାକୁ ଯେତେ ସୁନେଲି ରୁପେଲି ପୁଟ ଦେଲେ ବି ତାହା ଏକ ଧନ୍ଦା

ଫାଳ—ତାହା ପାଠକର ହୃଦୟ ବା ମସ୍ତିଷ୍କ ବା ମନରେ (ଶିଳ୍ପକଳାର ବର୍ଗ ଅନୁଯାରେ) ଆଘାତ କରେ ନାହିଁ ।

ଓଡ଼ିଆ ସାହିତ୍ୟ ଭିତରେ ଆଜି ଉଭୟ ସଙ୍କଟ । ତେବେ ଦ୍ୱିତୀୟ କାରଣର ସଙ୍କଟ ଯଦିଓ ବେଶି, ଅର୍ଥାତ୍ ଓଡ଼ିଶାରେ ଜନଆନ୍ଦୋଳନର ଆଶାବିଶ୍ୱାସର ନୂତନ ଚେତନାର ଉତ୍ତାଳ ତରଙ୍ଗ ଏ ପର୍ଯ୍ୟନ୍ତ ଶିଖରକୁ ଉଠି ନାହିଁ, ତଥାପି ଏହାର ସାଥେ ସାଥେ ସେହି ଜନତାର ଉତ୍ତାଳ ତରଙ୍ଗର ଭାଷ୍ୟକାର, ଗୁରଣ, ଜୟଗୀତିକାର, ପ୍ରୋତ୍ସାହକ ତାଙ୍କର ପୁରାତନ ସାବେକ ଆଙ୍ଗିକ ହତିଆର ଧରି ସେହି ତରଙ୍ଗର ସଂଘର୍ଷକୁ ସାହାଯ୍ୟ କରୁଛନ୍ତି । ସେମାନଙ୍କର ଆଙ୍ଗିକ ପୁରୁଣା ହତିଆର ଅତି ବିହଘଷା ବା ଅଳ୍ପ ବିହଘଷା; ତଥାପି ଜନସାଧାରଣ ସେହି ଆଙ୍ଗିକ ସହିତ ପରିଚିତ । ବେଳେ ବେଳେ ସେହି ଆଙ୍ଗିକ-ଫାନ୍ଦରେ ଆଜିର ଉଦ୍ଦାମ ଜୀବନଲକ୍ଷ୍ମ ଧରୁ ନାହିଁ । ଆଙ୍ଗିକ ତାହାକୁ ଧରି ରଖିବାକୁ ଅସମର୍ଥ; ବେଳେ ବେଳେ ସେଥିପାଇଁ ସେହି ଆଙ୍ଗିକ କେବଳ ପୁରାତନ ଶୀତଳ ପ୍ରତିକ୍ରିୟାକୁ ଧରି ରଖି ଜନତାକୁ ମୋହମୁଗ୍ଧ କରୁଛି ବା ଅନ୍ଧର ଗୋକ୍-ଠୋକ୍ ଭାଷାରେ ମୋହଗ୍ରସ୍ତ କରିବାକୁ ଚେଷ୍ଟା କରୁଛି । କିନ୍ତୁ ଜନତା ନିଜ ଅଭିଜ୍ଞତାରୁ ବୁଝୁଛି—ଏଭଳି ବିଷୟବସ୍ତୁ ତାର ପଥ୍ୟ ନୁହେଁ, ଖାଦ୍ୟ ନୁହେଁ । ତଥାପି ଏହା ତାହାର ପରିଚିତ ଆଙ୍ଗିକର ମାଧ୍ୟମରେ ଆସିଛି । ତେଣୁ ସେ ଯାହା ପାଉଛି, ତାହା ଗ୍ରହଣ କରୁଛି ଓ ଅଗ୍ରସର ହୋଇଛି ।

ଅନ୍ୟ ପକ୍ଷରେ ଯେଉଁମାନେ ଆଧୁନିକ ବିଶ୍ୱର ବିଦ୍ୟା, ବିଜ୍ଞାନ, ଶିଳ୍ପ ଓ ଚେତନାର ସଂସ୍ପର୍ଶରେ ଆସିଛନ୍ତି, ସେମାନଙ୍କର ଆଙ୍ଗିକ ଏକା-ବେଳକେ ଉଦ୍ଭଟ । ଦୁଇଶହ ଲକ୍ଷ ଓଡ଼ିଆଙ୍କ ଭିତରେ ଯେଉଁମାନେ ଦି ଅକ୍ଷର ପଢ଼ିଛନ୍ତି, ସେମାନଙ୍କ ଆଖିରେ ଓ ଯେଉଁମାନେ ପଢ଼ିନାହାନ୍ତି ସେମାନଙ୍କ କାନରେ (ବା ନାଟକ ଇତ୍ୟାଦି ଛଳରେ ସେମାନଙ୍କ ଆଖିରେ) ଏହି ନୂତନ ଆଙ୍ଗିକ ପଡ଼ିନାହିଁ । ତାହାର ପରିଚୟ ସେମାନଙ୍କ ପାଖରେ ଏକାବେଳକେ ଅଜଣା । ତାହା ସେମାନଙ୍କ ପାଇଁ 'ପ୍ରବେଶ ନିଷେଧ' ଘର । ତେଣୁ ଆପଣା ଘରେ କବାଟ କିଳି ଓଡ଼ିଆ ସାଂପ୍ରତିକ ଲେଖକ ନିଜେ ଲଙ୍ଗଳା ହୋଇ ନାଚି ବା ଆପଣାର ଦର୍ପଣ ସାମନାରେ ନିଜର ବିଚିତ୍ର ଅଙ୍ଗଭଙ୍ଗୀକୁ ନାନା ବେଶ-ପୋଷାକରେ ସଜାଇ ବା ନିଜ ଭଳି କେତେଜଣ ସେହି ଶ୍ରେଣୀର ଜୀବଙ୍କୁ ରଙ୍ଗ ପାଉଡ଼ର ଶୋଭିତ କରି ଆପଣାର କାରୁକର୍ମ ଶେଷ କରୁଛି । ସେ ମନେ କରୁଛି—ଏ କାର୍ଯ୍ୟ, ଯେଣୁ ଏକ

ସୌଖୀନ କାର୍ଯ୍ୟ, ଏଥିରେ ଜୀବିକା ମିଳୁ ନାହିଁ, ତେଣୁ ଯେଉଁ ଜୀବିକାଠା ମିଳୁଛି ତାକୁ ବଜାୟ ରଖି ଏହି ଫାଣ୍ଡି-କାର୍ଯ୍ୟ ଯେତିକି ଚଳିପାରିଲ, ସେତିକି ଭଲ ।

ଅବଶ୍ୟ ଏ ସମସ୍ତ ସତ୍ତ୍ୱେ ପ୍ରଗତିଶୀଳ ସମାଜ ଚେତନା ଯେ ସାହିତ୍ୟରେ କାର୍ଯ୍ୟ ନ କରୁଛି, ସେ କଥା ନୁହେଁ । କିନ୍ତୁ ତାହା ମଧ୍ୟ କ୍ଳାନ୍ତ, ଶ୍ରାନ୍ତ; କାରଣ ଏକ ପକ୍ଷରେ ଏହି ସମାଜ ଚେତନା ଅତ୍ୟନ୍ତ ଦୁର୍ବଳ । ତାହା କେବଳ ଗରଜିଲା ମେଘ, ନିଷ୍ଫଳ ଘୋଷଣା । ଆଉ ଦ୍ୱିତୀୟରେ ହେଉଛି ନୈରାଜ୍ୟବାଦୀ, ପେଟିବୁର୍ଜୋୟା ବିଦ୍ରୋହ । ଏହାର ହାତିଆର ସୁରରିୟାଲିଷ୍ଟ ହାତିଆର ନ ହେଲେ ମଧ୍ୟ, ତାହା ମୋଟାମୋଟି ଆଧୁନିକ । ଏଥି ସହିତ ଜନସାଧାରଣ ବିଶେଷତଃ ମେହେନତି ଜନସାଧାରଣଙ୍କର ପରିଚୟ ଅଳ୍ପ । ତେଣୁ କବିତାରେ ରବି ସିଂ, ଦୀପକ ମିଶ୍ର, ଅବଧୂତ ଗୋଷ୍ଠୀ ଇତ୍ୟାଦିଙ୍କର ଓ ଉପନ୍ୟାସରେ ଗୋପୀନାଥ ମହାନ୍ତିଙ୍କର ପ୍ରଚେଷ୍ଟା ସାଧୁ ହେଲେ ବି ସଫଳତା ଲାଭ କରୁନାହିଁ । ଏମାନେ ଅବଶ୍ୟ କବିତା କ୍ଷେତ୍ରରେ ବୋଜଲେଆର । ମାଲର୍ମେ, ରିମ୍ବାଡ଼, ଏଲିୟଟ, ପାଉଣ୍ଡଙ୍କ ପାଏ ଚମକ ପାଇନାହାନ୍ତି; କିମ୍ବା ଉପନ୍ୟାସକ୍ଷେତ୍ରରେ ଜେମସ ଜଏସ ବା ଭର୍ଜିନିଆ ଉଲ୍‌ଫଙ୍କ ପାଏ ଗୋପୀନାଥ ମହାନ୍ତିଏ ପାଇନାହାନ୍ତି । କାରଣ ସାଧାରଣ ଜ୍ଞାନ ଓ ବୁର୍ଜୋୟା-ଶୋଷଣର ସ୍ପର୍ଶାତୁରତା ଏମାନଙ୍କୁ ଏଥିରୁ ବିରତ କରିଛି; ତଥାପି ଏମାନେ ସାଧାରଣଙ୍କଠାରୁ ଯେତେ ଦୂରରେ ରହିପାରନ୍ତି ସେତେ ରହିବାକୁ ଚେଷ୍ଟା କରିଛନ୍ତି । କାରଣ ପେଟିବୁର୍ଜୋୟା ଯେ ପର୍ଯ୍ୟନ୍ତ ଆର୍ଥିକ ଭାବରେ ନାଗର ଓ କାଙ୍ଗାଳ ନ ହୁଏ କିମ୍ବା ତାତ୍ତ୍ୱିକ ଓ ସାଙ୍ଗଠନିକ ଦୃଷ୍ଟିରୁ ସର୍ବହରା ଓ ପାଇଟିଆଲ ଜନତାର ସାମିଲ ନ ହୁଏ ସେ ପର୍ଯ୍ୟନ୍ତ ତାହାର ନିଜଙ୍କୁ ସ୍ୱର୍ଗର ନୈରାଜ୍ୟବାଦରେ ସେ ମସଗୁଲ ରହେ । ପୃଥିବୀର ବିଭିନ୍ନ ଦେଶର ସାହିତ୍ୟ, ଇତିହାସ ଏହାର ପ୍ରମାଣ ଦିଏ ।

ଓଡ଼ିଆ ସାହିତ୍ୟରେ ତେଣୁ ଆଜି ଏହି ତିନୋଟି ଧାରା । ଗୋଟିଏ ପରମ୍ପରାଶ୍ରୟିତା ଯାହାର ମୂଳଦୁଆ ହେଲେ ଅଚେତନ ଜନସଂସ୍କୃତି । କିନ୍ତୁ ଯେଉଁ ଜନସଂସ୍କୃତି ଜନତାର ନୂତନ ଚେତନା ଫଳରେ ଉନ୍ମୁଖ ହେଉଛି । ଏହି ଜନସଂସ୍କୃତିରେ ରହିଛି ଆଦିମ ସମାଜବାଦ ସାମନ୍ତ-ବାଦର ଚିନ୍ତା ଓ ଶିଳ୍ପରୂପ ସେହି ଚିନ୍ତା ବଦଳୁଛି ଓ ଶିଳ୍ପରୂପ ବା ଆଙ୍ଗିକ ବି ବଦଳୁଛି; କିନ୍ତୁ ଯାହା ବିଷୟରେ ଓଡ଼ିଶାର ପାଠୁଆ

ଆଧୁନିକ ସାହିତ୍ୟିକ ଏକାବେଳକେ ଉଦାସୀନ । ଯାହାକୁ ସରକାରଙ୍କର ପ୍ରଚାର ବିଭାଗ ପରିବାର ନିୟନ୍ତ୍ରଣ ଇତ୍ୟାଦି ଇତ୍ୟାଦି ସଂସ୍ଥାମାନେ ନାନାଭାବରେ କେରିକେଚର କରି ତାମସ ରେ ପରିଣତ କରିବାକୁ ଚେଷ୍ଟା କରୁଛନ୍ତି ; କିନ୍ତୁ ପାରିନାହାନ୍ତି । ଏହି ସାହିତ୍ୟଧାରା ଯେତେ ପୁରାତନ ହେଲେ ବି ଏହା ଜନତାର ପ୍ରାଣରସରେ ଉଦ୍‌ଜୀବିତ ଥିବାରୁ ଓ ତାହାଠାରୁ ଅଗତ୍ୟା ସମସ୍ତ ପରିପୁଷ୍ଟି ସଂଗ୍ରହ କରୁଥିବାରୁ ବଞ୍ଚିଛି ।

ଦ୍ୱିତୀୟ ଧାରାଟି ହେଲା ପେଟିବୁର୍ଜୋୟା ନୈରାଜ୍ୟବାଦ, ଆତ୍ମକେନ୍ଦ୍ରିଣ ସାମ୍ରାଜ୍ୟବାଦୀ-ସାମନ୍ତବାଦୀ ଓ ଏଜେଣ୍ଟ ବୁର୍ଜୋୟାର ଶୋଷଣ ଓ ଶାସନରେ ଅସ୍ଥିରତା—ତେଣୁ ବିଦ୍ରୋହ; କିନ୍ତୁ ସେ ବିଦ୍ରୋହ କୌଣସି ସଙ୍ଗଠନ ବା ଶୃଙ୍ଖଳା ଦ୍ୱାରା ପରିଚାଳିତ ହୁଏ ନାହିଁ । ତେଣୁ ସେହି ନୈରାଜ୍ୟବାଦ ଯଦିଓ ବିପ୍ଳବୀ; ତଥାପି ତାହା ବନ୍ଧ୍ୟା । କାରଣ ଏହି ବିଦ୍ରୋହୀ ଚେତନାର ଶିଖା କେବଳ ନେପଥ୍ୟ କୋଳାହଳକାରୀ ମଶାଲଧାରୀଙ୍କୁ କିଛି ଆଲୋକ ଦିଏ । କିନ୍ତୁ ଏହା କୋଟି ଜନତାର ଜୀବନପଥ ଉଦ୍ଭାସିତ କରିବାରେ ଏ ପର୍ଯ୍ୟନ୍ତ କ୍ଷମତା ଅର୍ଜନ କରିନାହିଁ । ସୁଡ଼ଙ୍ଗ ତିଆରି କରି ଜନତାର ଗର୍ଭରରେ ପ୍ରବେଶ କଲେ ଏହି ନୈରାଜ୍ୟବାଦ ପ୍ରକୃତରେ ସର୍ବହରାର ସାହିତ୍ୟରେ ପରିଣତ ହୁଅନ୍ତା । କିନ୍ତୁ ସେଭଳି ଶୃଙ୍ଖଳା—ଯାହା ହିଁ ସ୍ୱାଧୀନତାର ମୂଳ କଥା—ଗ୍ରହଣ କରିବାକୁ ଏ ନୈରାଜ୍ୟବାଦ ଏ ପର୍ଯ୍ୟନ୍ତ ହିମ୍ମତ ଅର୍ଜନ କରିନାହିଁ ।

ତୃତୀୟ ଧାରାଟି ହେଲା ଆଧୁନିକ ଆଙ୍ଗିକସର୍ବସ୍ୱତା ବା ସୁରିଅଲିଷ୍ଟ ଆଙ୍ଗୁରିଷ୍ଟ । ଯେଉଁଠି ଓଡ଼ିଶାର ଜନଚେତନାକୁ ଏକ ମାର୍ବଲ ପଥର ବୋଲି ମନେ କରି ତାହାର ଉପରେ ବିଚିତ୍ର ଧରଣର ଖୋଳି ମୂରୁଜ ଦେବାକୁ ସାହିତ୍ୟିକ ଖୁବ୍ ତତ୍ପର । ଏହା ଭିତରେ ଅସନ୍ତୋଷ ଅବଶ୍ୟ ପ୍ରବଳ ଓ ପ୍ରଚଣ୍ଡ । କିନ୍ତୁ ପିମ୍ପା ଭିତରେ ରହି ସମୁଦ୍ରର ତରଙ୍ଗରେ ଉବୁଟୁବୁ ହେଉଥିବା ମଣିଷ ପରି ଏହି ସାହିତ୍ୟିକ, କବି, ଔପନ୍ୟାସିକ ବି ଗଳ୍ପଲେଖକ, ( ବିଶେଷତଃ କବି ) ତରଙ୍ଗର ଆଘାତକୁ ଦେଖିପାରେ ନାହିଁ, କାରଣ ତା'ର Freedom is not a recognition of necessity (Engles) ଅର୍ଥାତ୍ ଯାହା ସାମାଜିକ ଆଇନର ଅନୁକୂଳ ତାହାର ଉପରେ ଭରସା ନ ରଖି ଓ ତାହାର ଉପରେ ପ୍ରଭୁତ୍ୱ କରିବାକୁ ଚେଷ୍ଟା ନ କରି ସେ ସାମାଜିକ ଆଇନର ପ୍ରତିକୂଳରେ ଯାଇ ସ୍ୱାଧୀନ ହେବାକୁ ଚାହେଁ । ସେ ଡେଣାରେ ସୀସା ବାନ୍ଧି

ଆକାଶରେ ଉଡ଼ିବାକୁ ଚାହେଁ ଓ ଏଭଳି କାର୍ଯ୍ୟକୁ ସେ ସ୍ୱାଧୀନତା ବୋଲି ଘୋଷଣା କରେ । ସେ ଆପଣାର ଶାମୁକାଖୋଳରେ ବନ୍ଦୀରହି ଆପଣାକୁ ମୁକ୍ତ ବୋଲି ମନେ କରେ; କିନ୍ତୁ ବୁଝେ ନାହିଁ ଯେ କେବଳ ଶାମୁକା ଖୋଳରେ ବନ୍ଦ ରହିଗଲେ ମୁକ୍ତାର ଉଜ୍ଜ୍ୱଳତା ଆସେ ନାହିଁ । ସେଥିପାଇଁ ବହୁ ବର୍ଷର ପ୍ରାକୃତିକ ପ୍ରକ୍ରିୟାର ସଯତ୍ନ ଶକ୍ତି ଦରକାର । ସେ ଯେଉଁ ଗଛରେ ଚଢ଼ିଛି ତାହାର ଦୁଇ ଚାରିଟା ପତ୍ର ଛିଣ୍ଡାଇ ଗଛଟାକୁ ମାରି-ଦେବାକୁ ଇଚ୍ଛା କରେ ଯଦିଚ ସେ ଜାଣେ ସେ ଗଛରେ ଚଢ଼ିଛି ଓ ଗଛଟା ଭାଙ୍ଗିଗଲେ ନିଜେ ମରିଯିବ । (ତଥାପି ସେ ମଣେ ସେ ସ୍ୱାଧୀନ) ।

## ପଥ କାହିଁ ?

ଓଡ଼ିଆ ସାହିତ୍ୟ, ଓଡ଼ିଆ ସମାଜ ପରି ଏକ ବିଚିତ୍ର ଅରମା ଜଙ୍ଗଲ । ଏଥିରେ ବହୁ ଶ୍ରେଣୀର ଚେତନା ବିଦ୍ୟମାନ । କେତେକ ପୂର୍ଣ୍ଣିମା ଚନ୍ଦ୍ର ପରି ଦିଶୁଥିଲେ ବି ଅମାବାସ୍ୟାରେ ନିଶ୍ଚିହ୍ନ ହେବେ । କେତେକ ପ୍ରତିପଦ ଚନ୍ଦ୍ରପରି ନଗଣ୍ୟ ହେଲେ ବି ଆହୁରି ନବୀନ ଦୀପ୍ତିରେ ପ୍ରୋଜ୍ଜ୍ୱଳ ହେବେ । ତେବେ ଓଡ଼ିଆ ଭାଷା ଓ ସାହିତ୍ୟ ଯେହେତୁ ଜନତାର ସଂପତ୍ତି ତାହା କୌଣସି ଶାସକ ଗୋଷ୍ଠୀର ମୌରସୀ ନୁହେଁ । ତେଣୁ ଏହା ଯେ ନିଶ୍ଚିତ ଭାବରେ ଜନତାର ଲେଖକକୁ ପ୍ରତିଷ୍ଠିତ କରିବ ଏଥିରେ ସନ୍ଦେହ ନାହିଁ । ଇଂଲଣ୍ଡରେ, ଆମେରିକାରେ, ଫ୍ରାନ୍‌ସରେ ଯେପରି ଏଲିୟଟ୍, ମାଲ୍‌ମେ ଇତ୍ୟାଦିଙ୍କର ଅମଳ ସରି ଯାଇଛି ଓଡ଼ିଶାରେ ଯେହେତୁ ଆଧୁନିକ କବିତାର ସାମାଜିକ ଭିତ୍ତି ନାହିଁ,—ଇଉରୋପର ପୁଞ୍ଜିବାଦର ଥିଲି—ତେଣୁ ତାହା ଏକ କୃତ୍ରିମ ବିଦ୍ରୋହ, ଅତଏବ ଓଡ଼ିଶାରେ ଏହାର ଅବସାନ ପର୍ବ ଇଉରୋପଠାରୁ ଆହୁରି ତ୍ୱରନ୍ତ ହୋଇଯିବ । ପଶ୍ଚିମର ବହୁ ମନୀଷୀ ଯେଭଳି ବିଖ୍ୟାତ ବାଟ୍ରାଣ୍ଡ ରସେଲ ବା ଫ୍ରାନ୍‌ସର ଜାଁ ପଲ୍ ସାର୍ତ୍ରେ, ଲୁଇ ଆରାଗଁ ଇତ୍ୟାଦି ବହୁ ଲେଖକ ବା କବି ପେଟିବୁର୍ଜୋୟା 'ସ୍ୱାଧୀନତା'ର ଅନ୍ଧ ମୋହ ଛାଡ଼ି ଶେଷରେ ସର୍ବହରାର ସଂଗଠନର ପତାକାକୁ ଆପଣାର ସମ୍ମାନର ବ୍ୟାଜ୍ ବୋଲି ଗ୍ରହଣ କରିନେଲେ . ଓଡ଼ିଆ ସାହିତ୍ୟରେ ଅଧିକାଂଶ 'ଆଧୁନିକ' କବି ଓ ଲେଖକ ସେଭଳି କରିବା ବିଚିତ୍ର ନୁହେଁ । ତା' ଛଡ଼ା ନୈରାଶ୍ୟବାଦୀ ହତାଶା, ହାହାକାର ନିଦ୍ରୂକତା ଅନ୍ଧକାର ଇତ୍ୟାଦି ଯେଉଁସବୁ ସ୍ୱାଦ୍ୟ ପେଟିବୁର୍ଜୋୟା ସିନିସିଜମ୍ ଏବେ ଖୁବ୍ ପ୍ରବଳ ପ୍ରତିତୋଫାନ୍ ଭାବରେ ବୋହୁଛି ଗୋଟାଏ ଭିଏଟନାମ ଭଳି

ତୋଫାନ୍ ବା ଏକ ଜନତାର ମହାଜାଗରଣରେ ପେଟିବୁର୍ଜୋୟାର ଏହି ସଂଶୟ ବୁଡ଼ିଆଣି ଜାଲ ହଠାତ୍ କାହିଁ ଛିନ୍‌ଭିନ୍ ହୋଇଯିବ । ପୃଥିବୀର ବୁଦ୍ଧିଜୀବୀ କୁଳ ଯେ ସବୁବେଳେ ସ୍ୱର୍ଣ୍ଣଭୀରୁ ତା'ର ପ୍ରଧାନ କାରଣ ସେମାନେ ଶେଠ ସାହୁକାର ନୁହଁନ୍ତି ଉପସ୍ଥିତ ସମାଜ ବ୍ୟବସ୍ଥା ସହିତ ସେମାନଙ୍କର ନ୍ୟସ୍ତସ୍ୱାର୍ଥର ବନ୍ଧନ ସେତେ ଟାଣ ନୁହେଁ ।

ଯେପରି ଭିଏଟନାମର ଗରିଲାଦଳ ବା ବଂଗଳା ଦେଶ ମୁକ୍ତି-ବାହିନୀ ନିତାନ୍ତ ପୁରୁଣାକାଳିଆ ବନ୍ଧୁକ ହାତଆର ଧରି ଆଧୁନିକ ମାରଣାସ୍ତ୍ର ସଜ୍ଜିତ ଆମେରିକା ବା ପାକିସ୍ଥାନୀବାହିନୀ ସଙ୍ଗେ ମୁକାବିଲା କଲେ, ଠିକ୍ ସେପରି ଓଡ଼ିଶାର ଭୂମିହୀନ, ଅର୍ଦ୍ଧଭୁକ୍ତ, ଅନାହାରୀ, ଘାଇଟିଆଳବଳ ପ୍ରାଚୀନଯୁଗର ଆଙ୍ଗିଂକର ଛନ୍ଦରେ ଆପଣାର ସଂଘର୍ଷର ଗୁଜରାଣ ମେଣ୍ଟାଉଛନ୍ତି । ଆଧୁନିକ ନନ୍ଦନଶାସ୍ତ୍ର ବୋଦ୍ଧାସ୍ତ ଅଧ୍ୟାପକ ବା ଉନ୍ନତ ଶିକ୍ଷିତ ବଡ଼ ଅଫିସର ସେମାନଙ୍କର ଜେନେରାଲ ନୁହଁନ୍ତି । ସେମାନଙ୍କର ଜେନେରାଲ ହେଲେ ସ୍ୱଭାବ କବି, ଗଳ୍ପସାଗର, ଦାଶକାଠିଆ ସଂଗୀତାଳ । ଏମାନଙ୍କର ସୀମିତ ଚେତନା ଯେଣୁ ଏମାନେ ଜୀବନ ସଂଘର୍ଷରେ ବିରାଟ ଶୋଷଣ ପାହାଡ଼ ତଳେ ସୁଡ଼ଙ୍ଗକାଟି ବୁଦ୍ଧିଜୀବୀ-ମାନଙ୍କ ସହିତ ଯୋଗସୂତ୍ର କରିବେ ନାଁ ସେମାନେ ଆପଣା ଚେଷ୍ଟାରେ ସେମାନଙ୍କର ମହାନ୍ ସାହିତ୍ୟ ଗଢ଼ିବେ, ଏହା ଓଡ଼ିଶାର ବୁଦ୍ଧିଜୀବୀଙ୍କ ଉପରେ ନିର୍ଭର କରେ । ସେମାନେ ଏବେ ବି ମନେ ରଖିବା ଉଚିତ ଯେ ରାମଚନ୍ଦ୍ର ମଙ୍ଗରାଜ ଓ ଭଗିଆ ସାରିଆଙ୍କର ଶ୍ରେଣୀସଂଘର୍ଷ ଏବେ ଅତ୍ୟନ୍ତ ଜୀବନ୍ତ ଭାବରେ ରହିଛି ଓ ଓଡ଼ିଆ ଉପନ୍ୟାସ ରାଜ୍ୟରେ ଏକ ନୂତନ ଫକୀର ମୋହନଙ୍କର ଜନ୍ମ ଏକାନ୍ତ ଆବଶ୍ୟକ ।

ଓଡ଼ିଶାର ସାହିତ୍ୟିକ ଓ ଲେଖକମାନେ କେବେ ଏକଥା ଭୁଲି ନଥିବେ ଯେ ସଂସାରର ସମସ୍ତ ମହାନ୍ ସାହିତ୍ୟିକ ଯେତିକି ଆପଣାର ସାମାଜିକ ଜୀବନର ଗଭୀରରେ ଆପଣାକୁ ଅଭିଷିକ୍ତ କରିଛି ସେତିକି ସେ କାଳଜୟୀ ହୋଇଛି । ସେକ୍‌ସପିଅର, ଦାନ୍ତେ, ମିଲଟନ, ଗେଟେ, କାଳିଦାସ ଇତ୍ୟାଦି ଅସଂଖ୍ୟ ସାହିତ୍ୟିକ ଓ କବି ହେଉଛନ୍ତି ଏହାର ଉଦାହରଣ । କାରଣ ଆପଣାର ସମାଜ ଚେତନାର ଦିବ୍ୟଦୃଷ୍ଟି ହିଁ ସାହିତ୍ୟକୁ କାଳଜୟୀ କରିଥାଏ । ଏ ବିଷୟରେ ଆଜି ନୂଆ କରି ବଖାଣିବାର ପ୍ରୟୋଜନ ନାହିଁ ଯଦିଚ ଏଦିଗରେ ବିଭିନ୍ନ ତରଫିତ

ସାହିତ୍ୟ ଏପରିକି ଓଡ଼ିଆ ସାହିତ୍ୟର ସମୀକ୍ଷା ପାଇଁ ବହୁ ଅବକାଶ ରହିଛି ।

ତେଣୁ ଆଜିର ଓଡ଼ିଆ ସାହିତ୍ୟରେ ପରମ୍ପରାଶ୍ରୟୀ ତାର ଆତ୍ମା ଓ ଆଙ୍ଗିକର ନବୀକରଣ, 'ଆଧୁନିକତା'ର ଅତାହ୍ଲା ଚେତେହେରାକୁ ଓଡ଼ିଶାର ଜନଜୀବନର ପରିଚିତ ଫର୍ମ ସହିତ ମିଳନ କରି ନୂତନ ଭାବରେ ଜନତାର ନିକଟବର୍ତ୍ତୀ ହେବାର ପ୍ରୟାସ ଓ ତୃଷ୍ଣାପୂରେ ନୈରାଶ୍ୟବାଦୀ ହତାଶା ଗ୍ରସ୍ତ ଜନତାର ଓ ସାମାଜିକ ଆଇନର ସଙ୍ଗଠନ ଭିତରେ ଆପଣାର ଶିଳ୍ପଗତିର ବିକାଶ, ପରିବର୍ତ୍ତନ, ପରିବର୍ଜନ ଓ ନବ ନବ ଉନ୍ମେଷ ନିଶ୍ଚିତ ଭାବରେ ଘଟାଇବାକୁ ହେବ ।

ଆଶାର କଥା, ଓଡ଼ିଶାର ପ୍ରତ୍ୟେକ ପ୍ରକାର ଲେଖକ ଭିତରେ ଏକ ନୂତନ ଉଦ୍ଦିପନାର ଚାଞ୍ଚଲ୍ୟ ଦେଖା ଦେଇଛି । ତେଣୁ ମନେ ହୁଏ ରାଧାନାଥଙ୍କର କବିବାଣୀ ବୋଧହୁଏ ସତହେବ !

ପାହିଲାଣି ଘୋର ତାମସୀ ରଜନୀ,<br>ଫୁଟିବ ଉତ୍କଳ ଭାଷା କମଳିନୀ ।

———

# ମୋ ଦୃଷ୍ଟିରେ ସାଂପ୍ରତିକ ସାହିତ୍ୟର ପୂର୍ବାପର

## ଅଧ୍ୟାପକ ଡ. ବେଣୀମାଧବ ପାଢ଼ୀ

ପ୍ରାଚୀନ କାଳରୁ ଆଜି ପର୍ଯ୍ୟନ୍ତ 'ସାହିତ୍ୟ' ସମ୍ବନ୍ଧରେ ନାନା ପ୍ରକାର ଆଲୋଚନା ଓ ସମାଲୋଚନା ହୋଇ ଆସୁଥିବା ସତ୍ତ୍ୱେ ତାହାର ପ୍ରକୃତ ସ୍ୱରୂପ ଓ ଲକ୍ଷଣ ଅଦ୍ୟାପି ସର୍ବବାଦୀ ସମ୍ମତ ହୋଇ ପାରିନାହିଁ । ସାହିତ୍ୟ ସୃଷ୍ଟିର ଉଦ୍ଦେଶ୍ୟ, ଉପଯୋଜନା ଓ ଆସ୍ୱାଦନ ନେଇ ଚିନ୍ତାଶୀଳବର୍ଗ ଗୋଲକଧନ୍ଦାରେ ପଡ଼ିଥିବା ବେଳେ ପୁଣି ଏକ ଅଭିନବ ବିଶେଷଣ ବିଶିଷ୍ଟ 'ଯୁବସାହିତ୍ୟର' ଉଲ୍ଲୋଳକଲ୍ଲୋଳ ଦେଶରେ ପ୍ରବାହିତ ହେବାକୁ ଆରମ୍ଭ କରିଛି । ଏହାର ଉତ୍ପତ୍ତି କଏ-କେବେ-କିପରିଭାବେ କଲା କେଜାଣି ବର୍ତ୍ତମାନ କିନ୍ତୁ ଏହା'ର ଉତ୍କଟ ବାସନା ଚତୁର୍ଦ୍ଦିଗରେ ବିଚ୍ଛୁରିତ ହୋଇପଡ଼ୁଛି । କହନ୍ତି-ଚମ୍ପାଫୁଲର ଗନ୍ଧ ଉତ୍କଟ ; କିନ୍ତୁ ତାକୁ ନାକ ଲଗାଇ ଟିକିଏ ଜୋରରେ ଆଘ୍ରାଣ କରିଦେଲେ ନାକରୁ ରକ୍ତ ନିଗିଡ଼ି ପଡ଼େ । ଅର୍ଥାତ୍ ସୁବାସ ହେଲେ ବି ଉତ୍କଟ ହେଲେ ସୁଖଦାୟକ ନୁହେଁ । ଏହି ଦୃଷ୍ଟିରୁ 'ଯୁବସାହିତ୍ୟ' କଥା ବିଚାର କଲେ ଭୟ ଲାଗେ ।

'ଯୁବସାହିତ୍ୟ'ରୁ ବୋଧ ହୁଏ 'ଯୁବଲେଖକ' 'ଯୁବ କବିତା' 'ଯୁବଚିନ୍ତା' 'ଯୁବସମ୍ପ୍ରଦାୟ' ଏପରିକି 'ଯୁବଶାସନ' ପର୍ଯ୍ୟନ୍ତ ସୃଷ୍ଟି ହୋଇ ସାରିଲଣି । 'ସାହିତ୍ୟ'ର ସ୍ୱରୂପ ଯେପରି ଅନ୍ଧାର ଘରର କଳାବିରାଡ଼ି 'ଯୁବସାହିତ୍ୟ' ସେହିପରି 'ଅଦୃଶ୍ୟ ବିରାଡ଼ିର ଅଭିନବ ରୂପ', ଅର୍ଥାତ୍ ପ୍ରଥମଟି କଳ୍ପନା ହେଲେ ଦ୍ୱିତୀୟଟି 'ଅସମ୍ଭାବ୍ୟ କଳ୍ପନା' । ଭୂତକୋଠିରେ ଭୂତ ଅଛି-ଅଛି ତ, ସମସ୍ତେ କହନ୍ତି ଅଛି—ଏଣୁ ନିଶ୍ଚେ ଅଛି । ଫଳରେ 'ଯୁବସାହିତ୍ୟ' ବି ଅଛି ।

କିନ୍ତୁ 'ପ୍ରଶ୍ନ'ଟା ଅପ୍ରିୟ ହୋଇ ଉଠିବ ନିଶ୍ଚୟ । 'ଯୁବସାହିତ୍ୟ' କହିଲେ ନିର୍ଦ୍ଦିଷ୍ଟ ଭାବେ କାହାକୁ ବୁଝାଏ ?—ଏହା ବୋଧ ହୁଏ କେହି ଜାଣନ୍ତି ନି । ଏହାର ଅର୍ଥ ନୁହେଁ, ମୁଁ ଜାଣେ । ଏହା ବି ନୁହେଁ ଯେ, ମୁଁ ଜାଣେ ନି, ଅତଏବ କେହି ଜାଣନ୍ତି ନି । କାରଣ, ଜାଣିବାର ଜିନିଷ ଏଥିରେ କିଛି ନାହିଁ । ଠେକୁଆ ସିଙ୍ଗ କେହି ଦେଖିନି— କହିଲେ କାହାର ମାନସମ୍ମାନରେ ଆଞ୍ଚ ଆସିବାର କିଛି ନାହିଁ । ଏଣୁ ଉପରୋକ୍ତ ପ୍ରଶ୍ନରେ ମାନ ଅଭିମାନ କରିବାର କାରଣ ନାହିଁ । ତଥାପି ଏ ଯେଉଁ ବାତ୍ୟା ଦୁର୍ବାରବେଗରେ ପ୍ରବାହିତ ହେଉଛି ସେ ସମ୍ବନ୍ଧରେ କିଛି ବିଚାର କରିବା ପ୍ରବନ୍ଧର ଉଦ୍ଦେଶ୍ୟ ।

'ଯୁବସାହିତ୍ୟ' କହିଲେ ତିନୋଟି ଅର୍ଥ ବୁଝାଯାଇପାରେ । 'ଯୁବଚିନ୍ତା ସମ୍ବଳିତ ସାହିତ୍ୟ' 'ଯୁବଦ୍ୱାରା ଲିଖିତ ସାହିତ୍ୟ' କିମ୍ବା 'ଯୁବ ସମାଜପାଇଁ ଉଦ୍ଦିଷ୍ଟ ସାହିତ୍ୟ' । କିନ୍ତୁ ତିନୋଟିଯାକ କୌଣସି ଦିଗରୁ ଦେଖିଲେ ସୁଦ୍ଧା ଉଦ୍ଦେଶ୍ୟର ମହତ୍ତ୍ୱ ପ୍ରକଟିତ କରି ପାରେନାହିଁ । ଦେଖନ୍ତୁ, 'ଯୁବଚିନ୍ତା' କହିଲେ ଯୁବକର ଚିନ୍ତା । ଯୁବକ ସମାଜରୁ ଅଲଗା ନୁହେଁ; କିମ୍ବା ଏହାର ଚିନ୍ତା ଅନ୍ୟାନ୍ୟଙ୍କ ଚିନ୍ତାଠାରୁ ପୃଥକ ନୁହେଁ । କାରଣ, ଯେପରି ଆଧ୍ୟାତ୍ମିକ ଚିନ୍ତା ଭୌତିକ ଚିନ୍ତାଠାରୁ ପୃଥକ୍ କିମ୍ବା ଆସ୍ତିକ ଚିନ୍ତା ନାସ୍ତିକ ଚିନ୍ତାଠାରୁ ପୃଥକ୍, ସେହିପରି ଯୁବଚିନ୍ତା ଅନ୍ୟାନ୍ୟ ସାମାଜିକ ଚିନ୍ତାଠାରୁ ତା ଛଡ଼ା ଯୁବସମାଜ ମୁନିସମାଜ ବା ଲଙ୍ଗଳିସମାଜ ପରି ଅଲଗା ସମାଜ ନୁହେଁ । ( ଏଠାରେ ଜୀବନଚିନ୍ତା ଭେଦରେ ସମାଜ ହେବା ଦର୍ଶାଯାଇଛି ) । ସେ ଜନ୍ମ ହେବା ବେଳେ ଯେଉଁ ସମାଜରେ ଥିଲା, ଶିଶୁ ଅବସ୍ଥାରେ ଯେଉଁ ସମାଜ-ମଧ୍ୟରେ ଖେଳା-ବୁଲା ହସକୌତୁକ କରି ଆସିଥିଲା ଏବଂ ଭବିଷ୍ୟତରେ ଯେଉଁ ସମାଜର ପୁରୁଖା ସଭ୍ୟ ହିସାବରେ ଶେଷଜୀବନ ଅତିବାହିତ କରିବ ସେହି ସମାଜର ସିଏ । ଏକା ସମାଜର ସେ ହେଉଛି ଶିଶୁ, ଯୁବକ ଏବଂ ପ୍ରୌଢ଼, ଏଥିରେ ଶିଶୁ ସମାଜ, ଯୁବ ସମାଜ କିମ୍ବା ପ୍ରୌଢ଼ସମାଜ ଏପରି ଭେଦସୃଷ୍ଟି ହେବା ଅନାବଶ୍ୟକ କେବଳ ନୁହେଁ, ବିପଜ୍ଜନକ । ଏଣୁ ଯୁବଚିନ୍ତା ପୃଥକ୍ ଚିନ୍ତା କହିବା ଉଚିତ ନୁହେଁ । ତାଛଡ଼ା, ଅନ୍ୟଦିଗରୁ ଦେଖିଲେ ମଧ୍ୟ ଜଣାଯାଏ ଯୁବଚିନ୍ତା ଯୌବନର ଚିନ୍ତା । ଯୌବନର ଚିନ୍ତା କଣ-ଏହା ସବୁ ଯୌବନୋତ୍ତର ବ୍ୟକ୍ତି ମନେ ମନେ ଅନୁଭବ କରୁଥିବେ । ଶିଶୁର ମନ ଯେତେବେଳେ

ଶୈଶବକୁ ପାର ହୋଇ ଯୌବନରେ ପଦାର୍ପଣ କରେ, ତାର ମନ ଆକୃଷ୍ଟ ହୁଏ ସୌନ୍ଦର୍ଯ୍ୟ ଦିଗରେ । ଯୌନ୍ଦର୍ଯ୍ୟ-ଫୁଲର ସୌନ୍ଦର୍ଯ୍ୟ, ବେଶ ପୋଷାକରେ ସୌନ୍ଦର୍ଯ୍ୟ, ଯୁବତୀର ସୌନ୍ଦର୍ଯ୍ୟ-ସବୁରେ ମନ ଟାଣି ହୋଇପଡ଼େ । ନୂଆ ନୂଆ ଅନୁଭୂତି ପାଇଁ ମନ ଉଚ୍ଛନ୍ନ ହୋଇଉଠେ । ପରିଣତିର ହିସାବ କିତାବ ନ ରଖି ଆକାଂକ୍ଷା ପୂରଣ ସକାଶେ ସେ ପ୍ରାଣବିସ୍ତାର କରି ରଖେ । ଭବିଷ୍ୟତକୁ ଗୌଣ କରି ଦେଖେ ସାମାନ୍ୟ ଲାଳସା ତୃପ୍ତି ପାଇଁ ଘର୍ଘ ଜୀବନର ଅତ୍ୟାବଶ୍ୟକ ଶକ୍ତି ସାମର୍ଥ୍ୟକୁ ଅକାତରେ ବଳି ଦେଇପାରେ । ଲଗାମଛଡ଼ା ଘୋଡ଼ାର ନ୍ୟାୟ ମନ ଯେତେ ଦିଗକୁ ପାରେ ସେତେ ଦିଗକୁ ଦୌଡ଼େ । ଯଦିଚ ଲକ୍ଷ୍ୟ ମନ୍ଦ ନୁହେଁ, ତଥାପି ବାଞ୍ଛନୀୟ ନୁହେଁ । କାରଣ ଘୋଡ଼ା ଯଦି ଲଗାମଛଡ଼ା ବେଗରେ ବଡ ରାସ୍ତାରେ ଦୌଡ଼େ ହୁଏତ ଲକ୍ଷ୍ୟ ସ୍ଥଳରେ ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ପହଞ୍ଚିଯାଇ ପାରେ (ମାତ୍ର ଅଧିକାଂଶ ସ୍ଥଳେ ଏ ସମ୍ଭାବନା ନ ଥାଏ); କିନ୍ତୁ କୌଣସି କାରଣରୁ ଗତି ଟିକିଏ ଭିନ୍ନମୁଖୀ ହୋଇ ପଡ଼ିଲେ ସବୁ ଚୂର୍ମାର୍ ହୋଇଯାଏ, ଯାହା କି ବହୁତ ଦୃଷ୍ଟିଗୋଚର ହୁଏ । ଏହା ହେଉଛି ଯୁବଚିନ୍ତାର ବୈଶିଷ୍ଟ୍ୟ । ଅର୍ଥାତ୍ ଭୁଲଭଟକା । ଦୂରେ ଦୃଷ୍ଟି କିମ୍ବା ଅନ୍ତର୍ଦୃଷ୍ଟିଶୂନ୍ୟ ସୌନ୍ଦର୍ଯ୍ୟଗ୍ରାହକତା କଲ୍ୟାଣକର ନୁହେଁ । ଏଣୁ କହନ୍ତି ଯୁବକ 'ଅପରିପକ୍ୱ' ଏହା ଘୃଣାବ୍ୟଞ୍ଜକ ଶବ୍ଦ ନୁହେଁ । ଏହାର ଅର୍ଥ 'କଞ୍ଚା', ମାନେ 'ନୂତନ'; ପରିପକ୍ୱତା ପୂର୍ବଅବସ୍ଥା । ସେହି ଚିନ୍ତାଧାରା ସମ୍ବଳିତ ସାହିତ୍ୟ 'ଅପରିପକ୍ୱ' ହେବା ସ୍ୱାଭାବିକ । ଏଣୁ ଏହି ଅର୍ଥରେ 'ଯୁବସାହିତ୍ୟ' ନାମ କରଣଟି ଉତ୍କର୍ଷବୋଧକ ବଦଳରେ ଅପକର୍ଷବ୍ୟଞ୍ଜକ ଶବ୍ଦରୂପେ ପ୍ରତିଭାତ ହୁଏ ।

ଦ୍ୱିତୀୟ ଅର୍ଥଟି କଥା ବସ୍ତୁର କରାଯାଉ ଅର୍ଥାତ୍ 'ଯୁବ' ଦ୍ୱାରା ଲିଖିତ ସାହିତ୍ୟ । ଆଗରେ କୁହାଯାଇଛି, ଯୁବକର ଚିନ୍ତା ନୂତନତା ଆଡ଼କୁ ସର୍ବଦା ଧାବିତ । ନୂଆ କଥା ଦେଖିବା, ନୂଆ ଅନୁଭୂତି କରିବା, ନୂଆ ରୂପେ ନିଜକୁ ଦେଖାଇବା, ନୂଆ ନୂଆ ଭାବରେ ମନକୁ ନିଯୋଜିତ କରିବା, ନୂଆ ନୂଆ ବନ୍ଧୁ ବନ୍ଧୁସହିତ ମିଳାମିଶା କରିବା— ଏ ସବୁ ଯୁବକର ଆତ୍ମିକ ଭାବନା । ଏଗୁଡ଼ିକ ତାକୁ ନୂଆ ପରି ଲାଗେ— ଯଦିଚ ପ୍ରକୃତପକ୍ଷେ ତାହା ନୂଆ ନୁହେଁ । ତାକୁ ତ ନୂଆ ଲାଗିବାର କଥା ; ଯେହେତୁ ସେ ସଂସାରକୁ ନୂଆ । କିନ୍ତୁ ସେହି ତାର 'ନୂଆ'କୁ 'ନୂଆ' ବୋଲି ପୁରୁଣାଠାରୁ ମଞ୍ଜୁରି ପାଇବାର ଚେଷ୍ଟା କରିବା କିମ୍ବା

ପ୍ରତିକୂଳ ପକ୍ଷେ ତାଙ୍କର ମତାମତକୁ ସ୍ୱୀକୃତି ନ ଦେବା ସ୍ପୃହଣୀୟ ନୁହେଁ । ଏହି ଉପୂରେ ଅନେକ ପରିପକ୍ୱ ଚିନ୍ତାବନ୍ତ ବ୍ୟକ୍ତି ଅନ୍ତର ସହିତ ନ ହେଲେ ସୁଦ୍ଧା ଲୋକରେ ତାଙ୍କୁ ଅପରିପକ୍ୱଚିନ୍ତାଶୀଳ ଅର୍ଥାତ୍ ଯୁବ ସାହିତ୍ୟିକ ରୂପେ କେହି ପରିଚିତ କରାଇଲେ ଆପତ୍ତି କରନ୍ତି ନାହିଁ । କିନ୍ତୁ ସେମାନଙ୍କ ଏତଦୃଶ ମନୋବୃତ୍ତି ଦେଶ ବା ସମାଜ ପକ୍ଷରେ ଶୁଭଙ୍କର ନୁହେଁ । କାରଣ, ସେମାନେ ବୁଝନ୍ତି ଯୁବକର ଦୃଷ୍ଟିଭଙ୍ଗୀ ଅପରିପକ୍ୱ, ତଥାପି ସେତିକ କହିବାର ସତ୍‌ସାହସ ତାଙ୍କର ନ ଥାଏ । ସେମାନେ କଣ ଜାଣନ୍ତି ନାହିଁ ବୁଦ୍ଧି-ବିଚକ୍ଷଣତା ଏବଂ ସାମାଜିକ ଅଭିଜ୍ଞତାର ଐକିକ ସମନ୍ୱୟ ଛଡ଼ା ସାହିତ୍ୟ ସୃଷ୍ଟି ହୁଏ ନାହିଁ, ସେମାନେ କଣ ଅନୁଭବ କରୁନାହାଁନ୍ତି ଚିରନ୍ତନ ସାହିତ୍ୟ ପରିପକ୍ୱ ଚିନ୍ତାଧାରାର ଅକ୍ଷୟ ପରିଣତି ! ସେମାନେ କଣ- ବୁଝିନାହାଁନ୍ତି 'ଯୁବ' ଶବ୍ଦ ଅପରିଣତ ଅର୍ଥର ସଙ୍କେତ ! ! ସେହି ଯୁବଚିନ୍ତାର ସ୍ୱାଭାବିକ ପ୍ରବୃତ୍ତିର ନିର୍ଯାସ ପରିପକ୍ୱ ହେବା କେତେ ଦୂର ସମ୍ଭବ କଳ୍ପନା କରିବା କଥା । ଯୁବ ବୋଲି ଯେ ତାର ବ୍ୟତିକ୍ରମ ନାହିଁ ତା ନୁହେଁ ; କିନ୍ତୁ ବ୍ୟତିକ୍ରମ ସୂତ୍ର ଧରି ସଂଜ୍ଞା ନିରୂପଣ ହୁଏ ନାହିଁ । ଏହି ସବୁ କାରଣ ଦୃଷ୍ଟିରୁ ଆମ ସାହିତ୍ୟରେ ଯୁବ ଲେଖକଙ୍କ ସଂଖ୍ୟା ଏତେ ବେଶି । ନୂଆ ସୃଷ୍ଟି ଯୁବଚିନ୍ତାର ଲକ୍ଷ୍ୟ । ଫଳରେ କିଛି ନୂଆ ଦେଖେଇଲେ ହେଲା । ଲକ୍ଷ୍ୟହୀନ ହେଇ ପଛେ ହାତର ସାହାଯ୍ୟ ନ ନେଇ ନାସିକାଦ୍ୱାରରେ ଆହାର ସମ୍ପାଦନ କ୍ରିୟାକୁ ବି ନୂଆ କୁହାଯାଇ ପାରେ । ତାହା ନୂଆଙ୍କ ପକ୍ଷେ ନୂଆ ପରି ଦେଖାଗଲେ ବି ପୁରୁଣାଏ ସେଥିରେ ମାତି ନ ଉଠିବା ଉଚିତ । କାରଣ, ସେହି ନୂଆଏ ଯେତେବେଳେ ଆସ୍ତେ ଆସ୍ତେ ପୁରୁଣା ହେବାକୁ ବସିବେ ସେମାନେ ବି କହିବେ, 'ନାଁ' ତାହା ନୂଆ ନୁହେଁ—ସେତେବେଳେ ତାହା ସେମିତି ଲାଗୁଥାଏ ! ଏପରିଥିଲାଠାରେ ଅର୍ଥାତ୍ ସେମାନେ ନିଜକୁ ନିଜେ ଭବିଷ୍ୟତରେ ସଂଶୋଧନ କରିବାକୁ ଥିଲାବେଳେ ବର୍ଷାଦିନକୁ ଛତା ଦେଖାଇବା ନ୍ୟାୟରେ ସଂଶୋଧିତବ୍ୟ ବସ୍ତୁକୁ ପ୍ରତ୍ୟକ୍ଷରେ ନ ହେଲେ ବି ପରୋକ୍ଷରେ ସମର୍ଥନ ଜଣାଇବା ଅପରାଧ ନୁହେଁ କି ? ପରକାଳରେ ଯେତେବେଳେ ଯୁବଚିନ୍ତା ପରିପକ୍ୱ ଅବସ୍ଥାକୁ ଆସିବ ସେତେବେଳେ ସେ ଆପଣାର ଅପରିଣତ ଚିନ୍ତାକୁ ସମର୍ଥନ ଜଣାଇଥିବା ପ୍ରବୀଣ ଚିନ୍ତାଶୀଳଙ୍କ ପ୍ରତି କି ପ୍ରକାର ମନୋଭାବ ସୃଷ୍ଟି କରିବ ଅନୁମାନ କରିପାରୁଛନ୍ତି ? ଏଣୁ ଆଗରୁ ସାବଧାନ ରହିବା ଉଚିତ ।

ଦୃଷ୍ଟିପଥରେ—ଯଦି କହୁଁ 'ଯୁବକଙ୍କ ପ୍ରତି ଓଡ଼ିଆ ସାହିତ୍ୟ' ତାହାର ଅର୍ଥ ହେବା ଉଚିତ, ତେବେ ଆହୁରି ଆଶଙ୍କାର ବିଷୟ । ଯୁବକର ସ୍ପୃହା ଅନୁଯାୟୀ ଯଦି ସାହିତ୍ୟସୃଷ୍ଟି ଲକ୍ଷ୍ୟହୁଏ ତେବେ ସାହିତ୍ୟ କେଉଁ ପ୍ରଲେପରେ ପ୍ରାଣବନ୍ତ ହେବ ସମସ୍ତେ ଅନୁମାନ କରୁଥିବେ । 'ବାଲସ୍ତାବତ୍ କ୍ରୀଡ଼ାସକ୍ତସ୍ତରୁଣସ୍ତାବତ୍ତରୁଣୀରକ୍ତଃ' କଥାଟିକୁ ସମାଜତ୍ୟାଗୀ ଶଙ୍କରଙ୍କ ଉକ୍ତି ବୋଲି ଗୌଣ ବିବେଚନା କଲେ ସୁଦ୍ଧା ଚିନ୍ତାଶୀଳ ଯୌବନୋତ୍ତର ବ୍ୟକ୍ତି ମାନେ ଅନୁଭବ କରୁଥିବେ ଯୌବନର ପ୍ରଧାନ ସ୍ପୃହା କଣ ଥିଲା, ସବୁ ବାହ୍ୟସୌନ୍ଦର୍ଯ୍ୟମୂଳକ ବସ୍ତୁମଧ୍ୟରେ କେଉଁଟି ଅଧିକ ଆକର୍ଷଣୀୟ ଥିଲା । ମୁଁ ଏକଥା ତାଙ୍କୁ ପଚାରି ଉତ୍ତର ଚାହୁଁନାହିଁ । କେବଳ କହୁଛି—ସେମାନେ ମନକୁ ମନ ପଚାରନ୍ତୁ ଓ ଉତ୍ତର ଖୋଜନ୍ତୁ । ଉତ୍ତର ମିଳୁଛି କଣ ? ଯେହି ଗୋଟିଏ କଥା—ଅବକ୍ତବ୍ୟ । ଅବଶ୍ୟ ନିପାତନର ଅଭାବ ନାହିଁ ; କିନ୍ତୁ ନିପାତନ ଧରି ସୂତ୍ରନିର୍ମାଣ ହୁଏ ନାହିଁ । ତା'ଛଡ଼ା ଯେତେବେଳେ କୌଣସି ଯୁବକ କୌଣସି ଅବାଞ୍ଛିତ କ୍ରିୟାକଳାପରେ ଜାଣିଶୁଣି ବା ନ ଜାଣି ନ ଶୁଣି ଲିପ୍ତ ରହେ ସେତେବେଳେ ଆମେ କଣ କହୁଁ 'ହଁ, ମ, ସେହି ବୟସରେ ସେଇୟା ହୁଏ ।' ଏଥିରୁ କଣ ବୁଝାଯାଉନାହିଁ—'ସେ' ବୋଲି ଗୋଟିଏ ବୟସ ରହିଛି ଯେଉଁଥିରେ ମଣିଷମନ ଟିକିଏ ଆଡ଼ବାଡ଼ଆ ହେବା ସ୍ୱାଭାବିକ, ତା ବୋଲି ଆମେ ସେହି 'ଆଡ଼ବାଡ଼ଆ' ଭାବକୁ ପରିପୁଷ୍ଟ କରିବାର ବ୍ୟବସ୍ଥା କରିବା ନା ତାକୁ କୌଶଳର ସହିତ ଠିକ୍ ରାସ୍ତାରେ ଆଣି ଥୋଇଲା ଭଳି ବ୍ୟବସ୍ଥା କରିବା ? ଯୁବକର କ୍ଷୁଧିତ ମନ ଯେତେ-ତେବେ ଉଦ୍‌ବେଗର ସହିତ ଚାହିଁ ରହିଥାଏ କି ଏକ ନବାନୁଭୂତି ସକାଶେ ସେତେବେଳେ ତାର ସ୍ପୃହା ମୁତାବକ ଯେଉଁ ଟିକିକ ଦିଆ ହୁଏ ସେତିକି ତାର ଆକାଙ୍କ୍ଷା ପୂରଣର ଉପଯୋଗୀ ହେଲେ ସୁଦ୍ଧା ଯଦି ମାର୍ଗଚ୍ୟୁତିର ସମ୍ଭାବନା ସୃଷ୍ଟି କରେ ତେବେ କଣ କହିବା ତା'ର ସ୍ପୃହା ଅନୁସାରେ ସାହିତ୍ୟ ସୃଷ୍ଟି କରାଯିବ ? ଏବଂ ତାକୁ ଅଧିକ ସଂଖ୍ୟକ ଅପରିପକ୍ୱ ଯୁବକ ଯୁବତୀ ପଢ଼ି ସାଧୁ ସାଧୁ କଲେ ବୋଲି ତାକୁ କି ଆଦର୍ଶରୂପେ ଗ୍ରହଣ କରାଯିବ ? ତେବେ ପରିଣତ ଚିନ୍ତାଶୀଳଙ୍କର ସମାଜରେ ରହିବା ଆବଶ୍ୟକତା କଣ ? ବର୍ତ୍ତମାନର ପରିପ୍ରେକ୍ଷୀରେ ସେମାନେ କୌଣସି କାରଣ ଧରି ଲେଖନୀ ଚାଳନାରୁ ବିରତ ହେବାରେ କଣ ସମସ୍ୟାର ସମାଧାନ ହୋଇଯିବ ? 'ଯାହାହେଲେ ଆମର କଣ ଅଛି' 'ଆମେ ବା ଆଉ

କେତେଦିନ' ? ମନୋଭାବ କିଣ ଉପସ୍ଥିତ କ୍ଷେତ୍ରରେ କର୍ତ୍ତବ୍ୟ ରୂପେ ଗ୍ରହଣ କରାଯିବ ? ନା—କଦାପି ନୁହେଁ, ଯୁବ ଲେଖକ ଆହୁରି ଲେଖିବେ ବହୁତ ଲେଖିବେ, ଯୁବକ ଲେଖିବେ ନାହିଁ ତ ଆଉ ଲେଖିବେ କିଏ ? କିନ୍ତୁ ସେ ମଧ୍ୟରୁ ପ୍ରାୟ ସବୁ ବର୍ଷାକାଳର ମାଳତୀ ପରି ନିର୍ଦ୍ଦିଷ୍ଟ ସମୟରେ ଫୁଟି ନିର୍ଦ୍ଦିଷ୍ଟ ସମୟରେ ମଉଳି ଯାଏ । ଏଣୁ ଅମଳିନ କାଳ-ଜୟୀ ସାହିତ୍ୟପାଇଁ ପରିପକ୍ୱ ଲେଖମା ଶୃଙ୍ଖଳା ବିଧେୟ । ଏହି ପରିପକ୍ୱତା ସକାଶେ ଅବଶ୍ୟ ବୟସର ପ୍ରୟୋଜନୀୟତା ନାହିଁ । ଶକ୍ତି ବା ପ୍ରତିଭା ହିଁ ଏହାର ମୁଖ୍ୟକାରଣ, କୁହାଯାଇଛି—'ଗୁଣାଃ ପୂଜାସ୍ଥାନଂ ଗୁଣିଷୁ ନ ଚ ଲିଙ୍ଗଂ ନ ଚ ବୟଃ' ଅର୍ଥାତ୍ ଗୁଣୀର ଗୁଣ ହିଁ ଅଭିନନ୍ଦନୀୟ ତାର ଲିଙ୍ଗ କିମ୍ବା ବୟସ ନୁହେଁ । କିନ୍ତୁ ଏତିକ ବୟସ ତାର ଅଭିଜ୍ଞତା ବୃଦ୍ଧି କରି-ବାରେ ବିଶେଷ ସହାୟକ ହୁଏ । ଏଣୁ ସାହିତ୍ୟରେ ବୟଃପ୍ରକାଶକ ବିଶେଷଣଟିଏ ନ ଦେଲେ ମଧ୍ୟ ଜନପ୍ରିୟ ହେବାରେ କୌଣସି ପ୍ରତିବନ୍ଧକ ନାହିଁ । ଏଠାରେ ମନେ ପକେଇଦେବା ଛଳରେ କୁହାଯାଇପାରେ— ଆଜିଯାଏଁ ଯେଉଁମାନେ ସାହିତ୍ୟ ସୃଷ୍ଟି ସକାଶେ ନୋବେଲ୍ ପୁରସ୍କାରର ଅଧିକାରୀ ହୋଇପାରିଛନ୍ତି ସେମାନଙ୍କ ମଧ୍ୟରୁ କେତେଜଣ ଯୁବକ ହିସାବ କରନ୍ତୁ । ତାଛଡ଼ା କାଳିଦାସ, ରବିଠାକୁର, ସେକ୍ସପିଅର, ବର୍ଣ୍ଣାର୍ଡ ଶ—ଏମାନଙ୍କ ସାହିତ୍ୟକୃତି ମଧ୍ୟରେ କେଉଁଗୁଡ଼ିକ ପ୍ରଥମ ବୟସର ଏବଂ କେଉଁଗୁଡ଼ିକ ଉତ୍ତର ବୟସର, ମାନ ନିରୂପଣ କରିବାକୁ ଗଲାବେଳେ କେଉଁ ସୂତ୍ର ଧରି ତାହା ଆଲୋଚନା କରାଯାଏ ସମାଲୋଚକମାନେ ଭଲ ଭାବେ ହୃଦୟଙ୍ଗମ କରୁଥିବେ, ପରିଣତ ବୟସର ଲେଖା ଗୁଡ଼ିକ କିଣ କେବଳ ଯୁବକର ଆମୋଦ ବିଧାନ କରିବା ପାଇଁ ଲେଖା ହେବ ? ନିଶ୍ଚିତ ଭାବେ ନୁହେଁ । କାରଣ ଏହାର ଲକ୍ଷ୍ୟ ମାନବ ସମାଜ । କେବଳ ଯୁବ ସମାଜ ନୁହେଁ । ଅବଶ୍ୟ ତା ମଧ୍ୟରେ ଯେଉଁମାନେ ଯୁବଅବସ୍ଥାରେ ସୁଦ୍ଧା ପରିଣତ ମସ୍ତିଷ୍କବାନ୍ ତାଙ୍କ ପକ୍ଷରେ ସେଥିରେ ଯଥେଷ୍ଟ ଖାଦ୍ୟପ୍ରାଣ ରହିଛି, କିନ୍ତୁ ଖାଦ୍ୟପ୍ରାଣ ନଥିବା ଲେଖା ସୃଷ୍ଟି କରି ଯେଉଁମାନେ ମୁଁ କବି, ମୁଁ ଔପନ୍ୟାସିକ, ମୁଁ ନାଟ୍ୟକାର, ମୋ କବିତାରେ ଅଧିକାଂଶ ପତ୍ରପତ୍ରିକା ଭରପୂର, ମୋ ଛପା ଉପନ୍ୟାସର ସଂଖ୍ୟା ଅଠାନବେ ଏବଂ ମୋ ନାଟକ ଆକାଶବାଣୀ ଜରିଆରେ ପ୍ରଚ୍ଛୁର ହୁଏ ଅଥଚ ଜନତା ମୋତେ ସମ୍ମାନ ଦେଇ ଶିଖିଲା ନାହିଁ କହି ଜବରଦସ୍ତ ପ୍ରଶଂସା ପାଇବାରେ ବ୍ୟାକୁଳ ; ସେମାନେ ଅବଶ୍ୟ ବୁଝିନ ଥିବେ କାଳିଦାସଙ୍କ

ନାଟକ ଏବଂ କାବ୍ୟ ସଂଖ୍ୟା ମିଶି ହେଉଛି ଛ'। ଅତଏବ ଯୁବକଙ୍କ ପାଇଁ ଉଦ୍ଦିଷ୍ଟ ସାହିତ୍ୟ ଅର୍ଥରେ 'ଯୁବସାହିତ୍ୟ' ଆଖ୍ୟା ତାହାର ଉତ୍କର୍ଷ ଦ୍ୟୋତକ କି ଅପକର୍ଷବ୍ୟଞ୍ଜକ ବିଚାର କରିବାର କଥା।

ଏହାଛଡ଼ା ଶିଶୁପଠନୋପଯୋଗୀ ସାହିତ୍ୟକୁ 'ଶିଶୁ ସାହିତ୍ୟ' କହିଲା ପରି ଯୁବକପଠନୋପଯୋଗୀ ସାହିତ୍ୟକୁ 'ଯୁବସାହିତ୍ୟ' କହିବା ମଧ୍ୟ ଯଥାର୍ଥ ବୋଲି ମନେ ହୁଏ ନାହିଁ। ଶିଶୁର ସମ୍ପୂର୍ଣ୍ଣ ମାନସିକ ବିକାଶ ସଙ୍ଘଟିତ ହୋଇ ନ ଥିବାରୁ ସେଥି ସକାଶେ ନିର୍ଦ୍ଦିଷ୍ଟ କେତେକ ଶବ୍ଦ ଓ ଅର୍ଥ, ଭାବନା ଓ ବିଷୟବସ୍ତୁ ସମ୍ବଳିତ ଶିକ୍ଷା ଉପଯୋଗୀ ରଚନାବଳୀକୁ 'ଶିଶୁସାହିତ୍ୟ' ଆଖ୍ୟା ଦେବାରେ ଅସଙ୍ଗତି ରହି ନ ପାରେ, କିନ୍ତୁ ଯୁବକ ପାଇଁ ସେପରି କିଛି ନିର୍ଦ୍ଦିଷ୍ଟ ବିଷୟବସ୍ତୁ ନାହିଁ। ସେ ପୃଥିବୀର ଯାବତୀୟ ବିଷୟବସ୍ତୁ ଚିନ୍ତାଧାରା ଓ ମାନବିକ ଚଳଣି ସହିତ ପରିଚିତ ହେବା ଦରକାର ତା ନ ହେଲେ ତା'ର ଆଉ ସମୟ ନାହିଁ, ସୁବିଧା ନାହିଁ। ଯୌବନ ହିଁ ତା'ର ଅମୂଲ୍ୟ ସମ୍ପଦ, ତାକୁ ପାର ହେଲେ ସେ ଆଉ ଶିକ୍ଷା କରିବାର ସମୟ ବା ସୁଯୋଗ ପାଏ ନାହିଁ। ଯାହା ଶିଖିବାର ବା ଜାଣି-ବାର କଥା ସେତିକ ବେଳେ ହିଁ ସେ କରିବା ବିଧେୟ। ଏଣୁ 'ସାହିତ୍ୟ' ନାମ ମାତ୍ରେ ଯାହା ସବୁ ବୁଝାଏ ସେ ସବୁ ତାର ସକାଶେ କେବଳ ଉଦ୍ଦିଷ୍ଟ। ସେତେବେଳେ ତାର ସ୍ପୃହାର ସ୍ଥାନ ନାହିଁ। ତାର ଆଗ୍ରହ ଅନାଗ୍ରହର ପ୍ରଶ୍ନ ନାହିଁ। ସବୁ ସେ ପଢ଼ିବାକୁ ହେବ—ଶିଖିବାକୁ ହେବ। ତଦ୍ଦ୍ୱାରା ହିଁ ସେ ଦେଶ-ଜାତି-ସମାଜର କଲ୍ୟାଣ ସାଧନ କରିବ। ଏଣୁ କେବଳ ଅଳ୍ପ କେତେକ ବାହାବାପନ୍ଥୀ ଲେଖା ଲେଖିବା କିମ୍ବା ପଢ଼ିବା ଦ୍ୱାରା ଏହି ମହତ୍ ଉଦ୍ଦେଶ୍ୟ ସାଧିତ ହୁଏ ନାହିଁ। ଏହିତକ ବ୍ୟକ୍ତି କାଲି-ବେଳେ ଅବଶ୍ୟ ମାନସିକ ଦ୍ୱନ୍ଦ୍ୱର ସମ୍ମୁଖୀନ ହେବାକୁ ପଡ଼ୁଛି। ତଥାପି 'ସତ୍ୟଂବ୍ରୁୟାତ୍'। ଏଣୁ ତାର ସ୍ପୃହା ନେଇ କେବଳ ଯଦି ସାହିତ୍ୟ ସୃଷ୍ଟି କରାହୁଏ କିମ୍ବା ଯୁବକ ଶ୍ରେଣୀର ଅନାଗ୍ରହ ବା ବହିଷ୍କାର ଆଳ ଧରି ଉଚ୍ଚାଙ୍ଗ ସାହିତ୍ୟ ସୃଷ୍ଟି ନ ହୁଏ ତେବେ ତାହା ଜାତି ପ୍ରତି ଅଭିଶାପ କହିବା ସଙ୍ଗତ ହେବ। ବହୁ ପୁରୁଖା ଲେଖକ 'ଲେଖନୀ ଛାଡ଼' ହିଯ୍ୟା ବହୁଦିନରୁ ଆରମ୍ଭ କରି ଦେଇଛନ୍ତି। ଆଉ କେତେ ଆପଣାର ମୌଳିକ ସ୍ୱାତନ୍ତ୍ର୍ୟ ଭୁଲି ରୋଜଗାରିଆ ଶସ୍ତା ଲେଖାରେ ମନପ୍ରାଣ ଢାଳି ଦେଇଛନ୍ତି। ଆଉ କେତେ ମୁହଁରେ ଯାହା କହନ୍ତି କାର୍ଯ୍ୟରେ ତାର ଓଲଟା କରନ୍ତି। ଫଳରେ ଓଡ଼ିଆ ସାହିତ୍ୟ ବିପୁଳକାୟ ହେଉଥିଲେ ସୁଦ୍ଧା କ୍ଷୀଣାୟୁ

ହେବାରେ ଲାଗିଛି । ଅବଶ୍ୟ ଏଥିରେ କୌଣସି ଲେଖା ବା ଲେଖକଙ୍କ ପ୍ରତି ଆକ୍ଷେପ କରାଯାଉ ନାହିଁ—କେବଳ ଦର୍ଶାଇ ଦେବା କଥା ।

ଅବଶ୍ୟ ଅନେକ ପଚାରି ପାରନ୍ତି—'ଉଚ୍ଚାଙ୍ଗ ସାହିତ୍ୟ' କହିଲେ ଆପଣ କାହାକୁ ବୁଝନ୍ତି । ମୁଁ ଆଗରୁ କହିଛି, ସାହିତ୍ୟର ସୁଦ୍ଧା ଆଜଯାଏଁ ସର୍ବସମ୍ମତ ଲକ୍ଷଣ ଠିକ୍ ହୋଇପାରି ନାହିଁ, ଉଚ୍ଚାଙ୍ଗ ସାହିତ୍ୟ ତ ଆହୁରି ଦୂରରେ । ଏହା କେବଳ କଥାରେ କହିବା ବିଷୟ ନୁହେଁ—ଅନୁଭବ କରିବାର କଥା । ସେଇ ଅନୁଭବଟି ହେଲା, ଜଣେ ଯୌବନୋତ୍ତର ଶିକ୍ଷିତ ବ୍ୟକ୍ତିର ମନକୁ ସନ୍ତୃପ୍ତ କଲା ଭଳି କେତୋଟି ଓଡ଼ିଆ ଲେଖା ଓଡ଼ିଆ ସାହିତ୍ୟରେ ରହିଛି ହିସାବ କରନ୍ତୁ । ଦେଖିବେ, କଥାର ସତ୍ୟତା ହୃଦୟଙ୍ଗମ କରିପାରିବେ । ଓଡ଼ିଆ ସାହିତ୍ୟରେ କଣ ଲେଖା ନାହିଁ ନା ଲେଖକ ନାହାଁନ୍ତି । ଅଗଣିତ—ଅପରିମିତ । ତଥାପି ଯଦି ଉତ୍ତରକାଳୀନ ମାନସିକ କ୍ଷୁଧା ନିବାରଣ ସକାଶେ ସଂସ୍କୃତ, ଇଂରେଜୀ କିମ୍ବା ବଙ୍ଗଳା ପ୍ରଭୃତି ଅନ୍ୟ ସାହିତ୍ୟର ଆଶ୍ରୟ ନିଆଯାଏ ତେବେ କଣ ବୁଝିବା—ଆମ ଭାଷାରେ ଉଚ୍ଚାଙ୍ଗ ସାହିତ୍ୟର ଅଭାବ ନାହିଁ ? ଯାହା ଦେଶ-କାଳ-ପାତ୍ର ନିର୍ବିଶେଷରେ ଆଗ୍ରହ ଜନ୍ମାଇବାରେ ସମର୍ଥ ହୁଏ ତାକୁ ଉଚ୍ଚାଙ୍ଗ ସାହିତ୍ୟ କହିବାରେ ଅସଙ୍ଗତ ନଥାଏ । ସେପରି କେତେଖଣ୍ଡ ରଚନା ଓଡ଼ିଆ ସାହିତ୍ୟ ଭଣ୍ଡାରରେ ଗଚ୍ଛିତ ଅଛି ଦେଖିବାର କଥା । ଏଣୁ 'ଯୁବ ସାହିତ୍ୟ' 'ଆଧୁନିକ ସାହିତ୍ୟ', 'ସାପ୍ରତିକ ସାହିତ୍ୟ' ପ୍ରଭୃତି ପୂର୍ବପଦଦ୍ୱାରା ସାହିତ୍ୟକୁ ସଙ୍କୁଚିତ କରିବା ଉଚିତ ନୁହେଁ । ସାହିତ୍ୟମାନେ ଯୁବକ, ପ୍ରୌଢ଼, ବୃଦ୍ଧ ସମସ୍ତଙ୍କ ପାଇଁ ଉଦ୍ଦିଷ୍ଟ । ଯେ ହେଉ ନା କାହିଁକି ସେଥିରୁ ନିର୍ଯ୍ୟାସ ଗ୍ରହଣ କରି ବ୍ୟଷ୍ଟି ଓ ସମଷ୍ଟିର ଉନ୍ନତି ବିଧାନ କରି ପାରିଲେ ସାହିତ୍ୟ ସୃଷ୍ଟି ସାର୍ଥକ ହୁଏ ।

---

# ମୋ ଦୃଷ୍ଟିରେ ସାଂପ୍ରତିକ ସାହିତ୍ୟ

ଶ୍ରୀ ଶ୍ରୀନିବାସ ଉଦ୍‌ଗାତା

କଳ୍ପନା କରନ୍ତୁ, ସାହିତ୍ୟ ଏ ଜଗତରେ ନଥିଲେ ମଣିଷର ଜୀବନ କେତେ ଦରିଦ୍ର ମନେ ହୁଅନ୍ତା ନାହିଁ ? ଯେଉଁମାନେ ଲେଖିପଢ଼ି ଜାଣନ୍ତି ନାହିଁ ସେମାନଙ୍କ ପାଇଁ ସାହିତ୍ୟର ଥିବା ନଥିବା ହୁଏତ ସମାନ କଥା, ହେଲେ ବି ନଥିଲା, ଯେତେବେଳେ ହୋଇପାରେ ଅତି ବିକୃତ ଅବସ୍ଥାରେ ଭାଷା ଥିଲେ ମଧ୍ୟ ଓ ଲିପିର ଅନୁପସ୍ଥିତିରେ ବି, ଏଇ ମଣିଷ ହୁଏତ କଥିତ ସାହିତ୍ୟର ସୃଷ୍ଟି କରୁଥିଲା।...ପରେ ବେଦ କଥିତ ହୋଇ ମଣିଷର ସ୍ମରଣ ଶକ୍ତି ମାଧ୍ୟମରେ ପ୍ରଚରିତ ହେଲା, ଅନ୍ୟଦ୍ୱାରା ଶ୍ରୁତ ହୋଇ ଶ୍ରୁତି ହେଲା ଓ ଆଜି ତା'ର ବିକଶିତ ରୂପ ଆମର ସମ୍ମୁଖରେ ବିଦ୍ୟମାନ। ଯା'ର ଐଶ୍ୱର୍ଯ୍ୟ, ଯା'ର ଐନ୍ଦ୍ରଜାଲିକ ଅଭିନବତ୍ୱ ଆମକୁ ଚମତ୍କୃତ କରୁଛି, ଆହ୍ଲାଦିତ କରୁଛି। ଏହା ସାହିତ୍ୟର ପ୍ରାଥମିକ ଓ ସାଧାରଣ ସାର୍ଥକତା, କିନ୍ତୁ ମଣିଷକୁ ତା'ର ଅଜ୍ଞାତସାରରେ ସୁସଂସ୍କୃତ କରିବା ହେଉଛି ତା'ର ବାସ୍ତବିକ ସାର୍ଥକତା। ଏହାକୁ ଭିତ୍ତିକରି ନିଃସଂକୋଚରେ କୁହାଯାଇପାରେ ଯେ ମଣିଷକୁ ଅନ୍ୟପ୍ରାଣୀଠାରୁ ପୃଥକ କରୁଥିବା; ମଣିଷକୁ ମଣିଷତା ଦାନ କରୁଥିବା ବସ୍ତୁ ସାହିତ୍ୟ, ତା'ର ଉନ୍ନତ, ସୃଜନଶୀଳ ମାନସିକତାକୁ ପ୍ରକାଶିତ କରୁଥିବା ଭାଷାର ପ୍ରତିଫଳ ଏହି ସାହିତ୍ୟ ! କାହିଁକି ନା ଆପଣାର ନ୍ୟୂନତମ ପ୍ରୟୋଜନୀୟତାକୁ ବ୍ୟକ୍ତ କରୁଥିବା ଭାଷା, ମୌନ ହେଉନା କାହିଁକି, ପ୍ରତ୍ୟେକ ପ୍ରାଣୀ ପାଖରେ ବିଦ୍ୟମାନ।

ଭାଷାର ମାଧ୍ୟମରେ ମଣିଷ ଯେତେବେଳେ ଆପଣାକୁ ବ୍ୟକ୍ତ କରିବାକୁ, ପ୍ରକାଶିତ କରିବାକୁ ଶିଖିଲା ସେତେବେଳେ ପ୍ରଥମକରି ଗଦ୍ୟ ଶୈଳୀ ତାର ସାହିତ୍ୟ ସୃଷ୍ଟିର ମାଧ୍ୟମ ଭାବରେ ଗ୍ରହଣ କରି ନାହିଁ। ଯେଉଁମାନେ ସାହିତ୍ୟ ସୃଷ୍ଟି କରନ୍ତି ସେମାନେ କ୍ରାନ୍ତଦର୍ଶୀ, ମନ୍ତ୍ରଦ୍ରଷ୍ଟା

ତେଣୁ ହୁଏତ ଆଳାପ ଆଲୋଚନା ଓ ସାଧାରଣ କଥୋପକଥନରେ ଗ୍ରହଣ କରିଥିବା ଗଦ୍ୟଶୈଳୀର ପରିବର୍ତ୍ତରେ ପ୍ରଥମ କ୍ରାନ୍ତଦର୍ଶୀ ପୁରୁଷଟି ଏକ ଭିନ୍ନ ଶୈଳୀ ଗ୍ରହଣ କଲା । ତା'ର ସନ୍ଦେହ, ତା'ର ଜିଜ୍ଞାସା, ତା'ର ଆଗ୍ରହ ଓ ଉତ୍ସୁକତା ; ଆପଣାର, ଆପଣାର ପାରିପାର୍ଶ୍ୱିକ ଜଗତର ଓ ଜଗତେତର ଅବସ୍ଥିତିର କଳ୍ପନା କଲା । ଜଗତକୁ ଦୃଶ୍ୟମାନ ଓ ଅଦୃଶ୍ୟମାନ କଳ୍ପନା କରି ବିଭକ୍ତ କଲା, ମନନଶୀଳତାର ସଂଯୋଗରେ ସେମାନଙ୍କର ବିଶ୍ଳେଷଣ କଲା···ଦ୍ୱିବାଗ୍ନିର ମୌଳିକ ସୌନ୍ଦର୍ଯ୍ୟ ଉପଭୋଗ କରି ଚିନ୍ତାକଲା ଏଇ ଦୁଇ ବିପରୀତ ତତ୍ତ୍ୱକୁ ଏକତ୍ର ଉପଭୋଗ କରିବାକୁ ଓ ଫଳତଃ ଚିନ୍ତାରାଜ୍ୟରେ ଉଷା ଓ ଗୋଧୂଳିର ସୃଜନ ହେଲା ।

କାବ୍ୟ ସାହିତ୍ୟର ଉଷାକାଳରେ କାବ୍ୟ ସେଇ ଜିଜ୍ଞାସା, ସେଇ ତତ୍ତ୍ୱବୋଧ ବହନ କରିଥିଲା । ସେହି ଚିରନ୍ତନ ସତ୍ୟର ଆଦର୍ଶ ବହନ କରିଥିଲା ଯାହା ଏ ଅବଧି ଆଦର୍ଶ ହୋଇ ରହିଛି । ପରେ ସେହି ସାହିତ୍ୟ ପ୍ରକାଶିତ ହୋଇ, ବିକଶିତ ହୋଇ ହୁଏତ ବିଳାସର ସାଧନ ଓ ମୁଖ୍ୟତଃ ନୀତିବାକ୍ୟ ଓ ଶୃଙ୍ଗାର ପ୍ରଧାନତା କାବ୍ୟ କବିତାରେ ପରିଲକ୍ଷିତ ହେଲା । ଏହି କାବ୍ୟଧର୍ମ ବହୁକାଳ ଧରି କାବ୍ୟାଦର୍ଶ, କାବ୍ୟର ପରମ ଧର୍ମ ବା କାବ୍ୟ ସଂପଦ ରୂପରେ ରହି ଆସିଛି ଯାହାର କ୍ରମ ଗଦ୍ୟର ବିକାଶରେ ମଧ୍ୟ ଲକ୍ଷ କରିବାର କଥା—

ହୋଇପାରେ ସୁଦର୍ଶନଙ୍କର ଗୁରୁପୁତ୍ରଙ୍କର ଅଜ୍ଞାନ ଅନ୍ଧକାର ଦୂର କରିବାକୁ ବିଷ୍ଣୁଶର୍ମାଙ୍କର "ପଞ୍ଚତଂତ୍ର", ଯାହା ବହୁ ଉପାଦେୟ ନୀତି-କାହାଣୀର ସମାହାର; ଅଥବା ପତିର ଅନୁପସ୍ଥିତିରେ ଅନ୍ୟ ପୁରୁଷ ଆସକ୍ତା ଅଭିସାରିକା ରାଣୀଙ୍କର ମନ ବିନୋଦନ କରି ତାଙ୍କୁ ବିରତ କରାଇବାର ଅଭିପ୍ରାୟରେ ଶୁକ ମୁଖରେ କଥିତ "ଶୁକ ସପ୍ତତି"ର ଶୃଙ୍ଗାର ରସପରିପୂର୍ଣ୍ଣ ଗଳ୍ପହେଉ, ସେମାନେ ଯଥାକ୍ରମେ ସେଇ ନୀତିବାକ୍ୟ ଓ ମନୋରଞ୍ଜନ ଉଦ୍ଦେଶ୍ୟରେ ସୃଷ୍ଟି ଶୃଙ୍ଗାର-ସାହିତ୍ୟ ବ୍ୟତୀତ ଆଉ କଣ ?

ସାହିତ୍ୟର ଉନ୍ନତି, ପରିବର୍ତ୍ତନ ଓ ବିକାଶ କେବଳ ମାତ୍ର କାବ୍ୟ ରାଜ୍ୟରୁ ହେ ସମାନ ଭାବରେ ପ୍ରତ୍ୟେକ କ୍ଷେତ୍ରରେ ପ୍ରତିଭାତ ତେଣୁ ଗଦ୍ୟ ଓ ପଦ୍ୟ ଉଭୟର ବିକାଶ ପ୍ରକ୍ରିୟାରେ ସାମଞ୍ଜସ୍ୟକୁ ଉପଭୋଗ କରିବାର କଥା ।

ସାଂପ୍ରତିକ ସାହିତ୍ୟରେ କ୍ଷୁଦ୍ରଗଳ୍ପ ପରି ଅନ୍ୟ କୌଣସି ପ୍ରକାଶ ଶୈଳୀ ନାହିଁ, ଯାହା ସହଜରେ ହୃଦୟର ଗହନତମ ତନ୍ତ୍ରୀରେ ଆଲୋଡ଼ନ ସୃଷ୍ଟି କରି ପାରିବ । କବିତା ଗାମ୍ଭୀର୍ଯ୍ୟ ସାଙ୍କେତିକତା ବହନ କରି ହୁଏତ ଅଧିକ ଅର୍ଥ ବା ଭାବ-ପ୍ରକାଶ କରିପାରେ ମାତ୍ର ତାହା ପଠନ ଓ ପୁନଃ ପଠନ ଦାବୀକରେ ଓ ଯାହାବିନା କବିତାର ଭାବଇଙ୍ଗିତ ଗୁଡ଼ିକ, ଅସଂଭବ ନୁହେଁ ଯେ ପାଠକ ଅନ୍ୟତ୍ର ନିରର୍ଥକ ବିଚରଣ କରିବ । ଏକ ଉପନ୍ୟାସ ପାଠକକୁ ଦୀର୍ଘ ସମୟଧରି ଆମୋଦିତ କରିପାରେ, ଲିପ୍ତକରି ରଖିପାରେ ମାତ୍ର ତା'ର ପ୍ରଭାବ ସାଧାରଣତଃ ସ୍ଥୂଳ, କ୍ଷୁଦ୍ରଗଳ୍ପ ପରି ନୁହେଁ । କବିତା ସିଧାସଳଖ ଗୋଟିଏ ଭାବ ପ୍ରକାଶ କରିଗଲେ ମଧ୍ୟ ତା'ର ପ୍ରଭାବ ପରୋକ୍ଷ ହୋଇଥାଏ—ଉପନ୍ୟାସ ସିଧା ସଳଖ ଗୋଟିଏ ଭାବର ପ୍ରକାଶ କଲେ ବି ତାହା ଲକ୍ଷ୍ୟସ୍ଥଳରେ ଅତି ମନ୍ଥର ଗତିରେ ପହଞ୍ଚେ କିନ୍ତୁ କ୍ଷୁଦ୍ରଗଳ୍ପ ଅତି ଚଞ୍ଚଳ, ପ୍ରତ୍ୟକ୍ଷ ଭାବରେ ପାଠକର ହୃଦୟକୁ ପ୍ରଭାବିତ କରେ । ଏମାନେ ଏକତ୍ର ଆଲୋଚ୍ୟ ନୁହନ୍ତି । ଏମାନଙ୍କର କ୍ଷେତ୍ର ସ୍ୱତନ୍ତ୍ର । ଗୋଟାଏ ପାଇଁ ଯେଉଁଠି ଏକ ପ୍ରଶସ୍ତ କ୍ଷେତ୍ର ମିଳିଛି ସେଠାରେ ଅନ୍ୟଲାଗି ମଧ୍ୟ ଯଥେଷ୍ଟ ସ୍ଥାନ ରହିଛି ଏହା ସବୁ ସମୟରେ ସଂଭବ ନୁହ । କିନ୍ତୁ ଗୋଟାଏ ଭାବ-ପ୍ରକାଶ କବିତା କିମ୍ବା ଗଳ୍ପରେ ରସମୟ ହେଲେ ବା ହୃଦୟଗ୍ରାହୀ ହେଲେ ତାହା ଉପନ୍ୟାସ କିମ୍ବା ନାଟକରେ ମଧ୍ୟ ଠିକ ସେପରି ହେବ ଏହା କହିବା ସବୁ ସମୟରେ ଯଥାର୍ଥ ନୁହେଁ । ଏଇ ଶୈଳୀ ରୂପକ ଦେହେଭିରେ ଯେତେ ଫରକ୍ ଥାଉନା କାହିଁକି ସାହିତ୍ୟର ଆତ୍ମା ସମାନ; ତେଣୁ ସାହିତ୍ୟର ପ୍ରଗତି ଓ ବିକାଶ କହିଲେ ଗୋଟାଏ ନିର୍ଦ୍ଦିଷ୍ଟ ଶୈଳୀକୁ ବୁଝାଇବ ନାହିଁ ଏବଂ ଏହା ଚିରନ୍ତନ ସତ୍ୟଯେ ବିକାଶଶୀଳତା ସାହିତ୍ୟର ପ୍ରତ୍ୟେକ କ୍ଷେତ୍ରକୁ ପ୍ରଭାବିତ କରେ ।

।

କିନ୍ତୁ ସାହିତ୍ୟର ଏତେ ଐଶ୍ୱର୍ଯ୍ୟ ସତ୍ତ୍ୱେ ବହୁକାଳ ଧରି ତାହା ଏହି ଏକ ଧାରାରେ ରହି, କେବଳ ମାତ୍ର ବିଳାସର ସାମଗ୍ରୀ, ଆମୋଦର ଉପାଦାନ ହୋଇ ରହିଥିଲା—ଯାହା ସାଧାରଣ ମଣିଷର ସୁଖ ଦୁଃଖ, ହସକାନ୍ଦ, ବିରହ ମିଳନର ଆବେଗ ଅନୁରାଗ ବହନ କରି ନଥିଲା । ଆଉ ମୁଁ ଭାବୁଛି ସେହି ଦିନରୁ ସାହିତ୍ୟର କାଳକୁ 'ଆଧୁନିକ ଯୁଗ' ନାମରେ ନାମିତ କରିବା ଉଚିତ ହେବ ଯେଉଁ ଦିନଠାରୁ ସାହିତ୍ୟକାର କଳ୍ପନା ବିଳାସ ଭିତରେ ବାସ୍ତବିକତାର ଚିନ୍ତା କରିଛି । କୌଣସି ଏକ

ନିର୍ଦ୍ଦିଷ୍ଟ ଯୁଗକୁ 'ଆଧୁନିକ ଯୁଗ' ବୋଲି ବେଶିଦିନ କହିହେବ ନାହିଁ । କାରଣ ମହାକବି କାଳିଦାସଙ୍କ ପକ୍ଷରେ ତାଙ୍କକାଳ ଯେପରି ତାଙ୍କପାଇଁ ଆଧୁନିକ, କବିବର ଗଙ୍ଗାଧର ମେହେରଙ୍କ ପାଇଁ ତାଙ୍କର କାଳ ମଧ୍ୟ ତଦନୁରୂପ ଆଧୁନିକ ଆଉ ଆଜି ଏକାଳ ଆମପାଇଁ ଯେପରି ଆଧୁନିକ ତାହା ହୁଏତ ଆଉ ପଚାଶ ବର୍ଷ ପରେ ପ୍ରାଚୀନରେ ପରିଣତ ହୋଇଯିବ ।

କାଳ ରାଜହଂସ ସଦୃଶ, ଦୁଗ୍ଧ ଗ୍ରହଣ କରି ଜଳତ୍ୟାଗ କରି ଦେବା ତା'ର ଧର୍ମ । ତେଣୁ ଦୁଗ୍ଧହିଁ କାଳକାଳକୁ ରହିଯିବ । ତାହା ହୋଇ ନଥିଲେ ବିଭିନ୍ନ କାଳକୁ ପ୍ରତିନିଧିତ୍ୱ କରୁଥିବା ଅସଂଖ୍ୟ ସାହିତ୍ୟ ସ୍ରଷ୍ଟାଙ୍କର ପରିଚୟ ଆମ ଆଗରେ ଥାଆନ୍ତା । କେବଳ କାଳିଦାସ, ଉପେନ୍ଦ୍ରଭଞ୍ଜ ବା ଫାନକୃଷ୍ଣ ଜଣ ତାଙ୍କ ସମୟରେ ଲେଖୁଥିଲେ ? ବା ଆଉ କେହି ଥିଲେ ଯେଉଁମାନେ ଭାରତୀ ଭଣ୍ଡାରକୁ ସଂବୃଦ୍ଧ କରି ଯାଇଛନ୍ତି···ଦୁଗ୍ଧରହିଛି—କାଳଦ୍ୱାରା ଗୃହୀତ ହୋଇ । ତେଣୁ ବ୍ୟସ୍ତ ହେବାର କିଛି ନାହିଁ । ଯେଉଁମାନେ ଭାବୁଛନ୍ତି ଯେ ସାହିତ୍ୟର ଅଧୋଗତି ହୋଇଛି ବୋଲି, ମନେକରୁଛନ୍ତି ଯେ ସୃଷ୍ଟି ବିପଥଗାମୀ ହୋଇଛି, ସେମାନେ ଆସ୍ଥାବାନ ହେବା ଉଚିତ କାରଣ ସେମାନଙ୍କପରେ ବିଭିନ୍ନକାଳରେ ବିଭିନ୍ନ ଗୋଷ୍ଠୀ, ସଂସ୍କୃତି ଓ ସାହିତ୍ୟର ଏହି ବିକାଶଶୀଳ ପରିବର୍ତ୍ତନ ଉପରୁ ଆସ୍ଥା ହରାଇଛନ୍ତି ପରମ୍ପରାର ଦୁହାଇ ଦେଇ ମାନି ପରି ମୂହୂର୍ତ୍ତରେ କାଳର ସ୍ୱୀକୃତିକୁ ଗ୍ରହଣ କରିଛନ୍ତି । ପରମ୍ପରାର ଅର୍ଥ ଅତି ବ୍ୟାପକ– ମୁଁ ପରମ୍ପରାକୁ ଅସ୍ୱୀକାର କରୁନାହିଁ । ତାହାବୋଲି ପରମ୍ପରା ପରମ୍ପରା କହି ବିକାଶଶୀଳ ପରିବର୍ତ୍ତନକୁ ମଧ୍ୟ ଅସ୍ୱୀକାର କରୁନାହିଁ । ଏକ ଆଦର୍ଶ, ଏକ ବିଗ୍ରହର ମୃତ୍ୟୁ ନାହିଁ, ତାହା ଅବିନାଶୀ । ମୃତ୍ୟୁ ବ୍ୟକ୍ତିର ହୁଏ, ତା'ର ବିସ୍ମୃତି ହୋଇଥାଏ, ବିଗ୍ରହର ନୁହେ । ବିଗ୍ରହର ସମ୍ପତ୍ତି, ଚରିତ୍ର ଐଶ୍ୱର୍ଯ୍ୟ ଓ ଆଦର୍ଶର ଅମରତ୍ୱ ପରମ୍ପରାରୁ ମିଳେ ଆଉ ମଣିଷର ତାତ୍କାଳିକ ଅବସ୍ଥା, ସ୍ଥିତି ଓ ସ୍ପୃହା ଭିତରେ ବଞ୍ଚିରହି ତା'ର ଭିତରେ ବୋଧହୁଏ ନିରନ୍ତର ବିକଶିତ ହେବାର ଓ ନୂତନକୁ ପ୍ରାପ୍ତ ହେବାର ଅନିବାର୍ଯ୍ୟତାକୁ ଆପାତତଃ ପ୍ରବୃତ୍ତି ଭଳି ମଣିଷ ଗ୍ରହଣ କରେ । ଏହି ପ୍ରବୃତ୍ତି ମଣିଷକୁ ଚିନ୍ତାଶୀଳ କରେ, ବିଗ୍ରହବନ୍ତ କରେ—ଫଳତଃ ସେ ସଚେତନ ହୁଏ···ଏବଂ ସାଂପ୍ରତକ

ସାହିତ୍ୟ-ସ୍ରଷ୍ଟା ସେଇ ସଚେତନତା ପ୍ରାପ୍ତ ହୋଇଛି ଏବଂ ତା'ର ସୃଷ୍ଟି ସେଇ ସଚେତନତା ସଂଭୂତ । ତେଣୁ ଆମ ପକ୍ଷରେ ଆସ୍ଥାବାନ ହେବା ଉଚିତ ।

ଆଜିର ମଣିଷ ବଦଳି ଯାଇଛି, ଆହୁରି ବଦଳିବ । ମଣିଷର ସମାଜ ତା'ର ପରିବେଶ ତା'ର ସବୁକିଛି କ୍ରମ ପରିବର୍ତ୍ତନଶୀଳ । ଆଉ ସେଇ ପରିବର୍ତ୍ତନଶୀଳ ପାରିପାର୍ଶ୍ୱିକତା ଭିତରେ ତା'ର ଚିନ୍ତାଧାରା, ତାର ଅଭିବ୍ୟକ୍ତିର ପରିବର୍ତ୍ତନ କେଉଁଠାରେ ଆସିବ ନାହିଁ । ବିଳାସପ୍ରିୟ, ସାମନ୍ତବାଦୀ ପରିବେଶ ସୃଷ୍ଟି, କେବଳମାତ୍ର ମନୋରଞ୍ଜନ କରିବାକୁ ଆଗଭର ହୋଇଥିବା ସାହିତ୍ୟ ଯେତେବେଳେ ସାଧାରଣ ମଣିଷର ଅତି ସାଧାରଣ କଥା କହିଲା—ନିଛକ ସତ୍ୟତାକୁ ପ୍ରକାଶିତ କରି ତା'ର ସୁଖ ଦୁଃଖ, କୁଣ୍ଠା-ବିଦ୍ରୋହ, ନିର୍ଭୀକତା ଓ ଦୁର୍ବଳତା, ସ୍ୱପ୍ନ ଓ ନିଷ୍ଠାକୁ ରୂପାୟିତ କଲା ସେତେବେଳେ ଆମେ ହୁଏତ ତାହା ଗ୍ରହଣ କରିନେଉଁ ଆଉ ଆଜ ଏଇ କଥାକୁ ଆହୁରି ସୂକ୍ଷ୍ମତାର ସହିତ, ମନନଶୀଳତା ଓ ପ୍ରୟୋଗଶୀଳତା ସହକାରେ ପ୍ରକାଶିତ କଲାବେଳେ ସାଂପ୍ରତିକ କଳାକାର ବା ଅତ୍ୟାଧୁନିକ କଳାକାର ନିନ୍ଦନୀୟ ହେବ ମାହିଁକି ?

ସାହିତ୍ୟର ସ୍ୱରୂପ ବଦଳି ଯାଇଥାଇ ପାରେ, ହେଲେ ତା'ର ଧର୍ମ ଓ ଆତ୍ମାବଦଳି ଯାଇନି । ତାହା ଆହୁରି ସଚେତନ ହୋଇଛି, ବ୍ୟାପକ ହୋଇଛି ।

ସାଂପ୍ରତିକ ସାହିତ୍ୟର ଏଇ ପରୀକ୍ଷା ନିରୀକ୍ଷା, ବ୍ୟାଖ୍ୟା ବିଶ୍ଳେଷଣ ଓ ଅଭିବ୍ୟକ୍ତି ବେଳେ ବେଳେ ଏତେ ସୂକ୍ଷ୍ମ ହେଉଛି ଯେ ତାହା ଅନେକ ସମୟରେ ଦ୍ୱନ୍ଦ୍ୱର ସୃଷ୍ଟି କରୁଛି ଫଳତଃ ସାହିତ୍ୟର ପବିତ୍ରତାକୁ ସନ୍ଦେହ ଚକ୍ଷୁରେ ଦେଖିବାକୁ ହେଉଛି । କିନ୍ତୁ ଅତି ସ୍ଥୁଳ ଭାବରେ ବିଚାର କଲେ ମଧ୍ୟ ଏ ଆରୋପର କୌଣସି ଯଥାର୍ଥତା ରହିବ ନାହିଁ ଏବଂ ମନେ ହେବ ଯେ ସତେ ଯେପରି ଏହା କେବଳମାତ୍ର ଏକ ବସାବାନ୍ଧି ରହିଥିବା ଧାରଣାର ଫଳ ।

ସାଂପ୍ରତିକ ଗଳ୍ପ କବିତା, ବିଶେଷ କରି କବିତାକୁ ଅବୋଧ୍ୟ, କାବ୍ୟିକ ଛନ୍ଦମୟ ଶୈଳୀର ଅଭାବ-ଦୋଷରେ ଓ ପାଶ୍ଚାତ୍ୟ ପ୍ରଭାବରେ ପ୍ରଭାବିତ ବୋଲି ଏକ ପକ୍ଷ ଆଲୋଚକ କହି ଥାଆନ୍ତି । ମାତ୍ର ବିଚାର କଲେ କୌଣସି ଯୁଗରେ ସାହିତ୍ୟ ସହଜ ବୋଧ ନ ଥିଲା । ସବୁ ପ୍ରାଚୀନ

ସାହିତ୍ୟ, ବେଦ, ଉପନିଷଦ ଏବେ ମଧ୍ୟ ଦୁର୍ଗମ, ଯାହା ଫଳରେ ତା'ର ଅସଂଖ୍ୟ ବ୍ୟାଖ୍ୟା ବିଭିନ୍ନ ମନୀଷୀ ଓ ଚିନ୍ତାଶୀଳ ବ୍ୟକ୍ତି କରିଯାଇଛନ୍ତି ଓ କରୁଛନ୍ତି ଏବଂ ତା'ର ଦାର୍ଶନିକ ତତ୍ତ୍ୱବୋଧ ଆଜି ମଧ୍ୟ ସର୍ବାଧିକ ସ୍ରଷ୍ଟାଙ୍କୁ ପ୍ରଭାବିତ,ଆନ୍ଦୋଳିତ କରୁଛି ! ଏହାକୁ ପ୍ରତିପାଦିତ କରିବାକୁ ଉଦାହରଣର ଅଭାବ ନାହିଁ—'ଗୀତାଞ୍ଜଳି'ଠାରୁ ଆରମ୍ଭ କରାଗଲେ ମଧ୍ୟ ତା' ପଛରେ ଅସଂଖ୍ୟ ସାହିତ୍ୟ ସୃଷ୍ଟିର ପଟୁଆର ଛୁଟିଛି । ଏହା ବିନା ଆୟାସରେ ଅବଲୋକନ ଓ ହୃଦୟଙ୍ଗମ କରିହେଉଛି । ଏହି ଉପନିଷଦ୍ ଜ୍ଞାନାର୍ଜନର, ତତ୍ତ୍ୱବୋଧ ଦର୍ଶନର ଏହି ପଥକୁ 'କ୍ଷୁରସ୍ୟଧାରା ନିଶିତା ଦୁରତ୍ୟୟା ଦୁର୍ଗଂ ପଥସ୍ତତ୍'···ବୋଲି ମନେ କରିଛନ୍ତି । ପ୍ରାଚୀନ କାବ୍ୟ କବିତାରେ ବିଶେଷ କରି ଆମେ ଶବ୍ଦ କାଠିଣ୍ୟ, ଶବ୍ଦାବଳୀର ବିଭିନ୍ନ ଆଳଂକାରିକ ପ୍ରୟୋଗର ବହୁଳତା ଦେଖୁଁ । ଫଳସ୍ୱରୂପ ଭାବ ଦୂରବର୍ତ୍ତୀ ହୋଇଯାଉ-ଥିଲା ଓ ସେହି ଶବ୍ଦ ପ୍ରୟୋଗକୁ ବୁଝିଗଲେ ଭାବବୁଝିବା ସହଜ ହୋଇଯାଉଥିଲା । ମାତ୍ର ଏ ଅବୋଧତା ବର୍ତ୍ତମାନ ଶବ୍ଦରେ ନାହିଁ । କବିତାର ଭାବ ଅବୋଧ ହୋଇଯାଇଛି ଯେହେତୁ ସାଂପ୍ରତିକ ସାହିତ୍ୟ-କାରର କ୍ଷେତ୍ର ବର୍ତ୍ତମାନ ବ୍ୟାପକ, ତୃଣରୁ ତାରକା ଯାଏଁ ତା'ର କାବ୍ୟିକ ଉପାଦାନ, ଆକାଶର ଗଭୀର ନୀଳିମାଠାରୁ ଅତଳ ସିନ୍ଧୁର ପ୍ରଶାନ୍ତତା ଯାଏଁ ତା'ର କାବ୍ୟ ସୀମା । ଏହି କ୍ଷେତ୍ର ବ୍ୟାପକତା ସଙ୍ଗେ ସଙ୍ଗେ ପ୍ରକାଶଶୈଳୀ ଓ ଅଭିବ୍ୟକ୍ତିରେ ପ୍ରତୀକାତ୍ମକତା ଓ ସାଙ୍କେତିକତାର ସୂକ୍ଷ୍ମତା ମଧ୍ୟ ଭାବକୁ ଦୁର୍ବୋଧ କରିବାରେ ସହାୟକ ।

ବେଦ ରଚନାକାଳଠାରୁ ଆଧୁନିକ ଯୁଗର ଆରମ୍ଭ ଯାଏଁ, ପଞ୍ଚତନ୍ତ୍ରର ରଚନାକାଳ ଠାରୁ ଫକୀରମୋହନଙ୍କ ସାହିତ୍ୟସୃଷ୍ଟି ପର୍ଯ୍ୟନ୍ତ ପର୍ଯ୍ୟାଲୋଚନା କଲେ ଆମେ କଣ ଶୈଳୀର କୌଣସି ରୂପାନ୍ତରକୁ ଲକ୍ଷ୍ୟ କରୁନା ? ତେବେ ସାଂପ୍ରତିକ ଶୈଳୀର ପରିବର୍ତ୍ତନରେ ବା ପ୍ରୟୋଗରେ କ୍ଷୁଣ୍ଣ ହେବାର କଣ ଅଛି ?

ମହାକବି କାଳିଦାସ ବାଲ୍ମୀକିଙ୍କର ସାହିତ୍ୟ ସୃଷ୍ଟି ଦ୍ୱାରା ପ୍ରଭାବିତ, ଉପେନ୍ଦ୍ର ଭଂଜ କାଳିଦାସ ଓ ତାଙ୍କର ପୂର୍ବବର୍ତ୍ତୀ କବିମାନଙ୍କ ଦ୍ୱାରା ଅଳ୍ପ ଅଧିକ ପ୍ରଭାବିତ । ପ୍ରାଚୀନ ସାହିତ୍ୟ ସ୍ରଷ୍ଟା ଯଦି ଏ ପ୍ରଭାବରୁ ମୁକ୍ତ ନୁହନ୍ତି ତାହେଲେ ସାଂପ୍ରତିକ ସାହିତ୍ୟସ୍ରଷ୍ଟାଙ୍କୁ ଏ ଦୋଷରେ ଦୋଷୀକରିବାର ଯଥାର୍ଥତା କଣ ଅଛି ? ବର୍ତ୍ତମାନ କବିର କଳ୍ପନା ସୀମା

ବଦଳି ଯାଇଛି, ବୃହତ୍ତର ହୋଇଛି, ତା'ର ପାରିପାର୍ଶ୍ୱ କିମ୍ବା କୌଣସି ଭୌଗୋଳିକ ସୀମା ନାହିଁ । ବିଭିନ୍ନ ଭାଷାରୁ ବୁଝିବା ପଢ଼ିବାର ସୁଯୋଗ, ମୂଳଭାଷାର ଅଧ୍ୟୟନ ଏବଂ ଅନୁବାଦର ମାଧ୍ୟମରେ ଆସିଛି । ଫଳତଃ ତା'ର ଆହରଣର କ୍ଷେତ୍ରମଧ୍ୟ ବ୍ୟାପକ ହୋଇଛି । ପ୍ରାଚୀନ ସାହିତ୍ୟକାରଙ୍କୁ ତା'ର ସୀମା ଭିତରେ ବାଲ୍ମୀକି କାଳିଦାସ ପ୍ରଭାବିତ କରୁଥିଲେ ଯଦି ଆଜି ଆମେ ଦେଷ୍ଟୋଭସ୍କି, ମାୟୁକୋଭସ୍କି, ହ୍ୱିଟ୍‌ମେନ୍, ଇଲିଅଟ, ଓ ଏ ଜଗପାଉଣ୍ଡଙ୍କର ପ୍ରଭାବ ବିଭିନ୍ନ ଭାରତୀୟ କାବ୍ୟ ସୃଷ୍ଟିରେ ଦେଖିବା ସ୍ୱାଭାବିକ । କେବଳ ମାତ୍ର ଆମ ପକ୍ଷରେ ନୁହେଁ-ଭାରତୀୟ ଦର୍ଶନ ସାହିତ୍ୟ, କଳା ଠିକ୍ ସେପରି ବହୁ ସାଂପ୍ରତିକ ପାଶ୍ଚାତ୍ୟ କଳାକାରଙ୍କୁ ପ୍ରଭାବିତ କରୁଛି-ଅତୀତରୁ କରି ଆସିଛି ।

ମୁଁ ଅତି ଆସ୍ଥାବାନ । ମୁଁ ହୃଦୟ ସହିତ ଅନୁଭବ ଓ ସ୍ୱୀକାର କରେ ଯେ ଭାରତୀୟ ସାହିତ୍ୟ, ଓଡ଼ିଆ ସାହିତ୍ୟର କ୍ରମ ବିକାଶ ଅବଶ୍ୟ ଘଟୁଛି ଓ ଏହାଙ୍କ ଭବିଷ୍ୟତ ଅଧିକ ଉଜ୍ଜ୍ୱଳମୟ ।

କେବଳମାତ୍ର ସାହିତ୍ୟ କ୍ଷେତ୍ରରେ କାହିଁକି ଆଜି ସବୁ କ୍ଷେତ୍ରରେ, ରାଜନୈତିକ, ସାମାଜିକ ଏପରିକି ଆଧ୍ୟାତ୍ମିକ କ୍ଷେତ୍ରରେ ବି ଯେଉଁ ବିପ୍ଳବ ଦେଖାଦେଇଛି ; ବୈଚିତ୍ର୍ୟ ପରିଲକ୍ଷିତ ହେଉଛି ତାହା ଏକ ପ୍ରଗଳଭ୍ ବନ୍ୟା ସଦୃଶ ଯାହାକୁ ରୋକିବାର କ୍ଷମତା କାହାରି ହେଲେ ନାହିଁ । ଏହା ଯୁଗର ଦାବୀ, ଯୁଗର ପ୍ରାକୃତିକ ଗତି ତେଣୁ ସେହିଗତିର ବିପଥଗାମୀ ହେବାଠାରୁ ତା'ର ଅନୁକୂଳ ହେବା ଶ୍ରେୟସ୍କର ।

ତେବେ ଗୋଟିଏ କଥା । ସବୁ ସମୟରେ ଲେଖକ ପକ୍ଷରେ ପାଠକଙ୍କୁ ଦୋଷ ଦେଇ ଲାଭ ନାହିଁ । ସାଂପ୍ରତିକ ଗଳ୍ପ କବିତାରେ ବ୍ୟବହୃତ ହେଉଥିବା ପ୍ରତୀକ କିମ୍ବା ଚିତ୍ରକଳ୍ପ ଓ ରୂପକ ଜରିଆରେ ଭାବର ଅଭିବ୍ୟକ୍ତି ଅନେକ ସମୟରେ ବୁଝିବାକୁ ବହୁପାଠିତାର ଆବଶ୍ୟକ । ଯାହା ସବୁ ପାଠକଙ୍କ ପାଖରେ ଆଶା କରାଯାଇପାରିବ ନାହିଁ । ସବୁ ପାଠକ କାହିଁକି ସବୁ ସାହିତ୍ୟକାରଙ୍କ ପାଖରେ ଆଶା କରିବା ମଧ୍ୟ ଅସମୀଚୀନ । ଏକ୍ଷେତ୍ରରେ ଆମର ଆଲୋଚନା ସାହିତ୍ୟର ଯଥେଷ୍ଟ ଅଭାବ ଉପଲବ୍ଧି କରିବାକୁ ପଡ଼ିଥାଏ । ହୁଏତ କାଳକ୍ରମେ ଏ ଅଭାବ ଦୂରୀଭୂତ ହେବ ଏବଂ ସୁସମାଲୋଚନା ସାହିତ୍ୟକୁ ପାଠକ-ଲେଖକ-ପାଠକର ନିକଟତମ କରିବ ।

ଆଉ ଏକ କଥା, ଥରେ ମୋର ଜଣେ ଅଧ୍ୟାପକ ଲେଖକ ବନ୍ଧୁ ମନ୍ତବ୍ୟ ପ୍ରକାଶ କଲେ "ଭଲଠାରୁ ମନ୍ଦ ମଣିଷକୁ ଚଞ୍ଚଳ ଆକୃଷ୍ଟ କରେ । ମୋ ମତରେ ଆପଣା ପ୍ରତି ଅନ୍ୟର ଦୃଷ୍ଟି ଆକର୍ଷଣ କରିବାକୁ ଶାଳୀନତା ତ୍ୟାଗକରି ଉଲଗ୍ନ ନୃତ୍ୟକରିବାକୁ ଆଧୁନିକ ସାହିତ୍ୟକାର ଉଦ୍ୟମଶୀଳ ନୁହେଁ ତ ?"

ମୁଁ ବିଶ୍ୱାସ କରୁଛି ନୁହେଁ । ତେବେ ଏ ପ୍ରବୃତ୍ତି ଅବଶ୍ୟ ମାରାତ୍ମକ ସତ୍ୟ ହୋଇଥିଲେ ଅବଶ୍ୟ ଆତ୍ମଘାତିକ । ସାହିତ୍ୟ ସମାଜ ଓ ରାଷ୍ଟ୍ରର ମଙ୍ଗଳ ବିଧାନ କରୁ । ମଣିଷକୁ ସୁସଂସ୍କୃତ କରୁ । ଅସତ୍ ବିରୁଦ୍ଧରେ ଯୁଦ୍ଧ ଘୋଷଣାକରୁ । ଏହା ସାଂପ୍ରତିକ ସାହିତ୍ୟ ସୃଷ୍ଟିର ମୂଳ ଉଦ୍ଦେଶ୍ୟ ହେବା ଉଚିତ । ତା'ର ପ୍ରକାଶ ଶୈଳୀ ଓ ମାଧ୍ୟମ ଏକ ଗୌଣ କଥା ।

---

# ମୋ ଦୃଷ୍ଟିରେ ସାମ୍ପ୍ରତିକ ଓଡ଼ିଆ ସାହିତ୍ୟର 'ଦର୍ଶନ'

ଅଧ୍ୟାପକ ଶ୍ରୀ ସୀତାକାନ୍ତ ମହାନ୍ତି

ଶାସ୍ତ୍ର ବା ପୁରାଣରେ ନୁହେଁ—ଲୋକସ୍ମୃତିରେ ଶୈବାଳାଛନ୍ନ ଆଖ୍ୟାୟିକାଟିଏ । ଯମରାଜଙ୍କ ଦରବାରରେ ସେଦିନ ନରହନ୍ତାଟି ପାଇଁ ଦଣ୍ଡାଦେଶ ହେଲା ନରକ-ଦର୍ଶନ ଓ ସାହିତ୍ୟିକଟି ପାଇଁ ନରକ-ବାସ ! ଆଶ୍ଚର୍ଯ୍ୟ !!

କିନ୍ତୁ ବାସ୍ତବ ପୃଷ୍ଠଭୂମିରୁ ଏହାର ପର୍ଯ୍ୟାଲୋଚନା କଲେ ସତ୍ୟଟି ଆଖିରେ ବେଶ ଧରାପଡ଼େ । ପ୍ରଥମ କାର୍ଯ୍ୟଟିର ପ୍ରତିକ୍ରିୟା ତାତ୍କାଳିକ ହେଉଥିବାବେଳେ ଅସାମାଜିକ ଓ ଅରୁଚିକର ସାହିତ୍ୟ-ସୃଷ୍ଟିର ପରିଣତି ଯେ ସୁଦୂର-ପ୍ରସାରୀ ଏହା ନିଶ୍ଚିତ । ପରୋକ୍ଷରେ ଏଇ ଆଖ୍ୟାୟିକାଟି ସ୍ରଷ୍ଟାର ଦାୟିତ୍ୱବୋଧ ସମ୍ପର୍କରେ ମଧ୍ୟ ଏକ ସଚେତ-ବିଜ୍ଞପ୍ତି ।

ସାହିତ୍ୟରେ 'ସାମ୍ପ୍ରତିକ' କଥାଟି ସୃଷ୍ଟିର ସମକାଳୀନ ଅବସ୍ଥାକୁ ସୂଚାଇଲେ ବି ଏହାର ପରିଣତି 'ବର୍ତ୍ତମାନ'ରେ ହିଁ ସୀମାବଦ୍ଧ ହୋଇ ରହେନି । ଅନ୍ୟପକ୍ଷରେ କଳା ହେଉ ବା ସାହିତ୍ୟ ହେଉ ତାର ସୃଷ୍ଟି-ସତ୍ତା ଅକାରଣ ବା ଆକସ୍ମିକ ହୋଇ ପାରେନା ; ଯେହେତୁ ବିଶ୍ୱର ପ୍ରତିଟି ବସ୍ତୁ କାର୍ଯ୍ୟ-କାରଣ ଓ ପରିଣତିର ଅଚ୍ଛେଦ୍ୟ-ସୂତ୍ରରେ ଗ୍ରଥିତ । ଏଣୁ ସାହିତ୍ୟର ସୃଷ୍ଟି ଅନ୍ତରାଳରେ ଏକ ପୃଷ୍ଠଭୂମି ରହିବାକୁ ବାଧ୍ୟ ଓ ସୃଷ୍ଟିର ଉତ୍ତର-କାଳରେ ପରିପାର୍ଶ୍ୱ ପ୍ରତି ମଧ୍ୟ ତାର ଯଥାନୁପାତିକ ପ୍ରଭାବ ରହିବା ସ୍ୱୟଂ-ନିଶ୍ଚିତ ।

ମଣିଷର ଜୈବୀ-ସତ୍ତାର ସହଜ ଆକୁତିରୁ ସାହିତ୍ୟର ସୃଷ୍ଟି ହୋଇଥିଲା । ଏହି ସହଜ-ଆକାଙ୍କ୍ଷା ହେଲା ଅସ୍ତିତ୍ୱ ଓ ବର୍ଦ୍ଧନ (Existence and Growth) ଏବଂ ଏହାର ପରିପୂରକ ଭାବେ ସାହିତ୍ୟ

ମାନବ-ଚେତନାର ଗୋଟିଏ ଉଜ୍ଜ୍ୱଳ-ଅଭିଲେଖ । ଚିନ୍ତନର ମଞ୍ଜୁଳ-ଆଲେଖ୍ୟ ରୂପେ ସାହିତ୍ୟ ଏବଂ ତାର ରୂପକାର ଭାବେ ସାହିତ୍ୟିକ ଉଭୟେ ଏହି କାରଣରୁ ସମାଜରେ ଶୀର୍ଷ-ଆସନ ଲାଭ କରି ଆସିଛନ୍ତି । ହୁଏତ ସେଇଥିପାଇଁ ସେଦିନ କାନ୍ତ-ଭାବନାର ଋଦ୍ଧ-ଦ୍ରଷ୍ଟାରେ ବୈଦିକ-ଋଷିଙ୍କର ସ୍ରଷ୍ଟା-ପୁରୁଷଙ୍କ ନିକଟରେ ଆକୁଳ ନିବେଦନ ଜଣାଇଛି—

"ଆ ନୋ ଭଦ୍ରାଃ କ୍ରତବୋ ଯନ୍ତୁ ବିଶ୍ୱତଃ" (ଋଗ୍‌ବେଦ)
ଅର୍ଥାତ୍
"ଶୁଭ ଚିନ୍ତନ ସବୁ ଦିଗରୁ ବହି ଆସୁ ।"

ଆଜି ମଧ୍ୟ ଶତାବ୍ଦୀର ପ୍ରତିଚୀ-ତଟରେ ଠିଆ ହୋଇ ସାମ୍ପ୍ରତିକ-ଓଡ଼ିଆ ସାହିତ୍ୟକୁ ପର୍ଯ୍ୟାଲୋଚନା କଲାବେଳେ ସୃଜନ-ଶୀଳତାର ଏହି ବୀଜ-ମନ୍ତ୍ରକୁ ଅସ୍ୱୀକାର କରି ହେଉ ନାହିଁ ।

ସ୍ଥୂଳ ଦୃଷ୍ଟିରେ— ସାମ୍ପ୍ରତିକ ଓଡ଼ିଆ ସାହିତ୍ୟର ଆଙ୍ଗିକ ପରିଚୟ ହେଉଛି, ସମ-ସାମୟିକ ପତ୍ର-ପତ୍ରିକା, ପୁସ୍ତକ, ବେତାର ଓ ସଭା-ସମ୍ମେଳନ ଯାହା ମାଧ୍ୟମରେ ଆଜିର ରଚନାବଳୀ ଆମର ଦୃଷ୍ଟି-ଶ୍ରୁତିକୁ ସ୍ପର୍ଶ କରେ ଏବଂ ଏ ସମସ୍ତ ସୃଷ୍ଟି-ଶୀଳ-ପ୍ରକାଶର ଅନ୍ତରାଳରେ ରହିଥିବା ଅନ୍ତଃ-ପ୍ରକୃତିର ସହିତ-ସୂସଂଯୁତ-ରୂପ ହିଁ ଚଳନ୍ତି ସାହିତ୍ୟଧାରାର ଆତ୍ମିକ ବିଭବ ।

କବିତା, କ୍ଷୁଦ୍ରଗଳ୍ପ, ନାଟକ, ଉପନ୍ୟାସ ଓ ସନ୍ଦର୍ଭ ଆଜି ସାହିତ୍ୟର ବିଭିନ୍ନ ବିଭାବଗୁଡ଼ିକର ଆଙ୍ଗିକ-ସ୍ୱାତନ୍ତ୍ର୍ୟ ସତ୍ତ୍ୱେ ସୃଜନ-ପାଟବରେ (ଭାଷା-ବିନ୍ୟାସ, ଶିଳ୍ପ-ସୌନ୍ଦର୍ଯ୍ୟ ଓ ଭାବ-ପ୍ରକାଶରେ) ଯେଉଁ ଐକ୍ୟ-ତାନ ବାଜି ଉଠେ ତାହାହିଁ ସମ୍ପ୍ରତିକ ଓଡ଼ିଆ ସାହିତ୍ୟର ସାମଗ୍ରିକ ରୂପ । ଏହି ସୂତ୍ରକୁ ହିଁ ଆଶ୍ରୟ କରି ଆଜିର ସାହିତ୍ୟ-ଧାରାକୁ ବିଗୁରିକୁ ନେବାକୁ ହେବ ।

ସାମ୍ପ୍ରତିକ ଓଡ଼ିଆ ସାହିତ୍ୟର ସୃଷ୍ଟି-ଦ୍ୟୋତନା ଊନବିଂଶ ଶତାବ୍ଦୀର୍‌.ଶେଷାଂଶରେ ହିଁ ନିହିତ । ୧୮୩୦ ଖ୍ରୀଷ୍ଟାବ୍ଦରେ ମ୍ୟାକଲେଙ୍କ-ଦ୍ୱାରା ଅନୁସୃତ ଶିକ୍ଷା-ଯୋଜନା ଫଳରେ ପ୍ରଥମକରି ଭାରତୀୟ ଲେଖକ-ମାନେ ଇଂରାଜୀ ଭାଷା ମାଧ୍ୟମରେ ପାଶ୍ଚାତ୍ୟ-ଦର୍ଶନ ଓ ସାହିତ୍ୟ ସହିତ ପରିଚିତ ହେଲେ । ଅବଶ୍ୟ ଓଡ଼ିଶାରେ ଏହାର ପ୍ରବେଶ ଓ ପ୍ରସାର ପୌନ୍ନ ଶତକ ବର୍ଷ ବିଳମ୍ବରେ ସଙ୍ଘଟିତ ହୋଇଥିଲା ପାଶ୍ଚାତ୍ୟ-ଶିକ୍ଷାରେ ପ୍ରଥମେ

ପ୍ରଭାବାନ୍ୱିତ ବଙ୍ଗୀୟଗଣ ଓଡ଼ିଶାର ଶିକ୍ଷା ଓ ଶାସନ କ୍ଷେତ୍ରରେ ଉଚ୍ଚାସନ ଲାଭ କରିବା ଯୋଗୁଁ ବଙ୍ଗ-ଭାଷା ଓ ସାହିତ୍ୟର ପ୍ରଭାବ ମଧ୍ୟ ଓଡ଼ିଆ ସାହିତ୍ୟ ଉପରେ ଗଭୀର ରେଖାଙ୍କନ କଲା । ଏହାର ସ୍ୱାକ୍ଷର ଆମେ ରାଧାନାଥ ଓ ତାଙ୍କର ସମକାଳୀନ ଓଡ଼ିଆ କବି ଓ ଲେଖକମାନଙ୍କ ରଚନାରେ ଦେଖିବାକୁ ପାଉଁ ; ଯଦିଓ ଫକୀରମୋହନ ଏ ଦିଗରେ ଏକ ବ୍ୟତିକ୍ରମ ଏବଂ ତାଙ୍କ ପରବର୍ତ୍ତୀ ସତ୍ୟବାଦୀ-ଗୋଷ୍ଠୀ ଏ ଧାରାର ଏକ ପ୍ରତିବାଦ ; ତଥାପି ଆଙ୍ଗିକ ଦୃଷ୍ଟିରୁ ଉଭୟେ ସେହି ଏକ ଚେତନାର ହିଁ ପରିପୂରକ । ବରଂ ସତ୍ୟବାଦୀର ସୃଜନା-କଳା ତାର ବଙ୍ଗ-ବିରୋଧୀତା ସତ୍ତ୍ୱେ ପାଶ୍ଚାତ୍ୟ-ଧାରାର ଅଧିକ ନିକଟତର ହୋଇ ଆସିଛି ; କିନ୍ତୁ ଏ ଯୁଗରେ ଓଡ଼ିଆ ସାହିତ୍ୟରେ ପାଶ୍ଚାତ୍ୟ-ଦର୍ଶନ ଓ ସାହିତ୍ୟର ପ୍ରଭାବ କେବଳ ଏକ ସମନ୍ୱୟୀ ଭୂମିକାରେ ହିଁ ସୀମାବଦ୍ଧ ରହିଥିଲା । ଯେହେତୁ ସେ କାଳର ସାହିତ୍ୟ-ସ୍ରଷ୍ଟାଗଣ ଓଡ଼ିଆ ଓ ସଂସ୍କୃତ ସାହିତ୍ୟର ସୁଦୀର୍ଘ ପରମ୍ପରା ସମ୍ପର୍କରେ ଗଭୀର ଭାବେ ସଚେତନ ଥିଲେ । ଅଥଚ ପରବର୍ତ୍ତୀ ଯୁଗରେ ଏହି ମୌଳିକ-ପୃଷ୍ଠଭୂମି ଓଡ଼ିଆ ସାହିତ୍ୟରୁ ଧୀରେ ଧୀରେ ଅପସୃତ ହେବାକୁ ଲାଗିଲା ଏବଂ ସବୁଜ-କବିଦଳ ଓ ତାଙ୍କର ସମକାଳୀନ ସୃଷ୍ଟି ଶିଳ୍ପ ହିଁ ଏହି ସାଂସ୍କୃତିକ-ଅବକ୍ଷୟର ଶୀର୍ଷ-ବିନ୍ଦୁରେ ପ୍ରତିଷ୍ଠିତ । ଏ ସମସ୍ତ କ୍ରିୟା-ପ୍ରତିକ୍ରିୟାକୁ ସାମ୍ପ୍ରତିକ ଓଡ଼ିଆ ସାହିତ୍ୟର ପ୍ରାଚୀନ-ପୃଷ୍ଠଭୂମି ରୂପେ ନିଆଯାଇପାରେ ।

ବସ୍ତୁତଃ, ଗତ ତ୍ରି-ଦଶକର ଗର୍ଭବେଦନା ହିଁ ଆଜିର ଓଡ଼ିଆ ସାହିତ୍ୟକୁ ଜନ୍ମ ଦେଇଛି । ଦ୍ୱିତୀୟ-ବିଶ୍ୱଯୁଦ୍ଧର ଘନଘଟା, ଭାରତର ସ୍ୱାଧୀନତା ସଂଗ୍ରାମ ମାର୍କସୀୟ ଦର୍ଶନର ପ୍ରୟୋଗ, ଫ୍ରୟେଡ଼ୀୟ ମନୋ ବିଜ୍ଞାନର ଗୂଢ଼ଗ୍ରନ୍ଥିକର ଆବିଷ୍କ୍ରିୟା—ଏହି ସମସ୍ତ ବିଗତ ଦଶକ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟକୁ ବିଶେଷ ଭାବେ ପ୍ରଭାବିତ କରି ଆସିଥିଲା । ଅବଶ୍ୟ ଏହା ମଧ୍ୟ ଆଜି କ୍ଷୟିଷ୍ଣୁ ଅବସ୍ଥା ପ୍ରାପ୍ତ ହେବାକୁ ବସିଲାଣି ; କିନ୍ତୁ ଦୀର୍ଘ ଦୁଇ-ଦଶକ (୧୯୫୦-୭୦) ଧରି କବିତା, ନାଟକ, ଉପନ୍ୟାସ କ୍ଷୁଦ୍ର-ଗଳ୍ପରେ ଏହି ଚିନ୍ତାର ପରିବେଷଣ ଓଡ଼ିଆ ସାହିତ୍ୟର ସୃଷ୍ଟି-ସମ୍ଭାରକୁ ନିଶ୍ଚିନ୍ତ ଭାବେ ବିପୁଳାୟତନ କରିଛି ।

ଚିନ୍ତାଗତ ଆହରଣ ବ୍ୟତୀତ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାବର ଆଙ୍ଗିକ କ୍ଷେତ୍ରରେ ଯେଉଁ ଶାନ୍ତ-ହୀନ ନିରବଚ୍ଛିନ୍ନ ପରୀକ୍ଷା-ନିରୀକ୍ଷା ହୋଇ ଯାଇଛି, ତାହା ଯେ ନୂତନ ଦିଗନ୍ତର ଉଦ୍‌ଘାଟନ

ଲକ୍ଷ୍ୟରେ ଅନୁପ୍ରେରିତ ଏକ ଉଦ୍ଦାମ ଆକୁଳତା ଏହା ସ୍ୱୀକାର୍ଯ୍ୟ । ବିଶେଷତଃ କବିତା କ୍ଷେତ୍ରରେ ନୂତନ ନୂତନରୂପକଳ୍ପ ଓ ପ୍ରତୀକର ସଂଯୋଜନା, ପ୍ରକାଶ ଭଙ୍ଗୀରେ କୌଶଳ, ସଜ୍ଜିକରଣରେ କାରୁ-କର୍ମ ଆଦି ଏ ସମୟର ସୃଷ୍ଟିଲାଗି ବ୍ୟକ୍ତିତ୍ୱ ଆହରଣ କରିଛନ୍ତି । କ୍ଷୁଦ୍ରଗଳ୍ପ, ଉପନ୍ୟାସ ଓ ନାଟକରୁ କାହାଣୀର ଗତାନୁଗତିକତାକୁ ପରିହାର କରାଯାଇ ନୂତନ ଶୈଳୀ ଓ 'ଟେକ୍‌ନିକ୍'ର ପ୍ରୟୋଗ ହୋଇଛି । ଏବଂ ଲେଖକଗଣ ସ୍ୱୀୟ ରଚନାରେ ନିର୍ଦ୍ଦିଷ୍ଟ ଭୌଗୋଳିକ-ପରିସୀମାକୁ ଅତିକ୍ରମ କରି ଏକ ବୃହତ୍-ବିଶ୍ୱର ଚିତ୍ର ଦେଖିବାରେ ପ୍ରୟାସୀହୋଇଛନ୍ତି; କିନ୍ତୁ ଏହି ସମସ୍ତ ସୃଷ୍ଟି-ଧର୍ମୀ ରଚନା ପଛରେ ଜାତୀୟ-ସାଂସ୍କୃତିକ ସତ୍ତା ଅତି କ୍ଷୀଣ ଏବଂ ଅଧିକାଂଶ କ୍ଷେତ୍ରରେ ଏହା ପାଶ୍ଚାତ୍ୟ-ଚିନ୍ତା ଓ ରଚନା-ଶୈଳୀର ନକଲ-ଅନୁକୃତି ; କିନ୍ତୁ ବିଗତ ଦଶକ (୧୯୭୦ ପର୍ଯ୍ୟନ୍ତ)ରେ ଦେଖା ଦେଇଥିବା ପ୍ରଚୁର ଆଗ୍ରହ ଓ ପ୍ରଚ୍ଛନ୍ନ କ୍ରିୟାଶୀଳତା ନିଶ୍ଚିତ ଭାବେ ସ୍ୱାଗତ ଯୋଗ୍ୟ । ଏହି ସମୟର ବିପୁଳାୟତନ ସୃଷ୍ଟି ଗୁଣାତ୍ମକ ଦୃଷ୍ଟିରୁ ସଂଖ୍ୟାଲଘୁ ହେଲେହେଁ ଅନ୍ତତଃ ନୂତନ କିଛିଟା ଆବିଷ୍କାର ନିଶ୍ଚୟ ।

ଏହି ସମସ୍ତ ପରୀକ୍ଷା-ନିରୀକ୍ଷାର ଶ୍ରମ-ବିଳାସ ଅନ୍ତେ ମନେହୁଏ, ଆଜିର ଓଡ଼ିଆ ସାହିତ୍ୟ ଯେମିତି ଶୂନ୍ୟତା ଓ ପ୍ରଶ୍ନବାଚୀର ସମ୍ମୁଖୀନ ହୋଇଛି ୧୯୬୧ ରୁ ୧୯୭୦ ପର୍ଯ୍ୟନ୍ତ ଏହି ଦଶବର୍ଷ ଯାହାକୁ କି ସାମ୍ପ୍ରତିକ ଓଡ଼ିଆ ସାହିତ୍ୟର ସାର୍ଥକ ପ୍ରତିନିଧି ରୂପେ ଗ୍ରହଣ କରାଯିବା କଥା, ତାହା ଏକ ଥକ୍‌କା ଅବସ୍ଥା । କଣ୍ଟା କ୍ଷେତର ଅଣ୍ଟା ଭିତରୁ କୁଆଁ ମେଲିଥିବା କେତୋଟି ସବୁଜ ପତ୍ର ପରି ସାମ୍ପ୍ରତିକ ଓଡ଼ିଆ ସାହିତ୍ୟରେ ସୃଷ୍ଟିର ନୂତନ ପରିଚୟ ଅତି କ୍ଷୀଣ ।

ଗଳ୍ପ-ଉପନ୍ୟାସରୁ 'ପ୍ଲଟ' ପରେ 'ଥିମ୍' ବି ଗୁଳିଯିବାକୁ ବସିଲାଣି । ଓଡ଼ିଆ ଭାଷା ଉପରେ ଆଜିର କଳା-ବିଳାସ ଶୂନ୍ୟ-ଭିତ୍ତି ଧର୍ଷଣ-ପାଠକ ଉପରେ ପ୍ରଭାବ ପକାଇ ପାରୁନି । କେତୋଟି ବିଶେଷ ରଚନାକୁ ବାଦ ଦେଲେ—ଅଧିକାଂଶତଃ କବିତାର ରୂପକଳ୍ପ ନିର୍ବାଚନ ଓ ପ୍ରୟୋଗ କ୍ଷେତ୍ରରେ ନୈର୍ବ୍ୟକ୍ତିକତାର ଅଭାବ, ବୌଦ୍ଧିକତାର ମାୟା-ନିର୍ମୋକ ତଳେ ଚିନ୍ତା-ବିଭ୍ରାଟି, କପଟ-ଶୂନ୍ୟତାର ଶୀର୍ଷକରେ ନିମ୍ନ ମନର ରୁଚିହୀନ ସହଜିଆ ଇତିବୃତ୍ତର ବର୍ଣ୍ଣନା ଆଜି ସାହିତ୍ୟରେ ମାନବିକ-ସଂବେଦନା ଓ ରସ ବୋଧକୁ ଅଗ୍ରାହ୍ୟ କରିଛନ୍ତି । ଅବଶ୍ୟ ନାଟକ

ରଚନା କ୍ଷେତ୍ରରେ ନୂତନ ପରୀକ୍ଷାମାନ ଅନୁଷ୍ଠିତ ହୋଇଥିଲେ ହେଁ, ତାହା ବଲଗା ହୀନ ପଶୁପରି ପଥଭ୍ରଷ୍ଟ ହୋଇ ପାରିନି । ତା'ର କାରଣ 'କମ୍ପୋଜିଟ୍ ଆର୍ଟ' ଭାବରେ ନାଟକ ସମାଜ ସହିତ ସମ୍ପର୍କ ରଖିବାକୁ ବାଧ୍ୟ ।

ସମାଲୋଚନା-ସାହିତ୍ୟ ଅନ୍ତତଃ ସେ ପରିସ୍ଥିତିରେ ଦିଗ୍‌ବାରଣୀର ଭୂମିକା ଗ୍ରହଣ କରି ପାରନ୍ତା କିନ୍ତୁ ଆଜିର ଓଡ଼ିଆ ସାହିତ୍ୟ ଏ ଦିଗରୁ ଅତି ନିଃସ୍ୱ । ସେହିପରି କେତୋଟି ଲେଖାକୁ ବାଦ୍‌ଦେଲେ ଅନ୍ୟଗୁଡ଼ିକ କେବଳ ଐତିହାସିକ ଟିପ୍‌ପଣୀ ପ୍ରଦାନ ଓ ଉଦ୍ଧୃତି ପରିବେଷଣରେ ହିଁ ପର୍ଯ୍ୟବସିତ । ଅନ୍ୟ ପକ୍ଷରେ ଅଧିକାଂଶ ଲେଖା ସମାଲୋଚନା ନାମରେ ଶତ୍ରୁ-ମିତ୍ର ବା ଯୁକ୍ତି-ବର୍ଜ୍ଜିତ ମଧ୍ୟମ ପୁରୁଷର ଭୂମିକା ହିଁ ଗ୍ରହଣ କରିଛନ୍ତି । ଏଣୁ ସୁସ୍ଥ ସମାଲୋଚନା ଲାଗି ଆବଶ୍ୟକ ପ୍ରଜ୍ଞା ଓ ପାଣ୍ଡିତ୍ୟର ଉତ୍ତରାଧିକାର ଏ ପର୍ଯ୍ୟନ୍ତ ପ୍ରାପ୍ତ ସାଂପ୍ରତିକ ଓଡ଼ିଆ ସାହିତ୍ୟକୁ ମିଳିନାହିଁ ।

ମୌଳିକ-ସନ୍ଦର୍ଭ ମଧ୍ୟ ଆଜି ବିରଳ । ଏଣୁ ସାହିତ୍ୟିକ ମାନଙ୍କ ସାମ୍ନାରେ ଉଚ୍ଚ ଜୀବନ-ଦର୍ଶନର ପ୍ରତିଫଳନ ଲାଗି ଆଇନାଟିଏ ବି ନାହିଁ । ଏହି କାରଣରୁ ଆଜି ସ୍ରଷ୍ଟାର ଭାବ-ଭୂମି ଅସ୍ଥିର ଓ ଆନମନା ।

ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଆଜିର ଏହି ଆନମନା ପରିସ୍ଥିତିର କାରଣ ରୂପେ ପାଶ୍ଚାତ୍ୟ-ସାହିତ୍ୟକୁ ହିଁ ଧରି ନିଆଯାଇ ପାରେ । ପାଶ୍ଚାତ୍ୟ ଦେଶମାନଙ୍କରେ ମଣିଷର ବିଡ଼ମ୍ବିତ ଅସ୍ଥିର ଜୀବନ ଭିତରୁ ପୁନଃ ପୁନଃ ସୃଷ୍ଟିହେଉଥିବା 'ବାଦ' (ism) ଗୁଡ଼ିକୁ ବିଗ୍ଭରଶୂନ୍ୟ ଭାବେ ଆମ ଜଳ-ବାୟୁରେ ରୋପଣ କରିବାର ଉଦଗ୍ର ଲାଳସା ଯୋଗୁଁ ଅନେକ କ୍ଷେତ୍ରରେ ରଚନା ସଫଳ ହୋଇପାରୁନାହିଁ । କାରଣ ଆମର ସାଂସ୍କୃତିକ-ସଙ୍କଟ ତତ୍ତୁଲ୍ୟ ନୁହେଁ । ତେଣୁ ଆଜିର ଓଡ଼ିଆ ସାହିତ୍ୟ ସେହି ବାଦ-ବିଶେଷଙ୍କର ଏକ 'ଅରକ୍ଷ-ନିବାସ'ରେ ହିଁ ପରିଣତ ହୋଇଛି । ଫଳରେ, ବୈଶିଷ୍ଟ୍ୟ-ହୀନ ହେବା ଯୋଗୁଁ ଆଜିର ରଚନା ଅତି ଅଳ୍ପ କାଳ ଭିତରେ ପ୍ରଭାବ ଶୂନ୍ୟ ହୋଇ ପଡ଼ୁଛି ।

ଯା' ଛଡ଼ା, ଯାହା କିଛି ପ୍ରାଚୀନ ତାକୁ ଭାଙ୍ଗିଦେବା ଲାଗି ଆଜି ତରୁଣ ସାହିତ୍ୟିକଙ୍କ କଣ୍ଠରେ ଯେଉଁ ନୂତନ ଝଡ଼ ଉଠିଛି, ବସ୍ତୁତଃ ଏହାହିଁ ହେଉଛି ଓଡ଼ିଆ ସାହିତ୍ୟର ସବୁଠାରୁ ବଡ଼ ଜୀବନ-ସଙ୍କଟ । ପରମ୍ପରାକୁ ଅସ୍ୱୀକାର କରିବା ଅର୍ଥ ନିଜର ଅସ୍ତିତ୍ୱକୁ ଅସ୍ୱୀକାର କରିବା

ଦେଶର ସାହିତ୍ୟ, ଦର୍ଶନ ଓ ଜୀବନ ସଂପର୍କରେ ଅଜ୍ଞତା ହିଁ ଆଜିର ଏହି ନିର୍ମୂଳ (root-less) ମନୋବୃତ୍ତିର ନିଦାନ। ସବୁଠାରୁ ଆଶ୍ଚର୍ଯ୍ୟର କଥା—କୁସଂସ୍କାରକୁ ବିଦାୟ ଦେବାର ଅର୍ଥ ସମ୍ପୂର୍ଣ୍ଣ ଭାବେ ପରମ୍ପରାକୁ ବାଜ୍ୟାପ୍ତ କରିବାର ଅର୍ଥ ସଙ୍ଗେ ସାମିଲ୍ ହୋଇ ଯାଇଛି। ଅଥଚ ଜାତୀୟ ଶୁଦ୍ଧ-ପରମ୍ପରା ଓ ସାଂସ୍କୃତିକ ଭିତ୍ତିଭୂମି ହିଁ ବିଶ୍ୱର ଶ୍ରେଷ୍ଠ ରଚନାଗୁଡ଼ିକର ପ୍ରାଣ। ବିଶିଷ୍ଟ ପାଶ୍ଚାତ୍ୟ ସମାଲୋଚକ ସାମ୍ପସନ୍‌ଙ୍କ ଭାଷାରେ—

> "An artist of the first rank accepts tradition and enriches it; an artist of the lower rank accepts the tradition and repeats it; an artist of the Lowest rank rejects the tradition and strives for the originality."

ଏହାର ନିକଟତମ ଉଦାହରଣ ଭାବେ ଗ୍ରହଣ କଲେ ଆମେ ଦେଖୁଁ, ରବୀନ୍ଦ୍ର-ସାହିତ୍ୟର ସାର୍ବଜନୀନତା ଭାରତୀୟ ସଂସ୍କୃତି ଓ ଜୀବନ-ଦର୍ଶନର ନବୀକୃତ ରୂପ ଛଡ଼ା ଅନ୍ୟ କିଛି ନୁହେଁ।

କାରଣ ସ୍ୱରୂପ କୁହାଯାଇପାରେ ଯେ, ଦୀର୍ଘକାଳର ପରାଧୀନତା ଆମର ଜାତୀୟ ଚରିତ୍ରକୁ ଆତ୍ମହେୟଜ୍ଞାନ-ପୀଡ଼ିତ କରି ପକାଇଛି। ଏଣୁ ଶାସକ-ଜାତିର ଭାଷା-ସାହିତ୍ୟ ସବୁ କିଛି ପ୍ରତି ଏକ ଅଳୀକ ଆନୁଗତ୍ୟ ଏହାର ଅବଶ୍ୟମ୍ଭାବୀ ପରିଣତି; କିନ୍ତୁ ଜଣେ ଚେତନଶୀଳ ସ୍ରଷ୍ଟା ପକ୍ଷରେ ଅନନ୍ତ କାଳ ଲାଗି ଏ ପ୍ରକାର ବିଚାରଶୂନ୍ୟ ଅନୁକୃତି ଓ ତଜ୍ଜନିତ ଆତ୍ମଶ୍ଳାଘା ଯେ, ଊର୍ଦ୍ଧ୍ୱ-ଚିନ୍ତନ କ୍ଷେତ୍ରରେ ଏକ ନିଶ୍ଚିତ ପ୍ରତିବନ୍ଧକ—ଏ କଥା ସ୍ୱୀକାର କରିବାକୁ ପଡ଼ିବ।

ସାହିତ୍ୟ ସୃଷ୍ଟି ଆଜି ପ୍ରଥମ କରି କରାଯାଉନାହିଁ। ସାହିତ୍ୟର ଗତି ମଧ୍ୟ ସ୍ଥବିର ନୁହେଁ। ବିବର୍ତ୍ତନର ଧାରା ସହିତ ଯୁଗେ ଯୁଗେ ସାହିତ୍ୟ ନୂତନ ରୂପ-ଛନ୍ଦରେ ଆତ୍ମପ୍ରକାଶ କରିଛି। ଭାଷା, ଶୈଳୀ ଓ ଆଙ୍ଗିକର ପରିବର୍ତ୍ତନ ସତ୍ତ୍ୱେ ସହସ୍ର ସହସ୍ର ବର୍ଷ ଅତିକ୍ରମ କରି ଆଜି ଯେଉଁ ସାହିତ୍ୟ ଏବେ ବି ଏକ ସାର୍ବଜନୀନ ଆବେଦନ ନେଇ ବଞ୍ଚିରହିଛି ବା ଯେଉଁ ସାହିତ୍ୟ ସ୍ୱଳ୍ପକାଳ ମଧ୍ୟରେ ସ୍ୱୀକୃତି-ହୀନ ହୋଇ ପଡ଼ୁଛି, ଏଇ ଦୁଇ ଭିନ୍ନ ପ୍ରକୃତି-ଗତ ପରିଣତିର କାରଣ ଖୋଜି ଯାଇଁ ସତ୍ୟଟିକୁ ଅନୁଧ୍ୟାନ

କରିବାର କଥା । ଭାରତର ଆଦି-ସାହିତ୍ୟିକଗଣ ଥିଲେ ଋଷି ବା ଦ୍ରଷ୍ଟା-ପୁରୁଷ ଏବଂ ଭାରତୀୟ ସଂସ୍କୃତି ସାହିତ୍ୟିକକୁ 'ପ୍ରଜାପତି' ବା ଦ୍ୱିତୀୟ ବ୍ରହ୍ମା ରୂପେ ଅଭିହିତ କରିଛି ।

ଏହି ପରିପ୍ରେକ୍ଷୀରୁ ବିଚାର କଲେ ସ୍ରଷ୍ଟାର ଲେଖାରୁ ଚିରନ୍ତନ ସତ୍ୟ ପ୍ରତିଫଳିତ ହେଲେ ହିଁ କାଳଜୟୀ ରଚନା ବଳରେ ଲେଖକ ଅନନ୍ତ ଗୌରବର ଅଧିକାରୀ ହୋଇ ପାରିବ । (ଯେହେତୁ ଏହା ହିଁ ପ୍ରତି ପ୍ରକାଶ-କାମୀ ଲେଖକର **ନିଷ୍କପଟ ଅନ୍ତରଙ୍ଗ** କାମନା ।) ଆଜି ଓଡ଼ିଆ ଲେଖକର ଏହି ଅଭିନନ୍ଦନୀୟ ଶିଳ୍ପ-ଅନ୍ୱେଷା ଯେ, ସାହିତ୍ୟର ଚିରନ୍ତନ ସଂଜ୍ଞା—'ଉଚ୍ଚାଙ୍ଗ ବୌଦ୍ଧିକତା' (Elevated intellectuality )ରେ ରୂପାନ୍ତରିତ ହେବ ଏହା ସ୍ଥିର-ନିଶ୍ଚିତ । ସାମାଜିକ ପୃଷ୍ଠଭୂମିରେ ଏବେ ଯେଉଁ ଆଧୁନିକ-ଚେତନାର ସଂପ୍ରସାରଣ ଲକ୍ଷ୍ୟ କରାଯାଉଛି, ଏହା ହିଁ ଆପାତତଃ ଅନାଗତ ସୃଷ୍ଟିକୁ ଆଜିର ଅସ୍ଥିର-ଭାବଶୂନ୍ୟତାରୁ ମୁକ୍ତି ଦେବ ।

କିନ୍ତୁ ଏ ସମସ୍ତର ଊର୍ଦ୍ଧ୍ୱରେ, ଭାବ-ଗ୍ରହନ ଲାଗି ସବୁଠାରୁ ବଡ଼ କଥା ହେଲା ସ୍ରଷ୍ଟାର ସୃଷ୍ଟି ପ୍ରତି **ପରମ** ଆତ୍ମୀୟତାବୋଧ ।



# ମୋ ଦୃଷ୍ଟିରେ
# ସାଂପ୍ରତିକ ସାହିତ୍ୟର ସ୍ୱରୂପ

ଅଧ୍ୟାପକ ପୀତାମ୍ବର ପ୍ରଧାନ

ବର୍ତ୍ତମାନର ସାହିତ୍ୟକୁ ଯେତେ ସଂକୀର୍ଣ୍ଣ ସମୟ-ସୀମାଭୁକ୍ତ କରାଗଲେ ମଧ୍ୟ ଏହାର ପ୍ରବହମାନ ଚେତନାକୁ ଦ୍ୱିତୀୟ ବିଶ୍ୱଯୁଦ୍ଧୋତ୍ତର ପୃଥିବୀର ବିଡ଼ମ୍ବିତ ଚେତନା ବୋଲି ସ୍ୱୀକାର କରିବାକୁ ପଡ଼ିବ । ତେଣୁ ଏହା କେବଳ ଆଜିର ବା ୧୯୭୨ର ନୁହେଁ ; ପ୍ରାୟ ଗତ ତିନୋଟି ଦଶକର ମର୍ମାନୁଭୂତି ଏଥିମଧ୍ୟରେ ଲିପିବଦ୍ଧ । ସୁତରାଂ ଗତି ଓ ପ୍ରକୃତି, ବିଶୃଙ୍ଖଳା ଓ ବିସ୍ମୃତିରେ ଏହା ଯେ ଊନବିଂଶ ଶତାବ୍ଦୀର ଧାରାଠାରୁ ଭିନ୍ନ ; ଏଥିରେ ସନ୍ଦେହର ଅବକାଶ ନାହିଁ ।

ଅଳ୍ପରେ କହିଲେ ସାଂପ୍ରତିକ-ସାହିତ୍ୟ ବିଶୃଙ୍ଖଳାର ସାହିତ୍ୟ । ଶୃଙ୍ଖଳା ବିରୋଧରେ ଉଚ୍ଛୃଙ୍ଖଳତାର ଓ ପରମ୍ପରା ବିରୋଧରେ ପରମ୍ପରା-ମୁକ୍ତିର ଏହା ଏକ ସଦର୍ପ ଅଭିଯାନ । ଅବଶ୍ୟ କଳା-ଭାସ୍କର୍ଯ୍ୟ ଓ ସାହିତ୍ୟ କ୍ଷେତ୍ରରେ ଶୃଙ୍ଖଳାର ପ୍ରାଚୀର ହିଁ ମୃତ୍ୟୁ । ଦୀପ୍ତ ପ୍ରତିଭାର ବହୁ ବଳିଷ୍ଠ ବିକାଶ ଯୁଗେ ଯୁଗେ ଏହାକୁ ଲଙ୍ଘନ କରି ଆସିଛି । ନଚେତ୍ ଗତାନୁଗତିକତାର ଅନୁସରଣରେ ପୃଥିବୀର କଳା ଓ କଳ୍ପନା, ସ୍ଥାଣୁ ଓ ସ୍ଥିତିଶୀଳ ହୋଇ ଉଠିବା ଅସମ୍ଭବ ନୁହେଁ । ତେବେ ଏ ସ୍ଥଳରେ ସ୍ୱୀକାର୍ଯ୍ୟ ଯେ ସାଂପ୍ରତିକ ସାହିତ୍ୟସୃଷ୍ଟିର ବିଶୃଙ୍ଖଳା, କେବଳ ସାହିତ୍ୟିକ ଶୃଙ୍ଖଳା-ବିରୋଧ ବା ସଙ୍ଗଠକଧର୍ମୀ ରୁଚିବିପ୍ଳବ ନୁହେଁ । ଏହାର ପରିସରରେ ଆଧୁନିକ ରାଜନୀତି, ଅର୍ଥନୈତିକ ବୈଷମ୍ୟ ଓ ଆନ୍ତର୍ଜାତିକ ଜଟିଳତାର ନଗ୍ନ ରୂପ ପ୍ରକାଶ ପାଇଥିବାରୁ, ଏହା ଅସନ୍ତୁଷ୍ଟ ମାନବତାର, ବିଶେଷ କରି କ୍ରୁଦ୍ଧ ଓ କ୍ଷୁବ୍ଧ ତାରୁଣ୍ୟର ଏକ ରଣଭେରୀରେ ପରିଣତ ହୋଇଛି । ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟର କବିତା, ଗଳ୍ପ ବା ଉପନ୍ୟାସ ଯେ କୌଣସି ବିଭାଗର ଅଙ୍ଗ ଓ ଆତ୍ମାରେ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ଏହା ଲକ୍ଷ୍ୟ କରାଯାଇପାରେ ।

ବହୁ ଶତାବ୍ଦୀ ଧରି ସତ୍ୟ ଓ ବୃହତ୍ତର ଜୀବନ ନାମରେ ଜୀବନର ଛଳନା' କରାଯାଇ ନିଛକ୍ ଭୌତିକତାକୁ ଯେଉଁଭଳି ଅବହେଳା ପ୍ରଦର୍ଶନ କରାଯାଇଛି ; ଏ ଶତାବ୍ଦୀ ସତେ ଯେପରି ତାହାର ପ୍ରତିଶୋଧ ନେବା ପାଇଁ ନଗ୍ନ ଦୈହିକତାକୁ ସାହିତ୍ୟ ଆସନରେ ମଣ୍ଡିତ କରାଇବାକୁ ସଂକଳ୍ପବଦ୍ଧ । ସୁତରାଂ ବଙ୍ଗୀୟକବି ବୁଦ୍ଧଦେବ'ଙ୍କର "ସେଇ ଅନ୍ଧକାର ଘୁଇ" କବିତାରେ 'ଘର ଫେରନ୍ତି ମୁହୂର୍ତ୍ତର କ୍ଳାନ୍ତି ଭିତରେ ଓଦା ହୋଇଯାଇଥିବା 'ଅଣ୍ଡର୍‌ୱେଆର୍' ଧୋଇ ସଫା କରିବା' ଯେତିକି ବାସ୍ତବ; ମଲୟ ରାୟଚୌଧୁରୀଙ୍କର "ବୌଦ୍ଧିକ" ଅଥଚ 'ନିଃସଂକୋଚ' ଯୌନ-ଅଭିବ୍ୟକ୍ତି ମଧ୍ୟରେ ପ୍ରଜନନ ସଂପର୍କିତ ଡିମ୍ବାଣୁ, ଡିମ୍ବକୋଷ (Ovary) ବା ରେତାଗ୍ନି (the fire of spern)ର ବର୍ଣ୍ଣନା ସେତିକି ଦୁଃସାହସିକ । (ଦ୍ରଷ୍ଟବ୍ୟ—Modern Indian literature,Krishna Kripalani ପୃ-୧୧୩-୧୧୬)—ଆଧୁନିକ ତାମିଲ୍ ସାହିତ୍ୟରେ କା. ନା. ସୁବ୍ରମନ୍ୟମ୍, କେରଳ ସାହିତ୍ୟରେ ଆୟ୍ୟାପ୍ପା ପାନିକର ଓ ହିନ୍ଦୀସାହିତ୍ୟରେ 'ଅଜ୍ଞେୟ'*ପ୍ରଭୃତି ଏହି ଶ୍ରେଣୀର ଅନ୍ତର୍ଗତ । ଓଡ଼ିଆ ସାହିତ୍ୟର 'ଅକବିତା' ଓ 'ଙ ଞ ଳୁ' ଭଳି ଗୋଷ୍ଠୀକୁ ଉକ୍ତ ପର୍ଯ୍ୟାୟଭୁକ୍ତ କରାଯାଇପାରେ ।

ଏ ଦୁଃସାହସିକତା ଓ ଅନର୍ଗଳ ଯୌନ-ବିସ୍ଫୋରଣର ଲକ୍ଷ୍ୟ ଯାହା ହେଉ ନା କାହିଁକି, ଦେଶବିଦେଶର ରୁଚିଶୀଳ ପାଠକ ଓ ଲେଖକ-ମାନଙ୍କ ପକ୍ଷରେ ଏହା ଗଭୀର ବ୍ୟଥାଦାୟକ ହୋଇଅଛି । ଇଉରୋପ ଓ ଆମେରିକାରୁ ଏହା ଜନ୍ମ ନେଇଥିଲେ ମଧ୍ୟ ସେଠିକାର ଶ୍ରେଷ୍ଠ ବୁଦ୍ଧିଜୀବୀଗଣ ଏହାର ତୀବ୍ର ସମାଲୋଚନା କରିବାରୁ ବିରତ ନୁହଁନ୍ତି । ଏ ସଂପର୍କରେ ୧୯୬୬ ଜୁନ୍‌ରେ Eric Bentleyଙ୍କ ଦ୍ୱାରା 'ଏଭର୍‌ଗ୍ରୀନ୍ ରିଭ୍ୟୁ' (Ever green Review) ସଂପାଦକଙ୍କ ନିକଟକୁ ଲିଖିତ ପତ୍ର ବିଶେଷ ପ୍ରଣିଧାନଯୋଗ୍ୟ :—

> "Why by the way, should originality be considered praiseworthy ? In many matters, may be including sex, it can be good to be unoriginal. In any case, the burden of proof would be on the champion of originality.

---

* ଏସ୍. ଏଚ୍. ବାତ୍ସ୍ୟାୟନଙ୍କର ଛଦ୍ମନାମ ।

After reading all the stupid stuff you publish in favour of sex, one longs for some highly puritanical reading matter, written by non-morons."

—(ଦ୍ରଷ୍ଟବ୍ୟ : ପୂର୍ବୋକ୍ତ ପୁସ୍ତକ, ପୃ-୧୧୭)

ପାଶ୍ଚାତ୍ୟ ବିଶ୍ୱବଳୟରେ 'ନାନା' (ଏମିଲ୍ ଜୋଲା), 'ଲୋଲିତା' (ଭି. ନାବ୍‌କୋଭ) 'ଲେଡ଼ି ଚାଟର୍ଲିସ୍ ଲଭର' (ଡି. ଏଚ୍. ଲରେନ୍‌ସ) ଓ 'ୟୁଲିସେସ୍' (ଜେମ୍‌ସ ଜୟେସ୍)ର ପ୍ରକାଶ ପରେ ଉକ୍ତ ଅନାବୃତ ଆଦିମ-ତାର ପ୍ରଚାର ଓ ପ୍ରସାର ଲାଗି ପୃଥିବୀ ସାହିତ୍ୟରେ କିପରି ଏକ ମାଦକତା ପୂର୍ଣ୍ଣ ଆଗ୍ରହ ଦେଖାଯାଇଛି । 'ନାନା'ର ଆବିର୍ଭାବ କାଳ ୧୮୮୦ରୁ 'ଲେଡ଼ି ଚାଟର୍ଲିସ୍ ଲଭର୍'ର ଆବିର୍ଭାବ କାଳ ୧୯୨୮ ମଧ୍ୟରେ 'ଜୟେସ୍'ଙ୍କର ବିଶ୍ୱବିଖ୍ୟାତ କୃତି 'ୟୁଲିସେସ୍' ୧୯୨୨, ଏକାଧିକଥର ଉଚ୍ଚ ନ୍ୟାୟାଳୟରେ ଭାଗ୍ୟପରୀକ୍ଷା କରି ସର୍ବଶେଷରେ ଶ୍ଳୀଳ ସାହିତ୍ୟର ନିଖୁଣତମ ନିଦର୍ଶନ ରୂପେ ଏହାର ମୌଳିକ ଦାବୀ ସାବ୍ୟସ୍ତ କରିବାକୁ ସକ୍ଷମ ହୋଇଛି । 'ଫ୍ରଏଡ଼୍' ଓ 'ଜଙ୍ଗ୍'ଙ୍କର ମନୋବୈଜ୍ଞାନିକ ବିଶ୍ଳେଷଣର କ୍ରମବର୍ଦ୍ଧିଷ୍ଣୁ ଲୋକପ୍ରିୟତା ସଙ୍ଗେ 'ୟୁଲିସେସ୍'ର ଏ ବିଜୟ, ପୃଥିବୀର ଜନମତକୁ (ସାହିତ୍ୟ-ସମ୍ପୃକ୍ତ) କମ୍ ପ୍ରଭାବିତ କରି ନ ଥିବ । ତେଣୁ, ଦ୍ୱିତୀୟ ମହାସମରାନ୍ତ ସାହିତ୍ୟର ଯୌନକୈନ୍ଦ୍ରିକ ଦିଗଟି ଏହିଭଳି କେତେକ ପରିପ୍ରେକ୍ଷୀରୁ ଜନ୍ମ ନେଇଥିବା ଅସମ୍ଭବ ନୁହେଁ ।

ଏହି ଚରମ ସ୍ୱାଧୀନତା ବା ଆବରଣହୀନ ଆଦିମତାକୁ ଆମ ଦେଶରେ 'ସ୍ପଷ୍ଟ ଚିନ୍ତା' ବା 'ଅନର୍ଗଳ ଚିନ୍ତା' (Loud thinking) ନାମରେ ନାମିତ କରାଯାଉଛି । ପ୍ରସ୍ତୁତ ପ୍ରବନ୍ଧର ଲେଖକ ଓଡ଼ିଶାର ବରିଷ୍ଠତମ ସାହିତ୍ୟ-ପତ୍ରିକାରେ ପ୍ରକାଶିତ କୌଣସି ଏକ ଗଳ୍ପର କେତେକ ଆପତ୍ତିଜନକ ଶବ୍ଦ ପ୍ରତି ସମ୍ପାଦକଙ୍କ ଦୃଷ୍ଟି ଆକର୍ଷଣ କରିବାରେ ସେ ମହାଶୟ ଏ ଦିଗରେ ସମୁଚିତ ପଦକ୍ଷେପ ନେବା ସଙ୍ଗେ ସଙ୍ଗେ ଏ ଲେଖକଙ୍କୁ ଜଣାଇଥିଲେ ଯେ ଏହା ଆଧୁନିକ 'Loud thinking'ର ଏକ ରୁଚିହୀନ ପରିଣତି । ବାସ୍ତବ କ୍ଷେତ୍ରରେ ଉପରୋକ୍ତ ଶବ୍ଦ ବ୍ୟତୀତ ଅନ୍ୟ କୌଣସି ଶବ୍ଦ ଦ୍ୱାରା ଏ ଚିନ୍ତାବିଭ୍ରାଟର ପରିଚୟ ବା ହେତୁନିର୍ଦ୍ଦେଶ କରାଯାଇ ନ ପାରେ ।

ଜସ୍ୱେସ୍, ଲରେନସ୍ ଓ ଜୋଏସଙ୍କ ପରି ଶକ୍ତିଶାଳୀତା ହାସଲ ନ କରି ଭାରତୀୟ ଲେଖକମାନେ ମଣିଷ ମନର ଏ ଅନ୍ଧାରୀ ଗୁହାରେ ହାତ ଦେଇ ବିଶେଷ କିଛି ସାଫଲ୍ୟର ଅଧିକାରୀ ହେଉଛନ୍ତି ବୋଲି ମୋର ବିଶ୍ୱାସ ହୁଏ ନାହିଁ । ବରଂ କ୍ଷଣିକ ଚମତ୍କାରିତା, ଉତ୍ତେଜନା ଓ ବାଦବିସମ୍ବାଦରେ ଏ ବିକଳାଙ୍ଗ କଳା, ନିଜେ ନିଜର କବର ଖୋଳି ବସୁଛି । ଯାହା ହେଉ, ସାଂପ୍ରତିକ ବିଶ୍ୱସାହିତ୍ୟର ଏହା ଏକ ଦିଗ ହେଲେ ମଧ୍ୟ ଏକମାତ୍ର ଦିଗ ନୁହେଁ । ଏହା ବାହାରେ ବହୁ ପରୀକ୍ଷା-ନିରୀକ୍ଷା ଓ ଆବିଷ୍କାର-ଉଦ୍ଭାବନ ଦେଇ ଆଜିର ବ୍ୟକ୍ତିସର୍ବସ୍ୱତା, ସମଷ୍ଟିର ଅନ୍ତର୍ଦ୍ଧାନ ପ୍ରକାଶ କରିବାକୁ ଆଗ୍ରହୀ ।

ସାଂପ୍ରତିକ ଭାରତୀୟ ବା ଓଡ଼ିଆ କବିତାର ମୁଖ୍ୟବିଭାବଗୁଡ଼ିକ ବିଚାରକୁ ନେଲେ ଦେଖାଯାଏ ଯେ ଏଥିରେ ନୂତନତା ଓ ପରିବର୍ତ୍ତନର ସ୍ରୋତ ଅତ୍ୟନ୍ତ ଚଞ୍ଚଳ । କବିତାରେ ଗଦ୍ୟମୟତା, ଭାଷାବୈଚିତ୍ର୍ୟ, ପ୍ରତୀକପ୍ରିୟତା ଓ ରୂପକଳ୍ପ ଜରିଆରେ ଏହାର ଆଙ୍ଗିକ ତଥା ଆତ୍ମିକ ଶୋଭାବର୍ଦ୍ଧନ ନିମନ୍ତେ ପ୍ରୟାସ ଚାଲିଛି । ଏ ସମସ୍ତ ସତ୍ତ୍ୱେ କବିର ଅନ୍ତର୍ଲୀନତା ବା ମନ୍ମୟତାରେ ପ୍ରାଣଶକ୍ତିର ଅଭାବ ପରିଲକ୍ଷିତ ହେଉଥିବାରୁ ଏହା ନୀରସ ଓ ଦୁର୍ବୋଧ ବୋଧ ହେଉଛି ।

ଅତ୍ୟାଧୁନିକ ଭାରତୀୟ କବିମାନଙ୍କ ମଧ୍ୟରେ 'କଲ୍ଲୋଲ' ✽ ଗୋଷ୍ଠୀର ନଜରୁଲ୍, ଜୀବନାନନ୍ଦ ଦାସ, ବୁଦ୍ଧଦେବ ବସୁ, ବିଷ୍ଣୁ ଦେ ; ହିନ୍ଦୀରେ 'ଅଜ୍ଞେୟ' ଓ ମୁକ୍ତିବୋଧ ; ଓଡ଼ିଆରେ ସଚ୍ଚିଦାନନ୍ଦ, ରମାକାନ୍ତ, ସୀତାକାନ୍ତ ଓ ଦୁର୍ଗାମାଧବ ପ୍ରମୁଖ, ତଥା ଅନ୍ୟାନ୍ୟ ଭାଷାରେ ଉଲ୍ଲେଖ ଅନେକ ଯୋଗ୍ୟ ରଥୀମାନଙ୍କର ସାଧନା ଅପ୍ରତିହତ ରହିଥିଲେ ହେଁ ସେଥିରେ ନିର୍ଭରଯୋଗ୍ୟ ମୌଳିକତାର ସ୍ୱାକ୍ଷର ଫୁଟିପାରି ନାହିଁ । ବହୁ-କ୍ଷେତ୍ରରେ ଏହା ପାଶ୍ଚାତ୍ୟ ପ୍ରଭାବର ମୌଳିକତାବିହୀନ ଅନୁସରଣ । କିନ୍ତୁ ଇଂରାଜୀ ବା ଆମେରିକୀୟ ସାହିତ୍ୟ, ଫରାସୀ ବା ଇଟାଲୀୟ ସାହିତ୍ୟ, ଏପରି କି ରୁଷୀୟ ବା ଜାପାନୀ ସାହିତ୍ୟରେ କବିତା, କ୍ଷୁଦ୍ରଗଳ୍ପ, ଉପନ୍ୟାସ ବା ନାଟକ ରାଜ୍ୟରେ ଏ ଅନ୍ଧାନୁସରଣ ଅଥବା ପଲ୍ଲବଗ୍ରାହିତାର ସ୍ୱରୂପ ଏକାନ୍ତ ଦୁର୍ଲ୍ଲଭ କହିଲେ ଚଳେ । ଆଧୁନିକ ଜଗତ ଓ ଆଧୁନିକ ଜୀବନର

---

✽ ପ୍ରଗତିପନ୍ଥୀ ବଙ୍ଗୀୟ ସାହିତ୍ୟିକ ଗୋଷ୍ଠୀ—ଏହାର ମୁଖପତ୍ର 'କଲ୍ଲୋଲ' ନାମରେ ନାମିତ ।

ଶୂନ୍ୟତା ଓ ନିରୁତ୍ସବ ମଧ୍ୟରୁ ସେହି ସେହି ଦେଶର ସ୍ରଷ୍ଟାଗଣ ଶୈଳ୍ପିକ ସରସତା ବାହାର କରିବାରେ ଏପରି ଦକ୍ଷ ଯେ W. B. Yeatsଙ୍କର 'The lake Isle of Innisfree'ର ରସବୋଧ Watter De la Mareଙ୍କର 'The·Horse-man' କବିତାରେ କୌଣସି ଗୁଣରେ ହ୍ରାସ ପାଏ ନାହିଁ । ବରଂ ଆଠୋଟି ଧାଡ଼ିର ଏ କ୍ଷୁଦ୍ରତମ କବିତାରେ ପାଠକର ଚିତ୍ତ ବିଚିତ୍ର ଐନ୍ଦ୍ରଜାଲିକ ଅନୁଭୂତିରେ ବିହ୍ୱଳ ହୋଇଉଠେ । କବିତାଟିର ବିଷୟ, "ଅଶ୍ୱାରୋହୀଟିଏ ପାହାଡ଼ ଉପରେ ଯାଉଥିବାର ମୁଁ ଶୁଣିଲି । ପରିଷ୍କାର ଭାବେ ଜହ୍ନ ଉଇଁଲା, ରହିଛି ନିସ୍ତବ୍ଧ ଥିଲା । ଅଶ୍ୱାରୋହୀଟିର ଶିରସ୍ତ୍ରାଣ ରୂପାର ଓ ସେ ଦେଖିବାକୁ ଶେତା ବା ବିବର୍ଣ୍ଣ । ତାହାର ଅଶ୍ୱଟିର ରଙ୍ଗ ହାଡ଼ିଦାନ୍ତ ପରି"—ମାତ୍ର ଏତିକି । ତଥାପି ଏହାର ସରଳତା ଓ ସାବଲୀଳତା ଭିତରେ ଯେଉଁ ସୂଚନାତ୍ମକତା, ବିସ୍ମୟ ଓ କୌତୂହଳ ଭରି ରହିଛି, ତାହା ହିଁ କବିତାଟିର ଚିରନ୍ତନ ମୂଲ୍ୟ । ସେହିପରି କବିଗୁରୁ Eliotଙ୍କର Prufrock' 'The Waste land' ବା 'The hollow men'ର ବଳିଷ୍ଠ ଭାବାବେଶ ଓ ଆଧୁନିକତାର ତୀବ୍ର ଅନୁଭୂତି ; ଅଦ୍ୟାପି ସାଂପ୍ରତିକ ଭାରତୀୟ କବିତାରେ ସମ୍ଭବ ହୋଇପାରି ନାହିଁ । ତେଣୁ W. H. Auden ଓ Mac Neiceଙ୍କର 'ଶେଷଇଚ୍ଛା' ( A last will and Testament' ) କବିତାର ଅଭିନବତା ଓ ଭାବଗମ୍ଭୀରତା ଆମ କବିତାରେ କେବେ ଫୁଟି ଉଠିବ, ତାହାର ଉତ୍ତର ହିଁ ଭବିଷ୍ୟତ ଦେଇପାରିବ । ଉଦାହରଣ ପାଇଁ ସୂଚିତ କବିତାର ନିମ୍ନଲିଖିତ ପଂକ୍ତି କେତୋଟି ଦର୍ଶାଯାଉ :—

" Believing man responsible for what he does,
Sole author of his terror and his content,
The duty his to learn, to make his choice ;
On each the guilt of failure and in each the power.
To shape, create and more love and rejoice."

—Letters from Iceland

୧୯୭୦ ମସିହାରେ ନାଟକୀୟ ପରିସ୍ଥିତିରେ ଆତ୍ମହତ୍ୟା କରି ଜୀବନ ଦେଇଥିବା ଜାପାନୀ କବି ମିଶିମା; ଫରାସୀ କବି Paul Vale'ry ଓ Supervielleଙ୍କ ପରି ବିଶୁଦ୍ଧ ଆଧୁନିକତାର ଅଗ୍ରଯାତ୍ରୀ ଥିବା

ଅନୁମାନ କରାଯାଏ । ତାଙ୍କ କୃତିର ଆଲୋଚନା ଅଦ୍ୟାବଧି ସୀମିତ ଥିବାରୁ ସେ ସମ୍ବନ୍ଧରେ ଅଧିକ ମତପୋଷଣ କରିବା ଅନାବଶ୍ୟକ । ରୁଷୀୟ ସାହିତ୍ୟରେ 'ବଲ୍‌କାନ୍ ଯୁଦ୍ଧ' ଓ ଅନ୍ୟାନ୍ୟ ରାଜନୈତିକ ହଇଚଇ ଫଳରେ ପ୍ରାୟ ୧୯୧୦ରୁ ୧୯୧୨ ମଧ୍ୟରେ ଆଗାମୀ କଳାସୃଷ୍ଟି ପାଇଁ ଭିତ୍ତିପାତ ଆରମ୍ଭ ହୋଇଥିଲା । ଏହା ସତ୍ତ୍ୱେ ଅଧୁନାତନ ରୁଷୀୟ ସାହିତ୍ୟରେ ଉପନ୍ୟାସ ବା କ୍ଷୁଦ୍ରଗଳ୍ପ ପରି କବିତାର ଗତି ସେତେ ପ୍ରଭାବଶାଳୀ ହୋଇପାରି ନାହିଁ ।

ଉପର୍ଯ୍ୟୁକ୍ତ ଆଲୋଚନାରୁ ଏହା ସୂଚିତ ହୁଏ ଯେ ପୃଥିବୀର କାବ୍ୟରାଜ୍ୟରେ ବର୍ତ୍ତମାନ କ୍ଷୁଦ୍ରକବିତା ବା ଖଣ୍ଡକବିତାର ଆସନ ଦୃଢ଼ ହୋଇଛି । କାବ୍ୟ ଅର୍ଥରେ 'ଦୃଶ୍ୟକାବ୍ୟ' ବା ନାଟକ ହିଁ ଏ ଯୁଗର ମହାକାବ୍ୟ । ଏଥିରେ ଯୁଗରୁଚି, ବହୁ ପରିବର୍ତ୍ତନ ଆଣିଥିବାରୁ ଗୀତିମୁଖର ଓ ନୃତ୍ୟଚଞ୍ଚଳ ପରିବେଶ ମଧ୍ୟରେ ଏହାର ମୂଲ୍ୟାୟନ ଆଉ ସମ୍ଭବ ହୋଇପାରୁ ନାହିଁ । ତେଣୁ ଏକଦା ମନୋରଞ୍ଜନ, ଉପଭୋଗ ଓ ବିଳାସର ଏ ସାହିତ୍ୟିକ ବିଭାଗଟି, ବର୍ତ୍ତମାନ ନିଷ୍ଠୁର ବାସ୍ତବତାର ପ୍ରତିଫଳନରେ ପର୍ଯ୍ୟବସିତ ହେଲାଣି । ଚଳଚ୍ଚିତ୍ରର ପ୍ରଭାବ, ବୈଜ୍ଞାନିକ କୌଶଳରେ ମଞ୍ଚକଳାରେ ନବ ନବ ପରୀକ୍ଷା ଓ ପ୍ରୟୋଗ ହେତୁ ସଂପ୍ରତି ମଞ୍ଚୀୟ ଜୀବନ ଓ ବାସ୍ତବ ଜୀବନ ଭିତରେ ବିଶେଷ କିଛି ପାର୍ଥକ୍ୟ ଦୃଷ୍ଟିଗୋଚର ହେଉ ନି । ଯନ୍ତ୍ର-ସଭ୍ୟତାର ନିର୍ଦ୍ଦେଶରେ ବିଶ୍ୱର ରଙ୍ଗମଞ୍ଚ ଦୈନନ୍ଦିନ ବାସ୍ତବତାକୁ କଳା ଭାବରେ ଆଦରି ନେଉଥିବାରୁ ଆଧୁନିକ ନାଟକରେ 'ଉଦ୍‌ଭଟ ନାଟକ' (Absurd play)ର ସୃଷ୍ଟି ବୃଦ୍ଧି ପାଉଛି । ଲଣ୍ଡନ୍, ଆମେରିକା ଓ ରୁଷିଆ ପ୍ରଭୃତିର ନାଟ୍ୟକଳାର ବହୁ ପଛରେ ପଡ଼ିଥିଲେ ମଧ୍ୟ ଭାରତରେ ଏଥିପାଇଁ ଚେଷ୍ଟାର ଅଭାବ ନାହିଁ । ଗିରୀଶଚନ୍ଦ୍ର ଘୋଷ ଓ ଦ୍ୱିଜେନ୍ଦ୍ରଲାଲ୍ ରାୟଙ୍କ ପରେ ବଙ୍ଗୀୟ ରଙ୍ଗମଞ୍ଚ ଓ ନାଟ୍ୟକଳାରେ ନୂତନ ପରୀକ୍ଷାର କର୍ଣ୍ଣଧାର ହେଉଛନ୍ତି, ବରିଷ୍ଠ ଅଭିନେତା ଓ ମଞ୍ଚ ନିର୍ଦ୍ଦେଶକ ଶମ୍ଭୁ ମିତ୍ର । ତାଙ୍କ ପ୍ରତିଷ୍ଠିତ 'ବହୁରୂପୀ' ଥିଏଟର୍‌ରେ ରବୀନ୍ଦ୍ରନାଥଙ୍କର 'ରକ୍ତକରବୀ' ଓ 'ଘର୍ ଅଧ୍ୟାୟ'ର ନୂତନ ମୂଲ୍ୟାୟନ, ବଙ୍ଗ-ସାହିତ୍ୟରେ, ବିଶେଷକରି ନାଟ୍ୟକଳାରେ ଯୁଗୋପ-ଯୋଗୀ ଉନ୍ମେଷର ସନ୍ଧାନ ଦେଇଥାଏ । ଦକ୍ଷିଣ ଭାରତୀୟ ଭାଷାରେ ନାଟକର ଗତି ସେତେ ଉଲ୍ଲେଖଯୋଗ୍ୟ ନୁହେଁ । ଆଧୁନିକ ଓଡ଼ିଆ ନାଟକ

ଓ ହିନ୍ଦୀ ନାଟକ ପରି ଏହା ଗୋଟିଏ ପକ୍ଷରେ ପାରଂପରିକ ପଦ୍ଧତିକୁ ଜାବୁଡ଼ି ଧରି ଅନ୍ୟ ପକ୍ଷରେ କାନ୍ତି ବା ନାଟ୍ୟକଳାରେ ବିପ୍ଳବ ପାଇଁ ଚେଷ୍ଟା ଚଳାଇଛି ।

ଓଡ଼ିଶାରେ ବର୍ତ୍ତମାନ ସୁରେନ୍ ମହାନ୍ତି, ମନୋରଂଜନ ଦାସ, ବିଜୟ ମିଶ୍ର, ବିଶ୍ୱଜିତ ଦାସ ଓ ବ୍ୟୋମକେଶ ତ୍ରିପାଠୀଙ୍କ ଭଳି ବହୁ ପ୍ରୟୋଗବାଦୀ ନାଟ୍ୟକାର ଓ 'ଶ୍ରାବଣୀ' 'ସୃଜନୀ' ପରି ବଳିଷ୍ଠ କ୍ରିୟାତ୍ମକ ଅନୁଷ୍ଠାନମାନ ଓଡ଼ିଆ ନାଟକରେ ନୂତନ ଦିଗ ସନ୍ଧାନ କରିବାରେ ବ୍ୟସ୍ତ । 'ସାଗର ମନ୍ଥନ', 'ପ୍ରତାପଗଡ଼ରେ ଦୁଇଦିନ', 'ଝରକା' 'ଆଗାମୀ', 'ବନହଂସୀ' ଓ 'ଏକ-ଦୁଇ-ତିନି' ଆଦି କୃତି, ଏ ସନ୍ଧାନର ଯେ ପରିଚୟ-ପତ୍ର ଏଥିରେ କୌଣସି ସନ୍ଦେହ ନାହିଁ । ଏ ସମସ୍ତ ସତ୍ତ୍ୱେ ଆମ ନାଟ୍ୟ ସାହିତ୍ୟରେ ବର୍ଣ୍ଣାର୍ଡ଼ଶ, ମମ୍ (ସୋମରସେଟ୍) ବା ଜନ ଅସ୍‌ବୋର୍ଣ୍ଣଙ୍କ ପରି ନାଟ୍ୟକାର ଆସିବାକୁ ଦୀର୍ଘକାଳ ଅପେକ୍ଷା କରିବାକୁ ପଡ଼ିବ । ପ୍ରତିଭାର ଅଭାବ ଅପେକ୍ଷା ଉପଯୁକ୍ତ ରଙ୍ଗମଞ୍ଚ ଓ ଧାରାବାହିକ ପୋଷକତାର ଅଭାବରୁ ଓଡ଼ିଆ ନାଟ୍ୟସାହିତ୍ୟର ପଶ୍ଚାତ୍‌ଗାମିତା ପାଇଁ ବିଶେଷ ଭାବେ ଦାୟୀ ।

ନାଟକ-ଆଲୋଚନାରୁ କ୍ଷାନ୍ତ ହୋଇ ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ଆଡ଼କୁ ଦୃଷ୍ଟିଦେଲେ ଦେଖାଯାଏ ଯେ ଆଧୁନିକ ବିଶ୍ୱର ସର୍ବଜନ ପ୍ରିୟ ଏ ବିଭାଗ ଦୁଇଟି ସାହିତ୍ୟ ରାଜ୍ୟରେ ବାସ୍ତବ ଯୁଗାନ୍ତରର ସୂଚନା ଦେଇଛି । ଗାନ୍ଧୀ ମାର୍କସ ଫ୍ରଏଡ୍ ଓ ଡାର୍‌ଉଇନ୍ ସମସ୍ତେ ଯେପରି ଏ ବିସ୍ତୃତି ଭିତରେ ନିଜକୁ ମିଶାଇ ଦେଇଛନ୍ତି । ସୁତରାଂ ଆଧୁନିକ ଉପନ୍ୟାସ ବା କ୍ଷୁଦ୍ରଗଳ୍ପର 'ଅବଚେତନ' ବୋଧ, ଶ୍ରେଣୀ ସଂଘର୍ଷ, ଶ୍ରେଣୀସମନ୍ୱୟ, ଅସ୍ତିତ୍ୱ ଜନିତ ଦ୍ୱନ୍ଦ୍ୱ ଓ ମନୋବୈଜ୍ଞାନିକ-ବାସ୍ତବତା ଇତ୍ୟାଦିରେ ପ୍ରତ୍ୟକ୍ଷ ଓ ପରୋକ୍ଷରୂପେ ଉକ୍ତ ଚିନ୍ତା-ନାୟକମାନଙ୍କର ପ୍ରଭାବ ଲକ୍ଷଣୀୟ ।

ବିଂଶ ଶତାବ୍ଦୀର ଉପନ୍ୟାସ ଓ କ୍ଷୁଦ୍ରଗଳ୍ପର ଗଠନ-ଶିଳ୍ପରେ ପ୍ରଥମେ ପ୍ରଥମେ ସାମାଜିକ ପରିବେଶ ବା ସୃଷ୍ଟିର ପରିସର ମଧ୍ୟରେ ଚରିତ୍ର ବିଶେଷ ଅଥବା ଚରିତ୍ରମାନଙ୍କର ସାଧାରଣ ପ୍ରତିକ୍ରିୟାକୁ ମନସ୍ତାତ୍ତ୍ୱିକ ଭିତ୍ତିରେ ରୂପ ଦିଆଯାଉଥିଲା । କିନ୍ତୁ ଏଥି ମଧ୍ୟରେ ସୃଜନ କୌଶଳରେ ଦ୍ରୁତ ପରିବର୍ତ୍ତନ ଘଟି ଏହା 'ଗଳ୍ପହୀନ' ଗଳ୍ପ ବା 'କଥାବସ୍ତୁ ବିହୀନ' ଉପନ୍ୟାସରେ ପହଞ୍ଚିଲାଣି । ଗୃହିକ ସ୍ୱଗତୋକ୍ତି ଓ ଅର୍ଦ୍ଧ-ସ୍ୱଗତୋକ୍ତିର ନୀରବଭାଷାରେ ଆଜି ଚରିତ୍ରର ଅନ୍ତର୍ଜଗତକୁ ଖୋଲାଇବା,

ଔପନ୍ୟାସିକ ତଥା ଗାଳ୍ପିକର ପ୍ରଧାନ କର୍ତ୍ତବ୍ୟ ହୋଇ ପଡ଼ୁଛି । ସେହେତୁ ରୀତି କବିତାର ମନ୍ମୟତା (Subjectivity), ସାଂପ୍ରତିକ ଔପନ୍ୟାସିକ ଚେତନାର ଏକ ବଶିଷ୍ଟଦିଗ ଭାବରେ ଆତ୍ମପ୍ରତିଷ୍ଠା ଲାଭ କରି ଆସୁଛି । ପୂର୍ବସୂଚିତ 'ଲରେନ୍ସ' ଓ 'ଜୟେସ'ଙ୍କର କୃତି ଭିନ୍ନ 'ଭର୍ଜିନିଆ-ଉଲ୍‌ଫ'ଙ୍କର 'Mrs Dalloway' ଏବଂ 'The waves'ରେ ଏହା ବିଶେଷ ଭାବେ ଦୃଷ୍ଟିଗୋଚର ହୁଏ । ତେଣୁ 'ଚେତନାପ୍ରବାହ' (Stream of consciousness)—ଟେକ୍‌ନିକ୍ (ଶୈଳୀ ବା ନିର୍ମାଣ-ରୀତି) ଜର୍ମାନ୍ ପ୍ରଭାବ ହେଲେ ମଧ୍ୟ ଏହା ଉପରୋକ୍ତ ଲେଖକଲେଖିକାଙ୍କ ଦ୍ଵାରା ଇଂରାଜୀ ସାହିତ୍ୟରେ ସୁଦୃଢ଼ ହୋଇଉଠିଛି ।

( :—ଦ୍ରଷ୍ଟବ୍ୟ—'An Introduction to English Literature', H. E. Stowell ; ପୃ ୧୭୩-୧୭୫ ଏବଂ 'The Twentieth century Novel, Joseph Warren Beach, ପୃ ୪୦୩-୪୧୦ ; ପୃ ୪୧୦-୫୧୭)

ତୁଳନାତ୍ମକ ଭାବରେ ଫରାସୀ ସାହିତ୍ୟର ଗଳ୍ପ ବା ଉପନ୍ୟାସକୁ ଦୃଷ୍ଟି ଦେଲେ ମୋପାସାଁଙ୍କ ପରେ 'ଲୋତି' (Loti), 'ରେନାଁ' ଓ 'ପ୍ରାଉଷ୍ଟ'ଙ୍କର ପ୍ରଭାବ ବିଂଶଶତକର ପ୍ରଥମ ପାଦରୁ ଆଜି ପର୍ଯ୍ୟନ୍ତ ଅବ୍ୟାହତ ରହିଛି । ଆଧୁନିକଯୁଗର ରାଶି ରାଶି ଉପନ୍ୟାସ —କାରଖାନା ଭିତରେ କେଉଁ ନିର୍ଦ୍ଦିଷ୍ଟ ମାନସିକ ଧାରା ଫରାସୀ ଉପନ୍ୟାସକୁ ନିୟନ୍ତ୍ରିତ କରୁଛି, ତାହା ମତଦେବା ହୁଏତ କଷ୍ଟକର * ତେବେ ସରଳତା ସ୍ଥଳେ ଜଟିଳତା ; ଆତ୍ମକେନ୍ଦ୍ରିକ ସଂଚରଣ, ବୌଦ୍ଧିକତା ଓ ବିଷଣ୍ଣତାର ଅନ୍ତଃସ୍ରୋତ ; ବର୍ତ୍ତମାନ କାଳରେ ଆଲୋଚ୍ୟ ସାହିତ୍ୟର ମୁଖ୍ୟବିଭାବ ଭାବରେ ଗ୍ରହଣ କରାଯାଇପାରେ ।

କବିତା ଅପେକ୍ଷା ଭାରତୀୟ ସାହିତ୍ୟକ୍ଷେତ୍ରରେ ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ଅଧିକ ଲୋକପ୍ରିୟ ହୋଇଛି ସତ୍ୟ, କିନ୍ତୁ ଏଥିରେ ଆନ୍ତର୍ଜାତିକ

---

* There is no order in literature × × × each new literary man tries to break away from what he thinks is 'Order' × × × ×"

—Modern French Literature.
Denis Saurat ; P. 102

ପ୍ରେରଣାର ସ୍ୱାଭାବିକ ଅଭିବ୍ୟକ୍ତି ପାଇ ପାରିନାହିଁ । ସମସ୍ତ ପ୍ରୟୋଗ ନିୟୋଗ ସତ୍ତ୍ୱେ ବଙ୍ଗଳାରେ ରବୀନ୍ଦ୍ରନାଥ, ହିନ୍ଦୀରେ ପ୍ରେମଚନ୍ଦ, ଗୁଜୁରାଟିରେ କାକା କାଲେଲକର ମରାଠୀରେ 'ମାମା ଓ୍ୱାରେକର୍', ଓଡ଼ିଆରେ ଫକୀରମୋହନ ଓ ଆସାମୀରେ ନୀଳମଣି ଫୁକାନ୍ ; ତାମିଲ୍ ଓ ମାଲାୟାଲମ୍‌ରେ ଯଥାକ୍ରମେ ଭାରତୀ ଓ ବାଲାଥୋଲ୍‌ଙ୍କର ପ୍ରଭାବ ଗଣଚିତ୍ତକୁ ଆକୃଷ୍ଟ କରି ରଖିଥିବାର ଅନୁମାନ କରାଯାଏ । ସୁତରାଂ ବିଶ୍ୱକବିଙ୍କ ଲିଖିତ ନାଟକ 'ଅଚଳାୟତନ' ଓ ଉପନ୍ୟାସ 'ଶେଷର୍ କବିତା'ରେ ସେ ନିଜେ ନିଜର ପ୍ରଭାବ ଓ ରକ୍ଷଣଶୀଳତା ବିରୁଦ୍ଧରେ ଅଭିଯାନ ଚଳାଇଥିଲେ । ଏହା ପରେ 'କଲ୍ଲୋଳ ଗୋଷ୍ଠୀ' ଓ ରବୀନ୍ଦ୍ରଙ୍କର ଜନ୍ମ ବାର୍ଷିକ (୧୯୬୨)ଉପଲକ୍ଷେ ପ୍ରକାଶ ପାଇଥିବା 'ଦୈନିକ କବିତା' ଓ 'କବିତା-ଘଣ୍ଟିକା' ପତ୍ରିକାଦ୍ୱୟରେ ଏ ଅଭିଯାନର ପୁନରାବୃତ୍ତି ଘଟିଛି ତଥାପି ପରଂପରା ବିଦ୍ରୋହୀ ମାଣିକ୍ ବନ୍ଦୋପାଧ୍ୟାୟ ଓ ତାଙ୍କର ପରବର୍ତ୍ତୀ ସହଚରମାନେ ରବୀନ୍ଦ୍ରନାଥଙ୍କୁ ଆସନ ଚ୍ୟୁତ କରିବାକୁ ସକ୍ଷମ ହୋଇ ପାରିନାହାନ୍ତି ।

ଓଡ଼ିଆ ଉପନ୍ୟାସ ଓ ଗଳ୍ପରେ 'ମହାନ୍ତି ଭ୍ରାତୃଦ୍ୱୟ'ଙ୍କ ପରେ ବାମାଚରଣ, ଅଖିଳମୋହନ, ଶାନ୍ତନୁ ଓ ନୀଳମଣି ପ୍ରଭୃତି ବହୁ ନୂତନତାପ୍ରିୟ ଲେଖକ ଓ ତରୁଣୀ କେତେକ ଲେଖିକାଙ୍କର ସଂକଳ୍ପ ପ୍ରକାଶ ପାଇଛି । କିନ୍ତୁ କ୍ଷୁଦ୍ରଗଳ୍ପ କ୍ଷେତ୍ରରେ ଫକୀର ମୋହନଙ୍କ ପରେ ସାର୍ଥକ ସିଦ୍ଧିର ଅଧିକାରୀଭାବେ ସୁରେନ୍ଦ୍ର ମହାନ୍ତିଙ୍କ ସ୍ଥାନ ସ୍ୱତନ୍ତ୍ର । ଉପନ୍ୟାସ ଗୋପୀନାଥଙ୍କ ଭଳି କ୍ଷୁଦ୍ରଗଳ୍ପ କ୍ଷେତ୍ରରେ ଦ୍ୱିତୀୟ ବିଶ୍ୱଯୁଦ୍ଧପରର ଆନ୍ତର୍ଜାତିକ ପ୍ରବାହ ନିବିଡ଼ ଭାବରେ ତାଙ୍କର ଗଳ୍ପସୃଷ୍ଟିର ଶୈଳୀ ଓ ସାମଗ୍ରିକ ସୌନ୍ଦର୍ଯ୍ୟରେ ଫୁଟି ଉଠିଥାଏ । ପ୍ରବନ୍ଧର କଳେବର ବୃଦ୍ଧି ଆଶଙ୍କାରେ ଅଗତ୍ୟା ସେ ସବୁର ବିସ୍ତୃତ ଆଲୋଚନାରୁ ନିବୃତ୍ତ ହେଉଛି ।

ଦ୍ୱନ୍ଦ୍ୱହୀନ ଅଣଔପନ୍ୟାସିକ (Non fictional) ଗଦ୍ୟରଚନାକୁ ବାଦ୍ ଦେଲେ, ଏହାହିଁ ସଂକ୍ଷେପରେ ସ୍ୱଦେଶ ଓ ବିଦେଶର ସାଂପ୍ରତିକ ସାହିତ୍ୟର ସ୍ୱରୂପ । ଏହାର ଉଦ୍ଦେଶ୍ୟ ମହତ୍ ଓ ହାର୍ଦ୍ଦିକତା ବିସ୍ତୃତ । ବର୍ତ୍ତମାନ ଉଦ୍‌ଯୋଗପର୍ବର ସମସ୍ତ ଅଜ୍ଞାତ ହୋଇନାହିଁ । ଏପରି ଅବସ୍ଥାରେ ଏହାର ଭବିଷ୍ୟତ-ବିକାଶହିଁ ବର୍ତ୍ତମାନର ନିର୍ଭୁଲ ମୂଲ୍ୟାଙ୍କନ କରିପାରିବ । ସେ ସମ୍ଭାବନାପୂର୍ଣ୍ଣ ଆଗାମୀକୁ ଚାହିଁ ରହିବା ନିମନ୍ତେ ପ୍ରସ୍ତୁତ ଆଲୋଚନା ଏକ ସୂଚନା ମାତ୍ର ।

---

# ମୋ ଦୃଷ୍ଟିରେ
# ସାଂପ୍ରତିକ ସାହିତ୍ୟର ବିଚାର

**ଅଧ୍ୟାପକ ମେଘନାଦ ପ୍ରଧାନ**

ମୂଲ୍ୟମାନର ନିତ୍ୟ ପରିବର୍ତ୍ତନ ଶୀଳତା ଭିତରେ ନିଜ ଦୃଷ୍ଟି-କୋଣରୁ କୌଣସି ବିଷୟରେ ନିର୍ଦ୍ଦିଷ୍ଟ ମତ ଉପସ୍ଥାପିତ କରିବା ଅନେକ ସମୟରେ ସହଜ ହୋଇ ନଥାଏ । ବିଶେଷତଃ ନବନିର୍ମାଣର ପ୍ରୟୋଗ ଶାଳା ମଧ୍ୟରେ ପରୀକ୍ଷା ନିରୀକ୍ଷାର ବହୁ ଦ୍ୱାରବନ୍ଧ ଅତିକ୍ରମ କରି ଏକ ସ୍ପଷ୍ଟ ଓ ସ୍ଥିର ବିଗ୍ରହ ଲାଭ କରିବାକୁ ତଥାପି ସମୟ ଅପେକ୍ଷମାଣ ଥିବା ଅବସ୍ଥାରେ ସାଂପ୍ରତିକ ସାହିତ୍ୟ ସଂପର୍କରେ ନିଜ ଦୃଷ୍ଟିରୁ ବିଚାର ବିମର୍ଶ କରିବାକୁ ଯିବା ଏକ ବିପଦର କଥା ମୋର ବିଶ୍ୱାସ, ଏଥିପାଇଁ ଆବଶ୍ୟ ଅଧ୍ୟୟନ, ଅନୁଧ୍ୟାନ, ବିଶ୍ଳେଷଣ—ସଂଶ୍ଳେଷଣ ଓ ଅବଧାରଣ—ପ୍ରକାଶନ ଆଦିରେ ସମୟ, ଶ୍ରମ ଓ ଶକ୍ତି ସାପେକ୍ଷ । କାରଣ ଏହି ସାହିତ୍ୟର ପୃଷ୍ଠଭୂମି ଯେପରି ପ୍ରକାଣ୍ଡ, ତାର ସାମ୍ମୁଖ୍ୟ ସେହିପରି ବୈବିଧ୍ୟ ପୂର୍ଣ୍ଣ, ଗଭୀର ଓ ବ୍ୟାପକ ; ଏବଂ ସିଦ୍ଧି ସ୍ୱଳ୍ପ ହେଲେ ହେଁ ଯୁଗାନ୍ତକାରୀ ତଥା ଅପ୍ରତିହତ ପ୍ରଭାବର ଅଧିକାରୀ ସାଂପ୍ରତିକ ସାହିତ୍ୟର ଭବିଷ୍ୟତ ବହୁ ସମ୍ଭାବନାରେ ପରିପୂର୍ଣ୍ଣ । ତେଣୁ ଆଲୋଚନା ବେଳେ ବିଶେଷ ସତର୍କତା ଯେ ଅବଲମ୍ବନୀୟ ; ଏହା କହିବା ଦ୍ୱିରୁକ୍ତି ମାତ୍ର ।

ସଂପ୍ରତି ଦେଶ ବିଦେଶରେ ବିଭିନ୍ନ ଭାଷାରେ ସାହିତ୍ୟ ନାମରେ ଯାହା ରଚିତ, ଚର୍ଚ୍ଚିତ ଓ ପ୍ରକାଶିତ ହେଉଛି, ସେସବୁ ସାଂପ୍ରତିକ ସାହିତ୍ୟ ଆଖ୍ୟା ପାଇବାକୁ ଲାଳାୟିତ ଥିଲେ ସୁଦ୍ଧା ସେ ଯୋଗ୍ୟତା ସେମାନଙ୍କ ମଧ୍ୟରୁ ଅନେକଙ୍କର ନାହିଁ । ସମସାମୟିକତା ନୁହେଁ ; ସାଂପ୍ରତିକ ଚେତନାର ପ୍ରତିନିଧିତ୍ୱ କରି ପାରିବାର କ୍ଷମତାହିଁ ସାଂପ୍ରତିକ ସାହିତ୍ୟ ହେବାର ଏକମାତ୍ର ଏସିଡ୍ ଟେଷ୍ଟ । ଏହି ସାହିତ୍ୟକୁ କେହି କେହି 'ଆଧୁନିକ' ନାମରେ ହିଁ ନାମିତ କରୁଥିଲାବେଳେ କେହି କେହି 'ଅତ୍ୟାଧୁନିକ' ଏବଂ

ଅନ୍ୟ କେତେ ସ୍ୱାଧୀନୋତ୍ତର ସାହିତ୍ୟ ଆଖ୍ୟା ପ୍ରଦାନ କରିଥାନ୍ତି । କ୍ରମେ ଏହାକୁ ସାଂପ୍ରତିକ ସାହିତ୍ୟ କହିବାର ରିବାଜ ମଧ୍ୟ ଆରମ୍ଭ ହୋଇ ଯାଇଛି । ଯେପରି ହିନ୍ଦୀ ସାହିତ୍ୟରେ ଛାୟାବାଦ—ପ୍ରୟୋଗବାଦ—ପ୍ରଗତିବାଦ ପରେ 'ନୟୀ ସାହିତ୍ୟ' ଓ 'ନୟୀ କବିତା'ରେ ଏକ ନବ ଚେତନାର କଥା କହିବା ପାଇଁ ଚେଷ୍ଟା ଚାଲିଛି । ତେଣୁ ଏ ସାହିତ୍ୟକୁ ବୁଝିବାକୁ ହେଲେ ସର୍ବାଦୌ ଏ ଚେତନାର ସ୍ୱରୂପ ସ୍ପଷ୍ଟ ହେବା ଆବଶ୍ୟକ ।

ଏହା ସତ ଯେ ପରିପାର୍ଶ୍ୱ ଓ ପରିବେଶ ମଣିଷଜୀବନକୁ ବିଶେଷ-ପ୍ରଭାବିତ କରିଥାଏ । ଏ ସାହିତ୍ୟର ଆବିର୍ଭାବ ପୂର୍ବରୁ ବିଶ୍ୱବକ୍ଷରେ ଏପରି ଅନେକ ଘଟଣା ଘଟିଗଲା ଏବଂ କ୍ରମେ ଘଟି ଚାଲିଛି, ଯାହା ପ୍ରତି ଚକ୍ଷୁ ବନ୍ଦ କରି ରହିବା ସଚେତନ କବି କଳାକାରଙ୍କ ପକ୍ଷେ ଆଦୌ ସମ୍ଭବ ନୁହେଁ ଏବଂ ତାହାରି ଫଳରେ ହିଁ ଯୁଗଯୁଗର ଅନେକ ବଦ୍ଧମୂଳ ଧାରଣା ଓ ବିଶ୍ୱାସ ଭାଙ୍ଗି ଚୁରମାର ହୋଇଯିବା ସଙ୍ଗେ ସଙ୍ଗେ ସେସବୁ ସ୍ଥାନରେ ଏକ ଏକ ନୂତନ ମାନସିକ ସ୍ଥିତି ସ୍ଥାନାପନ୍ନ ହେବାର ଉପକ୍ରମ ଆରମ୍ଭ ହୋଇ ଯାଇଛି । ପୂର୍ବେ ବହୁ ଅଭାବ—ଅସୁବିଧା, ଦୁଃଖ-ଦୈନ୍ୟ, ସମୀମତା-ସଂକୀର୍ଣ୍ଣତା ସତ୍ତ୍ୱେ ଜୀବନ ଥିଲା ଅପେକ୍ଷାକୃତ ଗତାନୁଗତିକ ଶାନ୍ତ ଓ ନିଶ୍ଚିତ ; କିନ୍ତୁ ବିଜ୍ଞାନର ପ୍ରଭୂତ ବିକାଶ ଫଳରେ ମନୁଷ୍ୟ ମନର ଅନେକ ସରଳ ବିଶ୍ୱାସ ମୁହୂର୍ତ୍ତକ ମଧ୍ୟରେ ବାଲିଘର ପରି ମିଳେଇ ଗଲା ଏବଂ ନୂତନ ଦୃଷ୍ଟିକୋଣରୁ ସବୁ କଥାର ମୂଲ୍ୟାୟନ କରିବାର ଅବକାଶ ଆସି ପହଞ୍ଚିଲା । ଦର୍ଶନ ଓ ବିଜ୍ଞାନର ବିଭିନ୍ନ ବିଭାଗରେ ବହୁ ଅଭୂତପୂର୍ବ ଉଦ୍ଭାବନ ହେବା ଫଳରେ ଯୁଗ ଯୁଗ ଧରି ମଣିଷ ମନରେ ଜମାଟ ବାନ୍ଧି ରହିଥିବା କଟିକଟିଆ ଅନ୍ଧାର ସବୁ ଦୂର ହେବାକୁ ଲାଗିଲା ଏବଂ ଅଦ୍ୟାପି ଅନାବିଷ୍କୃତ ଅନେକ ନିଷିଦ୍ଧ ଅଞ୍ଚଳ ଉପରେ ଆଲୋକ ପାତ ହେବା ଆରମ୍ଭ ହୋଇଗଲା ।

ଏ କ୍ଷେତ୍ରରେ ଡାରଉଇନ୍‌ଙ୍କ ବିବର୍ତ୍ତନ ବାଦ, ଫ୍ରଏଡ-ଏଡଲର-ୟୁଙ୍ଗ୍ ପ୍ରମୁଖଙ୍କ ମନସ୍ତାତ୍ତ୍ୱିକ ମତବାଦ, ମାର୍କସ-ଏଞ୍ଜିଲ ପ୍ରଭୃତିଙ୍କର ଐତିହାସିକ ଭୌତିକବାଦ ପରି ବହୁ ଯୁଗାନ୍ତକାରୀ ମତବାଦର ପ୍ରତିଷ୍ଠା ଓ ପ୍ରଚାର କଥା ମନେ ପଡ଼ିବା ସ୍ୱାଭାବିକ । ଏସବୁ ସାଙ୍ଗକୁ ବୈଜ୍ଞାନିକମାନଙ୍କ ଅନ୍ୟାନ୍ୟ ବହୁ ଉଦ୍ଭାବନ ଭିତରେ ପରମାଣୁ ଶକ୍ତିର ସନ୍ଧାନ ତଥା

ବିଂଶ ଶତକର ପ୍ରଥମାର୍ଦ୍ଧରେ ହିଁ ଦୁଇ ଦୁଇଟି ପୃଥିବୀ ମହାସମରର ଅାୟୋଜନ ଦ୍ୱାରା ବିଶ୍ୱଧ୍ୱଂସ କରିବାର ଉପକ୍ରମ ଏବଂ କ୍ରମେ ବହୁ ବୈଜ୍ଞାନିକ ଯନ୍ତ୍ରପାତି ଓ ଯାନ ବାହନର ଆଧୁନିକ ସାଧନ ତଥା ଶିକ୍ଷା-ସଭ୍ୟତା-ସଂସ୍କୃତିର ଅବାଧ ବିଶ୍ୱ-ପରିକ୍ରମା ହେତୁ ସମଗ୍ର ସଂସାରକୁ ନଖାଗ୍ରରେ ଦେଖିବାରେ ଚେଷ୍ଟା ; ଯୁଗ ଯୁଗର ରାଜତନ୍ତ୍ରର ସମାଧିପୀଠ ଉପରେ ସ୍ୱାଧୀନତା, ସମତା ଓ ବିଶ୍ୱଭ୍ରାତୃତ୍ୱର ମୂଳ ଲୋକତନ୍ତ୍ରର ପ୍ରତିଷ୍ଠା ; ବ୍ୟକ୍ତିବାଦ, ସମାଜବାଦର ପ୍ରସାର ଏବଂ ଏ ସବୁର ପ୍ରତିକ୍ରିୟା ସ୍ୱରୂପ କଳା ଓ ସାହିତ୍ୟ କ୍ଷେତ୍ରରେ ସ୍ଥିତିବାଦ, ବାସ୍ତବବାଦ, ଅତିବାସ୍ତବ-ବାଦ, ପ୍ରତୀକବାଦ ପ୍ରଭୃତିର ଅନୁପ୍ରବେଶ ମଣିଷ ଜୀବନକୁ, ତାର ଚିନ୍ତା ଓ ଚେତନାକୁ ବହୁ ଅଗ୍ନି ପରୀକ୍ଷା ଭିତରେ ପକାଇ ତାକୁ ଆଜି ଯେଉଁଠି ଆଣି ଥୋଇଛି ସେଥିରେ ସେ ଆଉ ପୂର୍ବପରି ସହଜ, ସରଳ, ନିରାପଦ ଓ ନିଶ୍ଚିନ୍ତ ହୋଇ ରହି ପାରିନାହିଁ । ଜୀବନର ପ୍ରତିଟି କ୍ଷେତ୍ରରେ ସେ ଦେଖିଛି ଅନିଶ୍ଚିତତା, ଅସ୍ଥିରତା ଓ ଧ୍ୱଂସ ପାଇଯିବାର ଅନେକ ସମ୍ଭାବନା । ତେଣୁ ତାର ଚିନ୍ତା କଥା ଓ କାର୍ଯ୍ୟରେ ଅନେକ ନାହିଁ ନଥିବା ଲକ୍ଷଣ ପ୍ରକାଶ ପାଉଛି । ଏହି ବିରାଟ ପୃଷ୍ଠଭୂମି ଉପରେ ବର୍ତ୍ତମାନ ସାଂପ୍ରତିକ ସମାଜକୁ ; ତାର ଦର୍ଶନ, ବିଜ୍ଞାନ, କଳା ଓ ସାହିତ୍ୟକୁ; ତାର ଆବେଗ, ଅଭୀପ୍ସା, ଚିନ୍ତା ଓ ଚେତନାକୁ ପୁରାତନ ଦୃଷ୍ଟିକୋଣରୁ ପରୀକ୍ଷା କରି ହା ହତୋଽସ୍ମି ମନୋଭାବ ପୋଷଣ କରିବା ଅପେକ୍ଷା ତେଣୁ ତାକୁ ବୁଝିବାପାଇଁ ଚେଷ୍ଟା କରାଯିବା ଏକାନ୍ତ ଆବଶ୍ୟକ ।

ପ୍ରାଚୀନ ପରଂପରାର ସାହିତ୍ୟ ସହିତ ସାଂପ୍ରତିକ ସାହିତ୍ୟକୁ ତୁଳନା କରି ଦେଖିଲେ ଜଣାଯାଏ ଯେ ତତ୍କାଳୀନ ଜୀବନ ପରି ଜୀବନର ପ୍ରତିଛବିକୁ କୋଳାଗ୍ରତ କରି ପ୍ରକାଶ ପାଇଥିବା କଳା ଓ ସାହିତ୍ୟ କ୍ଷେତ୍ରରେ ବିଷୟବସ୍ତୁର ପରିଧି ଥିଲା ସୀମିତ । ମୁଖ୍ୟତଃ ଧର୍ମ, ପ୍ରେମ ଓ ପ୍ରକୃତି ଥିଲା ସେସବୁ ବହୁ ଚର୍ଚ୍ଚିତ ବିଷୟ । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ସାରଳା, ପଞ୍ଚସଖା ଗୌଡ଼ୀୟ ବୈଷ୍ଣବ ସାହିତ୍ୟରେ ଧର୍ମର ପ୍ରତିପତ୍ତି ସହଜରେ ଧରି ହୁଏ । ରୀତି ଯୁଗରେ କାବ୍ୟରୀତିର ବହୁଳ ଚର୍ଚ୍ଚା ଭିତରେ ପ୍ରେମର ସାଦୃଶ ବର୍ଣ୍ଣନା ଦେଖିବାକୁ ମିଳେ ପରବର୍ତ୍ତୀ ସ୍ୱାଧୀନତା ସାହିତ୍ୟରେ ମଧ୍ୟ ପରିସ୍ଥିତି-ପରିବର୍ତ୍ତିତ ପ୍ରେମର ପରବର୍ତ୍ତୀ ରୂପ ଆଖିରେ ପଡ଼େ । ଏପରି କି ପ୍ରେମ କୁଣ୍ଠିତ-କମନୀୟ ବହୁରୂପ-ବିଭବ

ଆଧୁନିକ ଚେତନାକୁ ମଧ୍ୟ ନିଜ ରଙ୍ଗରେ ରଙ୍ଗେଇବାର ଅପଚେଷ୍ଟା କରିଛି ଓ କରୁଛି । (ବାସ୍ତବତା ନାମରେ ସବୁ ଚଳନ୍ତି ଅଚଳନ୍ତି ସତେ ଯେପରି ଆଜ ଚଳ-ଅଞ୍ଚଳ ହୋଇ ଉଠିଛନ୍ତି । )ସେହିପରି ପ୍ରକୃତିକ ରୂପଚୟଣ ପ୍ରାଚୀନ ସାହିତ୍ୟରେ ଯେପରି ମିଳେ ତାହା ଠିକ୍ ସେହି ରୂପରେ ଅତ୍ୟାଧୁନିକ ସାହିତ୍ୟରେ ସ୍ଥାନ ପାଇ ପାରୁ ନାହିଁ । ଅଥଚ ଏ ସବୁ ସ୍ଥାନରେ ସଂପ୍ରତିକ ଚେତନାର ସ୍ୱର ଏପରି ଝଂକୃତ ହୋଇ ଉଠିଛି ଯେ ତାକୁ ବହୁ ବିଚିତ୍ର ଶବ୍ଦସନ୍ଦୋହ ! ଚିତ୍ରସମ୍ପଦ ଓ ସ୍ୱର-ଝଙ୍କାର ଭିତରେ ବାନ୍ଧି ରଖିବା ପାଇଁ ଏ ଯୁଗର କବି-କଳାକାର ତାର ଆପ୍ରାଣ ଉଦ୍‌ଯୋଗ ଆରମ୍ଭ କରି ଦେଇଛି । ବିଷୟ ଚୟନରେ ସେ ପୂର୍ବପରି କେତେ ଟି ନିର୍ଦ୍ଦିଷ୍ଟ କ୍ଷେତ୍ର ଉପରେ ଦୃଷ୍ଟି ନିବଦ୍ଧ ନକରି ବିଶ୍ୱର ଏ ମୁଣ୍ଡରୁ ସେ ମୁଣ୍ଡ, ଜୀବନର ପ୍ରତି ଗଳି କନ୍ଦି ମଣିଷ ମନର ଅନ୍ଧାର ଗୁହା—ଚେତନ ଅବଚେତନ, ମଗ୍ନ ଚେତନ, ସମଷ୍ଟି ଚେତନ ପ୍ରଭୃତି ଯାବତୀୟ ଅଦ୍ୟାପି ଅନାବିଷ୍କୃତ ସ୍ଥାନ-ଅସ୍ଥାନ ; ଦର୍ଶନ,-ବିଜ୍ଞାନ, ଅର୍ଥନୀତି, ସମାଜନୀତି, ନୃତତ୍ତ୍ୱ ପ୍ରଭୃତିର ନିତ୍ୟନୂତନ ତଥ୍ୟ ଓ ସତ୍ୟ ; ଦୈନନ୍ଦିନ ଜୀବନର ଅନିଶ୍ଚିତତା, ଚିତ୍ତ ଶୃଙ୍ଖଳା, ଅନ୍ତଃସାରଶୂନ୍ୟତା ଶୂନ୍ୟ-ଗର୍ଭତା ନୈରାଶ୍ୟ ସମସ୍ୟାଚ୍ଛନ୍ନତ୍ୟ, ବ୍ୟସ୍ତ-ବିବ୍ରତଭାବ ; ସବୁଠି 'ନାହିଁ ନାହିଁ'ର ମୁଖବ୍ୟାଦାନ, ଭବିଷ୍ୟତର ଅନିର୍ଭରଶୀଳତା ହେତୁ ବିଶୃଙ୍ଖଳା-ବିଭ୍ରାଟ ସବୁ ଭାଙ୍ଗିଯିବାର, ଜଳିଯିବାର ଧ୍ୱଂସ ପାଇବାର ବିକଟ ରୂପ ସହିତ ପରିଚିତ ହୋଇ ଆଜର କବି-କଳାକାର ଏ ସବୁ ପୂର୍ବ ପରିଚିତ ପନ୍ଥାରେ ଅତି ସହଜ ସ୍ୱାଭାବିକ ରୂପରେ ରୂପାୟନ ପାଇଁ ଚେଷ୍ଟା କରି ଯେ ଅସଫଳ ହେବ ଏଥିରେ ଆଶ୍ଚର୍ଯ୍ୟ-ଚକିତ ହେବାର କିଛି ନାହିଁ । ତେଣୁ ପ୍ରକାଶ ଭଙ୍ଗୀରେ ସେ ଆଜ ବହୁ ବିଚିତ୍ର କାରସାଦି ଆରମ୍ଭ କରି ଦେଇଛି ।

ସେହିପରି ସାଂପ୍ରତିକ ସାହିତ୍ୟର ପ୍ରଭାବ ଓ ପ୍ରତିପତ୍ତି ମଧ୍ୟ ଅସମ୍ଭବ ଭାବେ ସଂକ୍ରମଣ-ଶୀଳ ହୋଇ ଉଠିଛି । ଫ୍ରାନ୍‌ସ, ଇଂଲଣ୍ଡ, ରୁଷ, ଆମେରିକାର କଳା ସାହିତ୍ୟରେ ଯେଉଁ ପରୀକ୍ଷା ନିରୀକ୍ଷା ଚାଲିଛି ତାର ତତ୍‌କ୍ଷଣିକ ଅନୁକରଣ, ଅନୁସରଣ ଓ ଆତ୍ମୀକରଣକୁ ଏ ଦେଶର ନୂତନ ଚେତନା ସ୍ୱାଗତ-ସମ୍ଭାଷଣ ଜଣାଉଛି । ନିଶ୍ଚିତ ଭାବରେ ସ୍ୱୀକାର କରିବାକୁ ହେବ ଯେ ଏସବୁ ଏକ ଏକ ଯୁଗାନ୍ତକାରୀ ଲକ୍ଷଣ । ପ୍ରାଚୀନତାକୁ ସମାଧିଦେବାର ଚେଷ୍ଟା ଏମାନେ କେଉଁଦିନୁ ଆରମ୍ଭ କରି ଦେଇଛନ୍ତି ।

ଦେଶ-ବିଦେଶର ସାଂପ୍ରତିକ କବିମାନଙ୍କର ଆଦର୍ଶ—ଦାନ୍ତେ, ମିଲ୍‌ଟନ, ସେକ୍‌ସପିଅର, କାଳିଦାସ, ତୁଳସୀଦାସ, ଭଞ୍ଜ ଏପରିକି ଓ୍ୱାର୍ଡ଼ସ୍‌ଓ୍ୱାର୍ଥ, ବ୍ରାଉନିଙ୍ଗ୍, ଟେଗୋର, ମୈଥିଲୀଶରଣ ଗୁପ୍ତ, ପ୍ରସାଦ-ପନ୍ତ-ମହାଦେବୀ, ରାଧାନାଥ, ମାନସିଂହ, ଗଡ଼ନାୟକ ଆଦୌ ନୁହନ୍ତି । ତାଙ୍କର ସ୍ଥାନରେ ଏମାନେ ଆରମ୍ଭ କରି ଦେଇଛନ୍ତି ଉପାସନା ସେହିମାନଙ୍କର ଯେଉଁମାନେ ଅଧୁନାତନ ଯୁଗଯନ୍ତ୍ରଣାକୁ ସବାଦୌ ରୂପଦାନ ପାଇଁ ଚେଷ୍ଟା କରିଛନ୍ତି । ଟି. ଏସ୍. ଇଲିଏଟ୍, ଏଜରା ପାଉଣ୍ଡ, ମାୟୁକୋଭସ୍କି, ଜେମସ୍‌ଜଏସ୍, ସଚି ରାଉତରାୟ ପ୍ରଭୃତି ଏ ଯୁଗର ଲେଖକମାନଙ୍କର ଅତିପ୍ରିୟ ମନ୍ତ୍ରଦାତା ଓ ପଥଦ୍ରଷ୍ଟା । ଏ ଯୁଗର ଏହି ସଂକ୍ରମଣଶୀଳ ଅପ୍ରତିହତ ଚେତନାକୁ ପଶ୍ଚାଦ୍-ମୁଖୀ କରିବାର ଚେଷ୍ଟା ସଫଳ ହେବାର ନୁହେଁ ।

ଏସବୁ ସତ୍ତ୍ୱେ ସାଂପ୍ରତିକ କବିକଳାକାରମାନଙ୍କର ସିଦ୍ଧି ଅନେକ ବୋଲି କୁହାଯାଇ ନପାରେ ଏହାର କାରଣ ଅତି ସ୍ପଷ୍ଟ—ଏବିଶ୍ୱବ୍ୟାପକ ଅଦ୍ଭୁତ ରୂପଗୁଣ ସଂପନ୍ନ ଯୁଗଚୈତନ୍ୟର ରୂପାୟନ କୌଣସି ସୀମିତ ସମୟ ଓ ଐକିକ ଚେଷ୍ଟାରେ ସମ୍ଭବ ନୁହେଁ । ପ୍ରତିମୁହୂର୍ତ୍ତରେ ବଦଳି ଯାଉଥିବା ଏ ପରିସ୍ଥିତି ସବୁବେଳେ ଅଣାୟତ୍ତ ହୋଇ ରହିବା ଏହାର ଏକ ଶାଶ୍ୱତ ଲକ୍ଷଣ । ତେଣୁ ଆଜିର କବି ଓ କବିତା କାଲିକି ପୁରୁଣା ପଡ଼ିଯିବା ଅତି ସ୍ୱାଭାବିକ—ଏ ଏକ ଅଣ ନିଶ୍ୱାସୀ ଦୌଡ଼ ପ୍ରତିଯୋଗିତା ଏଥିରେ ପ୍ରତ୍ୟେକେ ନିଜନିଜର ଆଦର୍ଶ ଓ ଅନୁସୃତି । ନେପାଳର ବିଶିଷ୍ଟ କବି କୁମାରୀ ନାଜଲିନୁର ମତରେ କାଲି ସନ୍ଧ୍ୟାରେ ରଚିତ କବିତା ଆଜି ସକାଳକୁ ପୁରୁଣା ପଡ଼ି ଯାଉଥିବାର * ଏ ଏକ ଭୟାନକ ପରିସ୍ଥିତି । ମୁହୂର୍ତ୍ତକୁ ମୁହୂର୍ତ୍ତ ଚେତନାର ବିଭିନ୍ନ ସ୍ତର ଓ ବିନ୍ଦୁରେ ବାଜି ଉଠୁଥିବା ଆବେଗର ଅର୍କେଷ୍ଟ୍ରା ଓ ସିମ୍ଫୋନି ଏବଂ ତାର ସ୍ପଷ୍ଟ, ଅସ୍ପଷ୍ଟ ସ୍ୱର ଝଂକୃତି ଆମେ ସାଂପ୍ରତିକ ସାହିତ୍ୟ ସମାରୋହ ଭିତରେ ଶୁଣିବାକୁ ପାଉଛୁ । ତଥାପି ଏ ସାହିତ୍ୟର ଭବିଷ୍ୟତ ଅନ୍ଧକାରମୟ ଆଦୌ ନୁହେଁ । ନିଜ ପାଇଁ ଆଲୋକ ବର୍ତ୍ତିକା ଜାଳି, ପଥ ଖୋଜି, ଏ ଯୁଗ ଯନ୍ତ୍ରଣାକୁ ଅନୁଭବ କରି ପ୍ରକାଶିତ କରି ସାଂପ୍ରତିକ ସାହିତ୍ୟକାରମାନେ ଅନେକ ଅକଳ୍ପନୀୟ ସମ୍ଭାବନାକୁ ସମ୍ଭବ କରିବେ—ଏହି ଆଶା ଓ ବିଶ୍ୱାସ ଠିକ ପୋଷଣ କରିବା ଆମପକ୍ଷେ ବାଞ୍ଛନୀୟ ହେବ ।

---

* ବିଗଳ—ନବମ ବର୍ଷ ୧ମ—୩ୟ ସଂଖ୍ୟା—ପୃ ୫୯ ।

ସାଂପ୍ରତିକ ଓଡ଼ିଆ ସାହିତ୍ୟର କଥା ଚିନ୍ତା କଲାବେଳେ ସର୍ବ ପ୍ରଥମେ ମନେ ପଡ଼ନ୍ତି ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ ଯେ ଏ କ୍ଷେତ୍ରରେ ଜଣେ ଅପ୍ରତିଦ୍ୱନ୍ଦ୍ୱୀ ସାହିତ୍ୟରଥୀ ଓ ଯୁଗସ୍ରଷ୍ଟା ଅଗ୍ରଦୂତ । ଏପରିକି ସମଗ୍ର ଭାରତୀୟ ସାହିତ୍ୟ-କ୍ଷେତ୍ରରେ ମଧ୍ୟ ତାଙ୍କର ପ୍ରଭାବ, ପ୍ରତିପତ୍ତି ଏବଂ ଯୁଗୀୟ ସଚେତନତାକୁ ଅନେକେ ସ୍ୱୀକାର କରନ୍ତି । "ଏଇ ଯେ ଆସୁଛି ଝିଅ, କର ସଖୀ ତାରେ ନମସ୍କାର ।" ପ୍ରଭୃତି ପଂକ୍ତିରେ କବିଙ୍କର ବିପ୍ଳବାତ୍ମକ ବାସ୍ତବବାଦୀ ନୂତନ ଚେତନାର ସ୍ପଷ୍ଟ ପ୍ରତିଧ୍ୱନି ଶୁଣିବାକୁ ମିଳିଥିଲା । ଜୀବନର ବାସ୍ତବ ଚିତ୍ର—ସେ ରୁକ୍ଷ ବା ଭୟଙ୍କର ହେଉ କିମ୍ବା କେତେ ତୁଚ୍ଛାତିତୁଚ୍ଛ ହେଉ ପଛେ—ତାର ଚିତ୍ରାଙ୍କନ ଏବଂ ଜୀବନର ବିଭିନ୍ନ ତନ୍ତ୍ରୀକୁ ପଙ୍ଗୁ କରି ରଖିବାର ଯୁଗଯୁଗର ଯେଉଁ ଅପଚେଷ୍ଟା ତା'ର ପ୍ରତିରୋଧ କରିବାରେ ସେ ଥିଲେ ସର୍ବପ୍ରଥମ ପ୍ରତିଭାଶାଳୀ ସମର୍ଥ କବି । ବିଷୟାନୁରୂପ ଛନ୍ଦ; ଶବ୍ଦ-ସଂଯୋଜନା, ପ୍ରତୀକ, ପ୍ରତିରୂପ, ରୂପକ, ଅନୁସଙ୍ଗ ଓ ସାଦୃଶ୍ୟକଥନର ଆଶ୍ରୟରେ ସେ ଲେଖିଛନ୍ତି ଅନେକ କବିତା । 'କବିତା—୧୯୬୨' ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀରୁ ପୁରସ୍କାର ଲାଭ ତାଙ୍କ ପ୍ରତିଭାର ସ୍ପଷ୍ଟ ସ୍ୱୀକୃତି, ଏଥିରେ ସନ୍ଦେହ ନାହିଁ ।

ଓଡ଼ିଆ ସାହିତ୍ୟ-କ୍ଷେତ୍ରରେ ରାଉତରାୟଙ୍କ ନିର୍ଦ୍ଦେଶିତ ପଥରେ ଏବଂ କେହି କେହି ସ୍ୱତନ୍ତ୍ରଭାବରେ ଦେଶୀ ବିଦେଶୀ କବି ଦାର୍ଶନିକମାନଙ୍କ ଚିନ୍ତାଧାରାର ପ୍ରତିଧ୍ୱନି ନିଜ ନିଜ କବିତାରେ ତୋଳିଛନ୍ତି । ଏ କ୍ଷେତ୍ରରେ ସର୍ବଶ୍ରୀ ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ଗୁରୁପ୍ରସାଦ ମହାନ୍ତି ପ୍ରଭୃତିଙ୍କ ନାମ ସର୍ବାଦୌ ସ୍ମରଣୀୟ । ପରେ ପରେ ବହୁ ଲେଖକଙ୍କର କୃତିତ୍ୱ ଆସନ୍ତା କାଲି, ଝଙ୍କାର, ଦିଗନ୍ତ, ନବରବି ତଥା ଅନ୍ୟାନ୍ୟ 'କୁନି ପତ୍ରିକା'ର ପୃଷ୍ଠାଗୁଡ଼ିକରେ ଦେଖିବାକୁ ମିଳେ । ଏ ବିକଟ ପରିସ୍ଥିତିର ସଂକଟ ଅତିକ୍ରମ କରିବା ଓ କରାଇବା ପାଇଁ ଏ କ୍ଷେତ୍ରରେ ଅନେକେ ନିଜ ନିଜର ପଥ ଅନୁସନ୍ଧାନରେ ବ୍ୟସ୍ତ ଅଛନ୍ତି । ପୂର୍ବୋକ୍ତ କବିମାନଙ୍କ ବ୍ୟତୀତ ସର୍ବଶ୍ରୀ ସୌଭାଗ୍ୟ କୁମାର ମିଶ୍ର, ବିବେକାନନ୍ଦ ଜେନା ଦୀପକ ମିଶ୍ର, ସୌରୀନ୍ଦ୍ର ବାରିକ, ଭାନୁଜୀ ରାଓ, କମଳାକାନ୍ତ ଲେଙ୍କା; ପ୍ରମୋଦ କୁମାର ମହାନ୍ତି, ହରପ୍ରସାଦ ଦାସ ଏବଂ ଆହୁରି ଅନେକ କବି ବିଭିନ୍ନ ପରୀକ୍ଷା ନିରୀକ୍ଷା ଚଳାଇ ଆଗେଇଛନ୍ତି । ଯୁଗ ସାହିତ୍ୟ ସଂସଦ ମାଧ୍ୟମରେ ଏମାନଙ୍କର ଶକ୍ତିକୁ ସୁସଂହତ ଓ ଅଧିକ ସକ୍ରିୟ କରିବାର ଚେଷ୍ଟା ମଧ୍ୟ ହେଉଛି ।

କିନ୍ତୁ ଏ ଚେତନାର ସ୍ଫୁରଣ ଓ ବିସ୍ଫୁରଣ କବିତାର କଳେବର ମଧ୍ୟରେ ଯେପରି ଦେଖିବାକୁ ମିଳେ ସାହିତ୍ୟର ଅନ୍ୟାନ୍ୟ ବିଭାଗରେ ସେତିକି ପରିମାଣରେ ଆଖିରେ ପଡୁନାହିଁ । କ୍ରମେ ଅବଶ୍ୟ ଆଧୁନିକ ଶୈଳୀରେ ଅନେକ ଗଳ୍ପ ଲେଖାଯିବା ଆରମ୍ଭ ହୋଇଛି । 'ହରିଗନ୍ଧ'ର 'ନୂଆପ୍ରସ୍ଥ'ରେ ପ୍ରକାଶ ପାଇଥିବା ଅନେକ ଗଳ୍ପର ଲେଖକ ସର୍ବଶ୍ରୀ ମନୋଜ ଦାସ, ଉପେନ୍ଦ୍ର କିଶୋର ଦାସ, କିଶୋରୀ ଚରଣ ଦାସ, ହରି ପ୍ରସାଦ ଦାସ (ନଚିକେତାର ଡାଏରୀରୁ), ସୁରେନ୍ଦ୍ର ମହାନ୍ତି, ହରିହର ମିଶ୍ର, ବୀଣାପାଣି ମହାନ୍ତି, ରେଣୁକା ଦେବୀ, ଦେବଦାସ ଛୋଟରାୟ (ଚଉପହରି) ପ୍ରଭୃତି, ତଥା ଝଂକାର, ତଥା ସାଂପ୍ରତିକ ଗଳ୍ପ ତ୍ରୈମାସିକର ବିଭିନ୍ନ ସଂଖ୍ୟାରେ କେତେକ ଗଳ୍ପ ଏବଂ 'ନର କିନ୍ନର', 'ଶତାବ୍ଦୀର ନଚିକେତା' ନାମକ ପରୀକ୍ଷାମୂଳକ ଉପନ୍ୟାସ (ଶାନ୍ତନୁକୁମାର ଆଚାର୍ଯ୍ୟ) ପାଠକଙ୍କ ଦୃଷ୍ଟି ଆକର୍ଷଣ କରନ୍ତି । ସାଂପ୍ରତିକ ଓଡ଼ିଆ ନାଟକ କ୍ଷେତ୍ରରେ ମଧ୍ୟ ସର୍ବଶ୍ରୀ ବ୍ୟୋମକେଶ ତ୍ରିପାଠୀ (ଏକ ଦୁଇ ତିନି), ବିଜୟ କୁମାର ମିଶ୍ର (ଶବବାହକମାନେ), ବିଶ୍ୱଜିତ ରାୟ (ମୃଗୟା), ମନୋରଞ୍ଜନ ଦାସ (ବନହଂସୀ, ଅରଣ୍ୟ ଫସଲ, ଶ୍ରେଷ୍ଠ ନାଟକ) ପ୍ରଭୃତି ଲେଖକମାନେ ନୂତନ ଶୈଳୀ ଓ ବିଷୟର ପ୍ରୟୋଗ କରୁଥିବା ଲକ୍ଷ୍ୟ କରାଯାଇଛି । କ୍ରମେ ଏସବୁ ଗ୍ରନ୍ଥକୁ ଆଶ୍ରୟ କରି ଅନେକ ଲକ୍ଷଣାତ୍ମକ ପ୍ରବନ୍ଧ ଆଲୋଚନା ମଧ୍ୟ ପ୍ରକାଶିତ ହେଉଛି ଯହିଁରେ ସାଂପ୍ରତିକ ସାହିତ୍ୟର ଶୈଳୀ ଉପରେ ଆଲୋକପାତ କରିବାର ଅନେକ ସଫଳ ଅସଫଳ ଚେଷ୍ଟା କରାଯାଇଛି । ତେଣୁ ସଂପ୍ରତିକ ଓଡ଼ିଆ ସାହିତ୍ୟ ସମ୍ପର୍କରେ ଯେତେ ଯିଏ ଯାହା କହନ୍ତୁ ନା କାହିଁକି କ୍ରମେ ଏହା ଯେ ପ୍ରତିଷ୍ଠାପ୍ରାପ୍ତ ହେବା ପଥରେ ଦ୍ରୁତ ବେଗରେ ଅଗ୍ରସର ହେଉଛି – ଏହା ମଧ୍ୟାହ୍ନ ସୂର୍ଯ୍ୟ ପରି ସ୍ପଷ୍ଟ ଓ ସତ ।

ଏ ସବୁ ସତ୍ତ୍ୱେ ସଂପ୍ରତିକ ସାହିତ୍ୟର ସ୍ରଷ୍ଟା ସାହିତ୍ୟକାରମାନଙ୍କ ପକ୍ଷେ ଆତ୍ମସନ୍ତୁଷ୍ଟି ଲାଭ କରିବାର ଅବକାଶ ମିଳିଛି ବୋଲି କୁହା ଯାଇ ନପାରେ । କାରଣ ତାଙ୍କ ରଚିତ ସାହିତ୍ୟକୁ କେନ୍ଦ୍ର କରି ଭୂମିକ ଝଡ଼ସୃଷ୍ଟିର ସୂଚନା ସମୟେ ସମୟେ ମିଳୁଛି । ଏଥିପାଇଁ ଦାୟୀ ସେମାନେ ନିଜେ ଏବଂ ତାଙ୍କ ରଚିତ ସାହିତ୍ୟ । ତାଙ୍କ ବିରୋଧରେ ଯେତେସବୁ ଆକ୍ଷେପ ଅଭିଯୋଗ ଓ ଆହ୍ୱାନ ଆସୁଛି ସେସବୁର ଯଥୋଚିତ ଉତ୍ତର ସେମାନଙ୍କୁ ହିଁ ଦେବାକୁ ପଡ଼ିବ । ଏ ସାହିତ୍ୟ

ବିରୋଧରେ ଅନେକ ଶିକ୍ଷିତ ଏପରିକି ଉଚ୍ଚଶିକ୍ଷିତ ବ୍ୟକ୍ତିଙ୍କ ପ୍ରଧାନ ଅଭିଯୋଗ ହେଲା—ତାହା କେବଳ ଦୁର୍ବୋଧ ନୁହେଁ ଅନେକ ସମୟରେ ଅବୋଧ ହୋଇ ପଡ଼ୁଛି । ଏହା ଯେ ଅମୂଳକ, ଆଦୌ ନୁହେଁ । ଅବଶ୍ୟ ସେମାନେ T. S. Eliotଙ୍କ ସହିତ ସ୍ୱର ମିଳାଇ କହିପାରନ୍ତି—"ଆମ ସଭ୍ୟତା ମିଶ୍ରିତ, ବିବିଧ ଓ ବହୁମୁଖୀ ଓ ତାହାର ଏହି ମିଶ୍ରିତ, ବହୁବିଧ ଗୁଣ ଏକ ସଂଶୋଧିତ ଚୈତନ୍ୟକୁ ପ୍ରଭାବିତ କରି ମିଶ୍ରିତ ଓ ବହୁବିଧ ପ୍ରତିକ୍ରିୟା ସୃଷ୍ଟି କଲା । ତେଣୁ କାବ୍ୟକାରକୁ ଅଧିକରୁ ଅଧିକ ପାରଦର୍ଶୀ, ପ୍ରଶସ୍ତ, ବକ୍ର ଓ ଜଟିଳ ହେବାକୁ ପଡ଼ିବ ଏବଂ ଯଦି ପ୍ରୟୋଜନ ହୁଏ, ତେବେ ଭାବର ସମୃଦ୍ଧି ଲାଗି ଭାଷାକୁ ଭାଙ୍ଗି ଅସଂଗତ ମଧ କରିବାକୁ ପଡ଼ିବ ।" (ଦିଗନ୍ତ—୧୯୬୫—ପରେଶ ରାଉତଙ୍କ ପ୍ରବନ୍ଧ) । ଏହି ଅସଂଗତି ହେଉ ପଛେ ଅବୋଧତାର କାରଣ, ସେଥିରେ ସେମାନେ ବିବ୍ରତ ନୁହଁନ୍ତି । ସେମାନେ କହନ୍ତି, ସାର୍ତରଙ୍କ ମତରେ—Poets are men who refuse to utilise language. କବିତାର ଭାଷା ସଂପର୍କରେ ଆଲୋଚନା କରିବାକୁ ଯାଇ ଶ୍ରୀ ସୀତାକାନ୍ତ ମହାପାତ୍ର ପ୍ରତୀକ-ବାଦୀ ଫରାସୀ କବି ମାଲାର୍ମେଙ୍କ ମତ ଉଦ୍ଧାର କରି କହନ୍ତି—କବିତାରୁ ଅର୍ଥର ବହିଷ୍କରଣ ବା କବିତାର ବାହ୍ୟିକ ଅର୍ଥହୀନତାର ପ୍ରତିପାଦନ ଆଧୁନିକ କବିତାର ଅନ୍ୟ ଏକ ବିଭାବ ଯାହା—"କବିତାର ଭାଷାକୁ ପ୍ରଭାବିତ କରୁଛି ।" ଅର୍ଥାତ୍ ଅନ୍ୟ କଥାରେ କହିଲେ ଭାଷାକୁ ଦୁର୍ବୋଧ କରି ପକାଉଛି । ପ୍ରକୃତ କଥା ହେଲା ଅତିବୈୟକ୍ତିକ ପ୍ରତୀକ ପ୍ରତିରୂପର ପ୍ରୟୋଗ ଫଳରେ ସମୟେ ସମୟେ କବିତାଗୁଡ଼ିକ ଏପରି ଅର୍ଥହୀନ ଓ ଅସ୍ପଷ୍ଟ ହୋଇ ପଡ଼ୁଛି ଯେ ସେଥିପ୍ରତି ଆଗ୍ରହ ପରିବର୍ତ୍ତେ ମନରେ ଅଶ୍ରଦ୍ଧା ଜାତ ହେଉଛି । ମନେହୁଏ, କବିମାନେ କବିତା ନୁହେଁ କବିତାର ଆଙ୍ଗିକରେ ଏକ ଏକ 'ପ୍ରହେଳିକା' ବା 'ଶଣୀଠାର' ସୃଷ୍ଟି କରିବା ପାଇଁ ଚେଷ୍ଟା କରୁଛନ୍ତି । ଏ ଯୁଗର ପ୍ରତିଷ୍ଠିତ ଓ ଉଦୀୟମାନ କବିମାନେ ମଧ ଲେଖନ୍ତି—

> "କିଲଭ ସେ ସାବ୍‌ଜା ସଂଧ୍ୟାକୁ ? ମୁଁ ଭଲ ତ ମୋର ତିନିଗୋଟି କାନ୍ଧ,
> ଗୋଟେ ନାସଦାଗ୍ମା, କେଉଁଏ ବଳତା ।"

(ବୃତ୍ତ—ରମାକାନ୍ତ ରଥ)

କିମ୍ବା

"ଆମ ପାଇଁ ଛନଦିଲ ମୋଜା ଏବଂ ଦୁଇଗୋଟି ପାଇଜାମା
ସାତଗୋଟି ଗେଞ୍ଜି ଏବଂ ଗୁଣଟି ଚଦର ଦେବ ପ୍ରଭୁ
ଅମର କି ହେବ ବେଶି ?"

( ଶୀତଋତୁ—ହରପ୍ରସାଦ ଦାସ )

ଭାଷାର ସ୍ୱଚ୍ଛତା ଓ ସ୍ପଷ୍ଟତା ସତ୍ତ୍ୱେ ଅର୍ଥ ଅବବୋଧରେ ଯେଉଁ ଅସୁବିଧା ଉପୁଜୁଛି ତା'ର କାରଣ ଜଣାଇବା ସଙ୍ଗେ ସଙ୍ଗେ ତା'ର ନିରାକରଣ ପାଇଁ କ'ଣ ସେମାନଙ୍କର କିଛି କରିବାର ନାହିଁ ? ତାହା ନ କରି ସେମାନେ ଯଦି Postsimbolist କବିମାନଙ୍କ ପରି କହିବା ଆରମ୍ଭ କରନ୍ତି—"ଭାବଧାରା ଯଦି ପାଠକର ଅବଗତ ହୁଏ, ତେବେ ଭଲ, କିନ୍ତୁ ଯଦି ନ ହୁଏ ତେବେ ମଧ୍ୟ କିଛି ଯାଏ ଆସେ ନାହିଁ।" (ଦିଗନ୍ତ —ନଭେମ୍ବର—ଡିସେମ୍ବର ୧୯୬୫—ପରେଶ ରାଉତଙ୍କ ଲେଖା)। ତାହା-ହେଲେ ଏହାକୁ ଦୁର୍ବୋଧ୍ୟ କହିବା ଛଡ଼ା ଉପାୟ କ'ଣ ଅଛି ? ଏସବୁକୁ ଏମିତି ଛାଡି ନ ଦେଇ ଯାହା ଲେଖାଯାଉଛି ଆଲୋଚନା ମାଧ୍ୟମରେ ସେ ସବୁର ସୁସ୍ପଷ୍ଟ ରୂପ ପ୍ରକାଶ ପାଇବା ଉଚିତ। ଏ ଯୁଗର ବିରାଟ କବି T. S. Eliotଙ୍କ 'Wasteland' ପ୍ରଭୃତି ଲେଖାର ଆଦି ଅନ୍ତ ତ ପେର୍ ଆଲୋଚକମାନେ ଖୋଜି ବାହାର କରିବାରେ ଅନେକାଂଶରେ ସଫଳ ହୋଇ ପାରିଛନ୍ତି—ଏଇଠି ନ ହେବ କାହିଁକି ? ଠିକ୍ ଏହି କଥା କବି ରାଜକିଶୋର ମଧ୍ୟ ଦିଗନ୍ତ—ଅଷ୍ଟମ ବର୍ଷ ୧ମ-୨ୟ ସଂଖ୍ୟାର ସମ୍ପାଦକୀ-ୟରେ କହିଛନ୍ତି—"ମାତ୍ର ଆମ ଦେଶରେ ଆଲୋଚନା ସାହିତ୍ୟର ଏକାନ୍ତ ଅଭାବ ହିଁ ଆଧୁନିକ ସାହିତ୍ୟର ଦୁର୍ବୋଧତା ଓ ଦୁର୍ଗତି ପାଇଁ ସମଧିକ ଦାୟୀ ବୋଲି ମନେହୁଏ।" ଏ ଯୁଗର ଆଲୋଚକ ପାଇଁ ଏହା କ'ଣ ଏକ ଆହ୍ୱାନ ନୁହେଁ ?

ସାଂପ୍ରତିକ ସାହିତ୍ୟ ସମ୍ପର୍କରେ ଅନ୍ୟ ଏକ ଅଭିଯୋଗ ହେଲା ଯେ କବି ଓ ଗାଳ୍ପିକମାନେ ବାସ୍ତବତା ନାମରେ ଅଧିକରୁ ଅଧିକ ଅଶ୍ଳୀଳ ହୋଇ ପଡୁଛନ୍ତି। ଏ କଥା ଅନେକାଂଶରେ ସତ। ସାଂପ୍ରତିକ ସାହିତ୍ୟରେ ଏହାର ନିଦର୍ଶନ ଅପ୍ରଚୁର ନୁହେଁ। କେତୋଟି ନିଖୁଣ ଉଦାହରଣ ହେଲା—

"ଯାଆଁ ତ କେଉଁଠି ତୁମେ, କାହା ଦଧିନଉଦ ଉପରେ
କଳୁଚ ପତାକା ହୋଇ ବା କାହାର ରତୁମତୀ ଇଚ୍ଛା
ତୁମକୁ କରନ୍ତୁ ମେଣ୍ଢା ହନସାର୍ ଏବଂ ରାତ ହେଲେ
ସେ କେଉଁ ଡାହାଣୀ ତାର କାନୁରେ ଆବଦ୍ଧ କରି
କରେ ତୁମ ଓଠ ହଳଦିଆ ।"
(ଅବଲୋକନ—ଦେବଦାସ ଛୋଟରାୟ)

ଏବଂ

"ମେଘଠୁ ନରମ ନାଲ କୁଓପେଣ୍ଟୁ ସ୍ତନ ।"
(ଏକ ସନେଟ—ସଚ୍ଚି ରାଉତରାୟ)

ଏସବୁକୁ ହଜମିବା ପାଇଁ ପାଠକ ଯେତେବେଳେ ଧୈର୍ଯ୍ୟ ସଂଚୟ କରେ ସେତେବେଳେ—"ସଜନା ଛୁଇଁପଣ ଝୁଲୁଚି (........) କିମ୍ବା "ମୋତେ ଲାଗେ କୌଣସି ବିଶାଳ ସ୍ତନବତୀ ଉଲଗ୍ନା ନାରୀ ମୋ'ର ବାପାଙ୍କ ସାମ୍ନାରେ ମୋତେ ସମ୍ଭୋଗ ପ୍ରାର୍ଥନା କରୁଛି ।" ପରି ପଂକ୍ତିଗୁଡ଼ିକ ପାଠକର ନୈତିକତା ଉପରେ ଯେଉଁ ନଗ୍ନ ଆକ୍ରମଣ କରନ୍ତି ତଦ୍ଦ୍ୱାରା ପାଠକର ବିବେକ ଖାନ୍ ଖାନ୍ ଚୂର୍ଣ୍ଣ କରିବା ବ୍ୟତୀତ ଅନ୍ୟ ପନ୍ଥା ନାହିଁ । ଏସବୁକୁ ବିଦାୟ ଦେଇ ସାଂପ୍ରତିକ ସାହିତ୍ୟ ରଚିତ ହୋଇ ପାରିବନି ବୋଲି ଭାବିବା ସଂସ୍କୃତିହୀନତାର ପରିଚୟ ନୁହେଁ କି ?

ଏହା ଛଡ଼ା ଏ ଯୁଗର ସାହିତ୍ୟକାରମାନେ ଅତି ଅବାସ୍ତବ ଓ ଉଦ୍ଭଟ କବିତା ଓ ଗଳ୍ପମାନ ରଚନା କରିଛନ୍ତି ଯେଉଁଥିରେ ଏ ଦେଶର ଜନଜୀବନର ବାସ୍ତବ ଚିତ୍ର ବଦଳରେ ବିଦେଶୀ ଲେଖକମାନଙ୍କର ଅନ୍ଧାନୁକରଣ ହିଁ ଦେଖିବାକୁ ମିଳେ । ଚେତନାର ସଂରକ୍ଷକ କବି କଳାକାରମାନେ ଯଦି ଏ ଜାତି ଓ ଦେଶର ଜୀବନକୁ ବ୍ୟସ୍ତ ବିବ୍ରତ କରୁଥିବା ସମସ୍ୟାଗୁଡ଼ିକ ପ୍ରତି ଚକ୍ଷୁ ବନ୍ଦ କରି ଦେଇ ପଳାୟନପନ୍ଥୀ ସାଜନ୍ତି ତେବେ ତାଙ୍କ ପ୍ରତି କାହାର ଆଦର ଭାବ ରହିବ କିପରି ? ତେଣୁ ସାଂପ୍ରତିକ ସାହିତ୍ୟ ଭିତରେ ଦୁର୍ବୋଧତା, କ୍ଲାନ୍ତତା, ଅସଫଳଗ୍ନତା, ଅଶ୍ଳୀଳତା, ଅବାସ୍ତବତା, ବୈଦେଶିକତା, ପଳାୟନ-ମନୋବୃତ୍ତି, ଆତ୍ମକୈନ୍ଦ୍ରିକତା, ତଥାକଥିତ ଦାର୍ଶନିକତା, ରସହୀନତା, ସମାଜ-ବିମୁଖତା ପ୍ରଭୃତି ବିଷୟରେ ଯେଉଁ ଅଭିଯୋଗମାନ ଉଠୁଛି ସେଥିପ୍ରତି ସେମାନେ ଦୃଷ୍ଟି ଦେବା ଏକାନ୍ତ ଆବଶ୍ୟକ । 'ନଭେମ୍ବର ୧୯୭୦—ନବରବି'ରେ

ପ୍ରକାଶିତ କବି ଗୁରୁଚରଣଙ୍କ ରଚିତ 'ଚେତନାର ବିଚ୍ଛେଦ ଅନ୍ତେ' କବିତା ସମସ୍ତଙ୍କର ଅକ୍ଷି ଖୋଲିଦେବ ବୋଲି ଆମର ବିଶ୍ୱାସ । ଏ ଯୁଗର ଅନ୍ଧସ୍ରଷ୍ଟା ରୂପେ ସୃଷ୍ଟି ନାମରେ କିମ୍ଭୂତ ଅପସୃଷ୍ଟିଟିକୁ ଲକ୍ଷ୍ୟ କରି ସେ ଯେଉଁ କ୍ଷୋଭ ପ୍ରକାଶ କରିଛନ୍ତି ଅନେକେ ତା'ର ସମର୍ଥନ କରିବେ ନିଶ୍ଚୟ । ଉକ୍ତ କବିତାର ପ୍ରାକ୍‌ଭାଷଣରେ ସେ କହନ୍ତି—"ଚିନ୍ତା ବା ଆବେଗର ସହିତ, ଛନ୍ଦ ଓ ଅନୁସଙ୍ଗର ଯଥାଯଥତା ଏବଂ କାବ୍ୟିକ ଅପରିହାର୍ଯ୍ୟତାର ଅଭାବ ରହିବା ଫଳରେ ଅନେକ ସମୟରେ 'ଦାଉଁ ଗଡ଼ ଗଡ଼ ମାଙ୍କଡ଼' ବି ହୋଇ ଯାଉଛି ।" ଏହା ଯେ ପ୍ରକୃତରେ "ବିଦଗ୍ଧ କାବ୍ୟରସିକ ପକ୍ଷରେ ବାସ୍ତବିକ ପୀଡ଼ାଦାୟକ" ଏଥିରେ ତିଳେ ସୁଦ୍ଧା—ସନ୍ଦେହ ନାହିଁ । ଏ ଯୁଗରେ କବିତା ନାମରେ ଯାହା ପ୍ରକାଶ ପାଇଛି ସେଥିରୁ ଅଧିକାଂଶ କବି ଗୁରୁଚରଣଙ୍କ ଭାଷାରେ—

"ମାଜି ତାର ରୂପ-ଭଙ୍ଗ ହେଉନି ତ ଚିହ୍ନି
ପାଣିମିଶା ଦୁଧ ଅବା ଦୁଧମିଶା ପାଣି ।"

ଏବଂ " ସବୁମିଶି କବିତା ଯେ ହୋଇଛି ପଳାନ୍ନ,
ଧୋତି ସଙ୍ଗେ ନେକ୍‌ଟାଇ କଣୁର କୌପୀନ !!"

ତେଣୁ ଅଭାବ ଦୁଃଖ ଓ କ୍ଷୋଭର କଥା ଯେ—

"ଜୀବନର ସଙ୍ଗୀତ, ଶବ୍ଦର ସ୍ୱରୂପ
(ବିହ୍ୱଳ ବିସ୍ମୃତ ତାର, ବହୁବର୍ଣ୍ଣୀ ରୂପ......)
ସମସ୍ତ ହରାଇ କାବ୍ୟ ହୁଏ ଏକ ଖୋପ
ସବୁ ବାଗ୍‌ଲତା, ସବୁ ଦୈର୍ଘ୍ୟ ପ୍ରସ୍ଥ ପାଇଁ
କବିତାଟା ଯାକ ଖାଲି ଲମ୍ବ ଲମ୍ବ ଗୁଳ !!
ସବୁ ଖାଲି ଧୂଆଁ ବାଣ, ଏକ ବଡ଼ 'ନାହିଁ' !"

ଯଦି ଏହା ଏକ 'ଧୂଆଁ ବାଣ' ବୋଲି କେବଳ ପ୍ରଚ୍ଛାୟମାନ ହୁଏ, ତାହାହେଲେ ସାଂପ୍ରତିକ କବିମାନଙ୍କର ଆତ୍ମ-ସମୀକ୍ଷାର ବେଳ ଉପସ୍ଥିତ ହୋଇ ଯାଉଛି ବୋଲି କହିବାକୁ ହେବ । ଏ ପ୍ରକାର ଆକ୍ଷେପଗୁଡ଼ିକୁ କେବଳ ଅମୂଳକ ଅପବାଦ ବୋଲି ଉଡ଼ାଇ ଦିଆଯାଇ ନ ପାରେ । ଏ ବିଷୟରେ ତାଙ୍କର ସ୍ପଷ୍ଟ ମତ ଶ୍ରୀ ଗୁରୁଚରଣ ଆଗରୁ ଦିଗନ୍ତର ସମ୍ପାଦକୀୟ ସ୍ତମ୍ଭରେ ମଧ୍ୟ ପ୍ରକାଶ କରି ଲେଖକମାନଙ୍କର ଦୃଷ୍ଟି ଆକର୍ଷଣ କରିଛନ୍ତି ।

ସେ କହନ୍ତି—"ଆଧୁନିକ କବିତା ନାନା ବାଧା ବିପର୍ଯ୍ୟୟ ଭିତରେ ଯାତ୍ରା କରି ଆଗେଇ ଥିଲା, ବର୍ତ୍ତମାନ ତାହା ଯାଇ ଏକପ୍ରକାର ନିଷ୍ଫଳ ନେତିବାଦରେ ଏବଂ କେଉଁଠି ବା ମାନସିକ ବିକାରରେ ପହଞ୍ଚିଲାଣି । 'ଅକବିତା' ତା'ର ଏକ ନିଷ୍ଠୁର ପରିଣତି ।"

ତେଣୁ କବିମାନେ କବିତା ନାମରେ 'ଅକବିତା' ଲେଖାରୁ ଯେପରି ମୁହଁ ଫେରାଇବେ ତା'ର ବ୍ୟବସ୍ଥା ହେବା ଆବଶ୍ୟକ । ଉପରୋକ୍ତ ଅଭିମତଗୁଡ଼ିକ ପ୍ରାଚୀନପନ୍ଥୀଙ୍କର ନିଷ୍ଫଳ ହୁଂକାର ବୋଲି ଉପେକ୍ଷା କରିଗଲେ ତଦ୍ଦ୍ୱାରା ସେମାନେ ନିଜ ସାହିତ୍ୟର ଯଥେଷ୍ଟ ଅକଲ୍ୟାଣ ହିଁ କରିପିବେ ।

ଅବଶ୍ୟ ଆଧୁନିକତାର ଅଭିନନ୍ଦନ ପାଇଁ ଶୁଭଶଙ୍ଖ ବାଦନ କରିବା ନ କରିବାର ଦ୍ୱନ୍ଦ୍ୱ ଯୁଗେ ଯୁଗେ ଅନେକ ପ୍ରତିଷ୍ଠିତ ବ୍ୟକ୍ତିଙ୍କୁ ଅଥୟ କରିଛି । ସ୍ୱୀୟ ପ୍ରତିଷ୍ଠା-ପ୍ରାସାଦର ଭିତ୍ତି ଦୋଦୁଲ୍ୟମାନ ହେବା ଦେଖି ସେମାନେ ପରିବର୍ତ୍ତନର ପଥରୋଧ ପାଇଁ ଆପ୍ରାଣ ଚେଷ୍ଟା ନିଶ୍ଚୟ କରିବେ । ଜୀବନ ସାରା ଯେଉଁ ଆଦର୍ଶର ପ୍ରଚାର ଓ ପ୍ରସାର ପାଇଁ ଶକ୍ତି ବିନିଯୋଗ କରାଯାଇଛି, ତାହାକୁ ଏହିପରି ବାଏଁ ବାଏଁ ଉଡ଼ିଯିବାକୁ ନ ଦେବା ମନୁଷ୍ୟ ପକ୍ଷରେ ଅତି ସ୍ୱାଭାବିକ । ପରିବର୍ତ୍ତିତ ପରିସ୍ଥିତି ସହ ପାଦ ମିଳାଇ ଚାଲିବାର ଅକ୍ଷମତା ତଥା ଜୀବନର ଶେଷ କେଇଟି ବର୍ଷ ପୂର୍ବପରି ସମ୍ମାନ-ଲାଭରୁ ବଞ୍ଚିତ ହେବାର ଆଶଙ୍କା ହିଁ ସେମାନଙ୍କୁ ବୋଧହୁଏ ନୂତନତାର ପରିପନ୍ଥୀ ହେବାକୁ ବାଧ୍ୟ କରେ । ଅପର ପକ୍ଷରେ ଅନ୍ୟର ଅନୁସରଣ ଅନୁକରଣରେ ବ୍ୟକ୍ତିତ୍ୱ-ପ୍ରତିଷ୍ଠା ସମ୍ଭବ ନୁହେଁ ଭାବି ସାଂପ୍ରତିକ ସମାଜ ପ୍ରାଚୀନତାରୁ ମୁହଁ ଫେରାଇ ନୂତନତାର ସନ୍ଧାନରେ ଆତ୍ମନିୟୋଗ କରିଥାଏ । ତେଣୁ ପ୍ରତିଯୁଗରେ ପୁରାତନ ଓ ନୂତନ ଭିତରେ ଏହି ଟଣା ଓଟରା ଚାଲିଛି ଏବଂ ଚାଲିବ ମଧ୍ୟ । ଏହା ହେଲା ଉଭୟ ଗୋଷ୍ଠୀର ଆତ୍ମ-ରକ୍ଷା ଓ ଆତ୍ମପ୍ରତିଷ୍ଠା ପାଇଁ ପ୍ରାଣାନ୍ତକ ଚେଷ୍ଟା ଓ ପ୍ରତିଚେଷ୍ଟା ମାତ୍ର । ତଥାପି ଦୁନିଆଁ ଆଗେଇ ଚାଲିଛି । ସବୁ ଯୁଗରେ ସାଂପ୍ରତିକ ଗୋଷ୍ଠୀର ଜୟ ସୁନିଶ୍ଚିତ । ତଥାପି ପୂର୍ବବର୍ତ୍ତୀ ଯେଉଁ ପ୍ରତିଷ୍ଠିତ ପରମ୍ପରାର କବି କଳାକାରମାନଙ୍କ ପ୍ରତ୍ୟକ୍ଷ ଓ ପରୋକ୍ଷ ପ୍ରେରଣାରେ ଆଜିର କବିମାନେ ନୂତନ ପଥର ସନ୍ଧାନ ପାଇଁ ଚେଷ୍ଟାଶୀଳ, ସେହିମାନଙ୍କ ମତର କ'ଣ କିଛି ମୂଲ୍ୟ ନାହିଁ ? ଯେଉଁମାନଙ୍କର କୀର୍ତ୍ତି-ପର୍ବତର ଶିଖରଦେଶରେ ଦଣ୍ଡାୟ-ମାନ ହୋଇ ଆଜିର ସାହିତ୍ୟିକ ନିଜକୁ ବିଜ୍ଞ ଓ ବହୁଦର୍ଶୀ ବୋଲି

ମନେକରେ ସେହି ପୂର୍ବସୂରୀମାନଙ୍କର ଅବଦାନ ଏବଂ ସତ୍ ପରାମର୍ଶକୁ ଅସ୍ୱୀକାର ଓ ଅବଜ୍ଞା କରିବା ଏକ ଆତ୍ମଘାତୀ ନୀତି ନୁହେଁ କି ?

ତେଣୁ ଉପସଂହାରରେ କୁହାଯାଇପାରେ ଯେ ସାଂପ୍ରତିକ ସାହିତ୍ୟ-କାରଗଣ ଅଧିକରୁ ଅଧିକ ଆଧୁନିକତା ସଚେତନ ହୁଅନ୍ତୁ । ଏହା ହେବା ହିଁ ତ ସେମାନଙ୍କର ଏକମାତ୍ର ଧର୍ମ । ସେଥିରେ ବିବ୍ରତ ହେବାର କିଛି ନାହିଁ । ତଥାପି ପରଂପରାର ଯେପରି ହତ୍ୟା ନ ହୁଏ ସେଥିପ୍ରତି ମଧ୍ୟ ଦୃଷ୍ଟି ଦେବା ସେମାନଙ୍କର ଏକ ଅଲଂଘନୀୟ ଦାୟିତ୍ୱ । ପରଂପରାର ଦୃଢ଼ ଭିତ୍ତି ଉପରେ ଦଣ୍ଡାୟମାନ ହୋଇ ସୁଦ୍ଧା ସେମାନେ ଯେପରି ଯନ୍ତ୍ରଣାପୀଡ଼ିତ ଏ ଯୁଗର ବ୍ୟକ୍ତି, ଜାତି ଓ ବିଶ୍ୱର ସମସ୍ୟାଗୁଡ଼ିକଠାରୁ ଦୂରେଇ ନ ଯାଆନ୍ତି, ସେଥିପ୍ରତି ସତତ ଜାଗ୍ରତ ରହିବା ଆବଶ୍ୟକ । ଗତବର୍ଷ ଉର୍ଦ୍ଦୁ କବି ଶ୍ରୀ ରଘୁପତି ସହାୟ ଫିରାକ୍‌ଙ୍କୁ 'ଜ୍ଞାନପୀଠ' ପୁରସ୍କାର ପ୍ରଦାନ କରିବା ଅବସରରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ପରାମର୍ଶ ଦେଇ କହିଥିଲେ, "ଉନ୍ନତ ସାହିତ୍ୟ ମଣିଷର ଅନ୍ତରାତ୍ମାକୁ ଚିହ୍ନିବାରେ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ତାହାକୁ ପ୍ରଭାବିତ କରୁଥିବା ସାମାଜିକ ଶକ୍ତିକୁ ଜାଣିବା ପାଇଁ ଉପଯୁକ୍ତ ପରିବେଶ ସୃଷ୍ଟି କରିଥାଏ । ଏଥିରେ ସମୟର ବ୍ୟାପକତା ଏବଂ ସାର୍ବଜନୀନ ଚିନ୍ତାଧାରା ରୂପ ପାଇଥାଏ । × × × ବୈଷୟିକ ଜ୍ଞାନର ଅଗ୍ରଗତି ଯୋଗୁଁ ଯେଉଁସବୁ ଆଧୁନିକ ଦ୍ରବ୍ୟ ତିଆରି ହୋଇଛି, ତା'ର ବ୍ୟବହାର ଅର୍ଥ ଆଧୁନିକତା ନୁହେଁ । ସମକାଳୀନ ମାନବବାଦୀ ଚିନ୍ତାଧାରା ହିଁ ପ୍ରକୃତ ଆଧୁନିକତାର ପରିଚାୟକ ।"

ତେଣୁ ଆଜି ସାଂପ୍ରତିକ ବୋଲି ଗର୍ବସ୍ଫୀତ ନ ହୋଇ ଏବଂ ସାହିତ୍ୟ ନାମରେ 'ଅକବିତା' ଓ 'ନର୍ଦ୍ଦମା କବିତା' ମାଧ୍ୟମରେ ମଳମୂତ୍ର ତ୍ୟାଗ ନ କରି ଯଦି ସାଂପ୍ରତିକ ସାହିତ୍ୟକାରମାନେ ମାନବବାଦୀ ଚିନ୍ତାଧାରାକୁ ବୁଝି ଏ ଯୁଗର ଓ ଜୀବନର ନବନିର୍ମାଣରେ ଯଥୋଚିତ ଅବଦାନ ଯୋଗାଇ ଦେବାକୁ ଯାଇ ଶାଶ୍ୱତ ଓ ଚିରନ୍ତନ ମୂଲ୍ୟର ସାହିତ୍ୟ-କୀର୍ତ୍ତି-କୋଣାର୍କ ସ୍ଥାପନ କରି ପାରିବେ, ତାହାହେଲେ ଯେ ଉନ୍ନତ ସାହିତ୍ୟ ପାଇଁ ଏ ଜାତି ଗର୍ବାନ୍ୱିତ ହେବାର ସୁଯୋଗ ଲାଭ କରିପାରିବ । ଏଥିପାଇଁ ସ୍ରଷ୍ଟା ସାହିତ୍ୟକାରମାନେ ଆନ୍ତରିକ ଚେଷ୍ଟା କରନ୍ତୁ, ଏହା ହେଉଛି ଲେଖକର ଆଜିର ନମ୍ର ନିବେଦନ ।

———

# ମୋ ଦୃଷ୍ଟିରେ ସାଂପ୍ରତିକ ସାହିତ୍ୟର ଉତ୍ସ

ଅଧ୍ୟାପକ ଅବନୀ କୁମାର ବରାଳ

ସାହିତ୍ୟିକ ଭାବରେ ହେଉ ବା ଆଲୋଚକ ଭାବରେ ହେଉ, ସାଂପ୍ରତିକ ଓଡ଼ିଆ ସାହିତ୍ୟ ସମ୍ପର୍କରେ କୌଣସି କଥା କହିଲା ବେଳେ ବା ଲେଖିଲା ବେଳେ ମନରେ ସ୍ୱତଃ ଯେଉଁ ପ୍ରଶ୍ନଟି ପ୍ରଥମେ ଆସେ, ସେଇଟି ହେଉଛି—"କାହାପାଇଁ ଏସବୁ ଲେଖୁଚ ?—କିଏ ଯାକୁ ପଢ଼ୁଚି ?"

କାରଣ, ଆମେ ଯେ ଯେତେସବୁ ଆଲୋଚନା ସମାଲୋଚନା କରୁଛୁ, ଯେତେ ଗଳ୍ପ, ପ୍ରବନ୍ଧ, କବିତା, ନାଟକ, ଏକାଙ୍କିକା ଲେଖିଯାଉଛୁ, ଅବା ରବିବାସରୀୟଠାରୁ ଆରମ୍ଭ କରି ଶନିବାର, ମଙ୍ଗଳବାର କରି ସପ୍ତାହିକର ସାତଦିନଯାକର ନାଁରେ ଗୋଟାଏ ଗୋଟାଏ ସାହିତ୍ୟସଭା କରୁଛୁ—ସଭା ସମ୍ମିଳନୀ କରୁଛୁ—ପୁଣି କବିତା, ଗଳ୍ପର ଆଙ୍ଗିକ-ଆତ୍ମିକ ଉପରେ ପରୀକ୍ଷା-ନିରୀକ୍ଷା କରି କରି ଆସି ଶେଷକୁ ମିନି ସାହିତ୍ୟ, କୁନି ସାହିତ୍ୟ କି ଗୋଷ୍ଠୀ ସାହିତ୍ୟରେ ପହଞ୍ଚୁଛୁ, ଏସବୁ କାହା ପାଇଁ ?

ଏସବୁ ଆମ ସମାଜର, ଆମ ପ୍ରଦେଶର, ଆମ ଭାଷାର ଶତକଡ଼ା ଦଶଜଣ କି ବାରଜଣ ଲୋକଙ୍କ ପାଇଁ। ଯେଉଁମାନେ କି ହାଇସ୍କୁଲ ଟପି କଲେଜର ସୀମା ସରହଦ ମାଡ଼ିଛନ୍ତି, ଅବା ଏବେ କଲେଜ-ବିଶ୍ୱବିଦ୍ୟାଳୟର ହତା ଭିତରେ ଅଛନ୍ତି। ବେଳେ ବେଳେ ପୁଣି କଲେଜ-ବିଶ୍ୱବିଦ୍ୟାଳୟ ହତାରୁ ବାହାରି ଆସି, ସମାଜର ପରିସରରେ ଯେଉଁମାନେ ଦପ୍ତର ଭିତରେ ଅମଲା ହୋଇ ରହିଛନ୍ତି—ତାଙ୍କୁ ବି ଆମେ ସାହିତ୍ୟ ଭିତରିକୁ ଆଣିପାରୁନୁଁ। କଦବା କେମିତି କେତେଜଣଙ୍କୁ ଛୁଉଁଦେଲେ।

ସେଇ ଦଶଜଣଙ୍କ ପାଇଁ ଏ ବହିଛପା, ଏ ପତ୍ର-ପତ୍ରିକା, ଏ ଆଲୋଚନା-ପର୍ଯ୍ୟାଲୋଚନା ଆଉ ଏ ସାହିତ୍ୟ-ସଭା, ବାର୍ଷିକ ଉତ୍ସବ, କବିତା ପାଠୋତ୍ସବ, ରାମଚନ୍ଦ୍ର ଭବନ··· ଏମିତି କେତେ କଣ !

ବାକି ନବେଜଣ ଫାଙ୍କା ଆଖିରେ, କାହିଁ କେଉଁଠି ଦୂରରେ ଛିଡ଼ା ହୋଇ ଆମ ଖେଳ-କୁଦ, କସରତ ଦେଖୁଛନ୍ତି । ଜାଣୁନାହାନ୍ତି କି ବୁଝୁନାହାନ୍ତି କିଛି । ଅଥଚ ତାଙ୍କର ଶ୍ରମରେ ଆମର ଏ କାଗଜ ଉତ୍ପାଦନ, କଲମ ଉତ୍ପାଦନ, ଛାପାଖାନା, କଳ-କାରଖାନା ଆଉ ତାଙ୍କର ଶ୍ରମର ଫଳ ଆମର ଏ ସହର ସଭ୍ୟତାର ଧାନ, ମୁଗ, ବିରି ଗଣ୍ଡାକର କଥା !

ଅଥଚ ସେମାନେ ଏ ସାହିତ୍ୟର ଧାର ଧାରନ୍ତି ନାହିଁ କି ତାଙ୍କ ପାଖରେ ଆଖି ବଡ଼ ବଡ଼ କବି ସାହିତ୍ୟିକ ଶଚୀ ରାଉତରାୟ, ଅନନ୍ତ ପଟ୍ଟନାୟକ, ରବି ସିଂ, ମାନ ସିଂ, ଗଡ଼ନାୟକ, ରମାକାନ୍ତ ରଥ, ସୀତାକାନ୍ତ ଅବା କାହ୍ନୁ ବାବୁ, ବିଭୂତିଙ୍କ ଯାଏ ସବୁ ଲାଟିନ୍ କମ୍ବା ଆମେରିକାନ୍ ଶବ୍ଦ । ଏମାନଙ୍କ ନାଁ ସେମାନେ ଏଯାଏଁ ଶୁଣୁ ନାହାନ୍ତି; ପୁଣି ଏଥିଭିତରୁ ଥୋକେ ମରିହଜି ଯାଇ ତାଙ୍କର ଶ୍ରାଦ୍ଧ, ଜୟନ୍ତୀ ସବୁ ପାଳିତ ହୋଇ ସ୍ମରଣିକା ସବୁ ବାହାରିଗଲା ପରେ ବି ଜଇଲ୍ ବେଳେ ଏମାନେ ଯେତିକି ଅଜ୍ଞାତ ଥିଲେ, ସେତିକି ଅଜ୍ଞାତ ହୋଇ ରହିଛନ୍ତି !

ଏଣୁ ପୁଣି ଗୁରୁପୃଷ୍ଠା କଲମରେ ଗର୍ମି ଆଲୋଚନା କଲାବେଳେ, ତାଙ୍କର ଝାଳ-ରକତବୁହା ସମ୍ଭାବନାକୁ ସାରିଲାବେଳେ ପ୍ରଶ୍ନ ଉଠେ, ପୁଣି କାହିଁକି ?

ତା'ର କାରଣ ହେଉଛି ( ଅର୍ଥନୈତିକ ଓ ରାଜନୈତିକ ଦିଗ ଆଡ଼େ ମୁଁ ଯାଏନାହିଁ, ଯଦିଓ ସେଇ କାରଣ ହିଁ ମୂଳ ) ଆମର ଆଙ୍ଗିକ ବା ଆତ୍ମିକ, କୌଣସିଠିରେ ଆମେ ମଣିଷଙ୍କ କଥା ଚିନ୍ତା କରିନୁଁ, ଦେଖିନୁଁ । ଆଖି ପ୍ରଜ୍ଞାର ବାହାଦୁରୀ ଏଇ ଦଶଜଣ କି ପାଞ୍ଚଜଣଙ୍କ ପାଖରେ ଦେଖାଇ ଆତ୍ମତୁଷ୍ଟିରେ ବ୍ୟକ୍ତିକେନ୍ଦ୍ରିକ ହୋଇ ସାହିତ୍ୟର ଅଗଣିତ ପାଠକଙ୍କୁ, ଆଜି ନୁହେଁ, ରାଧାନାଥଙ୍କ ବେଳୁଁ ଛାଡ଼ି ଆସିବୁଁ । ଛାଡ଼ି ଦେଇ ଆସିଛୁଁ ଅନେକ ଦିନୁଁ, ଏକ ସହରୀ ମଧ୍ୟବିତ୍ତର ସାହିତ୍ୟ ସୃଷ୍ଟି କରିବା ମୋହରେ ।

ଲୋକେ ସାରଳା ଦାସ, ଜଗନ୍ନାଥ ଦାସ ଅବା ଚମ୍ପୂରେ ରହିଯାଇ-ଥିଲା ବେଳେ ବାବୁ ରାଧାନାଥ ଲମ୍ଫ ଦେଇଥିଲେ ଚନ୍ଦ୍ରଭାଗାଠାରୁ ଚିଲିକା ଯାଏ । ରାଧାନାଥଙ୍କର ଶତାବ୍ଦୀଏ ପରେ ବି ଯେ କୌଣସି ଗାଁ ଗହଳରେ ଓଡ଼ିଆ ପାଖରେ, 'ଉତ୍କଳ-କମଳା-ବିଳାସ-ଦୀର୍ଘିକା' ପଢ଼ିଲେ ତାକୁ କେବଳ 'ଳ' ହିଁ ଶୁଭିବ । କାରଣ ଏଥିରେ ଆଙ୍ଗିକ ବା କଥାରେ ତା'ର

ଜୀବନର ହିନ୍ଦୁଏ ଦୁଃଖ ନାହିଁ । ଲବଣ୍ୟବତୀର କାହାଣୀ ତା' ପାଖରେ ଯେତିକି ଅଲୌକିକ, ଯେତିକି ଅଲୀକ, ଚନ୍ଦ୍ରଭାଗା ଉଷାର ଦୌଡ଼ କିମ୍ବା କୌଶଲ୍ୟାର ଦୂତ ରୂପ ସେତିକି ଅବାସ୍ତବ ଓ ସେତିକି ଅବାନ୍ତର ।

ତା' ଉପରେ ଆମର ଦଶଜଣିଆଙ୍କର ଦୂବସୁଧୀମାନେ ସେତେବେଳେ ଢେର୍ ଢେର୍ ଆଲୋଚନା-ସମାଲୋଚନା କରି, କାଗଜପୃଷ୍ଠା ସାରି ତମ୍ବି-ତୋଫାନ କରିଗଲେ । ଲୋକେ ଭ୍ରମହୋଇ ଦୂରରେ ରହି ତାଙ୍କର ସାରଳା ଦାସଙ୍କ ଚକ୍ଷୁ ବୋଲି ଗୁଡ଼ିଲେ ।

ସାହିତ୍ୟକୁ ମଣିଷଙ୍କ ପାଖକୁ ନେଇଯିବାକୁ ସେତେବେଳେ ଏକ ବିରାଟ ଉଦ୍ୟମ ହେଲା ଫକୀରମୋହନଙ୍କର । କାରଣ ଫକୀରମୋହନ ଦେଖିଥିଲେ, ମଣିଷଙ୍କର କଥା ଷୋଳଣା କହିଲେ ଲୋକେ ତାକୁ ପଢ଼ିବେ, ଆଦରି ନେବେ । ନେଲେ ମଧ୍ୟ କିଛିଟା । କିନ୍ତୁ ଅଧୂନିକଙ୍କର ରାଧାନାଥୀ ଦୁଆ ଭିତରେ ବିଚରା ଫକୀରମୋହନଙ୍କର ସବୁ ପରିଶ୍ରମ ପଣ୍ଡ ହୋଇଗଲା ।

ତା' ପର ଉଦ୍ୟମ ହେଲା ଗୋପବନ୍ଧୁ ଆଉ ତାଙ୍କ ଗୋଷ୍ଠୀଙ୍କର । ସେ ଉଦ୍ୟମ ମଧ୍ୟ କେତେକାଂଶରେ ସଫଳ ହେଲା ଏବଂ ସଫଳ ହେଲା ଯେତେ ଦିନ ଯାଏ ସେମାନେ ସାହିତ୍ୟ ଲେଖିଥିଲେ ସେଇ ଦିନଠାରୁ ସେମାନଙ୍କର ଏକମାତ୍ର ଉତ୍ତରାଧିକାରୀ ଏବେକାର ସ୍ୱର୍ଗତଃ ଗୋଦାବରୀଶ ମହାପାତ୍ର (ନିଆଁ ଖୁଣ୍ଟା)ଙ୍କ ପର୍ଯ୍ୟନ୍ତ ।

ମାତ୍ର, ତା'ପର ଯୁଅ ସବୁଜବାଲା ପୁଣି ସବୁଜପତ୍ରୀ, କବିତା ରାଜ-କନ୍ୟା, ଫୁଲ, ହାସ୍ଣ-ହେନାର ଗନ୍ଧ ଆଣି, ପୁଣି ସାହିତ୍ୟକୁ ମଣିଷଙ୍କଠାରୁ ଦୂରେଇ ଇଂରାଜି ରୋମାଣ୍ଟିକ ସାହିତ୍ୟ ରୋମନ୍ଥନ କରି ଏଇ ଦଶଜଣଙ୍କ ଆଖିରେ ଚମକ ଲଗାଇବା ପାଇଁ ଦୁଆ ଉଠେଇଲେ ।

ଅନେକ ଛପା-କାଗଜ ସରିଲା—ପୃଷ୍ଠା ପୂରିଲା । ହେଲେ ଲୋକେ ତାଙ୍କ କବିତା ବୁଝିଲେ ନାହିଁ ।

ତା'ପରେ ପୁଣି ଦଳେ ତରୁଣ, ଭଗବତୀ ପାଣିଗ୍ରାହୀଙ୍କ ନେତୃତ୍ୱରେ ମଣିଷର କଥା କହିବା ପାଇଁ ବାହାରି, ଜନସାଧାରଣଙ୍କ ଦ୍ୱାରା ନ ହେଲେ ମଧ୍ୟ, ଜନସାଧାରଣଙ୍କ ପାଇଁ ସାହିତ୍ୟ ସୃଷ୍ଟି କଲେ । ତାଙ୍କର ଜୀବନ-ସଂଗ୍ରାମ, ତାଙ୍କର ଉଦ୍ୟମ, ତାଙ୍କ ମାନବିକତା ପୁଣି ସାହିତ୍ୟରେ ଦଶ ପନ୍ଦରବର୍ଷ ପର୍ଯ୍ୟନ୍ତ ରୂପ ପାଇଲା ଓ ଅନେକ ପୁରୁଣା ସବୁଜ କବି

ସାହିତ୍ୟିକଙ୍କର ମୋଡ଼ ମଧ୍ୟ ବଦଳାଇ ଦେଲା । ଜନସାଧାରଣଙ୍କର ସ୍ୱାଧୀନତା ପାଇଁ ଆକାଂକ୍ଷାଠାରୁ ଆରମ୍ଭ କରି ଶୋଷଣ-ବିହୀନ ସମାଜ ସୃଷ୍ଟି ପର୍ଯ୍ୟନ୍ତ ନାନା ଉଦ୍ୟମର କଥା ଏ ସାହିତ୍ୟରେ ରହିଲା । ଲୋକଙ୍କ ପାଇଁ ସାହିତ୍ୟସୃଷ୍ଟି ହେଲା ।

ତା' ପରବର୍ତ୍ତୀ କାଳରେ ଆସିଲା ସ୍ୱାଧୀନତା । ସେତେବେଳେ ସାଧାରଣ ମଣିଷଙ୍କ ଭଳି ସାହିତ୍ୟିକ ମନରେ ପ୍ରଶ୍ନ ଉଠିଲା "ଆମେ ସବୁ ପାଇଚୁ କି ନାହିଁ ?" ଅବା "ଯାହା ପାଇଚୁ, ସେଇଆ ଆମେ ଚାହିଁଥିଲୁ କି ନାହିଁ ?"

ଏଇ ଦ୍ୱନ୍ଦ୍ୱ ଉପରେ ପ୍ରଥମ ଦଶବର୍ଷ ଅନେକ କାବ୍ୟ-କବିତା, ଗଳ୍ପ-ଉପନ୍ୟାସ ଲେଖା ହୋଇଗଲା । ଅଗଷ୍ଟ ପନ୍ଦରକୁ ସ୍ୱାଗତ କରି ପୁଣି ତାକୁ 'ଫେରିଯାଅ' ବୋଲି ଡାକରା ଦେଇ ଲେଖା ହେଲା । ପଞ୍ଚବାର୍ଷିକ ପରିକଳ୍ପନାରେ ହେଉଥିବା ବନ୍ଧ-ବାଡ଼ ଉପରେ କବିତା ଲେଖା ହେଲା । ଶରଣାର୍ଥୀ ସମସ୍ୟା ଉପରେ, ହିନ୍ଦୁ-ମୁସଲମାନ କନ୍ଦଳ ଉପରେ, ପୁଣି ସୋସିଆଲ ରିକନଷ୍ଟ୍ରକ୍‌ସନ୍ ବା ବିକାଶ-ମୂଳକ ଯୋଜନାମାନଙ୍କ ଉପରେ ଅନେକ ସାହିତ୍ୟ ।

ମାତ୍ର ସବୁଥିରେ ସାହିତ୍ୟିକ-କବି ମନରେ ଆଙ୍ଗିକ-ଆତ୍ମିକ ଉପରେ ସେହି ଦ୍ୱନ୍ଦ୍ୱ ଅବଧାରିତ ଭାବରେ ରହିଗଲା । ଫଳରେ ଅନେକ ସୃଷ୍ଟିରେ ପରିଣତିରେ ସେହି ସମସ୍ୟା ବା ଦ୍ୱନ୍ଦ୍ୱ ସ୍ପଷ୍ଟଭାବରେ ଦେଖା ଦେଲା । ସମସ୍ୟାର ସମାଧାନ ସାହିତ୍ୟିକ ପାଖରେ ହୁଏତ ନାହିଁ ! ମାତ୍ର ମଣିଷ ପାଇଁ, ସେଇ ନବଯୁଗର ଲୋକଙ୍କ ପାଇଁ କୌଣସି ଖୋରାକ ଯୋଗାଇବାରେ ବିଫଳ ହେଲା ସାହିତ୍ୟ ଓ ସାହିତ୍ୟିକ ।

ବର୍ତ୍ତମାନ ଯୁଗରେ ଏଣୁ ସାହିତ୍ୟ ଭିତରେ ସବୁଠାରୁ ବେଶୀ ପ୍ରତିଫଳିତ ହୁଏ, ଆମର ସାମାଜିକ ଜନ-ଜୀବନରେ ଦେଖା ଦେଇଥିବା ମୂଲ୍ୟ ସମ୍ପର୍କରେ ଅସ୍ଥିରତା ଓ କୌଣସି ଲକ୍ଷ୍ୟ ନ ଥାଇ ଯା ଇଚ୍ଛା ତା 'କରିବା ପାଇଁ କରିଯିବା' ମନୋଭାବ ।

ହତାଶା, ବ୍ୟର୍ଥତା ସବୁ ସତ୍ତ୍ୱେ ମଣିଷ କେବେହେଲେ 'ଚାଲିବା ପାଇଁ ଚାଲେ ନାହିଁ'—ଚାଲେ ଆଗେଇବା ପାଇଁ । କେଉଁଠି ଗୋଟାଏ ପହଞ୍ଚିବା ପାଇଁ । ତା' ନ ହେଲେ ପାଗଳାମୀ ହୁଏ । ନିରର୍ଥକ ପାଣି

ବାଡ଼େଇବା ସାର ହୁଏ । ତାହା ହିଁ ହେଉଛି ସାଂପ୍ରତିକ ସାହିତ୍ୟର ସବୁ-ଠାରୁ କରୁଣ ରୂପ ।

ଅଙ୍ଗିକ ହେଲା ପୋଷାକ ବା ପରିଚ୍ଛଦ । ମଣିଷ ପୋଷାକ ପିନ୍ଧେ ନିଜର ରୂପ ଅନୁଯାୟୀ । ଏବେର ସହର ଭିତରେ ଯେପରି, ତରୁଣ ତରୁଣୀଙ୍କ ଭିତରେ, ରଙ୍ଗଢଙ୍ଗର ପୋଷାକ ଅବା ବିଭିନ୍ନ କଟିଂର ପୋଷାକ ପିନ୍ଧିବାର ପ୍ରତିଯୋଗିତା ଚାଲିଛି— କାହାର ବେକ ଚେକାତ କାହାର ବେକ କଟା — ହାତକଟି କାଖଯାଏ ଅ.ସିଲାଣି ତ ପୁଣି ବଢ଼ି ବଢ଼ି କହୁଣୀ ଯାଏ ଗଲାଣି— କଲି ବଢ଼ି ଅ.ସିଲାଣି ତ, କଦମ୍ବ କେଶର ଭଳି କଟା ହେଲାଣି—ସାହିତ୍ୟରେ ସେମିତି ଗ୍ଳେଟ କବିତା, ଗଦ୍ୟଭଳି ଲେଖା କବିତା, 'ହୁଁ ହୁଁ, ହାଁ ହାଁ' କବିତା, ପୁଣି ଯାହା ନିଜେ ଲେଖକ ବି ବୁଝେନା ଏପରି କବିତାର ପ୍ରଚଳନ— କେବଳ ଏହି ନିଜକୁ ନିଜେ ନ ବୁଝିବାର ହିଁ ପ୍ରତି-ଫଳନ ବ୍ୟତୀତ ଆଉ କିଛି ନୁହେଁ ।

ଯାହା ଫଳରେ ଆମ ସାହିତ୍ୟରେ ( ଯାହା କୌଣସି ଦେଶରେ ସମ୍ଭବ ନୁହେଁ) ଏକ ସମୟରେ ସାରଳା ଦାସଙ୍କଠାରୁ ଆରମ୍ଭ କରି ଇଂରାଜୀ କବିତାର ଅଡ଼େନ୍, ସ୍ପେଣ୍ଡର ପର୍ଯ୍ୟନ୍ତ ଏକାଠି ବାସ କରି କବିତା ଲେଖୁଛନ୍ତି, ସାହିତ୍ୟ ଲେଖୁଛନ୍ତି । ଫକୀରମୋହନଙ୍କଠାରୁ କାମୁ, ସାର୍ତ୍ରେଙ୍କ ଯାଏ ଉପନ୍ୟାସ ଲେଖୁଛନ୍ତି । ଅତ୍ୟାଧୁନିକ ଫର୍ମ ବା ଅଙ୍ଗିକ ଉପରେ ଯେଉଁମାନେ ପରୀକ୍ଷା ନିରୀକ୍ଷା କରୁଛନ୍ତି, ସେମାନଙ୍କ ବକ୍ତବ୍ୟ ହେଲା, 'ଏବେ ନ ବୁଝିଲେ ବି ଶହେ ବର୍ଷ ପରେ ଲୋକେ ବୁଝିବେ' ଓ 'ସାରଳା ବା ଉପେନ୍ଦ୍ରଭଞ୍ଜଙ୍କୁ ଲୋକେ ତାଙ୍କ ସମୟରେ ବୁଝି ନଥିଲେ । ବୁଝିଲେ ଅନେକ ପରେ ।' କଥାଟା ସତ୍ୟ କି ମିଥ୍ୟା ଏ ସମ୍ପର୍କରେ ଆଲୋଚନା କରିବା ନିଷ୍ପ୍ରୟୋଜନ । ମାତ୍ର କହିବାର କଥା, 'କେହି ନ ବୁଝିପାରିଲେ, ଆପଣ ଏ ଗଣତାନ୍ତ୍ରିକ ଯୁଗରେ ଆମର ସମୟ, ଅର୍ଥ କିଛି ବ୍ୟୟ କରି ଆମ ଭବିଷ୍ୟତ ପାଇଁ କାହିଁକି ଲେଖୁଛନ୍ତି ? ନିଜେ ଲେଖି ଘରେ ରଖନ୍ତୁ । ବୁଝିପାରିଲା ବେଳେ ଆପଣଙ୍କ ଅଣନାତି ତାକୁ ସବୁ ଭବିଷ୍ୟତରେ ଛପାଇବେ । —ଖାଲିଗଣ୍ଡବୋଲା ଜୀବନଯୁଦ୍ଧରେ କ୍ଷତବିକ୍ଷତ ଏ ମଣିଷର ଖଜଣା-ବୋଝ ବଢ଼ାଇ ଆପଣ ଆପଣଙ୍କ ପ୍ରଜ୍ଞାର ତୁଷ୍ଟି ପାଇଁ ବା ମନ-ତୁଷ୍ଟି ପାଇଁ ଆମକୁ କଷ୍ଟ ଦେବେ କାହିଁକି ? ଛା' ତୁଣି ବାଧ କରି ?'

ସାଂପ୍ରତିକ ସାହିତ୍ୟରେ ଏଣୁ ଏଇ chaotic ଭାବ ସବୁଠାରୁ ବେଶି ସୁସ୍ପଷ୍ଟ । ଆମେ ସାହିତ୍ୟିକମାନେ ନିଜେ ନିଜର ସାହିତ୍ୟ ପଢ଼ୁ—କେବଳ କର୍ଟିସି ରକ୍ଷା ପାଇଁ । ବୁଝିପାରୁ ବା ନ ବୁଝୁ । କାରଣ କବି ବା ସାହିତ୍ୟିକ ବନ୍ଧୁ ପଚାରିବେ ଯେ 'ମୋ ଲେଖାଟା ପଢ଼ିଛନ୍ତି ?—ଉତ୍ତର ଦେବାକୁ ହେବ । ସେଇଥିପାଇଁ, ଆଉ ବ୍ୟକ୍ତି-କୈନ୍ଦ୍ରିକ ଆମେ ସାହିତ୍ୟିକ-ମାନେ ବାଙ୍କାବଜାର ବହିଦୋକାନମାନଙ୍କରେ ଗୁପ ଦେଇ ନିଜ ବହି ଛପାଇ ନିଜ ମନ ତୁଷ୍ଟ କରୁ । ତିନିବର୍ଷରେ କି ପାଞ୍ଚବର୍ଷରେ ପାଞ୍ଚଶ ବହି ବିକ୍ରୀ ହେଲେ ମଧ୍ୟ ! ଏହା ହିଁ ସବୁଠାରୁ ବାସ୍ତବ ସତ୍ୟ !

ଏବଂ ଏ ସାହିତ୍ୟମାନଙ୍କର ସ୍ରଷ୍ଟା ଆମେମାନେ, ସାଧାରଣତଃ ମଧ୍ୟବିତ୍ତ ବା ନିମ୍ନ-ମଧ୍ୟବିତ୍ତ ; ଯେଉଁମାନେ ସ୍କୁଲ କଲେଜରେ ପାଠ ପଢ଼ି, ସହରରେ ଗୃହକିଣିବାଙ୍କିଣି କରୁ । ଏଣୁ ଅମ୍ଭିକ ବା କଥାବସ୍ତୁ ଯେକୌଣସି ସାହିତ୍ୟ ବହିର ( ଗଳ୍ପ, ଉପନ୍ୟାସ, ନାଟକ ବା କବିତା ) ହେଉଛି ସେହି ମଧ୍ୟବିତ୍ତର ଜୀବନଜ୍ୱାଳା । ମଧ୍ୟବିତ୍ତ ସ୍କୁଲ-କଲେଜ ପଢ଼ା ନାୟିକାର ପ୍ରେମ-ବ୍ୟର୍ଥତାର ଅନ୍ତର୍ଦାହ ; ଅବା ବେକାରି ଜୀବନର କରୁଣତା, ଦୁର୍ଗତି କିମ୍ବା ନିଜର ବ୍ୟକ୍ତି-କୈନ୍ଦ୍ରିକ ମନର, ହତାଶା—ଯେଉଁ ହତାଶା ଯଥାର୍ଥରେ ସାମାଜିକ ନୁହେଁ । (ସାମାଜିକ ହତାଶା ନାହିଁ ବୋଲି ମୁଁ କହୁନାହିଁ ) । କାରଣ, ଆମେ ମଧ୍ୟବିତ୍ତ ସାହିତ୍ୟସେବୀମାନେ କାରଖାନା, ବସ୍ତିଜୀବନ, ଗାଁଗହଳର ଜୀବନ, ଖେତ-ମଜୁରିଆର ଜୀବନ, ସମାଜର ଶତକଡ଼ା ନବେ ଭାଗର ଜୀବନ ସହିତ ସମ୍ପୃକ୍ତ ନୋହୁଁ । ତାକୁ ଦେଖିନୁ । ତା'ଠାରୁ ଆମ ପାଠ ଯୋଗୁଁ ଦୂରେଇ ଆସିଛୁ । ତୁଣି ଓଡ଼ିଶା ଏଭଳି ଏକ ପ୍ରଦେଶ, ଯେଉଁଠି କଟକ ( ସବୁଠାରୁ ବଡ଼ ସହରରେ ) ନଗରରେ ବି ମଧ୍ୟଯୁଗର ଗୋଟରୁ ବାହୁଡ଼ୁଥିବା ଧେନୁପଲ ତୁଳସୀଚଉରା ମୂଳେ ଗ୍ରାମ୍ୟ ବଧୂର ସଳିତା ଜାଳି ଇଷ୍ଟ-ଦେବତାଙ୍କର ଶୁଭ ମନାସିବା ରୂପ, ଅବା କଳସୀ କାଖେଇ, ପାଣି ଆଣିବାର ଦୃଶ୍ୟ ଆଦୌ ବିରଳ ନୁହେଁ । ଚିମନିର ଧୂଆଁ ଏଠି ନାହିଁ । ଅଛି ଗ୍ରାମ ଓ ଜନପଦର ମିଶ୍ରିତ ଧ୍ୱନିର ଝଡ଼ । ଏଣୁ ସାହିତ୍ୟିକ ଏଠାରେ ବଙ୍ଗଳା ସାହିତ୍ୟିକ କବିର ଜୀବନର ଅନ୍ତର୍ଦାହ ଖୋଜି ପାଇନାହିଁ ହୁଏତ, କିମ୍ବା ତାଙ୍କୁ ମଧ୍ୟ ଫେରୁ ନାହିଁ—ଯାହା ଆମ ପାଇଁ ସତ୍ୟ । ଭୋଳେଇ, ଫେଣ୍ଟି ସେହି ଏକା ମଧ୍ୟବିତ୍ତ ଜୀବନର ଚିତ୍ର ଆମ ସାହିତ୍ୟର ମୁଖ୍ୟ ଉପଜୀବ୍ୟ । ଯାହା ଜନସାଧାରଣଙ୍କର

ଜୀବନର ଚିତ୍ର ନୁହେଁ । ଏଣୁ, ସେମାନେ ତ ଏ ବହି ପଢ଼ନ୍ତି ନାହିଁ ।

ସହରବାସିମାନେ ମଧ୍ୟ ଇଂରାଜୀ, ବଙ୍ଗଳା ବା ହିନ୍ଦୀ ବହିରୁ ଗଳ୍ପ-ଉପନ୍ୟାସ ବା କବିତାରୁ ଶାଶ୍ୱତ ମଣିଷର ହନ୍ଦି ଅଧିକ ପାଇବେ; ଏଣୁ ସେମାନେ ମଧ୍ୟ କମ ଓଡ଼ିଆ ବହି ପଢ଼ନ୍ତି । କିମ୍ବା ଜମା ପଢ଼ନ୍ତି ନାହିଁ, ଅନେକେ ।

ଫଳରେ ଶତକଡ଼ା ଦଶରୁ ବାକି ରୁହନ୍ତି ମାତ୍ର ଶତକଡ଼ା ତିନରୁ-ପାଞ୍ଚଭାଗ । ତାଙ୍କର ପାଇଁ ଏ ସାଂପ୍ରତିକ ସାହିତ୍ୟ । ଏସବୁ ! ଏ ମାନ, ଏ ମାନଦଣ୍ଡ, ଚଉଳ, ନିକିତି ସବୁ ।

ତେଣୁ, ସାଂପ୍ରତିକ ସାହିତ୍ୟର ଆଲୋଚନା କାହିଁକି ? କିଏ ପଢ଼ିବ ? କିଏ ଶୁଣିବ ବୋଲି ? ନିଜେ ଲେଖିଲାବେଳେ ତ ମୁଁ ମଧ୍ୟ ଏ ହନ୍ଦିରେ ପଡ଼ିଛି ।

ସେଣିକି ତ 'ଶୂନ ନେଇଗଲା ଜାମିରା-କାଉ !!'



# ମୋ ଦୃଷ୍ଟିରେ
# ସାଂପ୍ରତିକ ସାହିତ୍ୟର ଆଲୋଚନା

ଅଧ୍ୟାପକ ପଠାଣି ପଟ୍ଟନାୟକ

## ସୃଷ୍ଟି ଓ ସମାଲୋଚନା—ବିଦେଶୀ ଛାଞ୍ଚର ନକଲ ଅନୁକୃତ

ପରାଧୀନତାର ବ୍ୟାମୋହ ମଧ୍ୟରେ ଅନେକ କାଳ ରହିଥିବା ଯୋଗୁ ପାଶ୍ଚାତ୍ୟ ଆଦର୍ଶ, ଚଳଣି ଓ ଆଭିଜାତ୍ୟକୁ ବରଣ କରିବାକୁ ଯାଇ ଏ ଦେଶର ଶିକ୍ଷିତଗୋଷ୍ଠୀ ଜାତୀୟ ଜୀବନର ପ୍ରାଚୀନ ଆଦର୍ଶ ଓ ପରମ୍ପରାକୁ ଅବହେଳା କରିବାକୁ ଶିକ୍ଷା କଲେ। ଏକ ପ୍ରକାର ଗୌଣ ମନୋବୃତ୍ତିର ଶିକାର ହେବା ଫଳରେ ଏ ଦେଶର ଶିଳ୍ପ, ବାଣିଜ୍ୟ, ସାହିତ୍ୟ, ସ୍ଥାପତ୍ୟ, ଦର୍ଶନ ଓ ଆଦର୍ଶ ସବୁକିଛି ଅବହେଳିତ ହେବାକୁ ଲାଗିଲା। ଅତ୍ୟନ୍ତ ଦୁଃଖର କଥା ଯେ ସ୍ୱାଧୀନତାପରେ ଜାତୀୟ ଚରିତ୍ରର ପ୍ରାଣପ୍ରତିଷ୍ଠା ହେବା ପରିବର୍ତ୍ତେ ଅନ୍ଧାନୁସରଣ ଏବଂ ଆହରଣ-ସର୍ବସ୍ୱ ଐଶ୍ୱର୍ଯ୍ୟ ମଧ୍ୟରେ ଗୌରବବୋଧ ଏକ ଜାତୀୟ ବ୍ୟାଧି ରୂପେ ଦେଖା ଦେଇଅଛି। ସାଂପ୍ରତିକ ଜୀବନ ଏବଂ ସାଂପ୍ରତିକ ସାହିତ୍ୟର ଆଲୋଚନା କାଳରେ ଏହି ମନୋଭାବ ଅତ୍ୟନ୍ତ ଉତ୍କଟ ଭାବରେ ସାହିତ୍ୟସ୍ରଷ୍ଟା ଏବଂ ସାହିତ୍ୟ ସମାଲୋଚକମାନଙ୍କୁ ଆକ୍ରାନ୍ତ କରିବାର ଦେଖାଯାଉଛି। ଆନ୍ତର୍ଜାତିକ-ସମ୍ପର୍କ-ଯୁଗରେ ବିଜ୍ଞାନର ପ୍ରସାର ଓ କୌଶଳ ଫଳରେ ଦେଶ ଦେଶ, ସମାଜ ସମାଜ ମଧ୍ୟରେ ବହୁ ବାଧାବନ୍ଧନ ଦୂରୀଭୂତ ହୋଇଯାଉଥିଲେ ହେଁ ପ୍ରତ୍ୟେକ ଜାତିର ସ୍ୱାତନ୍ତ୍ର୍ୟ କେବେହେଲେ ନିଶ୍ଚିହ୍ନ ହୋଇଯାଏ ନାହିଁ। ବରଂ ଜାତିଗତ ଏବଂ ସଂସ୍କୃତିଗତ ମୌଳିକ ସ୍ୱାତନ୍ତ୍ର୍ୟ ବଜାୟ ରଖି ବୈଜ୍ଞାନିକ ଅନୁଶୀଳନ, ଗବେଷଣା ଏବଂ ସୃଷ୍ଟି ଓ ସାଧନାରେ ପ୍ରତ୍ୟେକ ଦେଶ ନିଜ ନିଜ କ୍ଷେତ୍ରରେ ଅତ୍ୟନ୍ତ ଗୌରବର ସହିତ ଅଗ୍ରସର ହେଉଅଛନ୍ତି। ଯେଉଁଠାରେ ଏହି ମୂଲ୍ୟବୋଧ ସ୍ୱୀକୃତ ହେଉନାହିଁ, ସେଠାରେ ଜାତୀୟ ପ୍ରଗତି ହେଉଛି ବୋଲି କେହି ସ୍ୱୀକାର କରିବେ ନାହିଁ।

ଉଦାହରଣ ସ୍ୱରୂପ କେତେକାଳ ପୂର୍ବେ କେହି କେହି ଶକ୍ତିଶାଳୀ ଆଲୋଚକ ଊନବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟ ସଂପର୍କରେ ମତବ୍ୟକ୍ତ କରି ତାହାକୁ "ଓଡ଼ିଆ ସାହିତ୍ୟରେ ଅନ୍ଧକାର ଯୁଗ" ବୋଲି କହିଥିଲେ। ସେକାଳରେ ଶତାବ୍ଦୀର ଶେଷ ଦୁଇଟି ଦଶକରେ ପାଶ୍ଚାତ୍ୟ ଶିକ୍ଷା ପ୍ରସାର ଏବଂ ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ବ୍ୟକ୍ତିଙ୍କଦ୍ୱାରା ପାଶ୍ଚାତ୍ୟ ସାହିତ୍ୟର ଆଦର୍ଶରେ ଲିଖିତ ସାମାନ୍ୟ କେତେକ କାବ୍ୟ, କବିତା, ଉପନ୍ୟାସ ଓ ନାଟକ ରଚିତ ହୋଇଥିଲି। ୧୮୦୩ ସାଲରୁ ୧୮୮୦ ସାଲ ପର୍ଯ୍ୟନ୍ତ ଏହି ଦୀର୍ଘକାଳ ତେଣୁ ଏକ ଅନ୍ଧକାରମୟ ଯୁଗ ବୋଲି ବିବେଚିତ ହେଲା। ଇଂରେଜ-ମାନେ ଦୀର୍ଘ ଦୁଇଶହ ବର୍ଷ ରାଜତ୍ୱ କରି ମଧ୍ୟ ସମସ୍ତ ଭାରତୀୟଙ୍କୁ ଇଂରେଜି ଭାଷାରେ ଶିକ୍ଷିତ କରି ପାରି ନାହାନ୍ତି, ଇଂରାଜ ସଭ୍ୟତାର ଆଦର୍ଶରେ ଅନୁପ୍ରାଣିତ କରିପାରି ନାହାନ୍ତି। ଏ ଦେଶର ମୁଷ୍ଟିମେୟ ଇଂରେଜ ଶିକ୍ଷିତ-ଗୋଷ୍ଠୀ ଏବଂ ରାଜକର୍ମଚାରୀ ବାବୁଗୋଷ୍ଠୀଙ୍କୁ ବାଦ ଦେଲେ ସମାଜର ଅଧିକାଂଶ ଲୋକ ମଧ୍ୟଯୁଗୀୟ ଜୀବନ ପ୍ରଣାଳୀ ଏବଂ ସାଂସ୍କୃତିକ ଆଦର୍ଶକୁ ଭୁଲିପାରି ନାହାନ୍ତି। ସେମାନଙ୍କ ମଧ୍ୟରେ ଯେଉଁ ପରିବର୍ତ୍ତନ ଦେଖାଯାଉଛି, ତାହା ଅତ୍ୟନ୍ତ ଧୀରମନ୍ଥର ଗତିରେ ସମାଜର ପ୍ରତ୍ୟେକ ସ୍ତରରେ ଅନୁପ୍ରବେଶ କରୁଅଛି। ଅତଏବ ଊନବିଂଶ ଶତାବ୍ଦୀରେ ସମସ୍ତେ ଇଂରେଜି ପଢ଼ିଲେ ନାହିଁ, ଅଥବା ପାଶ୍ଚାତ୍ୟ ସାହିତ୍ୟ ଆଦର୍ଶରେ ସାହିତ୍ୟ ପ୍ରଚୁର ଲେଖା ହେଲାନାହିଁ ବୋଲି ଏ ଜାତିର ରସଘନ ମନ ନିରସ ଶୁଷ୍କ ହୋଇ ଯାଇ ନଥିଲି। ପାଶ୍ଚାତ୍ୟ ମାପକାଠିରେ ତାହାକୁ ଅବୈଜ୍ଞାନିକ ଏବଂ ପ୍ରଗତିର ପରିପନ୍ଥୀ କୁହାଯାଉପଛକେ ଏକ ଅନଗ୍ରସର ସମାଜରେ ଯାହା ଏକାନ୍ତ ସତ୍ୟ ରୂପେ ପ୍ରତିଭାତ ହେଉଥିଲି। ତାହାକୁ ଦେଖି ଦେଖାଇବା ହେଉଛି ସମାଲୋଚକଙ୍କର କର୍ତ୍ତବ୍ୟ। ଉଦାହରଣ ସ୍ୱରୂପ ଊନବିଂଶ ଶତାବ୍ଦୀର ଏହି ତଥାକଥିତ ଅନ୍ଧକାର ଯୁଗରେ ଗୀତିକବିଗଣ ଅପୂର୍ବ ସଙ୍ଗୀତର ଝଙ୍କାର ଶୁଣାଇ ସଙ୍ଗୀତ ଓ ଗୀତ ରଚନା କରିଥିଲେ। ଆଧୁନିକ ଓଡ଼ିଆପାଠକଗଣ ଯେଉଁ କେତେ ଜଣକୁ ଆବିଷ୍କାର କରି ମନେରଖିଛନ୍ତି ସେମାନେ ହେଲେ କବିସୂର୍ଯ୍ୟ, ଗୋପାଳକୃଷ୍ଣ, ବନମାଳୀ ଏବଂ ଗୌରଚରଣ। ଦୁଃଖର କଥା ଯେ ଏବେ ମଧ୍ୟ ପ୍ରାଚୀନ ପରିବାରର ପୋଥି ସ୍ତୂପ ମଧ୍ୟରେ ଅନେକ ପ୍ରଭାବଶାଳୀ କବି ବିସ୍ମୃତ ହୋଇ ରହି-ଯାଇଥିବେ। ତେଣୁ ଊନବିଂଶ ଶତାବ୍ଦୀର ପାଶ୍ଚାତ୍ୟ ଆଦର୍ଶ-ଅନୁପ୍ରାଣିତ ସାହିତ୍ୟ ସଂପର୍କରେ ମୂଲ୍ୟାୟନ କଲାବେଳେ ଏହି ସଙ୍ଗୀତ-କବିମାନଙ୍କୁ

ଆଦୌ ବିଚୁରକୁ ନିଆଯାଇ ନ ଥାଏ । ମାତ୍ର ଏକଥା ଭୁଲିଯିବା ଉଚିତ ନୁହେଁ, ଜନମାନସରେ ଏବଂ ଜନଜୀବନରେ ରାଧାନାଥ, ମଧୁସୂଦନ ଫକୀରମୋହନ, ରାମଶଙ୍କରଙ୍କ ସାହିତ୍ୟ ସମ୍ପତ୍ତି ଯେତିକି ଆଦର ଲାଭ କରିଥିଲା, ପ୍ରକାଶିତ ଏବଂ ଅପ୍ରକାଶିତ ବହୁ ସଙ୍ଗୀତ-କବିଙ୍କର ସୃଷ୍ଟି-ସମ୍ପଦ ସେହି ପରିମାଣରେ ଆପଣାର ହୋଇ ରହିଥିଲା ।

**ସ୍ୱାତନ୍ତ୍ର୍ୟ-ଚିବୋଧ ଓ ଆଧୁନିକ ଚେତନା**

ବାରିପଦାର ମୁଢ଼ି, ଭଦ୍ରଖର ପାଚୁଆ ଲଡ଼ୁ, କେନ୍ଦ୍ରାପଡ଼ାର ରସାବଳୀ, ପୁରୀବେଢ଼ାର ମଗଜଲଡ଼ୁ—ଏମାନେ ସମସ୍ତେ ଏକଦା ସ୍ୱମହିମାରେ ମହିମାନ୍ୱିତ ଥିଲେ । ଏହି ବୈଚିତ୍ର୍ୟ ମଧ୍ୟରେ ସ୍ଥାନିକ ଏବଂ ସାମାଜିକ ବୈଶିଷ୍ଟ୍ୟ ଫୁଟିଉଠେ । ପିପିଲିର ଚନ୍ଦୁଆ, କଟକର ତାରକସି କାମ ଅଥବା କଣ୍ଟିଲୋର କଂସାବାସନରେ ଏହି ରକେଟ ଯୁଗରେ ସୁଦ୍ଧା ଆମେ ସେହି ସ୍ୱତନ୍ତ୍ର ମହିମା ଖୋଜିଲେ ସନ୍ତୋଷ ଲାଭ କରୁ । ଅତଏବ ବିଜ୍ଞାନ ଯୁଗରେ ଆଧୁନିକ ଚେତନାବୋଧ ଏବଂ ସାଂପ୍ରତିକ ଭାବନାରେ ଅଭାବନୀୟ ପରିବର୍ତ୍ତନ ସମ୍ଭବ ହେଉଥିଲେହେଁ ଏଥିପାଇଁ ପୃଥିବୀରେ ସର୍ବତ୍ର ଗୋଟିଏ ମାନଦଣ୍ଡ ରହିବ କାହିଁକି ? ବିଲାତର ଗଣ ଯେଉଁ ଚେତନାର ସ୍ପର୍ଶ ଲାଭ କରିଅଛି, ରୁଷିଆର ଗଣ ଯେଉଁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ-ଅଛି, ଭାରତର ଏବଂ ଆଫ୍ରିକାର ଗଣ ସେହି ଚେତନାବୋଧକୁ ସ୍ୱାଗତ କରିବାର କୌଣସି କାରଣ ନାହିଁ । ଏଥିପାଇଁ ଇତିହାସ, ପରଂପରା ଏବଂ ପୂର୍ବାଦୃଷ୍ଟିର ବିଚାର ଅତ୍ୟନ୍ତ ଆବଶ୍ୟକ । ଅବଶ୍ୟ ଏହା ସତ୍ୟ ଯେ ବାହ୍ୟ ପୋଷାକରେ ଦ୍ରୁତ ପରିବର୍ତ୍ତନ ଗୃହୀତ ହୋଇଯାଉଛି । ମାତ୍ର ପୋଷାକକୁ ଲକ୍ଷ୍ୟ କରି ଆମେ ସାଂପ୍ରତିକ-ଆଦର୍ଶ ଓ ଆଧୁନିକ ଚେତନାକୁ ଖୋଜିବା କି ? ସାଂପ୍ରତିକ-ଆଦର୍ଶ ଏବଂ ଆଧୁନିକ ଅନୁଚିନ୍ତା ଯଦି ବସ୍ତୁଗତ ବୋଲି ଧରାଯାଏ, ତେବେ ତାହାର ସ୍ଥାୟିତ୍ୱ ସମ୍ପର୍କରେ ସନ୍ଦେହ ପୋଷଣ କରିବାର ଅନେକ କାରଣ ଅଛି । କିନ୍ତୁ ଏହା ଯଦି ବାସ୍ତବିକ ଭାବଗତ, ତେବେ ସାହିତ୍ୟ ସଂସାରରେ ତାହାର ଐଶ୍ୱର୍ଯ୍ୟ ଅନୁସନ୍ଧାନ କରିବାକୁ ହେବ ।

**ସାଂପ୍ରତିକ ଜୀବନ ଏବଂ ଗଣଚେତନା**

ସାହିତ୍ୟ ନିଶ୍ଚୟ ଜୀବନଧର୍ମୀ । ଜୀବନର ପ୍ରତିଫଳନ ସାହିତ୍ୟରେ ହେବା ବିଧେୟ । ମାଗିଆଣିବା ପୋଷାକରେ ସୌନ୍ଦର୍ଯ୍ୟ ଥାଇପାରେ,

କିନ୍ତୁ ମୌଳିକ ଐଶ୍ୱର୍ଯ୍ୟର ବିଭୂତି ସେଠାରେ ନାହିଁ, ଅନ୍ଧାନୁସରଣ ଏବଂ ଦୁର୍ବଳ ଅନୁକୃତିର ଗ୍ଳାନିରେ ତାହା ବିକଳ ଏବଂ ବିଭ୍ରାନ୍ତ। ଆଧୁନିକ ସାହିତ୍ୟକୁ ଆମେ ଗଣଧର୍ମୀ ବୋଲି ସ୍ୱୀକାର କରୁଛୁ । ଅତୀତର ସାହିତ୍ୟରେ ଗଣର ଆଭିମୁଖ୍ୟ ଦାରୁଣ ଭାବରେ ଅବହେଳିତ ବୋଲି ଅଭିଯୋଗ ହେଉଛି । ମାତ୍ର ବେଳେବେଳେ ସାଂପ୍ରତିକ ସାହିତ୍ୟ ଗଣର ତ ନୁହେଁ, ସାଧାରଣ ଶିକ୍ଷିତ ସମାଜର ମଧ୍ୟ ନୁହେଁ, ଏହା ଅତ୍ୟନ୍ତ "ଗଣ୍ୟ"-ମାନଙ୍କର ହୋଇ ରହିଯାଇଛି । ଉଦାହରଣ ସ୍ୱରୂପ ଆଧୁନିକ ଆଦିବାସୀ ଏବଂ ଶ୍ରମିକ, ବାସହରା ଏବଂ ଖଟିଖିଆ – ଏମାନଙ୍କର ଜୀବନ-ଧର୍ମ ସମ୍ପର୍କରେ ଏପରି କେତେକ ଚିତ୍ର ସାଂପ୍ରତିକ ସାହିତ୍ୟରେ ରୂପାୟିତ ହେଉଅଛି, ଯାହା ସେହି ସେହି ଗୋଷ୍ଠୀ ପକ୍ଷରେ ଅତ୍ୟନ୍ତ ଗ୍ଳାନିକର ଏବଂ ଅପମାନକର । ଥରେ ସେମାନେ ଜାଗ୍ରତ ହେଲେ ଅତୀତର ଏହି "ସାଂପ୍ରତିକ-ନାମା" ସୃଷ୍ଟିକୁ ଜାଳି ଦେବାକୁ ଆଦୌ କୁଣ୍ଠିତ ହେବେ ନାହିଁ । ଏହି ବିଡ଼ମ୍ବିତ ବିପ୍ଳବ-ସଂକଟର ପ୍ରଧାନ କାରଣ ହେଲା ଆଧୁନିକ ଲେଖା ଓ ଲେଖକ ସମ୍ପୂର୍ଣ୍ଣଭାବରେ ପାଶ୍ଚାତ୍ୟ ଶିକ୍ଷା ଓ ଭାଷାରୁ ଜନ୍ମ । ଅନେକ ସମୟରେ ସେହି ଲେଖକ ଯେତେ ପରିମାଣରେ ବିଳାତି ଜୀବନ ପ୍ରତି ଆଗ୍ରହୀ, ସେହି ଜିଜ୍ଞାସା-ବୋଧ ତା'ର ନିଜ ଦେଶର ସଂସ୍କାର ପ୍ରତି ରହିପାରୁ ନାହିଁ । ତା'ର ନିଜର ମୌଳିକ ଭିତ୍ତିର ଅଭାବରୁ ସେ ଏଦେଶର କଳା ଓ ଆଧ୍ୟାତ୍ମିକତାର ଆଦର୍ଶକୁ ଚିହ୍ନି ନାହିଁ, ଜନଜୀବନର ବାହ୍ୟଚଳଣିରେ ମୁଗ୍ଧ ହୋଇଅଛି । ତାହାର ଆନ୍ତରିକ ଭାବନାର ସୌନ୍ଦର୍ଯ୍ୟକୁ ଉପଭୋଗ କରିବାକୁ ଅକ୍ଷମ ହୋଇଅଛି । ବୁଦ୍ଧିଜୀବୀ ଲେଖକ ଏକ ବୌଦ୍ଧିକତାର ଶୂନ୍ୟଆଧାର ପ୍ରାଚୀର ମଧ୍ୟରେ ବଞ୍ଚିବାପାଇଁ ବ୍ୟାକୁଳ । ମାତ୍ର ସେ ଭୁଲିଯାଇଛି ଯେ ଆତ୍ମପ୍ରତିଷ୍ଠା ଓ ଆତ୍ମପ୍ରକାଶ ବହୁମଧ୍ୟରେ ନିଜକୁ ପ୍ରକାଶ କରିବାରେ ସମ୍ଭବ ହୋଇଥାଏ । ଆଧୁନିକ ପାଠକ ଏବଂ ଲେଖକ ମଧ୍ୟରେ ଏକ ବିଶାଳ ପ୍ରାଚୀର ତାହା ହେଉଛି ଅବୁଝାମଣାର ଏବଂ ଅବୋଧତାର ।

**ସୁନୀତି, ସୁରୁଚି ଏବଂ ଛଇଳା**

ସାଂପ୍ରତିକ ସମାଜରେ ସତେ କ'ଣ ସମସ୍ତେ ସୁନୀତିଠାରୁ ଦୂରରେ, ସୁରୁଚି ଆଜି କ'ଣ ପ୍ରତ୍ୟାଖ୍ୟାତା ? କେବଳ ସଭ୍ୟତାର "ଛଇଳା"କୁ ଆଲିଙ୍ଗନ କରିବାପାଇଁ ସମସ୍ତେ ବ୍ୟସ୍ତ ବିକଳ କି ? ଯାହା ପ୍ରିୟ ହେବ ଉନ୍ମାଦକର ହେବ, ହେଉ ପଛେ ବିଭତ୍ସ ଏବଂ ଉତ୍କଟ ହଳାହଳ, ତାହା ହିଁ

କେବଳ ସାହିତ୍ୟରେ ପରିବେଷଣ କରାଯିବ । ଶସ୍ତା ଲୋକପ୍ରିୟତା ଅର୍ଜନ ଉଦ୍ଦେଶ୍ୟରେ ଗଳ୍ପ, ଉପନ୍ୟାସ ଓ କବିତାରେ ଯାହା ରଚିତ ଏବଂ ରୂପାୟିତ, ସେଗୁଡ଼ିକର ଚିରନ୍ତନ ମୂଲ୍ୟବୋଧ କଅଣ ? ପାଠକ ପ୍ରାଣରେ କି ପ୍ରକାର ରେଖାପାତ ସୃଷ୍ଟି ଉଦ୍ଦେଶ୍ୟରେ ଲେଖକ ତାହା ଚିତ୍ରଣ କରିଛନ୍ତି ? ବାସ୍ତବିକ ଆଧୁନିକ ଲେଖକ ନିଜ ପ୍ରତିଭାର ଜ୍ୱାଳାରେ ଜର୍ଜରିତ । ସେପୁଣି ଏପରି ଲେଖେ, ଏପରି ଚିନ୍ତାକରେ ଯେ ତାହା କେବଳ ତାହାର ନିଜସ୍ୱ ହୋଇ ରହିଯାଏ । କିନ୍ତୁ ତ କମାକାର ରୂପରେ ସେହି ସାହିତ୍ୟରୂପ ଗ୍ରହଣ କରେ । ଶକ୍ତିଶାଳୀ ପ୍ରତିଭାବନ୍ତ ଲେଖକ ନିଶ୍ଚୟ ବୁଦ୍ଧିଜୀବୀ । ସେ ଲେଖନ୍ତି କେବଳ ବୁଦ୍ଧିଜୀବୀମାନଙ୍କ ପାଇଁ । ଏହା ଫଳରେ ବୁଦ୍ଧିଜୀବୀ ଯେଉଁ ସାହିତ୍ୟକୁ ସ୍ୱାଗତ ସମ୍ଭାଷଣ କରନ୍ତି, ପ୍ରଶଂସିତ ଲକ୍ଷ୍ୟରେ ଆଲୋଚନା ସମାଲୋଚନା କରନ୍ତି, ତାହା ସାଧାରଣ ଶିକ୍ଷିତ ସମାଜ ପର୍ଯ୍ୟନ୍ତ ନାହିଁ । ଏ କ୍ଷେତ୍ରରେ ସାଧାରଣ ପାଠକଙ୍କ ପ୍ରଶ୍ନ ଆଦୌ ଉଠୁନାହିଁ । ତେଣୁ ଯେଉଁମାନେ ଶକ୍ତିଶାଳୀ ଲେଖକ ସେମାନେ ଆଜ ଅତ୍ୟନ୍ତ କରୁଣ ଭାବରେ ଏକାକୀ କହିଲେ ଅତ୍ୟୁକ୍ତି ହେବ ନାହିଁ । ସେମାନଙ୍କର ବାଣୀ ଓ ଚିନ୍ତା ଅତ୍ୟନ୍ତ ସୀମାବଦ୍ଧ । ଯାହା ଭଲ ଏବଂ ଚିନ୍ତା-ଉଦ୍ରେକକାରୀ, ତାହା ଯଦି ଅବୋଧ ରହିଯାଏ, ତେବେ ତାହା ସମାଜ ପକ୍ଷରେ ନିଶ୍ଚୟ ଅଶୁଭଙ୍କର ।

**ଜୀବନ ଯନ୍ତ୍ରଣା ଏବଂ ଯୁଗର ଯନ୍ତ୍ରଣା**

ସାଂପ୍ରତିକ ସମାଜରେ ସଂଘର୍ଷ ଲାଗିରହିଛି । ଏ ସଂଘର୍ଷ ପ୍ରାଚୀନ ଓ ନବୀନ ମଧ୍ୟରେ । ପ୍ରଗତି ଏବଂ ପ୍ରତିକ୍ରିୟାଶୀଳତା ମଧ୍ୟରେ । ଏ ଦ୍ୱନ୍ଦ୍ୱର ସୀମା ନାହିଁ । ଊନବିଂଶ ଶତାବ୍ଦୀରେ କବି ଯେଉଁ ସ୍ୱପ୍ନର ପରୀମହଲ ତିଆରି କରିଥିଲେ ତାହା ଆଜ ତାସ୍‌ଘର ପରି ଚକ୍ଷୁର ପଲକରେ ଭୁଷୁଡ଼ି ପଡ଼ୁଛି । ପ୍ରେମାନୁଭୂତି, ଗୋଲାପ, ଗୃହବାଗିଚା, ଅଳସ ଓ ଐଶ୍ୱର୍ଯ୍ୟମୟ ଜୀବନ—ଏହା କେବଳ କବିତାର କଥାବସ୍ତୁ ହେବ ନାହିଁ । ସାଂପ୍ରତିକ ସାହିତ୍ୟରେ ଅନେକ ବୈପ୍ଳବିକ ପରିବର୍ତ୍ତନ ଲକ୍ଷ୍ୟ କରାଯାଏ । ଆଧୁନିକ ଲେଖକ ରୁଟି, ଲାଇଟପୋଷ୍ଟ ଏବଂ ସାଇକେଲକୁ ଅବଲମ୍ବନ କରି କବିତା ରଚନା କରିପାରେ । ତା'ର କାବ୍ୟର ନାୟିକା କେବଳ ବିଶ୍ୱସୁନ୍ଦରୀ ଲାବଣ୍ୟବତୀ ନୁହେଁ, ସେ ହୁଏତ 'ନରକନ୍ଧର'ର 'ଗୋଦରୀବୁଢ଼ୀ'କୁ ନାୟିକା ସଜେଇ ଜୀବନର ସୌନ୍ଦର୍ଯ୍ୟ ସଂପର୍କରେ ନୂତନ ଆବିଷ୍କାର କରିପାରେ ।

ସାଂପ୍ରତିକ ଲେଖକ ନିଜକୁ ଡାକ୍ତର ବୋଲି ମନେ କରେ । ତା'ର ଜୀବନୀରେ ଅବଗୁଣ କଅଣ ? ତେଣୁ ସେ ଲେଖିଚାଲେ ନାରୀ ଓ ପୁରୁଷର ଯୌନଜୀବନର ବିଭତ୍ସ ଇତିକଥା, ଯହିଁରୁ ମନେହେବ, ସେ କେଉଁକାଳୁ ସୁରୁଚି ସୁନ୍ଦରୀଙ୍କୁ ଗୁଡ଼ପତ୍ର ଦେଇଦେଇଛି । ତା'ର ଆଖି ଆଗରେ ଆଜି ନାଚି ଉଠନ୍ତି ଲରେନ୍‌ସଙ୍କ 'ଲେଡ଼ି ଚ୍ୟାଟର୍ଲିଜ୍ ଲଭର', ମୋରାଭିଆଙ୍କ 'ରୋମର ମହିଳା', ନଭକୋଭଙ୍କ 'ଲୋଲିତା' । ମଣିଷ ଏ ଯୁଗରେ ପ୍ରତ୍ୟେକ କ୍ଷେତ୍ରରେ ପୂର୍ଣ୍ଣତା ପାଇଁ ବ୍ୟାକୁଳ । ସେ ବିଶ୍ୱାସ କରିଥିଲା ଯେ ବିଜ୍ଞାନ ବଳରେ ସେ ସବୁକିଛି ଆୟତ୍ତ କରିପାରିବ । ମନୁଷ୍ୟ ଶାନ୍ତିରେ ଅବସ୍ଥାନ କରିବ । ମାତ୍ର ଚତୁର୍ଦ୍ଦିଗରେ ଯୁଦ୍ଧଭୟ ଏବଂ ଧ୍ୱଂସଲୀଳାରୁ କେତେ ହ୍ୱିପିଧର୍ମୀ ପଳାୟନଗୋଷ୍ଠୀ ଆତ୍ମପ୍ରକାଶ କରିଛନ୍ତି । ସାହିତ୍ୟରେ ଏହି ଉଦ୍‌ଭ୍ରାନ୍ତ ଏବଂ ଅବକ୍ଷୟର ଧାରା ଅଙ୍କି ଧରା ପଡ଼ଯାଏ । ସତେ ଯେପରି ସବୁ ଜଳି ପୋଡ଼ି ଯାଉଛି । କିଛି ରହିବ ନାହିଁ । ଏହି ବିଷାଦର, କରୁଣ ଜଳାପୋଡ଼ାର କାହାଣୀ ସାଂପ୍ରତିକ କବିତାରେ ପ୍ରତିଧ୍ୱନିତ ।

ଏ ଶୂନ୍ୟତା ଚିରକାଳ ରହିବ ନାହିଁ । ଏହି ଅସନ୍ତୋଷର ବହ୍ନି ଅବଶ୍ୟ ନିର୍ବାପିତ ହେବ । ଆଧୁନିକ ମନୁଷ୍ୟ ନିକଟରେ ଅତୀତର ସବୁ ଆଦର୍ଶ ଓଲଟପାଲଟ ହୋଇ ଯାଇଛି । ପୃଥିବୀର ଅଧୁନାତନ ସମାଜରେ ସେ ତା'ର ସ୍ଥାନ ନିର୍ଦ୍ଧାରଣ କରିବାକୁ ବ୍ୟାକୁଳ । ସେହି କାରଣରୁ ସାଂପ୍ରତିକ ସାହିତ୍ୟରେ ତାହାର ବ୍ୟକ୍ତିତ୍ୱ ଆପାପ୍ଲୁତ ହେଉଅଛି । ଆଧୁନିକ ମନୁଷ୍ୟ ବୈଜ୍ଞାନିକ ଉଦ୍ଭାବନ ଓ ଆବିଷ୍କାରକୁ ଲକ୍ଷ୍ୟ କରି ବିଶ୍ୱାସ କରୁଛି ଯେ ତା'ପକ୍ଷରେ ଚିରନ୍ତନ ସତ୍ୟ ବୋଲି କିଛି ନାହିଁ । ସବୁ ହେଉଛି ଆପେକ୍ଷିକ । ସବୁକାଳରେ କ୍ରିୟାର ପ୍ରତିକ୍ରିୟା ଚାଲିଆସିଛି ।

**ସାହିତ୍ୟରେ ପଦଧ୍ୱନି**

ଗତ ଷାଠିଏ ବର୍ଷ ମଧ୍ୟରେ ପୃଥିବୀରେ କେତେ କ'ଣ ବିପ୍ଳବ ହୋଇ-ଗଲାଣି ଏ ଆନ୍ଦୋଳନ ରାଜନୀତିର, ଅର୍ଥନୀତିର, ସାମାଜିକ ବିବର୍ତ୍ତନର ଏବଂ ସର୍ବୋପରି ବୈଜ୍ଞାନିକ ଅନୁଶୀଳନର । କେତେ ରାଜନୈତିକ ମତ-ବାଦ ମୃତ୍ୟୁବରଣ କରୁଛି ଏବଂ ତାର ସ୍ଥାନରେ ଆଉ କେତେକ ମନୋଭାବ ପ୍ରତିଷ୍ଠା ଅର୍ଜନ କରୁଛି । ମନୁଷ୍ୟର ଚିନ୍ତା-ରାଜ୍ୟରେ କେତେ କ'ଣ ଓଲଟପାଲଟ ହୋଇଯାଇଛି ।

ସାଂପ୍ରତିକ କବି—ସେ ଆଜି ନିର୍ଭୀକ ହୋଇ ବନ୍ଧନର ଧ୍ୱଂସକାରୀ ବିରୋଧରେ ସ୍ୱର ଉତ୍ତୋଳନ କରୁ । ସମାଜର ଅଜ୍ଞତା, ଅସାଧୁତା, ଧର୍ମାନ୍ଧତା ଏବଂ ଭଣ୍ଡତା ବିରୋଧରେ ଆଜିର ଲେଖନୀ ହେଉ ଚଳଚଞ୍ଚଳ ଏବଂ ଜାଗ୍ରତ । ଏହି ଜୀବନ ଯନ୍ତ୍ରଣାର ବ୍ୟୂହ ମଧ୍ୟରେ ଅନାମୟ ଜୀବନ ପାଇଁ ଆଧୁନିକ ଲେଖକର ସାଧନା ସଫଳ ହେଉ ।

# ମୋ ଦୃଷ୍ଟିରେ
# ସାଂପ୍ରତିକ ସାହିତ୍ୟରେ ସଂକଟ

ଶ୍ରୀ ଭଗବାନ ପତି

ସାହିତ୍ୟ, ତାର ସ୍ରଷ୍ଟା ଓ ଗ୍ରହୀତା—ଏ ତିନି ବିଭାଗ ଉପରେ କୌଣସି ଆଲୋଚନାରେ ହାତ ଦେବା ଆଗରୁ ପ୍ରଥମେ ସାହିତ୍ୟର ସ୍ୱରୂପ ସମ୍ପର୍କରେ ଗୋଟାଏ ସ୍ପଷ୍ଟ ଧାରଣା ବା ଚିନ୍ତା ଆବଶ୍ୟକ । ସାହିତ୍ୟ ଶବ୍ଦଟିରେ ହିଁ ତା ନାମର ପ୍ରକୃତ ତାତ୍ପର୍ଯ୍ୟ ନିହିତ ଅଛି । ଏ ଦୁନିଆରେ ଜୀବନର ଗତିଧାରା ସହିତ ତାଳ ପକାଇ ତା ସଙ୍ଗେ ସଙ୍ଗେ ଯେ ଆଗକୁ ଆଗକୁ ମାଡ଼ି ଚାଲେ, ତାହା ହିଁ ସାହିତ୍ୟ । ତେଣୁ ଜୀବନ ବାହାରର କୌଣସି ଉଦ୍ଭଟ କଳ୍ପନା ରୂପେ ସାହିତ୍ୟକୁ ଗ୍ରହଣ କରାଯାଇ ନ ପାରେ ।

ଆଉ ଗୋଟାଏ ଦିଗରୁ ମଧ୍ୟ "ସାହିତ୍ୟ" ଶବ୍ଦର ଅର୍ଥ ପଣ୍ଡିତ-ମାନେ କରିଥାନ୍ତି । ତାହା ହେଉଛି "ହିତେନ ସହ" ଅର୍ଥାତ୍ ଯାହା ହିତ ବା କଲ୍ୟାଣକୁ ସଙ୍ଗରେ ଘେନି ନିଜର ଅସ୍ତିତ୍ୱ ଓ ଗତି ବେଗକୁ ପ୍ରତିପାଦ୍ କରେ, ତାହା ହିଁ ସାହିତ୍ୟ ।

ଏଥିରୁ ବେଶ୍ ବୁଝିହୁଏ ଯେ, ଯହିଁରେ ହିତ ବା କଲ୍ୟାଣ ଭାବନା ନାହିଁ, ତାହା ଆଉ କିଛି ହୋଇପାରେ ; କିନ୍ତୁ ସାହିତ୍ୟ ହୋଇ ପାରିବ ନାହିଁ । ଏହା ପରେ ପ୍ରଶ୍ନ ଉଠେ, ଯେଉଁ ହିତ ବା କଲ୍ୟାଣକୁ ସାହିତ୍ୟର ଧର୍ମ ବୋଲି ସ୍ୱୀକାର କରାଯାଉଛି, ସେ କାହାର ହିତ, କାହାର କଲ୍ୟାଣ ? ଗୋଟିଏ କଥାରେ ଏହାର ଉତ୍ତର ଦେବାକୁ ହେଲେ ଆମେ କହିବୁ ଯେ, ଦେଶ କାଳ ଓ ପାତ୍ରର ଭେଦ ଅତିକ୍ରମ କରି ଯାହା ଗୋଟାଏ ପଟେ ଦୁନିଆର ମଣିଷ ଓ ଆଉ ଗୋଟାଏ ପଟେ ଚରମ ଆନନ୍ଦ ଘେନି ଭାବକୁ ସ୍ପର୍ଶ କରି ପ୍ରତି ଅଣୁ ପରମାଣୁରେ ପରମ ଶ୍ରେୟର ସନ୍ଧାନ ଦିଏ, ଏ ହିତ ବା କଲ୍ୟାଣ ତାରି ଅଭିମୁଖରେ ଧାବିତ । ଏ ବିଚିତ୍ର ବିଶ୍ୱ ବ୍ରହ୍ମାଣ୍ଡରେ ସ୍ଥୂଳ ସୂକ୍ଷ୍ମ ଭେଦରେ ଆମେ ଯା କିଛି ଦେଖୁଛେ, ସେ ସବୁରି ଭିତରେ

ଆନନ୍ଦ ପାଇବାର ଗୋଟିଏ ପ୍ରେରଣା ପୂରି ରହିଛି । ନିଜେ ଆନନ୍ଦ ପାଇବା ସଙ୍ଗେ ସଙ୍ଗେ ଅନ୍ୟକୁ ଆନନ୍ଦ ଦେବାର ଭାବନା ହିଁ ତା ଭିତରେ ମଧ୍ୟ ଥାଏ । ତେଣୁ କବି ସାହିତ୍ୟ ସାଧନାରେ ହାତ ଦେଲାବେଳେ ତା ବ୍ୟକ୍ତିଗତ ଜୀବନର ଯାହା କିଛି ଆବିଳତା, ଯାହା କିଛି ପଙ୍କିଳତା, ଯାହାକିଛି କ୍ଷୁଦ୍ର ବା ଯାହା କିଛି ଅଶିବ, ସେସବୁକୁ ସେ ତା ବିଶ୍ୱଜନୀନ ମାନସିକତାର ପବିତ୍ର ଗଙ୍ଗାଜଳରେ ମାଜି ଘଷି ଧୋଇ ଶୁଚି ଶୁଭ୍ର କରି ବିଶ୍ୱମାନବର ବୁକୁ ତଳେ ମଧୁର ଓ ମର୍ମସ୍ପର୍ଶୀ କରି ପହଞ୍ଚାଇଦିଏ । କବି ହିସାବରେ ସାହିତ୍ୟ ସାଧକ ହିସାବରେ ବିଶ୍ୱମାନବର ଏହି ଭଳି ସେବାରେ ହିଁ ତାର ଓ ତା ସାଧନାର ସାର୍ଥକତା ପ୍ରମାଣିତ ହୁଏ । ଏ ସତ୍ୟର ହିରୋଧ କରି ବ୍ୟଷ୍ଟି ଜୀବନର ସାହିତ୍ୟ ସାଧନା ଯେଉଁଠି ତାର କଲ୍ୟାଣମଧୁର ଭାବଦ୍ୱାରା ସମଷ୍ଟି ଜୀବନକୁ ଅନୁପ୍ରାଣିତ ବା ଉଦ୍‌ବୁଦ୍ଧ କରିପାରେ, ସେଠି ବୁଝିବାକୁ ହେବ ଯେ, ସେ କବି ବା ସାହିତ୍ୟକର ସାହିତ୍ୟସାଧନା 'ଅଜା ଗଳସ୍ତନ' ପରି ସଂପୂର୍ଣ୍ଣ ନିରର୍ଥକ । ସାହିତ୍ୟକୁ ସେଭଳି ସାଧକମାନେ ବିଶ୍ୱମାନବର ହିତ ବା କଲ୍ୟାଣ ଦୃଷ୍ଟିରୁ ଗୋଟାଏ ସେବାଧର୍ମ ବା ସାଧନା ହିସାବରେ ଗ୍ରହଣ ନ କରି ବେଳେ ବେଳେ ବଡ଼ ବଡ଼ ଦୁହା ଆଉଡ଼େଇ ଓ ନିଜ ବ୍ୟକ୍ତିଗତ ଜୀବନର ଆବିଳ ଓ ଅଶିବ ଚିନ୍ତା ଧାରାକୁ ଲୁଗ୍ଣିଇ ସବୁ ଦୋଷର ସମଷ୍ଟି ନେଇ ମାନସ ଉପରେ ବା ସମାଜର ପାଠକ ବା ଗ୍ରହୀତାମାନଙ୍କ ଉପରେ ଲଦି ଦିଅନ୍ତି । ଅନେକ ସମୟରେ ଉତ୍କଟ ବ୍ୟକ୍ତିଭବାଦର ଉପାସକ ଏହି ଶ୍ରେଣୀର ସାହିତ୍ୟ ସାଧକମାନେ କହନ୍ତି ଯେ, ସେମାନେ ସମାଜର ନିଖୁଣ ଛବି ଆଙ୍କୁଛନ୍ତି ଏବଂ ସେଇ ଭଳି ଆଙ୍କିବା ହିଁ ସେମାନଙ୍କର ଧର୍ମ ବା ସାଧନା । ସେଥିରୁ ସମାଜ ଜୀବନରେ ଯଦି କୌଣସି ଖରାପ ପ୍ରତିକ୍ରିୟା ଉପୁଜେ, ତେବେ ସମାଜ ବା ସମଷ୍ଟି ଜୀବନ ଅବସ୍ଥାର ଉପରେ ତାର ପ୍ରତିବିଧାନ କରି-ନେବ । ସେମାନଙ୍କର ଏଭଳି ଯୁକ୍ତି ହେଉଛି—"Art for art's sake" ଏହା ଏକ ଉଦ୍ଭଟ ଯୁକ୍ତି । ଏଭଳି ସାହିତ୍ୟକମାନଙ୍କୁ ସାହିତ୍ୟ ସାଧକ ବୋଲି ନ କହି ସାହିତ୍ୟ ବ୍ୟବସାୟୀ ବୋଲି କହିଲେ ସେମାନଙ୍କ ପ୍ରତି ଯଥାର୍ଥ ସମ୍ମାନ ପ୍ରଦର୍ଶନ କରାଗଲା ବୋଲି ଆମେ କହିବୁ । ସମଷ୍ଟିମାନସ ବା ସମାଜକୁ ସେମାନେ ସେମାନଙ୍କ ପୁସ୍ତକର କ୍ରେତା ହିସାବରେ ଦେଖନ୍ତି ଏବଂ ସବୁବେଳେ ଆଖିରେ ବ୍ୟବସାୟୀର ଚଷମା ପିନ୍ଧିଥାନ୍ତି । ହିତ ବା କଲ୍ୟାଣ ଭିତରେ ନିଜେ ଆନନ୍ଦ ପାଇବା ସଙ୍ଗେ ସଙ୍ଗେ ସମଷ୍ଟିଜୀବନରେ

ଆନନ୍ଦର ସୁରଧାମ ବୁହାଇ ଦେବା ଯେଉଁ ସାହିତ୍ୟ ବା କଳାସୃଷ୍ଟିର ଧର୍ମ, ତାକୁ ଜନସମାଜରେ ପରିବେଷଣ କରିବାକୁ ଗଲାବେଳେ ସେହି ଜନସାଧାରଣଙ୍କର ଦୈନନ୍ଦିନ ଜୀବନର ସୁଖଦୁଃଖ ଓ ହସକାନ୍ଦ ଭିତରୁ ହିଁ ସାହିତ୍ୟ ସାଧନାକୁ ତା' ପାଥେୟ ସଂଗ୍ରହ କରିବାକୁ ହେବ । ନିଜେ ସାହିତ୍ୟ-ସାଧକ ମଧ୍ୟ ସେହି ଜନସାଧାରଣଙ୍କ ମଧ୍ୟରୁ ଜଣେ । ତେଣୁ ସାଧାରଣ ମଣିଷର ଜୀବନଠାରୁ ଦୂରକୁ ଘୁଞ୍ଚିଯାଇ ସେ କେବେ ହେଲେ ସାଧନାରେ ଲିପ୍ତ ହୋଇନପାରେ । ସାଧାରଣ ମଣିଷର ସୁଖଦୁଃଖ ଓ ହସକାନ୍ଦ ମଧ୍ୟରୁ ହିତ ଓ କଲ୍ୟାଣର ସନ୍ଧାନ ଖୋଜି ଲୋଡ଼ି ବାହାର କରି ସାଧାରଣ ମଣିଷକୁ ଉଦ୍‌ବୁଦ୍ଧ କରିବା ଏବଂ ସାହସରେ ବୁକୁବାନ୍ଧି ଆଗେଇ ଯିବାର ପ୍ରେରଣା ଦେବା ହେଉଛି ତା'ର ଧର୍ମ । ତେଣୁ କହିବାକୁ ପଡ଼ୁଛି ଯେ, ସେହି ଧର୍ମ ପାଳନକରି ସାହିତ୍ୟିକ ସମାଜର ସେବା କରେ ଏବଂ ସେହି ସେବାରେ ତା' ସାହିତ୍ୟିକ ଜୀବନ ଧନ୍ୟ ଓ ସାର୍ଥକ ହୁଏ । ଏ ଦୃଷ୍ଟିରୁ Art for Arts sake କଥାଟି କେବେ ହେଲେ ଗ୍ରହଣୀୟ ହୋଇ ନପାରେ । ବରଂ ସେ କଥାଟି ଟିକିଏ ବୁଲେଇ ଦେଇ କୁହାଯାଇ ପାରେ Art for service and blessedness.

ପ୍ରକୃତ ସାହିତ୍ୟସାଧକ କେବଳ ବର୍ତ୍ତମାନର ପ୍ରତିନିଧି ନୁହେଁ । ଅତୀତର ସେ ସ୍ମରଣ ଏବଂ ଭବିଷ୍ୟତର ସେ ବାର୍ତ୍ତାବହ । କ୍ଷୁଦ୍ର ବର୍ତ୍ତମାନର ବକ୍ଷକୁ ଆର୍ଦ୍ର କରି ଯେଉଁ ପ୍ରବାହ ବହି ଯାଉଛି; ତା'ର ତାତ୍ପର୍ଯ୍ୟ ଓ ସମ୍ପର୍କକୁ ହୃଦୟଙ୍ଗମ କରି ସେ ଭବିଷ୍ୟତର ଯଥାର୍ଥ ଇଙ୍ଗିତ ଦେଇପାରେ । ଅତୀତ; ବର୍ତ୍ତମାନ ଓ ଭବିଷ୍ୟତକୁ ତା'ର ସାହିତ୍ୟରେ ଗୋଟିଏ ସୂତାରେ ଗୁନ୍ଥି କେବଳ ଭବିଷ୍ୟତରେ ଗୁଡ଼ାଏ ଅବାସ୍ତବ ସୁନେଲି ସ୍ୱପ୍ନରେ ମସ୍‌ଗୁଲ୍ ହେଲେ ଚଳିବ ନାହିଁ । ଯେଉଁ ଭବିଷ୍ୟତର ସ୍ୱପ୍ନ ସେ ରଚନା କରୁଛି, କ୍ଷୁଦ୍ର ବର୍ତ୍ତମାନର ଗର୍ଭରେ ତା'ର ସମ୍ଭାବନା ଅଛି କି ନାହିଁ, ତାହା ତାକୁ ପରଖି ଦେଖିନେବାକୁ ହେବ । ସେଭଳି ସମ୍ଭାବନା ବର୍ତ୍ତମାନ ଭିତରେ ଯଦି ନ ଥାଏ, ତେବେ ତା'ର ସେଭଳି ଭବିଷ୍ୟତ କଳ୍ପନାକୁ ଅବାସ୍ତବ ବୋଲି ବୁଝିବାକୁ ହେବ । ଆଜି ଆମେ ଯେଉଁ ବର୍ତ୍ତମାନ ଭିତରେ ଗତି କରୁଛେ, ଅତୀତର ଗର୍ଭରେ ଦିନେ ତା'ର ସମ୍ଭାବନା ନିହିତ ଥିଲା ଏବଂ ଠିକ୍ ସେହିପରି ଆଜିର ବର୍ତ୍ତମାନରେ ଅନାଗତ ଭବିଷ୍ୟତର ସମ୍ଭାବନା ମଧ୍ୟ ନିହିତ ଅଛି । ଯେଉଁ ସାହିତ୍ୟିକ ଏହାକୁ ଯେତେ ବୁଝିପାରିବ ସାହିତ୍ୟ-ସାଧନାରେ

ହୋଇ ହଏ, ତା'ର ସାଧନା ସେତେ ସାର୍ଥକ ହୁଏ। ଏଥିପାଇଁ ସାହିତ୍ୟ-ସାଧକକୁ ତ୍ରିକାଳଦର୍ଶୀ ହେବାକୁ ପଡ଼ିବ। କେବଳ ଗୁଡ଼ାଏ ଶବ୍ଦ ଆଗପଛ କରି ଥୋଇ ଏବଂ ଛନ୍ଦ ରକ୍ଷାପୂର୍ବକ ଧାଡ଼ି ପକାଇ ପାରିଲେ ଜଣକୁ କବି ବୋଲି କୁହାଯାଇ ପାରିବ ନାହିଁ। ଆଜି ସିନା 'କବି' ଶବ୍ଦର ଅର୍ଥ ଏତେ ହାଲୁକା ହୋଇ ଯାଇଛି; କିନ୍ତୁ ଅତୀତରେ ଋଷିମାନେ ତତ୍ତ୍ୱଦର୍ଶୀଙ୍କୁ କବି ବୋଲି କୁହାଯାଉଥିଲା ଏବଂ ଏବେ ମଧ୍ୟ ସେ ଶବ୍ଦଟି ସେହି ଅର୍ଥ ବହନ କରୁଛି। କବି ହେବାକୁ ହେଲେ ସାହିତ୍ୟିକକୁ ପ୍ରକୃତ ତତ୍ତ୍ୱଦର୍ଶୀ ହେବାକୁ ପଡ଼ିବ। ତା ନ ହେଲେ ତା'ର ସୃଜନ-ଧର୍ମର ଅନୁଶୀଳନରେ ବର୍ତ୍ତମାନର ନିଖୁଣ ଛବି ଆଙ୍କିବାକୁ ଯାଇ ସେ ସମଷ୍ଟିର ହିତ ଓ କଲ୍ୟାଣ ଭାବନାରେ ଭବିଷ୍ୟତର ସମ୍ଭାବନା ଦେଖାଇବାକୁ କିପରି ବା ସମର୍ଥ ହେବ? ଅତୀତ ସଙ୍ଗେ ବର୍ତ୍ତମାନର ଓ ବର୍ତ୍ତମାନ ସଙ୍ଗେ ଭବିଷ୍ୟତରେ ଯେଉଁ ସମ୍ପର୍କ, ତାକୁ ବିଶ୍ଳେଷଣ କରି ଦେଖାଯାଇଛି ଯେ, ତାହା ଏକ ଧରାବନ୍ଧା କାର୍ଯ୍ୟକାରଣ ତତ୍ତ୍ୱ ଉପରେ ଭିତ୍ତି-ସ୍ତରରେ ପ୍ରତିଷ୍ଠିତ। କାରଣ ସ୍ୱାଭାବିକ ପରିଣତି ଗୋଟାଏ ବିଶେଷ ସମୟରେ ବିଶେଷ ଦେଶର ବା ବିଶେଷ ପାତ୍ରରେ କାର୍ଯ୍ୟ ରୂପେ ଦେଖାଦିଏ। ଏ ସତ୍ୟକୁ ସାହିତ୍ୟସାଧକ ମୁହୂର୍ତ୍ତିକ ପାଇଁ ପାସୋରି ଦେଲେ ଚଳିବ ନାହିଁ। କାରଣ, କାର୍ଯ୍ୟକାରଣ ମଧ୍ୟରେ ଯେଉଁ ସଲଗ୍ନତା ଥାଏ, ତାହା ହିଁ ପାଠକକୁ ଲେଖକର ବକ୍ତବ୍ୟ ନିକଟକୁ ଟାଣିନିଏ ଓ ତା ପ୍ରାଣରେ ପ୍ରାଣକୁ ମିଶାଇ ଏକ କରିଦିଏ। ଏହି ପ୍ରାଣଗତ ମମତା ନ ଥିଲେ ପାଠକ କୌଣସି ରଚନାକୁ ନିଜର ବୋଲି ମନେକରି ଗ୍ରହଣ କରିପାରେ ନାହିଁ। ଏଥିରୁ ବେଶ ବୁଝିହୁଏ ଯେ, ଗଣମାନସଠାରୁ ଯେଉଁ ସାହିତ୍ୟ ଦୂରରେ ଥାଏ ତାକୁ ସାହିତ୍ୟ ନ କହି ରଚନା କହିବା ଯଥାର୍ଥ ହେବ।

ଏହି ଦୃଷ୍ଟିରୁ ବିଚାର କଲେ ଆଜି ସାହିତ୍ୟ ବୋଲି ବଜାରରେ ଯାହା ଚାଲୁ ହେଉଛି, ଏକା ଆମ ଦେଶରେ ନୁହେଁ, ସାରା ବିଶ୍ୱରେ; ସେଥିରୁ ଅଧିକାଂଶ ପ୍ରକୃତ ସାହିତ୍ୟ ପଦବାଚ୍ୟ ନୁହେଁ; ରଚନା ମାତ୍ର। ସାହିତ୍ୟସାଧନାରେ ସାହିତ୍ୟିକକୁ ପଦେ ପଦେ ଦାୟିତ୍ୱବୋଧର ପରିଚୟ ଦେବାକୁ ହେବ। କେବଳ ଭାଷା ଓ ଭାବ ଥିଲେ ଯଥେଷ୍ଟ ହେବ ନାହିଁ। ଏହାଠାରୁ ବେଶୀ ଯାହା ଆବଶ୍ୟକ, ତାହା ହେଉଛି ପ୍ରତ୍ୟେକ ବସ୍ତୁର ଭିତରେ ପ୍ରବେଶ କରିବାର ଶକ୍ତି, ମନ ଦେଇ ପ୍ରତ୍ୟେକ ମନର ନିଜ

ମନ ସଙ୍ଗେ ମିଳାଇ ନେବାର ସାମର୍ଥ୍ୟ । ଗୋଟାଏ କଥାରେ ତାଙ୍କୁ ଯଥାର୍ଥରେ କବି ବା ତତ୍ତ୍ୱଦର୍ଶୀ ହେବାକୁ ପଡ଼ିବ ।

ସାହିତ୍ୟର ସ୍ୱରୂପ ଓ ସାହିତ୍ୟର ସ୍ରଷ୍ଟା ସାହିତ୍ୟିକର ଧର୍ମ ସମ୍ବନ୍ଧରେ ଏତେ କଥା କହି ସାରିଲା ପରେ ବର୍ତ୍ତମାନ ସେହି ସାହିତ୍ୟର ଗ୍ରହୀତାଙ୍କ କଥା ବିଚାରକୁ ଅଣାଯାଉ । ଏହି ଗ୍ରହୀତାମାନେ ହିଁ ପାଠକ ନାମରେ ପରିଚିତ । ଦୁଇ ଦୁଇଟା ମହାଯୁଦ୍ଧ ପରେ ଓ ଆମ ସ୍ୱାଧୀନତା-ପ୍ରାପ୍ତିର ପାଖ ୨୫ ବର୍ଷ ପରେ ବର୍ତ୍ତମାନ ବିଶ୍ୱସାହିତ୍ୟର ପୃଷ୍ଠଭୂମିରୁ ଆମ ଓଡ଼ିଆ ସାହିତ୍ୟରେ ସାଂପ୍ରତିକ ସାହିତ୍ୟ ପ୍ରତି ପାଠକମାନଙ୍କର ବିତୃଷ୍ଣା ବା ଅନାଗ୍ରହ ଅତି ସ୍ପଷ୍ଟ ହୋଇ ଉଠିଛି । ଉପରେ ସାହିତ୍ୟର ସ୍ୱରୂପ ଓ ସାହିତ୍ୟିକର ଧର୍ମ ଯେଉଁ ଆଲୋଚନା କଲାବେଳେ ଏହାର କାରଣ ସଂପର୍କରେ ପରୋକ୍ଷ ଭାବରେ କେତେକ ଆଲୋକପାତ କରାଯାଇଛି । ବର୍ତ୍ତମାନ ବିଶେଷ ଆଲୋକପାତ କରିବା ଆଗରୁ ଆଜି ସାଂପ୍ରତିକ ସାହିତ୍ୟର ଲକ୍ଷଣ କ'ଣ ହୋଇଛି ତାହାକୁ ବୁଝି ରଖିବା ଉଚିତ । ଓଡ଼ିଆ ବଙ୍ଗଳା କିମ୍ବା ହିନ୍ଦୀ ଇଂରେଜ କୌଣସି ଭେଦ ନ ରଖି ସମୂହ-ଭାବରେ ସାଂପ୍ରତିକ ସାହିତ୍ୟ ଉପରେ ଆଖି ପକାଇଲେ ଆମେ ଦେଖୁ ଯେ, ଦେହବାଦୀ ସାହିତ୍ୟ ଗତ କେତେ ବର୍ଷ ଭିତରେ କେବଳ ଆମ ଓଡ଼ିଆ ସାହିତ୍ୟରେ ନୁହେଁ, ଭାରତୀୟ ବିଭିନ୍ନ ଭାଷାରେ ସାହିତ୍ୟ ତଥା ବିଶ୍ୱସାହିତ୍ୟରେ ହିମାଳୟ ପରି ଦିନକୁ ଦିନ ଉନ୍ନତ ଓ ଉତ୍ତୁଙ୍ଗ ହେବାରେ ଲାଗିଛି । ଗଳ୍ପ, ଉପନ୍ୟାସ, କବିତା ଓ ଗ୍ରାମ୍ୟ ରଚନା ଆଦିରେ ଯୌନତାର ପ୍ରାଚୁର୍ଯ୍ୟ ଏତେ ବଢ଼ି ଉଠିଛି ଯେ ତାକୁ ଧରିବାପାଇଁ କୌଣସି ସୂକ୍ଷ୍ମ ଦୃଷ୍ଟି ଅନାବଶ୍ୟକ । ସ୍ଥୂଳ ଦୃଷ୍ଟିରେ ତାହା ବେଶ୍ ଧରା ପଡ଼ୁଯାଉଛି । ଆମ ସାଂପ୍ରତିକ ଓଡ଼ିଆ ସାହିତ୍ୟରେ ଏ ଲକ୍ଷଣ ଅବଶ୍ୟ ଅନ୍ୟାନ୍ୟ ପ୍ରତିବେଶୀ ତଥା ଇଂରେଜ ସାହିତ୍ୟରୁ ଆମଦାନି କରାଯାଉଛି ; କିନ୍ତୁ ଏହା ସ୍ୱାସ୍ଥ୍ୟର ଲକ୍ଷଣ ନୁହେଁ ଏବଂ ଆମ ସାହିତ୍ୟର ଅଗ୍ରଗତି ପଥରେ ସହାୟକ ନୁହେଁ । ଧୀରବୁଦ୍ଧି ଓ ସ୍ଥିର ଚିତ୍ତରେ ଏହାର ବିଚାର କଲେ ଅନେକେ ଏ ବିଷୟରେ ଆମ ସହିତ ଏକମତ ହେବେ । ଏ ପ୍ରକାର ସାଂପ୍ରତିକ ସାହିତ୍ୟ ପ୍ରତି ପାଠକସମାଜର ଅନାଗ୍ରହ ନିତାନ୍ତ ସ୍ୱାଭାବିକ କହିଲେ ବାହୁଲ୍ୟ ହେବ ନାହିଁ । ଏ ଶ୍ରେଣୀର ସାଂପ୍ରତିକ ସାହିତ୍ୟ ସୃଷ୍ଟିରେ ପୁଣି ତରୁଣ ଲେଖକସମାଜର ଯଥେଷ୍ଟ ହାତ ଥିବାର ଦେଖାଯାଉଛି ।

ଏହି ଶ୍ରେଣୀର ତରୁଣ ସାହିତ୍ୟିକମାନଙ୍କର ଗୋଟାଏ ବଡ଼ ଅଂଶ ନରନାରୀର ପ୍ରେମଚର୍ଚ୍ଚା ନାମରେ ଖୋଲାଖୋଲି ଭାବରେ କପଟ ଯୌନ-ଚର୍ଚ୍ଚଣ କରୁଛନ୍ତି, ତାହା ଅନେକଙ୍କୁ ଜଣା । ଆମ ସାଂପ୍ରତିକ ସାହିତ୍ୟର ଅଗ୍ରଗତି କ୍ଷେତ୍ରରେ ଏ ପ୍ରକାର ଯୌନଗନ୍ଧି ଭରା ସାହିତ୍ୟ ଯେ ଏକମାତ୍ର ଭୟର କାରଣ, ତା ନୁହେଁ; ଏହାଠାରୁ ବଡ଼ ଭୟର କାରଣ ହେଉଛି—ସମାଜରେ ଧୀରସ୍ଥିର, ବସ୍ତୁବୃଦ୍ଧିସଂପନ୍ନ ଓ ବିଜ୍ଞ ବୋଲି ପରିଚିତ ପ୍ରବୀଣମାନେ ଏ ପ୍ରକାର ଭ୍ରାନ୍ତ ସାହିତ୍ୟାଦର୍ଶକୁ ସମର୍ଥନ କରୁଛନ୍ତି । ପ୍ରବୀଣମାନଙ୍କର ଏ ପ୍ରକାର ସମର୍ଥନ ପାଇ ନବୀନମାନେ ଏବେ ସ୍ୱେଚ୍ଛାଚାରୀ ହୋଇ ଉଠିଥିଲା-ପରି ମନେ ହୁଏ । ଯେପରି ମନେହୁଏ ପ୍ରବୀଣମାନଙ୍କଠାରେ ଶୁଭ ବୁଦ୍ଧିର ଭଣ୍ଡାର ହୁଏତ ନିଃଶେଷ ହୋଇ ଯାଇଛି ଏବଂ ନବୀନମାନଙ୍କ ଦୃଷ୍ଟି-ଭଙ୍ଗୀକୁ ପ୍ରଭାବିତ କରିବାର ସବୁଶକ୍ତି ସେମାନେ ହରାଇ ବସିଛନ୍ତି । ଏହା ଫଳରେ ସାଂପ୍ରତିକ ସାହିତ୍ୟର ପ୍ରଗତିପଥ ଯେତେ ରୁଦ୍ଧ ହେଉ ବା ପାଠକମାନଙ୍କ ଆଡ଼ୁ ସେଭଳି ସାହିତ୍ୟପ୍ରତି ଯେତେ ଅନାଗ୍ରହ ପ୍ରକାଶ ପାଉ ପଛକେ, ସମୂହ ଭାବରେ ଆମ ସାମାଜିକ ଜୀବନର ସ୍ୱାସ୍ଥ୍ୟ ଯେ ନଷ୍ଟ ହେଉଛି, ତାହା ଅସ୍ୱୀକାର କରାଯାଇ ନ ପାରେ । ଦେଶର ସାଧାରଣ ପାଠକ ପାଠିକା ଏବେ ଯେଉଁ ସ୍ତରରେ ଅଛନ୍ତି, ସେମାନଙ୍କ ନିକଟରେ ଏଭଳି ସାହିତ୍ୟ ଅନାଦୃତ ହେଉଛି । ଯୁଗେ ଯୁଗେ ପ୍ରବୀଣମାନେ ନବୀନମାନଙ୍କର ଏପ୍ରକାର ସ୍ୱେଚ୍ଛାଚାରିତାକୁ ପ୍ରତିବାଦ ଓ ସମାଲୋଚନା-ଦ୍ୱାରା ସଂଯତ କରିଥାନ୍ତି । ମାତ୍ର ବର୍ତ୍ତମାନ ଯୁଗରେ ତା'ର ଏକାନ୍ତ ଅଭାବ ଓ ସ୍ଥଳବିଶେଷରେ ନବୀନମାନଙ୍କ ପ୍ରତି ସମର୍ଥନ ଦେଖିଲେ ମନେହୁଏ, ଆମେ ପ୍ରକୃତରେ ବର୍ତ୍ତମାନ ଗୋଟାଏ ଡିକାଡେଣ୍ଟ (କ୍ଷୟିଷ୍ଣୁ) ଭିତରେ ଗତି କରୁଛେ । ବଡ଼ ବଡ଼ ଅଧ୍ୟାପକ ଓ ଡକ୍ଟରେଟ୍ କରିଥିବା କୃତୀ ସାହିତ୍ୟିକମାନେ ଦେଶବିଦେଶର ପୋଥିପତ୍ର ଦରାଣ୍ଡି ସେଥିରୁ ଏଭଳି ଏରୋଟିକ୍ ଏଲିମେଣ୍ଟ ଭରା ରଚନାର ନଜିର ଯେତେବେଳେ ଯୋଗାଇ ଦେଉଛନ୍ତି, ସେତେବେଳେ ସେମାନଙ୍କୁ ଏ ଯୁଗର ପୁଲିସ୍‌ଙ୍କ ସଙ୍ଗେ ତୁଳନା କରିବାକୁ ଇଚ୍ଛା ହୁଏ । ରକ୍ଷକ ଆସନରେ ଥାଇ ଏଯୁଗରେ ପୁଲିସ୍‌ର ଭକ୍ଷକ ଭୂମିକାକୁ ଆଖି ଆଗରେ ରଖି ଆମେ ଏଭଳି ତୁଳନା କରିବାକୁ ସାହସ କରୁଛୁ ।

ଗଳ୍ପ ଉପନ୍ୟାସ କଥା ଛାଡ଼ି ଏଯୁଗର କବିତା ଉପରେ ଆଖି ପକାଇଲେ, ସେହି ଏକା ରକମ ଅବସ୍ଥା ଦେଖାଯାଏ । ଶସ୍ତା ଓ ସହଜ

ପ୍ରେମ ଓ ଯୌନ ଆବେଦନ ଭିତରେ ହିତ ବା କଲ୍ୟାଣ ଭାବନା ସେ ସବୁ କବିମାନଙ୍କର ଅଛି ବୋଲି ମନେହୁଏ ନାହିଁ । ପୁଣି ଏ ଯୁଗର କବିତାର ଆଉ ଏକ ବଡ ଲକ୍ଷଣ ହେଉଛି ଦୁର୍ବୋଧତା ବା ଅବୋଧ୍ୟତା । ଯେଉଁ କବିତା ଯେତେ ଦୁର୍ବୋଧ ବା ଅବୋଧ୍ୟ ତାହା ଏ ଯୁଗରେ ସେତେ ଉଚ୍ଚକୋଟୀର ବୋଲି କୁହାଯାଉଛି ଏବଂ ପ୍ରବୀଣ ଅଧ୍ୟାପକମାନେ ଏଭଳି କବିତା ପୁସ୍ତକର ପ୍ରଶସ୍ତିଗର୍ଭକ ଭୂମିକାମାନ ଲେଖି ତରୁଣ କବିମାନଙ୍କୁ ଆଶୀର୍ବାଦ ଦେବାକୁ ଗୌରବର ବିଷୟ ବୋଲି ମନେ କରୁଅଛନ୍ତି । ଏହା ଫଳରେ ପାଠକମାନଙ୍କ ନିକଟରେ ଏ ଶ୍ରେଣୀର କବିତା ଅନାଦୃତ ହେଉଅଛି । ସାଧାରଣ ରସଗ୍ରାହୀ ଜଣେ ସାହିତ୍ୟପାଠକ ଦୃଷ୍ଟିରେ ଏହା ହିଁ ଆଜିର ସାହିତ୍ୟରେ ଏକ ପ୍ରଧାନ ସଙ୍କଟ ।

---

# ମୋ ଦୃଷ୍ଟିରେ
# ସାଂପ୍ରତିକ ସାହିତ୍ୟର ଏକ ଅଧ୍ୟୟନ

**ଅଧ୍ୟାପକ ଶ୍ରୀ ଭାସ୍କରଚନ୍ଦ୍ର ଖଟାଇ**

"The modern Indian writer is essentially a product of western education, as a writer, his values are those of Post-Renaissance Europe, his work embodies a profound revolution in Indian cultural history."

ଆଧୁନିକ ଭାରତୀୟ ସାହିତ୍ୟ ସମ୍ପର୍କରେ ଲଣ୍ଡନର "Times Litetary Supplement" ପତ୍ରିକାର ଉପରୋକ୍ତ ମନ୍ତବ୍ୟ ଆମ ସାହିତ୍ୟ ପାଇଁ ଅପ୍ରିୟ ହେଲେ ମଧ୍ୟ ଯେ ପ୍ରଯୁଜ୍ୟ ଏକଥା ଅସ୍ୱୀକାର କରି ହେବନି । ଆମ ସାହିତ୍ୟ ସମ୍ପ୍ରତି ଯେଉଁ ଅବସ୍ଥାରେ ପହଞ୍ଚିଛି ତାହା ଇଂରାଜୀ ଶିକ୍ଷା ପ୍ରସାରର ଫଳ । ଭାରତୀୟ ସାହିତ୍ୟ କହିଲେ ବାହାର ଲୋକେ ସଂସ୍କୃତ ସାହିତ୍ୟକୁ ହିଁ ବୁଝୁଥିଲେ । ବେଦ, ଉପନିଷଦ ଏବଂ କାଳିଦାସ, ଭବଭୂତି ପ୍ରଭୃତିଙ୍କ କାବ୍ୟ ଥିଲା ଭାରତୀୟ ସାହିତ୍ୟର ପ୍ରତୀକ, ପରେ ଜୈନ ଓ ବୌଦ୍ଧ ଧର୍ମର ପ୍ରଚାର ଓ ପ୍ରସାର ଫଳରେ ଉକ୍ତ ଧର୍ମ-ପ୍ରଚାରକମାନେ କଥିତ ଭାଷାକୁ ସାହିତ୍ୟର ମାଧ୍ୟମରୂପେ ଗ୍ରହଣ କରି ତାଙ୍କ ଉପଦେଶକୁ ରଚନା କଲେ ।

ପ୍ରାୟ ଅଧିକାଂଶ ଆଞ୍ଚଳିକ ଭାଷା ଉପରେ ସଂସ୍କୃତର ପ୍ରଭାବ ଥିଲେ ସୁଦ୍ଧା ଇଂରାଜୀ ଶାସନ ପ୍ରବର୍ତ୍ତନ ଫଳରେ ଓ ଇଂରାଜୀ ଶିକ୍ଷାର ବହୁଳ ପ୍ରଚାର ଫଳରେ ଭାରତୀୟ ଭାଷାମାନଙ୍କ ଉପରୁ ସଂସ୍କୃତର ପ୍ରଭାବ କମି କମି ଆସିଲା ।

ଶେଷରେ ଲର୍ଡ ମେକଲେଙ୍କ ଶିକ୍ଷାନୀତି ଫଳରେ ସଂସ୍କୃତ ପରିବର୍ତ୍ତେ ଇଂରାଜୀ ପ୍ରଭାବ ବିସ୍ତାର କଲା । ଇଂରାଜୀ ଶିକ୍ଷାମାଧ୍ୟମରେ ଭାରତବର୍ଷରେ

ପାଶ୍ଚାତ୍ୟ ଚିନ୍ତାଧାରାର ପ୍ରସାର ଘଟିଲା । ପ୍ରାୟ ବିଂଶ ଶତାବ୍ଦୀର ଆରମ୍ଭରେ କାଳିଦାସ, ବାଣଭଟ୍ଟ, ବୈଷ୍ଣବ କାବ୍ୟ, ଖଣ୍ଡଯୁଗର କାବ୍ୟ ଆଡ଼ୁ ଦୃଷ୍ଟି କ୍ରମେ ଫରାସୀ ଓ ରୁଷଦେଶର ପ୍ରସିଦ୍ଧ ଲେଖାମାନଙ୍କ ଆଡ଼କୁ ଆକୃଷ୍ଟ ହେଲା ଓ ସେ ଲେଖାଗୁଡ଼ିକୁ ଆଦର୍ଶ ସ୍ଥାନ ଦିଆଗଲା । ସେଇଭଳି ମଧ୍ୟ-ଯୁଗର କାବ୍ୟଧାରା ତଥା ପରମ୍ପରାକୁ କବି ରାଧାନାଥ ବଦଳାଇଲା ବେଳେ ଔପନ୍ୟାସିକ ଫକୀରମୋହନ ସେନାପତି ଓଡ଼ିଶାର ଗାଁ ଗହଳର ଉତ୍ପୀଡ଼ିତ ଓ ଅତ୍ୟାଚାରୀର ଚରିତ୍ରକୁ ନେଇ ଓଡ଼ିଆ ଉପନ୍ୟାସ ସାହିତ୍ୟ ସୃଷ୍ଟି କରିବାରେ ବ୍ୟସ୍ତ ରହିଲେ ।

ଆଧ୍ୟାତ୍ମିକ ଭାବାପନ୍ନ ମନୀଷୀ ମଧୁସୂଦନଙ୍କ ଦାନ ଆଧୁନିକ ଓଡ଼ିଆ ସାହିତ୍ୟକୁ କମ୍ ନୁହେଁ । ନୀଳକଣ୍ଠଙ୍କର ଭାବଗମ୍ଭୀର ଆଲୋଚନା ଏବଂ ଗୋଦାବରୀଶଙ୍କ ନାଟକ ଓ ଗୀତିକବିତା ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରଧାନ ସମ୍ପଦ । ସତ୍ୟବାଦୀ ଯୁଗର ସାହିତ୍ୟସାଧକ ଭାବେ ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ ପ୍ରମୁଖ ସଖାଗଣ ବିଭିନ୍ନ କ୍ଷେତ୍ରରେ ସ୍ୱମତବାଦ ପ୍ରତିଷ୍ଠା କରି ଯାଇଥିଲେ ସୁଦ୍ଧା ମୁଖ୍ୟତଃ ଏମାନେ ରାଜନୈତିକ ନେତା ଥିଲେ । ଜାତୀୟତାବାଦ ଏମାନଙ୍କ ସାହିତ୍ୟର ଆତ୍ମା ହେଲେହେଁ ସଂସ୍କାର ହିଁ ଏମାନଙ୍କର ପ୍ରକୃତ ଲକ୍ଷ୍ୟ ଥିଲା । ରାଧାନାଥୀୟ ସାହିତ୍ୟରେ ପ୍ରେମକୁ ସମାଲୋଚନା କରିବାକୁ ଇଚ୍ଛାକରି ନୀଳକଣ୍ଠ ଦାସ କୋଣାର୍କ, ମାୟାଦେବୀ, ପ୍ରଣୟିନୀ, ଦାସ ନାଏକ ଓ ଖାରବେଳ କାବ୍ୟ ସୃଷ୍ଟି କରିଥିଲେ ।

ସତ୍ୟବାଦୀ ଯୁଗ ପରେ ପାଶ୍ଚାତ୍ୟ ସାହିତ୍ୟର ରୋମାଣ୍ଟିକ ଭାବଧାରା ଏବଂ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଜ୍ୱଳନ୍ତ ପ୍ରତିଭାର ପ୍ରଭାବରେ ସାହିତ୍ୟ ରାଜ୍ୟରେ ନୂତନ ରୂପ ନେଇ ଆବିର୍ଭୂତ ହେଲେ ସବୁଜଗୋଷ୍ଠୀ ।

ବଙ୍ଗଳାର ପ୍ରମଥ ଚୌଧୁରୀ ଓ ରବୀନ୍ଦ୍ରନାଥଙ୍କ ପୃଷ୍ଠପୋଷକ-ତାରେ ପ୍ରକାଶ ପାଇଥିବା 'ସବୁଜ ପତ୍ର'ର ଅନୁକରଣରେ ଆମ ସାହିତ୍ୟ-ରଥୀ କାଳନ୍ଦୀଚରଣ ପାଣିଗ୍ରାହୀ ଓ ବୈକୁଣ୍ଠ ନାଥ ପଟ୍ଟନାୟକ ପ୍ରମୁଖ ଏକ ସାହିତ୍ୟ ଅନୁଷ୍ଠାନ ସ୍ଥାପନ କରି 'ଯୁଗବାଣୀ' ନାମକ ଏକ ସାହିତ୍ୟ-ପତ୍ର ପ୍ରକାଶ କରିଥିଲେ ।

ସବୁଜଗୋଷ୍ଠୀର ପ୍ରଭାବ ମଳିନ ପଡ଼ି ଆସିବା ବେଳକୁ ଓଡ଼ିଆ ସାହିତ୍ୟରେ [illegible]

ମାର୍କସବାଦର ଆବାହକ ହେଲେ ଭଗବତୀ ପାଣିଗ୍ରାହୀ । ଏ ଯୁଗର ସ୍ରଷ୍ଟା ହିସାବରେ ସାଧାରଣତଃ କବି ସଚ୍ଚି ରାଉତରାୟ, ଅନନ୍ତ ପଟ୍ଟନାୟକ ଓ ମନମୋହନ ମିଶ୍ର ପ୍ରମୁଖ ଦେଖା ଦେଲେ । ଏମାନେ କବିତାରେ ମୁକ୍ତଛନ୍ଦର ପ୍ରବର୍ତ୍ତନ ଓ ନୂତନ ଶବ୍ଦକଳ୍ପ ପ୍ରୟୋଗ କରି ଆଧୁନିକ ଓଡ଼ିଆ କବିତାରେ ଯୁଗାନ୍ତର ଆଣିଥିଲେ । ଆଧୁନିକ ଓଡ଼ିଆ କବିତାରେ ନିଜର ମୌଳିକ ଅବଦାନ ପାଇଁ ରାଧାମୋହନ ଗଡ଼ନାୟକ, ଡକ୍ଟର ମାୟାଧର ମାନସିଂ, ଡକ୍ଟର କୁଞ୍ଜବିହାରୀ ଦାଶ ଓ ବିନୋଦ ନାୟକ ପ୍ରମୁଖ ପ୍ରଶଂସନୀୟ । ସେହିଭଳି ଉପନ୍ୟାସ ରଚନା କ୍ଷେତ୍ରରେ ଗୋପୀନାଥ ମହାନ୍ତି, ରାଜକିଶୋର ପଟ୍ଟନାୟକ, ନିତ୍ୟାନନ୍ଦ ମହାପାତ୍ର, କାହ୍ନୁଚରଣ ମହାନ୍ତି ଓ ସୁରେନ୍ଦ୍ର ମହାନ୍ତି ପ୍ରମୁଖ ନିଜ ନିଜର ସ୍ୱତନ୍ତ୍ର ସ୍ଥାନ ବାଛି ନେଇଛନ୍ତି । ଏମାନଙ୍କ ଉଦ୍ୟମ ଫଳରେ ଫକୀରମୋହନଙ୍କ ପରବର୍ତ୍ତୀ ଓଡ଼ିଆ ଉପନ୍ୟାସ ଅନ୍ୟାନ୍ୟ ଭାରତୀୟ କଥାସାହିତ୍ୟ ସହ ପାଦ ମିଳାଇ ଚାଲିଛି ।

ସଂପ୍ରତି ଆମ ସାହିତ୍ୟ ସଂପର୍କରେ ନିମ୍ନମତେ ଆଲୋଚନା କରାଯାଇ ପାରେ । ଆଗେ ଯେଉଁ କାର୍ଯ୍ୟଟିକୁ କରିବାକୁ ବହୁ ଲୋକ ଲାଗୁଥିଲେ ଏବଂ ଏଥିପାଇଁ ବହୁ ସମୟର ଆବଶ୍ୟକ ହେଉଥିଲା, ବର୍ତ୍ତମାନର ଯନ୍ତ୍ର-ଯୁଗରେ ତାହା ଖୁବ୍ କମ୍ ସମୟରେ ଓ ଅଳ୍ପ ଆୟାସରେ କରାଯାଇ ପାରୁଛି । କର୍ମର ବହୁଳତା, ସମୟର ସ୍ୱଳ୍ପତା ଓ ମନର ଅସ୍ଥିରତା ସମୟେ ସମୟେ ସାହିତ୍ୟ ସୃଷ୍ଟି ପାଇଁ ଖାଦ୍ୟ ଯୋଗାଉଛି ଏବଂ ଏହାର ପ୍ରଭାବ ମଧ୍ୟ ଆମ ସାହିତ୍ୟ ଉପରେ ପଡ଼ୁଛି ।

ଫଳରେ ତତ୍‌କ୍ଷଣିକ-ବାଦର ସୃଷ୍ଟି ହେଉଛି, ଯାହା ଅଧିକେ ପ୍ରାୟ ସମସ୍ତଙ୍କ ମନ ସଚଳ ଓ ଉଦ୍ଦେଶ୍ୟହୀନ ହୋଇ ଉଠୁଛି ।

ସୃଜନଶୀଳ ଚିନ୍ତା ନଷ୍ଟ ହୋଇ ଯାନ୍ତ୍ରିକ ଉତ୍ତେଜନା ବୃଦ୍ଧିପାଇବା ଫଳରେ ବିପ୍ଳବବାଦର ମଧ୍ୟ ସୃଷ୍ଟି ହେଉଛି । କେତେକ ସମାଜରେ ପ୍ରଚଳିତ ବ୍ୟବସ୍ଥା ବିରୋଧରେ ଅତି ଉଗ୍ରମୂର୍ତ୍ତି ଧାରଣ କରୁଛନ୍ତି । ତେଣୁ ସାହିତ୍ୟ ସଂପ୍ରତି ମୁଖ୍ୟତଃ ଦେହବାଦକୁ ନେଇ ଆତ୍ମପ୍ରକାଶ କରୁଛି ।

ଆଧୁନିକ ଗଳ୍ପ, ଉପନ୍ୟାସ, କବିତା ପ୍ରଭୃତି ଉପରେ ଆଖି ବୁଲାଇଲେ ଦୈହିକ ଯୌନ ଆଚରଣର ଅଳ୍ପ ଦେହବାଦର ପ୍ରାଚୁର୍ଯ୍ୟ ମଧ୍ୟ

ସେଥିରେ ପରିଲକ୍ଷିତ ହୁଏ । ଏଥିରେ କଳାର କୌଶଳ ନ ଥାଏ । ସୃଜନ ଧର୍ମ ନ ଥାଏ କି ଚମତ୍କାର ବିଶ୍ଳେଷଣ ବି ନ ଥାଏ ।

ଆଗେ ଭଞ୍ଜଯୁଗୀୟ ସାହିତ୍ୟରେ ଯଦିଓ ଯୌନକଳା ଚିତ୍ରଣର ବହୁଳତା ସ୍ଥାନେ ସ୍ଥାନେ ଦେଖିବାକୁ ମିଳୁଥିଲା ତଥାପି ସେସବୁ କଠିନ ଶବ୍ଦାବଳୀ ଓ ଭାଷାଭଣ୍ଡାର ମଧ୍ୟରେ ନିଜକୁ ଆତ୍ମଗୋପନ କରିଥିଲା । ଯୌନକଳା ଏହାର ମୁଖ୍ୟ ଚିତ୍ରଣ ନ ହୋଇ କଳା, ଲାଳିତ୍ୟ ବର୍ଣ୍ଣ-ବ୍ୟଞ୍ଜନା, ବିଷୟବସ୍ତୁ ଓ ରସସମ୍ପଦରେ ଏହା ପୂର୍ଣ୍ଣତା ଲାଭକରିଥିଲା । ଆଧୁନିକ କବିତା ମୁଖ୍ୟତଃ ଖଣ୍ଡକାବ୍ୟ, ଦୁର୍ବୋଧ ଓ ଅଳ୍ପକ୍ଷଣ ସ୍ଥାୟୀ । ସୃଜନଧର୍ମ ଏଥିରେ ଆଦୌ ନ ଥିବାରୁ ଏ କବିତା ଥରେ ପାଠକଲେ ଦ୍ୱିତୀୟ ଥର ପାଇଁ କୌଣସି ପାଠକ ପାଠିକା ତାକୁ ଆଦର କରିବାର ଦେଖାଯାଏ ନାହିଁ ।

ଅତ୍ୟାଧୁନିକ ସାହିତ୍ୟ ବର୍ତ୍ତମାନ ଅସ୍ଥିର ଚିନ୍ତାଧାରା, ରୁଗ୍‌ଣ ଓ ବ୍ୟାଧିଗ୍ରସ୍ତ । ଟିକିଏ ଉତ୍ତାପ, ଟିକିଏ ଚମକ, ଟିକିଏ ଉତ୍ତେଜନା ପାଇବା ପାଇଁ ପ୍ରେମକୁ ଯେତେ ନଗ୍ନ ଭାଷାରେ ବର୍ଣ୍ଣନା କରିହେଇ ପାରେ ତାହାକୁ କରାଯାଉଛି, ବରଂ ଏ କ୍ଷେତ୍ରରେ ଦିନକୁ ଦିନ ପ୍ରତିଦ୍ୱନ୍ଦ୍ୱିତା ଚାଲିଛି । ପ୍ରତିଦ୍ୱନ୍ଦ୍ୱିତା ସୂଅରେ କବିତା, ଗଳ୍ପ ଇତ୍ୟାଦି ବୁଡ଼ିରହି ପୂର୍ଣ୍ଣ ଅର୍ଥପ୍ରକାଶ କରିବା ପରିବର୍ତ୍ତେ ପାଠକ ସମାଜକୁ ଏହା ଏକ ବିରାଟ Sex suspene ମଧ୍ୟକୁ ଠେଲି ଦେଉଛି । ପରବର୍ତ୍ତୀ ଚିନ୍ତାମଧ୍ୟ ସେଇଭଳି ତାପ ଦାୟକ । ଏଥିରେ ଆଦର୍ଶ ନାହିଁ, ପ୍ରେରଣା ନାହିଁ, ଚିତ୍ରଣ ଖୁବ୍ ଶସ୍ତା ଓ ଅଳଙ୍କାର ମଧ୍ୟ ବର୍ଜିତ, ଯେମିତି ଅଲୁହା ସତ୍ୟ ଘଟଣାକୁ ନଗ୍ନ ଭାବରେ ପ୍ରଚାର କରିବା ପାଇଁ ସାହିତ୍ୟର ସୃଷ୍ଟି ? ଗୋଦାବରୀଶ ନିତ୍ୟାନନ୍ଦ ମହାପାତ୍ର, ସଚି ରାଉତ ରାୟ ପ୍ରଭୃତି ଅଳ୍ପ କେତେଜଣଙ୍କୁ ବାଦ୍‌ଦେଲେ ଅତ୍ୟାଧୁନିକ ଲେଖକଙ୍କ ଚିନ୍ତାଧାରା କେମିତି କେମିତି ମନେ ହେଉଛି । ଏଥିରେ ସମାଜର ଚଳିତ ରୀତିନୀତିବିରୋଧରେ ଯଦିଓ ବିଦ୍ରୋହ ଅଛି ତଥାପି ଭବିଷ୍ୟତ ସମ୍ପର୍କରେ ନିର୍ଦ୍ଦେଶ ନାହିଁ, ଦ୍ୟୋତନା ନାହିଁ କି ପ୍ରେରଣା ମଧ୍ୟ ନାହିଁ । ଯାହା ଅଛି କେବଳ ବର୍ତ୍ତମାନ ପାଇଁ ସମ୍ପୂର୍ଣ୍ଣ ତତ୍‌କ୍ଷଣିକ ବାଦ । ଏଥିପାଇଁ ବ୍ୟବସାୟୀ ସାହିତ୍ୟିକମାନେ ସାଧାରଣ ପାଠକର ରୁଚିକୁନେଇ ଶସ୍ତାଧରଣର ପ୍ରଣୟ ବ୍ୟାପାର ବା ଡିଟେକ୍‌ଟିଭ ପ୍ରଭୃତି ରୋମାଞ୍ଚକର ସାହିତ୍ୟ ସୃଷ୍ଟି କରିବାରେ ବ୍ୟସ୍ତ ।

ସାହିତ୍ୟ ଜଗତରେ ଆଧୁନିକ ସୃଷ୍ଟିକୁ ପୁରାତନ ସହିତ ତୁଳନା କଲେ ଆକାଶ ପାତାଳ ପାର୍ଥକ୍ୟ ପରିଲକ୍ଷିତ ହୁଏ । ସାହିତ୍ୟର ପୃଷ୍ଠଭୂମି ଆଲୋଚନା କଲେ ଜଣାଯାଏ, ଏହା ସମାଜର ବିଭିନ୍ନ ପରିସ୍ଥିତି ଉପରେ ନିର୍ଭର କରେ । ସମାଜର ପରିବର୍ତ୍ତନ ସଙ୍ଗେ ସଙ୍ଗେ ମନୁଷ୍ୟର ଚିନ୍ତାଧାରା ବଦଳିଯାଏ ଏବଂ ସାହିତ୍ୟ ଓ ସୃଷ୍ଟି ମଧ୍ୟ ବଦଳେ, ଭଞ୍ଜୀୟ ଯୁଗର ସମାଜ ଓ ଚିନ୍ତାଧାରା ସହ ମଧ୍ୟଯୁଗୀୟ ଓ ଆଧୁନିକ ଯୁଗର ଚିନ୍ତାଧାରା, ସମାଜିକ ଚାଲିଚଳନ, ରୀତିନୀତି ମଧ୍ୟରେ ବହୁ ପାର୍ଥକ୍ୟ ପରିଲକ୍ଷିତ ହୁଏ । ସାଧାରଣତଃ ମନୁଷ୍ୟର ଦୈନନ୍ଦିନ ଚାଲିଚଳନ, ସାମାଜିକ ବିଧି ବିଧାନ, ଭବିଷ୍ୟତରେ ସଂସ୍କାର ଓ ଧର୍ମ ଉପରେ ସାହିତ୍ୟର ଭିତ୍ତି ସ୍ଥାପନ କରାଯାଇଥାଏ । ଭଞ୍ଜଯୁଗୀୟ ସାହିତ୍ୟରେ ଯୌନକଳାର ବିସ୍ତାର କେବଳ ସାହିତ୍ୟକୁ ରସଯୁକ୍ତ କରିବା ପାଇଁ ଉଦ୍ଦିଷ୍ଟ ଥିଲା ଏବଂ ଏହାର ମୁଖ୍ୟଭାଗ ଚରିତ୍ର ଚିତ୍ରଣ, କଳା ବିନ୍ୟାସ, ସ୍ୱରଯୋଜନା ଓ ଅଳଙ୍କାର ପ୍ରଭୃତିରେ ଭରପୂର ଥିଲା, ଏହା ପୂର୍ବର ଓଡ଼ିଆ ସାହିତ୍ୟକୁ ସମ୍ପୂର୍ଣ୍ଣ ସଂସ୍କୃତ ପ୍ରଧାନ କରିବାକୁ ହେବ । ଭଞ୍ଜଯୁଗର ଅବସାନ ପରେ ରାଧାନାଥ ଯୁଗସ୍ରଷ୍ଟା ହିସାବରେ ଦେଖା ଦେଲେ ଏବଂ ଫକୀରମୋହନ ଓ ମଧୁସୂଦନ ଯୁଗୋପଯୋଗୀ ସାହିତ୍ୟ ସୃଷ୍ଟି କରିବାରେ ବ୍ରତୀ ହେଲେ । ଓଡ଼ିଆଙ୍କୁ ବ୍ୟଙ୍ଗ ବିଦ୍ରୂପ କରି ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୁହେଁ ବୋଲି ଅନ୍ୟପ୍ରଦେଶ ଆଗତ କେତେକ ରାଜକର୍ମଚାରୀ ପ୍ରଚାର ଆରମ୍ଭ କଲାବେଳେ—ଉପରୋକ୍ତ ସାହିତ୍ୟ ରଥୀମାନଙ୍କର ଆବିର୍ଭାବ ହେଲା । ଏମାନେ ପ୍ରକୃତରେ ଓଡ଼ିଆ ସାହିତ୍ୟରେ ଯୁଗାନ୍ତର ସୃଷ୍ଟି କରିବା ସହିତ ଓଡ଼ିଆ ଜାତିର କୃଷ୍ଟି, ସଂସ୍କୃତି ଓ ମୌଳିକତା ପ୍ରତିପାଦନ କରିଥିଲେ । ସେହି ଦିନଠାରୁ ଏ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟକୁ ଉନ୍ନତ କରିବାର ବାସନା ଓଡ଼ିଆ ପ୍ରାଣରେ ଜାଗ୍ରତ ହୋଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଘଟଣା ପ୍ରବାହରେ କ୍ରମେ ଓଡ଼ିଆ ସାହିତ୍ୟ ଭାରତୀୟ ଅନ୍ୟାନ୍ୟ ସାହିତ୍ୟ ଭଳି ରୂପାନ୍ତରୀୟ ହୋଇ ଇଂରାଜୀ ଢାଞ୍ଚାରେ ଛପିବାକୁ ଆଡ଼କୁ ଆଗେଇ ଆସୁଛି ।

ଆଧୁନିକ ସାହିତ୍ୟରେ ବିଶେଷ କରି କବିତା ବିଭାଗ ପ୍ରତି ଦୃଷ୍ଟି ନିକ୍ଷେପ କଲେ ଏହା କ୍ରମେ ଦୁର୍ବୋଧ ଭଳି ମନେ ହେଉଛି । ଏଥିରୁ ସାଧାରଣ ପାଠକ ପାଠିକାଙ୍କ ପକ୍ଷରେ ରସ ଆସ୍ୱାଦନ କରିବା ସମ୍ଭବ ପର ହେଉନି, ଆଧୁନିକ କବିତାର ଆରମ୍ଭ ସହିତ ଶେଷର ଯେପରି ସମ୍ପର୍କ ନଥିଲା ପରି ମନେ ହେଉଛି । ମୋଟାମୋଟି ଏହା ଏକ ବିକ୍ଷୁବ୍ଧ

ମାନସିକ ଯନ୍ତ୍ରଣାର କ୍ଷଣିକ ପ୍ରକାଶ ହୋଇଥିବାରୁ, ଧ୍ୱଂସ ଓ ବିପ୍ଳବର ପୂର୍ବାଭାସ ରୂପେ ଦେଖା ଦେଇଥିବାରୁ ପାଠକ ପାଠିକାଙ୍କର ଆଦୌ ଦୃଷ୍ଟି ଆକର୍ଷଣ କରି ପାରୁ ନାହିଁ ।

ସାଧାରଣତଃ ବର୍ତ୍ତମାନର ସାହିତ୍ୟ ସୃଷ୍ଟି ଏକ କ୍ଷଣିକ ଅବସ୍ଥାର ବା ଚିନ୍ତାଧାରାର ବିଶ୍ଳେଷଣ ଓ ବିଶେଷଣର ଏହା ଆଧୁନିକ ପାଶ୍ଚାତ୍ୟ ଚିନ୍ତାଧାରା ଓ ସାହିତ୍ୟକୁ ବହୁଳାଂଶରେ ଅନୁସରଣ କରୁଛି । ପାଶ୍ଚାତ୍ୟ ଦୃଷ୍ଟିଭଙ୍ଗୀ ଓ ଗୃହଚଳନ ନେଇ ଇଂରାଜୀ ସାହିତ୍ୟର ସୃଷ୍ଟି । ଓଡ଼ିଆ ସାହିତ୍ୟ ରଥୀମାନେ ଇଂରାଜୀ ଭାଷା ଢାଞ୍ଚାରେ ଓଡ଼ିଆ ସାହିତ୍ୟ ରଚନା କରିବାକୁ ପ୍ରୟାସୀ ହେଉଛନ୍ତି ଏବଂ ଏଥିରେ ଆନ୍ତର୍ଜାତୀ ଭାବରେ ପରିଚିତ ହେବା ଚେଷ୍ଟାରେ ବ୍ୟାପୃତ ।

ବିଶେଷ କରି କବିତାଗୁଡ଼ିକ ଇଂରାଜୀ କବିତା ଢଙ୍ଗରେ ଲେଖା ହେବା ଫଳରେ ଚିରନ୍ତନ ଓଡ଼ିଆ କାବ୍ୟ, କବିତା ତାର ସୁଷମା ହରାଇ ବସୁଛି । ଏଥିରେ ସାଧାରଣ ପାଠକ ପାଠିକା ଏଭଳି ଇଂରାଜୀ ଢାଞ୍ଚାର ଓଡ଼ିଆ କବିତା—ପାଠ କରିବାକୁ କେବଳ ସୁଖ ଅନୁଭବ କରୁ ନାହାନ୍ତି କି ପାଠକଲା ପରେ ମଧ୍ୟ ଏସବୁ କବିତା ପାଠକ ପାଠିକାଙ୍କ ମନରେ ସେମିତି କିଛି ଚିନ୍ତା ବା ପ୍ରେରଣା ଦେଇ ପାରୁ ନାହିଁ । ଓଡ଼ିଆ ସଂସ୍କୃତି ଓ ଗୃହଚଳନ ସହିତ ଏ ଲେଖାଗୁଡ଼ିକର ଆଦୌ ସାମଞ୍ଜସ୍ୟ ରହୁ ନାହିଁ । ଏଥିରେ ଯଦିଓ ଶବ୍ଦ କାଠିନ୍ୟ ନାହିଁ ତଥାପି ଏହାର ଭାବଧାରା ଏତେ ଖାପଛଡ଼ା ଯେ ଏହା ସାଧାରଣ ପାଠକର ରୁଚି ସହିତ ସଂହତି ରକ୍ଷା କରି ପାରୁନି । ଉପନ୍ୟାସ ସୃଷ୍ଟିରେ ମଧ୍ୟ ଏମିତି ଅନେକ କିଛି ତ୍ରୁଟି ପରିଲକ୍ଷିତ ହେଉଛି । ଆଜିର ଉପନ୍ୟାସ ତାର ପରମ୍ପରାକୁ ଛିନ୍ନ ବିଚ୍ଛିନ୍ନ କରି ଓଡ଼ିଆ ସମାଜ ବା ଭାରତୀୟ ସମାଜର ରୀତିନୀତି ଗୃହଚଳନ ସହିତ ନିଜକୁ ଖାପ ନଖୁଆଇ ଛଡ଼ା ଫୁଲପରି ମଳିନ ଦେଖା ଯାଉଛି ।

ବର୍ତ୍ତମାନ ସାହିତ୍ୟରେ ମୁଖ୍ୟଭାଗ ଉପନ୍ୟାସ ଅଧିକାର କରିଛି କହିଲେ ଚଳେ । ସାଧାରଣତଃ ଏହା ଆମ ଜୀବନର ନାନା ଘଟଣା ଓ ମାନସିକ ଚିନ୍ତାଧାରା ତଥା ସାମାଜିକ, ରାଜନୈତିକ ଘଟଣାର ନିଚ୍ଛକ୍ ବିବରଣୀ ପ୍ରଦାନ କରିଥାଏ । ଆଗେ ଉପନ୍ୟାସମାନଙ୍କରେ ଚରିତ୍ର ପ୍ରଧାନ ପ୍ରତି ଗୁରୁତ୍ୱ ଦିଆଯାଉଥିଲା । ବର୍ତ୍ତମାନ ବିଶେଷ କରି ମାନସିକ ଭାବଧାରା ଉପରେ ବିଶେଷ ପ୍ରାଧାନ୍ୟ ଦିଆଯାଉଛି ଏବଂ ଏହା ଅତ୍ୟାଧୁନିକ

ଲେଖାର ସଙ୍କେତ ବହନ କରୁଛି ବୋଲି ସୂଚନା ଦିଆ ଯାଉଛି । ଯାହା ହେଉ ଉପନ୍ୟାସଗୁଡ଼ିକରେ ଶୈଳୀ ଯାହା ହେଉନା କାହିଁକି ପ୍ରତ୍ୟେକରେ କିଛିନା କିଛି ପାଥେୟ ଯହାକି ମନୁଷ୍ୟକୁ ଅନୁପ୍ରାଣିତ କରିବ ସେଇଭଳି କିଛିଥିବା ଉଚିତ୍ । ମୋଟା ମୋଟି ପାଠକଙ୍କପରେ ପାଠକ ପାଠିକା ରିକ୍ତ ନହୁଅନ୍ତୁ କିବା ଫାଙ୍କା ଅନୁଭବ ନକରନ୍ତୁ ।

ସାଂପ୍ରତିକ ସାହିତ୍ୟ ଜୀବନର ବାସ୍ତବତାକୁ ପରିତ୍ୟାଗ କରି ଏକ କଳ୍ପନାରାଜ୍ୟରେ ଏବଂ ଖାମ ଖେୟାଲି ଇତସ୍ତତ ଜୀବନ ଉପରେ ଗତି କରୁଥିବା ପରି ମନେହୁଏ । ଏହାକୁ କେବଳ Theoritical କହିଲେ ଚଳେ । ଧାରାବାହିକ ଶୃଙ୍ଖଳା କ୍ରମେ ଶିଥିଳ ହୋଇ ଆସୁଥିବା ପରିଲକ୍ଷିତ ହୁଏ । ବର୍ତ୍ତମାନ ରଚନାଗୁଡ଼ିକ ସାଂପ୍ରତିକ ଗ୍ରାମ ବା ସହର ପରିବେଶର କୌଣସି ସୂଚନା ଦିଏ ନାହିଁ । ଇଂରାଜ ସଭ୍ୟତା ଆଡ଼କୁ ଆକୃଷ୍ଟ ହୋଇ ସମାଜର ଖୁବ୍ କମ୍ ସଂଖ୍ୟକ ଲୋକ ପାଶ୍ଚାତ୍ୟ ବେଶ ପୋଷାକ, ଚାଲିଚଳନ ଆଦବକାଏଦା ଢଙ୍ଗରେ ନିଜ ନିଜର ପରିବେଶ ଗଢ଼ିବାକୁ ଯଦିଓ ଚେଷ୍ଟା କରୁଛନ୍ତି ତଥାପି ପ୍ରଚଳିତ ଗତାନୁ ଗତିକ ସଭ୍ୟତା ବିରୁଧରେ ପ୍ରକାଶ୍ୟରେ କିଛି କହୁ ନାହାନ୍ତି । ସେଇଭଳି ପାଶ୍ଚାତ୍ୟ ସାହିତ୍ୟର ଚିନ୍ତାଧାରାକୁ ମଧ୍ୟ ଆଜିର ସାହିତ୍ୟିକ ସାହିତ୍ୟରେ ସ୍ଥାନ ଦେବାରୁ ବଞ୍ଚିତ ହେଉ ନାହିଁ । କିନ୍ତୁ ସେଗୁଡ଼ିକ ବାସ୍ତବ ଜୀବନର କୌଣସି ଅଂଶ ସହିତ ମେଳ ରଖୁ ନାହିଁ ।

ପାଶ୍ଚାତ୍ୟ ସଭ୍ୟତାର ବଲନାଚ, ନାଇଟକ୍ଲବ, କଣ୍ଡିର ଗାର୍ଡ୍ଡନ ଶିକ୍ଷାକୁ ଯଦିଓ କେତେକ ଅନୁକରଣ କରୁଛନ୍ତି ତାର ଫଳାଫଳ ସେମାନେ ପସନ୍ଦ କରୁନାହାନ୍ତି ଏବଂ ଉତ୍କଟ ବଦହଜମି ଭଳି ଜୀବନକୁ ପର ଅବସ୍ଥାରେ ଦୁଃସହ ମନେ କରୁଛନ୍ତି । ଭାରତୀୟ ସଭ୍ୟତା ଉପରୋକ୍ତ ଅଭ୍ୟାସଫଳରେ ସଂପୂର୍ଣ୍ଣ ଧ୍ୱଂସ ପ୍ରାପ୍ତ ହୋଇ ଯାଉଛି । ପରବର୍ତ୍ତୀ ଜୀବନରେ ସେମାନେ ଏକଥା ହୃଦୟଙ୍ଗମ କଲାବେଳକୁ ସମୟ ସେମାନଙ୍କୁ ପଛରେ ପକାଇ କ୍ଷିପ୍ର ଗତିରେ ଆଗେଇ ଯାଉଛି ଏବଂ ତାଙ୍କର ଶେଷ ଜୀବନ ହା ହୁତାଶମୟ ହେଉଛି । ଆମ ସାଂପ୍ରତିକ ସାହିତ୍ୟ ଠିକ୍ ଏଇଭଳି ଇଉରୋପୀୟ ସାହିତ୍ୟ ଦ୍ୱାରା ପ୍ରଭାବିତ ହୋଇ ସିମିତ ଗଢ଼ି ଉଠୁଛି ଏଥିରେ ବାସ୍ତବ ଜଗତର କୌଣସି ଚିହ୍ନ ବର୍ତ୍ତି ନାହିଁ, ଫଳରେ ମନସ୍ୱୀ ପାଠକ ଯେତେବେଳେ ବର୍ଣ୍ଣନା ସହ ବାସ୍ତବର କୌଣସି ମେଳ

ଦେଖିବାକୁ ନପାଉଛି ସେତେବେଳେ ସେ ହତୋତ୍ସାହ ହୋଇ ପଡ଼ୁଛି ଏବଂ ସେ ସେଇଭଳି ରଚନାରୁ କିଛି ସଂଗ୍ରହ କରିବା ଦୂରେଥାଉ ଠିକ୍ ମ୍ୟାଲେରିଆ ରୋଗୀ ଦେହରେ ଛାଡ଼ି ଆସିବା ସହିତ ମନଟା ତାର ଭାରକ୍ରାନ୍ତ ହୋଇ ପଡ଼ୁଛି । ତେଣୁ କ୍ରମେ କ୍ରମେ ସେଗୁଡ଼ିକ ଆଡ଼କୁ ତାର ମନ ଘୁଞ୍ଚି ଘୁଞ୍ଚି ଆସୁଛି । ତେଣୁ ସେ ଆଜି କୁଇନାଇନ୍ ଖୋଜୁଛି । ଔପନ୍ୟାସିକ ଫିଲଡ ଥରେ କହିଥିଲେ—

'The novelist is not a mere Chronicler but historian, ସାଧାରଣତଃ ସାହିତ୍ୟରେ ସମସାମୟିକ ଜୀବନର ପ୍ରତିଛବି ରହିବାର କଥା । ଏଥିରେ ପୁରାତନ ଜୀବନର ପୃଷ୍ଠଭୂମି ଉପରେ ଭବିଷ୍ୟତ ଜୀବନ ପାଇଁ ଇଙ୍ଗିତ ରହିବା ଉଚିତ୍ । ସମୟ ଓ ସମାଜର ପରିବର୍ତ୍ତନ ସଙ୍ଗେ ସଙ୍ଗେ ମଣିଷର ଜୀବନ ଧାରଣ ପ୍ରଣାଳୀ, ଆଚାର ବ୍ୟବହାର, ଚିନ୍ତା ଓ ପ୍ରବୃତ୍ତିରେ ପରିବର୍ତ୍ତନ ଘଟିବାର କଥା । କାରଣ ସାହିତ୍ୟ ମଧ୍ୟ ସାମାଜିକ ପରିବର୍ତ୍ତନ ସଙ୍ଗେ ସଙ୍ଗେ କେତେକାଂଶରେ ବଦଳିଯାଏ । ପ୍ରତ୍ୟେକ ଯୁଗ ଅନୁଯାୟୀ ସାହିତ୍ୟ ତାର ପୃଷ୍ଠଭୂମି ଉପରେ ଠିଆହେବା ଦେଖାଯାଏ । ସାଂପ୍ରତିକ ସାହିତ୍ୟ ବିଶେଷ କରି Quite up to-date ସାହିତ୍ୟର ପାଶ୍ଚାତ୍ୟ ମୋହ ଅତି ଉତ୍କଟ ।

ଓଡ଼ିଆ ସାହିତ୍ୟର ଆଦିକବି ଶାରଳାଦାସଙ୍କଠାରୁ ଆରମ୍ଭ କରି ମାର୍କଣ୍ଡଦାସଙ୍କ 'କେଶବ କୋଇଲି' ବତ୍ସାଦାସଙ୍କ 'କଳଶା ଚଉତିଶା' ପର୍ଯ୍ୟନ୍ତ, ମହାଭାରତ ଭଳି ବିରାଟ ଗ୍ରନ୍ଥଠାରୁ ଶ୍ରେଷ୍ଠ ଶ୍ରେଷ୍ଠ କଳଶା, ଚଉତିଶା ପର୍ଯ୍ୟନ୍ତ ସମସ୍ତ ରଚନା ପୁରାଣ ଯୁଗର ପୌରାଣିକତାରେ ଭରପୂର । କିନ୍ତୁ ଭଞ୍ଜଯୁଗରେ ସାହିତ୍ୟ ଶବ୍ଦାଡମ୍ବର ଓ ଅଳଙ୍କାର ପୂର୍ଣ୍ଣ ପାଣ୍ଡିତ୍ୟ ମଧ୍ୟରେ ରୁଦ୍ଧି ହୋଇ ପାଠକ କ୍ରମେ ଅତିଷ୍ଠ ହୋଇପଡ଼ୁଛି । ଆଜିର ସାହିତ୍ୟ ପଠନପାଇଁ ପାଠକ ସମ ଜ ଅନୁରୂପ ଯନ୍ତ୍ରଣା ଅନୁଭବ କରୁଛନ୍ତି ।

ଠିକ୍ ଏତିକବେଳେ ପାଶ୍ଚାତ୍ୟ ସାହିତ୍ୟ ପ୍ରବୁଦ୍ଧ ବଙ୍ଗଳା ସାହିତ୍ୟର ବାସ୍ତବ ଜୀବନର ଅନୁଭୂତି, ସୁଖ ଦୁଃଖ ଓ ସମ୍ବେଦନ ପାଠକଙ୍କୁ ଖୁବ୍ ରୁଚିକର ବୋଧ ହେଲା । ଏହିଠାରୁ ହିଁ ଆରମ୍ଭ ହେଲା ଆଧୁନିକ ଓଡ଼ିଆ ସାହିତ୍ୟ । ଆଧୁନିକ ଓଡ଼ିଆ ସାହିତ୍ୟ ବର୍ତ୍ତମାନ ପରିପ୍ରେକ୍ଷୀରେ ଗତାନୁଗତିକତାକୁ ସମ୍ପୂର୍ଣ୍ଣ ଭୁଲିଯାଇ ପାଶ୍ଚାତ୍ୟ ପଦ୍ଧତିକୁ

ଅନୁସରଣ କଲା, ଫଳରେ ଏହାର ପଦ୍ୟଗୁଡ଼ିକ କ୍ଷଣସ୍ଥାୟୀ, ଇତ୍ୟ ସ୍ଥତଃ ମନ ଓ ଚୈତନ୍ୟର ପରପ୍ରକାଶ ରୂପେ ଦେଖାଦେଲା ।

ଉପନ୍ୟାସଗୁଡ଼ିକ ସାଧାରଣତଃ ରାଜନୈତିକ ଓ ସାଂସ୍କୃତିକ କ୍ଷେତ୍ରରେ ଉଚ୍ଚ ବିପ୍ଳବର ଧ୍ୱଜା ଉଡ଼ାଇଲା । ଏଇ ବିପ୍ଳବ ପରିଚାଳନା କରିବାକୁ ଆଗେଇ ଯାଇ ଆଜିର ସାହିତ୍ୟ ନିଜର ସଂସ୍କୃତିକୁ ଭୁଲି ପଶ୍ଚିମ ଚିନ୍ତ ପରିବେଷଣ କରିବାରେ ବ୍ୟସ୍ତ ରହିଲା । ଯଦ୍ୱାରା ଓଡ଼ିଆ ସମାଜରେ ପାଶ୍ଚାତ୍ୟ ସଭ୍ୟତାର ଚିନ୍ତାଧାରା ଦିନକୁ ଦିନ ଅପ୍ରାସଙ୍ଗିକ ବୋଧ ହେଲା ।

ବିଶିଷ୍ଟ ସାହିତ୍ୟକମାନେ କୁହନ୍ତି ସାହିତ୍ୟ ରସ-ଯମୁନା ଓ ଜ୍ଞାନ-ଗଙ୍ଗାର ମଧୁର ସଙ୍ଗମସ୍ଥଳ ଏବଂ ଏହା ସଚେତନ ମାନବ ସମାଜର ଭାବମୟ ପ୍ରକାଶ ମାତ୍ର । ସମାଜ ମାନବିକ ବିକାଶ ଓ ପ୍ରତିଷ୍ଠା ଦିଗରେ ଯେଉଁଭଳି ଅନୁକୂଳ ଓ ପ୍ରତିକୂଳ ପରିବେଶମାନ ସୃଷ୍ଟିକରେ, ସାହିତ୍ୟ ଓ କଳା ଠିକ୍ ସେଇଭଳି ଭାବପ୍ରକାଶ କରେ । ତେଣୁ ସମାଜକୁ ସାହିତ୍ୟର ଜନକ ବୋଲି କୁହା ଯାଇଅଛି ।

ଏଥିପାଇଁ ଖ୍ରୀଷ୍ଟଫର କଡ୍‌ଉଏଲ କହିଛନ୍ତି—

"Art is the product of society as the pearl is the product of the oysten and to stand out side art is the stand out side society." ।

ପୁଣି ସାହିତ୍ୟ କେବଳ ପୁରାତନକୁ ପୂଜାକରେ ନାହିଁ । ନୂତନକୁ ଆବାହନ କରେ ମଧ୍ୟ । ସାହିତ୍ୟ ଅତ୍ୟାଚାର ବିରୁଦ୍ଧରେ ଅସି ଉତ୍ତୋଳନ କରେ । ଗଣ ଆନ୍ଦୋଳନର ଭୂମିକା ପ୍ରସ୍ତୁତ କରେ । ମାକ୍‌ସିମ୍ ଗର୍କୀଙ୍କ 'mother' ଉପନ୍ୟାସ ରୁଷ ଦେଶର ଗଣ ଆନ୍ଦୋଳନକୁ ଅଧିକ ମାତ୍ରାରେ ପ୍ରଭାବିତ କରି ପାରିଥିଲା । ଯାହାଫଳରେ କି କମ୍ୟୁନିଜମ୍ ରାଷ୍ଟ୍ରମାନଙ୍କର ସୃଷ୍ଟି । ସେଇଭଳି ଆମେରିକାର ବିଖ୍ୟାତ ନାରୀକବି ମିସେସ୍ ଷ୍ଟୋଙ୍କର— 'Uncle Tom's Cabin' ପ୍ରକାଶ ପାଇବା ପରେ ସେଠାକାର ସମାଜର ବର୍ଣ୍ଣ ବିଦ୍ୱେଷ ଓ କ୍ରୀତଦାସ ପ୍ରଥାର କ୍ରୂରତା ବିରୋଧରେ ଜନମତ ପ୍ରକାଶ ପାଇବାକୁ ଲାଗିଲା ଏଇଭଳି ପରାଧୀନ ଭାରତ ଓ ବଙ୍ଗଳା ଦେଶକୁ ଆଶାର ଆଲୋକ ଦେଇ କବୀନ୍ଦ୍ର ରବୀନ୍ଦ୍ର ନାଥ ଠାକୁର ସ୍ୱାଧୀନତା ଆନ୍ଦୋଳନକୁ ଲକ୍ଷ୍ୟ କରି ଗାଇ ଉଠିଲେ—

"ପୂରୁବ ଦଗେର ସୁରଜ ଉଠେଛେ
ଆଲୋକେ ଆଲୋକ ମୟ
ଜୟ ବାଙ୍ଗଲାର ଜୟ ।"

ଠିକ୍ ଏଇ ସମୟରେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହୁଏ । ଦ୍ୱିତୀୟ ମହାଯୁଦ୍ଧର ଭୟାବହତା ଭାରତୀୟମାନେ ପ୍ରତ୍ୟକ୍ଷଭାବରେ ଅଙ୍ଗେ ନ ଲଭାଇ ଥିଲେ ସୁଦ୍ଧା ପରୋକ୍ଷ ଭାବରେ ଭାରତୀୟ ଅର୍ଥନୀତି ଓ ସାମାଜିକ ନୀତିକୁ ଏହା ପ୍ରଚଣ୍ଡ ଆଘାତ ଦେଇଥିଲା । ଏଥିରେ ସର୍ବସ୍ୱାନ୍ତ ହୋଇ ମାନବ ହୃଦୟଙ୍ଗମ କଲା ଯେ ବିଜ୍ଞାନ ମନୁଷ୍ୟକୁ ନୂତନତାର ସନ୍ଧାନ ଦେଇଛି ସତ; କିନ୍ତୁ ସଂସ୍କୃତିହୀନ କରିପକାଇଛି । ଏହି ବ୍ୟର୍ଥତା ଭିତରେ ବହୁ 'ବାଦ'ର ସୃଷ୍ଟି ହୁଏ । Symibolism, Realism ଇତ୍ୟାଦି ସହ ଫ୍ରେଡ଼ଙ୍କର 'ଯୌନତତ୍ତ୍ୱ', ମାର୍କସଙ୍କର 'ସାମ୍ୟବାଦ', ୟୁଙ୍ଗଙ୍କ 'ସ୍ୱପ୍ନତତ୍ତ୍ୱ', ଡାରଉଇନ୍ଙ୍କ 'ବିବର୍ତ୍ତନବାଦ' ଓ ଋଷିଆର ସାହିତ୍ୟ-କ୍ଷେତ୍ରରେ ମଣିଷର ଅବଚେତନ ମନର ବିଶ୍ଳେଷଣ ଗୃହୀତ ହେଲା । ଯୁଦ୍ଧପରେ ଅର୍ଥନୈତିକ ବୈଷମ୍ୟ ଉତ୍ତରୋତ୍ତର ବଢ଼ିଚାଲିବାକୁ ଆରମ୍ଭ କଲା । ତା ସଙ୍ଗକୁ ସାମାଜିକ ସ୍ଥିତି ଦ୍ରୁତ ବେଗରେ ବଦଳିବାରେ ମଧ୍ୟ ଲାଗିଛି । ତୁଙ୍ଗ ଗଗନ ଭେଦୀ ଅଟ୍ଟାଳିକା ନିକଟରେ ମାଟିର କୁଡ଼ିଆ ନିଜର ସତ୍ତା ହରାଇ ବସିଛି ।

ଫଳରେ ସୃଷ୍ଟି ହୋଇଛି ମାନସିକ ଦ୍ୱନ୍ଦ୍ୱ । ଯୁଦ୍ଧୋତ୍ତର ଏଇ ବ୍ୟର୍ଥତା ଭିତରେ ପରସ୍ପରର ବିଶ୍ୱାସ ଓ ବୁଝାମଣାର ଭିତ୍ତି ଦୋହଲି ଯାଇଛି ।

ଏଇ ନୂତନ ଚିତ୍ର ଅଙ୍କନ କରିବା ପାଇଁ ନୂତନ ରଙ୍ଗର ଆବଶ୍ୟକ ହେବା ସ୍ୱାଭାବିକ । ନୂତନ ଚିତ୍ର ଅଙ୍କନରେ ସଫଳ ଶିଳ୍ପୀ ହିସାବରେ ଓଡ଼ିଆ ସାହିତ୍ୟ ଜଗତରେ ସଚି ରାଉତରା, ଅନନ୍ତ ପଟ୍ଟନାୟକ, ରମାକାନ୍ତ ରଥ ଓ ସୀତାକାନ୍ତ ମହାପାତ୍ର ପ୍ରଭୃତି ଦେଖା ଦେଇଛନ୍ତି । ଏମାନେ ନୂତନ ଚିତ୍ର ଅଙ୍କନରେ ଅନେକ ପରିମାଣରେ ସଫଳ ଲାଭ କରିଥିଲେ ବି ସୁଦ୍ଧା ଓଡ଼ିଆ ପାଠକପାଠିକାଙ୍କ ମନରୁ ରସହୀନତା ଓ ବ୍ୟର୍ଥତା ବୋଧର ଭାବକୁ ସମ୍ପୂର୍ଣ୍ଣମାତ୍ରାରେ ଦୂରୀଭୂତ କରାଇ ପାରିନାହାନ୍ତି ।

ଓଡ଼ିଆ ପାଶ୍ଚାତ୍ୟ ଶିଳ୍ପ ବିପ୍ଳବଠାରୁ ବହୁଦୂରରେ ଥିବାରୁ ସାହିତ୍ୟରେ ଏହାର ପ୍ରତିଫଳନ ଓ ଛବି ଗ୍ରହଣ କରିବା ଏକାନ୍ତ ଦୁରୂହ ।

ତେଣୁ ଏ ସୃଷ୍ଟି ଓଡ଼ିଆ ପାଠକପାଠିକାଙ୍କ ପକ୍ଷରେ ଦୁର୍ବହ ଓ ଦୁର୍ବୋଧ । ତା ବ୍ୟତୀତ ଆଧୁନିକ ସୃଷ୍ଟିରେ ଭବିଷ୍ୟତର ଇଙ୍ଗିତ ଅଭାବରୁ ପାଠକ-ପାଠିକା ବେଳକୁ ବେଳ ହା' ହୁତାଶ ଭିତରେ ରହି ଯାଉଛନ୍ତି । ନୈରାଶ୍ୟ ଦିନକୁଦିନ ବ୍ୟାପି ଯାଉଛି । ଏଇ ବିରାଟ ବୈରାଗ୍ୟର କ୍ଷଣିକ ମୁକ୍ତି ପାଇଁ ସମାଜ ସିମିତି ପାଗଳ ହୋଇ ଉଠୁଛି । ହେବା ସ୍ୱାଭାବିକ ମଧ୍ୟ । ଏଇ ବିରାଟ ଅନ୍ଧକାର ମଧ୍ୟରେ ମଶାଲର ଆବଶ୍ୟକତା ଯଥେଷ୍ଟ ରହିଛି । ଯେତେ ଦୂର ମନେହୁଏ ଆମର ଭବିଷ୍ୟତ ସାହିତ୍ୟିକମାନେ ସାହିତ୍ୟ ଜଗତର ବର୍ତ୍ତମାନ ଅବସ୍ଥାକୁ 'ନୈରାଶ୍ୟର ଯୁଗ' ବୋଲି ଅଭିହିତ କରିବେ ।

ବର୍ତ୍ତମାନ ଏତାଦୃଶ୍ୟ ଅବସ୍ଥାରେ ପ୍ରକୃତ ସାହିତ୍ୟ ପ୍ରେମୀ, ଲେଖକ, ଲେଖିକା ତଥା ପାଠକ, ପାଠିକାଙ୍କର ପ୍ରଧାନ କର୍ତ୍ତବ୍ୟ ହେଉଛି ସମାଜକୁ ଏ ନୈରାଶ୍ୟରୁ ମୁକ୍ତ କରିବା, କାରଣ ମନୁଷ୍ୟ ସର୍ବଦା ଆଶାବାଦୀ, ଆଶା ନ ଥିଲେ ମାନବ ସଂସାର ଲୋପ ପାଇବା ସହିତ ମାନବର ବିଚାର, ବୁଦ୍ଧି ଓ ଚିନ୍ତାଧାରା ମଧ୍ୟ ଲୋପ ପାଇଯାଆନ୍ତା ।

ପାଶ୍ଚାତ୍ୟ ଜଗତର ଏଇଭଳି ଚିନ୍ତାଧାରା ଦିନକୁ ଦିନ ଉଦ୍ଜାନ ପରମାଣୁ ବୋମା ସୃଷ୍ଟି କରିବାରେ ବ୍ୟସ୍ତ ରହି ସେହି ଆତଙ୍କରେ ସେ ପ୍ରତି ମୂହୂର୍ତ୍ତରେ ମରଣର ପଦଧ୍ୱନି ଶୁଣୁଛି । ମୋର ନିଶ୍ଚିତ ଭାବେ ମନେହୁଏ ଏଇଭଳି ଚିନ୍ତାଧାରା ନିଶ୍ଚୟ ଦିନେନା ଦିନେ ଭାରତୀୟମାନଙ୍କୁ ଠିକ୍ ଏଇପରି ଏକ ଆତଙ୍କ ରାଜ୍ୟରେ ପହଞ୍ଚାଇ ଦେବ ଯେଉଁଠି ସୁଷମା ନ ଥିବ, ନ ଥିବ କଳା, ନ ଥିବ ଲାଳିତ୍ୟ କିମ୍ବା ଉପଭୋଗ, ଏକଥା ଏବେଠୁଁ ଆମ ସାହିତ୍ୟ ରଥୀମାନେ ଅନୁଭବ କରିବା ଉଚିତ୍ ।



# ମୋ ଦୃଷ୍ଟିରେ ସାଂପ୍ରତିକ ସାହିତ୍ୟରେ ଗୋଷ୍ଠୀ କନ୍ଦଳ

**ପ୍ରସନ୍ନ କୁମାର ପାଟଶାଣୀ**

ଆଜିର ସାହିତ୍ୟିକ ଦୁର୍ବୋଧତା ଭିତରେ ଶାଶ୍ୱତ ସାରସ୍ୱତ ସତ୍ତାର ସନ୍ଧାନ ପାଇଁ ସଂଗ୍ରାମରତ ବୋଲି ଦାବୀ କରୁଛି । ଅଥଚ ପାଠକଙ୍କ ଉପରେ ନୂତନ ପରୀକ୍ଷା ନାମରେ ଜବରଦସ୍ତ ଭାବରେ ଅବାସ୍ତବ ଚିନ୍ତା, ଚିନ୍ତାକଳ୍ପ, ପ୍ରୟୋଗ, ପରୀକ୍ଷା ନିରୀକ୍ଷା ନାମରେ ଉଦ୍ଭଟ ବିକାରଗ୍ରସ୍ତ ଅଶ୍ଲୀଳ ଚିନ୍ତାଧାରାର ଉଦ୍ଭାବନ । ଉପମା ଶୈଳୀ ସଂଯୋଜନା ନାମରେ ରୁଚିହୀନ ଯୌନ ଆମୋଦପୂର୍ଣ୍ଣ ଅବୋଧତା ଇତ୍ୟାଦିକୁ ଅଗ୍ରାଧିକାର ଦେଇଛି । ଯେ କୌଣସି ପୁସ୍ତକ କିମ୍ବା ପତ୍ର ପତ୍ରିକାର ପୃଷ୍ଠା ଉନ୍ମୋଚନ କଲେ ଆମ ଆଗରେ ପଡ଼େ ସାମନ୍ତସାହି ଶାସନର ସଂକୀର୍ଣ୍ଣତା ଭିତରୁ ଜନ୍ମ ନେଇଥିବା ବିଭିନ୍ନ ଯୌନ ବର୍ଣ୍ଣନା । ଯେପରି ଫ୍ରୟେଡ଼ୀୟ ଯୌନ-ତତ୍ତ୍ୱକୁ ଛାଡ଼ି ଦେଇ ସାହିତ୍ୟ ସୃଷ୍ଟି କରିବା ଏକାନ୍ତ ଭାବେ ଅସମ୍ଭବ । ଇଂରେଜ ବଣିକସାହୀ ଶାସନଠାରୁ ମୁକ୍ତ ହୋଇ ଭାରତୀୟ ବ୍ୟବସାୟୀ-ମାନଙ୍କଦ୍ୱାରା ଶାସିତ ଭାରତ ଅର୍ଥନୈତିକ ଦୃଷ୍ଟିରୁ ବା ସମାଜବ୍ୟବସ୍ଥା ଦୃଷ୍ଟିରୁ ପରାଧୀନ ଅବସ୍ଥାରେ ଥିଲା ବେଳେ ଲେଖକ ବା ତଥାକଥିତ ଇଣ୍ଟଲେକ୍‌ଚୁଆଲ ଶ୍ରେଣୀ ସେହିପରି ଭାବେ ଏକ ପରାଧୀନ ସମାଜ ଅବସ୍ଥା ଭିତରୁ ହିଁ ଜନ୍ମ ନେଇଛନ୍ତି ।

୧୯୪୭ ପରର ସାହିତ୍ୟିକ ନିଜକୁ ଯେତେ ମୁକ୍ତ ବା ସ୍ୱାଧୀନ ବୋଲି ଜାହିର କଲେ ବି ସେ ମୁକ୍ତ ବା ସ୍ୱାଧୀନଚେତାଯୁକ୍ତ ନୁହେଁ । ମନ ଭିତରେ କ୍ରମେ ଦେଶୀ ସାହେବୀ ମନୋଭାବର ଅଳନ୍ଧୁ ବସାବାନ୍ଧି ଯାଇଛି । ସମାଜରେ ବଞ୍ଚିବାଟା ମୁଖ୍ୟ ହୋଇ ଯାଇଛି; ତେଣୁ ସମାଜଦ୍ୱାରା ନିୟନ୍ତ୍ରିତ ହୋଇଛି ସାହିତ୍ୟିକ । ସମାଜକୁ ନିଜର କଲମ ମୁନରୁ

ଇଙ୍ଗିତ ଭିତରକୁ ଟାଣି ଆଣିବା କ୍ଷମତା ତା'ର ନାହିଁ । ୧୯୪୭ ପରର ସ୍ରଷ୍ଟା ମନରେ ଯେଉଁ ପ୍ରକାର କାବ୍ୟିକ ସୌନ୍ଦର୍ଯ୍ୟବୋଧ ସୃଷ୍ଟି ହୋଇଛି ସେଥିରେ ଦେଖାଦେଇଛି ଅନୁକରଣର ମାତ୍ରାଧିକ୍ୟ । ନିଜ ଭିତରେ ନିଜର ଧୃତିର ସୃଷ୍ଟିଶୀଳ ପ୍ରଜ୍ଞା ତଥା ଭାବବୋଧକୁ ଜୀବନାଭିମୁଖୀ ନ କରି ଜୀବନକୁ ଙ୍କମେ - ଙ୍କୀତଦାସର ଆସନରେ ବସାଇ ସାଂପ୍ରତିକ ସାହିତ୍ୟକୁ ଏକ ନିର୍ଜନ ଉପତ୍ୟକାରେ ପରିଣତ କରି ଦେଇଛି । ସୃଷ୍ଟିଶୀଳତା ଭିତରେ ଚିନ୍ତାର ବୈକଲ୍ୟ ଦେଖା ଦେଇଛି । ସମାଜ ସହ ଅନୁଧ୍ୟାନରହିତ ହୋଇଯାଇଛି ସାହିତ୍ୟର ସ୍ରଷ୍ଟା । ସାହିତ୍ୟ ପାଇଁ ଜୀବନ-ସୁଷମାର ଆବଶ୍ୟକତା ଅଛି, ତାହା କ'ଣ ସଦାବେଳେ ପାରିପାର୍ଶ୍ୱିକ ପରିସ୍ଥିତିରେ ସମ୍ଭବ ?

ସାହିତ୍ୟିକ ଆଜି ବୃତ୍ତିନିଷ୍ଠ···ତା'ର କର୍ତ୍ତବ୍ୟ ସମାଜ ପ୍ରତି କ'ଣ ହେବା ଉଚିତ ? ଆଜି ସେ ଏକ ବୌଦ୍ଧିକ ଚିନ୍ତାର ଅର୍ଗଳରେ ପଶି ଯାଇଛି । ପାଇବା'ର ଆଶା ଭିତରେ ସେ ଯଦି ଖାଲି ନ ପାଇବାର ହତାଶରେ ଚିତ୍କାର କରେ, ତାହେଲେ ଫଳତଃ ସେ ପାଇବ କ'ଣ ? ସେଥିପାଇଁ ଭାରତୀୟ ସାହିତ୍ୟ ଗୋଡ଼ାଣିଆ ୟୁରୋପୀୟ ସାହିତ୍ୟର ଏବଂ ତାହା ସଙ୍ଗେ ସଙ୍ଗେ ୟୁରୋପୀୟ ସାହିତ୍ୟଠାରୁ ଜୀବନନିଷ୍ଠ ନୁହେଁ । ବୌଦ୍ଧିକ କ୍ଷେତ୍ରରେ ଏହା ଯେତିକି ସମାଲୋଚିତ ତା' ଅପେକ୍ଷା ବେଶି ଉପେକ୍ଷିତ ସାଧାରଣ ଜନଜୀବନ ଆଗରେ । ଜୀବନ ଆଜି ଫୁଲ ଫଳର ଭରାକ୍ଷେତ ନୁହେଁ, ବରଂ ସଂଗ୍ରାମର ସୁଦୀର୍ଘ ପ୍ରାନ୍ତର । ସଂଗ୍ରାମର ପ୍ରାନ୍ତରରେ ଜୀବନ ସହ ମୁକାବିଲା କରୁଥିବା ସଂଗ୍ରାମରତ ମାନବଜୀବନ ପାଇଁ ସାଂପ୍ରତିକ ସାହିତ୍ୟ ବୋଧହୁଏ ପ୍ରେରଣା ଦେଇ ପାରୁନାହିଁ । ମନୁଷ୍ୟ ଯେ ଗୋଟିଏ ନିତାନ୍ତ ସାମାଜିକ ପ୍ରାଣୀ ଓ ତା'ର ସମାଜପ୍ରତି କିଛି କର୍ତ୍ତବ୍ୟ ଅଛି ଏହି ନିଛକ ସତ୍ୟ କଥାକୁ ଅସ୍ୱୀକାର କରିବାର ଶକ୍ତି କାହାର ନାହିଁ ।

**ସାହିତ୍ୟିକର ଚେତନା**

ସାହିତ୍ୟିକର ସମାଜ ପ୍ରତି କର୍ତ୍ତବ୍ୟ ଯେତିକି ଅଛି ତା' ଅପେକ୍ଷା ନିଜ ଲକ୍ଷ୍ୟପ୍ରତି କର୍ତ୍ତବ୍ୟ ଓ ଦାୟିତ୍ୱ ବେଶି ରହିଛି । ସାହିତ୍ୟର ଅନ୍ୟତମ ପ୍ରଧାନ କର୍ତ୍ତବ୍ୟ ହେଉଛି···ସୃଷ୍ଟିକୁ ଗତିଶୀଳ କରି ଗତି ତୋଳିବା । ସାହିତ୍ୟରେ ସବୁ ସମୟରେ ଭିନ୍ନ ଭିନ୍ନ ଚିନ୍ତାର ସ୍ରୋତରେ ବହୁଥାଏ ।

ଯେଉଁମାନେ ପ୍ରତିଷ୍ଠା ପାଇଥାନ୍ତି, ସେମାନେ ସର୍ବଦା କୁହନ୍ତି ଯେ ସେମାନଙ୍କ ସୃଷ୍ଟି ଚିରସନାତନ । ସେଇ ପତ୍ରିମାନଙ୍କ ଭିତରେ ବହୁ ପ୍ରକାରର ଦଳ ବା ଗୋଷ୍ଠୀ ଥାଆନ୍ତି । ଗାଦି ଉପରକୁ ଯାଇ ତରୁଣମାନଙ୍କୁ ମଧ୍ୟ ଦଳେ ହାତବାରିସୀ କରି ସେମାନେ କ୍ଷମତା ଜାହିର କରନ୍ତି । ଓଡ଼ିଆ ସାହିତ୍ୟରେ ଯେ ଭେଦାଭେଦ ବେଶ୍ ସୁସ୍ପଷ୍ଟ । ଯେଉଁମାନେ ଗାଦିରେ ବସିଛନ୍ତି ସେମାନେ ପାଟେଯଥା, କୁଣ୍ଡଳ, ହଜାରେ ପଞ୍ଚହଜାର ପାଇବା ପାଇଁ ଯେତିକି ବ୍ୟାକୁଳ ତା'ଠାରୁ ବେଶି ବ୍ୟାକୁଳ ଦଳେ ଦଳେ ତରୁଣଙ୍କ ପ୍ରତିଭାକୁ ହତ୍ୟା କରି ସେମାନଙ୍କୁ ବିପଥଗାମୀ କରାଇବାରେ । ଓଡ଼ିଆରେ ସାହିତ୍ୟିକମାନଙ୍କୁ ନିମ୍ନଲିଖିତ ଗୋଷ୍ଠୀରେ ବିଭକ୍ତ କରାଯାଇପାରେ— (୧) ପ୍ରତିଷ୍ଠିତ ସମାଜନିଷ୍ଠ ସାହିତ୍ୟିକ (୨) ପ୍ରତିଷ୍ଠିତ ସରକାରୀ ଅମଲା ସାହିତ୍ୟିକ (୩) ଅନୁକରଣ ପ୍ରେମୀ ସାହିତ୍ୟିକ (୪) ପ୍ରତିଷ୍ଠା-ପାଗଳ ସାହିତ୍ୟିକ (୫) ଗୋଷ୍ଠୀ-ସୃଷ୍ଟିକାରୀ ସାହିତ୍ୟିକ (୬) ଗୋଡ଼ାଣିଆ ସାହିତ୍ୟିକ (୭) ଆଦର୍ଶବାଦୀ ସାହିତ୍ୟିକ (୮) ଯୌନପିପାସୁ ସାହିତ୍ୟିକ (୯) ସମାଜନିଷ୍ଠ ସାହିତ୍ୟିକ (୧୦) ବିଦ୍ରୋହୀ ସାହିତ୍ୟିକ ଓ (୧୧) ପ୍ରଗତିବାଦୀ ସାହିତ୍ୟିକ ।

ଓଡ଼ିଶାରେ ପ୍ରତିଷ୍ଠା-ପାଗଳ ସାହିତ୍ୟିକ, ଗୋଷ୍ଠୀ ସୃଷ୍ଟିକାରୀ ସାହିତ୍ୟିକ, ଗୋଡ଼ାଣିଆ ସାହିତ୍ୟିକ, ଅମଲା ସାହିତ୍ୟିକ, ଯୌନପିପାସୁ ସାହିତ୍ୟିକ ଓ ଅନୁକରଣ ପ୍ରେମୀମାନଙ୍କର ପ୍ରାଦୁର୍ଭାବ ବେଶି । ଏ ପରି-ପ୍ରେକ୍ଷୀରେ ଗୋଟିଏ ଉଦାହରଣ ଦେଇ ବିଶେଷ ଆଲୋଚନା ଆରମ୍ଭ କରାଯାଇ ପାରେ । ଥରେ ବିଷୁବ ମିଳନରେ ନିଜକୁ ଓଡ଼ିଶାର ପ୍ରତିଷ୍ଠିତ ଗଳ୍ପ ଲେଖକ ରୂପେ ଜାହିର କରୁଥିବା ଗାଳ୍ପିକ ଜଣଙ୍କ ସହ ବ୍ୟକ୍ତିଗତ ଆଳାପ ସମୟରେ ସେ କହିଲେ—

> "ସମସାମୟିକ ଲେଖକ ଲେଖିକାମାନେ ସାହିତ୍ୟ ଏକାଡେମୀ, କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇ ସାରିଲେଣି । ଜ୍ଞାନପୀଠ ତ ଓଡ଼ିଆ ପାଇଁ ସ୍ୱପ୍ନ; ଯଦି ଶେଷକୁ ଅନ୍ତତଃ ବିଷୁବ ମିଳନରୁ ହଜାରେ ଟଙ୍କାର ପୁରସ୍କାର ନ ମିଳେ ତା' ହେଲେ ଓଡ଼ିଆରେ ଲେଖିବୁ କାହିଁକି ? ଏଣିକି ବରଂ ଓଡ଼ିଆ ଛାଡ଼ି ଇଂରାଜୀରେ ଲେଖିବୁ ।..."

( ପରେ ଜଣାପଡ଼ିଲା ଯେ ସେ ଲେଖକ ହଜାରେ ଟଙ୍କା ପୁରସ୍କାର ପାଇଲେ । )

ପ୍ରୋକ୍ତ ପ୍ରକାର ସାହିତ୍ୟିକମାନଙ୍କୁ ପ୍ରତିଷ୍ଠା-ପାଗଳ ସାହିତ୍ୟିକ କୁହାଯାଇପାରେ । ଯଦି ଓଡ଼ିଆରେ ପ୍ରତିଷ୍ଠା ନ ମିଳେ ତାହେଲେ ଇଂରେଜୀରେ ପ୍ରତିଷ୍ଠା ମିଳିବ ଓ ଏଇଥିପାଇଁ ଲେଖିବା ଉଚିତ ବୋଲି ଯଦି ପ୍ରତିଷ୍ଠିତ ସରକାରୀ ଅମଲା ସାହିତ୍ୟିକମାନଙ୍କର ମତ ହୁଏ ତାହେଲେ ସାହିତ୍ୟ କ୍ରମେ ବ୍ୟକ୍ତିର ମନୋପଲି ଭିତରକୁ ଗଳିଯାଉଛି ବୋଲି ଧରି-ନେବାକୁ ହେବ । ସରକାରୀ ଅମଲା ସାହିତ୍ୟିକମାନେ ସମାଜନିଷ୍ଠ ନୁହଁନ୍ତି; ଏମାନେ ସମାଜଠାରୁ ଦୂରରେ ରହି କଳ୍ପନାବାଦୀ । ଏମାନଙ୍କ ଭିତରେ ଏକ ଗୋଟା ଯୌନସର୍ବସ୍ୱ ସାହିତ୍ୟିକ ଗୋଷ୍ଠୀ ଥାଆନ୍ତି । ଏମାନେ ସରକାରୀ କଳର ଯୂପ କାଠରୁ ମୁକ୍ତ ଚିନ୍ତା କରିପାରନ୍ତି ନାହିଁ; ସାହିତ୍ୟକୁ ଆଗରେ ରଖି ସାମାଜିକ ପ୍ରତିଷ୍ଠା ପାଇଁ ବୌଦ୍ଧିକ ଶଠତାର ଆଶ୍ରୟ ନିଅନ୍ତି । ସାହିତ୍ୟକୁ ସୌଖୀନ ବିଳାସ କରି ରୁଦ୍ଧ ଯୌନକାମନାର ଆବେଗକୁ ଗୁପିରଖି ନ ପାରି ସାହିତ୍ୟରେ ପ୍ରକାଶ କରନ୍ତି । ଏଇ ଶ୍ରେଣୀ ଓଡ଼ିଶାରେ ବର୍ତ୍ତମାନ ନାଲି ଫିତାର ଫାଇଲ ତଳୁ ସେକ୍ରେଟେରିଏଟ୍ କିରାଣୀ ଭିଡ଼ ପୃଥିବୀରୁ ମୁଣ୍ଡ ଟେକି ଉଠି ଅନୁକରଣକୁ କଲମର ପ୍ରଧାନ ଜୀବିକା ରୂପେ ଧରିନେଇଛନ୍ତି । ପ୍ରତିଷ୍ଠିତ ଅମଲା ସାହିତ୍ୟିକମାନେ ସରକାରୀ ଶାସନ କଳକୁ ନିଜ ପାଇଁ ଖର୍ଚ୍ଚ କରନ୍ତି । ଉପର ହାକିମଙ୍କ ଆଗରେ ନିଜକୁ ଅଧିକ ସ୍ରଷ୍ଟାର ଆସନ ଦେବା ପାଇଁ ଓ ବାହାବା ପାଇବା ପାଇଁ ପୁରାତନ କାଳର ଦରବାରୀ ସାହିତ୍ୟିକ ସହିଷ୍ଣୁ ସଭାକୁ ପୁନଃସୃଷ୍ଟି କରିବାର ଚେଷ୍ଟା କରନ୍ତି । ଯେଉଁ ତଳିଆ କିରାଣୀ ଜଣଙ୍କ ମାସକ ଦରମା ପାଇଁ ଶେଷ ସପ୍ତାହ ଉପାସ ରହେ ସେ କଥା ସେମାନଙ୍କ ସାହିତ୍ୟରେ ରୂପ ପାଏ ନାହିଁ । କିମ୍ବା ଯେଉଁ ପିଅନ ବାବୁଙ୍କ ଘରେ ଉପାସରେ ଖଟି ଦିନ ଦୁଇଟାରେ ବସାକୁ ଫେରି ଖଟାପଖାଳ ଖାଏ, ସେ କଥା ଅମଲା ସାହିତ୍ୟିକ-ମାନଙ୍କ କଲମ ଦୋହଲେଇ ପାରେ ନା । ଅଫିସରୁ ଫେରି କୋଠାର ଚଉକାନ୍ଥରେ ବିଦେଶୀ ଗୁପା ବହିର ସମୁଦ୍ରରୁ ଯେଉଁ ଉଧାର ଚିନ୍ତା ମିଳେ ସେହି ହୁଏ କବିତା, ଗଳ୍ପ, ଉପନ୍ୟାସ ପାଇଁ ସେମାନଙ୍କର ଉପଜୀବ୍ୟ ଚିନ୍ତା ।

ଓଡ଼ିଶାରେ ବର୍ତ୍ତମାନ ଆଉ ଏକ ପ୍ରକାର ସାହିତ୍ୟିକଗୋଷ୍ଠୀ ଅଛନ୍ତି ସେମାନେ ପ୍ରତିଷ୍ଠା ପାଇ ସାରିଛନ୍ତି । ପ୍ରତିଷ୍ଠା ପାଇ ସାରିବାପରେ ନିଜ ଉପରେ ସନ୍ଦେହ ପ୍ରକାଶ କରି ତରୁଣ ସାହିତ୍ୟିକ ଗୋଷ୍ଠୀକୁ ଶୋଷଣ କରିବାରେ ବ୍ୟସ୍ତ ଅଛନ୍ତି । ତରୁଣଙ୍କ ମଧ୍ୟରେ ଅନେକେ ପ୍ରତିଷ୍ଠା-ପାଗଳ, ପ୍ରକାଶନ କାମୀ ତରୁଣ ଅଛନ୍ତି । ସେମାନେ ସଦାସର୍ବଦା ଲେଖାକୁ ଗୌଣ

କରି ସେମାନଙ୍କ ପଛରେ ସଦାସର୍ବଦା ଗୋଡ଼ାଇବାକୁ ବଡ଼ ମଣୁଛନ୍ତି । ପ୍ରତ୍ୟେକ ସମୟରେ ନିର୍ଭର କୃତି ଉପରେ ଦଳେ ସାହିତ୍ୟିକ ସନ୍ଦେହ ପ୍ରକାଶ କରି ଆସିଛନ୍ତି, କାରଣ କେତେବେଳେ ସେମାନେ ଜୀବନବାଦୀ ତ କେତେବେଳେ ପ୍ରତିଷ୍ଠା ପାଗଳ ଅନୁକରଣ-ସର୍ବସ୍ୱ । ସେଭଳି ସାହିତ୍ୟିକ ଓଡ଼ିଶାର ଇତିହାସକୁ ବାରମ୍ବାର ଅଗୁରୁ ଚନ୍ଦନ ପରିବର୍ତ୍ତେ ପଙ୍କ ପକାଇଛନ୍ତି । ଅନେକ ତରୁଣଙ୍କୁ ନିଜ ଧାଗରେ ପାଳିତ କରାଇ ନିଜ ନିଜ ଭିତରେ ପାରସ୍ପରିକ ଟେକାଟେକି ଗୋଷ୍ଠୀ ଗଠନ କରାଇ ସାହିତ୍ୟ ଦରବାରରେ ପୁରୁଷତ୍ୟାଗ କରିଛନ୍ତି । ଏପରି କ୍ଷେତ୍ରରେ ୧୯୪୭ ପରର କବିତା ରାଜ୍ୟକୁ ବିଚାର କଲେ ବେଶ୍ ଖୋଲା ସତ୍ୟ ଉପଲବ୍ଧି କରିହେବ । ଯେଉଁମାନେ ୧୯୪୭ ପୂର୍ବରୁ ସାମ୍ୟବାଦୀ ଥିଲେ କ୍ରମେ ସେମାନେ ପଶ୍ଚିମା ହାଓ୍ୱାରେ ସାହେବୀ ପାଲଟି ଯାଇଛନ୍ତି । ଓଡ଼ିଶାରୁ ସାହେବୀ ଖୋଳର କବିତା ପ୍ରଚୁର ଉତ୍ପାଦିତ ହୋଇଛି । ସେଥି-ମଧ୍ୟରୁ ଯେଉଁମାନେ ଛିଟିକି ଯାଇ ଜୀବନବାଦୀ କବିତା ଲେଖିଛନ୍ତି, ସେମାନଙ୍କୁ କବି ବୋଲି ସ୍ୱୀକୃତି ଦେଇ ନାହାଁନ୍ତି । ବରଂ ସମାଜ ପାଖରେ ସେମାନେ ଅଧିକ କମିଟେଡ୍ ହୋଇଛନ୍ତି । କିନ୍ତୁ ୧୯୬୦-୭୦ ଭିତରେ ଯେଉଁ ପ୍ରକାର କବିତା ସାହିତ୍ୟ ଅଧିକ ଧୂଳିଝଡ଼ ସୃଷ୍ଟି କରିଛି ସେଥିଭିତରେ ଅନୁକରଣ-ପ୍ରେମୀମାନେ ନିଜ ଭିତରୁ କବି, ଗାଳ୍ପିକ, ଉପନ୍ୟାସକାର ସୃଷ୍ଟି କରି ପରସ୍ପରକୁ ଉପରକୁ ଉଠାଇବାର ଅପଚେଷ୍ଟା କରିଛନ୍ତି । କବିତା କ୍ଷେତ୍ରରେ ଫଳତଃ ଦେଖାଦେଇଛି ବୌଦ୍ଧିକତା-ଆତ୍ମ, ପ୍ରବଞ୍ଚନା, ଅମଳ ବୃତ୍ତି ପ୍ରତିଷ୍ଠା ପ୍ରେମ । ସାମାଜିକ ଧାରାର ଅନୁଶାସନକୁ ଅନୁଧ୍ୟାନ ନ କରି, ସମାଜକୁ ନ ବୁଝି ସହସ୍ତ୍ରୁ ସମାଜର ପ୍ରତିନିଧି ହୋଇ-ଯାଇଛି ଆଜିର ସାହିତ୍ୟିକ । ମୂଲ୍ୟବୋଧର ସତ୍ୟାସତ୍ୟକୁ ନ ଭେଦି ଆଜିର ସାହିତ୍ୟିକ ମଧ୍ୟ ଏକ ରାସ୍ତାରେ କ୍ରମେ ନିଜକୁ ହରେଇ ବସୁଛି । ସାହିତ୍ୟିକ ଏକ ସମାଜ ଭିତରେ ରହୁଛି । ତାର ସୃଷ୍ଟି ସମାଜ ପାଇଁ ଛପା ଯାଇଛି । ସାହିତ୍ୟିକ ଯଦି ପାନ, ସିଗାରେଟ୍, ମଦ, ନାଗରେ ବୁଡ଼ିରହି ଯୌନ-ସର୍ବସ୍ୱ ଚିନ୍ତାର ଉପାସକ ହୋଇ ପ୍ରାକୃତିକ ଗାରଦର ଆକାଙ୍କ୍ଷିତ ବନ୍ଦୀରେ ପରିଣତ ହୁଏ, ତାହେଲେ ସମାଜ ପ୍ରତି ତା'ର ଦାୟିତ୍ୱ ସେ ଭୁଲିଯାଇଛି ବୋଲି ଧରିନେବାକୁ ହେବ ।

ଅନେକଙ୍କ ଯୁକ୍ତିରେ ସାହିତ୍ୟ ସମାଜର ବାସ୍ତବ ପ୍ରତିଫଳନ ହେବା ଉଚିତ । ତାହେଲେ ଆଜିକାର ସାହିତ୍ୟରେ ସମାଜ ଚିତ୍ର ହେବା

ଲେଖକଙ୍କର ନିତାନ୍ତ କର୍ତ୍ତବ୍ୟ । କିନ୍ତୁ ସମାଜ ଶିବ ନାମରେ ନୈତିକତା-ଠାରୁ ଦୂରେଇ ଯାଇ ପାଠକକୁ ଚରମ ଭାବେ ଉପେକ୍ଷା କରାଯାଉଥିବାର ସମସ୍ତେ ପ୍ରାୟ ଲକ୍ଷ୍ୟ କରୁଥିବେ । କିନ୍ତୁ ସମସ୍ୟା ହେଲା ସମାଜ ଶିବ ଆସିବ କିପରି ? ଆମ ବକ୍ତବ୍ୟକୁ ଆହୁରି ପ୍ରାଞ୍ଜଳ କରିବାକୁ ହେଲେ କୁହାଯାଇପାରେ ଯେ, ଆମେ ସମାଜକୁ କେଉଁ ଦୃଷ୍ଟିଭଙ୍ଗୀରେ ଦେଖିବା । ଲେଖକ ଯେ କେବେ ନିରପେକ୍ଷ ଥିଲା ବା ଅଛି ଏଥିରେ ଆମର ବିଶ୍ୱାସ ନାହିଁ । ସାହିତ୍ୟିକ ଯାହା ଦେଖେ ନିଜ ଶ୍ରେଣୀ ସ୍ୱାର୍ଥର ଚକ୍ଷୁ ନେଇ ଦେଖେ ।

ଆଜିର ପରିସ୍ଥିତି ପ୍ରତି ଦୃଷ୍ଟିପାତ କଲେ ଦେଖାଯାଏ ଯେ ଜୀବନ ଅଶାନ୍ତ ଓ ଅସ୍ୱାଭାବିକ ହୋଇ ଉଠିଛି । ସମାଜରେ ସାଧାରଣଭାବେ କ୍ରମେ ଦୁଇଟି ଗୋଷ୍ଠୀ ନିଜ ନିଜ ଭିତରେ କ୍ରମବର୍ଦ୍ଧମାନ ଗତିରେ ସଂଗ୍ରାମଶୀଳ ହୋଇଉଠୁଛନ୍ତି । କ୍ରମେ କ୍ରମେ ଦୁଇ ଗୋଷ୍ଠୀର ବ୍ୟବଧାନ ବୃଦ୍ଧି ପାଇଛି । ଥିଲାବାଲା ଓ ନଥିଲାବାଲାଙ୍କ ଭିତରେ ଚିନ୍ତାର ସଂଘର୍ଷ କ୍ରମେ ଦେଖା-ଦେଲାଣି । ଥିଲାବାଲାଙ୍କ କ୍ଷମତା ପାଇଁ କ୍ଷମତା ଭିତରେ ଥିବା ସାହିତ୍ୟିକ-ମାନେ ବିଳାସୀ ସାହିତ୍ୟ ସୃଷ୍ଟି କରୁଛନ୍ତି ; କିନ୍ତୁ ଓଡ଼ିଶାରେ ନଥିଲା-ବାଲାଙ୍କ ସଂଖ୍ୟା ଅଧିକ । ନଥିଲାବାଲାଙ୍କ ପାଇଁ ଆଜି ଯେଉଁ ସାହିତ୍ୟର ସୃଷ୍ଟି ହେଉଛି ତାହା ବି କ୍ରମେ ସେଇ ଥିଲାବାଲାଙ୍କ ହାତରେ ପଡ଼ୁଛି ; ଯେଉଁମାନେ ଗଣ ଜୀବନର କଥା କହିବାକୁ ଚେଷ୍ଟା କରିଛନ୍ତି, ସେମାନେ ଥିଲାବାଲାଙ୍କ ବିରୋଧରେ ବିଦ୍ରୋହୀ ସାହିତ୍ୟିକରେ ପରିଣତ ହୋଇଛନ୍ତି ।

ପ୍ରତ୍ୟେକ ସମୟରେ ପ୍ରତ୍ୟେକ ଜାତିର ଭାଗ୍ୟାକାଶରେ ସମାଜ-ନିଷ୍ଠ ସାହିତ୍ୟିକମାନଙ୍କର ଆବିର୍ଭାବ ଘଟିଛି ଓ ସମାଜନିଷ୍ଠ ସାହିତ୍ୟିକଙ୍କ ଉପସ୍ଥିତି ବିନା ସାହିତ୍ୟ ବଞ୍ଚେ ନାହିଁ । ଏମାନେ ସାହିତ୍ୟର ମୂଳଦଣ୍ଡ, ଗଣଜୀବନର ଆହ୍ୱସତ୍ୟ । ପ୍ରଜ୍ଞାର ମୂଳବୀଜ ସ୍ୱରୂପ, ଏମାନଙ୍କ ଭିତରୁ ଯେଉଁ ଗୋଷ୍ଠୀ ପ୍ରଥମେ ଆସେ ସେ ବିଦ୍ରୋହୀ ହୁଏ । ଯାହାକି ଷଷ୍ଠଦଶକର କେତେକ ଓଡ଼ିଆ କବିଙ୍କ କବିତା ଓ ଗଳ୍ପରେ ଏହି ବିଦ୍ରୋହୀ ଭାବଧାରା ଦେଖାଯାଏ । କିନ୍ତୁ ସଚ୍ଚା ପ୍ରଗତିବାଦୀ ସାହିତ୍ୟିକମାନେ ସଂଖ୍ୟାରେ କମ୍ ହେଲେ ମଧ୍ୟ ସେମାନେ ହୁଅନ୍ତି ଯୁଗଦ୍ରଷ୍ଟା । ଗୋଟିଏ ଯୁଗରେ ସେହି ସାହିତ୍ୟିକ ବଞ୍ଚେ ଓ ଆମ ତତ୍‌କାଳୀନ ଚିନ୍ତା ସେହି ପରିମାଣରେ ପ୍ରଗତି-ବାଦୀ ହୋଇଥାଏ । ସମାଜର ଗତି ପ୍ରକୃତି ଯେ ଯେତେ ପରିମାଣରେ ଆତ୍ମସ୍ଥ କରେ, ସେ ହୁଏ ସେତେ ପରିମାଣରେ ସ୍ୱାତନ୍ତ୍ର୍ୟଯୁକ୍ତ । ତା'ର ନିର୍ଦ୍ଦିଷ୍ଟ

ଆଦର୍ଶ ଥାଏ, କିନ୍ତୁ ସେ ଆଦର୍ଶବାଦୀ ନୁହେଁ । ସେ ମଣିଷ ଜୀବନର ସୁଖ ଦୁଃଖକୁ ସାହିତ୍ୟ ମାଧ୍ୟମରେ ପରିବେଷଣକୁ କର୍ତ୍ତବ୍ୟ ବୋଲି ମନେକରେ ।

କିନ୍ତୁ ଦୁଃଖର କଥା ସାଂପ୍ରତିକ ସାହିତ୍ୟ ଆଜି ପୁଞ୍ଜିପତିମାନଙ୍କର ନିୟନ୍ତ୍ରଣାଧୀନ ହୋଇଯାଇଛି । ସେମାନଙ୍କ ସ୍ୱାର୍ଥକୁ ସୁହାଇଲାଭଳି ଲେଖାକୁ ଅଗ୍ରାଧିକାର ଦିଆଯାଉଛି । ତେଣୁ ଯୁବଲେଖକମାନେ ଅଧିକାଂଶ ବାଟ ଭୁଲି ନିଜ ଇଚ୍ଛା ବିରୋଧରେ ସୁବିଧାବାଦୀ ସାହିତ୍ୟ ସୃଷ୍ଟି କରିବାରେ ଆତ୍ମନିୟୋଗ କରିବା ପାଇଁ ବାଧ୍ୟ ହେଉଛନ୍ତି । ଫଳରେ ଥିଲାବାଲା ଘରର ରମଣୀର ନିଟୋଳ ସ୍ୱାସ୍ଥ୍ୟର ବର୍ଣ୍ଣନା ସହ ଭୃଙ୍ଗ ଅଙ୍କାଳିକା, ଅପର୍ଯ୍ୟାପ୍ତ ସମ୍ପତ୍ତିବାଡ଼, ଭୋଗବିଳାସ ଉପରେ ସଂଖ୍ୟାହୀନ ଗଳ୍ପ, କବିତା ଆଜିର କୁଂଥନ ପ୍ରୟାସରେ ପରିଣତ ହୋଇଛି । ତାଙ୍କୁ ସେଇଥି ପାଇଁ ସଂଖ୍ୟାଗରିଷ୍ଠ ସହୃଦୟର ସମର୍ଥନ ତ ମିଳୁନାହିଁ, ବରଂ ପାଠକ ତାହାକୁ ମାଟିବିବର୍ଜିତ ସାହିତ୍ୟ ବୋଲି ବିଚାରୁଛି ।

ଆଜିର ସାହିତ୍ୟ ସମ୍ପୂର୍ଣ୍ଣଭାବେ ପୁଞ୍ଜିବାଦର ମୁଣ୍ଡପାଠରୁ ମୁକ୍ତ ନୁହେଁ । ସାମନ୍ତବାଦର ବୌଦ୍ଧିକ ପ୍ରବଞ୍ଚନାର ସଂକୀର୍ଣ୍ଣ ପରିସର ଭିତରେ ଆବଦ୍ଧ ରହି ଗଣଜୀବନର ପ୍ରତିନିଧିତ୍ୱ କରିବାରେ ଆଜିର ସାହିତ୍ୟିକ ସମ୍ପୂର୍ଣ୍ଣ ବିଫଳ ହୋଇଛି । ସାହିତ୍ୟିକ ଯଦି ସଚ୍ଚୋଟ କିମ୍ବା ନିଃସ୍ୱାର୍ଥପର ନ ହୁଏ ଓ ତା' କଲମରୁ ଯଦି ପାଠକର ସୁଖ ଦୁଃଖ ରୂପ ପ୍ରକାଶ ନ ପାଏ, ତାହେଲେ ସେ ଲେଖା ପାଠକର ହୋଇପାରିବ ନାହିଁ । ସାହିତ୍ୟ ସଙ୍ଗଠନ କାର୍ଯ୍ୟରେ ମୋର ସାହିତ୍ୟିକ ଜୀବନର ବହୁଭାଗ ବ୍ୟୟିତ ହୋଇଥିବା ବେଳେ ଯାହା ଅନୁଭବ କରିଛି ଓ ସତ ବୋଲି ଭାବିଛି ତାହା ଲେଖୁଛି । ରାମଚନ୍ଦ୍ରଭବନର ବିଭିନ୍ନ ବୃଦ୍ଧ ସାହିତ୍ୟିକଙ୍କଠାରୁ ଶୁଣିଛି ଯେ ବାଗ୍ମୀ ବିଶ୍ୱନାଥ କର ଉତ୍କଳ ସାହିତ୍ୟର ସମ୍ପାଦକ ଥିଲାବେଳେ ତାଙ୍କ ଆଗକୁ ଲେଖକମାନେ ଯିବାକୁ ଭୟ କରୁଥିଲେ । ସେ ଜ୍ଞାନର ଅପରିସୀମ ଭଣ୍ଡାର ରୂପେ ସାହିତ୍ୟିକଙ୍କୁ ସଜାଡ଼ି ସଜାଡ଼ି କରି ଜୀବନଧର୍ମୀ କରିବାରେ ସଦାଜାଗ୍ରତ ଥିଲେ । ସାହିତ୍ୟକୁ ନେଇ ବ୍ୟବସାୟ କରିବା ତାଙ୍କର କାମ ନଥିଲା । ଯାହା କୁଆଡ଼େ ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ଅମଳରେ କିଛିଟା ଦେଖା ଦେଇଥିଲା । ଓଡ଼ିଆ ମାଟିରେ ବିଦ୍ରୋହୀ ଲେଖାଲେଖିର ଜନୈକ କବି ଅଭାବ ଭିତରେ ଦିନ ବିତାଉଥିବାର ଅଙ୍ଗଲିଭା କଥା ଲେଖକ ନିଜେ ଭୋଗିଛି । ଆମ ମାଟିରେ ବହୁ ପ୍ରସିଦ୍ଧ ସାହିତ୍ୟଶିଳ୍ପୀ ମଧ୍ୟ ଶେଷଜୀବନରେ

ଔଷଧ ଟିକେ ପାଇଁ ବହୁ ଲୋକଙ୍କ ଆଗରେ ହାତ ପତାଉଛନ୍ତି । ବୈଷ୍ଣବ ପାଣି ବରୂପା କୂଳରେ ଥାଇ ଭାତିଆ ଗଣ୍ଡାକ ପାଇଁ ବହାଗିବାଗକୁ ଶେଷ-ଜୀବନରେ ବାରମ୍ବାର ଦୌଡ଼ ମଧ୍ୟ ନିରାଶ ହୋଇ ଫେରଥିଲା ବେଳେ, ସେଇ ମଣ୍ଡପ ଉପରୁ ହଜାର ପାଆଁଶର ଅର୍ଥଦାନ ପଛରେ ପାଞ୍ଚହଜାର ପାଇବାର ବାଟ ଖୋଲ ଯାଇଛି ବୋଲି ଲେଖକମାନେ ବାରଜାଗାରେ ଆଲୋଚନା କରୁଥିବାର ଜଣାପଡ଼ୁଛି । କଥାଟା ଉପରକୁ ଆଘାତ ଭଳି ଲାଗିଲେ ବ ସତ ଅଟେ ।

ପ୍ରକାଶକମାନଙ୍କ ଭିତରେ ସାହିତ୍ୟକୁ ମାପିବାର ଯୋଗ୍ୟତାରେ ଯେତକ ଶୂନ୍ୟତା ଦେଖା ଦେଇଛି, ତା'ଠାରୁ ଅଧିକ ମତିଭ୍ରମ ଦେଖା ଦେଇଛି ପତ୍ର-ପତ୍ରିକାର ସମ୍ପାଦକମାନଙ୍କ ମଧ୍ୟରେ । ଓଡ଼ିଶାରେ କୌଣସି ଗୋଟିଏ ପତ୍ରିକା ନାହିଁ, ଯେ କ ନିରପେକ୍ଷ ଲୋକଙ୍କ ହାତରେ ଅଛି । ପ୍ରତ୍ୟେକର ପରିଚାଳନାରେ ଯେଉଁମାନେ ଅଛନ୍ତି, ସେମାନଙ୍କର ମାଙ୍କଡ଼ ହାତରେ ଶାଳଗ୍ରାମର ଅବସ୍ଥା ଭଳି ପତ୍ରିକା ଗତି କରୁଛି । ସମ୍ପୂର୍ଣ୍ଣ ଗୋଟିଏ ଗୋଟିଏ ଗୋଷ୍ଠୀକୁ ନେଇ ସେଇ ଗୋଷ୍ଠୀର ସାହିତ୍ୟକୁ ଛପାଇ-ବାରେ ବ୍ୟସ୍ତ । ଆଗ ଲେଖକମାନେ ପରସ୍ପରଠାରୁ ଦୂରରେ ରହି ନିଜ ନିଜ ଉପରକୁ କାଦୁଅ ଫୋପାଡ଼ିବାରେ ବ୍ୟସ୍ତ । 'ଆମର ଭିତରୁ ଦଳେ ଏନ୍‌କାଉଣ୍ଟର ପଢ଼ା ଯୁକ୍ତି ସଂସ୍କୃତିର ଦରଦୀ ପୃଷ୍ଠପୋଷକ ଅଛନ୍ତି, ସେମାନେ କହୁଛନ୍ତି—ଆମ କଥା କେହି ନ ବୁଝିଲେ ଶହେ ବର୍ଷ ପରର ଅତ୍ୟାଧୁନିକ ଲେଖକମାନେ ନିଶ୍ଚୟ ଆମ କଥା ବୁଝିବେ । ସାହିତ୍ୟିକ ପ୍ରଥମେ ବିଚାରିବା ଉଚିତ, ଆମ ଦେଶରେ ଜନସଂଖ୍ୟାର ବିରାଟ ଅଂଶ ହେଉଛନ୍ତି ଦରିଦ୍ର । ସେମାନଙ୍କ ଭିତରେ ଅଧିକାଂଶ ହେଉଛନ୍ତି ଭୂମିହୀନ ଓ ଅଶିକ୍ଷିତ । ପୁଣି ଆଜ ଦେଶର ଧନସବୁ କ୍ରମଶଃ କେତେ ଜଣ ଲୋକଙ୍କ ହାତକୁ ଚାଲିଯାଉଛି । ଯେଉଁ ସାହିତ୍ୟିକ ମାନସିକ ଦାସତ୍ୱର ବନ୍ଧନରେ ଜଡ଼ିତ, ସେମାନେ କେବେହେଲେ ସାହିତ୍ୟକୁ ଜନସମାଜ ନିକଟକୁ ନେଇ ପାରିବେ ନାହିଁ । ଆଜ ସେଇମାନଙ୍କ ମତରେ ସାହିତ୍ୟ ଯଦି ଗାଁଦାଣ୍ଡକୁ ଯାଏ କିମ୍ବା ଅପାଠୁଆ ମହଲକୁ ଯାଏ ତା' ହେଲେ ନିଛକ ଓଡ଼ିଆଣୀ ହୋଇଯିବ । ଓଡ଼ିଆଣୀକୁ ସାହେବାଣୀ ସଜାଇବା ପଛରେ ଯେତେ ପ୍ରଗତି-ଶୀଳ ଧାରା ଥିଲେ ବି ସାଂସ୍କୃତିକ ଐତିହ୍ୟ ପ୍ରକାରାନ୍ତରେ ମାରଣ-ଯନ୍ତ୍ର ବୋଲି ଧରିନେବାକୁ ହେବ । ମୁଁ ପରମ୍ପରାବାଦୀ ନୁହେଁ ବା ସାହିତ୍ୟକୁ ପରମ୍ପରାରେ ବାନ୍ଧି ରଖିବାକୁ ଚାହେଁ ନାହିଁ । ସାହିତ୍ୟ ବିଶ୍ୱଦୃଷ୍ଟିରେ

ହେଉ, ତାହା କେତେକଙ୍କ ମନୋପଜ ହେଉ, ତାହା ମୁଁ ଗ୍ରହେଁନି । ପଢିଲେ ଲୋକ ପଢ଼ି ସାହିତ୍ୟକୁ ବୁଝନ୍ତୁ ଓ ଆଉ ପଢିଲେ ଲୋକ ଖାଲି ଶୁଣନ୍ତୁ— ତାହା କରିପାରିଲେ ହେବା ଗୌରବର କଥା ନୁହେଁ । ସାଧାରଣ ଗାଁ ଦାଣ୍ଡକୁ ଯଦି ସହରର ପାଠୁଆ ପୁଅ କେବେ ଯାଏ ତା' ହେଲେ ଗାଁର ଗୌରବ ବଢ଼େ । ଗାଁର ଯେଉଁ କେତେକ ମଳମୁଣ୍ଡିଆ ଥାଆନ୍ତି, ସେମାନେ ଗୌରବ ମଣନ୍ତି । ତାହାଦ୍ୱାରା ବରଂ ସେ ଗାଁର ଗୁରୁତ୍ୱ ବଢ଼େ ଓ ଅନ୍ୟମାନଙ୍କୁ ଆଲୋକ ପ୍ରଦାନ କରେ । ସେମିତି ଯଦି ସାହିତ୍ୟ ଜନଜୀବନର କଷଟି ପଥରରେ ପରୀକ୍ଷା ଦେବାକୁ ଚାହେଁ, ତା' ହେଲେ ଗାଁ-ଦାଣ୍ଡରେ ଚାଲିବାକୁ ହେବ । ଗାଁଦାଣ୍ଡର କାଦୁଅକୁ ଦେଖି ନାକ ଟେକିଲେ ପାଠୁଆ ଟୋକାଏ ଯେମିତି ସମାଜରେ ଉପହସିତ ହୁଅନ୍ତି, ଠିକ୍ ସେମିତି ଆଧୁନିକ ସାହିତ୍ୟ ଯଦି ପୁରୁଣାକୁ ଦେଖି ନାକ ଟେକେ, ଲୋକମାନଙ୍କ ପାଖରେ ପରୀକ୍ଷା ନ ଦିଏ, ତା' ହେଲେ ଉପେକ୍ଷିତ ସାହିତ୍ୟରେ ପରିଣତ ହେବା ସ୍ୱାଭାବିକ କଥା । ଆଜିର ସରକାରୀ ଶାସନ କାଳରେ ଥିବା କବି ସାହିତ୍ୟିକ-ମାନଙ୍କୁ ମନେ ରଖିବାକୁ ହେବ ଯେ ୧୦୦୦ କବିତା ବହି ଛପେଇ ଏବଂ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ତଳିଆ କିରାଣୀ କେଇଜଣ କେତୋଟା ଲାଇବ୍ରେରୀକୁ ଦେଇଦେଲେ ବା ପତ୍ର-ପତ୍ରିକାରେ ନିଜ ଲୋକଙ୍କ ହାତରେ ଆଲୋଚନା ଲେଖେଇ ଛପେଇ ଦେଲେ ଦାୟିତ୍ୱ ସରିଯିବ ନାହିଁ । ଏହା ସୁଲଭ ସାହିତ୍ୟିକ ସାଜବାର ସାମୟିକ ଉଦ୍ୟମ ହୋଇପାରେ ।

ଗଣଜୀବନର ଅସନ୍ତୋଷ ଯାହାକି ସମାଜର ନିଚ୍ଛକ ସତ କଥା ତାକୁ ସାହିତ୍ୟ କରାଇବାର ଦାୟିତ୍ୱ ଏଇମାନଙ୍କର । ସୃଷ୍ଟିଶୀଳ ସାହିତ୍ୟିକ ସବୁ ସମୟରେ ମଧ୍ୟବିତ୍ତଶ୍ରେଣୀରୁ ଆସେ । ମଧ୍ୟବିତ୍ତଶ୍ରେଣୀ ସଦାସର୍ବଦା ଏପରି ଏକ ଅବସ୍ଥାରେ ଥାଏ ଯେ ଦୁଇ ଦିଗର କଥା ଅଙ୍ଗେ ନିଭେଇ ସମାଧାନ ଆଣିଦିଏ । ମଧ୍ୟବିତ୍ତ ଶ୍ରେଣୀ ଏପରି ଅବସ୍ଥାରେ ଥାଏ, ଯେ ଗାଁ-ଦାଣ୍ଡରେ କାଦୁଅରେ ସେ ଚାଲିପାରେ ଓ ସହରକୁ ପୁଅକୁ ପଠାଇ ଯୋଗ୍ୟ କରିପାରେ । ତଳ ଶ୍ରେଣୀର ଲୋକଙ୍କ ଭିତରେ ଅସନ୍ତୋଷ ଥାଏ, ଅଭାବ ଥାଏ । ବଞ୍ଚିବାର ସଂଗ୍ରାମ ଥାଏ, କିନ୍ତୁ ପ୍ରକାଶ କରିବାର ଭାବ ନ ଥାଏ । ଉପର ଶ୍ରେଣୀ ସବୁ ଦେଖେ ବୁଝେ ; ନିଜ ପାଇଁ ସତକୁ ଦେଖି ଆଖି ବୁଜି ଦିଏ, କିନ୍ତୁ ମଧ୍ୟବିତ୍ତ ଭିତରେ ଯେଉଁ ଅଶାନ୍ତି ଥାଏ, ତାହା କ୍ରମେ ସାହିତ୍ୟକୁ ଜୀବନଧର୍ମୀ କରାଏ ; କିନ୍ତୁ ମଧ୍ୟବିତ୍ତରୁ ଏକ ଗୋଟା ଅଂଶ

କ୍ରମେ ଉପରଶ୍ରେଣୀର ଦଲାଲ ହୁଏ । ଯେଉଁ ଅଧା ଅଂଶ ଏଥିରୁ ବାଦ ପଡ଼ିଯାଏ, ସେହିମାନେ ହୁଅନ୍ତି ସମାଜ ପାଇଁ ପ୍ରକୃତ ସାହିତ୍ୟର ସୃଷ୍ଟିକାରୀ ।

ଆଜିର ଓଡ଼ିଆ ପାଠକ କଲିକତାରୁ ପ୍ରକାଶିତ ପକେଟ ବୁକ୍ ବା ପଡ଼ୋଶୀ ଭାଷାରୁ ନକଲେଇ କରି ସାହିତ୍ୟର ପଠକ ନୁହନ୍ତି । ସେ ମଧ୍ୟ ୟୁରୋପୀୟ ଅବକ୍ଷୟ ଓ ହତାଶାବାଦୀ ସାହିତ୍ୟକୁ ଏଡେଇ ଦେଇ ସାରି-ଲେଣି । ତା'ର ଶୁଭସୂଚନା ଅନେକ ଅମଲ ସାହିତ୍ୟିକ । ସାହିତ୍ୟିକ ଯଦି ଇନ୍ଦ୍ରିୟ ସମ୍ଭୋଗର ଜଗତରେ ଘୂରି ଘୂରି ରାସ୍ତାକଡ଼ର ବୁଭୁକ୍ଷୁ ସର୍ବହରାର କଥା ଭୁଲିଯାଏ···ବା ସ୍ୱୀୟ ବିଶ୍ୱମାନସର ନିଚ୍ଛକ ସତ କଥାକୁ ଉପେକ୍ଷା କରେ, ତା' ହେଲେ ସେ ସାହିତ୍ୟ ସାମନ୍ତ ସାହିର ପଦଲେହୀ ସାହିତ୍ୟରେ ପରିଣତ ହେବ । ସାହିତ୍ୟ ସମାଜର ଜୀବନ ସଦୃଶ । ସାମାଜିକ ଅବ୍ୟବସ୍ଥା କିମ୍ବା ଦୁରବସ୍ଥା ବିଷୟରେ ଉପରଠାଉରିଆ ସିଦ୍ଧାନ୍ତ ନ ଦେଇ ଅବସ୍ଥାର ଆଉ ମଧ୍ୟ ଅନୁସନ୍ଧାନ କରି ସେହି ସାମାଜିକ ଅବ୍ୟବସ୍ଥାର କାରଣ କ'ଣ ଓ ସେଥିପାଇଁ କିଏ ଦାୟୀ ତଥା ସମାଧାନର ପଥ ନିର୍ଦ୍ଦେଶ ମଧ୍ୟ ଦେବା ଉଚିତ । ସାହିତ୍ୟିକ ସମାଜକୁ ଚେତନାର ଛୁରୀରେ ଖଣ୍ଡ ଖଣ୍ଡ କରି କାଟି ବ୍ୟବଚ୍ଛେଦ କରିପାରେ । ଯେତେବେଳେ ସମାଜ ସ୍ଥାଣୁ···ଅବକ୍ଷୟ ପରମ୍ପରାବାଦୀ ହୋଇଉଠେ, ସାହିତ୍ୟିକକୁ ସେତେ-ବେଳେ ବିଶେଷ ଭୂମିକା ଗ୍ରହଣ କରିବାକୁ ହୁଏ । ସେ ନିର୍ଦ୍ଦେଶକ ହୁଏ । ମଙ୍ଗୁଆଳର ପ୍ରଚ୍ଛନ୍ନ ଭୂମିକା ନିଏ । ସାହିତ୍ୟିକକୁ ଯୁଦ୍ଧକୁ ଯିବାକୁ ପଡ଼େ । ଉପାସରେ ରହିବାକୁ ହୁଏ । ନୋଳିଆବସ୍ତିଠାରୁ ଆରମ୍ଭ କରି ଜଙ୍ଗଲରେ ସନ୍ନ୍ୟାସୀ ସାଜିବାକୁ ହୁଏ । ଆଦିବାସୀ ସହ ରାତି ବିତେଇବାକୁ ହୁଏ । ତା ନ ହେଲେ ହୃଦୟର କଥା ଖୋଲିଖୋଲି ଭାବେ ପ୍ରକାଶ ପାଏନି । ଆଜି ଯେଉଁ ସାହିତ୍ୟ ସୃଷ୍ଟି ହେଉଛି ସେଥିରେ ଏପରି ଏକ ଭୁଲ ରହିଯାଉଛି ବୋଲି ଅନୁଭବ ସମସ୍ତେ କଲେଣି ।

ମୁଁ ଜଣେ ଅନ୍ଧ ସମାଲୋଚକ ନୁହେଁ କି ନିର୍ବିଘ୍ନରେ ବୈକଳ୍ପ-ସାହିତ୍ୟର ପୃଷ୍ଠପୋଷକ ନୁହେଁ । ସାହିତ୍ୟ ଆଜି କଳା ବଜାରରେ ଦଲାପେଷି ହୋଇ ସେକ୍ରେଟେରିୟଟ, ମନ୍ତ୍ରୀ ମହଲ ଓ ଅଧ୍ୟାପକ ମହଲର ସକ୍ରିକଣ୍ଠେଇରେ ପରିଣତ ହୋଇଥିଲାବେଳେ ଉତ୍ତର ଦକ୍ଷିଣ ଓ ପଶ୍ଚିମ ଓଡ଼ିଶାରୁ ସାହିତ୍ୟ ସେତେ ପରିମାଣରେ ସୃଷ୍ଟି ହେଉ ନାହିଁ । ଓଡ଼ିଶାର ସାହିତ୍ୟାକାଶରେ ପ୍ରବୀଣ ନୂତନ ମଧ୍ୟରେ ମତବାଦ ଜନିତ ଦ୍ୱନ୍ଦ୍ୱ ଓ ସଂଘର୍ଷ

ଯେତେ ଉଚ୍ଚ ସୋପାନକୁ ଉଠିଛି ତାହା ଅପେକ୍ଷା ଡାକ୍ତରମାନଙ୍କ ମଧ୍ୟରେ ଆଗକୁ ଯିବା ପାଇଁ ଗୋଷ୍ଠୀ ସୃଷ୍ଟି ଏବଂ ଗୋଷ୍ଠୀ ପରେ ପରେ ବ୍ୟକ୍ତିଗତ ଭାବେ ଅହମ୍ଭାବ ମାତ୍ରା ଯଥେଷ୍ଟ ବେଶି ପରିମାଣରେ ଦେଖା ଦେଇଛି। ସାଧନା ପାଇଁ ଯେତିକି ଚିନ୍ତା କରିବା କଥା ତା'ଠାରୁ ଅଧିକ ଚିନ୍ତା କରାଯାଉଛି ପ୍ରତିଷ୍ଠିତଙ୍କ ପଛରେ ଗୋଡ଼ାଇ ନିଜକୁ ଜାହିର କରିବାରେ।

ଯେତେବେଳେ ଆମ ପଡ଼ୋଶୀ ଦେଶର ସାହିତ୍ୟିକମାନେ ସେମାନଙ୍କ ଦୃଷ୍ଟିରେ ଦଳିତ ପ୍ରପୀଡ଼ିତ ନିରନ୍ନ ସଂଖ୍ୟାଗରିଷ୍ଠ ନେତାର ପ୍ରତିଲିପିକୁ ସାହିତ୍ୟରେ ସ୍ଥାନ ଦେବାକୁ ଆଗଭର ହେଲେଣି, ସେତେବେଳେ ସ୍ୱକର୍ତ୍ତବ୍ୟରେ ହେଳା କରିବା ଉଚିତ ନୁହେଁ। ଆନ୍ଧ୍ରର ଦିଗମ୍ବର କବିଙ୍କ ଭାଷାରେ—

"Today's writers and poets with a greater social awarness not only reflect in their writings the sociopolitical problems of the day but they also actively participate in people's struggle for a better world."

ସାଂପ୍ରତିକ ପଡ଼ୋଶୀ ସାହିତ୍ୟରେ ଚେତନାର ଅଭ୍ୟୁଦୟ ଦେଖା ଯାଇଥିଲେ ମଧ୍ୟ ଓଡ଼ିଶାରେ ଏହାର ଅଭାବ ଦେଖାଦେଇଛି। ଏଇଥିପାଇଁ ଓଡ଼ିଶାର ସାହିତ୍ୟିକମାନେ ସଚେତନ ହେବା ଉଚିତ ?

ସମସ୍ତେ ପ୍ରାୟ ସାହିତ୍ୟିକ ସୃଷ୍ଟିର ପ୍ରତିଟି ନୂତନ ଧାରା ସମ୍ପର୍କରେ ସଦା ସଚେତନ ଅଛନ୍ତି। କିନ୍ତୁ ପ୍ରତ୍ୟେକ ଲେଖକ ଗୋଟିଏ ଗୋଟିଏ ଶିବିରର ପୃଷ୍ଠପୋଷକ ହୋଇଥିବାରୁ ନିଜସ୍ୱ ଅବସ୍ଥା ପ୍ରତି ସଦାସଚେତନ ରହିବାକୁ ବାଧ୍ୟ ହେଉଛି। ଓଡ଼ିଶାରେ ସାଂପ୍ରତିକ ସାହିତ୍ୟ କ୍ଷେତ୍ରରେ ଯେଉଁମାନେ ରଥୀର ଆସନରେ ସେମାନେ ପଡ଼ୋଶୀ ଧାରା ସହ ଅବହିତ ଥିଲେ ମଧ୍ୟ ନିଜର ପରିବେଶକୁ ଉପେକ୍ଷା ନ କରିବା ପାଇଁ ବାଧ୍ୟ। ପଡ଼ୋଶୀ ରାଜ୍ୟମାନଙ୍କରେ ସାହିତ୍ୟ କ୍ରମେ ଜନଜୀବନ ଆଡ଼କୁ ଗତିକଲା ବେଳେ ମଧ୍ୟବିତ୍ତ ଶ୍ରେଣୀର ଏକ ଗୋଷ୍ଠୀ ତା'ର ବାହକ ହୋଇ ସାରିଲେଣି। ଅଥଚ ଆମ ଓଡ଼ିଶାର ମଧ୍ୟବିତ୍ତ ଶ୍ରେଣୀ ବେଶି ପରିମାଣରେ ବୃତ୍ତିନିଷ୍ଠ ହୋଇ ସମାଜନିଷ୍ଠ ଧାରାକୁ ଗୌଣ କରି ପକାଇଛନ୍ତି। ତେଣୁ

ସାହିତ୍ୟ ଏଠାରେ ପ୍ରଜ୍ଞା ପ୍ରୟୋଗର ଛଳନାରେ ଯେତିକ ଅତିଷ୍ଠ ତା'ଠାରୁ ମନୋରଞ୍ଜନଧର୍ମୀ ସାହିତ୍ୟର ଶସ୍ତା ନଭେଲ ସଂସ୍କରଣ ପ୍ରକାଶରେ ସେତିକ ବ୍ୟସ୍ତ । ସେଥିପାଇଁ ଦିଗମ୍ବର କବିମାନଙ୍କ ଭାଷାରେ —

"Its leaders are with each other to get a Padmasri from the rulers who have reddened their hands in people's blood, height of political prostitution."

ଏ ପ୍ରକାର ଉଦାହରଣ ନିଆଗଲେ ଦେଖାଯିବ ଯେ ପଦପଦବୀ ପାଇଁ ଗୋଟିଏ ଦିଗରେ ଶ୍ରମିକ-ମାରଣ ପଦବୀରେ ଥାଇ ଗଣ-ସାହିତ୍ୟ ସୃଷ୍ଟିଠାରୁ ପଦ୍ମଶ୍ରୀ ପାଇଁ ଆମେରିକା ସାହିତ୍ୟ, ନେହେରୁ ପୁରସ୍କାର ପାଇଁ ରୁଷୀୟ ସାହିତ୍ୟ, ଏକାଡେମୀ ପାଇଁ ଇଲ୍ୟୁଟ୍ ଦର୍ଶନର ଖେଚେଡ଼ୀ ତିଆରି କରିବା କବି, ଅନୁବାଦକ ତଥା ସମୋପର ସାହିତ୍ୟିକମାନଙ୍କର ଅଭାବ ନାହିଁ । ଦୁଃଖର କଥା ଓଡ଼ିଶାର ଅନେକ ଲେଖକ ଜୀବନରେ ପ୍ରତିଷ୍ଠା ପାଇବା ପରେ ରାଜନୀତି ଭିତରକୁ ଲମ୍ଫପ୍ରଦାନ କରିଛନ୍ତି । ରାଜନୀତି ଭିତରୁ ସାହିତ୍ୟ ରସର କପରି ଫାଇଦା ମିଳେ ସେ ସଂପର୍କରେ ନ୍ୟାସନାଲ ବୁକ୍ ଟ୍ରଷ୍ଟ, କେନ୍ଦ୍ର ଏକାଡେମୀ, ଜ୍ଞାନପୀଠ, ନେହେରୁ ପୁରସ୍କାର, ରାଜ୍ୟ ସାହିତ୍ୟ ଏକାଡେମୀ ଆଦି ଅନୁଷ୍ଠାନର କଥା ଅନୁଧ୍ୟାନ କଲେ ବେଶ୍ ଜଣାଯିବ । ପୁଞ୍ଜିପତିମାନଙ୍କର ଏବଂ ମଠମାନଙ୍କରୁ ଭବିଷ୍ୟତ ରହସ୍ୟ ପାଇଁ ଲେଖକ ଜୀବନର ପାଠ ଯଥା ପାଇବା ପଛରେ ସାମାଜିକ ସ୍ୱୀକୃତି ଅଛି । ଅନେକେ ଭାବନ୍ତି କିନ୍ତୁ ତାହା କ'ଣ ପ୍ରକୃତରେ ସତ୍ୟ ? ଏ ସଂପର୍କରେ Marx କହିଛନ୍ତି—

"Our bourgeoisies not being content with having the wives and daughters of the proletariates at their disposal not to speak of common prostitutes, take the greatest pleasure in seducing each other's wives."

ତେଣୁ ଆମର ସାହିତ୍ୟିକମାନେ ଯଥାଶୀଘ୍ର ନିଜ ନିଜର ସ୍ଥାନକୁ ସୁରକ୍ଷିତ କରିବାକୁ ଚେଷ୍ଟା କରନ୍ତୁ । ସାହିତ୍ୟରେ କ୍ରମେ ଦୁଇଟି ଗୋଷ୍ଠୀ ସୃଷ୍ଟି ହେବା ଉଚିତ । ଗୋଟିଏ ଦିଗରେ ଥିଲବାଲାଙ୍କ ସାହିତ୍ୟର ନାନ୍ଦୀପାଠକାରୀ-ଗୋଷ୍ଠୀ ଯାହାଙ୍କର ସଂଖ୍ୟା ବର୍ତ୍ତମାନ ଓଡ଼ିଶାରେ ସର୍ବାଧିକ ଅଗଣିତ ।

ସେମାନେ ଖୁବ୍ ଶୀଘ୍ର ସୃଷ୍ଟି ହେବେ ଓ ଏକଯୁଟ ହୋଇ ଜନସାଧାରଣଙ୍କ ପାଇଁ ସାହିତ୍ୟର ସମଷ୍ଟିଗତ ବିରୋଧ କରିବେ । ଆଗାମୀ ସାହିତ୍ୟ ବର୍ତ୍ତମାନର ଶୀକାର ହେବା ସଙ୍ଗେ ସଙ୍ଗେ ସେଥିରୁ ଯେଉଁ ସ୍ୱର ଜନ୍ମ ନେବ ତାହା ବିଦ୍ରୋହୀ ହେବ ନାହିଁ । ତେଣୁ 'Voice of Revolt'ରେ ପ୍ରକାଶିତ ଆନ୍ଧ୍ର ପ୍ରଗତିବାଦୀ ଲେଖକ ସଙ୍ଘର ଡାକରା ଅନୁଯାୟୀ ଓଡ଼ିଶାରେ —

> "A clear time of demarcation is being drawn between the forces of the revolution of those against it. The poets, writers and artists have to chose their side. You are either on this side of the line or you are not on this side of the line. Let us take up our respective position and stand face to face."

———

# ମୋ ଦୃଷ୍ଟିରେ
# ସାଂପ୍ରତିକ ଗୋଷ୍ଠୀ ସାହିତ୍ୟ

**ଗୁରୁ ମହାନ୍ତି**

ଆଧୂନିକତାର ଅର୍ଥ ଯେବେ ଭିନ୍ନ ଦୃଷ୍ଟି ଭାବରେ ଗ୍ରହଣ କରାଯାଏ, ସେହି ଭିନ୍ନ ଦୃଷ୍ଟିକୁ ହିଁ ସମାଲୋଚନା କହିଲେ ଭୁଲ୍ ବା ଅସଂଗତ ହେବ ନାହିଁ । ସମାଲୋଚକର ଭିନ୍ନ ଦୃଷ୍ଟି ବା ନୂତନ ଦୃଷ୍ଟିଭଙ୍ଗୀ ନ ରହିଲେ, ସମାଲୋଚନାର ଗତି ସ୍ଥିର ବା ଅଚଞ୍ଚଳ ହୋଇ ରହିଯିବାର ସମ୍ଭାବନା ଅନେକ । ସେହି ଦୃଷ୍ଟିରୁ ବୋଧହୁଏ ପ୍ରତ୍ୟେକ ମଣିଷର ଦୃଷ୍ଟିଭଙ୍ଗୀ ଆଜି ଜୀବନର ପ୍ରତ୍ୟେକ ସ୍ତରରେ ବଦଳି ଯାଇଛି ଓ ପ୍ରତିମୁହୂର୍ତ୍ତରେ ବଦଳି ଯାଉଛି । ଜୀବନ ଓ ଜୀବନର ପ୍ରତ୍ୟେକ ବିଭାଗ-ଗୁଡ଼ିକୁ ସେ ଅତି ନିଷ୍ଠାର ସହିତ ନିବିଡ଼ ଭାବରେ ସନ୍ଧାନୀ ଦୃଷ୍ଟିରେ ଦେଖିବାକୁ ଆରମ୍ଭ କରିଛି ।

ମଣିଷର ଜୀବନ ଓ ଜୀବିକାଠାରୁ ଆରମ୍ଭ କରି ତା'ର ସାମାଜିକ ଚଳଣି ଓ ବିଭିନ୍ନ ପରିସ୍ଥିତିର ପରିବେଶରେ ସେ ପ୍ରଭାବିତ ହେବା ସଙ୍ଗେ ସଙ୍ଗେ ତା'ର ସମସ୍ତ ପ୍ରଭାବକୁ ସେ ଆଜି ନିୟନ୍ତ୍ରଣ କେବଳ କରୁନାହିଁ, ତା'ର ସମ୍ପର୍କ ମଧ୍ୟ ପ୍ରତିଷ୍ଠା କରୁଛି । ଅନ୍ୟ ଅର୍ଥରେ ସାମାଜିକ, ନୈତିକ, ଆର୍ଥନୀତିକ ପ୍ରଭାବ, ମଣିଷକୁ କିପରି ନିୟନ୍ତ୍ରଣ କରୁଛି ତା'ର ଆଲୋଚନା ମଧ୍ୟ ବ୍ୟକ୍ତି ଓ ଗୋଷ୍ଠୀର ଅଧୀନସ୍ଥ ହୋଇ ସାହିତ୍ୟରେ ପ୍ରକାଶିତ ହୋଇଛି ।

ଏହି ପରିପ୍ରେକ୍ଷୀରେ ମଣିଷର ଏକ ବ୍ୟକ୍ତିଗତ ବା ସାମାଜିକ ବିଭବ ଭାବରେ ସାହିତ୍ୟକୁ ଗ୍ରହଣ କରି ଯାଉଅଛି ଓ ବ୍ୟକ୍ତିଗତ ପରମ୍ପରାରେ ହେଉ ବା ସାମାଜିକ ପରିପ୍ରେକ୍ଷୀରେ ହେଉ, ଏହାର ବିଚାର ମଧ୍ୟ ହେଉଛି । ପ୍ରଥମରୁ ତେଣୁ କହି ଆସୁଛି ଯେ ଏକ ଭିନ୍ନ ମତ ସବୁ ସମୟରେ ରହି ଆସୁଥିବାରୁ ବିଭିନ୍ନ ମତବାଦର ସ୍ୱର ଶୁଣିବାକୁ ମିଳୁଛି ।

କିନ୍ତୁ ସାହିତ୍ୟକୁ ସାମାଜିକ ପରିପ୍ରେକ୍ଷୀରେ ଦେଖିବାର ଏକ ଦୃଷ୍ଟିଭଙ୍ଗୀ ରହିଥିଲେ ସୁଦ୍ଧା, ସାହିତ୍ୟ ସାହିତ୍ୟିକ ଜୀବନର ଅଭିବ୍ୟକ୍ତି ବା ଅଭିଜ୍ଞତାର ପରିପ୍ରକାଶ ମାତ୍ର । ଏଥିରେ ଦ୍ୱିମତ ନାହିଁ ।

ସାହିତ୍ୟିକ ଏକ ସାମାଜିକ ପ୍ରାଣୀ, କିନ୍ତୁ ଗତ ଶତାବ୍ଦୀ ପର୍ଯ୍ୟନ୍ତ ସାହିତ୍ୟ ସାଧନା ସହିତ ସାମାଜିକତାର ସମ୍ପର୍କ ଆଦୌ ନାହିଁ । କାରଣ ସାହିତ୍ୟିକର ଜୀବନରେ ସାମାଜିକତାର ପ୍ରଭାବ ପଡ଼ୁନାହିଁ କି ତା'ର ଆବଶ୍ୟକତା ସେମାନେ ଅନୁଭବ କରୁ ନାହାନ୍ତି, ସାମାଜିକ ପ୍ରଭାବ ବ୍ୟତିରେକେ ସାହିତ୍ୟର ସୃଷ୍ଟି ସମ୍ପୂର୍ଣ୍ଣ ଅସମ୍ଭବ ; ବିଶେଷ କରି ଆଧୁନିକ ଯୁଗରେ ଯେତେବେଳେ କଳ୍ପନା ବିଳାସର ନଗଡ଼ ବା ଅନ୍ଧାର ପାଚେଶ ଭାଙ୍ଗି ଯାଇଛି । କଳ୍ପନା ସୀମିତ, ଏଥିରେ ସାହିତ୍ୟ ଚିରଦିନ ବଞ୍ଚିରହି ପାରେନା । ସାହିତ୍ୟ ଏକ ସ୍ୱଚ୍ଛ, ଅବାରିତ ପ୍ରବାହର ଧାରା, ଠିକ୍ ଯେପରି ଗୋଟିଏ ଝରଣା ; ଯାହା ଝର ଝର କୂଳ ଲଙ୍ଘି ବହିଯାଏ ଓ ସମୁଦ୍ରରେ ଲୀନ ହୁଏ । ଜୀବନ ସାହିତ୍ୟ, ଝରିଯିବା ପାଇଁ, ବହିଯିବା ପାଇଁ ଏବଂ ମିଶିଯିବା ପାଇଁ ଏକ ମହାମାପୂର୍ତ୍ତାରେ—ମ୍ଳାନ ଶୂନ୍ୟତାରେ ।

T. S. Eliotଙ୍କ ଭାଷାରେ କହିଲେ ଆପାତତଃ ବୋଧେ ଠିକ୍ ହେବ ଯେ ସାମାଜିକ ପ୍ରଭାବ ସାହିତ୍ୟିକ ମନରେ ଭାଷା ମାଧ୍ୟମରେ ଯେଉଁ ରୂପାନ୍ତର ସୃଷ୍ଟି କରେ ତାହା ହିଁ ସାହିତ୍ୟ ପଦବାଚ୍ୟ । ଏସିଡ୍‌ର ସଂଯୋଗରେ ଜିଙ୍କ୍ ପ୍ଲେଟ୍‌ରେ ଯେଉଁ ରୂପାନ୍ତର ସୃଷ୍ଟି ହୁଏ ଏବଂ ତା'ର ଶେଷ ପରିଣତି ଯାହା, ସାମାଜିକ ଘଟଣାର ପ୍ରବାହ ଠିକ୍ ସେହିପରି ସାହିତ୍ୟର ରୂପ ଗ୍ରହଣ କରେ ଓ ସାହିତ୍ୟିକର ଚିନ୍ତା ଓ ଭାଷା ମାଧ୍ୟମରେ ଏକ ପରିବର୍ତ୍ତିତ ସ୍ୱରୂପ ମିଳିଥାଏ ।

ମୋର ପରିସର ସୀମିତ । ତେଣୁ ସାହିତ୍ୟ ଉପରେ ଅଧିକ ମତବ୍ୟକ୍ତ କରିବାର ଅବକାଶ ମୋ' ପକ୍ଷରେ ଅଳ୍ପ । ମୋର ବକ୍ତବ୍ୟ "ଓଡ଼ିଶାରେ ଗୋଷ୍ଠୀ ସାହିତ୍ୟ" । ଗୋଷ୍ଠୀ ସାହିତ୍ୟ କହିଲେ ମୋର ଧାରଣାକୁ କିଛି ସ୍ପର୍ଶ କରେ ନାହିଁ । ତେଣୁ ମୁଁ ପ୍ରଥମରୁ ସାହିତ୍ୟକୁ ଏକ ନିଛକ ବା ଏକକ ଅନୁଭୂତି ବା ଅଭିବ୍ୟକ୍ତି ଭାବରେ ଗ୍ରହଣ କରିଛି ।

ସାହିତ୍ୟିକ ଗୋଷ୍ଠୀ ଓ ଗୋଷ୍ଠୀ-ସାହିତ୍ୟ ଏ ଦୁଇଟିର ଅର୍ଥ ଆପାତତଃ ଭିନ୍ନ ଜଣାପଡୁଥିଲେ ହେଁ ମୋ ମତରେ ଏକ ।

ଗୋଷ୍ଠୀ ଯଦି ସମାଜ ବା ସାମାଜିକତା ହୁଏ ସାହିତ୍ୟିକ ସେଥିରେ ଲିଳିତ ଓ ପାଳିତ । ସାହିତ୍ୟିକ ଗୋଷ୍ଠୀ, ସାମାଜିକ ଗୋଷ୍ଠୀଠାରୁ ଭିନ୍ନ ; କେତେକ ସମସାମୟିକ ସାହିତ୍ୟିକ ନିଜ ସାହିତ୍ୟ ପ୍ରଚଳନର ଅଭିବୃଦ୍ଧି ନିମିତ୍ତ ବା ସମାଜ ଉପରେ ନିଜ ସାହିତ୍ୟିକ ମତବାଦ ଓ ତା'ର ପ୍ରଭାବ ବିସ୍ତାର ନିମିତ୍ତ ନିଜ ନିଜ ମଧ୍ୟରେ ସମ୍ପର୍କ ସ୍ଥାପନ କରିଥାନ୍ତି । ଏହା ସବୁ ସମୟରେ ଏବଂ ସବୁ ଯୁଗରେ ଦେଖିବାକୁ ମିଳିଥାଏ । ମାତ୍ର ଏହା ସହିତ ନିଖୁଣ ସୃଷ୍ଟିଶୀଳ ସାହିତ୍ୟ ରଚନାର ସମ୍ପର୍କ ଆଦୌ ନାହିଁ ।

ଓଡ଼ିଆ ସାହିତ୍ୟ ବା ଭାରତୀୟ ସାହିତ୍ୟକୁ ଛାଡ଼ି ଆମେ ଯେବେ ୟୁରୋପୀୟ ସାହିତ୍ୟ ଆଡ଼କୁ ସାମାନ୍ୟ ଦୃଷ୍ଟି ଦେବା, ଆମେ ଠିକ୍ ଏହି ଗୋଷ୍ଠୀସମୂହର ସୂଚନା ପାଇବା ।

ୟୁରୋପୀୟ ସାହିତ୍ୟର ମଧ୍ୟ ଯୁଗରେ ଦେଖିବାକୁ ମିଳନ୍ତି "ହବାଦୁର" ଗୋଷ୍ଠୀ । ସାମନ୍ତବାଦୀ ସମାଜର ପ୍ରେମ, ପ୍ରଣୟ ଓ ଶୃଙ୍ଗାର ଥିଲା ଏମାନଙ୍କ ସାହିତ୍ୟର ମୁଖ୍ୟ ଉପଜୀବ୍ୟ ବସ୍ତୁ । ଏମାନେ ଏମାନଙ୍କ ପୂର୍ବବର୍ତ୍ତୀ "ଜଙ୍ଗଲପୁର" ବା ଭ୍ରମଣ କବିମାନଙ୍କଠାରୁ ଥିଲେ କାବ୍ୟ-ତତ୍ତ୍ୱରେ ସ୍ୱତନ୍ତ୍ର ।

ରେନେସାଁ ଯୁଗରେ ସେହିପରି ଆବିର୍ଭାବ ହେଲେ "ହ୍ୟୁମାନିଷ୍ଟ ଗୋଷ୍ଠୀ" । ମଧ୍ୟଯୁଗୀୟ ବିଶ୍ୱାସ ପରିବର୍ତ୍ତେ ମୁକ୍ତ ଚିନ୍ତା ଥିଲା ଏମାନଙ୍କ ସାହିତ୍ୟର ଭିତ୍ତି ।

ହ୍ୟୁମାନିଷ୍ଟଙ୍କ ପରେ ଆସିଲେ "ମେଟା ଫିଜିକାଲ" କବି ଗୋଷ୍ଠୀ । ବିଭିନ୍ନ ମାନସିକ ସ୍ତରରେ ଅସଂଲଗ୍ନ ଓ ପରସ୍ପର ବିରୋଧୀ ଆବେଗ ଓ ଅନୁଭୂତିର ଆଭାସ ଏମାନଙ୍କ କବିତାରୁ ମିଳୁଥିବାରୁ କବିତାରେ ସୃଷ୍ଟି ହେଉଥିଲା ଏକ ଦୁର୍ବୋଧତା । ଏହାର ପ୍ରତିବାଦ ସ୍ୱରୂପ ଏମାନଙ୍କ ପରେ ପରେ ପ୍ରକାଶ ପାଇଲେ "ନିଓ କ୍ଲାସିସିଷ୍ଟ" । ଗ୍ରୀକ୍ ସାହିତ୍ୟ ଥିଲା ଏମା-ନଙ୍କର ପ୍ରେରଣାର ଉତ୍ସ । ଏହାର ପ୍ରତିବାଦ ସ୍ୱରୂପ ୧୯ଶ ଶତକରେ "ପ୍ରି ରାଫେଲାଇଟ୍ ଗୋଷ୍ଠୀ" ମୁଣ୍ଡ ଟେକିଲେ ଏବଂ "Art for art's sake" ହେଲା ଏହି ଗୋଷ୍ଠୀର ତତ୍ତ୍ୱ ।

ଏ ସମସ୍ତ ପରବର୍ତ୍ତୀ ଊନବିଂଶ ଓ ବିଂଶ ଶତାବ୍ଦୀରେ "ରୋମାଣ୍ଟିକ୍ ସର୍ ରିଆଲିଷ୍ଟିକ୍, ନାଚ୍ୟୁରାଲିଷ୍ଟିକ୍, ଇମ୍ପ୍ରେସନିଷ୍ଟିକ୍, ସିମ୍ବଲିଷ୍ଟ, ଇମେଜିଷ୍ଟ,

ଏବଂ ସର୍ବୋପରି "ଏକ୍‌ଜିଷ୍ଟେନ୍‌ସିଆଲିଷ୍ଟ" ପ୍ରଭୃତି ବହୁ ଗୋଷ୍ଠୀ କଳା ଓ ସାହିତ୍ୟ କ୍ଷେତ୍ରରେ ଆବିର୍ଭାବ ହୋଇଛନ୍ତି ।

ଭାରତୀୟ ସାହିତ୍ୟରେ ମଧ୍ୟ କେତେକ ନିର୍ଦ୍ଦିଷ୍ଟ ଦର୍ଶନକୁ ନେଇ ଗୋଷ୍ଠୀ ଗଠିତ ହୋଇଛି । ଏହା କେବଳ ସାହିତ୍ୟାଦର୍ଶ ଓ ଜୀବନାଦର୍ଶକୁ କେନ୍ଦ୍ରକରି ଗଢ଼ି ଉଠିଛି ।

ଏହି ପରିପ୍ରେକ୍ଷୀରେ ଆମେ ସାଂପ୍ରତିକ ଓଡ଼ିଆ ସାହିତ୍ୟ ପ୍ରତି ଦୃଷ୍ଟି ଦେଲେ, ୧୯୫୭ ପରର ଲିବିବାସରୀୟ ସାହିତ୍ୟ ସଂସଦଠାରୁ ଆଜିର ଯୁବଲେଖକ ସମ୍ମେଳନ ପର୍ଯ୍ୟନ୍ତ ବିଭିନ୍ନ ସାହିତ୍ୟିକ ଗୋଷ୍ଠୀଙ୍କର ପରିଚୟ ପାଇପାରିବା । ଉଦାହରଣ ସ୍ୱରୂପ ଯୁବଲେଖକ ସମ୍ମେଳନ ଏକ ସାହିତ୍ୟିକ ଗୋଷ୍ଠୀ ଏବଂ ଏହା ମାଧ୍ୟମରେ ଆମେ ପ୍ରତ୍ୟେକ ଯୁବସାହିତ୍ୟିକ, ଓଡ଼ିଶାରେ ଓ ଓଡ଼ିଶା ବାହାରେ ନିଜ ସାହିତ୍ୟର ପ୍ରଚାର ଓ ପ୍ରସାର ନିମିତ୍ତ ଯତ୍‌ସାମାନ୍ୟ ପ୍ରଚେଷ୍ଟା କରି ପାରିବାରେ ସକ୍ଷମ ହୁଏତ ହୋଇ-ପାରୁଛୁ । କିନ୍ତୁ ସାହିତ୍ୟ ସୃଷ୍ଟି ସହିତ ଏହାର ସଂପର୍କ କ'ଣ ? ସାହିତ୍ୟ ନିଃସଙ୍ଗ ମନର ସାଥୀ । ସମଷ୍ଟି ବା ଗୋଷ୍ଠୀ ଭିତରୁ ବାହାରି ଆସିଲେ ସାହିତ୍ୟ ସୃଷ୍ଟି ହିଁ ସମ୍ଭବ । ସାହିତ୍ୟ ସୃଷ୍ଟି ସାହିତ୍ୟିକର ଏକ ବ୍ୟତିକ୍ରମ । ତେଣୁ ସ୍ରଷ୍ଟା ନିଜଠାରୁ ସୃଷ୍ଟିସମୟରେ ବିଚ୍ଛିନ୍ନ ।

ଅନ୍ୟଟିର ଅର୍ଥ ମୋ ମତରେ ହୁଏ ତ ଠିକ୍ ସେଇଆ । ଉପରି ବର୍ଣ୍ଣିତ କ୍ଷୁଦ୍ରଗୋଷ୍ଠୀ ସମାଜ ମଧ୍ୟରେ ନିଜର ପ୍ରତିଷ୍ଠା ନିମିତ୍ତ ନିଜର ନାମ-କରଣ କରିଥାନ୍ତି ଏବଂ ସେହି ନାମ ମାଧ୍ୟମରେ ନିଜକୁ ପରିଚିତ କରାଇ-ଥାନ୍ତି । ଏମାନେ ଗୋଷ୍ଠୀମାଧ୍ୟମରେ ନିଜ ଚିନ୍ତା-ଜାଲକୁ ଫିଙ୍ଗି ଦେବାକୁ ଚେଷ୍ଟା କରନ୍ତି ; ଯେପରି ଯୁବଲେଖକ ସମ୍ମେଳନ ବା ସମ୍ମେଳନ ସହିତ ସଂପୃକ୍ତ ନକ୍ଷତ୍ର, ଅକ୍ଷର, ଅନାମ, ଉବାଚ ବା ଅତିଥି ଗୋଷ୍ଠୀ ସମୂହ ବିଂଶ ଶତାବ୍ଦୀର କ୍ଷିପ୍ର ପରିବର୍ତ୍ତନ ଓ ଅନ୍ୟକୁ ପଛରେ ପକାଇ ଆଗେଇଯିବାର ଯେଉଁ ମନ ମଣିଷର ହୋଇଛି, ସେଥିରେ ଏକାକୀ ଚେଷ୍ଟା ଓ ପ୍ରତିଷ୍ଠାର ସମ୍ଭାବନା ଯେ କେତେ କ୍ଷୀଣ ଓ ମୂଲ୍ୟହୀନ ତାହା ପ୍ରତ୍ୟେକଙ୍କୁ ଜଣା । ଗୋଷ୍ଠୀ ବିନା ସାମାଜିକ ସମାଲୋଚନା, ତିରସ୍କାର ଓ ହତୋତ୍ସାହର ସାମ୍ନା କରିବା ଅତ୍ୟନ୍ତ କଷ୍ଟକର ବ୍ୟାପାର ହୋଇ ପଡ଼ୁଛି । ତେଣୁ ନିଜକୁ ବଞ୍ଚାଇ ଓ ପ୍ରତିଷ୍ଠିତ କରିବା ମୂଳରେ ରହିଛି ଗୋଷ୍ଠୀ ଚେତନା ।

କିଛି ପଛକୁ ଗଲେ ଓଡ଼ିଆ ସାହିତ୍ୟରେ ପଞ୍ଚସଖା ଯୁଗ ରୀତିଯୁଗ, ଓ ସବୁଜ ଯୁଗ ହିଁ ଆମ ଦୃଷ୍ଟିକୁ ଆସେ । ପ୍ରତ୍ୟେକ ଯୁଗରେ, ପ୍ରତ୍ୟେକ ସାହିତ୍ୟରେ ନିଃସଙ୍ଗ ସାହିତ୍ୟ ସାଧକ, ତା'ର ସୃଷ୍ଟିର ସ୍ଥିତି ପାଇଁ, ସୃଷ୍ଟିର ପ୍ରଭାବ ସମାଜରେ ବିସ୍ତାର ନିମିତ୍ତ ଗୋଷ୍ଠୀର ଆଶ୍ରୟ ନେଇଥାଏ ଏବଂ ପ୍ରଚାର ଓ ପ୍ରସାରର ମାଧ୍ୟମ ହିଁ ଗୋଷ୍ଠୀର କାର୍ଯ୍ୟ ମୁଖ୍ୟତଃ ହୋଇଥାଏ ।

କିନ୍ତୁ ପ୍ରତ୍ୟେକ ଗୋଷ୍ଠୀର ସାହିତ୍ୟିକ ଲକ୍ଷ୍ୟ ଓ ଆଦର୍ଶ ଅନ୍ୟଠାରୁ ସ୍ୱତନ୍ତ୍ର ହୋଇ ରହି ଆସିଛି । ଏହି ସାହିତ୍ୟିକ ସେମାନଙ୍କ ସ୍ୱତନ୍ତ୍ର୍ୟ ଚିନ୍ତା ଓ ଆଙ୍ଗିକରେ ସୁସ୍ପଷ୍ଟ ।

ସଂକ୍ଷେପରେ "ସାଂପ୍ରତିକ ଓଡ଼ିଆ ସାହିତ୍ୟରେ ଗୋଷ୍ଠୀ' ଏହି ମର୍ମରେ ବୁଝାଯାଇପାରେ । ଏହାବ୍ୟତିରେକେ ଗୋଷ୍ଠୀ ସାହିତ୍ୟର ଅର୍ଥ ଅନ୍ୟ କିଛି ନାହିଁ । କାରଣ ଏକାଠି ବସି ପଞ୍ଚସଖାର ସ୍ରଷ୍ଟାଗଣ ତାଙ୍କ ସୃଷ୍ଟି କରି ନ ଥିଲେ । ସବୁଜ ଗୋଷ୍ଠୀ ଏକ ସାହିତ୍ୟିକ ଗୋଷ୍ଠୀ । ଏମାନଙ୍କ ସାହିତ୍ୟ କିନ୍ତୁ ସେମାନଙ୍କ ଗୋଷ୍ଠୀର ସାହିତ୍ୟ ନୁହେଁ । ପ୍ରତ୍ୟେକର ସାହିତ୍ୟରେ ସ୍ୱତନ୍ତ୍ର୍ୟ ଅଛି ଏବଂ ପ୍ରତ୍ୟେକର ସାହିତ୍ୟ ସେମାନଙ୍କର ଜୀବନର ଦୃଷ୍ଟିଭଙ୍ଗୀରେ ।

ସାହିତ୍ୟ ସୃଷ୍ଟି ସାହିତ୍ୟିକର ଏକ ଉପଲବ୍ଧି ଓ ତା'ର ପରିପ୍ରକାଶ । ରବିବାସରୀୟ ସାହିତ୍ୟ ସଂସଦ ବା ଯୁବଲେଖକ ସମ୍ମେଳନର ସଭା-ମଣ୍ଡପରେ ବସି ଯଦି ସାହିତ୍ୟ ସୃଷ୍ଟି ହୁଏ, ତା ବି ଗୋଷ୍ଠୀ ସାହିତ୍ୟ ହୋଇ ପାରିବ ନାହିଁ । କାରଣ ପ୍ରତ୍ୟେକର ସ୍ୱାତନ୍ତ୍ର୍ୟ ତା'ର ଲେଖାକୁ ନିୟନ୍ତ୍ରଣ କରିବ ।

ମୋର ଶେଷ ମତ ଏହି ଯେ ଏକ ଗୋଷ୍ଠୀ ମାଧ୍ୟମରେ ନିଜକୁ ପ୍ରକାଶ କରିଯାଇ ପାରେ, କିନ୍ତୁ ଗୋଷ୍ଠୀ ସାହିତ୍ୟର ସଂଜ୍ଞା ହୁଏତ କିଛି ନାହିଁ । ଗୋଷ୍ଠୀ କେବଳ ଆଦର୍ଶ ଓ ଆଭିମୁଖ୍ୟକୁ ଅନ୍ୟ ନିକଟରେ ପହଞ୍ଚାଇ ପାରିବାର ଏକ ସ୍ୱତନ୍ତ୍ର ମାଧ୍ୟମ ।

ସୃଷ୍ଟିର ଧାରା ଯେବେ ସ୍ୱଚ୍ଛନ୍ଦ, ଉନ୍ମୁକ୍ତ ଓ ଅବାରିତ ; ବାଧା ବନ୍ଧନ, ରୀତିନୀତି, ମାନିବା ନ ମାନିବାର ବହୁ ଉର୍ଦ୍ଧ୍ୱରେ ତେବେ ସାହିତ୍ୟ, ସୃଷ୍ଟି କେବଳ ହିଁ ସୃଷ୍ଟି । ସୃଷ୍ଟି ଏକାନ୍ତ ଭାବରେ ସ୍ରଷ୍ଟାର । ଗୋଷ୍ଠୀର ପ୍ରଶ୍ନ ଉଠୁଛି କେତେକେ ?

## ମୋ ଦୃଷ୍ଟିରେ

# ସାଂପ୍ରତିକ ସାହିତ୍ୟରେ ମାନବିକତା

**ଅଧ୍ୟାପକ ଡଃ ଗୋପାଳଚନ୍ଦ୍ର ମିଶ୍ର**

ଜୀବନ ଅଭାବରେ ସାହିତ୍ୟସୃଷ୍ଟି ହୋଇ ପାରେ ନାହିଁ ଏବଂ ଅନୁଭୂତି ତଥା ଅଭିଜ୍ଞତା ଅଭାବରେ ଜୀବନ ପରିପୂର୍ଣ୍ଣ ହୋଇ ପାରେ ନାହିଁ । ଅନୁଭୂତିର ଗଭୀରତା ଏବଂ ଅଭିଜ୍ଞତାର ବୈଚିତ୍ର୍ୟ ଜୀବନକୁ ଅପୂର୍ଣ୍ଣରୁ ପୂର୍ଣ୍ଣ କରିଥାଏ, ଏବଂ ଯେଉଁଠାରେ ଜୀବନ ପରିପକ୍ୱତା ଏବଂ ପରିପୂର୍ଣ୍ଣତା ହାସଲ କରିଥାଏ, ସେଠାରେ ଭାବର ପ୍ରାଚୁର୍ଯ୍ୟ ସଙ୍ଗେ ସଙ୍ଗେ ଅନୁଭୂତିର ନିବିଡ଼ତା ବ୍ୟକ୍ତିଗତ ଶିଳ୍ପ ସାଧନାର ପରିପ୍ରେକ୍ଷୀରେ ଶକ୍ତିଶାଳୀ ଏବଂ ସାର୍ଥକ ହେବା ପାଇଁ ବାଧ୍ୟ । ଶିଳ୍ପ ଓ ସାହିତ୍ୟରେ ଉଭୟ ରସ ଆଉ ରୂପର ମୂଲ୍ୟ ସ୍ୱୀକୃତ । ଭଙ୍ଗୀ ଅର୍ଥାତ୍ ଗଠନ-କଳା ପ୍ରତ୍ୟେକ ଶିଳ୍ପର (Art) ପ୍ରାଣସ୍ପନ୍ଦନ । ତେଣୁ ସାହିତ୍ୟ କହ, କିମ୍ବା ଶିଳ୍ପ କହ ପ୍ରତ୍ୟେକ ବସ୍ତୁ ନିର୍ଦ୍ଦିଷ୍ଟ ପ୍ରେରଣା ଓ ସ୍ପନ୍ଦନକୁ ଅପେକ୍ଷା ରଖେ । ଏହି ପ୍ରେରଣା ଓ ସ୍ପନ୍ଦନ ସାମାଜିକ ସ୍ଥିତି ଉପରେ ନିର୍ଭର କରିଥାଏ । ସାମାଜିକ ସ୍ଥିତି ପୁଣି ନିର୍ଭର କରିଥାଏ ବ୍ୟକ୍ତି ଚେତନାର ସାମଗ୍ରିକ ବିକାଶ ଉପରେ ।

ମାନବିକତା ସବୁଯୁଗରେ ସାହିତ୍ୟ-କର୍ମର ପ୍ରଧାନ ଉପଜୀବ୍ୟ । ଏହି ମାନବିକତା, ବ୍ୟକ୍ତି ଓ ସମାଜର ସଂଘର୍ଷ, ସଂପର୍କ, ବିରୋଧ ଓ ସାଧନା ଉପରେ ନିର୍ଭର କରିଥାଏ । ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟରେ ଏହି ବ୍ୟକ୍ତି ଓ ସମାଜର ସଂପର୍କର ସମୀକରଣ ଉପରେ ମାନବିକତା ରୂପକ ମୌଳିକ ପ୍ରଶ୍ନ ଓ ତା'ର ଉତ୍ତର ଆଧାରିତ । ସତ୍ୟ, ମିଥ୍ୟା, ହିଂସା, ଅହିଂସା, ମୈତ୍ରୀ, ଶତ୍ରୁତା ଏପରି ବିବିଧ ମାନବିକ ବୃତ୍ତିର ସାହିତ୍ୟରେ ଯେତେବେଳେ ସ୍ଥାନ ପାଏ ଏବଂ ସର୍ବଜନ ଉପଯୋଗୀ ବ୍ୟବସ୍ଥାଟି

ଯେତେବେଳେ ସାହିତ୍ୟକାର, କାବ୍ୟକାର ତା'ର ନିଜ ସୃଷ୍ଟି ମାଧ୍ୟମରେ ପ୍ରତିଫଳିତ କରିଏ, ସେତେବେଳେ ଏହି ମାନବିକତା ହିଁ ପ୍ରତିଷ୍ଠିତ ହୁଏ । ମୌଳିକ ମାନବିକ ଗୁଣର ଏହା ବିରୋଧୀ ନୁହେଁ କିମ୍ବା ସାମାଜିକ ବିଚାରର ଏହା ବ୍ୟତିକ୍ରମ ନୁହେଁ । ବରଂ କବି, କଥାଶିଳ୍ପୀ, ନାଟ୍ୟକାର ଯେତେବେଳେ ତା'ର ସୃଷ୍ଟ କାବ୍ୟ କବିତା, ଗଳ୍ପ ଉପନ୍ୟାସ ନାଟକର ପୃଷ୍ଠାରେ ଏହି ମାନବିକ ବିଚାରର ପ୍ରତିଷ୍ଠା ସପକ୍ଷରେ ନ୍ୟୂନତମ ଉଦ୍ୟମ କରିଥାଏ, ସେଠାରେ ସେ କାବ୍ୟିକ ନ୍ୟାୟ ପ୍ରଦର୍ଶନ କରିଥିବା ଯୋଗୁଁ ପ୍ରଶଂସିତ ହୁଏ । ତେଣୁ ମାନବିକତା, ନ୍ୟାୟ, ନୀତି, ଆଦର୍ଶବାଦ, କହିଲେ ସାଧାରଣ ପାଠକ ଯାହା ବୁଝିଥାଏ, କବି ଓ ନାଟ୍ୟକାର କେବେ ତାହାର ବିରୋଧ ଅର୍ଥ କରି ନ ପାରେ ।

ହିନ୍ଦୁର ଗୀତା, ବୌଦ୍ଧମାନଙ୍କର ତ୍ରିପିଟକ, ଖ୍ରୀଷ୍ଟିଆନମାନଙ୍କର ବାଇବେଲ, ମୁସଲମାନଙ୍କର କୋରାନ୍ କିମ୍ବା ଭାରତବର୍ଷର ପ୍ରାଚୀନତମ ବେଦ ଉପନିଷଦରେ ଏହି ମାନବିକତାର ଯେପରି ସ୍ତୁତି, ବ୍ୟାଖ୍ୟାନ କରାଯାଇଛି, ସେଥିରୁ ସର୍ବକାଳୀନ ସାହିତ୍ୟରେ ମାନବିକତାର ଗୁରୁତ୍ୱ ଓ ବୈଶିଷ୍ଟ୍ୟ ସ୍ୱୀକୃତ । ସାହିତ୍ୟର ସଂଜ୍ଞା ମଧ୍ୟ ଏହି ମାନବିକତାର ପରିପୋଷକ । ସାହିତ୍ୟ ଲିଖିତ ରଚନା ଏବଂ ସେହି ଲିଖିତ ରଚନା ମାନବିକ ସମସ୍ୟା ଓ ସଂପର୍କସୂଚକ । ପ୍ରାଚୀନ ଇଜିପ୍ଟ, ବେବିଲୋନ ଓ ଏସିରିୟାନ୍ ସାହିତ୍ୟ, ଚୀନ, ଜାପାନ ଏବଂ ଭାରତବର୍ଷର ସାହିତ୍ୟ ଏହି ମାନବିକତା ଯୋଗ୍ୟତା ଯୋଗୁଁ ଯୁଗଯୁଗ ଧରି ବ୍ୟକ୍ତି ଓ ସମାଜର ଧ୍ୟେୟ ହୋଇପାରିଛି । ପ୍ରାଚୀନ ମଧ୍ୟଯୁଗୀୟ ଏବଂ ସାଂପ୍ରତିକ ସାହିତ୍ୟର ବିଭିନ୍ନ ରଚନାରେ ଏହି ମାନବିକତା ବିଭିନ୍ନ ଲେଖକଙ୍କର ବିଭିନ୍ନ ଦୃଷ୍ଟି କୋଣରୁ ରୂପାୟିତ ହୋଇ ପାରିଛି ।

ଏହି ମାନବିକତା କଦାପି ରାଜନୈତିକ ମତବାଦ ନୁହେଁ କି ଶ୍ରେଣୀ ସଂଘର୍ଷର ନିଦର୍ଶନ ନୁହେଁ । ଯଦ୍ୟପି ବିଶ୍ୱର ଅଧିକାଂଶ ରାଷ୍ଟ୍ରର ବିପ୍ଳବମୂଳରେ ଏହି ମାନବିକତାର ମୌଳିକ ପ୍ରଶ୍ନ ଜଡ଼ିତ ଥିଲା ଓ ସାହିତ୍ୟର ପ୍ରଧାନ ଆବେଗ । କିନ୍ତୁ କେବଳ ଆବେଗ ତ ଯଥେଷ୍ଟ ନୁହେଁ । ସାହିତ୍ୟରେ ସମାଜ ସଚେତନତା ଓ ବୌଦ୍ଧିକତାର ସ୍ଥାନ ମଧ୍ୟ ସ୍ୱୀକାର୍ଯ୍ୟ—ସାହିତ୍ୟରେ ଏହି ସମାଜ ସଚେତନତା କଥାଟି

ବ୍ୟକ୍ତିର ଶୁଭ ଚିନ୍ତାରୁ ହିଁ ସମ୍ଭୂତ । ପ୍ରାଚୀନ ଭାରତୀୟ ସାହିତ୍ୟ ଏହି ଶୁଭ ଓ ଶିବ ଚିନ୍ତାରେ ସଂଯୋଜିତ ।

ବେଦ, ଉପନିଷଦଠାରୁ ଆରମ୍ଭକରି ରାମାୟଣ, ମହାଭାରତ ପର୍ଯ୍ୟନ୍ତ ପ୍ରତ୍ୟେକ ସାହିତ୍ୟ ସୃଷ୍ଟିରେ ଏହି ମାନବିକ ଚିନ୍ତା ଓ ଆବେଦନ ହିଁ ପ୍ରତିଫଳିତ । ରାମାୟଣ ପ୍ରଣେତା ବାଲ୍ମୀକଙ୍କର ଆଦ୍ୟ ଶ୍ଳୋକ ମଧ୍ୟ ଏହି ଶାଶ୍ୱତ, ମାନବିକ ସହାନୁଭୂତିର ପ୍ରଥମ ସ୍ପନ୍ଦନ ଜାତ କରିଥିଲା । ଶରବିଦ୍ଧ ବିହଙ୍ଗର କରୁଣ ଲୋତକ ହିଁ କବି ପ୍ରାଣରେ ସୃଷ୍ଟି କରିଥିଲା ମାନବିକତାର ମନ୍ଦାକିନୀ ଧାରା । ଭଗବତ୍ ଗୀତାରେ ମଧ୍ୟ ବ୍ୟକ୍ତି ଓ ସମାଜରେ ଏହି ମାନବିକତା ଉଦାରତାର ଗୁରୁତ୍ୱ ଓ ମହତ୍ତ୍ୱ ସ୍ୱୀକାର୍ଯ୍ୟ । ପ୍ରାଚୀନ ଗ୍ରୀକ୍ ସାହିତ୍ୟର ମାନବିକତାର ପ୍ରକାଶ ଘଟିଥିଲା ପୁରାଣରଚନାରେ ଏବଂ ସେହି ଗ୍ରୀକ ପୁରାଣ ମଧ୍ୟରେ ଇଲିୟାଡ୍ ଏବଂ ଓଡ଼େସି (Iliad, Odyssey) ଏହି ପୁରାଣର ବ୍ୟାଖ୍ୟା ଓ ସଂଜ୍ଞା ନିର୍ଦ୍ଦେଶ କରିବାକୁ ଯାଇ ପଣ୍ଡିତ ଆରିଷ୍ଟୋଟଲ୍ ଯାହା କହିଥିଲେ ତାହାର ମର୍ମ ହେଉଛି ଯେ ଏତାଦୃଶ ପୌରାଣିକ ମହତ୍ତ୍ୱ, ସମନ୍ୱିତ ରଚନାରେ ଏକ ସୁନିର୍ବାଚିତ କଥାବସ୍ତୁ । ସାଂଗଠନିକ ଏକତ୍ୱ, ସୁନିୟନ୍ତ୍ରିତ ବିସ୍ତୃତି, ଜାତୀୟ ଆଭିମୁଖ୍ୟ, ବର୍ଣ୍ଣନାତ୍ମିକତା ଏବଂ ସ୍ମରଣ ଯୋଗ୍ୟତା ରହିବା ଦରକାର । ଏହି ସବୁ ଯୋଗ୍ୟତା ମଧ୍ୟରେ ମାନବିକତା ଯୋଗ୍ୟତା ମଧ୍ୟ ଅନ୍ତର୍ଗତ । ଇଲିଆଡ୍‌ରେ ନିଷ୍ଠୁର ହିଂସା ବର୍ଣ୍ଣନା ପାଠ କଲେ ପାଠକର ମନ ସାଧାରଣତଃ ବିଦ୍ରୋହୀ ହୋଇ ଉଠେ—

They met each other man to man.
They rushed
Like wolves to combat.
Cruel strife looked on
Rejoicing.

× × ×

As on some tall rock
Two volteeres with talons and hooked beaks,
Fight screaming, so these two
With furious cries
Advanced against each other.

ନାୟକ ଆଟଲେସ୍ ସିଂହ ସଦୃଶ ପରାକ୍ରମୀ ମାତ୍ର ସେ ହିଂସ୍ର, ସେ ଭୟାନକ ଏବଂ କ୍ରୂର ।

ମଣିଷଗଢ଼ା ନିୟମ, ମଣିଷଗଢ଼ା ସମାଜର ସ୍ୱରୂପ ବଦଳିଥାଏ । ମାତ୍ର ପ୍ରକୃତିର ନିୟମ ଅପରିବର୍ତ୍ତନୀୟ । ଏହି ପ୍ରକୃତିର ଅପରିବର୍ତ୍ତନୀୟ ନିୟମ ପୃଷ୍ଠଭୂମିରେ ବ୍ୟକ୍ତି ଓ ସମାଜର ସଂପର୍କ ଯେତେବେଳେ ବିଚାର କରାଯାଏ, ସେତେବେଳେ ସାହିତ୍ୟରେ ମାନବବାଦର ପ୍ରଶ୍ନ ଉଠେ । ଜୀବନର ବିଶ୍ଳେଷଣ କରିବାରେ, ସମାଜର ବିଭିନ୍ନ ଘଟଣାବଳୀର ବ୍ୟାଖ୍ୟା କରିବା ସମୟରେ କବି ମାନବିକତାର ନିକଟରେ କାବ୍ୟସୃଷ୍ଟିର ଉତ୍କର୍ଷକୁ ବିଚାର କରିଥାଏ । ଜୀବନର ସତ୍ୟ ଚିହ୍ନଣ ଯେବେ କାବ୍ୟର ଲକ୍ଷ୍ୟ, କବି ତେବେ ଜୀବନ ପ୍ରତି କେତେକ ପରିମାଣରେ ବିଶ୍ୱସ୍ତ ହେବା ପାଇଁ ବାଧ୍ୟ । ଡିଭାଇନ୍ କମେଡ଼ି (Divine Comedy)ର କବି ଦାନ୍ତେ ତାଙ୍କର ଆଲୋଚ୍ୟ କୃତିରେ ଜୀବନର ଯେଉଁ ସନ୍ଧାନ ଦେଇଛନ୍ତି, ତାହା ଏହି ମାନବିକତାର ମହତ୍ତ୍ୱ ଉପରେ ଆଧାରିତ । ଦାନ୍ତେଙ୍କ ମତରେ ଜୀବନଟା ଯେଉଁ ଏକ ପ୍ରବହମାନ ସୀମାହୀନ ଆଧ୍ୟାତ୍ମିକ ଅନୁଭୂତି ଓ ରହସ୍ୟ, କବି ଏହା ଉଦ୍‌ଘାଟନ କରିବାରେ ବ୍ୟସ୍ତ ରହେ । ଦାନ୍ତେ ସେଥିପାଇଁ ତାଙ୍କ କାବ୍ୟ କୃତିରେ ଘୋଷଣା କରିଥିଲେ ଯେ "ବ୍ୟକ୍ତିର ଜୀବନରେ ଯନ୍ତ୍ରଣା ଦୂର କରିବା ଏବଂ ବ୍ୟକ୍ତିକୁ ଆନନ୍ଦ ପରିତୃପ୍ତିର ଗୌରବ ଦେବା ମୋର ସୃଷ୍ଟିଶିଳ୍ପର ଲକ୍ଷ୍ୟ ।" ଜୀବନରେ ନ୍ୟାୟ ଓ ଅନ୍ୟାୟର ପାରସ୍ପରିକ ସଂଘର୍ଷ ମଧ୍ୟରେ ନ୍ୟାୟର ପ୍ରତିଷ୍ଠାକୁ ସ୍ୱୀକାର କରିବା କବି-ଧର୍ମର ଏକ-ମାତ୍ର ବୈଶିଷ୍ଟ୍ୟ । ସେଥିପାଇଁ ଡିଭାଇନ୍ କମେଡ଼ିର ରାଜନୈତିକ, ଆଧ୍ୟାତ୍ମିକ ତଥା ବୈକ୍ତିକ ବିଶ୍ଳେଷଣରେ ଏହି ମାନବିକତାର ସ୍ୱରୂପ ହିଁ ପରିସ୍ଫୁଟ ହୁଏ । ଏହା ମଣିଷ ଆତ୍ମାର କାବ୍ୟକୃତି ଏବଂ ମାନବଜୀବନର ଧ୍ୱନ୍ୟାତ୍ମକ ତଥା ବ୍ୟଞ୍ଜନାତ୍ମକ ଅଧ୍ୟୟନ ବୋଲି ଜଣାଯାଏ । ସେଥିପାଇଁ ଅମର କବି ଦାନ୍ତେଙ୍କର କାବ୍ୟ ପୁରୁଷଟି ସମଗ୍ର ବିଶ୍ୱରେ ଏକ ନୈତିକ ତଥା ଆଧ୍ୟାତ୍ମିକ ବନ୍ଧୁ ।

ଫରାସୀ ଦାର୍ଶନିକ ରୁଷୋ ଘୋଷଣା କରିଥିଲେ, "Nature has made him good and happy. Society has made him evil and miserable." ସେଥିପାଇଁ ରୁଷୋଙ୍କର ଲକ୍ଷ୍ୟ ଥିଲା ସମଗ୍ର ସମାଜର ପୁନଃ ସଂଗଠନ । ଏହି ସଂଗଠନର ଧାରା ଏବଂ

ମାର୍ଗ ମଧ୍ୟରେ ଯାହା ସୂଚିତ କରିଥିଲେ, ତାହା ହେଉଛି ପ୍ରକୃତି ଭାବପ୍ରବଣତା ; ପ୍ରକୃତି ନିଗୂଢ଼ ଏବଂ ମୌଳିକ ଅଧିକାର । ଆଭିଜାତ୍ୟ-ପୂର୍ଣ୍ଣ ସାମନ୍ତବାଦୀ ଜୀବନ ଅପେକ୍ଷା ସାଧାରଣ ବ୍ୟକ୍ତି ଜୀବନକୁ ରୁଷୋ ଅଧିକ ଗୁରୁତ୍ୱ ଦେଇଥିଲେ । ସାହିତ୍ୟରେ ସାଧାରଣ ମନୁଷ୍ୟର ଗୁରୁତ୍ୱ ଓ ମର୍ଯ୍ୟାଦାର ଅର୍ଥ ମାନବିକତାର ଯଥାର୍ଥ ଉପାସନା । ଜର୍ମାନର ବୁଦ୍ଧିଜୀବୀ ଲେଖକ ଗେଟେ (Johann Wolf Gang von Gothe 1749-1832) ମଧ୍ୟ ତାଙ୍କର ଶ୍ରେଷ୍ଠ କୃତି ଫଷ୍ଟରେ ଏହି ମାନବିକତାର ସ୍ୱର ଉତ୍ତୋଳନ କରିଛନ୍ତି । ଏହି ନାଟକର କଥାବସ୍ତୁ ଜର୍ମାନର ରେନେସାଁ ଯୁଗରୁ ସଂଗୃହୀତ, ଯେଉଁ ସମୟରେ କି ମାନବ ଆତ୍ମା ଅନୁଷ୍ଠାନର ବନ୍ଧନ ଏ ଅତ୍ୟାଚାରର ମୁକ୍ତ ହୋଇଁ ଯଥେଷ୍ଟ ଶକ୍ତି ଓ କ୍ଷମତା ଆହରଣ କରୁଥିଲା । ଗେଟେ ତାଙ୍କ ନାଟକରେ ଯୁଗୀୟ ସଙ୍କେତ ଓ ଚିରନ୍ତନ ଆଧ୍ୟାତ୍ମିକ ଆବେଗ ଜଡ଼ିତ କରି ପାରିଥିଲେ । ଲେଖକଙ୍କ ମତରେ "man errs as long as he aspires"—ମଣିଷ ଯେ ପର୍ଯ୍ୟନ୍ତ ଆଶା ପୋଷଣ କରେ, ସେ ପର୍ଯ୍ୟନ୍ତ ସେ ଭ୍ରମ ଓ ଭ୍ରାନ୍ତିର ବଶବର୍ତ୍ତୀ ହେବା ସ୍ୱାଭାବିକ । ଫଷ୍ଟ ନିଜ ଜୀବନରେ ଭୀଷଣ ଅସନ୍ତୁଷ୍ଟ ଏବଂ ସେ ଆତ୍ମ-ଧ୍ୱଂସରୁ ରକ୍ଷା ପାଇଛି । ଫଷ୍ଟର ଆଧ୍ୟାତ୍ମିକ ଆବେଗ ଓ ତା'ର ଗଭୀରତା ଅକଳନୀୟ ।

ସେ ନୂତନ ଜୀବନର ସନ୍ଧାନରେ ବ୍ୟସ୍ତ ରହିଥିଲା । ମାନବିକତା ସପକ୍ଷରେ ଗେଟେ ବିସ୍ତାରିତ ତାଙ୍କର ଏହି ନାଟକରେ ମୀମାଂସା କରି ଯାଇଛନ୍ତି । ରୁଷିଆର ଔପନ୍ୟାସିକ ତୁର୍ଗେନିଭ (1818-1883), ଡଷ୍ଟଭସ୍କି (1821-1881) ଏବଂ ଟଲଷ୍ଟୟ (1828-1910) ପ୍ରମୁଖ ଏହି ମାନ-ବିକତାର ପ୍ରଚାର ପାଇଁ ସେମାନଙ୍କର ସାହିତ୍ୟିକ ପ୍ରତିଭା ଓ ଶକ୍ତି ଉତ୍ସର୍ଗ କରିଥିଲେ । ତୁଗେନିଭ ତାଙ୍କର ପ୍ରତ୍ୟେକ ଉପନ୍ୟାସରେ (Rudin, A Nobleman's Nest, On the eve, Fathers and children, Smoke, Virgin) ବାସ୍ତବ ସମାଜର ନରନାରୀଙ୍କୁ କେନ୍ଦ୍ର କରି ତାଙ୍କର କଥାବସ୍ତୁ ଓ ଯୋଜନା ପରିକଳ୍ପିତ କରିଥିଲେ । ଋଦ୍ଧିନ ଚରିତ୍ରରେ ଗଭୀର ମାନବିକତାର ଆରୋପ ଲେଖକଙ୍କର ସୂକ୍ଷ୍ମ ସାମାଜିକ ବିଶ୍ଳେଷଣର ପରିଚାୟକ । ସେହିପରି Crime and punishment, The Idiot ପ୍ରଭୃତି କଥାଶିଳ୍ପର ନିର୍ମୀତା ବ୍ୟକ୍ତି ଓ ସମାଜର ସଂପର୍କର ପ୍ରତ୍ୟେକ ପର୍ଯ୍ୟାୟରେ ଏହି ମାନବିକ ରୂପର ଚିରନ୍ତନ ପ୍ରଶ୍ନ ଲକ୍ଷ୍ୟ

କରିଥିଲେ । ନିଷ୍ଠୁରତା, କରୁଣା, ନ୍ୟାୟ ଅନ୍ୟାୟ, ଆଲୋକ ଓ ଅନ୍ଧାରର ପୃଷ୍ଠଭୂମିରେ Crime and Punishment ଉପନ୍ୟାସ ଅଧ୍ୟୟନ କଲେ ବ୍ୟକ୍ତିର ସୂକ୍ଷ୍ମଚିନ୍ତା ଦୋହଲିଯାଏ । ରାସକୋଲନିକୋଭର ପାପ କରିବା ଏବଂ ତା'ର ପ୍ରାୟଶ୍ଚିତ ଭୋଗ କରିବା କିମ୍ବା ସୋନିଆ ଜୀବନର ଧାରାବାହିକ ସ୍ୱାର୍ଥତ୍ୟାଗ ଏହି ମାନବିକ ନ୍ୟାୟର ମୌଳିକ ପ୍ରଶ୍ନ ଉପରେ ଆଧାରିତ ।

ପ୍ରତିଭାଶାଳୀ କଥାଶିଳ୍ପୀ ଟଲଷ୍ଟୟଙ୍କ ସାହିତ୍ୟ ସୃଷ୍ଟି ଏହି ମୌଳିକ ପ୍ରଶ୍ନର ଗୂଢ଼ ତତ୍ତ୍ୱକୁ ଆଶ୍ରୟ କରିଥିଲା । ତାଙ୍କର ବ୍ୟକ୍ତିଗତ ଜୀବନ ଯେପରି ଦ୍ୱନ୍ଦ୍ୱ ଓ ସଂଘର୍ଷ ମଧ୍ୟରେ ଚୂଡ଼ାନ୍ତ ନିଷ୍ପତ୍ତି ପାଇଁ ବ୍ୟାକୁଳ ହୋଇ ଉଠିଥିଲା । ତାଙ୍କର ସାହିତ୍ୟିକ ଅଭିମୁଖ୍ୟ ମଧ୍ୟ ସେହି ମାନବିକ ପ୍ରଶ୍ନ ଦ୍ୱାରା ବାରବାର ଆନ୍ଦୋଳିତ ହୋଇଥିଲା । ଟଲଷ୍ଟୟଙ୍କର ସମଗ୍ର ସାହିତ୍ୟ ସୃଷ୍ଟିର ଗୋଟିଏ ଅଭିମୁଖ୍ୟ, ତାହା ହେଉଛି ନର୍କର ପୃଷ୍ଠଭୂମିରେ ଆତ୍ମାର ଦହନ, ଆତ୍ମାର ପୀଡ଼ନ ଏବଂ ମୁକ୍ତି ପାଇଁ ଆତ୍ମାର ଆକୁଳ ପ୍ରୟାସ । ସେ ତାଙ୍କର ଉପନ୍ୟାସରେ (Cossacks, Resurrection, Anna Karenina, War and Peace) ନିର୍ଭୀକ ଭାବରେ ଜୀବନର ନୈତିକ ଦିଗ ପ୍ରତି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିପାରିଛନ୍ତି । ଦୈନନ୍ଦିନ ଜୀବନର ଜଟିଳ ସମସ୍ୟା, ଯୁଗ ଯନ୍ତ୍ରଣା, ପରାଜୟ, ବ୍ୟକ୍ତିର ବ୍ୟର୍ଥତା, ଏହାର ପୃଷ୍ଠଭୂମିରେ ଟଲଷ୍ଟୟ ମାନବିକ ଆଦର୍ଶ କଥା ହିଁ କହିଛନ୍ତି । ତାଙ୍କର ପ୍ରତ୍ୟେକ ଉପନ୍ୟାସ, ପ୍ରତ୍ୟେକ ଗଳ୍ପ (Where love is there god is) ଜୀବନର ମୌଳିକ ସମସ୍ୟା ସହିତ ଜଡ଼ିତ ହୋଇଥିଲା ।

ବିଖ୍ୟାତ ଇଂରେଜ ନାଟ୍ୟକାର ସେକ୍ସପିଅର ତାଙ୍କର ସଂଖ୍ୟାଧିକ ନାଟକର ଶତାଧିକ ଚରିତ୍ର ମାଧ୍ୟମରେ, ବୃତ୍ତିକ ଦ୍ୱନ୍ଦ୍ୱ ଓ ସଂଘର୍ଷ ପରିପ୍ରେକ୍ଷୀରେ ମଧ୍ୟ ଏହି ନ୍ୟାୟ ଓ ଅନ୍ୟାୟ କଥାଟି ସୂଚିତ କରିଥିଲେ ; ଅନ୍ୟାୟର ପ୍ରାୟଶ୍ଚିତ ଦରକାର । ପାପର ପ୍ରାୟଶ୍ଚିତ୍ତ ଆବଶ୍ୟକ । ଏହି ଆବଶ୍ୟକତା ଜୀବନର ନୈତିକ ପ୍ରଶ୍ନ ଦ୍ୱାରା ସମର୍ଥିତ । ଯେଉଁ ମାନବ ଆତ୍ମାର ବିପର୍ଯ୍ୟୟ ତାଙ୍କର ଓଥେଲୋ ନାଟକର ପ୍ରଦର୍ଶିତ,ତାହାର ଅନ୍ତର୍ବାଣୀ କ'ଣ ମାନବିକତା ନୁହେଁ କି ? (King lear) କିଙ୍ଗ୍‌ଲିୟର ନାଟକରେ ବୃଦ୍ଧ ପିତାର ଜ୍ୱାଳା ଓ ନିର୍ଯ୍ୟାତନା ପ୍ରତ୍ୟେକଙ୍କ ପ୍ରାଣରେ ଗଭୀର ମାନବିକ ସହାନୁଭୂତି ଉଦ୍ରେକ କରିଥାଏ । ବିୟୋଗାନ୍ତ ନାଟକର ସମସ୍ତ କାରୁଣ୍ୟ

ଓ ନାଟ୍ୟରଚନା ମଧ୍ୟରେ ବ୍ୟକ୍ତି ଚରିତ ବ୍ୟାଖ୍ୟାକାର ସେକ୍‌ସପିୟର ଜୀବନର ଏହି ମୌଳିକ ପ୍ରଶ୍ନଟି ଆଦୌ ଭୁଲି ଯାଇ ନ ଥିଲେ । "ଜୁଲିୟସ ସିଜର" ନାଟକରେ ବ୍ରୁଟସର ବିଶ୍ୱାସଘାତକତା ମଧ୍ୟ ନାଟ୍ୟକାରଙ୍କର ମୌଳିକ ମାନବାଦର୍ଶ ପ୍ରତି ଏକ ତୀବ୍ର ଆହ୍ୱାନ । ସେହିପରି ଊନବିଂଶ ଶତାବ୍ଦୀର ଆମେରିକା ଦାର୍ଶନିକ ଲେଖକ ହେନେରି ଡାଭିଡ୍ ଥରୋଙ୍କର ମନ୍ତବ୍ୟ "Live free and uncommitted" କଥାଟି ଏହି ସତ୍ୟର ପରିପୂରକ ।

ପାଶ୍ଚାତ୍ୟ ସାହିତ୍ୟକୁ ବାଦ ଦେଲେ ପ୍ରାଚ୍ୟ ସାହିତ୍ୟ ମଧ୍ୟ ଏହି ମାନବିକତା ଆଦର୍ଶଦ୍ୱାରା ପ୍ରତିଯୁଗରେ ବଳିଷ୍ଠ ଓ ଦୃଢ଼ୀଭୂତ ହୋଇଛି ; ବୈଦିକ ଯୁଗଠାରୁ ରାମାୟଣ ମହାଭାରତ ଯୁଗ ପର୍ଯ୍ୟନ୍ତ । ପ୍ରତ୍ୟେକ ସଂସ୍କୃତ ରଚନାରେ ମାନବିକ ନ୍ୟାୟ ଓ ଅନ୍ୟାୟର ପରସ୍ପର ମୁଖାପେକ୍ଷୀ ସେହି ଜଟିଳ ପ୍ରଶ୍ନର ବରାବର ଆଲୋଡ଼ନ ଦେଖିବାକୁ ମିଳେ । ସଂସ୍କୃତ ନାଟକ ସ୍ୱପ୍ନ ବାସବଦତ୍ତମ୍‌ରେ ସ୍ୱପ୍ନ ବାସବଦତ୍ତା ଏବଂ ପଦ୍ମାବତୀଙ୍କର ଯେପରି କଥୋପକଥନ, ଉଦୟନଙ୍କର ସ୍ୱପ୍ନ ବାସବଦତ୍ତାଙ୍କ ପାଇଁ ଯେଉଁ ପ୍ରେମାନୁରାଗ, ତାହା ବାସ୍ତବିକ ମାନବିକଧର୍ମ ଓ ଆବେଦନଦ୍ୱାରା ରସାପ୍ଳୁତ । ବାସବଦତ୍ତା ବିରହରେ ଉଦୟନ ନବ ବିବାହିତା ଦ୍ୱିତୀୟ ପତ୍ନୀ ପଦ୍ମାବତୀଙ୍କ ସମ୍ମୁଖରେ ଅଶ୍ରୁ ବିସର୍ଜନ କରୁଛନ୍ତି ; କିନ୍ତୁ ସେ ପଦ୍ମାବତୀଙ୍କୁ ବୁଝାଉଛନ୍ତି—

"ଶରଚ୍ଛଶାଙ୍କ ଗୌରେଣ ବାତାବିଦ୍ଧେନ ଭାମିନି,
କାଶପୁଷ୍ପଲବେ ନେଦଂ ସାସ୍ରପାତଂ ମୁଖଂ ମମ ।"

"ହେ ସୁନ୍ଦରି, ଶରଚ୍ଚନ୍ଦ୍ର ସଦୃଶ ଗୌରବର୍ଣ୍ଣ ପବନଦ୍ୱାରା ପ୍ରକ୍ଷିପ୍ତ କାଶକୁସୁମରେଣୁରେ ମୋର ମୁଖ ଅଶ୍ରୁଯୁକ୍ତ ହୋଇଅଛି । ତୁମେ ମନରେ ଅନ୍ୟଥା ଭାବ ନାହିଁ ।"

ଉଦୟନ ବାସବଦତ୍ତାଙ୍କର ପ୍ରେମସ୍ମୃତି ଭୁଲିପାରୁ ନାହାଁନ୍ତି, ପୁଣି ନବପରିଣୀତା ପଦ୍ମାବତୀଙ୍କ ମନରେ ଦୁଃଖ ଦେବା ପାଇଁ ମଧ୍ୟ ତାଙ୍କର ଇଚ୍ଛା ନାହିଁ ।

ଏହି ଦ୍ୱନ୍ଦ୍ୱ ଓ ସଂଘର୍ଷ ମଧ୍ୟରେ ରାଜା ଉଦୟନଙ୍କର ଭିତରର ମଣିଷଟି ଚିତ୍କାର କରୁଛି ; ଦୁଃଖରେ ମ୍ରିୟମାଣ ହୋଇପଡ଼ୁଛି । 'ମୃଚ୍ଛକଟିକ'ରେ ଯେତେବେଳେ ଗଣିକା କନ୍ୟା ବସନ୍ତସେନା ରାଜାଶାଳକଙ୍କ

ଆକ୍ରମଣ ଭୟରେ ଗୃହଦତ୍ତଙ୍କ ଗୃହରେ ପ୍ରାଣ ବିକଳରେ ପ୍ରବେଶ କରିଛି ଏବଂ ଗୃହଦତ୍ତଙ୍କୁ ଅନୁରୋଧ କରିଛି, "ଆର୍ଯ୍ୟ ଗୃହଦତ୍ତ, ଦସ୍ୟୁ ମୋତେ ଆକ୍ରମଣ କରିବାକୁ ମୋ ପଛେ ପଛେ ଧାଇଁଛି, ମୋତେ ରକ୍ଷା କରନ୍ତୁ ।" ଗୃହଦତ୍ତଙ୍କ ହୃଦୟ ମାନବିକ ପ୍ରଶ୍ନଦ୍ୱାରା ଆଲୋଡ଼ିତ ହୋଇଥିଲା । ସଂସ୍କୃତ ସାହିତ୍ୟର ନାଟକସମୂହ ମିଳନାତ୍ମକ । ତା'ର କାରଣ ସମ୍ଭବତଃ ମାନବିକ ନ୍ୟାୟ ଓ ଅନ୍ୟାୟର ସମୀକ୍ଷା କରିବାବେଳେ ନାଟ୍ୟକାର ନ୍ୟାୟ ପ୍ରତି ସ୍ୱତଃ ଆକୃଷ୍ଟ ହୋଇଛନ୍ତି । ଅଧିକାଂଶ ସଂସ୍କୃତ ନାଟକର ଶେଷରେ ନାୟକନାୟିକାଙ୍କର ମିଳନ ଘଟିଥାଏ । ନଚେତ୍ ମିଳନାତ୍ମକ ଦୃଶ୍ୟରେ ନାଟକଟି ନିଶ୍ଚୟ ସମାପ୍ତ ହୋଇଥାଏ ।

ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଏହି ମାନବିକ ପ୍ରଶ୍ନର ବିଚାର ସ୍ୱତନ୍ତ୍ରଭାବରେ ଦେଖିବାକୁ ମିଳେ ନାହିଁ । ପ୍ରାଚୀନ ଓଡ଼ିଆ ସାହିତ୍ୟର କ୍ଳୀବାଙ୍ଗୀକୃତ ଆଧ୍ୟାତ୍ମିକ ତତ୍ତ୍ୱ ଓ ଆଧ୍ୟାତ୍ମିକ ରହସ୍ୟାଚ୍ଛନ୍ନ । ଧର୍ମ ଓ ସୃଷ୍ଟିତତ୍ତ୍ୱର ଗଣ୍ଡି ମଧ୍ୟରେ ସାହିତ୍ୟ ଯେତେବେଳେ ଗୂଢ଼ ଦର୍ଶନ-ସର୍ବସ୍ୱ ଥିଲା, ସେତେବେଳେ ମାନବ ଚରିତ୍ରର ବୈଚିତ୍ର୍ୟ ତଥା ପ୍ରାଚୁର୍ଯ୍ୟ ମଧ୍ୟରେ ଏହି ମାନବିକ ସହାନୁଭୂତିର ପ୍ରଶ୍ନ ସେତେବେଳେ ସ୍ପଷ୍ଟ ହୋଇ ନ ଥିଲା । ଅବଶ୍ୟ ସାହିତ୍ୟ କେତେବେଳେ ହେଲେ ପରସ୍ପର ମାନବିକ ବ୍ୟାପାର ଓ ଆଚରଣକୁ ଛାଡ଼ିପାରି ନ ଥିଲା । ସାରଳା ମହାଭାରତରେ ବର୍ଣ୍ଣିତ ସଂଖ୍ୟାଧିକ ଗଳ୍ପ ଉପାଖ୍ୟାନରେ ଏହି ମାନବିକ ସମ୍ପର୍କର ଜଟିଳତା ପରିଲକ୍ଷିତ ହୁଏ । ସେହି ଜଟିଳତା ମଧ୍ୟରେ କବି ସମଗ୍ର ମାନବ ସମାଜର ନିର୍ଦ୍ଦିଷ୍ଟ ଆଦର୍ଶ ସୂଚିତ କରିଥିବାର ଜଣାଯାଏ ।

ଆଧୁନିକ ଯୁଗର ପ୍ରାକ୍ କାଳରେ ସୁପ୍ରତିଷ୍ଠିତ ପ୍ରଭାବଶାଳୀ କବି ରାଧାନାଥଙ୍କ କାବ୍ୟକୃତି ଏହି ପ୍ରସଙ୍ଗରେ ବିଚାର୍ଯ୍ୟ । ରାଧାନାଥଙ୍କର ଅଧିକାଂଶ କାବ୍ୟ କରୁଣରସାଶ୍ରିତ ଏବଂ ସେହି ସୂତ୍ରରେ ବିୟୋଗାନ୍ତକ, ଯଥା : ଉଷା, ନନ୍ଦିକେଶ୍ୱରୀ, ଚନ୍ଦ୍ରଭାଗା ଏବଂ ଏହି ବିୟୋଗାନ୍ତକତାର ଚରମ ନିଦର୍ଶନ ହେଉଛି ତାଙ୍କର 'ପାର୍ବତୀ' ବର୍ଣ୍ଣିତ କୌଶଲ୍ୟା ଚରିତ୍ର । ବର୍ଣ୍ଣନାଶ୍ରିତ କରୁଣ ନିର୍ଯ୍ୟାତନା, ଆତ୍ମବିକାଶ, ଗ୍ଲାନି, ପରଜନ୍ମର ଶୀକାର ହୋଇଛନ୍ତି ଉଷା, ଆଉ ନନ୍ଦିକେଶ୍ୱରୀ । କାବ୍ୟ ବର୍ଣ୍ଣିତ କଥାବସ୍ତୁର ସଠିକତା ଏବଂ ନିର୍ଭୁଲତା ଯାହା ହେଉନା କାହିଁକି, ରାଧାନାଥ ଯେ କେତେଗୁଡ଼ିଏ ସରଳା, ନିରପରାଧିନୀ ଏବଂ କୋମଳହୃଦୟା ତରୁଣୀଙ୍କୁ

ଅଯଥା ଯନ୍ତ୍ରଣା ଓ ନିର୍ଯ୍ୟାତନାର ଅଗ୍ନିକୁଣ୍ଡରେ ନିକ୍ଷେପ କରିଛନ୍ତି ଏବଂ ଏପରି କରିବାରେ ସାଧାରଣ ମାନବର ସହାନୁଭୂତିର ଅଭାବ ପ୍ରଦର୍ଶନ କରିଛନ୍ତି, ଏହା ସ୍ୱୀକାର୍ଯ୍ୟ ।

ନନ୍ଦିକାର ଆତ୍ମୋତ୍ସର୍ଗ, ଉଷାର ପ୍ରାଣବଳି, ଚନ୍ଦ୍ରଭାଗାର ତିରୋଧାନ କ'ଣ ରାଧାନାଥଙ୍କର କୌଣସି ନିର୍ଦ୍ଦିଷ୍ଟ ଦୃଷ୍ଟିଭଙ୍ଗୀର ପରି-ପୃଷ୍ଟକ ? କବିର ଏକ ନିର୍ଦ୍ଦିଷ୍ଟ ଚେତନା ଏହି କାବ୍ୟ ବର୍ଣ୍ଣିତ ବ୍ୟର୍ଥ ପ୍ରେମିକାମାନଙ୍କ ଜୀବନରେ କାର୍ଯ୍ୟକାରୀ ହୋଇପାରିଛି । ସେଥିପାଇଁ ତ ଅଶ୍ରୁମୁଖୀ ନନ୍ଦିକା କିମ୍ବା ଧର୍ଷିତା କୌଶଲ୍ୟାଙ୍କର ଇତିବୃତ୍ତି ଯେପରି ମାନବିକତାକୁ ଆହ୍ୱାନ ଜଣାଇଥାଏ । ଗଙ୍ଗାଧର ମେହେରଙ୍କର 'ତପସ୍ୱିନୀ'ରେ ଆମୂଳଚୂଳ ଏହି ମାନବିକତାର ଅଭାବ ଯେପରି ପାଠକ ଉପଲବ୍ଧି କରିଥାନ୍ତି । ମାନବିକତାର ଅଭାବରେ ପାଠକ ମନେ ନିର୍ବାସିତା ସୀତାଙ୍କ ଦୁଃଖ ଓ ନିର୍ଯ୍ୟାତନାରେ ସମବେଦନା ପ୍ରକାଶ କରିଛନ୍ତି । ନିର୍ବାସିତା ବୈଦେହୀଙ୍କ ଦୁଃଖ ଓ ଦୁର୍ଦ୍ଦିନରେ ସମଗ୍ର ପ୍ରକୃତି ଦ୍ରବୀଭୂତ ହେବା ମଧ୍ୟ ସେହି ସହାନୁଭୂତି ।

"ଏ ଦରେ ସେ ଦରେ ଗୃହିଁ ଚକିତ ଲୋଚନେ,
ମୃଗମାନେ ରହିଗଲେ ବିଚଳିତ ମନେ ।
ଜନନୀ କ୍ରୋଡ଼ନେ ଗୃହିଁ ନ ବୁଝି ତା'ମାନେ,
ବ୍ୟସ୍ତ ଯଥା ହୋଇଥାନ୍ତି ତା ସନ୍ତାନମାନେ ।"

—ତପସ୍ୱିନୀ

'ପ୍ରଣୟ ବଲ୍ଲରୀ' କାବ୍ୟରେ ଦୁର୍ବାସା ପ୍ରେମୋଦ୍‌ଗତା ଶକୁନ୍ତଳାଙ୍କୁ ଅଭିଶାପ ଦେବା ମୂଳ କଥାବସ୍ତୁ ଅନୁରୂପ ହୋଇପାରେ ; ମାତ୍ର ଘଟଣାଟି ନିଗୂଢ଼ ମାନବିକତାର ବିରୋଧୀ । ସାଧାରଣ ମାନବିକ ନ୍ୟାୟୟୁକ୍ତ ସହାନୁ-ଭୂତିର ଅଭାବ ଏଠାରେ ପରିଲକ୍ଷିତ ।

"ଯେନ ପୂଜ୍ୟପୂଜା ବ୍ୟତିକ୍ରମ ଫଳ
ଯା'ଠାରେ ରଖିଛି ଲକ୍ଷ୍ୟ
ସେ ତୋତେ ଚିହ୍ନିବ ନାହିଁ ତୁ ଦେଲେ ହେଁ
ଆପଣାର ପରିଚୟ ।"

ଏହି ପୌରାଣିକ ଆଖ୍ୟାନଭାଗରେ ବିଧିନିର୍ଦ୍ଦିଷ୍ଟ ବ୍ୟାପାର ନିହିତ ଥାଇପାରେ । ମାତ୍ର ସାଧାରଣ ପାଠକର ହିତାହିତ ଜ୍ଞାନର ଏହା

ସମ୍ପୂର୍ଣ୍ଣ ବିରୋଧୀ । ସେହିପରି ଦୁଷ୍ମନ୍ତ ଶକୁନ୍ତଳାଙ୍କୁ ଚିହ୍ନି ନ ପାରିବା ଆହୁରି କରୁଣ ଏବଂ ପାଠକ ପ୍ରାଣରେ ସହାନୁଭୂତି ଚେତନାର ପ୍ରତୀକ ।

"ସତେ କି ସୁନ୍ଦର, ଚିହ୍ନିଅଛ ମୋତେ
ମୁଁ ଧରିଛି ତୁମ୍ଭ କର ।
ସତେ କି ବଲ୍ଲଭ- ରୂପେ, ଦେଖିଅଛ
ବଦନକୁ ଦୁଷ୍ମନ୍ତର ?"

ଆଧୁନିକ ସାହିତ୍ୟରେ ବହୁ ଉପନ୍ୟାସ ଓ ଗଳ୍ପରେ ଏହି ମାନବିକତାର ପ୍ରଭାବ ସ୍ୱୀକୃତ । ଫକୀରମୋହନଙ୍କ କ୍ଷୁଦ୍ରଗଳ୍ପ ଓ ଉପନ୍ୟାସଗୁଡ଼ିକ ମାନବିକତାର ବୈଶିଷ୍ଟ୍ୟ ରକ୍ଷା କରିଛି । ପୁଣି କେତେବେଳେ ମାନବିକତାକୁ ଉପେକ୍ଷା କରିଛି ବୋଲି ଜଣାଯାଏ । ଉଦାହରଣ ସ୍ୱରୂପ 'ରେବତୀ' ଗଳ୍ପ ଫକୀରମୋହନଙ୍କର କଳାଦୃଷ୍ଟିରେ ଏକ ଅନବଦ୍ୟ ସୃଷ୍ଟି । ସାମାଜିକ ପୃଷ୍ଠଭୂମିରେ ଏକ ନିଖୁଣ ଚିତ୍ର, ମାତ୍ର ମାନବିକତାର ମାନଦଣ୍ଡରେ 'ରେବତୀ'ର ଯବନିକା ପତନ କେତେଦୂର ସମର୍ଥନ ଯୋଗ୍ୟ ତାହା ବିଚାର୍ଯ୍ୟ—ବାସ୍ତବ ଘଟଣା ହୋଇପାରେ । ମାତ୍ର କଥାଶିଳ୍ପୀ ରେବତୀକୁ ସେପରି କାରୁଣ୍ୟର ଶୀକାର ରୂପେ ଅଙ୍କନ କରି ସମସ୍ତଙ୍କର ଅନୁଭୂତି ଓ ଅନୁକମ୍ପାର ପାତ୍ରୀ କରିପାରିଛନ୍ତି । "ଗଣ୍ଡିପୁଅ ଅନନ୍ତା" ଗଳ୍ପରେ ଅନନ୍ତାର ବିପର୍ଯ୍ୟୟ ମଧ୍ୟ ପାଠକମନରେ ଅନୁକମ୍ପା ଉଦ୍ରେକ କରିଥାଏ । ବିଶେଷତଃ "ଡାକମୁନସୀ" ଗଳ୍ପରେ ମାନବିକତା ହରିସିଂହ ଆଉ ତାର ପାଠୁଆ ପୁଅ ଗୋପାଳର ସଂଘର୍ଷ ମଧ୍ୟରେ କେତେ ଜୀବନ୍ତ ଓ କେତେ ବିଶ୍ୱସ୍ତ ହୋଇପାରିଛି । ହରିସିଂ ମାନବିକତାର ଯେପରି ପ୍ରତିମର୍ତ୍ତି, ମାତ୍ର ତାର ପାଠୁଆ ଏବଂ ଗୁଣ୍ଡିକରିଆ ପୁଅ ହେଉଛି ଏହାର ବ୍ୟତିକ୍ରମ । "ଛ'ମାଣ ଆଠଗୁଣ୍ଠ" ଉପନ୍ୟାସରେ ଫକୀରମୋହନ ବାରମ୍ବାର ବର୍ଣ୍ଣିତ ଚରିତ୍ର ମାଧ୍ୟମରେ ମାନବିକତାର ପ୍ରଶ୍ନ ଉତ୍ଥାପନ କରିଛନ୍ତି । ପରୋକ୍ଷ ହେଉ କିମ୍ବା ପ୍ରତ୍ୟକ୍ଷ ହେଉ ଫକୀରମୋହନଙ୍କ ଉପନ୍ୟାସରେ ମାନବିକତାର ଗ୍ଲାନି ଓ ପରାଜୟ ଘଟିଛି ବୋଲି ମନେ ହୁଏ । ରାମଚନ୍ଦ୍ର ମଙ୍ଗରାଜ ଥିଲେ ସ୍ୱାର୍ଥ-ପିଶାଚ ଲମ୍ପଟ ଦୁଃଶ୍ଚରିତ୍ର । ସେ ଫତେପୁର ସରଣ୍ଟାର ଜମିଦାର ହୋଇପାରିଥିଲେ ।

ଏକମାତ୍ର ଟଙ୍କା ଥିଲା ତାଙ୍କର ଲକ୍ଷ୍ୟ । ସେହି ଲକ୍ଷ୍ୟ ହାସଲ ପାଇଁ ସେ ଶାଗୁଆ ଭଗିଆ ପରି ନିରୀହଙ୍କର ସର୍ବସ୍ୱ ଅପହରଣ କରିଛନ୍ତି ।

ନେଇ ଗାଈ, ଛ'ମାଣ ଆଠଗୁଣ୍ଠ ଜମି ଅପହରଣ ଏବଂ ଚାଂପା ସହିତ ଷଡଯନ୍ତ୍ର । ଏହି କୁକାର୍ଯ୍ୟର ପ୍ରାୟଶ୍ଚିତ ସ୍ୱରୂପ ମଙ୍ଗରାଜ ପରେ ଜେଲଦଣ୍ଡ ଭୋଗିଥିଲେ, ନର୍କ ଯନ୍ତ୍ରଣା ଭୋଗ କରିଥିଲେ ; କିନ୍ତୁ ଶାରିଆ ଭଗିଆ କି ପାପ କରିଥିଲେ । ସେମାନେ ଶୋଷିତ ଅତ୍ୟାଚାରିତ ହେଲେ । ଅସହାୟ ଅବସ୍ଥାରେ ମୃତ୍ୟୁବରଣ କଲେ । ମଙ୍ଗରାଜଙ୍କ ଜୀବନରେ ପାପର ପ୍ରାୟଶ୍ଚିତ ନିଶ୍ଚିତ ପ୍ରମାଣିତ ହେଲା ; କିନ୍ତୁ ଶାରିଆ ଭଗିଆଙ୍କର ଦୁଃଖ, ପରାଜୟର ବ୍ୟର୍ଥତା ମଧ୍ୟରେ ଲେଖକ କ'ଣ ପ୍ରମାଣ କରି ପାରିଛନ୍ତି, ଶାରିଆ ଆଉ ଭଗିଆ ଯୁଗ ଯୁଗ ପାଇଁ ସାହିତ୍ୟରେ ଏହି ମାନବିକତାର ପ୍ରଶ୍ନ ଉଦ୍ରେକ କରିଛନ୍ତି । ସେମାନେ ଜୀବନରେ ମାନବିକତା ବିଷୟରୁ ବଞ୍ଚିତ । ତଥାପି ସେମାନେ ସମାଜ ସମ୍ମୁଖରେ ଏକ ଅମୀମାଂସିତ ସମସ୍ୟା ଉତ୍ଥାପନ କରିଛନ୍ତି । ତାହା ହେଉଛି ମାନବିକତାର ସମସ୍ୟା ।

ଦ୍ୱିତୀୟ ମହାଯୁଦ୍ଧ ପରବର୍ତ୍ତୀ ବିଶେଷତଃ ସ୍ୱାଧୀନତା ପରବର୍ତ୍ତୀ ଯୁଗରେ ଓଡ଼ିଆ ସାହିତ୍ୟରେ ଏହି ମାନବିକତାର ମାପକାଠିକୁ କବି, ନାଟ୍ୟକାର ଓ ଔପନ୍ୟାସିକମାନେ କେତେଦୂର ସେମାନଙ୍କ କଳାକୃତିରେ ପ୍ରୟୋଗ କରିଛନ୍ତି ତାହା ଅନୁଧ୍ୟାନ ଯୋଗ୍ୟ ।

ବିଂଶ ଶତାବ୍ଦୀର ତୃତୀୟ ଦଶକରେ ଓଡ଼ିଆ ସାହିତ୍ୟରେ ଯେଉଁ ସମସ୍ୟା ଦେଖା ଦେଇଥିଲା ତନ୍ମଧ୍ୟରେ ମାନବିକତାର ଅବତାରଣା ଥିଲା ଅନ୍ୟତମ । ମାନବିକ ମୂଲ୍ୟବୋଧ କଳା ଓ ସାହିତ୍ୟର ଆବେଦନର ଅନ୍ତରାଳରେ ଯେପରି ପ୍ରଚ୍ଛନ୍ନଭାବରେ ନିହିତ ଥିଲା । ସତ୍ୟବାଦୀଗୋଷ୍ଠୀର ଲେଖକମାନେ ଜୀବନର ଘାତ ପ୍ରତିଘାତ ଓ ସଂଘର୍ଷ ମଧ୍ୟରେ ଅତ୍ୟାଚାରିତ-ମନର ଅନ୍ତରାତ୍ମା ପ୍ରତି ଆକୃଷ୍ଟ ଥିଲେ । ତଥାପି ସେମାନଙ୍କର ସାହିତ୍ୟରେ ମାନବିକତାର ଜୟଗାନ ଅପେକ୍ଷା ଅତୀତ ଓ ଇତିହାସର ରସାଳ ପୁନରା-ବୃତ୍ତିର ସେମାନଙ୍କ ଶିଳ୍ପ-କର୍ମର ଥିଲା ଆଭିମୁଖ୍ୟ । ଗୋପବନ୍ଧୁ ଦାସ, ଗୋଦାବରୀଶ ମିଶ୍ରଙ୍କ କବିତାରେ ବ୍ୟକ୍ତି ମନର ଯେଉଁ ସୂକ୍ଷ୍ମ ରୂପଟିଏ ପ୍ରକାଶ-ପାଇଛି ତାହା ସମସ୍ତ ଦୁଃଖ, ଦୁର୍ବିପାକ ବିରୋଧରେ ହେଉଛି ମଣିଷମନର ବିଦ୍ରୋହ । ଗୋପବନ୍ଧୁଙ୍କ କବିତା "ବ୍ୟଥିତ ପ୍ରାଣର ଅନ୍ତିମଅଶ୍ରୁ" ମାନବିକ ଆବେଗର ଏକାନ୍ତ ପ୍ରତିଧ୍ୱନି । ବ୍ୟକ୍ତି ବହିଃଜଗତର ପ୍ରଭାବକୁ ସ୍ୱୀକାରି ନ କରି ଯେତେବେଳେ ସ୍ୱଚ୍ଛଳମନରେ ନିଜର ସ୍ଥିତି ଓ ଭାରସାମ୍ୟକୁ ଉପଲବ୍ଧି କରିଥାଏ ସେତେବେଳେ ତା'ର ମନର କଥା ହିଁ ସ୍ପଷ୍ଟ

ହୁଏ । ଗୋଦାବରୀଶ ମିଶ୍ରଙ୍କର କେତେକ ଗାଥା କବିତାରେ ମାନବିକତାର ଜୟ ଘଟିଛି ଏବଂ ଜୀବନର ଅନ୍ୟାନ୍ୟ ବିଚାରର ସେଠ'ରେ ସ୍ଥାନ ନାହିଁ । "କାଳିଜାଈ" ଗାଥା କବିତାରେ ପ୍ରଥମେ ପ୍ରଥମେ ମାନବିକତାର ପ୍ରଭାବ ସ୍ୱୀକୃତ ହେଲେ ହେଁ କବିତାର ଉପସଂହାରରେ ମାନବିକ ବିଚାର, ଆଚାର ଅପେକ୍ଷା ଅଦୃଶ୍ୟ ନିୟତିର ଶକ୍ତି ଅଧିକ କାର୍ଯ୍ୟକାରୀ ହୋଇଛି, "ଦୁଃଖିଧନ" କବିତାରେ ମଣିଷମନର ଅପରିତୃପ୍ତ ବିଜୟପିପାସା ପ୍ରତି-ଫଳିତ । ଓଡ଼ିଶାର ପ୍ରକୃତି ଓ ତାର ପରିବେଶରେ ବେଳେ ବେଳେ ମାନବିକତାକୁ କବି ଅଧିକ ପ୍ରକଟିତ କରିଛନ୍ତି । ସବୁଜଗୋଷ୍ଠୀର କବି-ମାନଙ୍କର ଲେଖାରେ ମାନବିକତାର ଅପୂର୍ବ ଚିତ୍ର ଦେଖିବାକୁ ମିଳେ । ଏହି ଗୋଷ୍ଠୀର ଉଭୟ କବିତା, ଉପନ୍ୟାସ ଓ ଗଳ୍ପଗୁଡ଼ିକରେ ବାସ୍ତବ ମଣିଷମନର ଆଧୁନିକ ରୂପଟି ସ୍ପଷ୍ଟ ହୁଏ । ପ୍ରଥମତଃ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ "ପୁରୀ ମନ୍ଦିର" କବିତା ବିଚାର କରାଯାଉ । ଏହି କବିତା-ଟିରେ ପାରମ୍ପରିକ ଓ ରକ୍ଷଣଶୀଳ ଚିନ୍ତା ଅପେକ୍ଷା କେତେକ ମାନବବାଦୀ ଚିନ୍ତା ପ୍ରତିଫଳିତ ହୋଇଥିବାର ଦେଖାଯାଏ । ଆଜିର ସମାଜରେ ବ୍ୟକ୍ତି ନିଜର ଅସ୍ତିତ୍ୱ ପାଇଁ ସବୁକିଛି ତ୍ୟାଗ କରୁଅଛି ; କିନ୍ତୁ ତ୍ୟାଗ ସତ୍ତ୍ୱେ ତାର ଈପ୍ସିତ ଫଳ ମିଳୁ ନାହିଁ ।

"ପୁରୀ ମନ୍ଦିର" କବିତାଟିରେ ଇତିହାସ ଓ କାଳ ଅପେକ୍ଷା ମଣିଷର ସମସାମୟିକ ସମାଜ ଓ ବ୍ୟକ୍ତିର ଆଭାସ ଦେଖିବାକୁ ମିଳେ । କବି ଯେତେବେଳେ ପୁରୀ ମନ୍ଦିରକୁ ଚାହିଁ କହିଛନ୍ତି ।

"ମାନବର ସୃଷ୍ଟି ଏ ଯେ ମାନବର ଅନ୍ତର ଆରତି
ନମଇ ମୁଁ ତେଣୁ,ଏଥି ଜଣାଏ ମୋ ବ୍ୟଥାର ଭାରତୀ
କାତର ଚିତ୍କାର କେତେ ଅନ୍ତରର ଦୁଃଖ
ଜଡ଼ ଏ ପାଷାଣ ଦେହେ ହୋଇ ଅଛି ମୂକ
ଆଜି ଏହି ଦେଉଳ ଗହ୍ୱରେ
ଶତକଣ୍ଠ ପ୍ରତିଧ୍ୱନି ଥରେ,
ମିଶାଇ ତା ସଙ୍ଗେ
ଏ ମନ୍ଦିର ଅଙ୍ଗେ
କଣ୍ଠସ୍ୱର
ଉଠେ ମୋର ।"

ମଣିଷ ପଥର ଦେହରେ ପ୍ରାଣର କଥା ଯେପରି ଛଳ ଛଳ ଭାଷାରେ ଅଭିବ୍ୟକ୍ତ କରିପାରୁଛି ତାହାର ଅନ୍ତରାଳରେ ହିଁ ମାନବିକତାର ସ୍ୱର ଶୁଣିବାକୁ ମିଳେ । ମଣିଷ ସମାଜର ଅଧଃପତନ ଯଥାର୍ଥରେ ବ୍ୟକ୍ତିର ଅଧଃପତନ ଓ ବିଶ୍ଳେଷଣ ବୋଲି ଜଣାଯାଇଛି । ଏହି ମାନବିକତାର ଦୃପ୍ତ ସ୍ୱର ଲେଖକଙ୍କର "ମାଟିର ମଣିଷ" ଉପନ୍ୟାସରେ ଏକ ନିର୍ଦ୍ଦିଷ୍ଟ ପୃଷ୍ଠ-ଭୂମିରେ ପ୍ରତିଧ୍ୱନିତ ହୋଇପାରିଛି । ହରି ମିଶ୍ର ଯେତେବେଳେ ଘର ଭାଙ୍ଗିବା ପାଇଁ ପ୍ରତାରଣା ଓ ମାୟାଜାଲ ବିସ୍ତାର କରିଛି ସେତେବେଳେ ଯଦୁ ଦଲେଇ ଯେପରି ତାହାର ପ୍ରତିକ୍ରିୟା ପ୍ରକାଶ କରିଛି ଏବଂ ବର୍ଲି ପ୍ରଧାନ ଯେପରି ନିଜର ମନର କଥା କହିଛି ତାହା ଉଲ୍ଲେଖ ଯୋଗ୍ୟ । "ଆଉ ଆମେ ମଣିଷଜନ୍ମ ପାଇ ଶହେ ଘର ଲୋକ ମରିଯିବା, ଗାଁ ଭିତରେ ଏକା ରହିବେ ହରି ମିଶ୍ର ?" ବରଜୁ ଚରିତ୍ରରେ ତ୍ୟାଗର ଯେଉଁ ଅମଳିନ ସ୍ୱାକ୍ଷର ତାହା ତାହାର ଗଭୀର ଉପଲବ୍ଧିରୁ ହିଁ ସମ୍ଭବ ହୋଇଥିଲା । ବ୍ୟକ୍ତି, ସମାଜ, ପରିବାର ତିନୋଟି ଆୟତନ ମଧ୍ୟରେ ବରଜୁ ଛକଡ଼ି ଆଗରେ ଯେପରି ନିଜର ମନକଥା ଖୋଲି କହିଛି, ତାହା ହିଁ ମାନବିକତାର ଚରମ ବାଣୀ । ବରଜୁ ହସି ହସି କହିଲା, "ନାଇଁରେ ବୋକା—ସେଇ ଖର୍ଚ୍ଚ ସବୁ କଏ ଆଉ ବୁଝୁ ଥାଏ ? ହାଣ୍ଡି ସୁନା ବାହା ହେଲେ, ତାଙ୍କର ବାହାଘର ଖର୍ଚ୍ଚ ଆଜି ଆମେ ଭାଗବଣ୍ଟାରେ ହିସାବ କରିବା—ଏମିତି ବୁଦ୍ଧି ଆମର ? କାଇଁକି, ମୁଁ ପରା କହୁଚି—ସମ୍ପତ୍ତି ଅଲଗା ହବ ନାଇଁ, ପାଚିରି ଉଠିବ ନାଇଁ, ହିଡ ପଡ଼ିବ ନାଇଁ—ଆମେ ଖାଲି ଭିନେ ହବା—ଏ ଘର ତୋର, ଏ ବାଡ଼ିବଗିଚ୍ଚ ଜମି ଫସଲ, ଗୋରୁ ଗାଈ, ଗଛ ବୃକ୍ଷ ସବୁ ତୋର—ମୋର କ'ଣ ହବ କହିଲୁ ? ଆଉ ତ ଗୋଟାଏ ଝିଅ ମୋତି—ଯୋଉଠି ଠାଏ ବାହା କରିଦେଲେ ଛୁଟି—ଦାମ ତ ଅଣ୍ଡିରି ପୁଅଟା—ଯୋଉଠି ହେଲେ ମୂଲଲାଗି ପେଟ ପୋଷିବ—ଆଉ ଆମେ ଦି'ଟା ମଣିଷ କ'ଣ ଚଳି ଯାଇ ପାରିବୁ ନାଇଁ ?"

ଉପନ୍ୟାସରେ ବରଜୁ ଚରିତ୍ରର ଏହା ହିଁ ମହିମାମୟ ଅଭିବ୍ୟକ୍ତି ? ବରଜୁ ଘରଦ୍ୱାର ସବୁ ଛାଡ଼ିଦେଇ ଚାଲିଗଲା, ଘରପ୍ରତି, ସମ୍ପତ୍ତି ପ୍ରତି ତାହାର ଆଦୌ ଲୋଭ ନ ଥିଲା । ବଡ଼ଭାଇର ଚରିତ୍ରର ଏତାଦୃଶ ବିସ୍ମୟକାରୀ ଅଭିବ୍ୟକ୍ତି ଛକଡ଼ିକୁ ଉଭୟ ପରୋକ୍ଷ ଓ ପ୍ରତ୍ୟକ୍ଷ ଭାବରେ ଅନୁତପ୍ତ କରିଛି, ସାମ୍ପ୍ରତିକ ଯୁଗର ଆଉ ଏକ ଉପନ୍ୟାସ "ଭୃଣ୍ଡ

ବାଇବ''ରେ ମଧ୍ୟ ଏହି ମଣିଷତାର ଧାରଣା ପାଠକକୁ ଅଭିବ୍ୟକ୍ତ କରେ । ଧର୍ମ, ସମାଜ, ସଂସ୍କୃତି ସବୁ ଏଇ ମଣିଷ ହାତରେ ଗଢ଼ା । ମନର ଅରଣା ଦଉଡ଼ ଆଗରେ ଠିଆକରି ବାଧା ଦେବାକୁ ମଣିଷ ଗଢ଼ିଛି । ଲଜ, ଭୟ, ସଙ୍କୋଚ ଚିନ୍ତା ତ ଏକାକଥା, ମଣିଷ ଗଢ଼ା ନିୟମର ପ୍ରକାର । ନ ମାନ ଚଳ ହେବ ନାହିଁ । ସୃଷ୍ଟି କାରଣର ଇଚ୍ଛା ପ୍ରବଳ ହେଲେ ମିଳନର ଆଗ୍ରହକୁ ଦାବ ହେବ ନାହିଁ । ଆକର୍ଷଣର ଧାପ ସହି ହେବ ନାହିଁ । ସବୁ ପ୍ରଥା ଓ ନିୟମର ବାଡବତା ଭାଙ୍ଗି ପଡ଼ିବ । ଦେହ ଦେହର ମିଳନ ହେବ ଏହା ହେଉଛି ଦୁନିଆଁରେ ନିତ । ଭୁଣ୍ଡ ବାଇବ ରହିଛି ତା'ପରେ ଛି, ଛି, ଅମୁକଟା, ଛିଃ, ଅଧର୍ମ କଥା, ଅନାଗ୍ରର କଥା ସବୁ ସତ ସବୁ ଠିକ୍ ।

ପୁନଶ୍ଚ ''ଦାନାପାଣି'' ଉପନ୍ୟାସରେ ସରୋଜନୀ ଓ ବଳଦତ୍ତର ଚରିତ୍ର ବିଶ୍ଳେଷଣ ବାସ୍ତବ ଧର୍ମୀ ହେଲେ ହେଁ ଲେଖକଙ୍କର ଦୃଷ୍ଟିକୋଣ ପୂରାପୂରି ସତ୍ୟାନୁଗାମୀ । ବାସ୍ତବ ଚରିତ୍ର ଶୋଚନୀୟତା ମଧ୍ୟରେ ଲେଖକଙ୍କର ବ୍ୟଙ୍ଗାତ୍ମକ ଆବେଗ ମାନବିକତା ପ୍ରଶ୍ନଦ୍ୱାରା ପ୍ରଭାବିତ । ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ସହିତ ଆଧୁନିକ କବିତା ଓ ନାଟକରେ ମଧ୍ୟ ଏହି ବିଷୟ ଉତ୍‌ଥାପିତ ହୋଇଥାଏ । ସତ୍ୟବାଦୀ ଗୋଷ୍ଠୀର କବିମାନଙ୍କ କବିତାରେ ଏକାନ୍ତ ଭାବରେ ଏହି ମାନବିକତା ପ୍ରଶ୍ନ ପ୍ରତିଫଳିତ । ଗୋପବନ୍ଧୁ ଦାସଙ୍କର ''ବ୍ୟଥିତ ପ୍ରାଣର ଅନ୍ତିମ ଅଶ୍ରୁ'' ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ଶତାଧିକ କବିତା ମଣିଷତାର ମାପକାଠିରେ ବିଚାର୍ଯ୍ୟ । ସମାଜରେ ସାଧାରଣ ଦୁଃଖୀ ଜୀବନର ଯେଉଁ ଚିତ୍ର ଦେଖିବାକୁ ମିଳେ ତାହା ଏହି ଗୋଷ୍ଠୀର କବିମାନଙ୍କ କବିତାରେ ସମବେଦନାର ସହିତ ପ୍ରକଟିତ ହୋଇଥିଲା । ନାରୀ କବି କୁନ୍ତଳା କୁମାରୀଙ୍କର ଅପର୍ଯ୍ୟାପ୍ତ କାବ୍ୟ କବିତା ଏହି ମୌଳିକ ମାନବିକତା ଚିନ୍ତାର ପକ୍ଷପାତୀ । ତାଙ୍କର କବିତାଗୁଡ଼ିକର ଶୈଳୀ ତଥା ଭାବଗତ ଭାରସାମ୍ୟ ମାନବିକ ଆବେଦନ ଉପରେ ଆଧାରିତ । କବିଙ୍କର ଲେଖନୀରେ ବ୍ୟକ୍ତିର ସ୍ୱରୂପ ଯେପରି ପ୍ରକଟିତ ତାହାହେଉଛି ।

> ''ତିରି ଜୀବନ ମୋ ଅଶ୍ରୁ-ଅର୍ଜିତ,
> ଫଳେ ଶେଷେ ହେବ ବଞ୍ଚିତ ବିକ୍ଷ ତ,
> ଥିବ ଯା ସଞ୍ଚିତ କଣ୍ଟ ଚରଣେ ଦେବି ମୁଁ
> ଅନନ୍ଦେ କାନ୍ଦିବି ।''

କବି ଉଦାର ଭାବରେ ଜୀବନର ପ୍ରତ୍ୟେକ ଦିଗନ୍ତ ସ୍ପର୍ଶ କରିଥିଲେ । ଏହି ଯୁଗର ଅନ୍ୟ ଜଣେ ଗୀତିକବି ପଦ୍ମଚରଣ ପଟ୍ଟନାୟକ ତାଙ୍କର କାବ୍ୟ କବିତାରେ ଜୀବନର ଏହି ମୂଳମନ୍ତ୍ର ରକ୍ଷା କରିପାରିଥିଲେ । ଭାରତ ସଭ୍ୟତାର ମର୍ମବାଣୀ ହେଉଛି ବ୍ୟକ୍ତି ଜୀବନର ତ୍ୟାଗ ଓ ସେବା ମନୋଭାବ ।

କବିଙ୍କ ଲେଖମାରୁ —

"ସୁଖତ୍ୟାଗେ ଭାରତର 'ସୁଖଲାଭ' କଥା
ସଂସାରର କଳ୍ପନା ଅତୀତ,
ତେଣୁ ହେ ବିଦେଶୀ ଭାଇ . ନ ମଣ ମାନସେ
ଏ ଭାରତ ସଭ୍ୟତା-ବଞ୍ଚିତ ।"

ଓଡ଼ିଆ କାବ୍ୟ କବିତା ଓ ନାଟକ, ଉପନ୍ୟାସ, ଗଳ୍ପ ସାମ୍ପ୍ରତିକ ଯୁଗରେ ଯେଉଁ ପରିମାଣରେ ବାସ୍ତବଧର୍ମୀ ହୋଇଛି ଓ କଥନ-ସର୍ବସ୍ୱ ହୋଇଛି ସେହି ପରିମାଣରେ ତାହା ମାନବିକତାକୁ ଜାବୁଡ଼ି ଧରିଅଛି । ଭାରତୀୟ ସାହିତ୍ୟର ଏହା ହିଁ ମଜ୍ଜାଗତ ମୌଳିକତା । ସାମ୍ପ୍ରତିକ ଯୁଗରେ ବହୁ ନୂତନ ଶସ୍ତା, ଦାର୍ଶନିକ ଓ ବୈଜ୍ଞାନିକ ତଥ୍ୟ ଆବିଷ୍କୃତ ହୋଇଥିଲେ ହେଁ ମାନବିକତା—ରୂପକ ରହସ୍ୟାଚ୍ଛନ୍ନ ଜୀବନତତ୍ତ୍ୱ ପ୍ରତି କେହି କେବେ ସ୍ପୃହ ହୋଇ ନାହାଁନ୍ତି । ସାମ୍ପ୍ରତିକ ଔପନ୍ୟାସିକ ଓ ଗଳ୍ପଲେଖକ ମଣିଷକୁ ଭୁଲିଯାଇ ନାହାଁନ୍ତି, ନୂତନ ଦର୍ଶନ ଓ ନୂତନ ପରମ୍ପରା ଯେଉଁ ପରିମାଣରେ ଉଦ୍‌ଘାଟିତ ହେଉଅଛି ସେହି ପରିମାଣରେ ସାହିତ୍ୟରେ ମଣିଷର ଓ ସମାଜର ମୁଖ୍ୟ ଭୂମିକା ସ୍ୱୀକୃତ ହେଉଅଛି । ଫରାସୀ ବିପ୍ଳବର ସ୍ରଷ୍ଟା ରୁଷୋ, ସମାଜବାଦର ଜନକ କାର୍ଲମାର୍କସ ଏବଂ ବିପ୍ଳବୀ ଲେନିନ୍ କମ୍ବା ଭାରତବର୍ଷର ଶକ୍ତିଶାଳୀ ଅହିଂସବାଦୀ ଗାନ୍ଧିଙ୍କ ନେତୃତ୍ୱ ଭାରତୀୟ ସାହିତ୍ୟରେ ଖାଲି ପ୍ରତିଫଳିତ ନୁହେଁ, ବରଂ,ଆଧୁନିକ ଭାରତୀୟ ପ୍ରାଦେଶିକ ସାହିତ୍ୟମାନଙ୍କର ରାଷ୍ଟ୍ରୀୟ ବିପ୍ଳବର ପୃଷ୍ଠଭୂମିରେ ଏକ ଗଭୀର ସନାତନ ପରମ୍ପରା ପ୍ରତିଷ୍ଠିତ ହେବାକୁ ଯାଉଛି । ଓଡ଼ିଆ ସାହିତ୍ୟ ଏହି ସାର୍ବଜନୀନ ପରମ୍ପରା ଓ ଆଦର୍ଶକୁ ଗ୍ରହଣ କରିବାରେ ଆଦୌ ପଶ୍ଚାତ୍‌ପଦ ନୁହେଁ । ଚୈତନ୍ୟ, ଶଙ୍କରଦେବ, ତୁଳସୀ ଦାସ, ରାମାନୁଜ, ତୁକାରାମ ପ୍ରଭୃତି ଧର୍ମ-ପ୍ରଚାରକ ଏବଂ ସେକସ୍‌ପିୟର, ଓ୍ୱାର୍ଡସ୍‌ୱାର୍ଥ, ହ୍ୱାଇଟ୍‌ମ୍ୟାନ୍, ଟଲଷ୍ଟୟ,

ଚେକଭ୍, ବଙ୍କିମଚନ୍ଦ୍ର, ପ୍ରେମଚନ୍ଦ, ଫକୀରମୋହନ ଏବଂ କାହ୍ନୁଚରଣ ପ୍ରଭୃତି ସାହିତ୍ୟସ୍ରଷ୍ଟା ସେମାନଙ୍କ ପ୍ରକୃତ ଆଦର୍ଶ ଓ ଲିଖିତ କୃତିରେ ଏହି ମାନବିକତା ରୂପକ ଦେବତାର ଆବାହନ କରିଛନ୍ତି । ଆଧୁନିକ ଯୁଗର ଲେଖକମାନେ ଯେତେବେଳେ ଅତ୍ୟାଚାର ଓ ଅନ୍ୟାୟ ବିରୋଧରେ ସ୍ୱର ଉତ୍ତୋଳନ କରନ୍ତି, ସାଧାରଣ ନିର୍ଯ୍ୟାତିତ ବ୍ୟକ୍ତି ପାଇଁ ଅଶ୍ରୁ ବିସର୍ଜନ କରନ୍ତି ସେତେବେଳେ ସେମାନେ ସାହିତ୍ୟର ଗୋଷ୍ଠୀଗତ ମତବାଦ ଅପେକ୍ଷା ମାନବିକତାକୁ ସେମାନଙ୍କର କୃତିରେ ଅଗ୍ରାଧିକାର ଦେଇଥାନ୍ତି । ସ୍ରଷ୍ଟାର ବିକାଶ ଓ ବ୍ୟକ୍ତି-ସ୍ୱାତନ୍ତ୍ର୍ୟର ବିକାଶ ମୂଳରେ ସାହିତ୍ୟର ଏହି ମୌଳିକ ଉଦ୍ଦେଶ୍ୟ ଓ ଆଦର୍ଶ ସ୍ଥାନ ପାଇବା ଉଚିତ୍ ।

**ସ୍ୱାଧୀନତା ପରବର୍ତ୍ତୀ କାଳରେ**

୧୯୪୭ ମସିହାରୁ ୧୯୭୨ ମସିହା ପର୍ଯ୍ୟନ୍ତ ଏହି ଦୀର୍ଘ ପଚିଶ ବର୍ଷକାଳ କୌଣସି ସାହିତ୍ୟିକ ବୌଦ୍ଧିକ ଚିନ୍ତା ଓ ଚେତନା ପାଇଁ ପ୍ରଶସ୍ତ ନ ହେଲେ ମଧ୍ୟ ସ୍ୱଳ୍ପ ନୁହେଁ । ଆଲୋଚ୍ୟ ସମୟ ମଧ୍ୟରେ ସାହିତ୍ୟର ସ୍ୱର ଓ ଆଙ୍ଗିକ ବଦଳିବାକୁ ବାଧ୍ୟ ହୋଇଛି । ଆଙ୍ଗିକ ଅପେକ୍ଷା ସାହିତ୍ୟର ଆଭ୍ୟନ୍ତରୀଣ ଚେତନା ଓ ସ୍ୱରୂପ ବହୁ ପରିମାଣରେ ପରିବର୍ତ୍ତିତ ହୋଇଛି । ଗଳ୍ପ, କବିତା, ପ୍ରବନ୍ଧ, ନାଟକ, କଥାଶିଳ୍ପ ଏକ ନୂତନ ମୂଲ୍ୟବୋଧ ଓ ନୂତନ ଦିଗ୍‌ଦର୍ଶନରେ ଋଦ୍ଧିମନ୍ତ ହେବାର କଥା । କାରଣ ଜନଜୀବନର ପ୍ରଭାବ ସାହିତ୍ୟ ଓ ସାହିତ୍ୟିକକୁ ଏବଂ ସ୍ରଷ୍ଟା ଓ ସୃଷ୍ଟିକୁ ପ୍ରଭାବିତ କରିଛି । ସାହିତ୍ୟ ସମୟର ଓ ଯୁଗର ସୃଷ୍ଟି । ଇତିହାସ ଓ ସମାଜ ସାହିତ୍ୟ ସୃଷ୍ଟି କରନ୍ତି । ସାହିତ୍ୟିକ ମଧ୍ୟ ଇତିହାସ ଓ ଯୁଗ ପରିବର୍ତ୍ତନ ପାଇଁ ଦାୟୀ ହୋଇଥାନ୍ତି । ସ୍ୱାଧୀନତା ପରବର୍ତ୍ତୀକାଳରେ ଲେଖକମାନଙ୍କ ହାତରେ ସାହିତ୍ୟର ଗତି ଅପ୍ରତିହତ ହୋଇଅଛି । ବହୁଳ ପତ୍ରପତ୍ରିକା, ଏକାଧିକ ପୁସ୍ତକ ପ୍ରକାଶନ, ଉଚ୍ଚାଙ୍ଗସୃଜନଧର୍ମୀ ସାହିତ୍ୟ ସୃଷ୍ଟି ପାଇଁ ବହୁ ପରିମାଣରେ ପ୍ରେରଣା ଯୋଗାଇଅଛି ।

ରାଜନୀତିକ ଆନ୍ଦୋଳନ, ସମାଜରେ ଭୂମିହୀନମାନଙ୍କର ସମସ୍ୟା, କାରଖାନାମାନଙ୍କରେ ଶ୍ରମିକମାନଙ୍କର ଅଶାନ୍ତି, ବୈଜ୍ଞାନିକ ଅଗ୍ରଗତି ଏହିପରି ଏକ ବାସ୍ତବଧର୍ମୀ ପୃଷ୍ଠଭୂମିରେ ଗତ ତିନିଦଶକର ସାହିତ୍ୟ ରଚିତ । ସମସ୍ୟା ଯେତେ ବ୍ୟାପକ ଓ ଦୁଃସାଧ୍ୟ ବୋଲି ମନେ ହୋଇଛି,

ସାହିତ୍ୟିକ ସେହି ପରିମାଣରେ ତାହାକୁ ନିଜର ମାନସପଟ୍ଟରେ ଅବଧାରଣ କରିପାରିଛି । ଭଙ୍ଗିର ସ୍ୱାତନ୍ତ୍ର୍ୟ, ଦୃଷ୍ଟିକୋଣର ସ୍ୱାତନ୍ତ୍ର୍ୟ ସେମାନଙ୍କର ରଚନାରେ ଏକ ନୂତନ ଗନ୍ଧ ଓ ସ୍ୱର ତୋଳିଅଛି । ସାହିତ୍ୟରେ ଏହି ନୂତନ ସ୍ୱର ଓ ଧାରା ସ୍ୱାଧୀନତା ପରବର୍ତ୍ତୀ କବିତାରେ ଯେଉଁ ପ୍ରକୃତି-ମାଣରେ ପ୍ରତିଫଳିତ, କଥାଶିଳ୍ପ, ଉପନ୍ୟାସ ଓ ନାଟକମାନଙ୍କରେ ତାହା ସେହି ପରିମାଣରେ ପ୍ରତିଫଳିତ ହୋଇ ନାହିଁ । ତେବେ ସ୍ୱାଧୀନତା ପରବର୍ତ୍ତୀ ଅପୂର୍ବ ଶିଳ୍ପ ସୃଷ୍ଟିରେ ଲେଖକ ଓ କବିର ଯେଉଁ ବ୍ୟକ୍ତି ଦୃଷ୍ଟିକୋଣ ପ୍ରତିଫଳିତ, ତାହାର ସୂକ୍ଷ୍ମ ଅନୁଶୀଳନ କଲେ ଜଣାଯାଏ ସେ କବି ବାସ୍ତବବାଦୀ ହେବା ସଙ୍ଗେ ସଙ୍ଗେ ମାନବଧର୍ମୀ ହେବାକୁ ପ୍ରୟାସ କରିଛି ।

ଦାରିଦ୍ର୍ୟ, ବୁଭୁକ୍ଷା, ଅନାହାର, ଧର୍ମଘଟ ମଧ୍ୟରେ ସ୍ୱାଧୀନତା ଯେଉଁ ପଚଶ ବର୍ଷକାଳ ଏହି ଦେଶରେ ଅତିବାହିତ ହୋଇଛି, ପଞ୍ଚବାର୍ଷିକ ଯୋଜନା, ପ୍ରଚାର ଓ ପ୍ରସାର ଯେଉଁ ଦେଶରେ ସର୍ବାଧିକ ଦୃଷ୍ଟି ଆକର୍ଷଣ କରିଛି, ସେଠାରେ କବି ସାହିତ୍ୟିକ ଓ ନାଟ୍ୟକାରମାନଙ୍କର ନ୍ୟୂନତମ ଦାବୀ ଏହି ମଣିଷ ସମାଜର ଉନ୍ନତି କଲେହିଁ ଉତ୍କୃଷ୍ଟ ବୋଲି ଜଣାଯାଏ । ପରିବାର ନିୟନ୍ତ୍ରଣ ଯେଉଁ ଦେଶରେ ଦାରିଦ୍ର୍ୟ ନିବାରଣର ଏକମାତ୍ର ଦୃଢ଼ ପଦକ୍ଷେପ ସେଠାରେ କବି ମାନବିକତା ନାମରେ ଶପଥ ଗ୍ରହଣ କରିବା କିଛି ବିଚିତ୍ର ନୁହେଁ । କାରଣ କ୍ଷୁଧିତ, ନଗ୍ନ, ନିରାଶ୍ରିତ ବ୍ୟକ୍ତି ସହିତ କାବ୍ୟ କବିତା ଆଲୋଚନା କରିବା ପ୍ରବଞ୍ଚନା ଓ ପ୍ରତାରଣା ଛଡ଼ା ଅନ୍ୟ କ'ଣ ହୋଇପାରେ ? ଜବାହାରଲାଲ ନେହେରୁ ଥରେ ଆଲୋଚନା ସମୟରେ କହିଥିଲେ—"It is no good you and I talking about high literature to a starving person we have to feed him before we talk to him of religion and morality. The best morality is to feed him. A poor nation like ours' has to think in these terms first." ଏଥିରୁ ସ୍ୱାଧୀନତା ପରବର୍ତ୍ତୀ ଯୁଗରେ ସାହିତ୍ୟିକର ଦୃଷ୍ଟିଭଙ୍ଗୀ କ'ଣ ହେବା ଉଚିତ ତାହା ଅନୁମେୟ । କବି ଓ ନାଟ୍ୟକାରଠାରୁ କାଳ୍ପନିକ ରସାଳ କାବ୍ୟ କବିତା ପରିବର୍ତ୍ତେ ଦରିଦ୍ର ଦେଶବାସୀ, ଚାହିଁଥିଲେ ଜୀବନର ବାସ୍ତବବାଦୀ କରୁଣ ପ୍ରତିଛବି ଓ ତାହାର ପ୍ରତିକାର । ଏହି ପରିପ୍ରେକ୍ଷୀରେ ବିଚାର କଲେ ଓଡ଼ିଆ ସାହିତ୍ୟ

ଏକ ଅନ୍ଧକାର ଗର୍ଭରୁ ଆଲୋକର ବେଘାଆଡ଼କୁ ଅଗ୍ରସର ହେବାକୁ ପ୍ରୟାସ କରୁଅଛି । ଏହି ପ୍ରୟାସରେ କୌଣସି ପରମ୍ପରା, କୌଣସି ସ୍ଥିତାବସ୍ଥା ଓ ପୁରାତନ ଚଳଣୀ ପ୍ରତି ଆଦୌ ଆନୁଗତ୍ୟ ନାହିଁ, ବରଂ ସମଗ୍ର ସ୍ଥିତାବସ୍ଥାକୁ ଧ୍ୱଂସ କରି ସେଥି ମଧ୍ୟରୁ ଏକ ନୂତନ ସୃଷ୍ଟି ଗଢ଼ିବା ପାଇଁ କବି ଆନ୍ତରିକତା ଦେଖାଇଛି । ଗତାନୁଗତିକତାରୁ କେବଳ କବିତା ନୁହେଁ, ସମଗ୍ର ସାହିତ୍ୟକୁ ରକ୍ଷା କରିବା ପାଇଁ ଆଧୁନିକ ସାହିତ୍ୟିକ ଖଡ଼୍ଗହସ୍ତ । ସେଥିପାଇଁ ବିପ୍ଳବର ପ୍ରୟୋଜନ ହୋଇଛି ଏବଂ ସେହି ବିପ୍ଳବର ପ୍ରୟାସରେ ମଣିଷକୁ ଖୋଜିବାକୁ ଚେଷ୍ଟା ହୋଇଛି । ସେହି ନୂତନ ମଣିଷଟି ସାହିତ୍ୟରେ କିଏ ତାହାର ଆଶା ଆକାଂକ୍ଷା ଓ ଅଭିରୁଚି କ'ଣ ତା'ର ଜୀବନର ବଞ୍ଚି ରହିବାର ଧୈର୍ଯ୍ୟ ଏବଂ ପ୍ରସ୍ତୁତି କ'ଣ—କବି ଓ ସାହିତ୍ୟିକ ଏହାର ସନ୍ଧାନ ଦେବା କଥା ।—

"ମୁଁ ତା' ପାରେନା ଜାଣି,
ତଥାପି ମୁଁ ଡେଇଁ ଗଣି ଗଣି ।
ଚହ୍ନିବାକୁ ଚେଷ୍ଟା କରେ ତାକୁ
ଏବଂ ତା'ର ଲୁଣର ଆଙ୍ଗଠି
ମୁଠାରେ ମୋ ଚୁପି ଧରି
ଚୂନା ଚୂନା କରି ଫିଙ୍ଗେ ବାଲିରେ ଏକାଠି
ଯେ ବାଲିରେ ଲଗିଥାଏ କେଉଁଠି
କେଉଁଠି ଅଲତାର ଗାର
କାହିଁ ପୁଣି ମଥାର ସିନ୍ଦୁର
ଯେଉଁଠାରେ ଶବଦ ସବୁ ଝରି ଆସେ
ନାଲି ଓଠ ତଳେ
ଟାଇପକରା ପଦ ପରି
ଲାଲ ଶବଦରେ
ସାଦା ସାଦା କାଗଜ ଉପରେ ।"

( ସମୁଦ୍ରକୂଳ, ସଚ୍ଚିଦାନନ୍ଦ ରାଉତରାୟ )

କବିତା କବି ପୁରୁଷର ଅନ୍ତର୍ବାଣୀ, କବି ଜଞ୍ଜାଳ, ଦୁଃଖ ଓ ବେଦନାକ୍ତ ପୃଥିବୀ ମଧ୍ୟରେ ଦୁଃଖୀ ମଣିଷର ସନ୍ଧାନ କରିଅନ୍ତି ; କିନ୍ତୁ କବି ତା'ର ଅନ୍ତର୍ଦୃଷ୍ଟି ବଳରେ ସେହି ଦୁଃଖୀ ମଣିଷକୁ ଆଶାର ଅମୃତ-ବାଣୀ ଶୁଣାଇଥାଏ । କବିର ମନସ୍ତ ଆନ୍ତରିକତା, ହାର୍ଦ୍ଦିକତା ଓ

ମାନସିକ ସଂଯୋଗ ତାକୁ ମନୁଷ୍ୟ ପାଇଁ ସହାନଭୂତିର ସ୍ୱର ତୋଳିବା ପାଇଁ ପ୍ରେରଣା ଦେଇଥାଏ । କବି କିମ୍ବା ଆଧୁନିକ ଗାଳ୍ପିକ ଏଇ ମାଟିରେ ଗୋଡ଼ ରଖିବାକୁ ଚାହେଁ ; କିନ୍ତୁ ଆକାଶରେ ଉଡ଼ିବାର ଇଚ୍ଛା ତା'ର କମ୍ ନୁହେଁ । ଦିବ୍ୟ ଚୈତନ୍ୟର ପ୍ରେରଣାରେ ଓ ପରପ୍ରେକ୍ଷୀର ଭାବ-ପ୍ରବଣତାରେ ଆଧୁନିକ ସାହିତ୍ୟିକ ମାନବଧର୍ମୀ ହେବା ପାଇଁ ବାଧ୍ୟ ହୋଇଛି । ସମାଜର ଯାହା ଆବୁଡ଼ା ଖାବୁଡ଼ା ଓ ଛିନ୍ନ ଉପାଦାନ, ତାହାର ମଧ୍ୟରୁ ଗାଳ୍ପିକ ନୂତନ ମଣିଷ ଓ ନୂତନ ସମାଜର ସନ୍ଧାନ ଦେବା ପାଇଁ ଚାହେଁ । ଆଧୁନିକ ଗଳ୍ପରେ ବ୍ୟକ୍ତି ଉପରେ କାରୁଣ୍ୟମୟ ଓ ଏକ ବ୍ୟଙ୍ଗାତ୍ମକ ବ୍ୟକ୍ତିତ୍ୱର ଅଧୀନ ତାହା ଲେଖକ ବରାବର ଦେଖାଇଥାନ୍ତି । ଏକ ଆଧୁନିକ ଗଳ୍ପରେ ମଣିଷର ଯେପରି ବ୍ୟାଖ୍ୟା କରାଯାଇଛି, ତାହା ନିମ୍ନଲିଖିତ ବର୍ଣ୍ଣନାରୁ ଆଭାସ ମିଳେ—

"ସେହି ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ, ଶିଖ କୌଣସି ପର୍ଯ୍ୟାୟଭୁକ୍ତ ନୁହେଁ । କୌଣସି ଧରମଗିରି ପୃଷ୍ଠପୋଷକ ସେ କରିନାହିଁ ତା ଜୀବନ କାଳ ମଧ୍ୟରେ । ଲଜିକ୍, ଫିଲୋସଫି, ସାଇନସ୍ ଏ ସମସ୍ତ ଶାସ୍ତ୍ର ମଣିଷ ପାଇଁ ମୂଲ୍ୟହୀନ, ଅକାମୀ, ଏମାନେ କେବଳ ସୁନ୍ଦର ମଣିଷର ଭାବନାକୁ କଂଭୂତକିମାକାର କରି ଗଢ଼ି ତୋଳିଛନ୍ତି । ମଣିଷକୁ ନିଶ୍ଚିତରେ ଏକ ଧ୍ୱଂସ ମୁଖକୁ ଓଟାରି ନେଇଛନ୍ତି । ତାକୁ ଜଟିଳରୁ ଜଟିଳତର ଓ ଶେଷରେ ଜଟିଳତମ କରି ଥୋଇଛନ୍ତି । ଯୁକ୍ତି ବାଡ଼ି ଏସବୁ ଶାସ୍ତ୍ରର ତତ୍ତ୍ୱ ବୁଝିବା ଭୁଲ୍ଛା ପ୍ରହେଳିକା । ଚରମ ଅଜ୍ଞତା ! ସୃଷ୍ଟିର ପ୍ରାରମ୍ଭରୁ କେତେ ସହସ୍ର ଥର ଧର୍ମଯାଜକମାନେ ସ୍ଲୋଗାନ ଦେଇ ନାହାନ୍ତି ଯେ,

'ଈଶ୍ୱର ସର୍ବତ୍ର ବିଦ୍ୟମାନ । ସେ ସର୍ବଜ୍ଞ । ସର୍ବ ଶକ୍ତିମାନ । ସେ ସତ୍-ଚିତ୍-ଆନନ୍ଦ ।'

ତଥାପି ମଣିଷର ମୁକ୍ତି ନାହିଁ । ଦୁର୍ଦ୍ଦଶା ମୋଚନ ହେଉଛି କେଉଁଠି ? ସେ' ସବୁ ଗହନ କଥା କେହି ବୁଝାଇ ପାରିନାହାନ୍ତି । ବୁଝିବା ବି ସହଜ ସମ୍ଭବ ନୁହେଁ । ମଣିଷର ମନକୁ ଅଯଥା ଭାରାକ୍ରାନ୍ତ କରିଦେବା ପାଇଁ ଗୋଟାଏ ମସ୍ତବଡ଼ ଚକ୍ରାନ୍ତ କେଉଁ ଅନାଦି କାଳରୁ ରହି ଆସିଛି । ଈଶ୍ୱର କିମ୍ବା ସଇତାନ କେହି ଜଣେ ବି ଚାହିଁ ନାହାନ୍ତି, ଏ ମଣିଷ ସୁଖରେ ବଞ୍ଚୁ । ଅମର ଲଡ଼ୁ ଖାଇ ଯାବତ୍ ଜୀବନ ଏଇଠି ରହୁ । ହସ ଖୁସିରେ ଦିନ କାଟୁ । କେଜାଣି କେମିତି ଏକ ଦୁର୍ଘଟଣାରୁ

ମଣିଷଟିଏ ସୃଷ୍ଟି ହୋଇଗଲା । କେହି ଆଶା କରି ନ ଥିଲେ । ମୁହୂର୍ତ୍ତକ ପାଇଁ ଭାବି ନ ଥିଲେ ଯେ, ଏମିତି ଏକ ଦ୍ୱିପଦ ଜୀବ ଏ ଧରାକୁ ଆସି ସମସ୍ତଙ୍କ ଉପରେ ରାଜୁତି କରିବ । ହଠାତ୍ ଯେତେବେଳେ ଏ ମଣିଷ ଭୂମିଷ୍ଠ ହୋଇ ଯାଇଛି ଏ ଧରାରେ । ତା' ମନକୁ ସୁହାଇଲା ଭଳି କଳ୍ପିତ ଗୋଟାଏ କରିବାକୁ ପଡ଼ିବ । ଚର୍ଚ୍ଚା ଚାଲିଲା, ଆଲୋଚନା ସଭା ବସିଲା କେଉଁ ଅଦୃଶ୍ୟ ଅଳନ୍ଦରେ । ସଙ୍ଗେ ସଙ୍ଗେ ବାର୍ତ୍ତା ଦିଆଗଲା ଯେ ମଣିଷ ହିଁ ସବୁଠାରୁ ଉତ୍ତମ ସୃଷ୍ଟି । ମଣିଷ ହିଁ ସୃଷ୍ଟି-ଶିରୋମଣି । ଉପହାର ଆସିଲା । ଶୁଭେଚ୍ଛା ବାର୍ତ୍ତା ଅପର୍ଯ୍ୟାପ୍ତ ଆସି ପହଞ୍ଚିଲା । ମଣିଷ ମୁଣ୍ଡରେ ମୁକୁଟ ବନ୍ଧାଯାଇ ତାକୁ ବୃନ୍ଦ କରିଦିଆଗଲା । ଈଶ୍ୱର ସପକ୍ଷେଇ ହୋଇ କହି ବସିଲେ ଯେ—

> **"ମୁଁ ସୃଷ୍ଟିଥିଲି ଏ ମଣିଷ ସାରାଜୀବନ ଏଇ ପୃଥିବୀରେ ରାଜୁତି ଚଳାଇବ, ସଭିଙ୍କ ଉପରେ ବଡ଼ିମା ଦେଖେଇବ । ସମୁଦାୟ ବିଶ୍ୱ ବ୍ରହ୍ମାଣ୍ଡର ରାଜା ହେବ । ମଣିଷ ଅମୃତ ଲଡ଼ୁ ଖାଇ ଅଜର, ଅମର, ଅକ୍ଷୟ ହେବ ।"**
>
> **( ଲୋକଟିଏ, ଫନୀ ମହାନ୍ତି, ଆଜିର ଗଳ୍ପ : ପୃ-୩ )**

ଆଜିର ସମାଜରେ ମଣିଷର ବଞ୍ଚିବା ପାଇଁ ପ୍ରେରଣା ନାହିଁ ; ମଣିଷ ଆଗରେ ସେପରି କୌଣସି ଆଦର୍ଶ, ଆଶା ଓ ଭରସା ନାହିଁ । ଜୀବନର ମୂଲ୍ୟବୋଧ ସମ୍ପୂର୍ଣ୍ଣ ବଦଳି ଯାଇଛି ; କିନ୍ତୁ ପ୍ରବର୍ତ୍ତିତ ମୂଲ୍ୟବୋଧର ସ୍ୱରୂପ ନିର୍ଦ୍ଦିଷ୍ଟ ହୋଇ ନାହିଁ । ଏପରି ପରିସ୍ଥିତିରେ ସାହିତ୍ୟିକ ଅସ୍ଥିରତା ମଧ୍ୟରେ ଓ ଅନେକ ମଧ୍ୟରେ ଗତି କରୁଥିବା ଭଳି ଜଣାଯାଏ ; କିନ୍ତୁ ଅତୀତରେ ଦେଖାଯାଇଛି ଅନେକ ଓ ଅସ୍ଥିରତା ମଧ୍ୟରୁ ସୁସ୍ଥ, ସୁଦୃଢ଼ ଏବଂ କାନ୍ତିକାରୀ ସୃଷ୍ଟିର ସମ୍ଭବ ହୁଏ । ଓଡ଼ିଆ କବି, ଗଳ୍ପକାର ଓ ନାଟ୍ୟକାର-ଗଣ ଗତ ପଚିଶ ବର୍ଷ ମଧ୍ୟରେ ମଣିଷ ସପକ୍ଷରେ ଲେଖିବାକୁ ଯାଇ ଏହି ପରି ଏକ ହତାଶାର ସ୍ୱର ଶୁଣାଇ ଆଆନ୍ତି । ସାହିତ୍ୟରେ, ଚିନ୍ତାରାଜ୍ୟରେ ରକ୍ଷଣଶୀଳତାର ଆଦୌ ସ୍ଥାନ ନାହିଁ; କିନ୍ତୁ ବିଦ୍ରୋହ ଓ ବିପ୍ଳବ ନାମରେ ଯେବେ କୌଣସି ପ୍ରଭାବଶାଳୀ ସୃଷ୍ଟି ସମ୍ଭବ ହୋଇ ନ ପାରେ, ତେବେ ସାହିତ୍ୟକର ଯେଉଁ କର୍ତ୍ତବ୍ୟ ସେଥିରେ ତ୍ରୁଟି ଆସିଯିବ । ସମାଜ ଓ ଜୀବନର ଅଗ୍ରଗତି ପାଇଁ ସାହିତ୍ୟ ଚିନ୍ତା ଓ ପ୍ରେରଣା ଯୋଗାଇଥାଏ । ଯେଉଁଠାରେ ସାହିତ୍ୟିକ ଏତିକ କାର୍ଯ୍ୟ କରି ନ ପାରେ, ସେଠାରେ ତା'ର ସୃଷ୍ଟି ସମାଜ ଉପରେ କୌଣସି ପ୍ରଭାବ ପକାଇ ପାରେ ନାହିଁ । ପୃଥିବୀର

ବିଭିନ୍ନ ଦେଶର ସାହିତ୍ୟ, ଦର୍ଶନ ଓ ପରଂପରା ମୂଳରେ ଏକମାତ୍ର ସୂତ୍ର ଦେଖିବାକୁ ମିଳେ, ତାହା ହେଉଛି ମଣିଷ ପାଇଁ ସାହିତ୍ୟ ସାଧନା, ସମାଜ-ପାଇଁ ସାହିତ୍ୟ ସୃଷ୍ଟି, ଭାରତୀୟ ତଥା ଓଡ଼ିଆ ସାହିତ୍ୟରେ ଗତ ପଚଶ ବର୍ଷ ମଧ୍ୟରେ ଏହି ଆଦର୍ଶ କେତେ ଦୂର ହାସଲ ହୋଇ ପାରିଛି ବିଭିନ୍ନ ଗଳ୍ପ, କବିତା, ନାଟକ, ଉପନ୍ୟାସ ଆଦି ଅନୁଧ୍ୟାନ କଲେ ଜଣାଯିବ । କବି ଓ ସାହିତ୍ୟିକ କେବଳ ଯେ ଅତୀନ୍ଦ୍ରିୟ ରାଜ୍ୟରେ ବିଚରଣ କରୁଥିବ, ତାହା ସାଂପ୍ରତିକ ପରିପ୍ରେକ୍ଷୀରେ ଆଦୌ ଗ୍ରହଣୀୟ ନୁହେଁ ; କିନ୍ତୁ ପରିବର୍ତ୍ତିତ ଦୃଷ୍ଟିଭଙ୍ଗି ସହ ବ୍ୟକ୍ତି ଓ ସମାଜର ସାହିତ୍ୟିକ ମୂଲ୍ୟାୟନ କରିବା ପ୍ରତ୍ୟେକ ପ୍ରଭାବଶାଳୀ ସ୍ରଷ୍ଟାର କର୍ତ୍ତବ୍ୟ । ମହାତ୍ମା ଗାନ୍ଧୀ ଥରେ ଗୋଟିଏ କଥା କହିଥିଲେ ଯେ ଭୋକିଲା ଜନତାକୁ ଅନ୍ନ ଯୋଗାଇବା ହିଁ ଏକମାତ୍ର କାବ୍ୟ ଓ କବିତା । ଏହା ଯଦି ସତ୍ୟ ହୁଏ, ତା' ହେଲେ ଆଧୁନିକ ଓଡ଼ିଆ ସାହିତ୍ୟର ଅଧିକାଂଶ ସୃଷ୍ଟି ଗତ ପଚଶ ବର୍ଷ ମଧ୍ୟରେ ଏହି ସମସ୍ୟାର ଅବଧାରଣ କରିବା ପାଇଁ ଉଦ୍ଦୀପକ ହୋଇ ଅଛି । ଆଧୁନିକ ଜୀବନ ଓ ଆଧୁନିକ ବ୍ୟକ୍ତି ଅତ୍ୟନ୍ତ ଜଟିଳ । ସେଥିମଧ୍ୟରେ ଆଧୁନିକ ସାହିତ୍ୟିକ ମାନବବାଦୀ ହେବା ତା'ର ଉଦାହରଣତାର ଓ ଦାୟିତ୍ୱପ୍ରାଣତାର ନିଦର୍ଶକ । ମାନବପ୍ରେମୀ ହେବାକୁ ଯାଇ ଯଦି ଆଧୁନିକ ସାହିତ୍ୟିକ ମାର୍କଣ୍ଡ ସୃଷ୍ଟି କରେ ତେବେ ସାହିତ୍ୟର ମୂଳ ଉଦ୍ଦେଶ୍ୟ ବ୍ୟାହତ ହେବ ଏବଂ ସାହିତ୍ୟିକ ଲକ୍ଷ୍ୟଚ୍ୟୁତ ହେବ ।



# ସାଂସ୍କୃତିକ ସାହିତ୍ୟରେ ପୁରାତନ ପରମ୍ପରା ନା ସମକାଳୀନ ଚିନ୍ତାଧାରା ? ଏକ ଦୃଷ୍ଟିପାତ ।

ଅମିୟ ବସୁ

ପୁରାତନ ପ୍ରତି ଆମର ଏକ ଧରଣର ମମତା ବୋଧ ସହଜାତ । ସେଥିପାଇଁ ପୁରୁଣା କିଛିକୁ ଛାଡ଼ିବା କଥାଟାକୁ ଆମେ ସହଜ ଭାବରେ ନେଇ ପାରୁ ନା । ଆମର ସାମାଜିକ ରୀତିନୀତି ଚାଲିଚଳଣି ସବୁକିଛି ସମ୍ବନ୍ଧରେଇ କଥାଟା ପ୍ରଯୁଜ୍ୟ । ପୁରୁଣା ଚାଳଘର ଛାଡ଼ି ନୂଆ କୋଠା ଘରକୁ ଆମେ ଯେତେବେଳେ ଜେଜେବାପାଙ୍କୁ ଆଣୁ, ନୂଆ କୋଠାଘରର କଂକ୍ରିଟ୍ ଛାତତଳେ ଶୋଇ ବି ପୁରୁଣା ଘରଟା ପାଇଁ ତାଙ୍କର ଦୀର୍ଘଶ୍ୱାସ ପଡ଼େ । ଅତି ଆଧୁନିକ ପ୍ରଣୟୀ ମଧ୍ୟ ବିବାହ ପରେ ବି ପ୍ରିୟାର ପୁରୁଣା ଚିଠିଗୁଡ଼ା ସାଇତି ରଖେ । ଅସଲରେ ପୁରୁଣା ବା ଅତୀତ ପାଇଁ ଆମର ମୋହ ଗୋଟିଏ ଧରଣର ସଂସ୍କାର ।

ପୁରୁଣା ପରମ୍ପରା ସମ୍ବନ୍ଧରେ ମଧ୍ୟ ସେଇ କଥା । ସେଟା ସାମାଜିକ ହେଉ ବା ସାଂସ୍କୃତିକ ହେଉ । ବର୍ଷ ବର୍ଷର ଚଳଣି, ରୀତିନୀତିର ନିରବଚ୍ଛିନ୍ନ ଗ୍ରହଣ ଓ ପ୍ରୟୋଗ ଫଳରେ ଯେଉଁ ପରମ୍ପରା ଗଢ଼ି ଉଠେ, ସମୟର ଚାହିଦା ଅନୁଯାୟୀ ସମାଜର ବୃହତ୍ତର ମଙ୍ଗଳ ଦୃଷ୍ଟିରୁ ଯଦି ନୂତନ ଚଳଣିଦ୍ୱାରା ସେଇସବୁ ପୁରୁଣା ପରମ୍ପରାର ପରିବର୍ତ୍ତନ କରିବାର ପ୍ରଶ୍ନ ଉଠେ, ତେବେ ଆମେ ଆହତ ହେଉ, ନୂତନକୁ ଆଣି ପୁରାତନର ସ୍ଥଳାଭିଷିକ୍ତ କରିବାରେ ଆମର ସ୍ୱାଭାବିକ ଆପତ୍ତି ; ଭୟମିଶା ସନ୍ଦେହ ।

ଯେହେତୁ ସାହିତ୍ୟ ଜୀବନ ତଥା ସମାଜରୁ ବିଚ୍ଛିନ୍ନ ନୁହେଁ, ବରଂ ଏକ ସାମାଜିକ ଉତ୍ପାଦନ ମାତ୍ର, ସାହିତ୍ୟ କ୍ଷେତ୍ରରେ ମଧ୍ୟ ଏହି ସଂଘର୍ଷ

ଦେଖା ଦେଇଛି । ଆଜିକାର ଲେଖକ ସମକ୍ଷରେ ତେଣୁ ପ୍ରଶ୍ନ—ତା'ର ସୃଷ୍ଟି ସାହିତ୍ୟ ପୁରାତନ ପରମ୍ପରାକୁ ଅନୁସରଣ କରିବ ନା ବିଶ୍ୱର ସମକାଳୀନ ଚିନ୍ତା ଧାରାରେ ପ୍ରଭାବାନ୍ୱିତ ହୋଇ ପୁରୁଣା ପରମ୍ପରା ପ୍ରତି ଅନୁଗ୍ରହକାର ଦୁର୍ବଳତାରୁ ନିଜକୁ ମୁକ୍ତ କରି ସଂସ୍କାରହୀନ ଭାବରେ ନୂତନ ଚିନ୍ତାର ଧାରକ ତଥା ବାହକ ହେବ ? ପ୍ରଶ୍ନଟିକୁ ଆଉ ଟିକିଏ ସରଳ କରି କହିଲେ, ସାହିତ୍ୟ ତା'ର ରକ୍ଷଣଶୀଳତାକୁ ଅବଲମ୍ବନ କରି ଜଡ଼ ଓ ଅଜଡ଼ ହୋଇ ରହିବ ନା ଗତିଶୀଳ ହେବ ? ଜଡ଼ ଓ ଅଜଡ଼ କହିଲି ଏଇ ଅର୍ଥରେ ଯେ, ପୁରାତନର ମୋହରେ ଯିଏ ଆବଦ୍ଧ ଥାଏ, ନୂତନର ଆଲୋକକୁ ସେ ସହି ପାରେ ନା—ଫଳରେ ଆଖିରେ ଅନ୍ଧପୁଟୁଳି ବାନ୍ଧି ଧାନଖଳାରେ ବଳଦ ବୁଲିଲା ପରି, ସେ ସେଇ ପୁରୁଣା ଚିନ୍ତାଧାରା, ପୁରୁଣା ସଂସ୍କାର ଏବଂ ପୁରୁଣା ମୂଲ୍ୟବୋଧର ଚାରିପଟେ ଘୂରି ବୁଲୁଥାଏ ; କିନ୍ତୁ ତା'ର ସେଇ ଚକ୍ରାକାର ପରିକ୍ରମାକୁ ପ୍ରକୃତ ଅର୍ଥରେ ଗତି ବା ସୃଷ୍ଟି ବୋଲି କୁହାଯାଇ ନ ପାରେ । ସାହିତ୍ୟ ସମ୍ବନ୍ଧରେ ମଧ୍ୟ ସେଇ କଥା । ଏପରି ସାହିତ୍ୟ ମୁଷ୍ଟିମେୟ କେତେକ ଲୋକଙ୍କର ଭାବାବେଗକୁ ଚରିତାର୍ଥ କଲେ ବି ସେମାନଙ୍କର ଚିନ୍ତାଧାରାକୁ ପଙ୍ଗୁ କରି ରଖେ । କାଳକ୍ରମେ ଏପରି ଏକ ଅବସ୍ଥା ଆସେ ଯେତେବେଳେ ଆଖିର ସେଇ ଅନ୍ଧପୁଟୁଳିଟାକୁ ଖୋଲିବାର ସାହସ ସେମାନେ ଚିରଦିନ ପାଇଁ ହରାନ୍ତି । ସାହିତ୍ୟିକ ବା ଲେଖକଙ୍କ ପକ୍ଷରେ, ଏହାର ନିଶ୍ଚିତ ପରିଣତି ପ୍ରତିଭାର ଅପମୃତ୍ୟୁ । ସେ ମୃତ୍ୟୁ କେଉଁ ସାହିତ୍ୟିକଙ୍କ କାମ୍ୟ ?

ପୁରାତନ ପରମ୍ପରାକୁ ଅନୁସରଣ କରିବାର ନିହିତାର୍ଥ ଅତୀତକୁ ଅନୁସରଣ କରିବା । ଅତୀତର ମୂଲ୍ୟବୋଧ, ଅତୀତର ଧ୍ୟାନ ଧାରଣା, ଅତୀତର ସାମାଜିକ ସମ୍ପର୍କ, ଅତୀତର ଅର୍ଥନୈତିକ ବ୍ୟବସ୍ଥାକୁ (structure) ଅନୁସରଣ କରି ଯେଉଁମାନେ ଆଜି ସାହିତ୍ୟ ରଚନା କରିବାର ଚିନ୍ତା ପୋଷଣ କରନ୍ତି ସେମାନେ କ'ଣ ଚାହାନ୍ତି ଅତୀତର ସମାଜ ବ୍ୟବସ୍ଥାକୁ ଫେରିଯିବା ପାଇଁ ? ବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଗଣତନ୍ତ୍ର ପ୍ରତିଷ୍ଠା ପାଇଁ (ସମାଜବାଦ କଥାକୁ ବାଦ ଦେଲେ ବି) ଆନ୍ଦୋଳନ କରିବୁ, ଅଥଚ ଆମର କବିମାନେ ମଧ୍ୟଯୁଗୀୟ ଧାରାରେ କୌଣସି ଏକ ରାଜକୁମାର ଓ ରାଜକୁମାରୀର ବିରହ-ବେଦନା ନେଇ ଉଚ୍ଛ୍ୱାସଭରା କାବ୍ୟ ଲେଖି ଆମର ସହାନୁଭୂତିର ଅଶ୍ରୁ ଝରାଇବେ, ଉତ୍କଳାଧିପଙ୍କର ଯୁଦ୍ଧ ଜୟର ଘଟଣାକୁ ଅବଲମ୍ବନ କରି କାବ୍ୟ ବା ନାଟକ ମାଧ୍ୟମରେ ରାଜଭକ୍ତିର

ପୁରୁଷର ସ୍ତୁତିଗାନ କରିବେ, ଏଟା କେମିତି ସମ୍ଭବ ? ଆଜିକାର ଯୁଗରେ କେବଳ ବେକାର ଓ ଅଳସୁଆ ଲୋକ ଛଡ଼ା ଏକାନ୍ନବର୍ତ୍ତୀ ପରିବାରର ସମର୍ଥନ କରିବ କିଏ ? ସୁତରାଂ ଆଜି ଯଦି ପୁରାତନ ପରମ୍ପରାକୁ ବଜାୟ ରଖିବାକୁ ଯାଇ ଆମେ ଏମିତି ଗଳ୍ପ ବା ଉପନ୍ୟାସ ଲେଖୁ, ଯେଉଁଥିରେ ଏକାନ୍ନବର୍ତ୍ତୀ ପରିବାରର ଗୁଣଗାନ କରାଯାଇଛି – ସେ ଗଳ୍ପ ବା ଉପନ୍ୟାସକୁ ସମର୍ଥନ କରିପାରିବେ କେଉଁ ରୁଚିଶୀଳ ଓ ଯୁକ୍ତିବାଦୀ ପାଠକ ? ମଧ୍ୟଯୁଗୀୟ ରୀତିରେ ପୁରୁଷର ଦାସୀ ହେବାକୁ ଚାହିଁବେ କେଉଁ ଲେଖିକା ବା ପାଠିକା ?

ସ୍ତ୍ରୀ ପୁରୁଷର ସମ୍ପର୍କର ପୁରୁଣା ମୂଲ୍ୟବୋଧ ଆଜି ଅଚଳ ହୋଇଯାଇଛି, ଏଥିରେ ସନ୍ଦେହ ନାହିଁ । ସୁତରାଂ ଜୀବନବାଦୀ ସାହିତ୍ୟରେ ତା'ର ସ୍ଥାନ ହୋଇପାରେ ନା । ଏ ତ ଗଳ୍ପ ସାହିତ୍ୟର ବିଷୟବସ୍ତୁ କଥା । ତା'ର form ବା style ସମ୍ବନ୍ଧରେ ମଧ୍ୟ ସେଇଆ କୁହାଯାଇ ପାରେ, ଧରନ୍ତୁ ଆଜି ଆମେ ରାମାୟଣ ବା ମହାଭାରତ ପରି ଏକ ବିରାଟ କାବ୍ୟଗ୍ରନ୍ଥ ରଚନା କରୁ ଶାରଳା ଦାସଙ୍କ ଶୈଳୀରେ, ଅଥବା ଧରନ୍ତୁ ବଙ୍କିମଚନ୍ଦ୍ରଙ୍କ ରୀତିରେ କୌଣସି ଉପନ୍ୟାସ ରଚିତ ହୁଏ, ତେବେ ଆଜିର ଯୁଗରେ ତା'ର ସାର୍ଥକତା କ'ଣ ? ଆମେ ଆଜି ଇଚ୍ଛା କଲେ ବି ପୁରୁଣା ଢଙ୍ଗରେ କଥା କହିପାରୁନା, ପୁରୁଣା ଦିନର ବେଶପୋଷାକ ପିନ୍ଧିପାରୁନା, ପୁରୁଣା ଅଳଙ୍କାର ପିନ୍ଧି ଆମ ଝିଅ ବୋହୂମାନେ ଭୁଆସୁଣୀ ହୋଇ ରହିପାରନ୍ତି ନାହିଁ । ଏଟା ଭଲ କି ମନ୍ଦ ସେ ପ୍ରଶ୍ନ ଅବାନ୍ତର—ସେଟା ସମ୍ଭବ ନୁହେଁ ଏତିକି କୁହାଯାଇ ପାରେ । ତା'ପରେ ପୁଣି ଅଛି ଅବସରର ପ୍ରଶ୍ନ । 'ହରି' ଶବ୍ଦଟିର ସାତଟି ଅର୍ଥ ନେଇ ସାହିତ୍ୟରେ ମ୍ୟାଜିକ୍ ସୃଷ୍ଟି କରିବାର ପାଣ୍ଡିତ୍ୟ ମୋର ଥିଲେ ବି ଛଅଥର ଅଭିଧାନ ଦେଖିବା ଲାଗି ଆଜିର ପାଠକର ଅବସର କାହିଁ ? ଆଜିର ପୃଥିବୀରେ କେବଳ ଅର୍ଥସଙ୍କଟ ନୁହେଁ, ମଣିଷର ସମୟସଙ୍କଟ କଥାଟା ମଧ୍ୟ ବିଚାର କରିବାକୁ ହେବ । ତେଣୁ Paradise Lost ବା ବୈଦେହୀଶବିଳାସ ଯେତେ ଉଚ୍ଚକୋଟୀର ସାହିତ୍ୟ ହେଉନା କାହିଁକି, ଆଜି ସେସବୁକୁ ଅନୁସରଣ କରି ସାହିତ୍ୟର ସୃଷ୍ଟି ବିଡ଼ମ୍ବନା ମାତ୍ର ।

ଆଜି ଯେତେବେଳେ ମଣିଷ ଚନ୍ଦ୍ରଲୋକରୁ ବୁଲି ଆସିଲାଣି, ଚନ୍ଦ୍ରର ବୈଜ୍ଞାନିକ ପରିଚୟ ଯେତେବେଳେ ପ୍ରକାଶ ହୋଇ ସାରିଲାଣି, ତା'ର

chemical ଓ mineral content ନେଇ ଯେତେବେଳେ ପୃଥିବୀର ଗବେଷଣାଗାରରେ ପରୀକ୍ଷା ନିରୀକ୍ଷା ଚାଲିଛି—ସେତେବେଳେ ଚନ୍ଦ୍ରର mythical character ନେଇ ରୋମାଣ୍ଟିକ୍ ସାହିତ୍ୟ ରଚନା କିପରି ସମ୍ଭବ ? ଆଜିର ପୃଥିବୀରେ ବିଜ୍ଞାନର ଅଗ୍ରଗତି ଅନେକ କଥାର ଅନ୍ତର୍ନିହିତ ସତ୍ୟକୁ ଯୁକ୍ତିଦ୍ୱାରା ପ୍ରତିଷ୍ଠିତ କରିସାରିଲାଣି, ପୁରାତନ ପରମ୍ପରାର ଦୋହାଇ ଦେଇ ପୁରୁଣା ସଂସ୍କାରର ଦୃଷ୍ଟିଭଙ୍ଗୀରେ ତାକୁ ବିଚାର କରିବା ଏବଂ ତାକୁ ଉପସ୍ଥାପିତ କରିବା କେବଳ ପଣ୍ଡଶ୍ରମ ନୁହେଁ—ଭଣ୍ଡାମୀ ମଧ୍ୟ । ସାହିତ୍ୟ କ୍ଷେତ୍ରରେ ଏ ଧରଣର ଭଣ୍ଡାମୀ ବନ୍ଦ ହେବା ଏକାନ୍ତ ଭାବରେ ଦରକାର ଏବଂ ଯୁବଲେଖକମାନଙ୍କୁ ଏ ଦାୟିତ୍ୱ ଗ୍ରହଣ କରିବାକୁ ପଡ଼ିବ ।

ପୁରାତନ ପ୍ରତି ମମତାବୋଧ ଏକ ଧରଣର ହତାଶା ବା frustrationରୁ ଜନ୍ମ ନେଇଥାଏ । ନୂତନକୁ ବା ନୂତନ ବ୍ୟବସ୍ଥାକୁ ଯେଉଁମାନେ ଗ୍ରହଣ କରିପାରନ୍ତି ନାହିଁ—ଅନ୍ୟ ଅର୍ଥରେ ନୂତନକୁ ବରଣ କରି ନେବାର ଯୋଗ୍ୟତା ଯାହାର ନାହିଁ, ସେଇ କେବଳ ପୁରାତନକୁ ଜାବୁଡ଼ି ଧରି ବସିଥାଏ । ଆମେ ପ୍ରାୟଶଃ ଏକ ଧରଣର ଲୋକ ଦେଖୁ ଯେଉଁମାନେ ଆଜି ବି କହନ୍ତି—

"ଏ ସ୍ୱାଧୀନତାଠାରୁ ବ୍ରିଟିଶ ଯୁଗରେ ଆମେ ସୁଖରେ ଥିଲୁ ।"

ଅନ୍ୟମାନେ ଆଉ ଟିକିଏ ଶ୍ରଦ୍ଧାଶୀଳ ଭାବରେ କହନ୍ତି "ଗଡ଼ଜାତ ରାଜାଙ୍କ ଅମଳରେ ଆମେ ବର୍ତ୍ତମାନଠାରୁ ହଜାରଗୁଣ ଭଲରେ ଥିଲୁ" ଏଥିରୁ କ'ଣ ଜଣାପଡ଼େ ? ରାଷ୍ଟ୍ରବିଜ୍ଞାନର ଦୃଷ୍ଟିକୋଣରୁ ଏମାନଙ୍କ କଥା ନିଶ୍ଚିତ ରୂପରେ ଭୁଲ । କିନ୍ତୁ ତଥାପି ଏମାନେ କାହିଁକି ଏପରି ଭାବନ୍ତି ବା କହନ୍ତି ? ଏମାନେ କହନ୍ତି—କାରଣ, ରାଜାଙ୍କର ଅନୁକମ୍ପା ମୂଳକରେ ଓ ଅନ୍ଧ ସ୍ୱୈରଶାସନ ଭିତରେ ରହି ଏମାନେ ଏପରି କୌଣସି ଯୋଗ୍ୟତା ଅର୍ଜନ କରିପାରି ନାହାନ୍ତି, ଯେଉଁଥିରେ କି ସ୍ୱାଧୀନ ଭାରତର ନାଗରିକର ଦାୟିତ୍ୱ ଓ କର୍ତ୍ତବ୍ୟ ତୁଲାଇ ପାରିବେ । ଫଳରେ ସେମାନଙ୍କ ଭିତରେ ଏକ ଧରଣର ହତାଶା ଜନ୍ମ ନେଇଛି, ଯାହା ସେମାନଙ୍କୁ ଏ ଧରଣ ଚିନ୍ତାର ଖୋରାକ ଯୋଗାଇଛି । ସାହିତ୍ୟ-କ୍ଷେତ୍ରରେ ମଧ୍ୟ ଏହିପରି ଏକ ଧରଣର ହତାଶା ଆମର କେତେକ ସାହିତ୍ୟିକଙ୍କୁ ସାହିତ୍ୟର ନୂତନ ଦିଗନ୍ତପ୍ରତି ବିମୁଖ କରିଛି । ଗଡ଼ଜାତ ପ୍ରଜାଙ୍କ ଭଳି ସେଇମାନେ ହିଁ କହନ୍ତି—

"ଆଛା, ଆମର ଅତୀତର ମହାନ୍ ପରମ୍ପରାକୁ ଛାଡ଼ି ଆମେ ଚାଲିବୁ କେମିତି, ଲେଖିବୁ କ'ଣ ?"

ଏ କଥା ନିଶ୍ଚିତ ସତ୍ୟ ଯେ, ଆଜିର ଏ ସମାଜ-ବ୍ୟବସ୍ଥା ଏକ ପୁରାତନ ସମାଜ-ବ୍ୟବସ୍ଥାର ବିବର୍ତ୍ତିତ ରୂପ— ଆଜିର ସାମାଜିକ ତଥା ମାନବିକ ନ୍ୟାୟ ଅନ୍ୟାୟ ମୂଲ୍ୟବୋଧ ପୁରାତନ ଦିନର ମୂଲ୍ୟବୋଧର ହିଁ ପରିବର୍ତ୍ତିତ ରୂପ—ଆଜିର ସଭ୍ୟ ମାନବ ଆଦିମ ମାନବର ରୂପାନ୍ତର; ପୁରୁଣା ଦିନର ଭାଷା, ବେଶପୋଷାକ ଚାଲିଚଳନ ହିଁ ବିଭିନ୍ନ ସମୟରେ ସଂସ୍କୃତ ହୋଇ ଆଜିର ଏ ଅବସ୍ଥାରେ ପହଞ୍ଚିଛି । ଏ ସତ୍ୟକୁ ଅସ୍ୱୀକାର କରାଯାଉ ନାହିଁ, କିନ୍ତୁ ସେଇ କୃତଜ୍ଞତା ସ୍ୱୀକାର ଛଡ଼ା ପୁରାତନ ପ୍ରତି ଅନ୍ୟ ପ୍ରକାର ଦାୟିତ୍ୱ ବା ଆନୁଗତ୍ୟ ଆମେ ଅସ୍ୱୀକାର କରୁଁ, ଏବଂ ଏଇଟା ହିଁ ସ୍ୱାସ୍ଥ୍ୟର ଲକ୍ଷଣ ।

ସୁତରାଂ ପୁରାତନ ପରମ୍ପରାକୁ ଅନୁସରଣ କରି ସାହିତ୍ୟ ରଚନା କରିବା ଅର୍ଥ, ଗତିଶୀଳ ସମାଜ ଏବଂ ବୈଜ୍ଞାନିକ ତଥ୍ୟ ଉପରେ ପ୍ରତିଷ୍ଠିତ ମଣିଷର ଯୁକ୍ତିବାଦୀ ମନକୁ ପଛମୁହାଁ କରିବା—ଏହା ଆଉ ପ୍ରମାଣର ଅପେକ୍ଷା ରଖେ ନାହିଁ ।

ବର୍ତ୍ତମାନ ପ୍ରଶ୍ନ ଉଠେ—ତା' ହେଲେ ସାହିତ୍ୟର ଗତି ପ୍ରକୃତି କେଉଁ ଆଡ଼କୁ ହେବ ? ପୁରାତନ ପରମ୍ପରାକୁ ସମର୍ଥନ କରିବାକୁ ଅସ୍ୱୀକାର କଲେ ଯୁକ୍ତି ଦୃଷ୍ଟିରୁ ଆମକୁ ଅନ୍ୟ ପଥଟି ବାଛି ନେବାକୁ ହେବ, ଅର୍ଥାତ୍ ସମକାଳୀନ ଚିନ୍ତାଧାରାକୁ ଗ୍ରହଣ କରି ସାହିତ୍ୟ ରଚନା କରିବାକୁ ହେବ । ନଚେତ୍ ସାହିତ୍ୟର ମୃତ୍ୟୁ ଅବଶ୍ୟମ୍ଭାବୀ ହେବ—ଏବଂ ଏହି ମୃତ୍ୟୁ କାହାର ଅବା କାମ୍ୟ ହୋଇପାରେ ?

ସାହିତ୍ୟରେ ଆମେ ଯଦି ଜୀବନର ବିଶ୍ୱସ୍ତ ପ୍ରତିଫଳନ ଚାହୁଁ, ଯଦି ଆମର ଆଶା, ଆକାଂକ୍ଷା, ବେଦନା ଓ ବ୍ୟର୍ଥତାର ଚିତ୍ର ଆମେ ଆମ ସାହିତ୍ୟରେ ପାଇବାକୁ ଚାହୁଁ—ତେବେ ଆମ ସମୟର ସମାଜ ତଥା ସାମାଜିକ ପରିବେଶ ସାହିତ୍ୟରେ ରୂପ ପାଇବାକୁ ବାଧ୍ୟ ଏବଂ ତାହା ହିଁ କେବଳ ସାହିତ୍ୟ-ସୃଷ୍ଟିର ଉପକରଣ ହୋଇପାରେ । ସମାଜର ଯେଉଁ Objective conditions ଆମର ଜୀବନକୁ ନିୟନ୍ତ୍ରିତ କରୁଛି, ତାକୁ ଅସ୍ୱୀକାର କରି ଆଜିର ସାହିତ୍ୟ ସୃଷ୍ଟି ହୋଇ ପାରେ ନା । ଆଜି

ଆମେ ଯାହା ଚିନ୍ତା କରୁଛୁ ବା ଯେଉଁ ଧରଣର ଚିନ୍ତା କରୁଛୁ, ପ୍ରତିଟି ବିଷୟରେ ଆମର ପୁରୁଣା ମୂଲ୍ୟବୋଧ ମରିଯାଇ ଯେଉଁ ନୂତନ ମୂଲ୍ୟବୋଧ ଜନ୍ମ ନେଉଛି ସାହିତ୍ୟରେ ଯଦି ସେଗୁଡ଼ିକ ଅନୁପସ୍ଥିତ ରହେ ତେବେ ସେ ସାହିତ୍ୟ ଜୀବନ ସହିତ ସମ୍ପର୍କହୀନ । ପୌରାଣିକ ଯୁଗର ରୂପକଥା ହିଁ ତାହା ହେବ । ମୁଷ୍ଟିମେୟ କେତେକ ପଢ଼ୁଆଁ ଲୋକଙ୍କର ଅବସର-ବିନୋଦନର ତାହା ଖୋରାକ ହେଲେ ବି ମଣିଷ ସମାଜର ପ୍ରକୃତ କ୍ଷୁଧା ମେଣ୍ଟାଇବାର କ୍ଷମତା ତାହା ପାଖରୁ ଆଶା କରାଯାଇ ପାରେନା ।

ବର୍ତ୍ତମାନ, ସମକାଳୀନ ଚିନ୍ତାଧାରାଟା କ'ଣ ସେଇଟା ବିଚାର କରାଯାଉ । ପ୍ରଳୟଙ୍କରୀ ଦ୍ୱିତୀୟ ବିଶ୍ୱଯୁଦ୍ଧ ଫଳରେ କେବଳ ଆମ ଦେଶରେ ନୁହେଁ, ସମଗ୍ର ପୃଥିବୀର ଚିନ୍ତାରାଜ୍ୟରେ ବେଶ୍ କିଛି ମୌଳିକ ପରିବର୍ତ୍ତନ ଦେଖା ଦେଲା । ନାତ୍‌ସୀ-ବାହିନୀର ଅମାନୁଷିକ ଅତ୍ୟାଚାର, ଯୁଦ୍ଧର ଭୟାବହ ପରିସ୍ଥିତି, ଅସଂଖ୍ୟ ଅସହାୟ ମୃତ୍ୟୁ, ଯୁଦ୍ଧକାଳୀନ ଅନ୍ନବସ୍ତ୍ରର ସଙ୍କଟ ଓ କଳାବଜାର ପ୍ରଭୃତି ମଣିଷ ମନରେ ଯୁଦ୍ଧ ପ୍ରତି ଏକ ବିରୋଧ ଭାବ ଜାତ କଲା । ମଣିଷ ବୁଝିଲା—ଯୁଦ୍ଧ ସେ ନ୍ୟାୟେଲ୍ଡ୍ ହେଲେ ମଧ୍ୟ ବୃହତ୍ତର ମଣିଷ ସମାଜ ସେଥିରେ ଉପକୃତ ହୁଏନା । ଏଇ ନୂତନ ଚିନ୍ତାଧାରା ତତ୍‌କାଳୀନ ସାହିତ୍ୟରେ ରୂପ ପାଇଲା । କାରଣ ସେ ସମୟରେ ଯେଉଁ ଜୀବନଧର୍ମୀ ସାହିତ୍ୟ ରଚିତ ହେଲା ସେଥିରେ ଜୀବନର ରୂପ ହିଁ ଥିଲା ଏକ ଯୁଦ୍ଧବିଧ୍ୱସ୍ତ ଜୀବନ—ସେ ଜୀବନ ଅନାହାର ଦେଖିଛି, କଳା ବଜାରର ଶୀକାର ହୋଇଛି, Militaryର Brutal force ଆଗରେ ଯେଉଁ ଜୀବନର ସତୀତ୍ୱ, ବ୍ୟକ୍ତିତ୍ୱ ବିପର୍ଯ୍ୟସ୍ତ, ଅନ୍ୟ ଦିଗରେ ମଣିଷ ମନରେ ଏକ ନୂତନ ରାଜନୈତିକ ଚିନ୍ତାର ଜନ୍ମ ହେଲା—ଯେଉଁ ଚିନ୍ତା ଉପନିବେଶବାଦର ଅବସାନ ଚାହିଁଲା । ପୃଥିବୀର ବିଭିନ୍ନ ପ୍ରାନ୍ତରେ ସ୍ୱାଧୀନତାକାମୀ ଜନଗଣ ଆତ୍ମନିୟନ୍ତ୍ରଣର ଅଧିକାର ଲାଗି ଆନ୍ଦୋଳନ ଆରମ୍ଭ କଲେ । ବସ୍ତୁତଃ ଏ ଆନ୍ଦୋଳନ ହେଲା ଔପନିବେଶିକ ଶୋଷଣ ବିରୋଧରେ ଆନ୍ଦୋଳନ । ଏ ଯେଉଁ ନୂଆ ସଂଗ୍ରାମଶୀଳ ଚେତନା ଦେଖା ଦେଲା, ସାହିତ୍ୟରେ ତାହା ରୂପାୟିତ ହେଲା । କାରଣ ତାହା ହିଁ ଥିଲା ତତ୍‌କାଳୀନ ସାମାଜିକ ଜୀବନର ଚିନ୍ତାଧାରା । ଯୁଦ୍ଧ ପରେ ଆମ ଦେଶରେ ହେଲା ସାମ୍ପ୍ରଦାୟିକ ଦଙ୍ଗା—ଦେଶ ବିଭାଗ । ଅସଂଖ୍ୟ ଛିନ୍ନମୂଳ ମଣିଷର ସମସ୍ୟା ଦେଖା ଦେଲା । ସେ ସମସ୍ୟା ସମଗ୍ର ଦେଶ ଉପରେ ପ୍ରଚଣ୍ଡ ପ୍ରଭାବ ପକାଇଲା । ସେମାନଙ୍କର ଏଇ ଛିନ୍ନମୂଳ ଜୀବନର ସମସ୍ୟାରୁ ଆମେ

ନିଜକୁ ବିଚ୍ଛିନ୍ନ କରି ରଖି ପାରିଲୁ ନାହିଁ । ଦେଶର ବୁଦ୍ଧିଜୀବୀ ଚିନ୍ତାଶୀଳ ଲୋକମାନଙ୍କୁ ତାହା ଗଭୀର ଭାବରେ ପ୍ରଭାବାନ୍ୱିତ କଲା । ଫଳରେ ସେଇ ସମୟରେ ଏଇ ଛିନ୍ନମୂଳ ମଣିଷ ଓ ତା'ର ସମସ୍ୟାଗୁଡ଼ିକ ସାହିତ୍ୟରେ ଦେଖାଗଲା ।

ପୁଣି, ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରୁ ଆମ ସମାଜରେ ଯେଉଁ ଅବ-କ୍ଷୟ ଦେଖା ଗଲା, ଫଳରେ ନ୍ୟାୟ-ଅନ୍ୟାୟ ମୂଲ୍ୟବୋଧର ଯେଉଁ ପରିବର୍ତ୍ତିତ ରୂପ ଦେଖା ଗଲା—ସ୍ୱାଭାବିକ କାରଣରେ ସାହିତ୍ୟରେ ତା'ର ପ୍ରତିଫଳନ ହେଲା । କାରଣ ଆଜି ଆମେ ଯେଉଁ ଅବକ୍ଷୟୀ ପତନଶୀଳ ସମାଜରେ ବାସ କରୁଛୁ, ଆମର ଜୀବନର କଥା କହିବାକୁ ଗଲେ ସେଇ ସମାଜର ପ୍ରତିଫଳନ ନିଶ୍ଚୟ ଆଣିବାକୁ ହେବ । ଆଜି ଆମେ କ'ଣ ଭାବୁଛୁ ଆଜି ଆମର ଜୀବନ ସଂଗ୍ରାମକୁ ଆମେ କି ଭାବରେ ପରିଚାଳିତ କରୁଛୁ, ମଣିଷ ପ୍ରତି, ଈଶ୍ୱର ପ୍ରତି, ପୃଥିବୀର ଅନ୍ୟାନ୍ୟମାନଙ୍କ ପ୍ରତି ଆମର ଆଜିର ମନୋଭାବ କ'ଣ, ଆମ ସାହିତ୍ୟ ଯଦି ତାହା ଦେଖାଇ ନ ପାରେ ତେବେ ସେ ସାହିତ୍ୟର ସାମାଜିକ ମୂଲ୍ୟ କ'ଣ ? ଆଜିକାର କୌଣସି ନାଟକ ବା ଉପନ୍ୟାସରେ ଗୋଟିଏ ମଧ୍ୟବିତ୍ତ ନାୟକର ଚରିତ୍ର ଅଙ୍କନ କରିବାକୁ ଯାଇ ତାକୁ ଯଦି ଆମେ easy going character ଭାବରେ ଉପସ୍ଥାପିତ କରୁ ତେବେ ସେ ଚରିତ୍ରରେ ବାସ୍ତବର ପ୍ରତିଫଳନ କାହିଁ ? ଠିକ୍ ସେମିତି କାରଣରେ ସ୍କଟ୍‌ଙ୍କ ଅନୁସରଣରେ heroic knight କିମ୍ବା ଭଞ୍ଜୀୟ ଅନୁସରଣରେ a love making hero, ଆଜିର ସାହିତ୍ୟରେ ସମ୍ଭବ ନୁହେଁ । କାରଣ ପ୍ରେମ ପ୍ରତି ମଣିଷର ଧ୍ୟାନ ଧାରଣା ବଦଳି ଗଲାଣି । ଏ ଯୁଗ intellectualismର ଯୁଗ । ଶାରୀରିକ ବଳ, ବୁଦ୍ଧି, idle luxury ସହ ରକ୍ତବିଳାସୀର parasite ଜୀବନ ଏ ଯୁଗରେ ଶ୍ରଦ୍ଧାର ପାତ୍ର ହୋଇ ନ ପାରେ ଏବଂ ପ୍ରେମ ସହିତ ଶ୍ରଦ୍ଧାର ସମ୍ପର୍କ ନିବିଡ଼ । ଆମେ ଆଜି ତାକୁ ହିଁ ଶ୍ରଦ୍ଧା କରୁ ଯିଏ କର୍ମଠ, ଯିଏ ସଂଗ୍ରାମୀ, ଯିଏ intellectual; ସୁତରାଂ ଆଜିର ଗଳ୍ପ ଉପନ୍ୟାସରେ ଆମେ ସେହି ଧରଣର ଚରିତ୍ର ଚାହୁଁ । କାରଣ ସେପରି ଧରଣର ଚରିତ୍ର ହିଁ ଆମର ସମକାଳୀନ ଚିନ୍ତାକୁ ବହନ କରେ ।

ଆଜିକାର ସମାଜ ତଥା ଜୀବନ ଅନେକ କାରଣରୁ ଜଟିଳ ହୋଇଉଠିଛି । ଫଳରେ ବିଭିନ୍ନ ଜିନିଷ ପ୍ରତି ଆମର ଦୃଷ୍ଟିଭଙ୍ଗୀର ମଧ୍ୟ

ମୌଳିକ ପରିବର୍ତ୍ତନ ଘଟିଛି । ଉଦାହରଣ ସ୍ୱରୂପ ନାରୀ ଏବଂ Sex କଥା ଧରାଯାଉ । ଆଗେ ନାରୀମାନଙ୍କ ସହିତ ବାହାରର ଯୋଗାଯୋଗ ନିତାନ୍ତ କମ୍ ଥିଲା ଏବଂ ଗୃହକର୍ତ୍ତୀ ଓ ଶଯ୍ୟାସଙ୍ଗିନୀ ହେବା ଛଡ଼ା ସେମାନଙ୍କର ଅନ୍ୟ ଦାୟିତ୍ୱ ନ ଥିଲା । ଆଜି ପେଟର ପ୍ରୟୋଜନରେ ତାଙ୍କୁ ଘରୁ ଗୋଡ଼ କାଢ଼ି ପର୍ଦାକୁ ବାହାରିବାକୁ ପଡ଼ୁଛି—ଟ୍ରାମ୍, ବସ୍‌ରେ ଅଫିସରେ, କର୍ମକ୍ଷେତ୍ରରେ ତାଙ୍କୁ ବିଭିନ୍ନ ଧରଣର ପୁରୁଷ ସହିତ ମିଶିବାକୁ ପଡ଼ୁଛି । ଏପରି କ୍ଷେତ୍ରରେ Chastityର ପୁରୁଣା ସଂଜ୍ଞା ମାନି ଚଳିବା ତା' ପକ୍ଷରେ କେମିତି ସମ୍ଭବ ? ସୁତରାଂ ଆଜିର ନାୟିକାର ଚରିତ୍ର ଚିତ୍ରଣ କରିବାକୁ ଗଲେ ନାରୀର ଏଇ ନୂତନ ମୂଲ୍ୟାୟନକୁ ସ୍ୱୀକୃତି ଦେବାକୁ ପଡ଼ିବ । ବଙ୍ଗାଳୀ ଔପନ୍ୟାସିକ ସମରେଶ ବସୁଙ୍କ 'ବିବର', 'ପ୍ରଜାପତି' ପ୍ରଭୃତି ଉପନ୍ୟାସକୁ ଆମେ ଅଶ୍ଳୀଳତାର ଅଭିଯୋଗରେ ଅଭିଯୁକ୍ତ କରିପାରୁ ; କିନ୍ତୁ ଆଜିର ସମାଜରେ ଯେଉଁ Sex pervertion ଦେଖା ଦେଇଛି, ଉପନ୍ୟାସଗୁଡ଼ିକରେ ତା'ର ଯେଉଁ ସଫଳ ଚିତ୍ରାୟନ ହୋଇଛି ଏକଥା ଅସ୍ୱୀକାର କରି ହେବନି । Sexକୁ ଆଜି biological necessity ହିସାବରେ ଦେଖାଯାଉଛି; ତା'ର religious valueକୁ ଆଜି ଆଉ ସ୍ୱୀକାର କରାଯାଉ ନାହିଁ । ଏଟା ଭଲ କି ମନ୍ଦ ସେ ପ୍ରଶ୍ନ ଅବାନ୍ତର—କିନ୍ତୁ ଏଇଟାଇ ସମକାଳୀନ ସମସ୍ୟା ବା ଚିନ୍ତାଧାରା ଏବଂ ଆଜିର ସାହିତ୍ୟରେ ତା' ଆସିବାକୁ ବାଧ୍ୟ । ଆଜିର ଲେଖକ ବା ସାହିତ୍ୟିକମାନେ ଏହିପରି ପରିବେଶ ଭିତରେ ବଢ଼ି ଉଠିଛନ୍ତି—ଏହିସବୁ ଚିନ୍ତାର ଶିକାର ହୋଇଛନ୍ତି—ଏମିତି ସବୁ ଘଟଣାରୁ ପ୍ରତ୍ୟକ୍ଷ ଅଭିଜ୍ଞତା ସଞ୍ଚୟ କରିଛନ୍ତି —ସୁତରାଂ ସେଇସବୁ ଚିନ୍ତାର ପ୍ରଭାବରୁ ନିଜକୁ ମୁକ୍ତ ରଖିବେ କେମିତି ? ଏମାନେ କେମିତି କହି ପାରିବେ ପ୍ରେମ ଏକ ସ୍ୱର୍ଗୀୟ Sentiment ! ଯେଉଁ ଲେଖକ ଅଭାବର ହା'ହାକାରମୟ ପରିବେଶ ଭିତରେ ବିପର୍ଯ୍ୟସ୍ତ ସେ ହେକିଲା ପେଟରେ ଚନ୍ଦ୍ରାଲୋକ ସ୍ୱପ୍ନରେ ବିଭୋର ହେବେ କେମିତି ? ଘରେ ଛିଣ୍ଡାଲୁଗା ପିନ୍ଧିଥିବା କଙ୍କାଳସାର ସ୍ତ୍ରୀକୁ ଦେଖି ଲାବଣ୍ୟବତୀର କଳ୍ପନା ସେ କେମିତି କରିବେ ? ଯେଉଁ ଶାସନକଳରେ ଆମେ ନିଯୁତ ପିଷ୍ଟ—ଆମର ରୋଜଗାର ନିୟନ୍ତ୍ରିତ—ସେଇ ଶାସନ-କଳର ଅନେକ କିଛି ଏପଟ ସେପଟ ହୁଏ night club ଓ କ୍ୟାବାରେରେ । ସୁତରାଂ ଆଜିର ସାହିତ୍ୟରେ night club ଓ କ୍ୟାବାରେର ଚିତ୍ରଣ ସଙ୍ଗତ କାରଣରେ ହିଁ ଉପସ୍ଥିତ ।

ଠିକ୍ ସେହିପରି ରାଜନୈତିକ ଦୃଷ୍ଟିକୋଣରୁ ବିଚାର କଲେ ଦେଖିବା—ଆଜି ପ୍ରତିଟି ବିକାଶଶୀଳ ଦେଶରେ—ସମାଜବାଦୀ ଚିନ୍ତାଧାରାର ଅଭ୍ୟୁଦୟ । ଏଇ ଯେଉଁ ସମାଜବାଦୀ ଚିନ୍ତା—ଆଜିର ଲେଖକ ହିସାବରେ ଆମେ ତାହାଠାରୁ ନିଜକୁ ବିଚ୍ଛିନ୍ନ କରି ରଖି ପାରିବା ନାହିଁ । ସାହିତ୍ୟ ଆଜି ନିଶ୍ଚିତଭାବରେ ଜୀବନଧର୍ମୀ । ଏହାର ସାମାଜିକ ବ୍ୟବହାର ଅଛି । ତେଣୁ ଯେଉଁ ରାଷ୍ଟ୍ରୀୟ ପରିବେଶ ଭିତରେ ସମାଜର ମଙ୍ଗଳ ସମ୍ଭବ—ଜୀବନର ପରିପୂର୍ଣ୍ଣ ବିକାଶ ସମ୍ଭବ, ସେହି ଚିନ୍ତାଧାରାକୁ ଅସ୍ୱୀକାର କରି ଆମେ ଆଜିର ସାର୍ଥକଜୀବନ ଆଙ୍କିବୁ କେମିତି ? ଭିଏତ୍‌ନାମରେ କ'ଣ ହେଉଛି—ବାଙ୍ଗ୍‌ଲାଦେଶରେ କ'ଣ ଘଟିଯାଇଛି—ଆଜି ଆମେ କାହିଁକି ସେଥିପାଇଁ ମୁଣ୍ଡ ଖେଳାଉଛୁ ? ଆମେ କାହିଁକି ଭିଏତ୍‌ନାମ ଉପରେ କବିତା ଲେଖୁଛୁ ? କାରଣ, ସେଟା ଏଇ ନୂତନ ଯୁଗର ନୂତନ ମାନବିକ ମୂଲ୍ୟବୋଧ । ବିଜ୍ଞାନ ଆଜି ଦୂରକୁ ନିକଟ କରିଛି । ତେଣୁ ହଜାର ହଜାର ମାଇଲ୍ ଦୂରରେ ରହିଲେ ମଧ୍ୟ ସେମାନେ ଆମର ଆତ୍ମୀୟ । cosmopolitan outlook ଏଯୁଗର ଅନ୍ୟ ଏକ ବିଶେଷତ୍ୱ । ସେଠି ମଣିଷ ଉପରେ ଜୁଲୁମ ହେଉଛି—ମଣିଷ ହିସାବରେ ଆମେ ତା'ର ପ୍ରତିବାଦ କରୁଛୁ । ଏ ଯୁଗର ବୁଦ୍ଧିଜୀବୀ ହିସାବରେ—ଉଦ୍ଦେଶ୍ୟ-ମୂଳକ ସାହିତ୍ୟର ସୃଷ୍ଟିକର୍ତ୍ତା ହିସାବରେ ଆମେ ଏଇ ଆନ୍ତର୍ଜାତୀୟ ଚିନ୍ତାଧାରାରୁ ନିଜକୁ ଅଲଗା କରି ରଖିପାରୁନା ।

"ସଂସର୍ଗଜାଃ ଦୋଷଗୁଣାଃ ଭବନ୍ତି ।"

କଥାଟା ଅତି ପୁରୁଣାକାଳରୁ ଚଳିଆସୁଛି । ସୁତରାଂ ଯେଉଁ ପରିବେଶରେ ରହିବୁ, ଯେଉଁ ସଂସର୍ଗରେ ରହିବୁ, ସେଇ ପରିବେଶ, ସେଇ ସଂସର୍ଗର ଚିନ୍ତାଧାରା ନିଶ୍ଚିତରୂପରେ ଆମକୁ ପ୍ରଭାବିତ କରିବ ଏବଂ ଆମର ସୃଷ୍ଟି ତା'ର ସ୍ୱାକ୍ଷର ବହନ କରିବ ।

ତେଣୁ ଦେଖାଯାଉଛି, ଦେଶର ଭୌଗୋଳିକ ସୀମାକୁ ଅତିକ୍ରମ କରି ସମଗ୍ର ବିଶ୍ୱରେ ଆଜି ଯେଉଁ ଚିନ୍ତାଧାରା ପ୍ରକାଶ ପାଇଛି—ସେ ଚିନ୍ତାଧାରାରୁ ନିଜକୁ ବିଚ୍ଛିନ୍ନ କରିବା ସମ୍ଭବ ନୁହେଁ ଏବଂ ଆଜିର ସାହିତ୍ୟରେ ତା'ର ପ୍ରଭାବ ନିଶ୍ଚିତ ରୂପରେ ପଡ଼ିବ । ପୁରାତନ ପରମ୍ପରାକୁ ଅବଲମ୍ବନ କରିବା କଥାଟା ଅବାସ୍ତବ ।

———

# ମୋ ଦୃଷ୍ଟିରେ
# ସାମ୍ପ୍ରତିକ କବିତାର କବି
# ଆଲୋଚକ ଓ ପାଠକ

ଶ୍ରୀ ନବକିଶୋର ପଣ୍ଡା

ସାଂପ୍ରତିକ କବିତା ଉପରେ କବି, ଆଲୋଚକ ଓ ପାଠକ ନିଜ-ନିଜର ମତ ଅଧିକରୁ ଅଧିକତର ଭାବେ ପ୍ରକାଶ କରୁଅଛନ୍ତି, ଏହା ଆମ୍ଭମାନଙ୍କର କ୍ରମବର୍ଦ୍ଧିଷ୍ଣୁ ସଚେତନାର ଶୁଭ ସଙ୍କେତ । 'ସାଂପ୍ରତିକ' ଶବ୍ଦର ପ୍ରୟୋଗ ଏଠାରେ ତାତ୍ପର୍ଯ୍ୟପୂର୍ଣ୍ଣ । ଆବହମାନ କାଳର ନିର୍ଦ୍ଦିଷ୍ଟ ବିନ୍ଦୁରୁ ଆଜି ପର୍ଯ୍ୟନ୍ତ ଯେ ସବୁ କାବ୍ୟକବିତା ବିଭିନ୍ନ ଭାଷାରେ ଲେଖା ହୋଇ ଆସୁଥିଲା, ସେଥିରେ ଯେତେ ପରିବର୍ତ୍ତନ ସଂଘଟିତ ହୋଇଅଛି, ସେଗୁଡ଼ିକ ବାହ୍ୟିକ । କବିତାର ଆତ୍ମଗତ ବା ଆତ୍ମିକ ପରିବର୍ତ୍ତନ ହୋଇନଥିଲା, କହିଲେ ଅବାନ୍ତର ହେବ ନାହିଁ । ଏ ପରିବର୍ତ୍ତନ ମୁଖ୍ୟତଃ କବିତାର ବିଷୟବସ୍ତୁ ଓ ଶୈଳୀରେ ନିହିତ ଥାଇ ମାନ୍ଧାତା ଅମଳର ରୀତି ନିୟମ, ଛନ୍ଦ ବର୍ଣ୍ଣନା ଆଦି ଅପରିବର୍ତ୍ତିତ ଭାବେ କବିତାର ଉପାଦାନ ଥିଲା । ବର୍ତ୍ତମାନ କବିତାରେ ଯେଉଁ ଆତ୍ମିକ ପରିବର୍ତ୍ତନ ଘଟିଛି, ତାହା ଫଳରେ ତା' ରୂପସଜ୍ଜାର ଅନୁରୂପ ପରିବର୍ତ୍ତନ ଘଟିଛି । ଏହା ଦେଖି ଆଶ୍ଚର୍ଯ୍ୟ ପ୍ରକାଶ କରିବା ଓ ବିଡ଼ମ୍ବିତ ଭବିଷ୍ୟତ ଆଶଙ୍କା କରିବା, ବା ବିଦ୍ୱେଷୋକ୍ତି ପ୍ରକାଶ କରିବାର କିଛି ଯୌକ୍ତିକତା ନାହିଁ ।

ସାଂପ୍ରତିକ କବିତା କ୍ରିୟାଶୀଳ, ଚେତନାଶୀଳ, ବିଗ୍ରହ-ବିଶ୍ଳେଷଣ-ପରାୟଣ କବିମାନସର ବାଙ୍ମୟ ପ୍ରତିନିଧି । କୌଣସି ନିର୍ଦ୍ଦିଷ୍ଟ ବିଷୟ-ବସ୍ତୁକୁ ନିମିତ୍ତ ରୂପେ ଆଶ୍ରୟ କରି ହେଉ ବା କୌଣସି ପୌରାଣିକ ବା ଐତିହାସିକ ଉପଲକ୍ଷଣାକୁ ପ୍ରତୀକରୂପେ ସଂଯୋଜିତ କରି ହେଉ, ଅଥବା

କୌଣସି ବିଷୟବସ୍ତୁ କାରଣସ୍ୱରୂପ ନ ଥାଉ, କବିତା ସଂକ୍ଷିପ୍ତ ଓ ଗାଣିତିକ ଭାବେ ଚେତନାର ବାର୍ତ୍ତାକୁ ପ୍ରକାଶ କରିବ । ଏଥିରେ ଚମତ୍କାରପ୍ରଦ ଆଶ୍ଚର୍ଯ୍ୟ ବିଭାବ ଗୁଣ ନ ରହିଲେ ଅର୍ଥାତ୍ ବ୍ୟଞ୍ଜନା ଶକ୍ତିର ଅଭାବ ଥିଲେ, ଏହା ବହୁ ବିକ ପଥ ଅବଲମ୍ବନ କରି ଅସଫଳ ସୃଷ୍ଟିରୂପେ ଘୃଣ୍ୟ ଓ ହୀନପ୍ରଭ ହୁଏ । ଆମ୍ଭେମାନେ ପ୍ରତ୍ୟେକ ବିଭିନ୍ନ ପରିବେଶ— ହୋଇପାରେ ଗୁରୁତ୍ୱପୂର୍ଣ୍ଣ ବା ସାଧାରଣ —ଓ ବିଭିନ୍ନ ଘଟଣା ଦେଇ ଜୀବନର ଅନୁଭୂତି, ଅନୁଭୂତିରୁ ଜ୍ଞାନ (କେବଳ ଜାଣିବା ଅର୍ଥରେ ସୀମିତ) ଓ ଜ୍ଞାନର ପରିପକ୍ୱତାରେ ଏକ ମାନସିକ ଆକୃତି, ସ୍ତର, ମାନ ବା ଅବସ୍ଥାରେ ଯେ କୌଣସି ନିର୍ଦ୍ଦିଷ୍ଟ ସମୟର ବିନ୍ଦୁରେ ଥାଉ । ବିଭିନ୍ନ ସମୟରେ ଏହି ମାନସିକ ଅବସ୍ଥା ପରିବେଶ, ଘଟଣା ସମୟ ଆଦି ବିଭିନ୍ନ ବାହ୍ୟ ପ୍ରଭାବ ହେତୁ ବର୍ଣ୍ଣାଳୀବତ୍ (Kaleidoscopic) ପରିବର୍ତ୍ତନର ଅଧୀନ ଅଟେ । ଅଦ୍ୟାବଧି କବି ପାଇଁ ବିଶେଷତଃ ଆମ ଭାରତୀୟ ସାହିତ୍ୟରେ, ଏଥିପ୍ରତି ଧ୍ୟାନ ଦେବାର ଔଚିତ୍ୟ ଦେଇ କୌଣସି ସଚେତନ ଆନ୍ଦୋଳନ ହୋଇ ନାହିଁ । ସଂସ୍କୃତ କାବ୍ୟସାହିତ୍ୟରେ ବାହ୍ୟବସ୍ତୁର ଦୃଶ୍ୟ, ଅବୟବ ଆଦିର ବ୍ୟାପକ ବର୍ଣ୍ଣନା କରିବାକୁ ଯେତେ ଯେତେ ଉପାୟ ଲୋଡ଼ା, ଯେତେ ଯେତେ ଉପାଦାନ ପାଠକର କର୍ଣ୍ଣେନ୍ଦ୍ରିୟ ପରିତୃପ୍ତିକର, ସେସବୁର ପ୍ରୟୋଗ ଶୀର୍ଷ ସୀମାରେ ପହଞ୍ଚିଛି । ଶ୍ରୀଅଲପରିତୃପ୍ତି ପାଇଁ ଖୋଜି ଖୋଜି ଟଣା ହୋଇଛି ଏପରି ଦିଗନ୍ତ ପାରିର ଶବ୍ଦସବୁ ; ଯାହାର ସଂଯୋଗରେ ଭଲ ଅଳଙ୍କାର ହେବ, ଛନ୍ଦ ଓ ବନ୍ଧ ହେବ—ସେ ଭାଷାର ଜାଲ ବୁଣା ହୋଇଛି କର୍ଣ୍ଣ ପାଇଁ ; ଏପରି ବିଷୟବସ୍ତୁର ବାହ୍ୟକ ଚିତ୍ର ଯାହା ହେବା କଥା ତାହାକୁ ମଧ୍ୟ କେତେକାଂଶରେ ବଳି ଦିଆ ହୋଇଛି ଅଳଂକାର ମୋହରେ । ଓଡ଼ିଆ ଭାଷାରେ ଭଞ୍ଜସାହିତ୍ୟର ଏହା ମଧ୍ୟ ଏକ ବିରାଟ ଦୁର୍ବଳତା । ଯାହା ହେଉ, ଗୋଟିଏ କଥାରେ କହିଲେ ଆମ୍ଭେମାନେ ପ୍ରାଚୀନ କବିମାନଙ୍କର କୃତିରେ ବାହ୍ୟ ବିଷୟବସ୍ତୁର ବର୍ଣ୍ଣନା ଯେତିକି ଦେଖିଅଛେ, ସେ ବିଷୟବସ୍ତୁ ବା ଘଟଣା ବା ଦୃଶ୍ୟର କୌଣସି ନା କୌଣସି ଇନ୍ଦ୍ରିୟଗୋଚରାତୀତ ବିଭବ—ଯାହାକି ଆମ୍ଭ ସ୍ନାୟୁ-ତନ୍ତୁରେ ଅନିର୍ବଚନୀୟ ଭାବତରଙ୍ଗ ସୃଷ୍ଟି କରେ, ଯାହା ଆମ୍ଭ ମନରେ ବସା ବାନ୍ଧି ରହିବାକୁ ଚେଷ୍ଟା କରେ, ବିଭିନ୍ନ ଅନୁଭୂତି ଓ ବିଚାର ବିଶ୍ଳେଷଣରେ ଆମ୍ଭମାନଙ୍କୁ ଉପନୀତ କରାଏ, ବାହ୍ୟ ଦୃଶ୍ୟମାନ ବା ଇନ୍ଦ୍ରିୟଗ୍ରାହ୍ୟ ବିଷୟବସ୍ତୁର ଆତ୍ମା, ପ୍ରାଣ ବା ମର୍ମ ରୂପେ ପ୍ରତିଭାତ ହୁଏ, ଯାହାର ଅନୁଭୂତି

ସାଧାରଣ ଭାଷାରେ ବା କଥାରେ ସିଧା ସଳଖ ପ୍ରକାଶ କରି ହେବ ନାହିଁ, ଭାବୋଚ୍ଛ୍ୱାସ କାବ୍ୟ ସାହିତ୍ୟରେ ସଚେତନଭାବେ ମୁଖ୍ୟ ସ୍ଥାନ ପାଇ ନ ଥିଲା ।

ଭାରତୀୟ କାବ୍ୟର ଶ୍ରେଷ୍ଠତ୍ୱର ପରିମାପକ ଥିଲା 'ରସ'ର ପରିବେଷଣ-କୁଶଳତା । ସାଂପ୍ରତିକ କବିତା ରସ ପାଇଁ ବ୍ୟାକୁଳ ନୁହେଁ ; ଭାବନମନ୍ତ୍ରମାନ ପାଠକ ଅନ୍ୱେଷଣ କରିବା ଏହାର ଲକ୍ଷ୍ୟ ନୁହେଁ, ଏହାର ଲକ୍ଷ୍ୟ ଓ ବ୍ୟାକୁଳତା ହେଉଛି ବିଚ୍ଛିନ୍ନ ଚେତନାର ଏକତ୍ରୀକରଣ, ଯେଉଁଥିରୁ କବିର ମାନସିକ ସ୍ଥିତିର ବ୍ୟାପକ ବିଭାବମାନଙ୍କର ଗ୍ରନ୍ଥନ ସୃଷ୍ଟି ହେବ । ଏହି ମାନସିକ ସ୍ଥିତିକୁ ସମ୍ପୂର୍ଣ୍ଣଭାବେ କାବ୍ୟିକ ରୂପ ଦେବା ଉଦ୍ଦେଶ୍ୟରେ ଗୂଢ଼ବାଦ, ପ୍ରତୀକ୍‌ବାଦ, ମନସ୍ତତ୍ତ୍ୱ, ରୂପକ, ଚିତ୍ରକଳ୍ପ ଆଦିର ପ୍ରୟୋଗ କବିତାରେ ଅଙ୍ଗୀଭୂତ ହେଲା । ସେହି କବିତାର ଭାଷା, ଶୈଳୀ, ରୂପ ଓ ଅନ୍ତର୍ନିହିତ ଭାବର ତଥ୍ୟ ଚିରାଚରିତ ବର୍ଣ୍ଣନାଧର୍ମୀ କାବ୍ୟ-କବିତାର ପାଠକ ପାଇଁ ସମ୍ପୂର୍ଣ୍ଣ ଅଭିନବ । ବର୍ତ୍ତମାନ ଏହି କବିତା-ସମୂହ ବହୁ ଧରଣର ଅକଥ୍ୟ ଆକ୍ରମଣ ଭିତର ଦେଇ ଭବିଷ୍ୟତର ସନ୍ଧାନରେ ଅଗ୍ରସର । ଏଥିରେ ଦ୍ରଷ୍ଟାର ଅନ୍ତର୍ଦ୍ଦୃଷ୍ଟିର ଗଭୀରତା, ଅନନ୍ତପ୍ରସାରୀ ରମ୍ୟତା, ମନସ୍ତାତ୍ତ୍ୱିକ ଜିଜ୍ଞାସା ବା ଅନୁସନ୍ଧିତ୍ସା, ପ୍ରଚ୍ଛନ୍ନତା ଆଦି ପାଠକ ପକ୍ଷେ ଦୁର୍ବୋଧତାର କାରଣ ହୁଏ । ଏସବୁ ସାଙ୍ଗକୁ କବିତା କୌଣସି ଘଟଣାର କ୍ରମକୁ (ଯାହା ସହିତ ପାଠକ ପରିଚିତ) ପ୍ରକାଶ ନ କରି ବିଚ୍ଛିନ୍ନ ଘଟଣାମାନଙ୍କର ଦାର୍ଶନିକ ପ୍ରଭାବ କବିମାନସରେ ଏକଧରଣର ଚେତନାର ପର୍ଯ୍ୟାୟ ସୃଷ୍ଟି କରେ ଏବଂ ଏହା ହେଉଛି ସେ କବିତାର ନୂତନତ୍ୱ । ପାଠକ ଏ ରୀତି ସହିତ ପରିଚିତ ନ ଥିବାରୁ, ସେହି ପୁରାତନ ପନ୍ଥାରେ କବିତାକୁ ଗଦ୍ୟଶୃଙ୍ଖଳାରେ ଶବ୍ଦାର୍ଥର ତଥା ବିଷୟବସ୍ତୁର କ୍ରମନିର୍ଣ୍ଣୟରେ ବୁଝିବାକୁ ଯାଇ ମୁହଁ ଫେରାଇଲେ ; କିନ୍ତୁ ବର୍ତ୍ତମାନ ଏପରି କବିତା ପୃଥିବୀର କବି-ସମାଜକୁ ଅନୁପ୍ରାଣିତ କରିଛି ।

ଓଡ଼ିଆ ସାହିତ୍ୟରେ ଉପର୍ଯ୍ୟୁକ୍ତ ଧରଣର କବିତା ବିଗତ ଦୁଇ ଦଶକ ଧରି କ୍ଷିପ୍ର ଗତିରେ ଲିଖିତ ହେଉଅଛି ; କିନ୍ତୁ ସମାଜରେ କାହିଁକି ଏଗୁଡ଼ିକ ପ୍ରିୟତା ଅର୍ଜନ କରିପାରୁ ନାହିଁ, ତାହା ମଧ୍ୟ କବିଙ୍କୁ ଅଗୋଚର ନାହିଁ । ସମାଜର ବୌଦ୍ଧିକ ସ୍ତର ଯେ ଖୁବ୍ ଉଚ୍ଚ ନ୍ୟୂନରେ ତାହା ନୁହେଁ । ପାଠକ ଦୃଷ୍ଟିରେ ଏହି ଗୋଟିଏ ବିଷୟର ଯେ ସାଂପ୍ରତିକ କବିତାର ନିର୍ଦ୍ଦିଷ୍ଟ

ବିଷୟବସ୍ତୁ ନାହିଁ, ବିଚ୍ଛିନ୍ନ ଚିନ୍ତାର ଏକୀକରଣହେତୁ କବିଙ୍କର ବକ୍ତବ୍ୟ ଦୁର୍ବୋଧ ଏବଂ କବିତାଗୁଡ଼ିକ ନୀରସ ; ଏଥିସହିତ ଦ୍ୱିମତ ହେବାକୁ ସ୍ରଷ୍ଟା ଅଥବା ସମାଲୋଚକ ପାଇଁ ଯୁକ୍ତି ନାହିଁ ; କିନ୍ତୁ ଜଣେ ପାଠକ ଅନୁସାରେ, ଗୋଟିଏ କବିତାକୁ ଏକା ନାଆରେ ବସାଇ ଦରିଆକୁ ପେଲିଦେବା ଯାହା, ନିଜର ପାଠକଭୂମିକୁ ତଣ୍ଟିଚିପି ମାରିଦେବା ତା'ଠାରୁ ଉଣା ନୁହେଁ । ପାଠକର ଧୈର୍ଯ୍ୟ ଏବଂ ବୌଦ୍ଧିକ ଆଗ୍ରହ କବିତାର ମର୍ମ ଦେଖିବାକୁ, କବିର ଶ୍ରମକୁ ସାର୍ଥକ କରିବାକୁ ଲୋଡ଼ା ।

କବି କ'ଣ ବିଷୟବସ୍ତୁ ପ୍ରଖ୍ୟାପନ କରିଛନ୍ତି, ତାହା ଅନୁସନ୍ଧାନ କରିବାକୁ ନୁହେଁ, କବିଙ୍କ ଚିନ୍ତାଧାରାର ସ୍ଥିତି-ନିର୍ଣ୍ଣୟ, ପରିପକ୍ୱତା, ମାନସିକଭାବର ବିଭିନ୍ନ ପର୍ଯ୍ୟାୟ, କେଉଁ ଅଭିନବ କଳାରେ ଚମତ୍କାରିତା ବହନ କରି କବିତାରେ ସ୍ଥାନ ପାଇଛି ସେ ପର୍ଯ୍ୟାୟଗୁଡ଼ିକର ବିଶ୍ଳେଷଣ ଆଦିରେ ମନୋନିବେଶ କରିବାକୁ ପାଠକଙ୍କର ଦୃଷ୍ଟିକୋଣ ବଦଳିଲେ, ଶଂସିତ କବିତାଗୁଡ଼ିକର ମୌଳିକତା ଅନୁଭବ୍ୟ ହେବ । ଏଥିପାଇଁ କବି-ସମାଜ ଯେ ସତତ ବ୍ୟାକୁଳ ହୋଇ, ମାଇକ୍ ଲଗାଇ ଖୋଲାପଡ଼ିଆରେ ବା ରାସ୍ତା କଡ଼ରେ କବିତା ଆବୃତ୍ତି କରିବ—ଏଥିରେ ଏକମତ ହେବାକୁ ଲଜ୍ଜା ଆସେ । ଏହା ହାସ୍ୟାସ୍ପଦ । ମନେ ରଖିବାକୁ ହେବ, ଯୁଗ ଯୁଗେ ଯେତେ ଗ୍ରନ୍ଥ, ଶୈଳୀ, ଗୀତ, ରୂପ, ଭଙ୍ଗୀ ଆଦି ପରିବର୍ତ୍ତିତ ହେଲେ ମଧ୍ୟ କେଉଁ ଯୁଗରେ ଉତ୍ତମ କବିତାର ଅଭାବ ନାହିଁ ; ଏବଂ ଉତ୍ତମ କବିତା ଯେ ନିଜ ସୃଷ୍ଟିର ସମସାମୟିକ ସମାଜଦ୍ୱାରା ଆଦୃତ ହେବ ହିଁ ହେବ, ଏପରି ଗୋଟାଏ ନିୟମ ନାହିଁ ।'

ସାଂପ୍ରତିକ କବିତାକ୍ଷେତ୍ରରେ ବହୁ ନୂତନ ଆଭିମୁଖ୍ୟ ସୃଷ୍ଟି ହୋଇ ଗଲିଛି । ମନୁଷ୍ୟର ବିଭିନ୍ନ ବୈଜ୍ଞାନିକ ପ୍ରଭାବ ଫଳରେ ବିଜ୍ଞାନ ଓ ଶିଳ୍ପାୟନର ପ୍ରଭାବ କବିତାର ବାହ୍ୟରୂପ ଏବଂ ଅନ୍ତଃରୂପ ଗଠନ ଉପରେ ପ୍ରଭୂତଭାବେ ପଡ଼ିବାରେ ଲାଗିଛି । ବିଭିନ୍ନ ବୈଜ୍ଞାନିକ ଶବ୍ଦ, ପ୍ରକ୍ରିୟା, ଜଟିଳତା ଆଦିର ଅଭିନିବେଶ କବିତା-ସ୍ୱରୂପକୁ ପୂର୍ବ ଗ୍ରନ୍ଥଠାରୁ ଅଲଗା କରି ଦେଉଛି । କବି ଓ କଳାକାରର ଚେତନାରେ କେବଳ ନାହିଁକି, ସାଧାରଣ ଅନୁଭବୀ ବ୍ୟକ୍ତିର ଚେତନାରେ ବୈଜ୍ଞାନିକତା ଏବଂ ଯାନ୍ତ୍ରିକତା ପ୍ରବେଶ କରିଛି । ମନୁଷ୍ୟର ଚିନ୍ତାଧାରା ଜଟିଳ ହୋଇପଡ଼ିଛି । କବି କୌଣସି ଚିନ୍ତାର ସ୍ୱରୂପ ପ୍ରକାଶ କରିବାକୁ ବୈଜ୍ଞାନିକ ବିଷୟବସ୍ତୁ ବା

ପ୍ରତିମୂର୍ତ୍ତିକୁ ରୂପକ, ପ୍ରତୀକ ଆଦି ରୂପେ ବ୍ୟବହାର କରୁଛି । କବି ଯେ କୌଣସି କବିତା ଲେଖିଲେ ବୃହସ୍ପତି ଗ୍ରହକୁ ଗୁରୁ, ଚନ୍ଦ୍ରଗ୍ରହକୁ ଏକ ଲଳନା-ମୁଖର ଉପମାନ, ବିଦ୍ୟୁତ୍‌କୁ ଇନ୍ଦ୍ରଙ୍କ ବଜ୍ର ଇତ୍ୟାଦି ଅବାନ୍ତର ବିଜ୍ଞାନବିରୋଧୀ ଉକ୍ତି ବର୍ତ୍ତମାନ ପ୍ରକାଶ କରିବାକୁ ପ୍ରୟାସ କରିବ ନାହିଁ ।

କବିର ବୈଜ୍ଞାନିକ ଦୃଷ୍ଟିକୋଣକୁ ଭାବବିହ୍ୱଳତାରୁ ବୌଦ୍ଧିକ ବିଶ୍ଳେଷଣଦିଗକୁ ଟାଣି ଆଣିଛି । ତେଣୁ ଇଙ୍ଗିତ ହେଉ, ଉପମା ହେଉ, ରୂପକ ହେଉ, ଯେ କୌଣସି କ୍ଷେତ୍ରରେ ଶବ୍ଦଟିଏ କବିତାର ଅଙ୍ଗୀଭୂତ ହେଲେ ସେ ଶବ୍ଦଟି କବିତାର ସାମଗ୍ରିକ ଓଜନ ମଧ୍ୟରେ ନିଜର ଅନୁପାତ ହରାଏ ନାହିଁ । ପାଠକମାନେ ଆଧୁନିକ କେଉଁ କନସର୍ଟରୁ ଖସି ପଳାଇ ଯାଉନାହାନ୍ତି, ବରଂ ଅଧିକରୁ ଅଧିକତର ଭାବେ ଆକୃଷ୍ଟ । ଆଧୁନିକ କବିତାଠାରୁ ଏତେ ଦୂରରେ ରହୁଛନ୍ତି କାହିଁକି ? ଆମକୁ ଏପର୍ଯ୍ୟନ୍ତ ସେହି ବାହ୍ୟ ପରିତୃପ୍ତି, ଇନ୍ଦ୍ରିୟ-ରସାପ୍ଲୁତ, ଲଘୁ ଆନନ୍ଦ ମୋହିତ କରି ରଖିଛି । ଆମେ କହୁଛୁ ଆମେ ସମସ୍ୟାବହୁଳ ଯୁଗର ଲୋକ, ଆମର ମସ୍ତିଷ୍କର ଗୁରୁତ୍ୱ ହୃଦୟଠାରୁ ବେଶି, ବିଚାର-ବୁଦ୍ଧିର ଗୁରୁତ୍ୱ ଭାବ-ପ୍ରବଣତାଠାରୁ ଅବସ୍ଥାଚକ୍ରରେ ପଡ଼ି ବେଶି ଉପଲବ୍‌ଧ ; କିନ୍ତୁ, ଯାହା ମସ୍ତିଷ୍କର ପରିପକ୍ୱତାକୁ ବୃଦ୍ଧି କରେ, ଚିନ୍ତାର ବିକାଶ କରେ—ତାହା ଆମ ପାଠକମାନଙ୍କଠାରୁ ଦୂରରେ ।

ଯେତେଗୁଡ଼ିଏ କଥା ଉପରେ କୁହାଗଲା ତା' ସାଙ୍ଗକୁ ଆଉ କେତେକ ସତ୍ୟ କଥା ନ କହିଲେ ବିଚାରଧାରା ଏକତରଫା ହୋଇଯିବାର ଆଶଙ୍କା ହେଉଛି । ବିଭିନ୍ନ ବାଦ, ସୂତ୍ର, ବିଜ୍ଞାନର ନୂତନ ଶବ୍ଦ ଆଦିର ପ୍ରୟୋଗ ହେତୁ ଯେଉଁ ଜଟିଳତା ଉପୁଜିଛି ତା'ର ଅପବ୍ୟବହାର ହେଉଛି । କବିତା ଆଜି କୌଣସି ଶୃଙ୍ଖଳା, ନିୟମ ମାନିବାକୁ ପ୍ରସ୍ତୁତ ନୁହେଁ । ଏ କଥାଟା ସ୍ରଷ୍ଟା ଆଜି ବାହାଦୁରି ଦେଖାଇ ଯଦି ଗୋଟାଏ ଅସ୍ଫାଳନ କରେ ତେବେ ତାହା ହାସ୍ୟାସ୍ପଦ । ଶୃଙ୍ଖଳା ଓ ସୃଷ୍ଟି ନଖକୁ ମାଉଁସ ପରି ଅନ୍ତରଙ୍ଗ । ଆଧୁନିକ କବିତାର ଅଗ୍ରଦୂତ-ମନ୍ୟ କେହି କେହି ସ୍ରଷ୍ଟା ସମାଲୋଚକ ପ୍ରତିଷ୍ଠା ଦେଇ ଲେଖିପକାଇଛନ୍ତି ଶୃଙ୍ଖଳା ହେଉଛି ଏକ ଶାଙ୍କୋଳି । ଛନ୍ଦ ବନ୍ଧ ଅଳଙ୍କାର ଏସବୁ ଶାଙ୍କୋଳି ଓ କୋଠିଘର । ତେବେ ତା'ର ବିପରୀତ ବିଶୃଙ୍ଖଳାଟା କ'ଣ ? ପରିଣତିରେ ତା'ର କେତେ ରକମ ଅବସ୍ଥା ହୋଇପାରେ ? ସବୁରକମ ଚିନ୍ତାମାୟ ଅବସ୍ଥାଗୁଡ଼ିକ

ସ୍ପୃହଣୀୟ କି ? ଏ ସ୍ପୃହଣୀୟତାର ପ୍ରଶ୍ନ ଉଠେ କବିତାର ରୁଚିଗ୍ରାହ୍ୟତା ଦୃଷ୍ଟିରୁ, ସାମାଜିକତା ଦୃଷ୍ଟିରୁ । ଗୋଟିଏ ପ୍ରସିଦ୍ଧ ପତ୍ରିକାର ସମ୍ପାଦକ ଏକ ଧରଣର ବିଶୃଙ୍ଖଳାକୁ ତାଙ୍କ ପତ୍ରିକାରେ ପ୍ରକାଶିତ ହୋଇଥିବା ଗୋଟିଏ ଦୁଇଟି କବିତାରେ ଲକ୍ଷ୍ୟ କରି ସମାଲୋଚନା କରିଥିବା ମୁଁ ଖରି କଥା । କବିତା ଭିତରେ ଯୋନି, ଲିଙ୍ଗ, ଜଙ୍ଘ, ଇତ୍ୟାଦି ଶବ୍ଦ, କ'ଣ ଏତେ ଦୂର ଅପରିହାର୍ଯ୍ୟ ଯେ, ତା'ଛଡ଼ା ସେମାନେ ଲିଖନ୍ତି କବିତାର କୌଣସି ମୂଲ୍ୟ କମିଯିବ । ନିମ୍ନରେ କେତୋଟି କବିତାଂଶ ଏଥିନିମିତ୍ତ ଉଦ୍ଧୃତ ହେଲା :—

(୧) "ମାନିଲି ମୁଁ ପର୍ଯ୍ୟଟିତ ଲାଲଟିକ୍କା,
ମୋତେ ଯୋଡ଼ିଦିଅ ମୋର ଲହୁରେ ଜ୍ୱଳନ୍ତ
ଶୃଙ୍ଗମାନଙ୍କ ସହିତ ।
ଦେଖ, ଦେଖ ପ୍ରେମର ଈଶ୍ୱର,
ମୁଁ କପର ଉପରକୁ ଉଠିଅଛି,
ତଳେ ପୋଡ଼ିଯାଇଅଛି ଯୋନି, ଲିଙ୍ଗ, ଉପତ୍ୟକା
ଓ ଶୋଇବା ଘର ।
ମୁଁ ଯାଉଛି ଶୃଙ୍ଗଆଡ଼େ, ଶୃଙ୍ଗ ମୋର ଖୁଲି ଖୁଲି
ଅସୁଚି ମୋ ନିକଟକୁ
ଏକ ରୁଗଣ ହଳଦିଆ ଗୋଧୂଳିରେ ବୁଡ଼ି
ଯାଉଅଛି କ୍ରମେ ତଳର ସହର ।"

('ଦୁଇଟି କବିତା' : ଶ୍ରୀ ହରପ୍ରସାଦ ଦାସ)
ଝଙ୍କାର, ଫେବୃୟାରୀ ୧୯୬୯

କବିତାଟିରେ କବି ରେଖାଙ୍କିତ ଧାଡ଼ିଟି ନ ରଖିଥିଲେ କ'ଣ କ୍ଷତି ହୋଇଥାଆନ୍ତା ? ଏ ଧାଡ଼ିଟିର ବୈଶିଷ୍ଟ୍ୟ କ'ଣ ? ପାଠକ ଏ ଧାଡ଼ିଟିକୁ ଦେଖିଲାବେଳେ ତା'ର ମାନସିକ ପ୍ରତିକ୍ରିୟା କିଛି ହେଉଛି କି ନାହିଁ ? ଏ ଧାଡ଼ିଟି ପାଠକରି ପଢ଼ିଲେ ଶ୍ରୋତାମାନଙ୍କ କର୍ଣ୍ଣେନ୍ଦ୍ରିୟ ଦେଇ ଯେଉଁ ଶବ୍ଦ ମସ୍ତିଷ୍କରେ ପହଞ୍ଚିବ, ତାହା କି ପ୍ରକାର ପ୍ରତିକ୍ରିୟା ସୃଷ୍ଟି କରିବ ? 'ଯୋନି', 'ଲିଙ୍ଗ'ର ପ୍ରୟୋଗ କାବ୍ୟକବିତାରେ ଆବହମାନକାଳରୁ ହୋଇଛି । ଏଠାରେ ବି ହୋଇଛି । ପ୍ରଭେଦ କିଛି ନାହିଁ କି ? ଗୋଟିଏ ପାଠକ ହିସାବରେ ଉପର୍ଯ୍ୟୁକ୍ତ ପ୍ରଶ୍ନଗୁଡ଼ିକ କରିବାକୁ ହେଲା ।

(୨) ସେଦିନ ପ୍ରଥମଥର—ଆଉ କେବେ ଇଚ୍ଛା ହୋଇନାହିଁ—
ପତ୍ନୀଙ୍କୁ ସାଙ୍ଗରେ ନେଇ ସମୁଦ୍ରକୂଳକୁ ଗଲି,

ସକାଳପ୍ରହରୁ ତାଙ୍କୁ ବାନ୍ତି ବାନ୍ତି ଲାଗୁଥିଲା ବୋଲି,
କହୁଥିଲେ, ମୁଁ ମୋର ଶିଲ୍‌କଜାମାରେ ବୋତାମ ଲଗାଇ
ଦୋକାନକୁ ବାହାରିଚି । ମୋ ପତ୍ନୀ ଜାଣନ୍ତି

ଯେ ଯଦିଓ ମୁଁ ତାଙ୍କର ସାବନାଲା କଙ୍କରେ ପ୍ରେମିତ

ମୋ ନଖ ଭିଣ ଭବିଷ୍ୟତ ମୁଁ ତାଙ୍କ ଶୋଇବାଘରର

ଘଣ୍ଟାକୁ ଖାତିର୍ କରେ ନାହିଁ କେବେ ।

ମୋର ସନ୍ଧ୍ୟାବେଳ

ଅନ୍ୟ ଏକ ବୁଧବାର କୋଳର ବହ୍ନିରେ ବାରମ୍ବାର
ସୁବର୍ଣ୍ଣ ସମାନ ଶୁକ୍ର ହୁଏ ଏଠି ପୁଷ୍ପରେ ବା
ସାକ୍ଷୀଗୋପାଳରେ ।

('ଶୁକଦେବ ଜେନା' ଶ୍ରୀ ସୌଭାଗ୍ୟକୁମାର ମିଶ୍ର)
'ଝଙ୍କାର', ଫେବୃଆରୀ ୧୯୬୧)

ଉଦ୍ଧୃତ କବିତାଂଶଟିର ସମ୍ପୂର୍ଣ୍ଣ ଥାକଟି ପାଠକମାନଙ୍କ ଆଗରେ ରଖାଗଲା । ତେଖାଙ୍କ ଚ ଧାଡ଼ିଗୁଡ଼ିକ ପଢ଼ିଲେ ଚେତନାର ବିକାଶ କେଉଁ ଦିଗରେ ହୁଏ ? ଏ ପାଠକର ଆଖି, ଜିହ୍ୱା ଓ ମସ୍ତିଷ୍କ, ଯେପରି ମନେହୁଏ, ଅସ୍ୱସ୍ତିକର ଧକ୍‌କା ଖାଇ ଝିଗୁରି ଯାଏ । ଯଦି ଏ ଭିତରେ କିଛି ଗୂଢ଼ାର୍ଥ ବା ବ୍ୟଙ୍ଗାର୍ଥ ଥାଇପାରେ, ତେବେ ଅଧିକ ପ୍ରତିକୂଳ ଆଲୋଚନା ଦୂଷଣୀୟ ।

(୩) "ସୀମନ୍ତିନୀ ସୀମନ୍ତିନୀ ପଡ଼ୁଚ୍ଛି ମନେ ତୋ'ର
ମୁଁ ତତେ ପାଇଛି ଭଲ ସୋମଠାରୁ ଶନିବାର ଯାଏ
କିନ୍ତୁ ରବିବାର ସେଦିନ ତ ଛୁଟି ଥିଲି
ବନ୍ଦ ଥିଲା କଲେଜ ସ୍କୁଲ ଓ ସମସ୍ତ ବଜାର
ରବିବାର ନେଇଥିଲା ଛଡ଼ାଇ ତତେ ମୋହର ଗ୍ରୀବାରୁ
ଗ୍ଲେଟ ଗୋଟେ ନିଃଶ୍ୱାସର ପର ଯୌବନ ତୋହର
ହୋଇଗଲା ଅନ୍ୟ ଏକ ମଣିଷର ଯିଏ ତତେ ସୋମଠାରୁ
ଶନିବାର ଯାଏ ଖୋଜି ତ ନ ଥିଲା ତା'ର ଅନ୍ତରଭିତରୁ ?
ସୀମନ୍ତିନୀ ମୁଁ ଏଇନା ଏଠି ତୋ କୁଳୁଡ଼ା ଡେଣାରେ
ଗ୍ଲେଟ ଏକ ପବନ ଖୋଲପା ହୋଇ ଖେଳେ
ସୀମନ୍ତିନୀ ମତେ ଟିକେ ଛୁଇଁ ଦେ'ଲେ ମୁଁ ପାଇବି ତୃପ୍ତି
ନାଃ
ସୀମନ୍ତିନୀ ନୟନରେ ବର୍ଷିବାର ଅସୀମ ବିରକ୍ତି ।

('ଆତ୍ମହତ୍ୟା : ଭୁବନେଶ୍ୱରରେ' : ଅକ୍ଷୟ ମହାନ୍ତି,)
ଚନ୍ଦ୍ରିକା, ୧୯୬୧ ନବବର୍ଷ ସଂଖ୍ୟା

କବିତାର ଶିରୋନାମା 'ଆତ୍ମହତ୍ୟା; ଭୁବନେଶ୍ୱରରେ'। ଯେଉଁ ପଙ୍‌କ୍ତିଗୁଡ଼ିକ ଲେଖାଗଲା ତା'ପରେ ପରେ ପଢ଼ିଗଲେ 'ଆତ୍ମହତ୍ୟା'ର ଚମତ୍କାର ମନସ୍ତତ୍ତ୍ୱଟିଏ ପାଠକକୁ ମିଳି ଯାଉଛି। କବିତାଟିରେ ରୁଚି ଯାହା ତାହା ଯଦି ସମାଜରେ ଚଳେ, ତେବେ ସମାଜର ପ୍ରଗତିଟା କେଉଁ ଦିଗକୁ ହେବ ତାହା କହିବା ଦରକାର ପଡ଼ୁନି। ସମାଜରେ ଅଧୁନା ଯେଉଁ ବହୁମୁଖୀ ପ୍ରଗତି ହେଉଛି ବା' ଭିତରେ ଏ'ରକମ ମାନସିକ ପ୍ରଗତି ଯେ ନ ହେଉଛି କହିବା ନି। ତେବେ ଏ ପ୍ରଗତିର ଅନୁରୂପ ଭବିଷ୍ୟତ ପ୍ରତି ଆମ୍ଭମାନଙ୍କୁ ସତର୍କ ରହିବାକୁ ହେବ। କବିତାର ବୌଦ୍ଧିକତା ଯଦି ଏହା ହିଁ ବୁଝାଏ, ଶାଣିତ ଅଭିବ୍ୟକ୍ତି ଯଦି ଏହି ଦିଗରେ ଗତି କରେ, ତେବେ ଯେଉଁ କବିମାନେ ଏପରି ଲେଖୁନାହାନ୍ତି ଲୋକଚକ୍ଷୁରେ ସେମାନେ ବି' ସାଧାରଣ ସମାଲୋଚନାରୁ ବାଦ୍ ପଡ଼ିବେ ନି। ଆଧୁନିକ କବିତାକୁ କେହି କେହି ମାନ୍ୟଗଣ୍ୟ ସାହିତ୍ୟିକ କୁରୁଚିପୂର୍ଣ୍ଣ ଅଭିବ୍ୟକ୍ତି ବୋଲି କହୁଛନ୍ତି। ଅବଶ୍ୟ ତ'ଙ୍କର ଆଧୁନିକ କବିତା ବିଷୟରେ ଗମ୍ୟତା କେତେ ତାହା ଅଗୋଚର; କିନ୍ତୁ କୌଣସି ବିଗୁରଶୀଳ ବ୍ୟକ୍ତି ଏ ଉକ୍ତିକୁ ଜଣେ ପ୍ରତିଷ୍ଠିତ ସାହିତ୍ୟିକଠାରୁ ଆଶା କରେ ନାହିଁ। କାରଣ ସତେ କ'ଣ ଆଧୁନିକ କବିତା ଅର୍ଥ କୁରୁଚି ?

ଏ ଦିଗରେ ଆଉ ଅଧିକ ଉଦ୍ଧୃତି ନ ଦେଇ କବିତାସୃଷ୍ଟି କ୍ଷେତ୍ରରେ ଅନ୍ୟ ଏକ ବିଶୃଙ୍ଖଳା ପ୍ରତି ଆଙ୍ଗୁଳି ନିର୍ଦ୍ଦେଶ କରାଯାଉଛି। ସାଂପ୍ରତିକ କବିତାରେ ଦୁର୍ବୋଧତାର ବହୁତ ସଙ୍ଗ କାରଣ ଅଛି। ଏ ପ୍ରବନ୍ଧର ପ୍ରାରମ୍ଭରେ ସେ ବିଷୟରେ ସୂଚାଇବାର ପ୍ରଚେଷ୍ଟା ହୋଇଛି। ଦୁର୍ବୋଧ ହେବା କିନ୍ତୁ କବିର ଲକ୍ଷ୍ୟ ନୁହେଁ। ଓଡ଼ିଆ କବିତା କ୍ଷେତ୍ରରେ ଦୁର୍ବୋଧତା ସୃଷ୍ଟି କରିବା ପାଇଁ ମୌଳିକ ଚିନ୍ତାର ପ୍ରଖରତାକୁ ବଳି ଦିଆଯାଉଛି। ଏ ଉକ୍ତି ସହିତ ସମସ୍ତେ ଯେ ଏକମତ ହେବେ, ଏହା କୁହାଯାଉ ନାହିଁ। ସବୁ କବିଙ୍କ ପାଇଁ ଏହା ଯେ ସମଭାବେ ପ୍ରଯୋଜ୍ୟ, ତା' ବି ନୁହେଁ। କବିତା ଯେତେ ଦୁର୍ବୋଧ ହେଉନା କାହିଁକି, ତାହା କବିର ମାର୍ମିକତାକୁ ଯେଉଁ ଅନୁପାତରେ ପ୍ରତିନିଧିତ୍ୱ କରିବ, ସେତିକି ପ୍ରାଣବନ୍ତ, ସେତିକି ପ୍ରାକୃତିକ ବା ସ୍ୱଭାବସୁନ୍ଦର ହେବ। ଏ ଲେଖକ କେତେକ ଆଧୁନିକ କବିଙ୍କର କବିତା ପଢ଼ି ନ ବୁଝିଲେ ହେଁ ଆଦର କରୁଛି; କିନ୍ତୁ ଦୁର୍ବୋଧତା ଯଦି ଇଚ୍ଛାକୃତ ହୁଏ, ତେବେ କବିତା ହିଁ ତା'ର ମୁଖ-ପାତ୍ରରୂପେ ତାହା ପ୍ରକାଶ କରିବ। ବର୍ତ୍ତମାନ ଦୁର୍ବୋଧତା ଏକ ଫେସନ୍‌ରେ

ପରିଣତ ହେଲାଣି । ଯଦି କେହି କହନ୍ତି ଯେ, ତାଙ୍କୁ କୌଣସି କଥା ସରଳଭାବେ କହି ଆସେ ନି, ତାହା କ'ଣ ବିଶ୍ୱାସଯୋଗ୍ୟ ? ପୁନଶ୍ଚ କବିତାଟି ଯଦି ପାଠକ ପ୍ରାଣରେ ସ୍ପନ୍ଦନ ସୃଷ୍ଟି ନ କରେ, ପ୍ରଜ୍ଞାର ଆଲୋକ ପ୍ରକାଶିତ ନ କରେ ତେବେ ତାକୁ ପାଠକ ପଢ଼ିବେ କାହିଁକି ? ଏବଂ ସେ କବିତାଟି ଲେଖା ହେବାର ପଛରେ ଯେଉଁ ଶ୍ରମ ଓ ସମୟ ଉତ୍ସୃଷ୍ଟ ହେଲା ତାହା ବୃଥା ହେଲା ନାହିଁକି ? କବିତାର ସ୍ରଷ୍ଟା ଯଦି କହନ୍ତି, ଏପରି କବିତା ବୁଝିବାକୁ ସମୟକ୍ରମେ ପାଠକସମାଜ ବାହାରିବେ, ସବୁଯୁଗର କବିତା ନିଜ ସମୟରେ ଦୁର୍ବୋଧ ହୋଇଛି—ଏସବୁ ଅବାନ୍ତର ଯୁକ୍ତି । କବିର ଜୀବନାନୁଭୂତି, ବସ୍ତୁର ବିଶ୍ଳେଷଣ ଜ୍ଞାନପର୍ଯ୍ୟାୟର ହେବା ଆଶାଜନକ । ସମ୍ପ୍ରତି କେତୋଟି କବିତାର ପଛରେ ଅନୁଭୂତିର ଗଭୀରତା, ଅପ୍ରକାଶ୍ୟ ମାର୍ମିକତାର ସ୍ପର୍ଶ ରହିଛି କି ? ଦଶ ବା ପନ୍ଦର ମିନିଟ୍‌ରେ ସାହିତ୍ୟିକ ସଭାସମିତିରେ ପଠିତ ହେବା ପାଇଁ କବିତା ଲେଖା ହେଉ ନାହିଁକି ? ଏ କବିତାଗୁଡ଼ିକ ଅନାବନା ନ ହେବ ତ' ହେବ କ'ଣ ? ଯିଏ ଯାହା ପାଇଲା ତାହା 'ଡିଙ୍କିଶାଳ···ଢେଙ୍କାନାଳ' କଥାପରି ଯୋଡ଼ି ଦେଇ ଦେଖୁଛନ୍ତି; ସେଥିରୁ କିଛି ଅର୍ଥ ଧରି ନ ହେଲେ କବିତା ହେଲା ।

ଷଷ୍ଠଦଶକ ପୂର୍ବରୁ କବିତାର ଧାରା ଯାହା ଚଳିଲା, ବର୍ତ୍ତମାନ ତା'ର ଚୌହଦୀ ଡେଇଁ କବିମାନେ ଏକ ନୂତନ ପର୍ଯ୍ୟାୟରେ ପହଞ୍ଚିବାର ଆମ୍ଭେମାନେ ଲକ୍ଷ୍ୟ କରୁଛୁ ଏବଂ ଏହା ଅଶୁଭ ନୁହେଁ, ଶୁଭ ସଙ୍କେତ, ପ୍ରଗତିର ପରିଚୟ । ଖାଲି ଦରକାର ଏ ପ୍ରଗତିପଥରେ ଦୁର୍ଗତିକୁ ରୋକିବା । ଏ ଶୁଭ ସଙ୍କେତ ଉପରେ ଗୋଟିଏ ପ୍ରଧାନ କଥା ହେଉଛି କବିର ସ୍ୱାଧୀନତା । କବି ନିଜ ମନର ଚିନ୍ତାଧାରାକୁ କାବ୍ୟରୂପ ଦେବାରେ, ନିଜର ବ୍ୟକ୍ତିକୈନ୍ଦ୍ରିକତାକୁ ପ୍ରକାଶ କରିବାରେ ଚେଷ୍ଟିତ । ସେ ବ୍ୟକ୍ତି, 'ସେ' 'ମୁଁ' 'କବି' ନିଜେ ନୁହେଁ, ତାହା ମାନବସମାଜର ପ୍ରତି ମାନବର ପ୍ରତିନିଧି । ବିଶ୍ୱମାନବର ଅଗଣିତ ପ୍ରଗତିଶୀଳ, ସାହସିକ ଆକାଙ୍କ୍ଷାର ପଥରେ- ଯାହାସବୁ ଅନୁକୂଳ-ପ୍ରତିକୂଳ ପରିସ୍ଥିତି, ଶକ୍ତି ଓ କ୍ଷୀଣତା ବର୍ତ୍ତମାନ ଓ ଭବିଷ୍ୟତ୍ ଚିନ୍ତାରୂପରେ ପ୍ରତ୍ୟକ୍ଷ ହୁଏ, କବିମାନସର କ୍ରିୟା ପ୍ରତିକ୍ରିୟା ସେ ବିଷୟରେ ସମ୍ପୂର୍ଣ୍ଣଭାବେ କବିତାରେ ଅଭିବ୍ୟକ୍ତ ହେବାରେ ନିଃସଙ୍କୋଚ- ଭାବେ ଅଗ୍ରସର । ଈଶ୍ୱର, ପ୍ରକୃତି, ସମାଜ, ଶୃଙ୍ଖଳା, ଧର୍ମ, ଗୁରୁଗରିଷ୍ଠ- ଗଣ, ଶାସନ, ଯେ କେହି ତା'ର ପ୍ରଗତିପଥର ପ୍ରତିବନ୍ଧକରୂପେ ସବିଶ୍ଳେଷଣ ପ୍ରତୀୟମାନ ହେଲେ ସେ ଗାଳିଦେବାକୁ, ସମାଲୋଚନାର କୁଠାରରେ ଖଣ୍ଡ

ଖଣ୍ଡ କରିବାକୁ ପଶ୍ଚାଦ୍‌ପଦ ନୁହେଁ, ତା'ର ପ୍ରଗତିର ଅନୁକୂଳ ହେବାକୁ, ଉପଦେଶ ଦେବାକୁ ଓ ଧମକ ଦେବାକୁ ମଧ୍ୟ ଦ୍ୱିଧାଗ୍ରସ୍ତ ନୁହେଁ, କବି ସ୍ପଷ୍ଟ-ବାଦୀ ହେବା ଦିଗରେ ଆଗେଇଛି ।

ରାଜନୀତି, ଧର୍ମ, ସମାଜ, ସାହିତ୍ୟ, ଦର୍ଶନ ଆଦିର ଯେଉଁସବୁ ଚିରାଚରିତବାଦ ଚାଲି ଆସିଛି, ସବୁଟିକୁ ସେ ପରୀକ୍ଷା କରି ବିଶ୍ଳେଷଣ କରି, ଗବେଷଣା କରି ଯୁକ୍ତି ଓ ବାସ୍ତବତାର କଷଟୀ ଦେଇ ଗ୍ରାହ୍ୟ ଓ ଅଗ୍ରାହ୍ୟ ରୂପେ ଅଲଗା ଅଲଗା କରିଦେବାକୁ ପ୍ରସ୍ତୁତ । କବି ନୂତନ ଦର୍ଶନ ଓ ନୂତନ ଦୃଷ୍ଟିପଥରେ ଏହି ଷଷ୍ଠଦଶକ ମଧ୍ୟରେ ଯେ ଆଗେଇଚାଲିଲା ଏଥିରେ ସନ୍ଦେହ ନାହିଁ । ଆଜିର ବାସ୍ତବତା ମଧ୍ୟ ଅଭିନବ । ଏହା କଠୋର । ଏହା ଜୀବନକୁ ଆହ୍ୱାନ । ଏହା ବିଚକ୍ଷଣ କୌଶଳର ସମ୍ମୁଖୀନ ନ ହେଲେ, ସଚେତନ ରଥୀର ସମ୍ମୁଖୀନ ନ ହେଲେ ସ୍ୱୀୟ କୁଟିଳତାରେ ସଂସାରକୁ ଗ୍ରାସ କରିବ । ଜୀବନ ଏ ଭିତର ଦେଇ କ୍ଷତବିକ୍ଷତଭାବେ ଚାଲିଛି । କବି ସେଥିପାଇଁ ନୂତନ ଧର୍ମ, ନୂତନ ମାନ ଓ ନୂତନ ପନ୍ଥାର ଦାର୍ଶନିକ । ବାସ୍ତବତା-ମୁଖୀ ମଣିଷର ମନୋବିଶ୍ଳେଷଣ ତା'ର ଦର୍ଶନ । ନିମ୍ନରେ ସାମ୍ପ୍ରତିକ ଦର୍ଶନର ବହୁ ଦିଗମଧ୍ୟରୁ କିଛି ଉଦାହରଣ ଦିଆଗଲା :—

ବିସ୍ମୟ କି କମିପାରେ, ଯଦିବା ମୁହୂର୍ତ୍ତରେ କିଏ
ଲହୁଣୀର ଆଗ୍ରହ ବୁଲାଏ,
ଯନ୍ତ୍ରଣା କି କମିପାରେ ଯଦିବା ଦେହରେ କିଏ
ଅମୃତର ସୋହାଗ ଖେଳାଏ;
ସୋହାଗ ଲୋ, ତୋ ଜନ୍ମ କି ଯେପରିଗର୍ଭରୁ
ଯନ୍ତ୍ରଣାର ହସର ଗର୍ଭରୁ
ତେଣୁ କି ମୋ ମାଂସସବୁ ଆକାଶକୁ ଲକ୍ଷ୍ୟ କରି
ବହୁ ନୀଳ ବେଲୁନ୍ ସଦୃଶ
କେବଳ ଉଡ଼ିବା ପାଇଁ ସ୍ଥିର କଲେ ଏବଂ
ଖସିବା ପାଇଁ ପ୍ରସ୍ତୁତ ରହିଲେ ।
ମୋର କାହିଁ ମନେ ହୁଏ ସ୍ୱର୍ଗ ମଧ୍ୟ ଯନ୍ତ୍ରଣାରୁ ଜନ୍ମ ;
ଯଦିବା ସେ ଅବ୍ୟକ୍ତ ପୁରୁଷ,
ଯଦିବା ସେ ଯନ୍ତ୍ରଣାକୁ ସମସ୍ତାନ୍ତେ ପିଠା କରି
ତାଉଁଦେହେ ଓଲଟାଇ ଥାଏ,
ଯଦିବା ଯନ୍ତ୍ରଣା ଏକ ସଂକ୍ରାମକ ରୋଗ
ପ୍ରିଏ ଖାଲି ଛୁଅଁ ମାରେ ନଥାଁ ପରି,

ଏବଂ ଦାନ୍ତରେ ଏକ ସବୁଜ କଅଁଳା ବାଳୁଙ୍ଗା ପତ୍ର
ଏବଂ ଯାହାର ପ୍ରଥମ ଦର୍ଶନ,
ସମସ୍ତଙ୍କୁ ମୁଗ୍ଧ କରେ ଓ ପରେ କିନ୍ତୁ
ନେଳୀହାଓ୍ୱା ଆକାରରେ ଆତ୍ମହତ୍ୟା କରେ ।

('ମନଚନ୍ଦ : ଏକ ଅଲିଖିତ ମୌକାର' ଶ୍ରୀ ଦୀପକ ମିଶ୍ର
'ଝଙ୍କାର' ବିପ୍ଳବ ବିଶେଷାଙ୍କ, ୧୯୭୧)

କବିତାଂଶଟିରେ ଯନ୍ତ୍ରଣାର ରୂପରେଖ, ଉତ୍ପତ୍ତି, ପ୍ରଭାବ, ବିଲୟକୁ ନେଇ ଏକ ନୂତନ ଦୃଷ୍ଟିପାତ ହୋଇଅଛି ଏବଂ ସଂଶ୍ଳିଷ୍ଟ କବିତାଟି ମଧ୍ୟ ଏକା ନିଶ୍ୱାସକେ ପଢ଼ିଯିବାକୁ ଉପଭୋଗ୍ୟ । ଏଥିରେ ଗୁମ୍ଫିତ ଦର୍ଶନ ସଙ୍ଗେ ସମସ୍ତେ ଯେ ଏକମତ ହେବେ ତାହା ନୁହେଁ ; କିନ୍ତୁ ଏହା ନିଶ୍ଚିତ ଭାବେ ଏକ ମୌଳିକ ବିଶ୍ଳେଷଣ ଏବଂ ଏ ବିଶ୍ଳେଷଣ ପଛରେ ଏକ ଜ୍ୱାଳାମୟୀ ବାସ୍ତବ ଅନୁଭୂତି ବିଦ୍ୟମାନ । ଭାଷା ସଂଯତ, ଶାଣିତ ଏବଂ ରୂପକଗୁଡ଼ିକ ଅଭିନବ ଯଥା, 'ସୋହାଗ ଲୋ, ତୋ ଜନ୍ମ ବି ପେଗୁଗଣ୍ଡୁ ଯନ୍ତ୍ରଣାର ହସର ଗର୍ଭରୁ' ଉକ୍ତିରେ ସୋହାଗ ଯନ୍ତ୍ରଣା, ପେଗୁ-ହସର ସାମ୍ୟ ଆମ ହୃଦୟରେ ଏକ ଅବିକଳ ରୂପାୟନରେ ପରିଣତ ହୁଏ । 'ଯନ୍ତ୍ରଣା ଏକ ସଂହାମକ ରୋଗ ଯିଏ ଖାଲି ଉଆଁମାରେ ନିଆଁ ପରି ଏବଂ ଦାନ୍ତରେ ଏକ କଅଁଳା ବାଳୁଙ୍ଗା ପରି' ପଙ୍କ୍ତି ଆମ ହୃଦୟକୁ ସ୍ପର୍ଶ କରେ । ଯନ୍ତ୍ରଣା ଶେଷରେ 'ନେଳୀହାଓ୍ୱା ଆକାରରେ ଆତ୍ମହତ୍ୟା କରେ' ଯେ ଏହାର କ୍ଷଣସ୍ଥାୟିତ୍ୱ ଏବଂ କବିଙ୍କର ଜୀବନ ପ୍ରତି ସଂଗ୍ରାମୀ ବ୍ୟକ୍ତିତ୍ୱର ନିଦର୍ଶନ ଆମକୁ ଆକୃଷ୍ଟ କରେ ।

ଚେତନାର ଅର୍ଥ ଏହା ନୁହେଁ ଯେ ଆମେ ଡାଲି ଚାଉଳ ଅଭାବ ବେଳେ ଡାଲି ଚାଉଳ ପାଇଁ, ଗୃହକଷ୍ଟ ଅଭାବ ବେଳେ ବା ବେକାର ସମସ୍ୟା ବୃଦ୍ଧି ହେଲାବେଳେ ଗୃହକଷ୍ଟ ପାଇଁ, ଜନବୃଦ୍ଧି ହେବାରୁ ଜନ୍ମନିରୋଧ ପାଇଁ, ଏମିତି ଏମିତି କେତେକ ନିର୍ଦ୍ଦିଷ୍ଟ ବିଷୟବସ୍ତୁ ନେଇ ଉଦ୍ଦୀପ୍ତ ଭାଷାରେ କବିତା ଲେଖିବା ନିହାତି ପ୍ରୟୋଜନ । ଏପରି କବିତାର ଅବଶ୍ୟ ସୀମିତ ଆବଶ୍ୟକତା ରହିଛି ; କିନ୍ତୁ କବିର ଦୃଷ୍ଟି ବିମୃଶ୍ୟକାରୀ, ଦିଗନ୍ତପ୍ରସାରୀ ତତ୍ତ୍ୱାନ୍ୱେଷୀ । କବିତାର ବିଷୟବସ୍ତୁ ତତ୍ତ୍ୱ-ରସାଳ ହେଲେ ଏହା ସମାଜର ହୃଦୟକୁ ମାନବତା, ନୈତିକତା, କୋମଳତା, ଧୈର୍ଯ୍ୟ, ସାହସିକତା, ସହିଷ୍ଣୁତା ଆଦି ଗୁଣରେ ଅଳଂକୃତ କରିବାରେ କ୍ଷମ ହୁଏ ।

କବିତା ନିଜେ ବିଦ୍ରୋହ ନ କରି ବିଦ୍ରୋହ କରି ଜାଣିବାର ଜାଗୃତି ବହୁ ଆଗରୁ ଦେଇ ପାରିଲେ ସେଥିରେ ତା'ର ସାର୍ଥକତା । କବି ସର୍ବଦା ଅନ୍ତଃଦର୍ଶନପ୍ରେମୀ । ସେ କୌଣସି ଘଟଣା ବା ବିଷୟବସ୍ତୁରୁ ସେ ଜୀବନ ସମ୍ପର୍କିତ ଯେ କୌଣସି ମହତ୍ ତତ୍ତ୍ୱ ସନ୍ଦର୍ଶନ କରି ସମାଜକୁ ତଦ୍ଧ୍ୱାରା ଊର୍ଦ୍ଧ୍ୱତର ସୋପାନକୁ ଉଠାଇ ନେଇ ଯାଇପାରେ । କବିତା ସବୁବେଳେ ଯେ ସାମାଜିକ ବିଷୟବସ୍ତୁ ହେବ, ଏପରି କିଛି ନାହିଁ ; କିନ୍ତୁ କବିତାର ସାମାଜିକତା ନେଇ କବିର ଅକ୍ଷୁଣ୍ଣ ଚେତନା ରହିବାର କଥା । ବର୍ତ୍ତମାନ ବହୁତ କବିତା ଲେଖା ଯାଉଛି ଯାହା କବିଙ୍କ ନୂତନ ଶାଣିତ ଦୃଷ୍ଟିକୋଣ, ସାମାଜିକ ସଚେତନା ଓ ନୂତନ ଜିଜ୍ଞାସାର ବାହକ; ଯାହାର ପ୍ରତୀକାର୍ଥକ ନାମକରଣ ମଧ୍ୟ ଚମତ୍କାର ।

ଦିନ ଥିଲା ଯେତେବେଳେ ପୃଥିବୀରେ ମନୁଷ୍ୟ ସମାଜ କ୍ଷୁଦ୍ର ଥିଲା । ବ୍ୟକ୍ତିର ପରିସର ଶ୍ରେଷ୍ଠ ଥିଲା । ନିର୍ଜନ ସମୟରେ ପୃଥିବୀ, ଆକାଶ, ତାରକାଦି ବିଶ୍ୱର ଅନନ୍ତବିଭବ ସନ୍ଦର୍ଶନରେ ମନୁଷ୍ୟ ଉଦ୍ଭୂତ ହୋଇ ହେଉ ବା ମହାଭାବରେ ଉଦ୍‌ବୁଦ୍ଧ ହୋଇ ହେଉ ବା ଅଦୃଷ୍ଟ ବିଶ୍ୱାଧିପ କର୍ତ୍ତାଙ୍କୁ କଳ୍ପନା କରି ହେଉ ସେ ତତ୍ତ୍ୱମୂଳକ ବାଣୀ ପ୍ରକାଶ କରୁଥିଲା । ସେ ବାଣୀର ଚମତ୍କାରିତାରେ ସମାଜ ଅନୁପ୍ରାଣିତ ହୋଇ ଦାର୍ଶନିକମାନଙ୍କୁ ଗୁରୁ କଲେ ଏବଂ ସେ ବାଣୀ ସର୍ବଜ୍ଞାନର ସୀମା ରୂପେ ବେଦ ନାମ ଧାରଣ କଲା । ଏହି ବେଦ ଅଦ୍ୟାବଧି ପୃଥିବୀର ସବୁଠାରୁ ଦୁର୍ବୋଧ ଗ୍ରନ୍ଥ ହେଲେ ହେଁ ମାନବସମାଜର ଆଦିଜ୍ଞାନ ଶାସ୍ତ୍ରରୂପେ ପୂଜିତ । ଜନବିରଳ ଅବସ୍ଥାରେ ମନୁଷ୍ୟମନରେ ଯେଉଁ ବିରାଟ ମାନସିକ ସମସ୍ୟା ଉପୁଜିଥିଲା, ଆଜି ଜନବହୁଳ ଯୁଗରେ ଠିକ୍ ତା'ର ବିପରୀତମୁଖୀ ଏକ ସମସ୍ୟା ନୂତନ ଚିନ୍ତା ନୂତନ ବିଭାବନାର ଅସଂଖ୍ୟ ସରଣୀ ଖୋଲି ଦେଇଛି । କବିତାରେ ଏହି ଚିନ୍ତାର ପ୍ରାଚୁର୍ଯ୍ୟ ହିଁ ଏହାର ସାମାଜିକତା । ଏହାକୁ ବର୍ଜନ କଲେ ସମାଜ ଯେ ଶୋଇ ପଡ଼ିବ !

କବିତାକୁ ସମାଜମୁଖୀ କରିବାରେ ଏବଂ ସମାଜକୁ କବିତାମୁଖୀ କରିବାରେ ସମାଲୋଚକ କିଛି କମ୍ ଦାୟିତ୍ୱ ବହନ କରିବା କଥା ନୁହେଁ । ଓଡ଼ିଆ ସାହିତ୍ୟରେ ସମାଲୋଚକ ସଂଖ୍ୟା ଯେପରି ଲଘୁ, ସମାଲୋଚନାର ଧାରା ଓ ଗୁଣାତ୍ମକ ବିକାଶ ମଧ୍ୟ ତଥୈବଚ । ବିଶେଷ କରି ସାଂପ୍ରତିକ କବିତା ଉପରେ, ନିର୍ଦ୍ଦିଷ୍ଟ କବିକୃତି-ସମୂହ ଉପରେ ଧାରାବାହିକଭାବେ

ସମାଲୋଚନା ହେବା ନିତାନ୍ତ ଆବଶ୍ୟକ । ପ୍ରତିଷ୍ଠିତ ପତ୍ର-ପତ୍ରିକାମାନଙ୍କର ଏଥିପ୍ରତି ଦୃଷ୍ଟି ଆକୃଷ୍ଟ ନ ହେବା ପର୍ଯ୍ୟନ୍ତ, ସମସ୍ତେ ଏହା ଅନୁଭବ କରୁଥିବେ, କାର୍ଯ୍ୟ କିଛି ହେବ ନାହିଁ । ଇଂରେଜୀ ଓ ଓଡ଼ିଆ ସାହିତ୍ୟରେ ବର୍ଷକୁ ବର୍ଷ ଯେତେଗୁଡ଼ିଏ ବିଦ୍ୱାନ୍ ବ୍ୟକ୍ତି ବାହାରୁଛନ୍ତି, ଯେତେ ଯେତେ ପ୍ରବୀଣ ସାହିତ୍ୟିକ ; ସାହିତ୍ୟ ଅଧ୍ୟାପକ ଅଛନ୍ତି ସେମାନଙ୍କର ଏ ଦିଗରେ ପ୍ରଚେଷ୍ଟା ନଗଣ୍ୟ କହିଲେ ଦୋଷ ହେଉ ନ ପଛେ, ଏହା ସତ୍ୟ ।

ଆଧୁନିକ କବିତା ଉପରେ ଲମ୍ବା ଲମ୍ବା ସାଧାରଣ ପ୍ରବନ୍ଧ ବହୁ ତତ୍ତ୍ୱ ଓ ନିରୀକ୍ଷାର ସହ ବାହାରୁଛି ; କିନ୍ତୁ କେତେ ଜଣ ଆଧୁନିକ କବିଙ୍କ ଉପରେ ଗତ ଦଶ ବର୍ଷ ଭିତରେ ଆଲୋଚନା ହୋଇଛି ? ଆଲୋଚକ ଯଦି ବିଭିନ୍ନ ଜଟିଳତା ଉପରେ ଉଦାହରଣ ସହ ଆଲୋକପାତ ନ କରିବ ତେବେ ସମାଜର କବିତା ପଢ଼ିବାକୁ, ବୁଝିବାକୁ ଚିନ୍ତା କ'ଣ ? ଆଲୋଚନା କଲାବେଳେ କାହା କବିତା ଆଲୋଚନାର ଯୋଗ୍ୟ ତାହା ବ୍ୟକ୍ତିଗତ ଦୃଷ୍ଟିକୋଣରୁ ଚିନ୍ତନୀୟ ନୁହେଁ, କବିତାର ଗୁଣାତ୍ମକ ଦୃଷ୍ଟିକୋଣରୁ ସ୍ରଷ୍ଟାକୁ ନିନ୍ଦା-ପ୍ରଶଂସା କରିବାର ଦୃଷ୍ଟିକୋଣ ପରିହାର କରି, ତା'ର ସ୍ଥିତି ଆବିଷ୍କାର କରିବା, ତା'ର ବୌଦ୍ଧିକ ଓ ମାନସିକ ରାଜ୍ୟଟିରେ ଜନ୍ମ ତନ୍ନ ତଥ୍ୟାନ୍ୱେଷଣ କରିବା ଏବଂ ସେହି ପରିପ୍ରେକ୍ଷୀରେ ତା'ର ବିଚ୍ୟୁତି ବ୍ୟତିକ୍ରମଗୁଡ଼ିକ ନିର୍ଦ୍ଦେଶ କରିବା ଆଲୋଚକର କର୍ତ୍ତବ୍ୟ ହେଲେ କବି ଓ ସମାଜ ଉଭୟ ପକ୍ଷ ଉପକୃତ ହେବେ । ଆଲୋଚକ ଦୃଷ୍ଟିରେ ଯଦି କୌଣସି କବିକୃତି ଦୁର୍ବୋଧ ହୁଏ, ସେ ନିଷ୍ଠାର ସହିତ ତାହା ସ୍ପଷ୍ଟ ପ୍ରକାଶ କରିବାଦ୍ୱାରା କୌଣସିମତେ କାହାର ନ୍ୟୂନତା ପ୍ରକାଶ ପାଇବ ନାହିଁ । ସ୍ରଷ୍ଟା ଓ ଆଲୋଚକ ମଧ୍ୟରେ ମୌଖିକ ପରିଚୟ ଅପେକ୍ଷା ଗୁଣଗ୍ରାହକତା ଏଦୃଷ୍ଟେ ଅଧିକତର ସହାୟକ ହେବ ।

ଏହା ନିଶ୍ଚିତ ଭାବରେ କୁହାଯାଇପାରେ ଯେ ଆଧୁନିକ କବିତା ଉପରେ ବାସ୍ତବ ସମସ୍ୟାର ତୀବ୍ରତା, ବିଜ୍ଞାନର ଚମତ୍କାରୀ ପ୍ରତିଭା, ଚିର-ଚରିତ ଅନିତାର ଅର୍ଗଳ ଭାଙ୍ଗି ନୂତନ ଧର୍ମ-ଜିଜ୍ଞାସାର ଉନ୍ମେଷ ଓ ପ୍ରକାଶ ଏବଂ ତା' ସାଙ୍ଗକୁ ମନସ୍ତତ୍ତ୍ୱ, ରହସ୍ୟବାଦ, ଇଙ୍ଗିତବାଦ ଆଦିର ଶାଣିତ ପ୍ରକାଶଭଙ୍ଗୀ ଅନୁକୂଳ ପ୍ରଭାବ ପକାଉଥିବାରୁ କବିମାନସର ବୌଦ୍ଧିକ ଚେତନାର ବିକାଶ ଘଟିଛି । ହେଲେ ହେଁ ଚିରାଚରିତ ବିଷୟବସ୍ତୁ ବର୍ଣ୍ଣନାର କ୍ରମକୁ ଆଶ୍ରୟ କରି ଯେଉଁ ତତ୍ତ୍ୱ ପରିବେଷଣ କରାଯାଉଥିଲା,

ତାହା ଅଧିକ ହୃଦ୍ୟ ହେଉଥିଲା, ମନୁଷ୍ୟର ଗଳ୍ପପ୍ରିୟତା, ଘଟଣାପ୍ରିୟତା ହେତୁ । ବର୍ତ୍ତମାନ ଘଟଣାର କ୍ରମ ପ୍ରକାଶିତ ନ ହେଉଥିବାରୁ କବିତାକୁ ସେହିପରି କୌଣସି ଶକ୍ତିଶାଳୀ କଳାରେ ଅନୁରଞ୍ଜିତ କରିବାଦିଗରେ ପ୍ରଚେଷ୍ଟା ନ ହେଲେ ଏହାର ଗ୍ରାହକତା କମିଯିବାରେ କିଛି ସନ୍ଦେହ ନାହିଁ । ପୁଣି ବର୍ତ୍ତମାନ କ୍ଷୁଦ୍ରଗଳ୍ପଯୁଗରେ କବିତାରେ ତତ୍ତ୍ୱପରିବେଷଣ ସାଙ୍ଗକୁ ଅନୁରଞ୍ଜନର ଗୋଟିଏ ଦିଗ ନ ରହିଲେ ଆଜିର କବିତା କେବେ କେଉଁ ପ୍ରତ୍ନତତ୍ତ୍ୱବିତ୍‌ର ଅନୁସନ୍ଧାନର ବିଷୟବସ୍ତୁ ହେବାରେ ସନ୍ଦେହ ନାହିଁ । ଏ ସବୁ ଦୃଷ୍ଟିରୁ କିପରି ଦୃଷ୍ଟି ଓ ସୃଷ୍ଟିର ପନ୍ଥା ନିର୍ଣ୍ଣୟ କରିବାକୁ ହେବ, ତାହା କବିତାର ଗତି ଓ ପାଠକମାନେ ଚିନ୍ତା କରିବାର ବେଳ ପହଞ୍ଚିଛି ।

---

# ମୋ ଦୃଷ୍ଟିରେ ସାଂପ୍ରତିକ ଓଡ଼ିଆ କବିତା : ଅସମାହିତ କେଇଟି ପ୍ରଶ୍ନ

## ସୀତାକାନ୍ତ ମହାପାତ୍ର

ବିଗତ ଦଶକରେ ଓଡ଼ିଆ କବିତା କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ଅଭିବୃଦ୍ଧି ଓ ଗୁଣାତ୍ମକ ବିକାଶ ହୋଇଥିଲେ ହେଁ ଏହି ବିକାଶର ପ୍ରକୃତ ମୂଲ୍ୟାୟନ ଏପର୍ଯ୍ୟନ୍ତ ସମ୍ଭବ ହେଲି ନାହିଁ । କବିତା ସମାଲୋଚନା ଏବେ ବି ଐତିହାସିକ, ଜ୍ଞାନକୋଷ-ସମ୍ବଳିତ ବିସ୍ତୃତିଧାରା ଉପରେ ପର୍ଯ୍ୟବସିତ ବା ରାଜନୀତି ଓ ପାଣିପାଗ ପରି ସାଧାରଣଜ୍ଞାନର ପରିମାପକ ଓ ପ୍ରକାଶକ । ମୂଲ୍ୟବୋଧ, ପରମ୍ପରା, କାବ୍ୟ-ଆବେଗ, କାବ୍ୟ-ଭାଷା, ବକ୍ତବ୍ୟ ବା ଶୈଳୀ—କୌଣସି ଗୋଟିଏ ଦୃଷ୍ଟିରୁ ଏପର୍ଯ୍ୟନ୍ତ କାବ୍ୟ-ପରମ୍ପରାରେ ସପ୍ତମ ଦଶକର କବିତାର ମୂଲ୍ୟାଙ୍କନ ଆରମ୍ଭ ହୋଇନି । ତା' ଫଳରେ ଏକ-ପ୍ରକାର ନେତିମୂଳକ, ଋଣାତ୍ମକ ପରିବେଶର ସୃଷ୍ଟି ହୋଇଛି, ଯେଉଁଥିରେ ଅ ସାହିତ୍ୟିକ ସମସ୍ୟାର ବିସ୍ତୃତିରେ ମୁଖ୍ୟ ଓ ପ୍ରକୃତ କାବ୍ୟ-ସମସ୍ୟା-ମାନଙ୍କର ଉପସ୍ଥାପନା ବା ଆଲୋଚନା ଗୌଣ ହୋଇପଡ଼ିଛି । ଅବୋଧ୍ୟ, ଦୁର୍ବୋଧ୍ୟ, ଅଶ୍ଳୀଳ—ଏ ସବୁ ତ ପୁରୁଣା ହୋଇଗଲାଣି । ନୂଆ କଥା ହେଲା କବିତା ଅତ୍ୟଧିକ 'ମନନଶୀଳ', 'ଯୁକ୍ତି-ସର୍ବସ୍ୱ', 'ମନନ-ଧର୍ମୀ' 'ମସ୍ତିଷ୍କଧର୍ମୀ' ହୋଇପଡ଼ୁଛି । ସେଥିରେ 'ଯୁଗ-ଯନ୍ତ୍ରଣା' 'ମଣିଷର ଅଶ୍ରୁ' ଇତ୍ୟାଦି ବିଷୟ ନାହିଁ । ଖୁବ୍ ସହଜରେ କୁହାଯାଇପାରୁଛି ଯେ ଆମ କାବ୍ୟପରମ୍ପରା ମୁଖ୍ୟତଃ ବର୍ଣ୍ଣନା-ପ୍ରଧାନ ଓ ସୁତରାଂ ଇନ୍ଦ୍ରିୟାନୁଭୂତିକୁ ମୁଖ୍ୟ ସ୍ଥାନ ଦେଇଥିବାରୁ ନୂତନ କବିତାର ପାଠକଶ୍ରେଣୀ ସୀମିତ ଓ ଭାଷାବ୍ୟବହାରରେ କବିକୁ କିଛି ପରିମାଣରେ ଦୁର୍ବୋଧ ହେବାକୁ ପଡୁଛି ; କାରଣ କବିତାର ଅବର୍ଣ୍ଣନୀୟ ଅନୁଭୂତିକୁ ରୂପ ଦେବାକୁ ଭାଷାର ନୂତନ

ଓ ମୌଳିକ ବ୍ୟବହାର ଆବଶ୍ୟକ । ପ୍ରଚଳିତ ବ୍ୟବହାର-ପଦ୍ଧତି କ'ଣ ଓ ସେଥିରେ କି କି ଅସୁବିଧା ବା ଅନିଶ୍ଚୟତା ବା ଅସମ୍ପୂର୍ଣ୍ଣତା ପରିଦୃଷ୍ଟ ହେଉଛି ସେ ବିଷୟରେ ବିଶଦ ଆଲୋଚନା ନାହିଁ । ସେମିତି କାବ୍ୟ-ବକ୍ତବ୍ୟ କ'ଣ, ବକ୍ତବ୍ୟର ବିଭିନ୍ନ ବିଭାଗ ଓ କୋଟି କ'ଣ, ବକ୍ତବ୍ୟର ଭାଷା ଓ ଶୈଳୀ ସହିତ କି ସମ୍ପର୍କ ଓ ଭାଷା ତଥା ଶୈଳୀ ସହିତ ସାଂସ୍କୃତିକ ପରିବେଶର କି ସମ୍ପର୍କ, ସେ ବିଷୟରେ କୌଣସି ସୁସ୍ଥ ଉଲ୍ଲେଖଯୋଗ୍ୟ ଆଲୋଚନା ଆଦୌ ନାହିଁ । ଏହାର ମୁଖ୍ୟ କାରଣ ଓଡ଼ିଆ କାବ୍ୟ-ପରମ୍ପରା ବିଷୟରେ ଅଜ୍ଞତା । ସାହିତ୍ୟ ସମାଲୋଚନା କୌଣସି ନିର୍ଦ୍ଦିଷ୍ଟ ସୂତ୍ର ବା ଫର୍ମୁଲା ଉପରେ ପର୍ଯ୍ୟବସିତ ନୁହେଁ, ଏହା ସତ । ଏହା ମଧ୍ୟ ସତ ଯେ ଭାଷା, ଶୈଳୀ, ବକ୍ତବ୍ୟ, ଚିତ୍ରକଳ୍ପ ବା ପ୍ରତିମା, ଏସବୁ ବାହାରେ ଏମିତି କିଛି ରହେ, ଯାହା କବିତାର ପ୍ରାଣ ବା ଆତ୍ମା, ଯାହା ପ୍ରତ୍ୟେକ ସୃଜନଶୀଳ କବି ତା'ର ଅନ୍ତରର ନିଭୃତ କନ୍ଦରରେ ଅନୁଭବ କରିଥାଏ ଓ ତାହା ପାଠକକୁ ଛୁଏଁ । ଆମେ ତାକୁ ହୁଏତ କାବ୍ୟିକ ନିଷ୍ଠା, ସାଧୁତା ସ୍ୱଚ୍ଛତା, ଆନ୍ତରିକତା ଏମିତି ନାନା ନାଁ ଦେଉ । କିନ୍ତୁ ଏ ସବୁ ସତ୍ତ୍ୱେ ଏକଥା ବି ସତ୍ୟ ଯେ ପରମ୍ପରାର ମୂଲ୍ୟାୟନ ଓ ପରମ୍ପରା ପରିପ୍ରେକ୍ଷୀରେ ବିବିଧ କାବ୍ୟ-ମାନ କାବ୍ୟ-ମୂଲ୍ୟବୋଧ ଓ କାବ୍ୟ-କୋଟିର ସମ୍ୟକ୍ ବିଚାର ଏପର୍ଯ୍ୟନ୍ତ ନାହିଁ । ଫଳତଃ ଅଶେଷ ପାଣ୍ଡିତ୍ୟପୂର୍ଣ୍ଣ ପ୍ରବନ୍ଧ, ଆଲୋଚନା ସତ୍ତ୍ୱେ ପାଠକକୁ କବିତା ପାଠରେ, ରସାସ୍ୱାଦନରେ ସହାୟକ ହେବା ଭଳି ସମାଲୋଚନା ଖୁବ୍ ବିରଳ ; କ୍ୱଚିତ୍ କାଁ ଭାଁ ଏଠିସେଠି ଦେଖିବାକୁ ମିଳେ । ଏସବୁ ଭିତରକୁ ନ ପଶି ଅନେକ ମଧ୍ୟ କାବ୍ୟ-ଆଲୋଚନାରେ ଆଲୋଚିତ ବସ୍ତୁକୁ ସାଣ୍ଡ୍ ଉଇଚ୍ ପରି ମମ୍ମଟ, ଆନନ୍ଦବର୍ଦ୍ଧନ ଓ ଜଏସ୍, ବ୍ଲାକମୁରଙ୍କ ମଧ୍ୟରେ ପେଷି ଦିଅନ୍ତି । କିମ୍ବା ବିବିଧ ସାହିତ୍ୟିକ ବାଦ ସହିତ (ପୁଣି ସେ ସାହିତ୍ୟିକବାଦମାନଙ୍କର ପ୍ରକୃତ ମୂଳ ତଥ୍ୟ ଆଲୋଚନା ନ କରି କେବଳ ଉପରଠାଉରିଆ ଭାବରେ ନାଁ ନିଅନ୍ତି ବା ମୋଟାମୋଟି ବିଷୟ ସାଧାରଣଜ୍ଞାନ ବହିରୁ ପଢ଼ିଲା ପରି ଘ୍ୟାରେଣ୍ଡ଼ କରନ୍ତି) ଆଲୋଚିତ ବସ୍ତୁର କି ସମ୍ପର୍କ ଲେଖାରୁ ଜଣା ପଡ଼େନି । ଉଦାହରଣ ସ୍ୱରୂପ କୁହାଯାଇପାରେ, ମନୋରଞ୍ଜନ ଦାସଙ୍କ ନାଟକ 'ଆବସର୍ଡ୍' ନାଟକ, ବେକେଟ୍, ଆୟୋନେସ୍କୋ, ଆଡ଼ାମୋଭଙ୍କ ସଗୋତ୍ର ବା ଅମୁକ କବି 'ସାମାଜିକତା'କୁ (ଅସାମାଜିକତାକୁ) ଗାର୍ହସ୍ଥ୍ୟକୁ (ଇତ୍ୟାଦି) ତାଙ୍କର ବକ୍ତବ୍ୟ କଲେଣି । କିପରି କ'ଣ କଲେଣି । ବକ୍ତବ୍ୟ କ'ଣ, (ଏହା

କ'ଣ କଥାବସ୍ତୁ ନା ଆଭିମୁଖ୍ୟ ନା ମାନସିକ ପରିବେଶ ?) ସେ ବିଷୟରେ କିଛି କିଛି କୁହାଯାଏନା । ସେମିତି ଓଡ଼ିଆ ସଂସ୍କୃତିର ପରମ୍ପରା ବିଷୟରେ ଉପର ଠାଉରିଆ ଭାବରେ ଅନେକ କଥା କୁହାଯାଏ, ଯେଉଁଥିରୁ ଅନୁମିତି ହେବ ଯେ ଏ ସଂସ୍କୃତିରେ ଖାଲି ଇନ୍ଦ୍ରିୟାନୁଭୂତି । ଆଖିରେ ଦେଖା ବସ୍ତୁର ଅସ୍ତିତ୍ୱ ଛଡ଼ା ମାନସିକ ପ୍ରକ୍ରିୟାର ସ୍ଥାନ ଆଦୌ ନ ଥିଲା । ଖୁବ୍ ସହଜରେ ସେମିତି ମଧ୍ୟ କୁହାଯାଇପାରୁଚି ଯେ ଓଡ଼ିଆ ଭାଷାର ଶବ୍ଦଭଣ୍ଡାର ଏତେ ଅପ୍ରଚୁର ଓ ସୀମିତ ଯେ, ନୂତନ ଚିନ୍ତାର ବାହକ ହିସାବରେ ତାହା ଆଦୌ ଉପଯୁକ୍ତ ବା ଯଥେଷ୍ଟ ହୋଇପାରୁ ନାହିଁ । ଏ ସବୁଥିରେ ଯେ ଆଦୌ କିଛି ସତ୍ୟତା ନାହିଁ, ତାହା ମୋର ପ୍ରତିପାଦ୍ୟ ନୁହେଁ । କିନ୍ତୁ ଏତାଦୃଶ ମତାମତଗୁଡ଼ିକୁ ନିର୍ଦ୍ଦିଷ୍ଟ ଭାବରେ ପୋଷଣ କରିବା ପୂର୍ବରୁ କିଛି ବେଶି ନିର୍ଦ୍ଦିଷ୍ଟ ଅଧ୍ୟୟନ ଓ ବିଶଦୀକରଣ ଆବଶ୍ୟକ ।

ପ୍ରଥମତଃ ଆମ କାବ୍ୟପରମ୍ପରା କ'ଣ ସମ୍ପୂର୍ଣ୍ଣ ବା ମୁଖ୍ୟତଃ ବର୍ଣ୍ଣନା-ପ୍ରଧାନ ବା ଇନ୍ଦ୍ରିୟାନୁଭୂତିସର୍ବସ୍ୱ ? ଏ ପ୍ରଶ୍ନଟିର ଉତ୍ତର ଭାବିବା ପୂର୍ବରୁ କହି ରଖିବା ଉଚିତ ହେବ ଯେ, ଏକଥା ମଧ୍ୟ ଧରି ନିଆଯାଇଛି ଯେ ବର୍ଣ୍ଣନାତ୍ମକ ସାହିତ୍ୟ ଅତି ସରଳ, ସହଜରେ ବୋଧଗମ୍ୟ ଏବଂ ସେଥିରେ ମନନଶୀଳତା ନାହିଁ । ଅପରପକ୍ଷରେ ମନନଶୀଳ ଦାର୍ଶନିକତା-ଭରା ବା ଉଚ୍ଚ-ଚିନ୍ତାସମ୍ପନ୍ନ କଥାବସ୍ତୁ ବା ବକ୍ତବ୍ୟ ସହଜରେ ବୁଝି ହୁଏନା (ସୁତରାଂ ଏହା ଜ୍ଞାନୀ ବା ବିଜ୍ଞାନୀମାନଙ୍କର ଏକ କୌଳିକ ବ୍ୟବସାୟ) । ସେଥିରେ ଆବେଗ ଖୁବ୍ କମ୍ ଥାଏ ଏବଂ ଯୁକ୍ତି ଓ ଦାର୍ଶନିକତାଦ୍ୱାରା ତା'ର ସଂଗଠନ ପରିପୁକ୍ତ ଓ ସମୃଦ୍ଧ ହୋଇଥାଏ । ମୋର ମନେହୁଏ ଏ ପ୍ରକାର ଧାରଣା ଅତ୍ୟନ୍ତ ଉପରଠାଉରିଆ ଏବଂ କାବ୍ୟ ପରଂପରାର ଆଲୋଚନାରେ ଆଦୌ ସହାୟକ ନୁହେଁ । ଏକପକ୍ଷରେ ବର୍ଣ୍ଣନାତ୍ମକ ପରଂପରା ବସ୍ତୁ ଓ ମାନସିକ ସ୍ଥିତି ଘଟଣା-ପ୍ରବାହର ଧାରାକୁ ଏପରି ବର୍ଣ୍ଣନା କରିପାରେ ଯାହା ସମ୍ପୂର୍ଣ୍ଣ ଉଚ୍ଚକୋଟୀର ଦର୍ଶନରେ ପରିଣତ ହୋଇପାରେ । ସେଥିପାଇଁ ଲୋଡ଼ା ମାନସିକ ସ୍ଥୈର୍ଯ୍ୟ ଓ ଶକ୍ତି । ଅନୁଭୂତ ବସ୍ତୁ ପ୍ରତି ଆତ୍ମିକ ସହାନୁଭୂତି ଏବଂ ସର୍ବୋପରି ନିଷ୍ଠୁର ନିରପେକ୍ଷତା ଓ ନୈର୍ବ୍ୟକ୍ତିକତା । ଅତି ସାଧାରଣ ବା ଲୌକିକ ଘଟଣା ବା ବର୍ଣ୍ଣନାରେ ଅତି ଚିରସ୍ଥାୟୀ ଓ ନିଗୂଢ଼ ଦର୍ଶନ ଗଛରେ ଫୁଲ ଫଟିଲା ପରି ଅତି ସହଜରେ ଫୁଟି ପାରନ୍ତି ।

'ଜୀବର ଅଳପ ଶଙ୍କିତି'
ଶତେ ଯୁବତୀ ଏକପତି ॥'

କିମ୍ବା

✓'ମୋ ଜୀବନ ପଛେ ନର୍କେ ପଡ଼ିଥାଉ,
ଜଗତ ଉଦ୍ଧାର ହେଉ ।'

କିମ୍ବା

'ଗଲେଣି ତୋ ସଙ୍ଗରୁ ଯେତେକ ଜନ ।
ଗଣ୍ଠିରେ ବାନ୍ଧି ନେଲେ କେ କେତେ ଧନ ରେ ॥'

ଏମିତି ଅନେକ ଉଦାହରଣ ଦିଆଯାଇ ପାରେ, ଯେଉଁଠି ସରଳତା ହେଉଛି ଗୂଢ଼ ଦାର୍ଶନିକତା ଓ ଲୌକିକ ପ୍ରତିମାର ଦ୍ୱୈତବାଦୀ ସ୍ଥିତିର ମିଳନ-ବିନ୍ଦୁ । ଅପର ପକ୍ଷରେ ବସ୍ତୁକୁ ନିରପେକ୍ଷ ଭାବରେ ବର୍ଣ୍ଣନା କରିବା ବି ଉଚ୍ଚକୋଟୀର ସାହିତ୍ୟ ହୋଇପାରେ ।

"The most familiar object, in coming into light, reveals being and poetry brings being into open by naming things as they are, in this glistening immediatly, the wheel barrow glazed with rain waters."

[Poets of Reality—J. H. Miller]

ନିଜର ବ୍ୟକ୍ତିଗତ ଚେତନାକୁ ସକଳ ବସ୍ତୁ ଓ ଘଟଣା ଉପରେ ଲଦିଦେବା ଗୀତିକାବ୍ୟର ପରମ୍ପରା, ରୋମାଣ୍ଟିକ କାବ୍ୟର ପରମ୍ପରା । ଏ ପରମ୍ପରା ଦେଖା ଯାଇପାରେ 'ଲାବଣ୍ୟବତୀ'ରେ, 'ଚିଲିକା'ରେ ('ସଂସାର ସଙ୍ଗତେ ସଙ୍ଗ ହେବା ପାଇଁ' ଇତ୍ୟାଦି) ଦେଖୁଥିବା ମନ ବା ଚେତନା ଓ ଦୃଷ୍ଟ ବସ୍ତୁର ଦ୍ୱୈତବାଦ ଏସବୁଥିରେ ସର୍ବଦା ବିଦ୍ୟମାନ ଏବଂ ମନର କୁହୁଡ଼ି ସବୁବେଳେ ବସ୍ତୁକୁ, ଘଟଣାକୁ ଢାଙ୍କି ରଖେ । ତା' ହେଲେ ବ୍ୟକ୍ତିତ୍ୱରୁ ପଳାୟନ ସମ୍ଭବ କିପରି ? ଅନ୍ୟ ପକ୍ଷରେ ମନ ଯେତେବେଳେ ସମ୍ପୂର୍ଣ୍ଣଭାବରେ ଏକ ସ୍ୱଚ୍ଛ ମାଧ୍ୟମ ହୋଇଯାଏ, ସେତେବେଳେ ତାହା ବସ୍ତୁର ପ୍ରକୃତ ମହିମାନ୍ୱିତ ରୂପକୁ ଗ୍ରହଣ କରିପାରେ । "Things as they are" "Thing in itself" ତା' ଛଡ଼ା ଇନ୍ଦ୍ରିୟାନୁଭୂତ ପ୍ରତି ଆମେ

ଏତେ ବିମୁଖ ହେବୁ ବା କାହିଁକି ? ସତେ ଯେମିତି ଯାହା ଇନ୍ଦ୍ରିୟଗ୍ରାହ୍ୟ, ତାହା ଏକ ଅପେକ୍ଷାକୃତ ନିକୃଷ୍ଟତର ବାସ୍ତବତା ବା ସତ୍ୟ ! ଏବଂ ଯାହା ଯୁକ୍ତିସିଦ୍ଧ ବା ଯୁକ୍ତି-ସମ୍ବଳିତ ଦର୍ଶନ ତଥ୍ୟ-ଭାରାକ୍ରାନ୍ତ ତାହା ହିଁ ଉଚ୍ଚ-କୋଟୀର ବାସ୍ତବତା । କିନ୍ତୁ କବିତାର ବକ୍ତବ୍ୟ କେବେ ଦର୍ଶନ ବା ମୋଟା-ସୋଟା ଚିନ୍ତାଧାରା ନ ହୋଇପାରେ । ତା' ହେଲେ ଶଙ୍କରଙ୍କ ଦର୍ଶନ ବା ସାର୍ତ୍ରିଙ୍କ Being and Nothingness ସର୍ବଶ୍ରେଷ୍ଠ କବିତାରୂପେ ବିବେଚିତ ହେଉଥାଆନ୍ତା । ଚିନ୍ତା ଯେତେବେଳେ ନିର୍ଦ୍ଦିଷ୍ଟ, ଘନିଷ୍ଠ ଆବେଗ ଦ୍ୱାରା ଆନ୍ତରିକ ଓ ନିଷ୍ଠାଯୁକ୍ତ ହୁଏ, ଯୁକ୍ତି ଯେତେବେଳେ ଶୁଷ୍କ ଯୁକ୍ତିପ୍ରିୟତାକୁ ଛାଡ଼ି, ସାମାନ୍ୟ ନାଟକୀୟତାକୁ ପଛରେ ପକାଇ ଚରମ ସତ୍ୟର ମୁଖାମୁଖୀ ହୁଏ, ଭାଷା ଯେତେବେଳେ ସେଇ ଆବେଗର ନିଆଁରେ ନିଜେ ଜଳି ଶୁଦ୍ଧ ସୁବର୍ଣ୍ଣ ହୋଇଯାଏ, ସେତିକିବେଳେ ଯାଇଁ କାବ୍ୟିକ ବକ୍ତବ୍ୟ ସାର୍ଥକତାର ସ୍ତରକୁ ଉନ୍ନୀତ ହୁଏ । ଚିନ୍ତା ଏତେ ବେଶି ସାନ୍ଦ୍ର ଓ ସରଳ ହୋଇଯାଏ ଯେ ପହିଲି ଆଷାଢ଼ର କଳାବଉଦ ପରି ତା' ପାଠକର ମନ-ପୃଥିବୀ ଉପରକୁ ନଇଁ ଆସେ—ଶୁଖିଲା ଧଳା ବଉଦ ପରି କାହିଁ କେତେ ଦୂରରେ ସାଇଁ ସାଇଁ ଖାଲି ଭସିଯାଏନି । ସେତେବେଳେ ଭାବନା ଓ ଭାବନାର କଥାବସ୍ତୁ ( ବା ଯଦି ଆପଣ ଚାହାନ୍ତି 'ବକ୍ତବ୍ୟ') ହୁଅନ୍ତି ଇନ୍ଦ୍ରିୟା-ନୁଭୂତ, ରସଘନ, ପରିପୃକ୍ତ । ସେତେବେଳେ ଭାବନା ଓ ଭାବନାର କଥାବସ୍ତୁକୁ ଛୁଇଁ ହେବ, ଦେଖି ହେବ, ଚାଖି ହେବ, ତା'ର ପଦଧ୍ୱନି, କଥାଭାଷା କାନରେ ଶୁଭିବ । ତେଣୁ ଭାବନାକୁ ଇନ୍ଦ୍ରିୟାନୁଭୂତିର ସ୍ତରକୁ ଓହ୍ଲାଇ ଆଣିବା ହେଉଛି କାବ୍ୟ—ବକ୍ତବ୍ୟର ଶ୍ରେଷ୍ଠ ପରୀକ୍ଷା ।

> "Reality is not that external scene but life that is lived in it. Reality is things as they are. The general sense of the word:proliferates its special sense. It is a jungle in 'itself."
>
> [ The Neeessary Angel ; Essays on Reality and Imagintion—page 25-26 —Wallak Stevens]

କାବ୍ୟିକ ବକ୍ତବ୍ୟ ତେଣୁ ଯଦି କେବଳ ଯୁକ୍ତି-ସମାହିତ, ଆବେଗ-ରହିତ, ବ୍ୟକ୍ତି-କୈନ୍ଦ୍ରିକ, ବସ୍ତୁସତ୍ତା-ବିରାଗୀ ହୁଏ ତେବେ ତାହା ଦାର୍ଶନିକ ବକ୍ତବ୍ୟରେ ପରିଣତ ହୁଏ ଏବଂ ପାଠକର ହୃଦୟ ଓ ମନକୁ ଆଦୌ ସ୍ପର୍ଶ କରିପାରେ ନାହିଁ ।

ଚିନ୍ତା ଓ ଚେତନା ସେଇ ଘନିଷ୍ଠ ଆବେଗ ସ୍ତରକୁ ଆସିଲେ ତାହା କାବ୍ୟ ରୂପ ନିଏ । ଯେମିତି ଡନ୍‌ଙ୍କର ଏଇ ପଂକ୍ତିରେ :

"Her pure and eloquent blood
Spoke in cheeks and so distinctly wrought
That one might almost
say her body thought."

ବସ୍ତୁ ହିଁ ତେଣୁ ଚେତନା ଓ ବସ୍ତୁର ବର୍ଣ୍ଣନା କାବ୍ୟ-ବକ୍ତବ୍ୟର ମୂଳକଥା । ସେଥିପାଇଁ ଲୋଡ଼ା ନିରପେକ୍ଷତା ବିଯୋଗ, ଯୁକ୍ତି ଏବଂ ଏସବୁ ସହିତ ସଂଶ୍ଳିଷ୍ଟତା, ସଂଯୋଗ ଏବଂ ଘନିଷ୍ଠ ଆବେଗ । ସେଇମାନଙ୍କର ଦ୍ୱନ୍ଦ୍ୱରୁ ହିଁ କାବ୍ୟବକ୍ତବ୍ୟ ତଥା ମୌଳିକ କାବ୍ୟଶୈଳୀ ଉଦ୍‌ଭୂତ ହୋଇ-ପାରେ । ବସ୍ତୁ ଥୁଣ୍ଟା ଗଛଟିଏ ହେଉ ବା ନାଗଫେଣି ଫୁଲଟିଏ ହେଉ, ଭଙ୍କାଣ୍ଡି ଠୋକା ହେଉ ବା ମାନସିକ ଅବସାଦର ଏକ ପର୍ଯ୍ୟାୟ ହେଉ, ତାକୁ ଆଖି ପୂରେଇ ଦେହ ମନ ଚିନ୍ତା ସବୁକୁ ଏକାଠି କରି ଦେଖିବାକୁ ପଡ଼ିବ । ନୋହିଲେ କବିତା ରହିଲା କେଉଁଠି ! ସବୁ ଅବସାଦ ଏକାପରି, ସବୁ ଗଛ ଏକାପରି, ସବୁ ସୂର୍ଯ୍ୟାସ୍ତ ଏକାପରି । ସେଥିରେ ବୈଶିଷ୍ଟ୍ୟ ଆଣେ ଏଇ ଦୃଷ୍ଟି ଯାହା ସ୍ଥିର ନିର୍ଦ୍ଦିଷ୍ଟ, ବ୍ୟକ୍ତି-ନିରପେକ୍ଷ, ଯାହା ନିଜକଥା ପଛକୁ ରଖି ସାମ୍ନାରେ ଥିବା ବାସ୍ତବତାକୁ ଗୁରୁତ୍ୱ ଦିଏ ଏବଂ ତା'ର ପ୍ରକାଶନ ପାଇଁ ବ୍ୟାକୁଳ ହୁଏ । କାବ୍ୟ-ବ୍ୟକ୍ତିତ୍ୱ ଯେମିତି ଗୃହେଁ ସେଇ ଚରମ ସ୍ୱଚ୍ଛତା ଯେଉଁଠି ବସ୍ତୁର ଜୀବନ ସ୍ୱୟଂ ପ୍ରତିଭାତ ହୋଇପାରିବ, ନିଜସ୍ୱ ମହିମାରେ । ତେଣୁ କାବ୍ୟ-ବକ୍ତବ୍ୟ ଇନ୍ଦ୍ରିୟାନୁଭୂତ ଆବେଗ ଓ ଚିନ୍ତାର ସ୍ତରକୁ ନ ଆସିଲେ ତାହା ଦର୍ଶନ ହୋଇପାରେ— କବିତା ହେବ ନାହିଁ ।

**ଚିତ୍ରକଳ୍ପର ପ୍ରୟୋଗ**

ଆଧୁନିକ ଓଡ଼ିଆ କବିତାର ଅନ୍ୟ ଏକ ଦିଗପ୍ରତି ଦୃଷ୍ଟି ଦେବା ପାଇଁ ବେଳ ଆସିଛି । ତା' ହେଉଛି ଚିତ୍ରକଳ୍ପର ବ୍ୟବହାର । ଏଇଠି କହି-ରଖିବା ଉଚିତ ଯେ, ଚିତ୍ରକଳ୍ପର ବ୍ୟବହାର ରୋମାଂଟିସିଜମ୍‌ର ଦୁର୍ବଳତା ବିରୋଧରେ ଥିଲା ଏକ କାବ୍ୟିକ ପ୍ରତିକ୍ରିୟା, ଏକ ଐତିହାସିକ ଆବଶ୍ୟକତା । ରୋମାଂଟିସିଜମ୍‌ରେ ବ୍ୟକ୍ତି ଓ ଚେତନା, ଅନୁଭୂତ ବସ୍ତୁ ଓ ଅନୁଭବୀ ମନ ଏ ଦୁଇଟିକୁ ଅଲଗା କରି ଦିଆଗଲା । ସେମିତି ମଧ୍ୟ ଅଲଗା ହୋଇଗଲା

ବାସ୍ତବତା ଓ ପ୍ରତିଫଳନ, ସ୍ୱର୍ଗ ନର୍କ, ଅତି-ବାସ୍ତବ ଓ ପାର୍ଥିବ । ଚିତ୍ରକଳ୍ପ ବା ପ୍ରତିମା ହେଲା ବସ୍ତୁ ଓ ଚେତନାକୁ ଏକାଠି ଧରି ରଖିବାର ଏକ ବିକଳ୍ପ ଯୋଜନା । କିନ୍ତୁ ଆଜି ବିଂଶଶତାବ୍ଦୀର ଚିନ୍ତାଧାରାରେ ସେ ପାର୍ଥକ୍ୟ ଅର୍ଥହୀନ । ଆଜି ଅନୁଭବୀ ଚେତନା ଅନୁଭୂତ ବସ୍ତୁ ଏବଂ ଶବ୍ଦ ଏଗୁଡ଼ିକ କେବଳ ପରସ୍ପର ସଂପୃକ୍ତ ବୋଲି ଯେ ଧରିନିଆ ଯାଇଛି ସେତିକି ନୁହେଁ । ଗୋଟିକ ବିନା ଅନ୍ୟମାନଙ୍କର ସ୍ଥିତି ଅସଂପୂର୍ଣ୍ଣ ଓ ଅର୍ଥହୀନ ବୋଲି ମଧ୍ୟ ଆମେ ଭାବୁଛୁ । ସତ୍ତାବସ୍ଥିତିର ଏଇ କାବ୍ୟ-ପୃଥିବୀରେ ତେଣୁ ଇନ୍ଦ୍ରିୟ ଚେତନା ଓ ଶବ୍ଦ ପରସ୍ପର ସହିତ ଘନିଷ୍ଠ ଭାବରେ ସମ୍ପର୍କିତ । ନିଜ ମନ, ଅନ୍ୟମାନଙ୍କର ମନ, ସାମ୍ନାସାମ୍ନି ପୃଥିବୀ ଓ ତା'ର ଅଗଣିତ ବସ୍ତୁ—ଏସବୁ ଗୋଟିଏ ମୁହୂର୍ତ୍ତ ଓ ସ୍ତରର ସ୍ଥିତି । ତେଣୁ ପ୍ରତିମା ବା ଚିତ୍ରକଳ୍ପ କେବଳ ଭାବପ୍ରକାଶର ପନ୍ଥା ନୁହେଁ । ବସ୍ତୁ ଓ ଚେତନାକୁ ଏକାଠି କରିବାର ପନ୍ଥା ନୁହେଁ, ଏହା ସ୍ୱୟଂସମ୍ପୂର୍ଣ୍ଣ କାବ୍ୟ-ବକ୍ତବ୍ୟ । ଏହା କେବଳ ଆଙ୍ଗିକ ନୁହେଁ, ଶୈଳୀର ବିଭବ ନୁହେଁ, ଏହା ନିଜେ ହିଁ କବିତା । ଅର୍ଥାତ ସମୁଦାୟ କବିତା (ବା' ତା'ର ସାମଗ୍ରିକ ବକ୍ତବ୍ୟ) ଏକ ବିସ୍ତୃତ ଚିତ୍ରକଳ୍ପ । ଏ ସ୍ତରରେ ତେଣୁ ତାକୁ ଚିତ୍ରକଳ୍ପ ନ କହି ବରଂ 'ଆଲଗରି' ବା 'ଫେବଲ୍' କହିବା ଉଚିତ ହେବ, ଯେମିତି କାଫ୍‌କାଙ୍କ ଉପନ୍ୟାସମାନଙ୍କରେ ବା କ୍ଷୁଦ୍ରଗଳ୍ପରେ—ଚୀନର ପ୍ରାଚୀର, ଗୀତ, ରୂପାନ୍ତର, ଦୁର୍ଗ ବା ବିଚାରାଳୟ ବା ଯେମିତି କାମୁ୍ୟଙ୍କ ରଚନାରେ ପ୍ଲେଗ୍‌ଗ୍ରସ୍ତ ଓରାନ୍ ସହର ବା ଦୋଷୀରୁଣୀ ସ୍ତ୍ରୀ ।

ସପ୍ତମଦଶକର ଓଡ଼ିଆ କବିତାରେ ଚିତ୍ରକଳ୍ପ ବ୍ୟବହାରରେ ଉଲ୍ଲେଖନୀୟ ଅଗ୍ରଗତି ହୋଇପାରିଛି ଏହା ନିଃସନ୍ଦେହ । କିନ୍ତୁ ଏକଥା ବି ସତ, କେତୋଟି ଚକ୍‌ଚକିଆ, ଆପାତତଃ ତୀକ୍ଷ୍ଣ ଚିତ୍ରକଳ୍ପର ବ୍ୟବହାରକୁ କବିତାର ପ୍ରଧାନ ଗୁଣ ବା ଆତ୍ମା ବୋଲି ଧରି ନିଆଯାଇଛି । କିନ୍ତୁ ଚିତ୍ରକଳ୍ପର ବ୍ୟବହାର ଏତେ ବେଶୀ ସହଜ ନୁହେଁ । ଚିତ୍ରକଳ୍ପ ଶବ୍ଦ ଓ ଶବ୍ଦବିନ୍ୟାସର ଏକ ତୀକ୍ଷ୍ଣ, ଅଧିକ ଶକ୍ତିଶାଳୀ ବିକଳ୍ପ ବ୍ୟବହାର । ସେଥିରେ ଯୁକ୍ତିସିଦ୍ଧ ସଙ୍ଗତି ନ ରହିଲେ ମଧ୍ୟ ଆବେଗସିଦ୍ଧ ସଙ୍ଗତି ରହିବା ଉଚିତ । ଉଦାହରଣସ୍ୱରୂପ ଜାରିଶବର ଶ୍ରୀକୃଷ୍ଣଙ୍କ ପାଦକୁ 'ଜାମୁକୋଳି ରଙ୍ଗ' ହିସାବରେ ଦେଖିବା ସ୍ୱାଭାବିକ ବା 'ଲାଲମିରିଚର କାନ' ପରି ମଧ୍ୟ ଦେଖିପାରେ, କିନ୍ତୁ ଯଦି କୁହାଯାଏ, ସହର ଦିଗନ୍ତରେ ଲାଲ୍ ନିଅନ୍ ଆଲୁଅ

ଟର ତାହା ହେଲେ ତା' କେତେ ଦୂର ସଙ୍ଗତ ହେବ ? ସେମିତି ଖରାଦିନର ଗାଁ ଦାଣ୍ଡି ହଳଆ ପାଞ୍ଚଣ ଟର ହାଡ଼ୁଆ ଶୁଖିଲା ବା 'ଚୂଡ଼କାଚ ହୀନ ଗଣ୍ଡି ହାତ' ହୋଇପାରେ, କିନ୍ତୁ ଯଦି କୁହାଯାଏ ଏହା 'ଧାତବ ଶୂନ୍ୟତା' ?

ଦ୍ୱିତୀୟତଃ ଅନେକଗୁଡ଼ିଏ ପରସ୍ପର-ବିରୋଧୀ ଚିତ୍ରକଳ୍ପ ବା ପ୍ରତିମା ବ୍ୟବହୃତ ହେଲେ ସେଗୁଡ଼ିକର ପରସ୍ପର ଉପରେ କି ପ୍ରଭାବ ଏବଂ ତଦ୍ୱାରା ସମୁଦାୟ କବିତାଟି କି ଭାବରେ ପ୍ରକଟିତ ହେଉଛି, ତା' ପ୍ରାୟଶଃ ଚିନ୍ତା କରାଯାଉନି । ହୁଏତ ପ୍ରଥମ ଧାଡ଼ିରେ ଗୋଟିଏ ଚିତ୍ରକଳ୍ପ ଅଛି, ଯାହାର ଶକ୍ତି ବା ପ୍ରଭାବ ତୃତୀୟ ଧାଡ଼ିରେ ବ୍ୟବହୃତ ଅନ୍ୟ ଏକ ଚିତ୍ର-କଳ୍ପ ଦ୍ୱାରା ସମ୍ପୂର୍ଣ୍ଣ ବିନଷ୍ଟ ବା ଅର୍ଥହୀନ (କବିତାଟିର ସାମଗ୍ରିକ ମୂଲ୍ୟାୟନ ଦୃଷ୍ଟିରୁ) ହୋଇ ଯାଉଛି । ଏହାର କାରଣ ହୋଇପାରେ, କବି ଯେ କୌଣସି ମତେ ଯେତେ ଦୂର ସମ୍ଭବ ଶୃଙ୍ଖଳିକର ପ୍ରତିମା ବା ଚିତ୍ରକଳ୍ପ ସବୁ ଏକାଠି ବ୍ୟବହାର କରିବାକୁ ବଦ୍ଧପରିକର, ବା ବକ୍ତବ୍ୟ-ପ୍ରକାଶନରେ ସମ୍ପୂର୍ଣ୍ଣ ଅକ୍ଷମତାକୁ ଘୋଡ଼ାଇବାର ପ୍ରଚେଷ୍ଟା । ଶୃଙ୍ଖଳା ସୃଷ୍ଟି କରିବା କାବ୍ୟ-ଚେତନାର ଲକ୍ଷ୍ୟ ହୋଇ ନ ପାରେ । ସେ ସ୍ତରରୁ ଓଡ଼ିଆ କବିତା ଉତ୍ତୀର୍ଣ୍ଣ ହୋଇଗଲଣି ବା ଅଚିରେ ହୋଇଯିବା ଅତ୍ୟନ୍ତ ଜରୁରୀ ବୋଲି ମୁଁ ମନେକରେ । ତେଣୁ ବର୍ତ୍ତମାନ ସମୟ ଆସିଛି ଯେତେବେଳେ ସମଗ୍ର କବିତାଟି ହେବ ଗୋଟିଏ ଚିତ୍ରକଳ୍ପ, ଗୋଟିଏ ପ୍ରତିମା, ଗୋଟିଏ allegory ବା ଗୋଟିଏ fable । ସେଥିରେ ସଙ୍ଗତି ଥିବା ଘନିଷ୍ଠ ଅନୁଭବ ଓ ଚେତନା ସହିତ ଶବ୍ଦମାନଙ୍କର ଏବଂ ଏ ତିନିଙ୍କ ସହିତ କାବ୍ୟ-ବକ୍ତବ୍ୟର । 'ଇମେଜିଇଜ୍‌ମ୍' ମୃତ ବୋଲି ମୋର ବକ୍ତବ୍ୟ ନୁହେଁ ମାତ୍ର ଏହା ଏକ ସାଧାରଣ କାବ୍ୟ ଚେତନାର ଅଂଶ ଓ ଏହାକୁ ଅତି ବେଶୀ ପ୍ରାଧାନ୍ୟ ଦେଇ କାବ୍ୟଚେତନାର ଅଗ୍ରଗତିକୁ ବ୍ୟାହତ କରିବା ଆଦୌ ସ୍ପୃହଣୀୟ ନୁହେଁ ।

**ସଂଯୋଗ ଓ ବିଯୋଗ**

ତା'ପରେ ଆଉ ଗୋଟିଏ ମୌଳିକ ପ୍ରଶ୍ନ ଆଜି ଓଡ଼ିଆ କବିତା ସାମ୍ନାରେ । ମୋ ମତରେ ତାହା ସଂଯୋଗ ଓ ବିଯୋଗ ଏବଂ ସେ ଦୁଇଟିର ଦ୍ୱନ୍ଦ୍ୱ ସମ୍ପର୍କୀୟ । କବିତାର ବକ୍ତବ୍ୟ ଅନ୍ଧାରିଆ, ଅବର୍ଣ୍ଣନୀୟ କିମ୍ବା ଅନୁଭବର— ଯାହା ଏକାନ୍ତ, ନିଜସ୍ୱ, ଗଭୀର ଓ ଘନିଷ୍ଠ । ଏଇ ଅନୁଭବ

ସହିତ କାବ୍ୟ-ଚେତନା ବା କାବ୍ୟ-ମାନସ ଯେତିକି ସଂଯୁକ୍ତ, ସଂଶ୍ଳିଷ୍ଟ, କାବ୍ୟ ବକ୍ତବ୍ୟ ଓ ଅନୁଭବ ସେତିକି ସୁଦୂରପ୍ରସାରୀ ତଥା ସୁଗଭୀର । ଚେତନାର ଏଇ କଞ୍ଚାମାଲ ନେଇ କିନ୍ତୁ କ'ଣ ହେବ ପ୍ରତ୍ୟେକ ବ୍ୟକ୍ତିର ଚେତନାରେ ଏଇ କଞ୍ଚାମାଲ ସବୁବେଳେ ଭରି ରହିଛି । ତା'ର ଘନିଷ୍ଠତା, ଆତ୍ମିକତା ଓ ଐଶ୍ୱର୍ଯ୍ୟ ହୁଏତ ଭିନ୍ନ ଭିନ୍ନ ସ୍ତରର ଓ ସୋପାନର । କିନ୍ତୁ ସାଧାରଣତଃ ବ୍ୟକ୍ତି-ଚେତନା ସେଇ ଅନୁଭବ ସହିତ ସଂଯୁକ୍ତ, ସଂଶ୍ଳିଷ୍ଟ ହେଲା ପରେ ଆଉ ନିଜକୁ ସେଥିରୁ ବିଯୁକ୍ତ କରିପାରେନି, ବିଶ୍ଳିଷ୍ଟ ହୁଏନି । ସେଥିରେ ସେ ସମ୍ପୂର୍ଣ୍ଣ ବିଜଡ଼ିତ, ବିଲୀନ ହୋଇଯାଏ । ସେହି ଅନୁଭବ ତାକୁ ନିଃଶେଷ କରିଦିଏ । ଏପରି ହେଲେ କାବ୍ୟ-ବକ୍ତବ୍ୟ ସମ୍ଭବ ନୁହେଁ । ଅନୁଭବ ମୁହୂର୍ତ୍ତର ସେ ଗଭୀର ଆଶ୍ଳେଷକୁ ପରିହାର କରି କାବ୍ୟ-ଚେତନା ପୁଣି ଛିଡ଼ା ହେବା ଉଚିତ ଦୂରରେ ଏବଂ ସେଇ ଅନୁଭବକୁ ଚାହିଁ ପ୍ରକୃତ କବି ବିଚାରେ ଏ କାହାର ଅନୁଭବ ଥିଲା ! ଏ କ'ଣ ମୋ'ର ଥିଲା ? ସେ ନିରପେକ୍ଷତା ଯେତେବେଳେ ଦ୍ୱିତୀୟ ସୋପନରେ ଆସେ ସେତିକିବେଳେ ଯାଇଁ କାବ୍ୟ ବକ୍ତବ୍ୟ ଅର୍ଥପୂର୍ଣ୍ଣ ଓ ମହିମାନ୍ୱିତ ହୁଏ । ସେଥିରେ ଯନ୍ତ୍ରଣାର ଛୁଇ ପରସ୍ତ ପରସ୍ତ ଲେପି ହୋଇ ରହେ, ମାଡ଼ି ହୋଇ ରହେ, ତା' ନ ହେଲେ ଖାଲି କାନ୍ଦିବା ବା ଖାଲି ହସିବା ବା ଖାଲି ନାଟକୀୟ ଭଙ୍ଗୀରେ କହିବା ଓ ଅଙ୍କା କରିବା ସାର ହୁଏ ସିନା ! ତାହା କିନ୍ତୁ କାବ୍ୟ-ବକ୍ତବ୍ୟସ୍ତରକୁ ଆସିପାରେ ନାହିଁ । ମୋର ମନେହୁଏ ଆଜିର ଓଡ଼ିଆ କବିତାରେ ଏବଂବିଧ ଦୁଇପ୍ରକାର କାବ୍ୟ-ମାନସ ଓ କାବ୍ୟ-ବକ୍ତବ୍ୟର ବହୁଳତା ଖୁବ୍ ସୁସ୍ପଷ୍ଟ । ଏହା ଫଳରେ କାବ୍ୟ-ଚେତନା ହୁଏତ ଖାଲି ଆବେଗ ସ୍ତରରେ ରହି ଯାଉଛି (ଯାହାର ଅନ୍ୟ ରୂପ ଉପର-ଠାଉରିଆ ବିଦ୍ରୋହ, ଯୌନ ଅଶ୍ଳୀଳତା, ପ୍ରଚ୍ଛନ୍ନ ରୋମାଂଟିସିଜମ୍ ବା ଗାଳିଗୁଲଜ ବା ଅସହିଷ୍ଣୁତା ଇତ୍ୟାଦି ଇତ୍ୟାଦି) ବା ଯୁକ୍ତି ସ୍ତରରେ ରହିଯାଉଛି, ଯାହା ଅସ୍ୱଚ୍ଛତା, ଦୁର୍ବୋଧତାରୁ ଖୁବ୍ ସହଜରେ ମୁକ୍ତି ପାଇ ପାରୁନି । କାବ୍ୟବକ୍ତବ୍ୟ ଯେ ଆଦୌ ଦୁର୍ବୋଧ ବା ଅସ୍ୱଚ୍ଛ ହେବ ନାହିଁ ତା' ମୋର ଯୁକ୍ତି ନୁହେଁ, କିନ୍ତୁ ଉପରୋକ୍ତ କାରଣ ଯେ ଆଧୁନିକ ଓଡ଼ିଆ କବିତାର ଅଧିକାଂଶ ଅସ୍ୱଚ୍ଛତା, ଅବୋଧତା, ଦୁର୍ବୋଧତା ବା ପଣ୍ଡିତମନ୍ୟତା ପାଇଁ ଦାୟୀ, ଏହା ମୁଁ ବିଶ୍ୱାସ କରେ । ତେଣୁ ଆଜି ସଂଯୋଗ ଓ ବିଯୋଗର ଏକ ଗଭୀର ଓ ଆତ୍ମିକ ଦ୍ୱନ୍ଦ୍ୱ ଓ ତା'ର ପ୍ରକୃତ ସ୍ୱରୂପ ବିଷୟରେ ଆଲୋଚନା ପାଇଁ ବେଳ ଆସିଛି ।

## ଶୈଳୀ ଓ ଭାଷା

ଶେଷରେ ଶୈଳୀ ଓ ଭାଷା ବିଷୟରେ ପଦେ । ବର୍ତ୍ତମାନର ଓଡ଼ିଆ ଭାଷାସବୁ ଚିନ୍ତାର ଯେ ଅକ୍ଲେଶରେ ବାହକ ହୋଇପାରିବ,ସେକଥା ମୁଁ କହୁନାହିଁ । ମାତ୍ର ଯେତେ ସହଜରେ କୁହାଯାଉଛି ଯେ ଓଡ଼ିଆ ଭାଷା ଆଧୁନିକ ଚିନ୍ତାର ବାହକ ହୋଇପାରୁନି, ତା' ସହିତ ମୁଁ ଏକମତ ହୋଇ ପାରୁନି । ମୋର ଧାରଣା ଓଡ଼ିଆ ଭାଷାର ସ୍ଥିତିସ୍ଥାପକତା, ଶବ୍ଦ-ଭଣ୍ଡାର, ପାରମ୍ପରିକ ବ୍ୟବହାର ଶୈଳୀ ବିଷୟରେ ଆଧୁନିକ କବି ଅଧିକ ସଚେତନ ହେବା ଏକାନ୍ତ ଦରକାର । କାରଣ ଏ ବିଷୟରେ ଧାରଣା ଖୁବ୍ ସୀମିତ, ଏପରିକି ଖୁବ୍ ପଣ୍ଡିତମାନଙ୍କର ଓ ସ୍ୱନାମଧନ୍ୟ କବିମାନଙ୍କର । ବିପ୍ଳବ ପୂର୍ବର ସ୍ଥିତାବସ୍ଥା ବିଷୟରେ ସମ୍ୟକ୍ ଧାରଣା ନ ଥିଲେ, ସେ ବିପ୍ଳବ ଉନ୍‌କୁଣ୍ଠୀୟ ହୋଇଯାଇ ପାରେ । ତା' ଛଡ଼ା, ଶବ୍ଦର ପ୍ରକୃତ ଅର୍ଥ ବିଷୟରେ ମଧ୍ୟ ନିର୍ଦ୍ଦିଷ୍ଟ ଧାରଣା ରହିବା ଉଚିତ୍ ଏବଂ ପ୍ରତ୍ୟେକ ଶବ୍ଦର ବିବିଧ ବ୍ୟବହାର ଓ ସମ୍ପର୍କିତ ଧାରଣାର ଐଶ୍ୱର୍ଯ୍ୟ (wealth of association)ବିଷୟରେ ଆମେ ସଚେତନ ହେବା ବିଧେୟ । ସେତିକି ଆଗ ହେଲେ ତା' ପରେ ଭାଷାର ପାରମ୍ପରିକ ଓ ବ୍ୟାବହାରିକ ସ୍ଥିତିରୁ ନୂତନ ଓ ବୈପ୍ଳବିକ ଦିଗନ୍ତ ଆଡ଼କୁ ଯିବା ସମ୍ଭବ । ଭାଷା ଓ ଶବ୍ଦ ଶୈଳୀର ମୂଳପିଣ୍ଡ । ତେଣୁ ଭାଷାର ଉତ୍କର୍ଷ ଓ ଶବ୍ଦମାନଙ୍କର ଗୁଞ୍ଜନ କାନରେ ସମ୍ପୂର୍ଣ୍ଣ ଭାବରେ ନ ପଡ଼ିବା ଯାଏ ଶୈଳୀ ଉପରଠାଉରିଆ ଓ ଛନ୍ଦ ଏକବାଗିଆ, ଏକାଶିଆ ହେବା ସ୍ୱାଭାବିକ । ବକ୍ତବ୍ୟ ସହିତ ଭାଷା, ଶୈଳୀ ଓ ଛନ୍ଦ ଏସବୁଗୁଡ଼ିକର ଦୃଢ଼ ସମ୍ପର୍କ । ଗୋଟିକ ବିଷୟରେ ନିଶ୍ଚିନ୍ତ ନ ହେଲେ ଅନ୍ୟ ବିଭବମାନଙ୍କ ବିଷୟରେ ନିର୍ଦ୍ଦିଷ୍ଟ ମନୋଭାବ ପୋଷଣ କ'ଣ ସମ୍ଭବ ?

ଏ ଅବଧି ଚିନ୍ତାର ଯୁକ୍ତି-ସିଦ୍ଧ ରୂପ ପର୍ଯ୍ୟନ୍ତ କବିତା ପହଞ୍ଚି ଯାଇଛି । କିନ୍ତୁ କଳ୍ପନା ଓ ଆବେଗ ସିଦ୍ଧ ଯୁକ୍ତିରେ (ଯେତେବେଳେ ଉନ୍‌ଙ୍କ ପରି the body thought ବୋଲି କହିହେବ) କେବେ ପହଞ୍ଚିବ ତା' ଭବିଷ୍ୟତ କହିବ । ପର୍ସିଙ୍କ Anabasis ର ଭୂମିକାରେ କୁହାଯାଇଥିଲି, "there is a logic of the imagination as there is a logic of the concepts." ଆମ କବିତାର ଭବିଷ୍ୟତ ପ୍ରଗତି ସେଇ logic of imagination ଆଡ଼କୁ ; ସଂଯୋଗ-ବିଯୋଗର ମିଳନବିନ୍ଦୁ ଆଡ଼କୁ ହେଉ ।

---

# ମୋ ଦୃଷ୍ଟିରେ ସାଂପ୍ରତିକ ଓଡ଼ିଆ କବିତାର ଗତି ଓ ପ୍ରକୃତି

**ଦୁର୍ଗାମାଧବ ମିଶ୍ର**

Wordsworthଙ୍କ ଭାଷାରେ କବିତା ହେଉଛି ନିରୋଳାରେ ନିଜର ଭାବନାକୁ ସ୍ମରଣ କରିବା (Emotion recollected in tranquillity)। ଏଣୁ କବିତାର ଧର୍ମ ହେଉଛି ହୃଦୟକୁ ସ୍ପର୍ଶ କରିବା ଓ ଆଲୋଡ଼ନ ସୃଷ୍ଟି କରିବା। ଏହା ନ କରି ପାରିଲେ ତାହା प्रकृत କବିତା ପର୍ଯ୍ୟାୟଭୁକ୍ତ ନୁହେଁ।

ଇନ୍ଦ୍ରଧନୁଟିଏ ଦେଖିଲେ ଯେଉଁ ବିହ୍ୱଳତା ମନ ଭିତରେ ଆସେ, ତାହା ଓ୍ୱାର୍ଡ଼ସ୍‌ଓ୍ୱାର୍ଥ ରୂପ ଦେଇଥିଲେ "My heart leaps up…" କବିତାରେ। ସେହିପରି ପ୍ରକୃତିର ଅନ୍ତରସ୍ପର୍ଶୀ ବର୍ଣ୍ଣନା ଓଡ଼ିଆ କବିତାରେ ମଧ୍ୟ ବିରଳ ନୁହେଁ। ଏ ଦେଶର ମାଟି, ପାଣି, ହ୍ରଦ, ପର୍ବତ, ଗିରିକନ୍ଦର ପ୍ରତ୍ୟେକରେ କବି ରାଧାନାଥ ଦେଇଥିଲେ ଏକ ଅଭୂତପୂର୍ବ ଆହ୍ୱାନ। ସେ ତାହାର ଭିତରେ ହଜି ଯାଇଥିଲେ। ତାହାର ଭିତର ଦେଇ ସେ ନିଜ ଜୀବନର ପରିପୂର୍ଣ୍ଣତା ଉପଲବ୍ଧି କରିଥିଲେ—ହଜାଇ ଦେଇଥିଲେ ଅସ୍ମିତା। ଭକ୍ତକବି ମଧୁସୂଦନ ମଧ୍ୟ ଆକାଶ, ପଦ୍ମ ପ୍ରଭୃତି ପ୍ରାକୃତିକ ଦୃଶ୍ୟମାନଙ୍କଦ୍ୱାରା ପ୍ରଭାବିତ ହୋଇଥିଲେ। ତାଙ୍କର ଜୀବନଦର୍ଶନ ସେହି ବିଷୟବସ୍ତୁଦ୍ୱାରା ପ୍ରଭାବିତ ହୋଇଥିଲା। ସେ ଏହି ଜଡ଼ ବସ୍ତୁମାନଙ୍କ ଭିତରେ ନୂଆ ଜୀବନର ପ୍ରେରଣା ପାଇଲେ ପରାତ୍ପର ଈଶ୍ୱରଙ୍କର ସାନ୍ନିଧ୍ୟ। ଏଣୁ ଆଧୁନିକ ଓଡ଼ିଆ କବିତାର ଇତିହାସ ଆଲୋଚନା କଲେ ଏ ଦୁହିଙ୍କ ସ୍ଥାନ ନିର୍ଦ୍ଦିଷ୍ଟଭାବେ ସୁରକ୍ଷିତ।

ଏହା ପରେ ପରେ ସବୁଜ ଗୋଷ୍ଠୀର ଆବିର୍ଭାବ । ସବୁଜ କବି-ମାନେ ମଧ୍ୟ ସେମାନଙ୍କ ସମୟରେ କବିତାରେ ଛନ୍ଦଗତ ବିପ୍ଳବ ଆଣିଥିଲେ, କିନ୍ତୁ ସେମାନଙ୍କର କବିତାର ପ୍ରତି ଛନ୍ଦେ ଛନ୍ଦେ ଭରି ରହି-ଥିଲା ହୃଦୟର ଆବେଗ । ସେ କବିତା ଭିତରେ ଭରି ରହିଥିଲା ଉତ୍‌ଫୁଲ୍ଲତା, ଆନନ୍ଦ ଓ ବଞ୍ଚିବାର ଅପରିସୀମ ମୋହ । ତାହା ପଢ଼ି ଅନ୍ତର ଭିତରେ ଆନନ୍ଦର ଫଲ୍‌ଗୁ ସଞ୍ଚାରିତ ହେଉଥିଲା କିମ୍ବା ଦୁଃଖର ବନ୍ୟାରେ ମନଭିତର ଉଦ୍‌ପ୍ଲୁତ ହୋଇଯାଉଥିଲା । କେବଳ ଛନ୍ଦର ନୂତନତା ସେତେବେଳେ କେତେକଙ୍କ ମନରେ ବିଦ୍ରୋହ ସୃଷ୍ଟି କରିଥିଲା । ତାହା ମଧ୍ୟ ହେଲା କ୍ଷଣସ୍ଥାୟୀ । ଏହି ପରିପ୍ରେକ୍ଷୀରେ ଉଦୟ ଲଭିଲା ଅତି ଆଧୁନିକ କବିତା··· ସଚ୍ଚି ରାଉତରାୟ ବୋଧହୁଏ ତାହାର ବାର୍ତ୍ତାବହ । ଏଥିରେ ଥିଲା ସମସ୍ତ ପ୍ରକାରର ଛନ୍ଦ (ଅକ୍ଷରବୃତ୍ତ ହେଉ ବା ମାତ୍ରାବୃତ୍ତ ହେଉ) ପ୍ରତି ଅସନ୍ତୋଷ । କୌଣସି ନିର୍ଦ୍ଦିଷ୍ଟ ଖୋଳରେ କବିତାର ଆତ୍ମପ୍ରକାଶ ବିରୋଧରେ ଅଭିଯାନ । ସଚ୍ଚି ରାଉତରାୟଙ୍କ ପ୍ରଥମ କବିତାଗୁଡ଼ିକରେ ଅବଶ୍ୟ ଛନ୍ଦ ରହିଛି, କିନ୍ତୁ ପାଣ୍ଡୁଲିପି, ପ୍ରଭୃତି ପରବର୍ତ୍ତୀ କବିତାଗୁଡ଼ିକ ଛନ୍ଦମୁକ୍ତ ଗଦ୍ୟ-କବିତା । ଯେ କୌଣସି ନୂତନ ପରୀକ୍ଷାପରି, ଏହି କବିତା ପ୍ରତି ମଧ୍ୟ ପ୍ରଥମେ ଅନାଦର ଦେଖିବାକୁ ମିଳିଲା । ଏଥି ନିମନ୍ତେ ଗୋଟିଏ ବାତାବରଣର ଅଭାବ ଥିଲା ଓଡ଼ିଆ ସାହିତ୍ୟରେ । ମନେ ହେଲା ଯେପରି, ଏକ ବିଜାତୀୟ ବସ୍ତୁ ପ୍ରତି ପାଠକମାନଙ୍କୁ ରୁଚିକର ହେବା ନିମନ୍ତେ ବାଧ୍ୟ କରାଯାଉଛି । କିଞ୍ଚିତ ଦୁର୍ବୋଧ ହେଲା ମଧ୍ୟ ଏହି କବିତା । ସେହିଠାରେ ଆରମ୍ଭ ହେଲା କବିତା ପ୍ରତି ପାଠକମାନଙ୍କର ନିଗ୍ରହ ।

କବିତାଟିଏ ପଢ଼ି ରସାସ୍ୱାଦନ କରିବା ନିମନ୍ତେ ମସ୍ତିଷ୍କର ଆଶ୍ରୟ ନେବାକୁ ସାଧାରଣତଃ ପାଠକମାନେ ଅନିଚ୍ଛୁକ । ତେଣୁ କବିତା ପାଠକ-ମାନଙ୍କର ସଂଖ୍ୟା ହ୍ରାସ ଲଭିଲା । ପତ୍ରପତ୍ରିକାରେ କବିତା ଅଂଶଟିର ପୃଷ୍ଠା ଓଲଟାଇ ଦେଇ ଅନ୍ୟାନ୍ୟ ସାହିତ୍ୟ ବିଭାଗ, ଯଥା ଗଳ୍ପ ଓ ଏକାଙ୍କିକା ପ୍ରତି ଲୋକମାନଙ୍କ ଦୃଷ୍ଟି ଆକୃଷ୍ଟ ହେବାକୁ ଲାଗିଲା । ଅବଶ୍ୟ କେତେକ ଯେ କବିତା ନ ପଢ଼ିଲେ ଏପରି ନୁହେଁ ; କିନ୍ତୁ କବିତାର ସହଜାତ ଆନନ୍ଦ ଧୀରେ ଧୀରେ ହ୍ରାସ ଲଭିଲା । ଆରମ୍ଭ ହେଲା କବିତାରେ ଏକ ଅନିଶ୍ଚିତ-ତାର ଯୁଗ ।

ସଚ୍ଚି ରାଉତରାୟଙ୍କ ପରେ ପରେ ତାଙ୍କର ବାନା ଧରି ଆହୁରି ଅନେକ କବି ବାହାରିଲେ ଏବଂ ଅଦ୍ୟାପି ସେହି ପ୍ରକାର କବିତା ପତ୍ରିକା-ମାନଙ୍କରେ ଦେଖିବାକୁ ମିଳେ । ସେହି କବିତାଗୁଡ଼ିକର ଉଦ୍ଦେଶ୍ୟ କ'ଣ ଜାଣିବା ସାଧାରଣ ପାଠକ ପକ୍ଷରେ ଅତିଶୟ ଆୟାସସାଧ୍ୟ ହୋଇପଡ଼ୁଛି । ହୁଏତ କାଳକ୍ରମେ ଏହାକୁ ହିଁ ଆଦର କରିବାକୁ ପଡ଼ିବ । କାରଣ, ଅନ୍ୟ କୌଣସି ବ୍ୟଞ୍ଜନର ପ୍ରସ୍ତୁତି ଭୁଲିଗଲେ, ଯେପରି ଯାହା ମିଳିବ ତାହା ଖାଇ କ୍ଷୁଧା ମେଣ୍ଟାଇବାକୁ ପଡ଼େ ତାହା ହିଁ କବିତା କ୍ଷେତ୍ରରେ ଯେ ପ୍ରଯୁଜ୍ୟ ହେବ ନାହିଁ ତାହା କିଏ କହିବ ?

ଟିକିଏ ସୂକ୍ଷ୍ମ ଭାବରେ ବିଚାର କଲେ ଅବା ଟିକିଏ ଆଉ ଗମ୍ଭୀର ଭାବରେ ଚିନ୍ତା କଲେ, ଦେଖିବାକୁ ମିଳେ ଯେ ବର୍ତ୍ତମାନର କବିତାରେ କେତୋଟି ଅପରିହାର୍ଯ୍ୟ ଅଙ୍ଗ ଏହାର ଜନପ୍ରିୟତା ହାନି ନିମନ୍ତେ ଦାୟୀ । ପ୍ରଥମତଃ ଛନ୍ଦର ଅଭାବ । ଯଦ୍ୟପି ଗଦ୍ୟ କବିତାରେ କବିର ଭାବରାଜିକୁ ସଜାଡ଼ିବା ନିମନ୍ତେ ଅନେକ ସ୍ୱାଧୀନତା ମିଳେ, ତଥାପି ତାହା ମଧ୍ୟରେ ଏକ ଅନ୍ତର୍ନିହିତ ଉଚ୍ଛ୍ୱାସ ରହିବା ଦରକାର । ତାହା ନ ହେଲେ, ତାହା କବିତା ପଦବାଚ୍ୟ ହେବ ନାହିଁ । ହୁଏତ ପଦ ବା ଉପଧା ମିଳି ନ ପାରେ ; କିନ୍ତୁ ପଢ଼ିଲାବେଳେ ତାହା ଗଦ୍ୟଠାରୁ ଭିନ୍ନ ହେବା ବାଞ୍ଛନୀୟ ; କିନ୍ତୁ ଅଧୁନା ଅନେକ କବିତାରେ ( ଗଦ୍ୟ କବିତା ନାଆଁରେ ପ୍ରକାଶ ପାଇ ) ଏହି ମୌଳିକ ବିଭାବ ପ୍ରତି ଦୃଷ୍ଟି ଦିଆଯାଉ ନାହିଁ । ଅବଶ୍ୟ ଯୁକ୍ତି ହେଉଛି ଯେ ଉଚ୍ଛ୍ୱାସ କିମ୍ବା ଛନ୍ଦପତନ କବିର ଭାବନାକୁ ଗତାନୁଗତିକ କରିଦିଏ । ସଦ୍ୟତା ନିମନ୍ତେ ଏ ସବୁକୁ ଭାଙ୍ଗି ଦେବା ଦରକାର । କବିତା ଯେତେ ମୁକ୍ତ ସେତେ ଏହାର ବାର୍ତ୍ତା ପରିଷ୍କାର ଓ ନିଗାଡ଼ ମୁକ୍ତ । ଯଦି ଏହା ସତ୍ୟ ହେଲା, ତେବେ କବିତାଟି ପଢ଼ିସାରିଲା ପରେ ଏହାର ବାର୍ତ୍ତା କ'ଣ ତାହା ଅନ୍ତତଃ ପାଠକର ହୃଦୟଙ୍ଗମ ହେବା ଉଚିତ; କିନ୍ତୁ ଅଧିକାଂଶ କବିତାକୁ ବୁଝିବା କାଠିକର ପାଠ···ସମ୍ଭବ ମଧ୍ୟ ନୁହେଁ । ଏହା ସପକ୍ଷରେ ଯୁକ୍ତି ହେଉଛି, କବି କୌଣସି ଏକ ନିର୍ଦ୍ଦିଷ୍ଟ ପରିପ୍ରେକ୍ଷୀରେ ଯାହା ଲେଖିଲେ, ତାହାକୁ ବୁଝିବା ନିମନ୍ତେ ପାଠକକୁ ସେହି ପ୍ରକାର ମାନସିକ ବିଚକ୍ଷଣତାର ସ୍ତରରେ ପହଞ୍ଚିବାକୁ ହେବ । ଜ୍ଞାନର ଅନ୍ୟାନ୍ୟ ବିଭାଗ ଯଥା ଗଣିତ, ପଦାର୍ଥବିଜ୍ଞାନ ପ୍ରଭୃତି ବୁଝିବା ନିମନ୍ତେ ଯେପରି ଏକ ମାନସିକ ସ୍ତରରେ ସ୍ଥବିର ପହଞ୍ଚିବା ଆବଶ୍ୟକ, ଆଧୁନିକ କବିତା ବୁଝିବାକୁ

ହେଲେ ପାଠକକୁ ମଧ୍ୟ ସେହିପରି ଏକ ନିର୍ଦ୍ଦିଷ୍ଟ ସ୍ତରରେ ପହଞ୍ଚିବାକୁ ପଡ଼ିବ । ତାହା ନ ହେଲେ ସେ ବରଂ କବିତା ନ ପଢ଼ୁ । କବିତା ସମସ୍ତଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ । ଏ ଯୁକ୍ତି ଯେ କେତେ ତ୍ରୁଟିପୂର୍ଣ୍ଣ, ତାହା ସହଜରେ ଅନୁମେୟ । ସାହିତ୍ୟ, ବିଶେଷତଃ କବିତା ବୁଝିବା ନିମନ୍ତେ ଯଦି ପାଠକଙ୍କୁ ଗ୍ରନ୍ଥମତ ଗବେଷଣା କରିବାକୁ ପଡ଼େ ତେବେ କେତେ ଜଣ ପାଠକ ସେଥି ନିମନ୍ତେ ପ୍ରସ୍ତୁତ ହେବେ ? ବୌଦ୍ଧିକ ବିକାଶ ସହିତ କବିତାର କୌଣସି ସମ୍ପର୍କ ନାହିଁ । କବିତା ସବୁକାଳେ ହୃଦୟକୁ ସ୍ପର୍ଶ କରୁଥିଲା । ହୃଦୟକୁ ସ୍ପର୍ଶ କରିବା ନିମନ୍ତେ ବିଦ୍ୟା ବୁଦ୍ଧିର ପ୍ରୟୋଜନ ନାହିଁ । ମନକୁ ମନ ତାହା ଆନନ୍ଦ ଦିଏ ଓ ସମାଜର ନାନାଦି ବିଭବ ଓ ସମସ୍ୟା ପ୍ରତି ମଧ୍ୟ ପାଠକ ଅବହିତ ହୁଏ । ଦୁର୍ବୋଧ୍ୟତା ନାମରେ କବିତାରେ ଯେଉଁ ପ୍ରକାର ଆତସବାଜି ଚାଲିଛି, ତାହା ଶେଷକାଳ କବିତାକୁ ପଙ୍ଗୁ କରିଦେବ, ଏଥିରେ ସନ୍ଦେହ ନାହିଁ । କେବଳ ମସ୍ତିଷ୍କର ବଳରେ ଇଲେକ୍ଟ୍ରୋନିକ କମ୍ପ୍ୟୁଟର ମଧ୍ୟ କବିତା ଲେଖିପାରେ । ତାହାର ଯେପରି କୌଣସି ଅର୍ଥ ନାହିଁ, ହୃଦୟ-ବିହୀନ କବିତାର ମଧ୍ୟ କୌଣସି ଅର୍ଥ ନାହିଁ । ଆହୁରି ମଧ୍ୟ ଅନେକ ମନ୍ଦ କବି ଯଶଃ-ପ୍ରାର୍ଥୀ ଏହି ମୌକାର ସୁଯୋଗ ନେଇ କବି ପାଲଟିବାର ଲୋଭ ଛାଡ଼ି ପାରୁନାହାନ୍ତି । ଯାହା ତାହା ଦୁଇ ଧାଡ଼ି ଲେଖି ଦେଇ କବିତା ଫିଙ୍ଗି ଦେଲେ ଚଳିବ ନାହିଁ । ଯଦି କବିତାର ଦୁର୍ବୋଧ୍ୟତା କବିତାର ମାନଦଣ୍ଡ ହେଲା, କବିତା ଲେଖିବା ବୋଧ ହୁଏ ସବୁଠାରୁ ସହଜ ବ୍ୟାପାର ହେବ । ଅବଶ୍ୟ ଜୀବନର ଜଟିଳତା ସହିତ ସମତାଳ ରଖି, କବିତା ଯେ ଅନେକଟା ଅସ୍ପଷ୍ଟ ହେବ ଏଥିରେ ସନ୍ଦେହ ନାହିଁ ; କିନ୍ତୁ କବିତାର ତାହା କେବଳ ଏକମାତ୍ର ଲକ୍ଷଣ ନୁହେଁ । ଜୀବନର ଜଟିଳତା ବଢ଼ି ଚାଲିଛି । ତଥା କଥିତ ନିରାଶା, ଜାଜ୍ଞାସୁ ଚରିତ୍ରରେ ଘୁଣ ସୃଜୁଛି । ମନର ଦ୍ୱନ୍ଦ୍ୱ ବଢ଼ିଯାଉଛି ; କିନ୍ତୁ ଏ ସବୁର ସମ୍ୟକ୍ ଚିତ୍ର ପରିବର୍ତ୍ତେ କବିତାକୁ ଆହୁରି ଜଟିଳ କରିବାର ଉଦ୍ଦେଶ୍ୟ କ'ଣ ? ସେହି ସମସ୍ତ ଭାବରାଜି କ'ଣ ସାବଲୀଳ ଭାବରେ ପ୍ରକାଶ କରାଯାଇ ପାରେନା ?

ଆଧୁନିକ କବିତାର ଆଉ ଏକ ଲକ୍ଷଣ ହେଲା ରୂପକଳ୍ପର ପ୍ରୟୋଗ । ଏହାର ପ୍ରୟୋଗ ଏତେ ଅଧିକ ହେଉଛି ଯେ, ଅନେକ ସମୟରେ ଏହାକୁ ଅନୁସରଣ କରିବା କାଠିକର ପାଠ ହୋଇ ପଡ଼ୁଛି । ଗୋଟିଏ ରୂପକଳ୍ପରୁ ଆଉ ଗୋଟିକୁ ଏତେ ଶୀଘ୍ର ଚାଲିଯିବା ଦ୍ୱାରା ଅନେକ

ସମୟରେ ପାଠକ ଅବାକ୍ ହୋଇଯାଏ । ପାଠକ ପ୍ରତି କବିଙ୍କ ବିଶ୍ୱାସ ଓ ସହାନୁଭୂତି ରହିବା ଉଚିତ ।

ମୋଟ ଉପରେ ଦେଖିବାକୁ ଗଲେ, ଓଡ଼ିଆ କବିତା ରାଜ୍ୟରେ ଏକ ଅନିର୍ଦ୍ଦିଷ୍ଟ ସମୟ ଆସି ପହଞ୍ଚିଛି । ଅନେକ ପ୍ରକାର ପରୀକ୍ଷାନିରୀକ୍ଷା ଚାଲିଛି । କାଳର କରାଳ କଷଟି ନିକଟରେ କିଏ ତିଷ୍ଠିବ, କିଏ ଧ୍ୱଂସ ଲଭିବ, କହିବା ମୁଷ୍କିଲ୍ । ଖୁବ୍ କିଏ କୁଣ୍ଡା କିଏ ଚିହ୍ନା ପରେ ନିଶ୍ଚୟ ଜଣା ପଡ଼ିବ ; କିନ୍ତୁ ଇସପ୍‌ଙ୍କ କାହାଣୀର ଅଦୃଶ୍ୟ ପୋଷାକ ଆଉ କେତେ ଦିନ ପିନ୍ଧି ଆମ୍ଭମାନଙ୍କୁ ଭଲ ପୋଷାକ ବୋଲି କହିବାକୁ ପଡ଼ିବ ଦେଖିବାକୁ ବାକି ରହିଲା ।

———

# ମୋ ଦୃଷ୍ଟିରେ ସାଂପ୍ରତିକ ଓଡ଼ିଆ କବିତାର କେତୋଟି ଦିଗ

ଅଧ୍ୟାପକ ଶ୍ରୀ ହରିହର ରଥ

ଆଧୁନିକ ଓଡ଼ିଆ କବିତାର କେତୋଟି ଦିଗ ସମ୍ବନ୍ଧରେ ଆଲୋଚନା କରିବା ପୂର୍ବରୁ କେତେକ ସୁପ୍ରତିଷ୍ଠିତ ସାହିତ୍ୟିକ ତଥ୍ୟ ମନରେ ଆଲୋଡ଼ନ ସୃଷ୍ଟି କରିଥାଏ । ପ୍ରଥମତଃ ଏହା ଭୁଲିଯିବା ଅନୁଚିତ ଯେ ଗୋଟିଏ ଯୁଗର ସାହିତ୍ୟ-ସାଧକ ଅନ୍ୟ ଏକ ଯୁଗର ସାହିତ୍ୟ-ପରିପନ୍ଥୀ ହୋଇପାରନ୍ତି । ଉଦାହରଣ ସ୍ୱରୂପ ଉପେନ୍ଦ୍ରଭଞ୍ଜଙ୍କୁ ନିଆଯାଇ ପାରେ । ଆଜିର ସାହିତ୍ୟିକ ସାଧନାର ରଙ୍ଗମଞ୍ଚରେ ଭଞ୍ଜୀୟ ସାହିତ୍ୟର ଚିତ୍ତାକର୍ଷଣ ଉପଲବ୍ଧି କରି ସେହିପରି ସାହିତ୍ୟ ସୃଷ୍ଟି କରିବା ସମ୍ଭବ ନୁହେଁ । ଦ୍ୱିତୀୟତଃ ଯାହାକୁ ଆଜି ଆଧୁନିକ ସାହିତ୍ୟ ବୋଲି କୁହାଯାଉଛି ତାହା ବହୁ ଯୁଗ ପରେ ଏକ ନୂତନ ବିବର୍ତ୍ତିତ ଅବସ୍ଥାରେ ପହଞ୍ଚି, ପ୍ରାଚୀନ ସାହିତ୍ୟ ବୋଲି ବିବେଚିତ ହେବା ଅବଶ୍ୟମ୍ଭାବୀ । ଏହାର ମୁଖ୍ୟ କାରଣ ହେଲା ପ୍ରତ୍ୟେକ ଯୁଗରେ ଜନମାନସରେ ସାହିତ୍ୟର ରୂପରେଖ ବଦଳେ । ଏପରିକି ନିଜ ଜୀବନର ବିଭିନ୍ନ ପର୍ଯ୍ୟାୟରେ ବିଭିନ୍ନ ପ୍ରକାର ଦୃଷ୍ଟିକୋଣ ଦେଖାଯାଏ, ଯେଉଁଗୁଡ଼ିକ ଅତି ଆଶ୍ଚର୍ଯ୍ୟଜନକ ଭାବରେ ପରସ୍ପର ବିରୋଧୀ। ଆଧୁନିକ ଯୁଗର ପ୍ରଖ୍ୟାତନାମା କବି ଏଲିୟଟ୍ (Eliot) ଏହାର ଜ୍ୱଳନ୍ତ ଉଦାହରଣ । କବି ଜୀବନର ପ୍ରାରମ୍ଭରେ ରୋମାଣ୍ଟିକ୍ ସାହିତ୍ୟର ତୀବ୍ର ବିରୋଧ କରି ମଧ୍ୟ ପରିଶେଷରେ ଉକ୍ତ ସାହିତ୍ୟର ବହୁଳ ଅଂଶ ଗ୍ରହଣ-ଯୋଗ୍ୟ ବୋଲି ସ୍ୱୀକାର କରିଥିଲେ । (PMLA October 1970 vol. 85 No 5 Page 979 Egon Schwarz) । ତେଣୁ ବ୍ୟାପକ ଦୃଷ୍ଟିରେ ସାହିତ୍ୟର ମୂଲ୍ୟାଙ୍କନ କରିବା ସମ୍ଭବ ନୁହେଁ, କାରଣ ଉତ୍ତମ ସାହିତ୍ୟ କାହାକୁ କୁହାଯାଏ ତା'ର ଏକ ସଠିକ ଜବାବ ମିଳିବା କଷ୍ଟସାଧ୍ୟ

ବ୍ୟାପାର । ଏହା ପୁଣି ସତ୍ୟ ଯେ ସାହିତ୍ୟ ସାଧନାର ରଙ୍ଗମଞ୍ଚରେ 'ସିଂହାସନ' ଅଲଙ୍କୃତ କରିବାର ଗୌରବ ଚିରନ୍ତନ ନୁହେଁ ।

ଉପରୋକ୍ତ ଚିନ୍ତାଧାରାର ପରିପ୍ରେକ୍ଷୀରେ ଆଧୁନିକ ଓଡ଼ିଆ ସାହିତ୍ୟର ଏକ ମୁଖ୍ୟ ଅଙ୍ଗ ଆଧୁନିକ ଓଡ଼ିଆ କବିତାକୁ ବିଚାର କରିବା ବିଧେୟ ବୋଲି ମୁଁ ମନେ କରେ ।

ଆଧୁନିକ ଓଡ଼ିଆ କବିତାର ବିଶେଷ ଦୁର୍ବଳତା ହେଲା ଅନୁକରଣପ୍ରିୟତା ହେତୁ ମୌଳିକତାର ଅଭାବ । ଉଦାହରଣ ସ୍ୱରୂପ 'ସନ୍ଧ୍ୟା' ଉପରେ ଲିଖିତ କେତେକ କବିତାକୁ ନିଆଯାଇପାରେ । ପ୍ରକୃତିର ପ୍ରାଚୁର୍ଯ୍ୟ ମଧ୍ୟରେ ଜାତ ତଥା ପରିପାଳିତ ଓଡ଼ିଆ କବି ପାଇଁ ସନ୍ଧ୍ୟା ଯେ କାହିଁକି ଶାନ୍ତିଦାୟିନୀ ନୁହେଁ, ସେ କଥା ଭାବି ହୁଏନା । ତଥାପି ଆଧୁନିକ ଓଡ଼ିଆ କବି ଲେଖେ—

"ସନ୍ଧ୍ୟା ଆସୁଥିଲା
ବର୍ଷା ବିଧୁର ସହରର ବୁକେ
କ୍ଳାନ୍ତ ଅଫିସ ଫେରନ୍ତା କିରାଣିର ପରି ।"

ଉପରୋକ୍ତ କବିତା ପଂକ୍ତିରେ ଏଲିୟଟ୍‌ଙ୍କ ଛାପ ସ୍ପଷ୍ଟ ପ୍ରତୀୟମାନ କାରଣ ତାଙ୍କ ଭାଷାରେ—

"Let us go there you and I
When the evening is spread out
Against the sky
Like a patient etherized on a table."

ମୂଳ କଥା ହେଲା ଆଜିର କବି ରୂପକଳ୍ପର ଏକ ନୂତନ ଦିଗନ୍ତ ପଛରେ ଧାଇଁ ଚାଲିଛି । ଅତୀତରେ ଯେଉଁ ରୂପକଳ୍ପଗୁଡ଼ିକର ଆଦର ଥିଲା, ଆଜି ଭୌତିକବାଦୀ ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବରେ ସେଗୁଡ଼ିକପ୍ରତି ସ୍ନେହ କମିଛି । ତେବେ ସମ୍ପୂର୍ଣ୍ଣ ରୂପେ ସେଗୁଡ଼ିକୁ ତ୍ୟାଗ କରିବା ସମ୍ଭବ ହେଉନ ବୋଲି ମନେହୁଏ । ବରଂ ଉକ୍ତ ରୂପକଳ୍ପଗୁଡ଼ିକ ହିଁ କବିତାର ପ୍ରାଣକେନ୍ଦ୍ର ପରି ଏବେ ବି ରହିଛି, ଯଦିଓ ଭୌତିକବାଦୀ ସଭ୍ୟତା ଓ ସମାଜର ପ୍ରଭାବରୁ କବିତାରେ ନୂତନ ରୂପକଳ୍ପର ସମାବେଶ ଆଧୁନିକ

ଓଡ଼ିଆ କବିତାରେ ଭାବ (Emotion)ର ପରିସରକୁ ବ୍ୟାପକ କରିଛି। ନିମ୍ନଲିଖିତ କବିତାପଂକ୍ତି ଜରିଆରେ ଏହି ଉକ୍ତିଟିକୁ ପ୍ରତିପାଦିତ କରାଯାଇପାରେ।

"କେତେ କେତେ ରଶ୍ମିର ଶସ୍ୟ ଆଜି ପୂର୍ଣ୍ଣ
ତାରାର ତାରବାଡ଼ରେ ପ୍ରଣୟର ବଭିନ୍ନ ଖାଲି ଶୂନ୍ୟର ଜ୍ୟାମିତି।"

(କବିତାର କକ୍‌ଲେଟ୍ ପାର୍ଟି—ଅନନ୍ତ ପଟ୍ଟନାୟକ)

ଏଥିରେ 'ତାରା' ସହିତ 'ତାରବାଡ଼', 'ପ୍ରଣୟ' ସହିତ 'ଜ୍ୟାମିତି'ର ମଧୁର ସମାବେଶ ପାଠକଙ୍କ ମନରେ ଅନୁଭୂତିର ନୂତନ ରହସ୍ୟ ଉଦ୍‌ଘାଟନ କରୁଥିଲେ ହେଁ ଚିରାଚରିତ ରୂପକଳ୍ପଗୁଡ଼ିକ ହିଁ (ତାରା, ପ୍ରଣୟ) ନୂତନ ରୂପକଳ୍ପଗୁଡ଼ିକୁ (ତାରବାଡ଼, ଜ୍ୟାମିତି) ଜୀବନ୍ତ କରି ତୋଳିଛି। କେବଳ ତାରବାଡ଼ ଓ ଜ୍ୟାମିତି ଉପରେ କବିତା ଲେଖି ଉକ୍ତ କବିତାକୁ ଉପଭୋଗ୍ୟ କରାଇବା ସମ୍ଭବ ହେବ ନାହିଁ; କାରଣ ଉକ୍ତ କବିତାରେ ମାନବୀୟତା (Humanness)ର ଅଭାବ ରହିଯିବ। ଏହି ଯୁକ୍ତିର ସପକ୍ଷରେ ସୁବିଖ୍ୟାତ କବି ସ୍ପେନ୍‌ଡର (Spender)ଙ୍କ 'The Express' କବିତାର କେତେକ ପଂକ୍ତି ଉଦ୍ଧାର କରାଯାଇପାରେ।

"After the first powerful plain manifesto
The black statement of pistons,
without more fess,
But gliding like a queen, she leaves
the station."

ଉଦ୍ଧୃତ କବିତା ପଂକ୍ତିଟିର ପ୍ରାଣକେନ୍ଦ୍ର ହେଲା "gliding like a queen"। ଏକ୍‌ସପ୍ରେସ ରେଲଟି ନିଜର ଯାନ୍ତ୍ରିକ ସୌନ୍ଦର୍ଯ୍ୟରେ କେବଳ ସୁନ୍ଦର ହୋଇ ନ ପାରେ। ଏହାର ସୌନ୍ଦର୍ଯ୍ୟ ରାଣୀପରି ହୋଇଥିବା ହେତୁ ଏହା ଜନମନଲୋଭା ହୋଇପାରିଛି। ତେଣୁ ସଚ୍ଚି ରାଉତରାୟ ଯେଉଁ ପ୍ରଶ୍ନ ପଚାରିଛନ୍ତି ଯେ,

"ଚନ୍ଦ୍ର, ଚକୋର, କମଳିନୀ କମ୍ବୁ ସିଂହକଟୀ ପ୍ରଭୃତି ଉପମା ଆଜି ଘଷରା ପଇସା ପରି ଅଚଳ ନୁହନ୍ତି କି? ସେମାନେ ଆଧୁନିକ ମନରେ କିଛି ସ୍ପନ୍ଦନ ବା ସମ୍ବେଦନ ସୃଷ୍ଟି କରନ୍ତି କି?"

(ଆଧୁନିକ ସାହିତ୍ୟରେ ଆନ୍ତର୍ଜାତିକ ଓ ଲୌକିକ ପ୍ରତିମା,
କବିତା ୧୯୭୨, ପୃ: ୬୨)

ତା'ର ଉତ୍ତରରେ ଏତିକି କୁହାଯାଇପାରେ ଯେ ସେଗୁଡିକର ସ୍ପନ୍ଦନ ସୃଷ୍ଟିକାରଣୀ ଶକ୍ତିର ମୃତ୍ୟୁ ସମ୍ଭବ ନୁହେଁ । ବରଂ ଉକ୍ତ ରୂପକଳ୍ପ ସହିତ ଆଧୁନିକ ପରିବେଶ ସୃଷ୍ଟି କରୁଥିବା ରୂପକଳ୍ପ ହିଁ କବିତାକୁ ଉନ୍ନତ ଓ ବ୍ୟାପକ କରିବାରେ ସାହାଯ୍ୟ କରିବ ।

ଆଧୁନିକ ଓଡ଼ିଆ କବିତାର ମନନଶୀଳତା ବା ବିଚାରଶୀଳତା ସମ୍ବନ୍ଧରେ କିଛି କହିବା ବିଧେୟ ମନେ କରୁଛି । କବିତାଗୁଡ଼ିକୁ ପଢ଼ିଲି ବେଳେ ମନେହୁଏ ସତେ ଅବା କବି ପ୍ରତ୍ୟେକ ଅନୁଭୂତିକୁ ଯୁକ୍ତି ମାଧ୍ୟମରେ ବାନ୍ଧି ଧରିବା ପାଇଁ ବା ପ୍ରତିଷ୍ଠିତ କରିବା ପାଇଁ ଜୀବନ ମରଣ ସଂଘର୍ଷରେ ନିଜକୁ ନିଯୁକ୍ତ କରିଚାଲିଛନ୍ତି । ଏପରିକି ପ୍ରେମକୁ ହୃଦୟର ବସ୍ତୁ ନ କରି ବିଚାରର ବସ୍ତୁ କରାଯିବାଦ୍ୱାରା ଏହା ଏକ ନୂତନ ଅନୁଭୂତିରେ ପରିଣତ ହୋଇଛି ।

ଉଦାହରଣ ସ୍ୱରୂପ ନିମ୍ନଲିଖିତ କବିତାପଂକ୍ତିକୁ ବିଚାର କରାଯାଇପାରେ—

> "ମିସ୍ ତୁମେ ଚିରନ୍ତନ ମିସ୍ ଦାସ ମିସ୍ ରାୟ
> ମିସ୍ ସବୁ ନିଖିଳର ସପନ ଭିତରେ
> ଆଜି ଡେସ୍କୁ ଆକାଶର ବାଦ ଆଉ ଏ ବାଲିର ବିବାଦ ଭିତରେ
> ମୁଁ ତୁମକୁ ପ୍ରେମ କରେ, ଛଟି ଲେଖେ, ତୁମ ର ମୁଁ ସମାଧାନ,
> ତୁମର ମୁଁ ସମନ୍ୱୟ କରେ—"
>
> (କପୋତ କପୋତୀ, ଗୁରୁପ୍ରସାଦ୍ ମହାନ୍ତି)

ଏଠାରେ କବି ବିବାହ ଉପରେ ଗୁରୁତ୍ୱ ଆରୋପ ନ କରି ନାରୀର ପ୍ରେମରେ ଲିପ୍ତ ହେବାର ଆଧୁନିକ ଦୃଷ୍ଟିକୋଣ ଉପରେ ଆଲୋକପାତ କରିଛନ୍ତି । ସଂକ୍ଷେପରେ କହିବାକୁ ଗଲେ ଏଲିୟଟ୍‌ଙ୍କ 'Typist Lady'ର ଦୈହିକ ଗୁଣ ଥିଲି ଭଳି ନାରୀ ପସନ୍ଦ ଯୋଗ୍ୟ । ଆଧୁନିକ ଓଡ଼ିଆ କବିତାରେ ଯେଉଁ କେତେକ ନାରୀକବି ସୁପ୍ରତିଷ୍ଠିତା, ସେମାନେ ମଧ୍ୟ କହନ୍ତି—

> "କାମନା ଜାଗ୍ରତ ହୁଏ, ତନୁ ଦେଖି ଅବା ହେଉ ମନ,
> ରୂପାନ୍ଧେ ଉନ୍ମତ୍ତ ଚିତ୍ତ କହେ କେବେ ମନର ବିଚାର ?"
>
> (ପ୍ରଶ୍ନ, ବ୍ରହ୍ମୋତ୍ରୀ ମହାନ୍ତି)

ନାରୀ ପୁରୁଷର ସମ୍ପର୍କ Life forceର (ବର୍ଣ୍ଣାଡ଼ଶ'ଙ୍କ Man and Superman ନାଟକର ମୂଳତଥ୍ୟ) ବଶୀବର୍ତ୍ତୀ । ତେଣୁ ଏହାର ପରିଣତି ଯଦି ଭ୍ରୂଣ-ସଂସ୍ଥାନ ହୁଏ ତେବେ ମଙ୍ଗଳକର ।.

"ଦୂର ବାର୍ଲି କ୍ଷେତେ ପୁଷ୍କର ମେଘର ଛାୟା ।
ମନେ ପ୍ରଶ୍ନ ଆସେ
ଏଇ ଯେ, ସମ୍ଭାବ୍ୟ ଭ୍ରୂଣର ସଂସ୍ଥାନ ହୋଇଲା ।
ତା'ର ପରିଣତି କ'ଣ ଅତିମାନବର ଆବିର୍ଭାବ ?"

(ହସ୍ତିସ୍ତୂପ, ପୃ ୯୯: ବିନୋଦ ଚନ୍ଦ୍ର ନାୟକ)

ଉପରୋକ୍ତ କବିତା ପଂକ୍ତିରେ ଯେଉଁ ସ୍ୱଗତୋକ୍ତି ତାହା ଜାଗତିକ ବିକାଶବାଦର ଅତିନ୍ଦ୍ରୀୟ ଚେତନା ନିମିତ୍ତ ଉଦ୍ଦିଷ୍ଟ ।

ଅନ୍ୟ ଏକ ଦିଗ ହେଲା ସମାଜ-ସଚେତନତା ତଥା ଜୀବନର ବାସ୍ତବତା ସହିତ ନିଜକୁ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ କରିବାର ପ୍ରବଳ ବାସନା ।

"ସେମାନେ ନାହାନ୍ତି ଶୁଣି
ପ୍ରଚ୍ଛନ୍ନ ସହର,
ନୀରବ ବିକାର
ଏ ଶ୍ୱେତ କାଗଜ ତଳେ ।"

(ଏକ ମ୍ୟୁନିସିପାଲ୍ଟି ନିର୍ବାଚନରେ, ସଚ୍ଚି ରାଉତରାୟ)

କିମ୍ବା

"ଆଃ, କିନ୍ତୁ ଏମାନେ କିଏ ସେ ?
ହାଟରୁ ବାହୁଡ଼ିଥିବା ମଫସଲ ଗରାଖ ଏମାନେ,
ହାତରେ ଲଣ୍ଡନ ବାଡ଼ି
ଯଦି ଓ ମୁଁ ଛୁଇଁ ଖାଲି ଦେଖେଁ
କେଡ଼େ ନିଦା ଛୁଇ ସବୁ ।"

(ମଟର ଭିତରୁ, ରମାକାନ୍ତଙ୍କ ସୌନ୍ଦର୍ଯ୍ୟ, ରମାକାନ୍ତ ରଥ)

କିମ୍ବା

"ଗୋରୁପଲ, ଗାଈରଖୁଆଳ
ମୁଣ୍ଡରେ ଜାଳେଣି କାଠ ଶ୍ରମିକର ଦଳ ।
ସାଇକେଲ୍ ଆରୋହୀ ଓ ବସ୍ ଯାତ୍ରୀ ପଦ ଯାତ୍ରୀ

ସମସ୍ତ ମାଇଲ୍ ଖୁଣ୍ଟି
ଗଛ, ବୃଛ, ଲଟା, ଫୁଲଫଳ ।
ସବୁ ଧାଇଁ ଗ୍ଲୁଲଛନ୍ତି ମିଶିବାକୁ
ବ୍ଲୁଲମାନ ସେଇ ଗୋଟେ ଆଗ୍ନେୟ ସ୍ଥିତିରେ ।''

(ବସ୍‌ର ଦର୍ପଣରେ ସୂର୍ଯ୍ୟାସ୍ତ, ସୀତାକାନ୍ତ ମହାପାତ୍ର)

ପ୍ରତ୍ୟେକଟିରେ ଆମେ ଦେଖୁଁଛେ ସାମାଜିକ ପ୍ରିସ୍ଥିତିରେ ଜୀବନର ନିଗୂଢ଼ ରହସ୍ୟ ଉଦ୍‌ଘାଟନ କରିବାର ତୀବ୍ର ପ୍ରୟାସ ।

ପ୍ରତ୍ୟେକ ଲବ୍‌ଧପ୍ରତିଷ୍ଠ କବି ଓଡ଼ିଆ ଭାଷାକୁ ଏକ ନୂତନ ଶୈଳୀରେ ରଞ୍ଜିତ କରିବା ପାଇଁ ଚେଷ୍ଟିତ । ବସ୍ତୁତଃ ସେମାନଙ୍କ କବିତାରେ ବହୁ ଭାଷାଗତ ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ ଯାହା —"ମୌଖିକ ଶବ୍ଦ ସଙ୍ଗେ କାବ୍ୟଶବ୍ଦର ଯଥାସମ୍ଭବ ସମନ୍ୱୟ" ( ନାନ୍ଦୀମୁଖ, ପାଣ୍ଡୁଲିପି, ସଚ୍ଚି ରାଉତରାୟ ) ଘଟାଇ ଗଦ୍ୟ ଛନ୍ଦଗୁଡ଼ିକରେ ମଧ୍ୟ ସଙ୍ଗୀତର ମୂର୍ଚ୍ଛନା ତୋଳିବାରେ ସାହାଯ୍ୟ କରନ୍ତି । କେତେଗୁଡ଼ିଏ ଶବ୍ଦକୁ ଯଥା ସମୟରେ ଏକାଧିକବାର ବ୍ୟବହାର କରିବାର ଅଭ୍ୟାସ ଏହା ମଧ୍ୟରୁ ଅନ୍ୟତମ । ଏହି ଶୈଳୀର ବିଶିଷ୍ଟ ସଦୁପଯୋଗ ସଚ୍ଚିଦାନନ୍ଦଙ୍କ ପାଖରୁ ଆରମ୍ଭ ହୋଇ ବିଶେଷ ଲୋକପ୍ରିୟ ହୋଇପାରିଛି । ଉଦାହରଣ ସ୍ୱରୂପ—

"ବର୍ଷାଢ଼୍ୟ ଜୁଲାଇ ପରେ
ସ୍ତବ୍‌ଧ ନୀଳ ଇନ୍ଦ୍ର ନୀଳ ଶବ୍ଦ ।
ଚକ୍ ଚକ୍ ସାଦା ଶବ୍ଦ ।"

(ଉତ୍ତର ତିରିଶ, ସଚ୍ଚି ରାଉତରାୟ)

କିମ୍ବା

"କେଉଁଠି କଥାର ସ୍ମୃତି, ସ୍ମୃତିର ବା ଶବ୍ଦ !
ଟିକି ଟିକି ଛୁଡ଼ା ରୂପକଥା ।
ଆକେ ଥାକେ ବିସ୍ମୃତିର ନେଳୀ ପଲସ୍ତରା,
ପୁଣି କେତେ ସ୍ମୃତିର ସିରସ୍ତା ।"

(ଶବ୍ଦ, ସଚ୍ଚି ରାଉତରାୟ)

ଏ ପ୍ରକାର ଭାଷାଗତ ବୈଶିଷ୍ଟ୍ୟର ଗଭୀର ଛାପ ପଡ଼ିଛି ଲବ୍‌ଧ-ପ୍ରତିଷ୍ଠ କବିମାନଙ୍କ ଭିତରୁ ଗୁରୁପ୍ରସାଦଙ୍କ 'କାଳ ପୁରୁଷ', ରମାକାନ୍ତଙ୍କ

'ବାଘଶିକାର' ଓ ସୀତାକାନ୍ତଙ୍କ 'ମାଟି ଓ ମଣିଷ'ରେ । ଅବଶ୍ୟ ପ୍ରତ୍ୟେକେ ନିଜର ସ୍ୱାତନ୍ତ୍ର୍ୟରେ ଉଦ୍‌ଭାସିତ । ବିଶେଷ କରି ରମାକାନ୍ତଙ୍କ ସ୍ୱାତନ୍ତ୍ର୍ୟ ସମ୍ବନ୍ଧରେ ନ କହି ରହି ହୁଏ ନା । କବିତାପଂକ୍ତିର ଆରମ୍ଭ, ମଧ୍ୟଭାଗ ବା ଶେଷରେ 'ଓ', 'କି', 'ଏବଂ', 'ବି' ଇତ୍ୟାଦି କେତୋଟି ଶବ୍ଦର ଗୁରୁତ୍ୱପୂର୍ଣ୍ଣ ବ୍ୟବହାର ଦ୍ୱାରା ପାଠକର ଭାବନାର ଖିଅରେ ନୂତନ ଚେତନାର ଇନ୍ଦ୍ରଜାଲ ସୃଷ୍ଟି କରିବାକୁ ସେ ସକ୍ଷମ ହୋଇଥା'ନ୍ତି । ଏହା ମଧ୍ୟ ଏକ ପ୍ରକାର ଛନ୍ଦୋମୟ ଉଚ୍ଛ୍ୱାସ ସୃଷ୍ଟି କରିବାରେ ସହାୟକ ହୋଇଥାଏ । ଉଦାହରଣ ସ୍ୱରୂପ ନିମ୍ନଲିଖିତ କବିତାପଂକ୍ତିଗୁଡ଼ିକ ନିଆ-ଯାଇପାରେ :

> "ତା'ପରେ ଫେରାକୁ ଗଲ୍ (କେଉଁଠାକୁ ? ଘାଣ୍ଟି ଲାଭ ନାହିଁ)
> ଆମେ ବୁଡ଼ିହେଁ, ଏବଂ ଆମେ ନାଚ ନାହୁଁ ଯଦିଓ ତେବେ ବି
> ସେ ଗୀତ ବାଜଣା ଶବ୍ଦ ଖାଉଥିଲା କାନରେ ଅତଡ଼ା ;
> ସାଙ୍ଘାତିକ ଅଣ୍ଡା ହାଓ୍ୱା ମୁହଁ, ପାଖେ ପିଠି ହେଉଥିଲା
> ଓ ଗ୍ଲାଡ ଭିତରେ ଏକ ମର୍ମାନ୍ତିକ ଚହଲର ଦାଗ ।
>
> (ଅନ୍ୟ ଦିନ, ରମାକାନ୍ତ ରଥ)

କିମ୍ବା

> "ଶୁଖିଲା ପତ୍ରଙ୍କ ଭଙ୍ଗା ଶବ୍ଦେ କାଳେ ବାଘ ହୁରୁଡ଼ିବ, ଅସ୍ତ୍ରେ ଗୁଳି ।"
> ଶବ୍ଦଙ୍କ କୁକୁର ଭୁକା ଶୁଣି କାଳେ ବାଙ୍କୋଇ ଫେରିବ, ତୂନି ହୁଅ ।
>
> (ବାଘଶିକାର, ରମାକାନ୍ତ ରଥ)

ଏ ପ୍ରବନ୍ଧର ପରିଶେଷରେ ପ୍ରତୀକଧର୍ମୀ (Symbolist) ଓଡ଼ିଆ ଆଧୁନିକ କବିତା ସମ୍ବନ୍ଧରେ କିଛି କୁହାଯାଇ ପାରେ । ପ୍ରତୀକର ବ୍ୟବହାର ନେଇ ବିଶେଷ ଆଲୋଚନା ନ କରି ଏତିକି କହିଲେ ଚଳିବ ଯେ କେବଳ ଶବ୍ଦ ଜରିଆରେ ମଣିଷମନ, ହୃଦୟ ତଥା ବିଶ୍ୱଜୀବନର ନିଭୃତତମ କନ୍ଦରର ରହସ୍ୟ ଉଦ୍‌ଘାଟନ କରିବା ସମ୍ଭବ ନୁହେଁ । ସଚ୍ଚି ରାଉତରାୟଙ୍କ ଭାଷାରେ —

> "ବାସ୍ତବତାର ପୂର୍ଣ୍ଣ ଉଦ୍‌ଘାଟନ ଯେ କେବଳ ବୁଦ୍ଧିଦ୍ୱାରା ସମ୍ଭବ ନୁହେଁ, ଏହା ଏକ ଅନୁବୋଧ୍ୟ ସତ୍ୟ ।··· ତେଣୁ ବୁଦ୍ଧିର ଇଲାକାର ବାହାରେ ବାସ୍ତବତାର ହେଉଁ ଅଂଶ ରହିଗଲା— ଯାହାକୁ କି ମାମୁଲି ଶବ୍ଦମାନେ ତାଙ୍କର ସୀମାବଦ୍ଧ ଅର୍ଥ ସାହାଯ୍ୟରେ ପ୍ରକାଶ କରିପାରିଲେ ନାହିଁ – ତାକୁଇ ଉପଲବ୍ଧି

କରିବାକୁ ହେଲେ ସହଜାତ ପ୍ରବୃତ୍ତି ବା intuitionର ସାହାଯ୍ୟ ଗ୍ରହଣ କରିବା ହିଁ ହେଉଚି ଏକମାତ୍ର ପନ୍ଥା ।"

(ନାଂଦୀମୁଖ, ପାଣ୍ଡୁଲିପି, ସଚ୍ଚି ରାଉତରାୟ)

ଏଲିୟଟ୍‌ଙ୍କ ରଚିତ The Waste Landର ସଫଳତା ପରେ ଆଧୁନିକ ଓଡ଼ିଆ କବିମାନଙ୍କ ମଧ୍ୟରୁ ଗୁରୁ ପ୍ରସାଦ ଓ ରମାକାନ୍ତ ସେମାନଙ୍କ କବିତାରେ ପ୍ରତୀକର ବ୍ୟାପକ ବ୍ୟବହାର ଆରମ୍ଭ କଲେ । ଗୁରୁପ୍ରସାଦଙ୍କ 'କାଳପୁରୁଷ' ଭାରତୀୟ ସଂସ୍କୃତି ସହିତ ସଂଶ୍ଲିଷ୍ଟ କେତେଗୁଡ଼ିଏ ପ୍ରତୀକ ମାଧ୍ୟମରେ ଏଲିୟଟୀୟ ଚିନ୍ତାଧାରାକୁ ଓଡ଼ିଆ ପାଠକଙ୍କ ସମ୍ମୁଖରେ ପରିବେଷଣ କରି ପାରିଛି । ରମାକାନ୍ତଙ୍କ 'ଅନେକ କୋଠରୀ'ରେ ପ୍ରତୀକର ବ୍ୟବହାର ସୁଦୂର ପ୍ରସାରିତ ଏବଂ ବହୁ ସ୍ଥାନରେ ପ୍ରଶଂସନୀୟ । କବିତା ସଙ୍କଳନର ଶେଷ ଭାଗରେ 'ପୃଷ୍ଠବନ୍ଧ' ଜରିଆରେ କେତେକ କବିତା ପାଇଁ ଟୀକା ଟିପ୍ପଣୀ ଦେବା ଶ୍ରେୟସ୍କର ମନେ କରିଛନ୍ତି ।

Personal will be appropriate

ବହୁ ପ୍ରତୀକ ବ୍ୟକ୍ତିଗତ (Private Symbol) ପରି ମନେ ହୁଏ, ଯଦ୍ଦ୍ୱାରା ତାକୁ ହୃଦୟଙ୍ଗମ କରିବା ସମ୍ଭବ ହୁଏ ନା । ଉଦାହରଣ ସ୍ୱରୂପ 'ବିମାନ ଦୁର୍ଘଟଣାରେ ମୃତ୍ୟୁ' କବିତାଟିକୁ ନିଆଯାଇ ପାରେ । ରମାକାନ୍ତଙ୍କ ଟିପ୍ପଣୀ ଅନୁଯାୟୀ—

"ବିମାନ ହେଉଛି ଦେହର ପ୍ରତୀକ । "

(ଅନେକ କୋଠରୀ, ପୃଷ୍ଠା ୭୬, ରମାକାନ୍ତ ରଥ)

କିନ୍ତୁ ଏହି ପ୍ରତୀକଟି ଯୁକ୍ତିଯୁକ୍ତ ହେଲେ ହେଁ ସାଧାରଣ ପାଠକ ପକ୍ଷେ ଦୁର୍ବୋଧ୍ୟ, କାରଣ ଏହା ବ୍ୟକ୍ତିଗତ ଚିନ୍ତାଧାରାରୁ ସୃଷ୍ଟ । ଏହି ପ୍ରତୀକଟିକୁ ଗ୍ରହଣଯୋଗ୍ୟ କରାଇବାକୁ ହେଲେ ଏହାର ଏକ ପରମ୍ପରା ସୃଷ୍ଟି କରିବାକୁ ପଡ଼ିବ । ପରମ୍ପରାହୀନ ପ୍ରତୀକଦ୍ୱାରା ପାଠକ ଓ ଲେଖକ ମଧ୍ୟରେ ଭାବର ଆଦାନ ପ୍ରଦାନ (Communication of emotions) ସମ୍ଭବ ନୁହେଁ । ସହଜାତ ପ୍ରବୃତ୍ତି (Intuition) ଦ୍ୱାରା ହୃଦୟଙ୍ଗମ କରି ପାରିଲେ ଭଲ ପ୍ରତୀକ ହିଁ ଓଡ଼ିଆ ସାହିତ୍ୟକୁ ପରିପୁଷ୍ଟ କରିପାରିବ ।

———

# ମୋ ଦୃଷ୍ଟିରେ
# ସାଂପ୍ରତିକ କବିତା—ଏକ ଦିଗନ୍ତ

ଅଧ୍ୟାପକ ସୌରୀନ୍ଦ୍ର ବାରିକ

ଆଧୁନିକ ଓଡ଼ିଆ କବିତା ଦୁଇଟି ବିରୋଧାଭାସ ଉପରେ ପ୍ରତିଷ୍ଠିତ । ପ୍ରଥମତଃ ଆଧୁନିକ କବିତାର ପାଶ୍ଚାତ୍ୟ ପୃଷ୍ଠଭୂମିକୁ ବିଚାର କଲେ ଯେଉଁସବୁ ଅର୍ଥନୈତିକ, ରାଜନୈତିକ, ଦାର୍ଶନିକ ପୁଣି ଆଧ୍ୟାତ୍ମିକ ଝଡ଼ ଦ୍ୱାରା ଏହା ପ୍ରଭାବିତ, ତାହା ଓଡ଼ିଆ କବି ଓ ତା'ର ସମାଜକୁ ବିଶେଷ ଭାବରେ ପ୍ରଭାବିତ କରି ନାହିଁ । ଦ୍ୱିତୀୟତଃ, ଐତିହ୍ୟ ସହ ସମ୍ପର୍କ ଏବଂ ଏ ସମ୍ପର୍କରୁ ବିପ୍ଳବ, ଯାହା ଆଧୁନିକ କବିତାର ରୂପରେଖକୁ ବଦଳାଇ ଦେବା ସଙ୍ଗେ ସଙ୍ଗେ ଐତିହ୍ୟ ସହ ଏକ ଜୀବନ୍ତ ଯୋଗସୂତ୍ର ସ୍ଥାପନ କରି ପାରିଛି, ତାହା ଓଡ଼ିଆ କବିତାରେ ସମ୍ଭବ ହୋଇ ପାରି ନାହିଁ । କାରଣ ଏ କବିତାର ବିକାଶ ପାଇଁ ଜଳବାୟୁ ସୃଷ୍ଟି ହେବା ପୂର୍ବରୁ ଏହା ଆମଠାରେ ଆରୋପିତ ହୋଇଛି । ଫଳରେ ଆମ ଆବେଗରେ ଆଲୋଡ଼ନ ସୃଷ୍ଟି ନ କରି ଏହାର ଆବେଦନ ଅଧିକାଂଶ ସ୍ଥଳରେ ବୌଦ୍ଧିକ ହୋଇଯାଇଛି । କିନ୍ତୁ ଅନ୍ୟ ଦିଗରୁ ବିଚାର କଲେ ଜଣାଯାଏ, ଆଜିର ଓଡ଼ିଆ କବିତା ଭୌଗୋଳିକ ପରିଧି ଭିତରେ ସୀମାବଦ୍ଧ ନ ହୋଇ ଆନ୍ତର୍ଜାତିକ ସମସ୍ୟାକୁ ନିଜର କରି ଅଧିକ ବ୍ୟାପ୍ତ ଓ ନିଜର ରୂପରେଖକୁ ବଦଳାଇ ପାରି ଅଧିକ ପ୍ରାଞ୍ଜଳ ଓ ବିଶ୍ୱସ୍ତ ହୋଇପାରୁଛି । ତେଣୁ ଗୋଟିଏ ଦିଗରେ ଏହା କବିର ତା' ପରମ୍ପରା ପ୍ରତି ଉଦାସୀନତା ଏବଂ ନିଜ ଅନୁଭୂତି ପ୍ରତି ଛଳନାର ସୂଚନା ଦେଉଥିଲା ବେଳେ ଅନ୍ୟ ଦିଗରେ ଏହା କବିର ବିଶ୍ୱ-ଚେତନାର ସୂଚନା ଦିଏ ।

ପ୍ରଶ୍ନ ଉଠିପାରେ ଗୋଟିଏ ବାହ୍ୟ ଚେତନାକୁ କବି କେତେ ଦୂର ଗ୍ରହଣ କରିପାରେ ଏବଂ ଏକ ନୂଆ ଚେତନା ( ଯଦିଓ ଏହା କବିର ନିଜ ସମାଜ ସୃଷ୍ଟ ନୁହେଁ ) ନିଜର କରିବାରେ କବିତା କେତେ ଦୂର ସ୍ପଷ୍ଟ ବା

ବ୍ୟାପ୍ତ ହେବ । ସବୁ ଯୁଗରେ ସବୁ କବି ନୂତନତାକୁ ସ୍ୱାଗତ କରିଛନ୍ତି । ଏ ସ୍ୱାଗତ ଯଦି ଅନୁକରଣରେ ପରିଣତ ହୁଏ, ତେବେ ତାହା ହେବ କବିର ଦୁର୍ବଳତା ; କିନ୍ତୁ ଏ ନୂତନତା ଯଦି କବିର ଅନୁଭୂତିରେ ସାମିଲ୍ ହୋଇଯାଏ ତେବେ ଜନ୍ମ ନେବ ଏକ ନୂଆ ସୃଷ୍ଟି ।

ଆଧୁନିକ କବିତାର ଦୁଇଟି ଅଭିମୁଖ୍ୟ । ବିଂଶ ଶତାବ୍ଦୀରେ ଜୀବନର ଧାରା ଏପରି ଦ୍ରୁତବେଗରେ ଧାବିତ ଏବଂ ମଣିଷର ଅନୁଭୂତି ଅଳ୍ପ ସମୟ ଭିତରେ ଏମିତି ପରିବର୍ତ୍ତନର ସମ୍ମୁଖୀନ ହେଉଛି ଯେ, ଏହାର ତୁଳନା ଇତିହାସରେ ନାହିଁ । ଏ ପରିବର୍ତ୍ତନ ଆଣିଛି ଅନୁଭୂତିରେ ଜଟିଳତା ଏବଂ ଦୃଷ୍ଟିକୋଣରେ ନୂତନତା । ଦୃଷ୍ଟିକୋଣର ଏ ନୂତନତା ନିଜ ପ୍ରତି, ସମାଜ ପ୍ରତି ଏପରିକି ବିଶ୍ୱ ବ୍ରହ୍ମାଣ୍ଡ ପ୍ରତି । ଏଥିପାଇଁ ଦାୟୀ ବିଜ୍ଞାନ । ଏଇ ଦୁଇ ପ୍ରକାର ପରିବର୍ତ୍ତନ—ଗୋଟିଏ ବାହ୍ୟିକ, ଅନ୍ୟଟି ମାନସିକ—ଉଭୟର ଛବି ଆମେ ଆଧୁନିକ କବିତାରେ ପାଉଁ ।

ବିଜ୍ଞାନର ଚମତ୍କାରିତା-ଜନିତ ଜୀବନର ଅଗ୍ରଗତି ଭିତରେ ମଧ୍ୟ ଦୁଇଟି ଭୟାବହ ବିଶ୍ୱଯୁଦ୍ଧ ମଣିଷକୁ କେମିତି ଅସହାୟ କରି ଦେଇଛି । ସମ୍ପୂର୍ଣ୍ଣ ବିପରୀତମୁଖୀ ଧାରା ଭିତରେ ଆଜିର ମଣିଷ ଏକ ତ୍ରିଶଙ୍କୁ ଅବସ୍ଥାରେ ପଡ଼ିରହିଛି । ପରିବର୍ତ୍ତିତ ପରିସ୍ଥିତି ଭିତରେ ଏକ ନୂଆ ମଣିଷ ଜନ୍ମଲାଭ କରିଛି । ଏ ନୂଆ ମଣିଷ କେବଳ ବାହ୍ୟିକ ପରିବର୍ତ୍ତନ ଯୋଗୁଁ ନୁହେଁ, ବରଂ ତା' ଅନ୍ତର୍ନିହିତ ଗୁଣ ମଧ୍ୟ ବଦଳି ଯାଇଛି । ଯୁକ୍ତି-ନିୟନ୍ତ୍ରିତ ଯାନ୍ତ୍ରିକ ଯୁଗରେ ମଣିଷ ପାଖରେ ବଞ୍ଚିବାଟା ସବୁଠାରୁ ବଡ଼ ହୋଇ ଉଠିଛି । ବଞ୍ଚିବାର ଯନ୍ତ୍ରଣାକୁ ହାଡ଼େ ହାଡ଼େ ଅନୁଭବ କରି ସେ ବୁଝିଛି ବଞ୍ଚିବା ସମଷ୍ଟିଗତ ପ୍ରକ୍ରିୟା ନହେଁ, ଏହା ଏକ ବ୍ୟକ୍ତିଗତ ଯନ୍ତ୍ରଣା । ତେଣୁ ଆଜି ସେ ଅହଂ-ଚେତନ । ସେ ଯୁକ୍ତି ବିରୋଧରେ ଯେତେ ସ୍ୱର ନ ତୋଳେ ଆଧୁନିକ ଜୀବନରେ ଯୁକ୍ତିପ୍ରାଧାନ୍ୟ ହିଁ ତାର ଶରବ୍ୟ । ତେଣୁ ବିଜ୍ଞାନ-ପ୍ରଭାବିତ ପୃଥିବୀରେ କବି ବାଧ୍ୟ ହୋଇ ନିଜ ଭିତରେ ସଙ୍କୁଚିତ ହୋଇଯାଇଛି । କାରଣ ଯୁକ୍ତି ଆଉ ଇନ୍ଦ୍ରିୟ ପ୍ରଧାନ ଦୃଷ୍ଟିକୋଣରେ କାବ୍ୟିକ ଚେତନା ପ୍ରତି ସମ୍ମାନ କମି ଆସିଛି ଏବଂ ସମାଜରେ ନିଜ ଜୀବନର ମୂଲ୍ୟ କଳି ନ ପାରି କବି-ଚେତନାକୁ ବଞ୍ଚାଇ ରଖିବା ପାଇଁ ନିଜ ଭିତରେ ନିଜର ପୃଥିବୀ ସୃଷ୍ଟି କରିଛି । ଏ ବ୍ୟକ୍ତି ବିଶ୍ୱ ବାହ୍ୟିକ ଅର୍ଥ-ହୀନତା ଭିତରେ ଜୀବନର ମୂଲ୍ୟ ଖୋଜିବା ପୁଣି ଜୀବନର ସବୁ

ଅପ୍ରତ୍ୟକ୍ଷତା ଭିତରେ ସମ୍ଭାବନାକୁ କଳ୍ପନା କରିଆରେ ହୃଦୟଙ୍ଗମ କରି ଏକ ନୂଆ ମୂଲ୍ୟବୋଧ ସୃଷ୍ଟି କରିବା । ଯଥା—

"ଦରପୋଡ଼ା, ଅଧାଜଳାତନୁ, ମନହୃଦସ୍ପର
ଅଙ୍ଗାରିତ ତୂଳି ନେଇ
ଶୁଖିଲା, ସେମେଣ୍ଟା ଯେତେ ଆବେଗ ରଙ୍ଗରେ
ଦଗ୍ଧୀଭୂତ କଳାକାର
ମୁଁ ଆଙ୍କି ଗୃଲିଛି ଖାଲି ଆକାଶର ପୋଡ଼ା ଗାଲେ
ମୃତ ସ୍ୱପ୍ନ
ଆଗ୍ନେୟ ସ୍ପନ୍ଦନ ।"
(ସୀତାକାନ୍ତ ମହାପାତ୍ର)

କିମ୍ବା

"ରହିଯାଏ ଅଭାବ ତଥାପି
ବିବର୍ଣ୍ଣ ବେଲାର ପରେ ଡେଉ ପରେ ଭାଙ୍ଗେ ଯେତେ ଡେଉ
ବାଲିର ପାଚଣ୍ଠି ଯାଏ ଛିନ୍ନ ଭିନ୍ନ ସମତୁଲ ହୋଇ ।
ଓଠର ଗୋଲାପି ରଙ୍ଗ ଏ ଆକାଶ ଶୋଷି ଦେଲା ପରେ
ଯୋତାର ଗୋଲାପି ଦୃଶ୍ୟ ଏ ଡେଉରେ ଖସିଗଲା ପରେ
ରହିଯାଏ ଅଭାବ ତଥାପି,
ଏ ଗୁଢ଼ ଭିତରେ ମୋର ନିଶ୍ୱାସରେ ଶ୍ୱାସ-ପ୍ରଣାଳୀରେ
ମସ୍ତିଷ୍କ ଭିତରେ ମୋର ସବୁ ସୁଅ ସବୁ ଚେତନାରେ
ରହିଯାଏ ତଥାପି ଅଭାବ
ଝଡ଼ର ଓ ତୋଫାନର ବସନ୍ତରେ କୋଇଲି-ଡାକର
ବିବର୍ଣ୍ଣ ବେଲାର ଡେଉ ଏ ମନରେ ଗୋଟିଏ ପ୍ରଶ୍ନର ।"
(ଗୁରୁପ୍ରସାଦ ମହାନ୍ତି)

ତେଣୁ ଆଧୁନିକ କବିତା ତା' ପ୍ରଥମ ପର୍ଯ୍ୟାୟରେ ସମ୍ପୂର୍ଣ୍ଣ ବ୍ୟକ୍ତିଗତ ହୋଇଯାଇଥିଲା । ବ୍ୟକ୍ତିଗତ ପୃଥିବୀରେ ( ଯାହା କଳ୍ପନାର ଗଜଦନ୍ତୀ ମୀନାର ନ ଥିଲା ) କବି ତା'ର ବ୍ୟକ୍ତିଗତ ଆଦର୍ଶ ପ୍ରତିପାଦିତ କରି ପାରିଥିଲା । ଏଲିଅଟ୍ ଲଣ୍ଡନ୍ ପୋଲ ଭାଙ୍ଗି ପଡ଼ୁଥିବାର ଦେଖି ପାରି-ଥିଲେ ଏବଂ ଶେଷରେ ଧର୍ମ ଭିତରେ ମୁକ୍ତିର ପଥ ପାଇ ପାରିଥିଲେ । ସେହିପରି ପାଜ୍ ମେକ୍ସିକୋର ଏକ ନୂଆ ପୁରାଣ ଗଢ଼ି ପାରିଥିଲେ ଏବଂ ନେରୁଦା ଏକ ଆଦର୍ଶ ସାମ୍ୟବାଦ ଭିତରେ ଏକ ନୂଆ ସୃଷ୍ଟିର ସ୍ୱପ୍ନ ଦେଖି ପାରିଥିଲେ । ଜୀବନର ଅଧୋଗତି ଆଧ୍ୟାତ୍ମିକ ଦାରିଦ୍ର୍ୟ ଏବଂ ବିଜ୍ଞାନର

ଆସୁରିକ ଅଗ୍ରଗତିରେ ମାନବିକତାର ହତ୍ୟା ପ୍ରତି ସଚେତନ କବି ପାଖରେ ଏହା ଏକ ଦିଗରେ ନରକ ଚେତନା ଓ ଅନ୍ୟ ଦିଗରେ ତହିଁରୁ ମୁକ୍ତିର ସମ୍ଭାବନା ସମ୍ଭବ ହୋଇପାରିଥିଲା ।

ତେଣୁ ଆଧୁନିକ କବିତା ବ୍ୟକ୍ତି-କୈନ୍ଦ୍ରିକ କବିତା । ଏ ବ୍ୟକ୍ତି-କୈନ୍ଦ୍ରିକତାର କାରଣ କମ୍ବା ତା'ର ରୂପରେଖ ଏ ପ୍ରବନ୍ଧର ଆଲୋଚ୍ୟ ବସ୍ତୁ ନୁହେଁ । ଏ ବ୍ୟକ୍ତି କୈନ୍ଦ୍ରିକତା ପରବର୍ତ୍ତୀ ଯୁଗରେ କେମିତି ନୂଆ ରୂପ ଗ୍ରହଣ କଲା ତାହା ହିଁ ଆଲୋଚ୍ୟ । ଯୁଦ୍ଧ ପରେ ପରେ ପରମାଣୁ ବୋମା ବିସ୍ଫୋରଣଠାରୁ ଚନ୍ଦ୍ର ବିଜୟ ପର୍ଯ୍ୟନ୍ତ ପୃଥିବୀରେ କେବଳ ଘଟଣାର ଜୟଯାତ୍ରା ଚାଲିଛି । ଘଟଣା ପ୍ରବାହର ବେଗ ଏତେ କ୍ଷିପ୍ର, ଏତେ ଭିନ୍ନମୁଖୀ ଯେ ତା' ଆଗରେ କବିର ବାଣୀ ସଂପୂର୍ଣ୍ଣ ରୂପେ ଭିନ୍ନ ହୋଇ ଉଠିଛି । ଯୁଦ୍ଧରେ ମଣିଷ ମରଣକୁ ଅନୁଭବ କରିଥିଲା ; ସେ ଦେଖିଥିଲା ଧ୍ୱଂସର ଆଂଶିକ ତାଣ୍ଡବ ନୃତ୍ୟ । ମାତ୍ର ଆଜି ସୃଷ୍ଟି ନିଶ୍ଚିହ୍ନ ହୋଇଯିବାର ଭୟରେ ଜର୍ଜରିତ । ଆଜି ମଣିଷ ଏମିତି ଅସ୍ତ୍ରର ଅଧିକାରୀ ଯାହାର ଶକ୍ତି କବିଭାଷାରେ ଅବର୍ଣ୍ଣନୀୟ । ମଣିଷ ପୁଣି ଏହି ଶକ୍ତିର ପ୍ରଭୁ ନ ହୋଇ ଦାସ ହେବାକୁ ଯାଉଛି । ଏପରି ଅବସ୍ଥାରେ କବି ଆଜି ନିଜକୁ ଏକ ପ୍ରଭାବଶାଳୀ ବ୍ୟକ୍ତି ହିସାବରେ ଗ୍ରହଣ କରିପାରୁନି । ତେଣୁ ପୂର୍ବ କବିମାନଙ୍କ ପରି ବାହାରର କ୍ଷୟିଷ୍ଣୁ ପୃଥିବୀ ସହ ଟକ୍କର ଦେଇ ପାରିବା ଭଳି ନିଜର ଏକ ପୃଥିବୀ ସୃଷ୍ଟି କରି ପାରିବାର ହିମ୍ମତ ଆଜିର କବି ପାଖରେ ନାହିଁ । ତେଣୁ ସେ କେବଳ ନିଜ କ୍ଷୁଦ୍ର ପରିବେଶ ପାଖରେ ନିଜକୁ ସାମିଲ୍ କରିବାକୁ ଚେଷ୍ଟା କରୁଛି । ଆଜିର ବିପଦ ପାଖରୁ ନିଜ ମୁକ୍ତିର ଉପାୟ ଆଜି ତା' ପାଖରେ ନାହିଁ । ସେ କେବଳ ନିଜର କେତେକ ଆନ୍ତରିକ ମୁହୂର୍ତ୍ତ, ପ୍ରେମ, ସତ୍ୟ ଏବଂ ଯନ୍ତ୍ରଣାକୁ ନିଜ କ୍ଷୁଦ୍ର ପରିଧି ଭିତରେ ବଞ୍ଚାଇ ରଖିପାରେ । ଏଇ ଅନୁଭୂତିକୁ ନିହାତି ସରଳ ଭାବରେ ତା' ପରିବେଶ ପାଖରେ ପ୍ରକାଶ କରିପାରେ । କାରଣ ସବୁ ପ୍ରକାର ପରୀକ୍ଷା, ନିରୀକ୍ଷା ଆଜି ଦୁଏ ତ ଛଳନା ହିସାବରେ ପରିଗଣିତ ହେଉଛି ।

ଏହି ଦୃଷ୍ଟିରୁ ବିଚାର କଲେ ସାଂପ୍ରତିକ କବିତାର ତରୁଣତମ ଧାରା ବିଷୟରେ ସମ୍ୟକ୍ ଧାରଣା କରାଯାଇ ପାରେ । ସାଂପ୍ରତିକ କବିତା ଆଉ ପ୍ରଜ୍ଞା ବା ଯୁକ୍ତି ଆଧାରିତ ନ ହୋଇ ନିହାତି ସରଳ ହେବାକୁ ଯାଉଛି । ଏହି ସରଳତା ବ୍ୟକ୍ତିଗତ ପ୍ରତୀକ ସାହାଯ୍ୟରେ ଏକ ଜଟିଳ

ପରିସ୍ଥିତିର ପ୍ରକାଶ କରିବାର ଇଚ୍ଛାରୁ ନୁହେଁ ବରଂ ଏକ ବ୍ୟକ୍ତିର ନିତାନ୍ତ ଅନ୍ତରଙ୍ଗ ଅନୁଭୂତି ଯାହାକି ଚିରନ୍ତନ ଏବଂ ସାର୍ବଜନୀନ ସେହିସବୁ ପ୍ରକାଶ କରିବାର ଇଚ୍ଛାରୁ ଜାତ । ଏହା ଯେମିତି କବିର ପରିବେଶ ସହ ସଂଳାପ । ଏ ସଂଳାପ ଦାର୍ଶନିକ ନୁହେଁ । ସାଧାରଣ ଜୀବନର ମୂଲ୍ୟବୋଧ । ପ୍ରେମ, ପ୍ରକୃତି ସହ ସମ୍ବନ୍ଧ, ଜୀବନ ପୁଣି ମୃତ୍ୟୁଚେତନା ପ୍ରଭୃତି ଜୀବନର ସାଧାରଣ କଥାକୁ ନେଇ ଆଜିର କବିତା ଏବଂ ଏହାର କାମ୍ୟ ଚିରନ୍ତନ ସତ୍ୟ । ତେଣୁ କବି ଆଜି ଭବିଷ୍ୟତ ବକ୍ତା ନୁହେଁ, ବିଧାୟକ ନୁହେଁ, ସେ ସାଧାରଣ ମଣିଷଟିଏ, ଯାହାର ଜୀବନ ମୂଲ୍ୟହୀନ, ଭବିଷ୍ୟତ ଅନିଶ୍ଚିତ । ତେଣୁ ତା' କବିତା ପ୍ରଜ୍ଞା ନୁହେଁ, ବୌଦ୍ଧିକତା ନୁହେଁ ବରଂ କଳ୍ପନାର ହାତୁଡ଼ିରେ ପିଟା ମୂର୍ତ୍ତିମନ୍ତ ଅନୁଭୂତି ।

ଆଜି ଏହା ହିଁ ସାଂପ୍ରତିକ ବିଶ୍ୱ କବିତାର ରୂପ । ଏଇ ପରିପ୍ରେକ୍ଷୀରେ ଓଡ଼ିଆ କବିତା ବିଚାର୍ଯ୍ୟ । ଏହି ଶତାବ୍ଦୀର ଦ୍ୱିତୀୟ ଦଶକରୁ ପଞ୍ଚମ ଦଶକ ଭିତରେ ଇଂରାଜୀ କବିତା ଯେଉଁ ଯେଉଁ ଅବସ୍ଥା ଭିତର ଦେଇ ଗତି କରିଛି, ମାତ୍ର ଦୁଇଟି ଦଶକ ଭିତରେ ଓଡ଼ିଆ କବିତା ସେ ସବୁକୁ ନିଜ ଭିତରେ ସାମିଲ କରିଛି । ଏହା ଆମ କବିତାର ଅଭିବୃଦ୍ଧିର ସୂଚନା ଦେଉଥିବାବେଳେ ତା'ର ଅନୁକରଣୀୟତାକୁ ମଧ୍ୟ ସ୍ୱୀକାର କରିଥାଏ । କବିତା ବ୍ୟକ୍ତିଗତ ଓ ସାମଗ୍ରିକ ଅନୁଭୂତିକୁ ରୂପ ଦିଏ । ମାତ୍ର ଏ ଅନୁଭୂତି ଗଭୀର ଏବଂ ନିତାନ୍ତ ନିଜସ୍ୱ ହେବା ଉଚିତ । ତେଣୁ ଯେଉଁ ଅନୁଭୂତି ସର୍ବବିଶ୍ୱ-ବ୍ୟାପୀ ସେ ବିଷୟରେ ଆମେ ଅଭିଜ୍ଞ ହୋଇପାରୁ, ମାତ୍ର ତାହା ଆମର ନିଜସ୍ୱ ହୃଏତ ହୋଇ ନ ପାରେ ଏବଂ ତାକୁ ରୂପ ଦେବାକୁ ଗଲେ ମନରେ ତାହା ରେଖାପାତ ହୁଏତ କରି ପାରେନା । ତାହା ନିଜସ୍ୱ ଧ୍ୱନି ନ ହୋଇ ଅନେକ ସମୟରେ ପ୍ରତିଧ୍ୱନି ହୋଇଯିବାର ଆଶଙ୍କା ଥାଏ । ଏପର୍ଯ୍ୟନ୍ତ ଆମ କବିତା ଏଲିୟଟଙ୍କ ପ୍ରଭାବରୁ ସମ୍ପୂର୍ଣ୍ଣ ମୁକ୍ତ ହୋଇ ପାରିନାହିଁ । ଯଦିଓ ଯେଉଁ ପରିପ୍ରେକ୍ଷୀରେ ଏଲିଅଟ ତାଙ୍କ କବିତା ଲେଖୁଥିଲେ, ସେ ଅବସ୍ଥା ଆମ ସମାଜକୁ କେବେ ଉଗ୍ର ଭାବରେ ପ୍ରଭାବିତ କରିପାରି ନ ଥିଲା । ତଥାପି ଆଧୁନିକ ଓଡ଼ିଆ କବିତାରେ ଏଲିୟଟ୍ ଏକ ଶକ୍ତିଶାଳୀ ପ୍ରଭାବ ।

ଧର୍ମ ଭିତରେ ଏକ ନୂଆ ମୂଲ୍ୟବୋଧର ସନ୍ଧାନ ଏଲିୟଟ୍‌ଙ୍କ କବିତାକୁ ବ୍ୟକ୍ତିକୈନ୍ଦ୍ରିକ କରିଦେଇଥିଲା ଏବଂ ଜଟିଳ ଅନୁଭୂତିକୁ ବିଶ୍ୱସ୍ତ ଭାବରେ ପ୍ରକାଶ କରିବାକୁ ଯାଇ ବୌଦ୍ଧିକତାକୁ କବିତାର ବୈଶିଷ୍ଟ୍ୟ ଅଙ୍ଗ

ରୂପ ଗ୍ରହଣ କରି ନେଇଥିଲା । ମାତ୍ର ଚତୁର୍ଥ ଦଶକର ବ୍ୟକ୍ତିଗତ କବିତା ପଞ୍ଚମ ଓ ଷଷ୍ଠ ଦଶକରେ ଅର୍ଥହୀନ ହୋଇ ପଡ଼ିଥିଲା । ଏହି ଦୁଇ ଦଶକରେ ଦୁଇଟି ବାହ୍ୟ ଚିନ୍ତାଧାରା କବିତାକୁ ବିଶେଷ ଭାବରେ ପ୍ରଭାବିତ କଲା ଏବଂ ତାହାର ପ୍ରଭାବରେ ବ୍ୟକ୍ତିତ୍ୱ ଉପରେ ପ୍ରଶ୍ନବାଚୀ ଉଠିଲା । ଏ ଚିନ୍ତାଧାରା ଦୁଇଟି ହେଲା ସାମ୍ୟବାଦ (ଲେନିନ୍‌ଙ୍କ ବିପ୍ଳବ) ଏବଂ ଫ୍ରୟେଡ୍‌ଙ୍କ ମନସ୍ତତ୍ତ୍ୱ । ସାମ୍ୟବାଦ ବ୍ୟକ୍ତି-ସ୍ୱାତନ୍ତ୍ର୍ୟକୁ ଗ୍ରହଣ କରୁ ନ ଥିବା ବେଳେ ଫ୍ରୟେଡ୍ ମଣିଷ ମନର ସ୍ୱାତନ୍ତ୍ର୍ୟ ଉପରେ ପ୍ରଶ୍ନ ତୋଳିଥିଲେ ଏବଂ ସାମ୍ୟବାଦ ଓ ମନସ୍ତତ୍ତ୍ୱ ଉଭୟ ସଂଘର୍ଷକୁ ଗ୍ରହଣ କରି ନେଇଥିଲେ । ସାମ୍ୟବାଦ ପାଖରେ ସଂଘର୍ଷ ଥିଲା ଏକ ପ୍ରୟୋଜନୀୟ ପନ୍ଥା । ମନସ୍ତତ୍ତ୍ୱ ପାଖରେ ସଂଘର୍ଷ ଥିଲା ମଣିଷର ଅବଚେତନ ମନର ଏକ ପ୍ରାକୃତିକ ଅବସ୍ଥା । ଏହାର ପ୍ରଭାବ କବିତାରେ ପ୍ରଚୁର ପଡ଼ିଥିଲା । ମଣିଷ ମନର ବିଶ୍ଳେଷଣ କବିତାରେ ପ୍ରଖର ଏବଂ ବୌଦ୍ଧିକତା ଭରିଦେଲା ଏବଂ ସାମ୍ୟବାଦ ଯଦିଓ ଏକ ଅବୈୟକ୍ତିକ ଆଦର୍ଶର ସୂଚନା ଦେଉଥିଲା, ତଥାପି କବି ହାତରେ ତାହା ପୁଣି ବ୍ୟକ୍ତିଗତ ପୃଥିବୀର ସନ୍ଧାନରେ ସହାୟକ ହେଲା ।

ଷଷ୍ଠ ଦଶକ ପରେ ଆଧୁନିକ କବିତାରେ ଆସିଲା ପରିବର୍ତ୍ତନ । କବିତାରେ ଚିନ୍ତା ସ୍ଥାନ ପାଇଛି ସତ, ମାତ୍ର ବୁଦ୍ଧି ପ୍ରାପ୍ତ ହୋଇ ପାରିଲାନି । କବି ତା'ର ବ୍ୟକ୍ତିଗତ ପୃଥିବୀରୁ ବାହାରି ଆସି ତା'ର ପରିବେଶକୁ ନିଜର କରିବାକୁ ଚେଷ୍ଟା କଲା ଆଉ ସାର୍ବଜନୀନ ଅନୁଭୂତିକୁ ଅତି ସରଳ ଭାବରେ ପ୍ରକାଶ କରିବାକୁ ଚେଷ୍ଟା କଲା । ଆଜି ଏଇ ଚେତନା ଓଡ଼ିଆ କବିତାକୁ ଆଞ୍ଚଳିକ କରିଛି । କବି ନିଜ ପରିବେଶ, ନିଜ ସମସ୍ୟା ପୁଣି ନିଜ ଐତିହ୍ୟକୁ ବୁଝିବାକୁ ଚେଷ୍ଟା କରି ନୂଆ ସ୍ୱରର ସନ୍ଧାନ କରିଛି । ଏଇ ନୂତନ ଚେତନା ସପ୍ତମ ଦଶକର ଓଡ଼ିଆ କବିତାର ନିଜସ୍ୱ । ତେଣୁ ଏ ଦଶକର କବିତାରେ ଆମେ ପାଉଁ ବୌଦ୍ଧିକତା ବିରୋଧରେ ସ୍ୱର । ଏ ବିପ୍ଳବ କବିତାକୁ ବୌଦ୍ଧିକତାର ବିପରୀତମୁଖୀ କରିନି, ମାତ୍ର ବୌଦ୍ଧିକତାକୁ ଗୌଣ କରି ଗ୍ରହଣ କରିଛି । କାରଣ ଜୀବନର ବିଭିନ୍ନ ବିଭାଗରେ ବିଜ୍ଞାନ ଫଳରେ ଯୁକ୍ତି ଏବଂ ବୌଦ୍ଧିକତା ଏତେ ବେଶି ପ୍ରବେଶ କଲାଣି ଯେ, କବିତା ତା' ଠାରୁ ମୁକ୍ତି ଗୁହେଁ । ଏ ମୁକ୍ତି ବିରୋଧ ନୁହେଁ, ଟିକିଏ ଅବସର । କାରଣ ଆବେଗ ବୋଧ ହୁଏ ଆଜି ସବୁଠାରୁ

ଅତ୍ୟାଗ୍ରହିତ ଏବଂ ଆଧୁନିକତା ନାମରେ ବୋଧ ହୁଏ ସବୁଠାରୁ ବେଶି ଅବହେଳିତ । ଏହାର ବିରୋଧରେ ଉଦ୍ଧୃତ କବିତାଂଶଟି ଏକ କ୍ଷୀଣ ପ୍ରତିବାଦ ।

"ଶୁଣୁଚ
ଶୁଣୁଚ ପାଠିକା,
ଏଇ ତଥାକଥିତ ଇଣ୍ଟେଲେକ୍‌ଚୁଏଲ୍‌ମାନେ
କଅଣ କହୁଛନ୍ତି ?
କହୁଛନ୍ତି
ବିଂଶ ଶତାବ୍ଦୀର
କୌଣସି ଅଭିଧାନ ପୃଷ୍ଠାରେ
ଯଦି ଭଲ ପାଇବା ନାମକ
ଏକ ଶବ୍ଦ ଦେଖ
ତା' ହେଲେ ସେ ପୃଷ୍ଠାଟିକୁ
ଟିକି ଟିକି କରି ଫିଙ୍ଗିଦିଅ
ରାଜପଥ ଉପରକୁ ।" × × × ×

× × × "କି ଏକ ଅଣ୍ଡାଭସ୍ତୁ
ଏମାନଙ୍କୁ କାଲୁଆ କରି ଦେଇଛୁ ।
ତୁମେ ରାଗ କରୁଚ ଏମାନଙ୍କ ଉପରେ ?
ଏମାନେ ଯେ ଜୀବନ ବୃତ୍ୟନ୍ତ୍ରନ ।"

(ଦୁର୍ଗାଚରଣ ପରିଡ଼ା)

ଏଇ ବୌଦ୍ଧିକତାର ପ୍ରଭାବ କବିତାର ବିଷୟବସ୍ତୁ ଏବଂ ତା'ର ଶୈଳୀକୁ ପ୍ରଭାବିତ କରିଥିଲା । ବ୍ୟକ୍ତିକତାକୁ ପ୍ରକାଶ କରିବାକୁ ଯାଇ ଅବୈୟକ୍ତିକ ହୋଇଥିଲା । ଫଳରେ କବିତା ନାଟକୀୟ ହୋଇଥିଲା ସତ, ମାତ୍ର ଦୁର୍ବୋଧ ହୋଇ ପଡ଼ିଥିଲା ।

ମାତ୍ର ସାଂପ୍ରତିକ କବିତାର ଅଭିମୁଖ୍ୟ ନୁହେଁ ନାଟକୀୟ ଅବୈୟକ୍ତିକତା, ଏହା ଯେମିତି ଗୀତିମୟ ଆତ୍ମିକତା । ଏହା ବ୍ୟକ୍ତି ବିଶ୍ୱର ପ୍ରଜ୍ଞାର ପ୍ରକାଶ ନୁହେଁ ; ଆଧୁନିକ ନଗର ଉପରେ ଟୀକା ନୁହେଁ ; ବରଂ ଗୋଟିଏ ବ୍ୟକ୍ତିର ନିହାତି ସହଜ ସରଳ ପ୍ରତିକ୍ରିୟା । ପରିବେଶ ବାହାରେ ନୂଆ ସତ୍ୟର ସନ୍ଧାନ ନୁହେଁ, ବରଂ ପରିବେଶକୁ ସତ୍ୟ ରୂପେ ଗ୍ରହଣ କରିନେବା । ରମାକାନ୍ତ ରଥଙ୍କର ଉକ୍ତି—"ଗତାନୁଗତିକ ଜୀବନ ପ୍ରତି

ଉତ୍ସାହ ରଖିବା ସତ୍ତ୍ୱେ କ'ଣ ଭଲ କବିତା ଲେଖାଯାଇ ପାରିବ ନାହିଁ ? ମୋ' ମତରେ ନୁହେଁ; ଏପରିକି କୌଣସି କଳାର ସାଧନା ମଧ୍ୟ କରାଯାଇ ପାରିବ ନାହିଁ । କଳାର ଗୁଣ ହେଉଛି ଶଂସିତ ବିଷୟକୁ ତା'ର ସୃଷ୍ଟି ଶେଷ ହେବା ପର୍ଯ୍ୟନ୍ତ ଆତ୍ମ-ସମ୍ପୃକ୍ତ କରି ଦେଖିବା । କ୍ୟାନଭାସ୍‌ରେ କୌଣସି ଛବି ହେଉ ବା କବିତାରେ କୌଣସି ଭାବୋଚ୍ଛ୍ୱାସ ହେଉ ; ତାହା ନିଜ ନିଜର ସ୍ୱୟଂସମ୍ପୂର୍ଣ୍ଣ ଜଗତ ଏବଂ ଯେ ଜଗତରେ ଯେଉଁ ମାତ୍ରାରେ ଦୈନନ୍ଦିନ ଜଗତରେ ଅପରିଚିତ ଅନୁଭୂତି ମିଳେ, ସେ ସୃଷ୍ଟି ସେହି ମାତ୍ରାରେ ସଫଳ । ଯଦି ଆମେ ଉପସ୍ଥିତ ଜୀବନ ପାଖରେ ବିକ୍ରି ହୋଇ ଯାଇଛୁଁ, ତେବେ ତା'ର ଭାଷା ଓ ଶବ୍ଦକଳ୍ପ ଆମର ଉପରୋକ୍ତ ପୃଥକ୍ ଜଗତକୁ ଯିବାରେ ପ୍ରତିବନ୍ଧକ ହେବ ଏବଂ ସମାଲୋଚକମାନେ ତା'ର ଉତ୍ତର ଏହିଠାରେ ହିଁ ପାଇବେ ।" ଦୁଇଟି କଥା ସୂଚାଇ ଦିଏ । ପ୍ରଥମତଃ କବିତା ପାର୍ଥିବତାକୁ ଉତ୍ତୀର୍ଣ୍ଣ ହେବ । ଦ୍ୱିତୀୟତଃ ଉପସ୍ଥିତ ଜୀବନ ପାଖରେ 'ବିକ୍ରି ନ ହୋଇ ଅପରିଚିତ ଅନୁଭୂତି'ର ସନ୍ଧାନ କରିବ । ଏହି ସନ୍ଧାନ କବିତାରେ ରହସ୍ୟ ଭରିବ । କବିତାରେ ଭରିଦେବ ଦୂର 'ଅରଣ୍ୟର ସ୍ୱର' । ଏ ଉକ୍ତି ନିତାନ୍ତ ସତ୍ୟ, ମାତ୍ର କବିତାର ଅପାର୍ଥିବତା ଆଡ଼କୁ ଉତ୍ତୀର୍ଣ୍ଣ ହେବା 'ଉପସ୍ଥିତ ଜୀବନ' ପ୍ରତି ବିମୁଖ ହେବା ଉପରେ ନିର୍ଭର କରେ ନା, ବରଂ ପରିଚିତ ଜଗତକୁ ହାଡ଼େ ହାଡ଼େ ଅନୁଭବ କରି ସେ ଆଧ୍ୟାତ୍ମିକ ଅନୁଭୂତିକୁ ଅନୁଭବ କରିବା ସମ୍ଭବ । ଏହିଠାରେ ହିଁ ଆଜିର କବିତାର ପାର୍ଥକ୍ୟ । ରମାକାନ୍ତ ରଥଙ୍କର କବିତା ବ୍ୟକ୍ତିକତାର ଏକ ସାର୍ଥକ ଉଦାହରଣ । ତାଙ୍କ କବିତାରେ ଆମେ ପାଉଁ ଏକ ରହସ୍ୟମୟ ଜଗତ ଆଡ଼କୁ ଅଭିମୁଖୀ ହେବାର ଭାବ । ମାତ୍ର ଆଜିର କବିତା ପ୍ରଥମେ ତା' ପରିବେଶକୁ ହିଁ ନଜର କରୁଛି । ଏ ଆଧ୍ୟାତ୍ମିକ ଭାବ ତା'ର କାମ୍ୟ, ମାତ୍ର ତାହା ଏକାନ୍ତ ମୁଖ୍ୟ ନୁହେଁ, ମୁଖ୍ୟ ତା'ର ବାସ୍ତବ (ନିତାନ୍ତ ନିତିଦିନିଆ) ଅନୁଭୂତି । ଏହାର ଜରିଆରେ ସେ ଚିରନ୍ତନ ଏବଂ ପରମର ସନ୍ଧାନୀ । ଏହି ଦୃଷ୍ଟିରୁ ସେ ନିତିଦିନିଆ ଜୀବନକୁ ଅବହେଳା କରିନି । ତା'ରି ଜରିଆରେ ତାକୁ ଅତିକ୍ରମ କରିବାକୁ ଚାହୁଁଛି । ତେଣୁ ଏହା ଅଧିକ ଜୀବନ-ଧର୍ମୀ । ଅଧିକ ସାମାଜିକ । ବାସ୍ତବକୁ ତ୍ୟାଗ କରି ଆଧ୍ୟାତ୍ମିକତାର ଅନ୍ୱେଷଣ ତା' ପାଖରେ ଅର୍ଥହୀନ ।

ବାସ୍ତବତାର ବାହ୍ୟ ରୂପ ବଦଳେ । ଏ ବାହ୍ୟ ରୂପର ବର୍ଣ୍ଣନାରେ କବିତାର ବେଶି ପରିବର୍ତ୍ତନ ହୁଏ ନା । କବିତାର ପରିବର୍ତ୍ତନ ହୁଏ, ବାହ୍ୟ

ପରିବର୍ତ୍ତନ ସହ ସହ ମଣିଷର ଦୃଷ୍ଟିକୋଣର ପରିବର୍ତ୍ତନ ହୁଏ । ନୂତନତାକୁ କବି କେଉଁ ରୂପ ଦେଉଛି, ସାର୍ବଜନୀନତାକୁ ବ୍ୟକ୍ତିତ୍ୱର କି ପୁଟ ଦେଉଛି, କଳ୍ପନାର କି ରଙ୍ଗ ଦେଉଛି ଏବଂ ତାର ସାହାଯ୍ୟରେ ଚିରନ୍ତନକୁ କେମିତି ସ୍ପର୍ଶ କରୁଛି, ତା'ରି ଉପରେ କବିତାର ଆଧୁନିକତା ଆସେ । ଏହିଠାରେ ହିଁ କବିତା ଗତାନୁଗତିକତାରୁ ମୁକ୍ତ ହୁଏ । ତେଣୁ ସବୁ ସୃଷ୍ଟି ବାସ୍ତବତାର ବ୍ୟକ୍ତିଗତ ରୂପାନ୍ତର । ଏହି ରୂପାନ୍ତର ଆସେ କଳ୍ପନା ଦ୍ୱାରା, ପରିବର୍ତ୍ତିତ ଦୃଷ୍ଟିକୋଣ ଦ୍ୱାରା, ପୁଣି ଶୈଳୀ ଦ୍ୱାରା ।

ଶୈଳୀ କୌଣସି ବ୍ୟକ୍ତିଗତ ଖିଆଲ ନୁହେଁ ; ଏହା କେବଳ ନୂତନତାର ଚମକ ସୃଷ୍ଟି କରିବା ନୁହେଁ । ଗୋଟିଏ ଯୁଗର ରୁଚି ପାରଂପାରିକତାକୁ ଗ୍ରହଣ କରିନେଇ ପାରେ । ଏହି ଗ୍ରହଣ କରିବା ହୁଏତ ଗୋଟିଏ ଯୁଗର ରୁଚି କିମ୍ବା ଖିଆଲ୍ ହୋଇ ଥାଇ ପାରେ; ମାତ୍ର କବି ଏ ଖିଆଲ୍ ବିରୋଧରେ ଜୟଯାତ୍ରା ଆରମ୍ଭ କରି ନୂତନର ପରିଚୟ ଦିଏ । ଏହି ନୂତନ ଶୈଳୀ ଚିରନ୍ତନ ସୃଷ୍ଟି ପ୍ରତି ମଣିଷର ବିଭିନ୍ନ ପ୍ରତିକ୍ରିୟାକୁ ହିଁ ପ୍ରକାଶ କରେ, ମଣିଷର ଅନୁଭୂତି ଆଉ ତା'ର ପ୍ରତିକ୍ରିୟାକୁ ଅର୍ଥପୂର୍ଣ୍ଣ କରେ । ନୂଆ ଅନୁଭୂତି, ଅଜ୍ଞାତ ମନର ଅଜଣା କ୍ରିୟା ଉପରେ ଏହି ଶୈଳୀ ଶୃଙ୍ଖଳା ଆଣେ । ଏହି ଶୃଙ୍ଖଳା କୌଣସି ବାହ୍ୟିକ ନିୟମ ଦ୍ୱାରା ପରିଚାଳିତ ହୁଏ ନା । ଏହା କବିର ବ୍ୟକ୍ତିତ୍ୱ, ଐତିହ୍ୟ ସହ ଅନୁଭୂତିର ସମ୍ପର୍କ ଉପରେ ହିଁ ନିର୍ଭର କରେ । ତେଣୁ କବିତା ବିଶୃଙ୍ଖଳ ଜୀବନର ଶୃଙ୍ଖଳିତ ପ୍ରକାଶ । ଏହି ଶୃଙ୍ଖଳା, ଏହି ସଂଯମ କବିର ଜୀବନ ପ୍ରତି ଦୃଷ୍ଟି କୋଣ ଦ୍ୱାରା ହିଁ ନିୟନ୍ତ୍ରିତ । ଏହି ଶୃଙ୍ଖଳାରେ ହିଁ ନିହିତ କବିର ଆତ୍ମମୁଖ୍ୟ ।

ପଞ୍ଚମ ଓ ଷଷ୍ଠ ଦଶକର କବି ଆଧୁନିକ ଅନୁଭୂତିର ବିଶ୍ୱସ୍ତ ପ୍ରକାଶ ଚାହିଁଥିଲି । ଆଧୁନିକ ଜୀବନର ଜଟିଳତା, ନୂତନତା ଏମିତିକି ତା'ରି ତିକ୍ତତାର ଏକ ସାମଗ୍ରିକ ଏବଂ ସତ୍ୟ ରୂପ ଦେବାକୁ ଚାହିଁଥିଲି । ସେ ସତ୍ୟଶୀଳ ହେବାକୁ ଯାଇ କଳ୍ପନା, ବର୍ଣ୍ଣନା-ବିଳାସ କିମ୍ବା ଶୈଳୀର ଆଡ଼ମ୍ବରକୁ ତ୍ୟାଗ କରି ଜୀବନର ଏକ ନିଖୁଣ ଛବି ଆଙ୍କିବାକୁ ଚାହିଁଥିଲି । ଫଳରେ ସେ ଯୁକ୍ତି କରିଥିଲା, ଜଟିଳ ଜୀବନର ପ୍ରକାଶ ଜଟିଳତା ଦ୍ୱାରା ହିଁ ସମ୍ଭବ । ତା' ନ ହେଲେ କବି ନିଜଠାରେ ସତ୍ୟଶୀଳ ହୋଇ ପାରିବନି । ଫଳରେ ଆଧୁନିକ କବିତା ଦୁର୍ବୋଧ ହେବାକୁ ବାଧ୍ୟ ହୋଇଥିଲା । ବୌଦ୍ଧିକତାକୁ କବି ଗ୍ରହଣ କରିଥିଲା କାରଣ ବୌଦ୍ଧିକତା ଆଧୁନିକ

ଜୀବନର ଗୋଟିଏ ବିଶେଷ ଅଙ୍ଗ, ଏମିତିକି ତା'ର ଆବେଗମୟ ଅନୁଭୂତି-ଗୁଡ଼ିକ ମଧ୍ୟ ଏହା ଦ୍ୱାରା ଅନେକାଂଶରେ ନିୟନ୍ତ୍ରିତ । ଏହି ବିଡ଼ମ୍ବନା ହିଁ ବୌଦ୍ଧିକତା ଦ୍ୱାରା ସୂଚିତ । କବିତାର ଭାଷା ସୃଷ୍ଟି କରେ ଜୀବନର ସବୁ କିଛିକୁ ପ୍ରକାଶ କରିବା ପାଇଁ ନୁହେଁ । ତା'ର ଭାଷା ତିଆରି ହୁଏ କବି ଯାହା କହିବାକୁ ଚାହେଁ ତାକୁ ଭଲ ଭାବରେ କହି ପାରିବା ପାଇଁ । ଏଇ ଭଲ ଭାବରେ କହି ପାରିବା ଅର୍ଥ ନୁହେଁ ମନମତାଣିଆ କରିବା । ଏହା ହେଉଛି ଅଙ୍ଗୀଗତ ଅନୁଭୂତି ଉପରେ କବି କେତେ ଦୂର ଶୃଙ୍ଖଳା ଆଣି ପାରୁଛି । ଏହିଠାରେ କବିର ବ୍ୟକ୍ତିତ୍ୱ ଆଉ ଅନୁଭୂତିର ଗଭୀରତା ନିର୍ଭର କରେ । ସେ ପରମ୍ପରାର ଶିକାର ହୁଏନି କିମ୍ବା ନୂତନତା ଦ୍ୱାରା ବିଭ୍ରାନ୍ତ ହୁଏନି । ପ୍ରଚଳିତ ନିୟମ ଦ୍ୱାରା ଶୃଙ୍ଖଳିତ ହୁଏନି କିମ୍ବା ନୂତନତାର ଚମକ ଦେବାକୁ ଚେଷ୍ଟା କରେନି । ନୂତନକୁ ଗ୍ରହଣ କରି ଐତିହ୍ୟ ସାହାଯ୍ୟରେ ତାକୁ ରୂପାନ୍ତରିତ କରେ, ପୁଣି ନୂତନ ସାହାଯ୍ୟରେ ଐତିହ୍ୟର ଦିଗନ୍ତ ବିସ୍ତୃତ କରେ ।

ପ୍ରଥମେ ଆମ ଆଧୁନିକ କବିତାରେ ଐତିହ୍ୟର ଏକ ପ୍ରାଜ୍ଞ ଓ ଆବେଗମୟ ବିଶ୍ଳେଷଣ ଦେଖା ଦେଇଥିଲା । ଅତୀତ ଦ୍ୱାରା ପୀଡ଼ିତ ନ ହୋଇ ଆଜିର କବି ଅତୀତ ଓ ବର୍ତ୍ତମାନକୁ ସାମିଲ୍ କରି ଏକ ନୂଆ ସତ୍ୟର ଅନ୍ୱେଷଣ କରିଛି । ବର୍ତ୍ତମାନର ଅସହାୟତା ଭିତରେ, ଅମାନବିକତାର ଧୂଳି ଝଡ଼ ଭିତରେ କବିର ଚେତନଶୀଳ ମନ ଜୀବନର ଅସାରତାକୁ ଅଧିକ ତୀବ୍ର କରି ତୋଳୁନି, ବରଂ ଏ ଅର୍ଥହୀନତା ଭିତରେ ସେ ଏକ ମାନବିକ ସ୍ଥିତିର ସନ୍ଧାନ କରୁଛି, ଯା' ଫଳରେ ଜୀବନ ଅଧିକ ଗରିମାନ ହୋଇପାରିବ । ସେ ଆଜି ଆଶାବାଦୀ ଏବଂ ଏଇଥିପାଇଁ ଆଜି ତା' ପାଖରେ ଅତୀତ ଏତେ ବେଶୀ ପ୍ରୟୋଜନୀୟ । କାରଣ ଐତିହ୍ୟ ଭିତରେ ହିଁ ମଣିଷ ଜୀବନର ଗୁପ୍ତ ଭାଷା ଲୁଚି ରହିଥାଏ । ଏହି ଗୁପ୍ତ ଭାଷାକୁ ଯଦି କବି ବର୍ତ୍ତମାନ ଜରିଆରେ ଧରି ନ ପାରିଲା, ତେବେ ତା' ସୃଷ୍ଟି କେବଳ ଆନନ୍ଦ ଦେବ ସିନା ଚିରନ୍ତନ ହୋଇ ପାରିବନି ।

ମଣିଷ ଆଜି ଯନ୍ତ୍ର ସଭ୍ୟତାର ଏକ ଅଦରକାରୀ ଅବଶିଷ୍ଟାଂଶ । ବିଜ୍ଞାନର ଚୂଡ଼ାନ୍ତ ବିଜୟ ସତ୍ତ୍ୱେ ବି ମଣିଷ କେମିତି ନିଃସହାୟ । ଗୋଟିଏ ଦିଗରେ ମଣିଷର ଜ୍ଞାନ ଅତିବେଶୀ ବଢ଼ିଯାଇଥିବା ବେଳେ ଅନ୍ୟ ଦିଗରେ ଆଧ୍ୟାତ୍ମିକ ଅଭିବୃଦ୍ଧି ଘଟିନି । ଚନ୍ଦ୍ରରେ ସେ ପାଦ ଦେଇଛି, ମାତ୍ର ନିଜ ସବୁଜ ପୃଥିବୀକୁ ଏକ ମରୁମୟ ଚନ୍ଦ୍ର କରି ତୋଳିବାରେ ଆଗଭର

ହେଉଛି । ମଣିଷ ଆଜି ତେଣୁ ଏକ ବିରାଟ ବିରୋଧାଭାଷ ଉପରେ ଠିଆ ହୋଇଛି । ସେ ବିଜ୍ଞାନର ସ୍ରଷ୍ଟା ; ମାତ୍ର ତା'ର ସୃଷ୍ଟି ନିକଟରେ ସେ ଆଜି ନଗଣ୍ୟ । ତେଣୁ ଏ ଯୁଗ ଘଟଣା-ପ୍ରବାହର ଯୁଗ, ମୂଲ୍ୟବୋଧର ନୁହେଁ । ତେଣୁ କବି ମୂଲ୍ୟବୋଧ ପାଇଁ ବ୍ୟାକୁଳ । ଏଇଥିପାଇଁ ପୁରାଣ, ସଂସ୍କୃତି, ବିଭିନ୍ନ ଧର୍ମ, ଦର୍ଶନ ସବୁ କିଛିର ସମନ୍ୱୟ ଘଟିଥିଲା ଆଧୁନିକ କବିତାରେ । ସାରା ବିଶ୍ୱ ଓ ସାରା ମଣିଷ ଜାତି ତା'ର ବିଷୟବସ୍ତୁ । କବି ଆଞ୍ଚଳିକତା ଛାଡ଼ିଥିଲା ଏବଂ ଯୁଗ-ଯନ୍ତ୍ରଣା ଥିଲା ତା' କବିତାର ବିଷୟବସ୍ତୁ । ମାତ୍ର ପରେ ପରେ ଏ ବ୍ୟାପ୍ତିକୁ ସେ ତ୍ୟାଗ କରିଛି । ବିଶ୍ୱମାନବ ପରିବର୍ତ୍ତେ ତା' ସମାଜର ରାମ, ଦାମ, ଶାମ ତା' ନିକଟରେ ବଡ଼ ହୋଇଛି । ଯୁଗ ଯନ୍ତ୍ରଣା ପରିବର୍ତ୍ତେ ତା' ସମାଜର ବ୍ୟାଧି, ତା' ନିଜ ସମସ୍ୟା ବଡ଼ ହୋଇ ଉଠିଛି । ସେ ସେଇମାନଙ୍କ ସୁଖ ଦୁଃଖ ତା'ର ନିହାତି ନିଜ ଭାଷାରେ କହିବାକୁ ଚେଷ୍ଟା କରିଛି । ବୌଦ୍ଧିକତାକୁ ସେ ତ୍ୟାଗ କରିଛି, କାରଣ ବୁଦ୍ଧିଦୀପ୍ତ ବିଜ୍ଞାନ ନିକଟରେ କବିତାକୁ ବଞ୍ଚାଇ ରଖିବାକୁ ହେଲେ କବି ବୁଝିଛି ଯେ, ବୁଦ୍ଧିର ନୁହେଁ ବରଂ ଆବେଗର ସାହାଯ୍ୟ ନେବାକୁ ହେବ । ବାକ୍ୟ ପରିବର୍ତ୍ତେ କଥାବାର୍ତ୍ତା କରିବାକୁ ହେବ । ନିଜର ବ୍ୟକ୍ତିଗତ ପୃଥିବୀ ପରିବର୍ତ୍ତେ ନିଜ ପରିବେଶକୁ ନିଜର କରିବାକୁ ପଡ଼ିବ ; ନିତିଦିନିଆ ବାସ୍ତବତାକୁ କଳ୍ପନା ଜରିଆରେ ଛୁଇଁବାକୁ ହେବ । ଆଜି ତେଣୁ କବି ତା' ପରିବେଶ ଏବଂ ପରିଜନ ସହ ପୁଣି ଥରେ ମୁହାଁମୁହିଁ ହେବାର ପ୍ରୟାସ କରିଛି । ତେଣୁ ସେ ସମାଜକୁ ନିଜର କରି ତା' ଷଡ଼୍‌ବିଂଶ୍ତି ଅନୁଷ୍ଠାନ ବିରୋଧରେ ସ୍ୱର ତୋଳିଛି । ତା'ର ପୂର୍ବ ଅର୍ଥ ଫେରାଇ ଆଣିବାକୁ ଚେଷ୍ଟା କରୁଛି । ଐତିହ୍ୟ ଏବଂ ଆଧୁନିକର ସମନ୍ୱୟ ଖୋଜିଛି (ଏହା ଏ ଶତାବ୍ଦୀର କବିତାର ମୁଖ୍ୟସ୍ୱର); କାରଣ କବିତା ଐତିହ୍ୟର ରୂପାନ୍ତରର ଧ୍ୱନି । ସେ ସ୍ୱରରେ ଗୋଟିଏ ଜାତିର ଅନୁଭୂତି । ଏହା ଗଭୀର ଓ ଚିରନ୍ତନ । ଟେକା ମାଡ଼ରେ ପୋଖରୀ ଛାତିରେ ଉଠୁଥିବା କ୍ଷଣିକ ତରଙ୍ଗ ନୁହେଁ; ଏହା ଜଳର ଗଭୀରତା, ତା'ର ମହିମା । ବ୍ୟକ୍ତିର ଅନୁଭୂତିରେ ଦଗ୍‌ଧୀଭୂତ ହୋଇ କବିତା ବଞ୍ଚିବାର ସ୍ୱର ଉଠାଏ । ମଣିଷର ଦୁଃସ୍ଥିତି ବିରୋଧରେ କେବଳ କବିତା ନୁହେଁ କଳାର ସମସ୍ତ ବିଭାଗ ଏକ ବିପ୍ଳବ । ଆଜି ଆମ ସାଂପ୍ରତିକ କବିତାର ଆଭିମୁଖ୍ୟ ଏଇ ବିପ୍ଳବର । ୪ର୍ଥ ଓ ୫ମ ଦଶକର କବିମାନଙ୍କ ପରି ନିଜ ପରିବେଶଠାରୁ ଦୂରେଇ ଯାଇ କବି କଳ୍ପନାକୁ ବଞ୍ଚାଇବାର ଚେଷ୍ଟା କରୁନି ; ବରଂ ଆଜି କବି ଦୁଃସ୍ଥିତିକୁ ଗ୍ରହଣ କରିଛି ।

ତା'ର ମୁକାବିଲା କରିବାପାଇଁ ସେ ଚେଷ୍ଟିତ । ଏହା ସମ୍ଭବ ହୋଇଛି ତା'ର ଆନ୍ତରିକତା ଯୋଗୁଁ । ଏ ଆନ୍ତରିକତା ଦ୍ୱିମୁଖୀ । ପ୍ରଥମ ସେ ବିଶ୍ୱସାହିତ୍ୟକୁ ଗ୍ରହଣ କରିବା ସଙ୍ଗେ ସଙ୍ଗେ ନିଜର ଅହଂକୁ ସ୍ୱୀକାର କରିଛି । ସେ ବାହାର ପ୍ରଭାବ ଦ୍ୱାରା ନିୟନ୍ତ୍ରିତ ହୋଇନି, ହୋଇଛି ଋଦ୍ଧିମନ୍ତ । ଦ୍ୱିତୀୟରେ ସେ ଭୌଗୋଳିକ ପାର୍ଥକ୍ୟ ଭୁଲି ସୁଦ୍ଧା ଆଞ୍ଚଳିକ ହୋଇ ପାରିଛି । ପୁଣି ତୀବ୍ର ଆଧୁନିକ ହେବା ସଙ୍ଗେ ସଙ୍ଗେ ଐତିହ୍ୟ ଦ୍ୱାରା ତା' ଚେତନାକୁ ରସାଣିତ କରିଛି । ତେଣୁ ତା'ର ସ୍ୱର ଆଜି ଫାଙ୍କା ଆଓ୍ୱାଜ୍ ନୁହେଁ । ସେ ତା ସଂସ୍କୃତି, ପରମ୍ପରା ବାବଦରେ ଗରୀୟାନ୍ ଏବଂ ସବା ଶେଷରେ ତା'ର ବିପ୍ଳବ ଆସିଛି ଅହଂ-ଚେତନାର ନୂଆ ରୂପରେ । ଆଗର କବି ନିଜକୁ ଆଦର୍ଶ-ସ୍ଥାନୀୟ ମନେ କରିଥିଲା । ସମାଜ ପାଖରୁ ନିଜର ପାର୍ଥକ୍ୟ ପ୍ରତି ସଚେତନ ଥିଲା । ତେଣୁ ସେ ନିଜକୁ ମଣିଷ ଜାତିର ବିଧାୟକ, ନିଜକୁ ଏକ ଭବିଷ୍ୟତ-ବକ୍ତା କିମ୍ବା ଏକ ମୁନି ରୂପେ ଗ୍ରହଣ କରିଥିଲା । ମାତ୍ର ଆଜି କବି ନିଜକୁ ସାଧାରଣ ମଣିଷ ଭାବରେ ଗ୍ରହଣ କରିଛି ଏବଂ ମଣିଷ ଜାତିର ଅନୁଭୂତି ଉପରେ ତା'ର ମତାମତ ନ ଦେଇ ତା' ନିଜର ଅନୁଭୂତିକୁ ହିଁ ପ୍ରକାଶ କରିଛି । ତେଣୁ ଆଜି କବିତାର ସ୍ୱରରେ ବ୍ୟାପକତା ଦେଖା ଦେଇନି । ଏହା ବ୍ୟକ୍ତିଗତ ଅନୁଭୂତି । ମାତ୍ର ଏ ବ୍ୟକ୍ତିକତା ବିଶ୍ୱ ସୃଷ୍ଟିଠାରୁ ଭିନ୍ନ । ଏଥିରେ କିଛି ନିଜସ୍ୱ ସ୍ୱର ଥିଲେ ମଧ୍ୟ ଏ ସ୍ୱର ଗୋଟିଏ ପରିବେଶରୁ ସୃଷ୍ଟ ଏବଂ ଗୋଟିଏ ପରିବେଶ ପାଇଁ ଉଦ୍ଦିଷ୍ଟ ।

ତେଣୁ ଏହା ହିଁ ସାଂପ୍ରତିକ କବିତାର ଆଭିମୁଖ୍ୟ; ଯଥା—

"ଏ ଦୁଃଖରେ ଇଚ୍ଛା ହୁଏ କହିବାକୁ କଥା ଏକ ; ମରମର କଥା,
ମୁଁ ମଧ୍ୟ ଜାଣିଛି ଆହା, ତୁମେ ଯେତେ ଏକାଧିକ,
ପ୍ରତ୍ୟେକଟି ସେତିକି ଏକଲା,
ତେଣୁ ଆମେ ମଇତ୍ର ବସିବା
ଯେଣୁ ଅଛି ସାମଞ୍ଜସ୍ୟ
ମୋ ବ୍ୟସ୍ତତା, ତୁମର ବ୍ୟର୍ଥତା ।" (କୈଳାସ ଲେଙ୍କା)

ଏଇ 'ମଇତ୍ର ବସିବା'ଟା ହିଁ ସବୁଠାରୁ ବଡ଼ ହୋଇଛି । କବି ନିଜ ସାଙ୍ଗରେ ମଇତ୍ର ନ ବସି ତା' ପରିବେଶକୁ ମଇତ୍ର କରିଛି ଏବଂ ତାକୁ ତା' ନିଜର କଥା କହୁଛି ।

# ମୋ ଦୃଷ୍ଟିରେ

# ସାଂପ୍ରତିକ କବିତାର ରୂପକଳ୍ପ

**ଅଧ୍ୟାପକ ଶ୍ରୀ ପ୍ରଫୁଲ୍ଲକୁମାର ମହାନ୍ତ**

ଆଧୁନିକ କବିତା ଉପରେ କିଛି ଲେଖିବାକୁ ଗଲାବେଳେ, ଲେଖକର ମନରେ ସ୍ୱତଃ କେତୋଟି ପ୍ରଶ୍ନ ଉଙ୍କିମାରେ । ପ୍ରଥମ ପ୍ରଶ୍ନ ହେଉଛି ଓଡ଼ିଆ ସାହିତ୍ୟରେ ଆଧୁନିକତା ଅଛି କି ? ଦ୍ୱିତୀୟରେ, ଯେଉଁ କବିମାନେ ନିଜକୁ ଆଧୁନିକ ବୋଲନ୍ତି, ସେମାନଙ୍କ କବିତାରେ କି ପ୍ରକାର ଆଧୁନିକ ଚେତନା ଫୁଟିଛି ? ତୃତୀୟରେ ସେ ଆଧୁନିକତା କେତେ ଦୂର ନିଜସ୍ୱ ? କିନ୍ତୁ ଏ ପ୍ରବନ୍ଧରେ ଆମେ ନିଜକୁ କେବଳ ରୂପକଳ୍ପ ଭିତରେ ହିଁ ସୀମିତ ରଖିବା ।

ବହୁ କବି ବିଶେଷତଃ ଶ୍ରୀ ସଚି ରାଉତରାୟ ଚିତ୍ରକଳ୍ପର ପ୍ରୟୋଗବିଧି ଉପରେ ସାରଗର୍ଭକ ସନ୍ଦର୍ଭମାନ ଲେଖିଛନ୍ତି । ରୂପକଳ୍ପକୁ କବିତାର ଆତ୍ମା କହି T. E. Halmeଙ୍କର ବାକ୍ୟାବଳୀ ସେ ଯଥାଯଥଭାବରେ ଉଦ୍ଧାର କରିଛନ୍ତି ; କିନ୍ତୁ ଅନେକ ସମୟରେ ଦେଖାଯାଏ ଯେ ସେମାନଙ୍କର ତାତ୍ତ୍ୱିକ ଆଲୋଚନା ଏବଂ ଲେଖା ଭିତରେ ବହୁତ ପାର୍ଥକ୍ୟ ଥାଏ । ଏହି ପାର୍ଥକ୍ୟ, ଯାହାକି ଏହି ପ୍ରବନ୍ଧ-ଲେଖକର ମତରେ ବୋଧଜନିତ ଏବଂ କାବ୍ୟିକ ତ୍ରୁଟି, ତାହା ଯେ କେବଳ ଅପ୍ରତିଷ୍ଠିତ କବିଙ୍କଠାରେ ଦେଖାଯାଏ ତାହା ନୁହେଁ, ଅନେକ ଲବ୍ଧପ୍ରତିଷ୍ଠ କବିଙ୍କର ରଚନାବଳୀରେ ମଧ୍ୟ ଏହାର ଉଦାହରଣ ଦେଖିବାକୁ ମିଳେ । ଅବଶ୍ୟ ଏହା ସ୍ୱୀକାର୍ଯ୍ୟ ଯେ ଚିତ୍ରକଳ୍ପର ସଫଳ ପ୍ରୟୋଗ ମଧ୍ୟ ଅନେକ କବିତାରେ ଦେଖାଯାଏ । ଏହି ପରିପ୍ରେକ୍ଷୀରେ ଏ ପ୍ରବନ୍ଧରେ ଦୁଇଜଣ ବିଶିଷ୍ଟ କବିଙ୍କର କେତୋଟି କବିତାର ଆଲୋଚନା କରାଯାଇଛି ।

ବିଷୟବସ୍ତୁର ବିଚାର ପୂର୍ବରୁ କେତୋଟି ସାଧାରଣ ସତ୍ୟକୁ ଆଖି ଆଗରେ ରଖିବା ଉଚିତ୍ । ଆମକୁ ମନେ ରଖିବାକୁ ହେବ ଯେ ରୂପକଳ୍ପର ପ୍ରୟୋଗ କେବଳ ଆଧୁନିକ କବିତାରେ ପ୍ରଥମ କରି ହୋଇ ନାହିଁ । ଯେଉଁଦିନଠାରୁ କବିତାର ସୃଷ୍ଟି ସେଇଦିନଠାରୁ ରୂପକଳ୍ପର ଜନ୍ମ । ହୋମରଙ୍କଠାରୁ ଆରମ୍ଭ କରି ଏଲିଅଟଙ୍କ ପର୍ଯ୍ୟନ୍ତ ଏବଂ ଆମର କବିତାରେ ଚର୍ଯ୍ୟାପଦଠାରୁ ଆରମ୍ଭ କରି ବର୍ତ୍ତମାନ ପର୍ଯ୍ୟନ୍ତ ଚିତ୍ରକଳ୍ପର ପ୍ରୟୋଗ ହୋଇ ଆସୁଛି ; କିନ୍ତୁ ଚିତ୍ରକଳ୍ପବାଦ ଆରମ୍ଭ ହୁଏ ପ୍ରାୟ ୧୯୧୨ ମସିହା ବେଳକୁ, ହ୍ୟୁମ୍ ଏବଂ ପାଉଣ୍ଡଙ୍କ ନେତୃତ୍ୱରେ । ପିକାସୋ, ସିବାନେ ପ୍ରଭୃତି ଶିଳ୍ପୀମାନଙ୍କର ଚିତ୍ରାଙ୍କନ ପ୍ରଣାଳୀଦ୍ୱାରା ପ୍ରଭାବିତ ହୋଇ ହ୍ୟୁମ୍ ଏବଂ ଚୀନ୍ ଓ ଜାପାନ୍‌ରୁ ଉଦାହରଣ ନେଇ ପାଉଣ୍ଡ୍ ଏହି ବାଦର ପ୍ରତିଷ୍ଠା କଲେ ; କିନ୍ତୁ ଏହା ସ୍ୱତଃସିଦ୍ଧ ଯେ ହ୍ୟୁମ୍ କିମ୍ବା ପାଉଣ୍ଡ୍ ତାଙ୍କ ନିଜର କବିତାରେ ତାଙ୍କ ତତ୍ତ୍ୱିକ ଆଲୋଚନାର ବାସ୍ତବ ରୂପ ଦେବାରେ କ୍ଷମ ହୋଇପାରି ନ ଥିଲେ । ପାଉଣ୍ଡ୍ କେବଳ ଅନୁବାଦ ଭିତରେ ସାଫଲ୍ୟ ଅର୍ଜନ କରି-ଥିଲେ ଏବଂ ହ୍ୟୁମ୍ କିଛି କରିବା ପୂର୍ବରୁ ପ୍ରଥମ ବିଶ୍ୱଯୁଦ୍ଧରେ ପ୍ରାଣ ହରାଇ ଥିଲେ । ଅନ୍ୟ ଯେଉଁମାନେ (ଏଲେଏଲ୍, କ୍ଲୁମାଶ୍ର ମନ୍‌ରୋ ଏବଂ ଲରେନ୍‌ସ ପ୍ରଭୃତି) ଏହି ପ୍ରୟୋଗବିଧିର ଅବତାରଣା ନିଜ ନିଜ କବିତା ମାଧ୍ୟମରେ କରିବାର ବିଫଳ ଚେଷ୍ଟା କରିଥିଲେ । ସେମାନଙ୍କ କଥା ନ କହିଲେ ଚଳିବ ।

ଏମାନଙ୍କର କବିତା ବିଫଳ ହେବାର ପ୍ରଥମ କାରଣ ହେଲା, ଚିତ୍ରକଳ୍ପରେ କାବ୍ୟିକ ଅନୁଭୂତିର ପ୍ରଭାବ । କବିତା କେବଳ ବୌଦ୍ଧିକ ସଙ୍ଗଠନ ନୁହେଁ ଏବଂ ରୂପକଳ୍ପ ଯଦି କେବଳ ବୌଦ୍ଧିକ ହେଲା, ତାହା ଜୀବନର ବାସ୍ତବ ଭୂମିଠାରୁ ବହୁତ ଦୂରେଇ ଯିବ । ପୁଣି, ଚିତ୍ରକଳ୍ପର ବ୍ୟବହାର କବିତାର ଜୈବିକ ସଙ୍ଗଠନକୁ ଯଦି ସମୃଦ୍ଧ ନ କରେ, ତାହାହେଲେ ତାହା କେବଳ ଖାପଛଡ଼ା ଏବଂ ବିକ୍ଷିପ୍ତ ହୋଇ ରହିଯିବ । ଏହି ଦୁଇଟି ବିଶେଷ କାରଣ ଯୋଗୁଁ ଚିତ୍ରକଳ୍ପ-ବାଦ ଅନାଦୃତ ହୋଇ ପଡ଼ିଲା ।

ବର୍ତ୍ତମାନ ଦେଖାଯାଉ, ଏ ଚିତ୍ରକଳ୍ପ କ'ଣ ? ଏବଂ ଏହାର ପ୍ରୟୋଗବିଧି କି ପ୍ରକାର ?

କବିତା କେବଳ ଅନାବିଳ ମନର ଅପୂରନ୍ତ ଆତ୍ମପ୍ରକାଶ ନୁହେଁ, ଏହା ଏକ ଉପସ୍ଥାପନା ; କବି-ମାନସର ଗୋଟିଏ ଅନୁଭୂତି (ବାସ୍ତବ କିମ୍ବା କାଳ୍ପନିକ) ଭାଷାରେ ରୂପାୟିତ ହୋଇ ପ୍ରକାଶ ଲାଭ କରିଥାଏ । କବିତା ଯଦି କାବ୍ୟିକ ଅନୁଭୂତିର ପ୍ରକୃତ ରୂପାନ୍ତର ନ ହୁଏ, ତେବେ ଦୋଷଯୁକ୍ତ ହୋଇ ପଡ଼ିବ । କଲେରିଜ୍‌ଙ୍କ ମତରେ—

> "କବି ରୂପକଳ୍ପରେ ଚିନ୍ତା କରିଥାଏ ଏବଂ ଚିନ୍ତା, ଭାବ ଏବଂ ରୂପକଳ୍ପ ଦ୍ୱାରା ଅନୁଭୂତିର ସଙ୍ଗଠନ ହୋଇ କବିତାର ସୃଷ୍ଟି ହୁଏ ।"

ଅନେକ ସମୟରେ ଦେଖାଯାଏ ଯେ କବି କେତୋଟି ବସ୍ତୁ, ଶବ୍ଦ, ରଙ୍ଗ, ଇନ୍ଦ୍ରିୟାନୁଭୂତ ଅବସ୍ଥାର କାବ୍ୟିକୀକରଣ ଲାଗି ଚିତ୍ରକଳ୍ପ ବ୍ୟବହାର କରିଥାଏ । ହ୍ୟୁମ୍‌ଙ୍କ ମତରେ କେବଳ ଦୃଷ୍ଟିଜନିତ ପିଣ୍ଡୀଭୂତ ଅନୁଭୂତି ହିଁ କବିତା । ତାଙ୍କ ଭାଷାରେ କବିତା ହେଉଛି —

> "Not a counter language, but a visual concrete one. It is a compromise for a language of intuition which would hand over sensation bodily. It always endeavours to arrest you and to make you continuously see a physical thing, to prevent you gliding through an abstract process."

ଉପର୍ଯ୍ୟୁକ୍ତ ମତ ଗ୍ରହଣଯୋଗ୍ୟ ହୋଇ ପାରିନ, କାରଣ 'ଶବ୍ଦ' ଯାହାକି କାବ୍ୟ କବିତାର ମାଧ୍ୟମ, ବସ୍ତୁ ନୁହେଁ, ଏବଂ ଏହା କଦାପି କୌଣସି 'Physical thing' (ପଦାର୍ଥ ବା ବସ୍ତୁ) ଦେଇ ପାରେ ନା । ପୁନଶ୍ଚ, ରୂପକଳ୍ପ କେବଳ ନଗ୍ନ ଇନ୍ଦ୍ରିୟ ଉତ୍ତେଜନା (Sense-stimulus) ନୁହେଁ । ସାହିତ୍ୟିକ ଦୃଷ୍ଟିକୋଣରୁ କେବଳ ଇନ୍ଦ୍ରିୟାନୁଭୂତିର ସମ୍ପୂର୍ଣ୍ଣ ଏବଂ ପ୍ରାଞ୍ଜଳ ପ୍ରକାଶ କାବ୍ୟିକ ଚେତନାର ପ୍ରକୃତରୂପ ନେଇ ପାରେନା । ସେଥିଲାଗି I. A. Richards ତାଙ୍କ 'The Philosophy of Rhetoric' ଗ୍ରନ୍ଥରେ କହିଛନ୍ତି—

> "They loving in a confusion with the sense in an image in a copy or revival of sense-perception of some sort, and so have made rhetoricians think that a figure of speech, in image

or imaginative comparison, must have something to do with the presence of images, in this other sense, in the mind's eye or the mind's ear But of course it need not no images of this sort need come at any point."

ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ହ୍ୟୁମ୍‌ଙ୍କ ବିଗ୍ରହ ଠିକ୍ ନୁହେଁ । ରୂପକଳ୍ପ ବ୍ୟକ୍ତି ଏବଂ ବସ୍ତୁ ମଧ୍ୟରେ ଗୋଟିଏ ଦ୍ରବଣ ଆଣିଥାଏ । କେବଳ ବସ୍ତୁ ବା ବାହାର ଜଗତର ଗୋଟିଏ ଜ୍ୱଳନ୍ତ ଚିତ୍ର କବିତା ହୋଇ ନ ପାରେ । ଯଦି ତାହା ହୁଏ, ପ୍ରତ୍ୟେକ ଇନ୍ଦ୍ରିୟସମ୍ପନ୍ନ ବ୍ୟକ୍ତି ପ୍ରତ୍ୟହ କବିତା ଦେଖେ, ଶୁଣେ ଏବଂ ଶୁଙ୍ଘେ ମଧ୍ୟ । କବିତା ଚିନ୍ତା, ଭାବ ଏବଂ ଇନ୍ଦ୍ରିୟାନୁଭୂତିର ଗୋଟିଏ ସମନ୍ୱୟ । ଏ ମହାସମନ୍ୱୟ ଭିତରେ ଇନ୍ଦ୍ରିୟାନୁଭୂତିର ସ୍ଥାନ ଗୌଣ ନ ହେଲେ ମଧ୍ୟ ମୁଖ୍ୟ ନୁହେଁ ।

ଚିତ୍ରକଳ୍ପ ଅନେକ ସମୟରେ ଗୋଟିଏ ତୁଳନାତ୍ମକ ଚିତ୍ରର ପରିବେଷଣ କରେ । ଏହା ହେଉଛି ବିଭିନ୍ନ ଅନୁଭୂତିର ମିଳନସ୍ଥଳ । ଏହି ତୁଳନା ବସ୍ତୁ, ଭାବ, ଚିନ୍ତା ଏବଂ ବିଭିନ୍ନ ମାନସିକ ଅବସ୍ଥାକୁ ଏକାଠି କରେ । କେବଳ ବ୍ୟକ୍ତି ଏବଂ ବସ୍ତୁ ଭିତରେ ସଂଯୋଗ ଦେଖାଇବାରେ ଏହା ସୀମିତ ନୁହେଁ । ଧାରଣା ଏବଂ ବ୍ୟକ୍ତିକୁ ଏହା ନିଗୂଢ଼ ସମ୍ପର୍କରେ ରଖେ । ପାରିପାର୍ଶ୍ୱିକ ସାଧାରଣ ଘଟଣାବଳୀର ମାଧ୍ୟମରେ ଏହା ବୋଧଶକ୍ତିକୁ ଗୋଟିଏ ଶାରୀରିକ ରୂପ ଏବଂ ଆକାର ଦିଏ । ଏ ତୁଳନା ଭିତରେ ଦୁଇଟି ବସ୍ତୁ, ଭାବ, ମାନସିକ ଅବସ୍ଥା ବା ଅନୁଭୂତି ମଧ୍ୟରେ ପ୍ରକୃତ ସାଦୃଶ୍ୟ ଦେଖାଇବା ହେଲା ଚିତ୍ରକଳାର ପ୍ରଧାନ କାମ । ଏ ସାଦୃଶ୍ୟ ଅନେକ ସମୟରେ ନେତିବାଚକ ମଧ୍ୟ ହୋଇଥାଏ ।

ମୋଟାମୋଟି କହିବାକୁ ଗଲେ ଚିତ୍ରକଳ୍ପ କେବଳ ତୁଳନା ଭିତରେ ଆବଦ୍ଧ ରହେ ନାହିଁ । ଏହା କାବ୍ୟିକ ଚେତନା ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତ । ବୈଷମ୍ୟ ଭିତରେ ଗୋଟିଏ ସାମ୍ୟ ସ୍ଥାପନ କରିବାରେ ଏହା ସାହାଯ୍ୟ କରେ । କବିତାର ପରିକଳ୍ପନା ଭିତରେ ଚିତ୍ରକଳ୍ପ ନିଜର ସ୍ୱାଧୀନତା ଅକ୍ଷୁଣ୍ଣ ରଖିଲେ ମଧ୍ୟ ସମ୍ପୂର୍ଣ୍ଣ କବିତାର ଜୈବିକ ସଂହତି ରକ୍ଷା କରିବାରେ ଏହାର ଅବଦାନ ସବୁଠାରୁ ବେଶି । ଉଚ୍ଚ ଦରର କବିତାରେ ବିଭିନ୍ନ ରୂପକଳ୍ପ ଭିତରେ ସଂଯୋଗ ଥାଏ ଏବଂ ଗୋଟିଏ ଚିତ୍ର

ଅନ୍ୟ ଗୋଟିକରେ ମିଳେଇ ଯାଏ । ପରିଶେଷରେ ସମୁଦାୟ କବିତାଟି ଗୋଟିଏ ଚିତ୍ରକଳ୍ପରେ ପରିଣତ ହୁଏ—ଯାହାକି ଜୀବନବୋଧର ଗୋଟିଏ ନିର୍ଦ୍ଦିଷ୍ଟ ଦୃଷ୍ଟିକୋଣ ଆମ ଆଗରେ ରଖେ । କାବ୍ୟିକ ଚେତନାର ସମସ୍ତ ଅବୟବକୁ ସଜାଡ଼ି ଚିତ୍ରକଳ୍ପ ତାକୁ ଏକ ନୂତନ ଏବଂ ସାମଗ୍ରିକ ରୂପ ଦିଏ । ଚିତ୍ରକଳ୍ପକୁ ସାଇକେଲ ଚକର ଅର (Spoke) ସହିତ ତୁଳନା କରାଯାଇ ପାରେ । ପ୍ରତ୍ୟେକ ଅରର ସ୍ୱାତନ୍ତ୍ର୍ୟ ଅଛି, ନିର୍ଦ୍ଦିଷ୍ଟ ଗଠନ ଅଛି, ତଥାପି ଚକର ପରିଧିରେ ସେମାନେ ଗୋଟିଏ ବିରାଟ ଏକତା ବା ସଂହତି ଭିତରେ ରହିଯାନ୍ତି । ସେହିପରି କବିତାର ସଂଗଠନ ବା ଶିଳ୍ପନୈପୁଣ୍ୟ ଭିତରେ ଚିତ୍ରକଳ୍ପ ନିଜର ସ୍ୱାଧୀନତା ବଜାୟ ରଖିଲେ ମଧ୍ୟ, ଗୋଟିଏ ବୃହତ୍ତର ସମ୍ପୂର୍ଣ୍ଣ ଚେତନାର ସୃଷ୍ଟି ଦିଗରେ ସାହାଯ୍ୟ କରିଥାଏ । ଏହା ଗୋଟିଏ ଶବ୍ଦ ହୋଇପାରେ, ତୁଳନାତ୍ମକ ଭାବରେ ଉପମା ଏବଂ ବ୍ୟକ୍ତିତ୍ୱ ଆରୋପିତ ହୋଇ ବଡ଼ କଷ୍ଟରେ ମାନବିକ ଚେତନା ମଧ୍ୟ ଆଣିପାରେ । ଏହା ଯେ ସବୁବେଳେ ସରଳ ହେବ ତା'ର କିଛି ପ୍ରମାଣ ନାହିଁ । ଏହା ଜଟିଳ ବି ହୁଏ । କବିର ବିଷୟର ଆୟତନକୁ ନେଇ ଏହା ବହୁମୁଖୀ ବି ହୋଇଥାଏ । ବହୁ କ୍ଷେତ୍ରରେ ବିଭିନ୍ନ ଚିତ୍ରକଳ୍ପର ସମାବେଶର ବି ଆବଶ୍ୟକତା ଥାଏ ; କିନ୍ତୁ ସବୁବେଳେ ଚିତ୍ରକଳ୍ପ ବାସ୍ତବ ଜଗତ ଏବଂ ଅନୁଭୂତିକୁ ଅନ୍ୱେଷଣ ଏବଂ ଶୃଙ୍ଖଳିତ କରେ । ଯେପରି ଭଞ୍ଜନାୟିକା ସୁଭଦ୍ରାର ଅଳଙ୍କୃତିକାରେ ସପ୍ତପୁଷ୍ପ ଏବଂ ଫଳର ସମାରୋହ ଥିଲେ ମଧ୍ୟ ସୁଭଦ୍ରାର ରୂପର କୌଣସି ଠିକ୍ ପ୍ରତିକୃତି ଆମର ଆଖିରେ ଆସେ ନାହିଁ, ସେହିପରି ଯଦି ରୂପକଳ୍ପ କୈନ୍ଦ୍ରିକ ନ ହୁଏ ତେବେ ଅନୁଭୂତିର ବିକ୍ଷିପ୍ତତା ଛଡ଼ା କୌଣସି ଏକାଗ୍ର ଚେତନା ଆସେ ନାହିଁ । ଚିତ୍ରକଳ୍ପ ହିଁ କାବ୍ୟିକ ଭାଷାର ଜୀବନ୍ତ ଆଧାର । ଏହା ଯଦି ଅନ୍ତଃସାରଶୂନ୍ୟ କିମ୍ବା ସ୍ୱଚ୍ଛନ୍ଦବାଦୀ ହୁଏ ଏବଂ କବିର ଭାଷାର କେନ୍ଦ୍ର ରହେ ନା ତେବେ ବୋଧଗତ ଭାରସାମ୍ୟ ବି ବିଚଳିତ ହୁଏ ।

ରୂପକଳ୍ପର ବିଚାର କଲାବେଳେ ଆଉ ଗୋଟିଏ କଥା ମନକୁ ଆସେ । ଅନେକ ଆଧୁନିକ କବି ଯୁକ୍ତି କରନ୍ତି ଯେ ସମସାମୟିକ ପୃଥିବୀର ଅବସ୍ଥା ଭିନ୍ନ । ତା'ର ଗତି, ସ୍ଥିତି ଏବଂ ପ୍ରଗତି ସବୁ ପୃଥକ୍ । ତେଣୁ ଏହି ପାରିପାର୍ଶ୍ୱିକ ଅବସ୍ଥା ଭିତରେ କବିର ଚିନ୍ତା, ମାନସିକ ସ୍ଥିତି ନିଶ୍ଚୟ ସମସାମୟିକ ଜଗତର ଚିତ୍ର ପ୍ରଦାନ କରିବ । ଯୁକ୍ତିଟି ନୂଆ ନ ହେଲେ ବି

ମନ୍ଦ ନୁହେଁ । ସବୁ କବି ଏହା କରି ଆସିଛନ୍ତି ଏବଂ ଆଗାମୀ ଯୁଗର କବି-ମାନେ ମଧ୍ୟ ଏହା କରିବେ ; କିନ୍ତୁ ଏହାର ଅର୍ଥ ନୁହେଁ ଯେ ଆଧୁନିକ ମଣିଷର ବର୍ତ୍ତମାନଟା ସମୟର ସ୍ରୋତଠାରୁ ଅଲଗା । ଏହାର ରୂପ ଏବଂ ପ୍ରକୃତି ଭିନ୍ନ ହୋଇପାରେ; କିନ୍ତୁ ଚିରନ୍ତନ ସମୟ ସ୍ରୋତଠାରୁ ଆମର ବର୍ତ୍ତମାନଟା ବିଚ୍ଛିନ୍ନ ନୁହେଁ । ବର୍ତ୍ତମାନର ମୁହୂର୍ତ୍ତ ଚିରନ୍ତନର ଘୂର୍ଣ୍ଣନ୍ତ ପ୍ରତିଛବି ମାତ୍ର । ଅତୀତ ଏବଂ ଭବିଷ୍ୟତ ବର୍ତ୍ତମାନର ଭିତରେ ରହନ୍ତି । ଏମାନଙ୍କର ଅଲଗା ସ୍ଥିତି ନାହିଁ । କବିର ଚିନ୍ତାଧାରାରେ ନୂତନତ୍ୱ ନିହାତି କାମ୍ୟ ; କିନ୍ତୁ ତାହା ଯଦି ବର୍ତ୍ତମାନର ମୁହୂର୍ତ୍ତ ଏବଂ ସମସାମୟିକତାର ଗଣ୍ଡିଭିତରେ ଆବଦ୍ଧ ହୋଇ ରହିଯାଏ, ତାହା କେବଳ ପାଗଳାମି ଛଡ଼ା ଅନ୍ୟ କିଛି ହୋଇ ନ ପାରେ । G. S. Fraser ତାଙ୍କ 'The Modern writer and this world' ବହିରେ ପ୍ରତୀକବାଦୀ କବିତାର ଦୁର୍ବଳତା ଦେଖାଇବାକୁ ଯାଇ କହିଛନ୍ତି ଯେ, 'କବି ଯଦି ତା'ର ପରମ୍ପରା, ଐତିହ୍ୟ ଏବଂ ଚିରାଚରିତ ସାମାଜିକ ଏବଂ ବୌଦ୍ଧିକ ଜୀବନ-ଠାରୁ ଅଲଗା ରହେ, ତାହାହେଲେ, ତା'ର ତୁଳନା ଶତ୍ରୁରାଜ୍ୟ ମଧ୍ୟରେ ଗୋଟିଏ ଗୁପ୍ତଚର ସହିତ କରାଯିବ । ଗୁପ୍ତଚରମାନେ ଯେପରି ଠାରି ଭାଷାରେ କଥାବାର୍ତ୍ତା କରନ୍ତି ଏବଂ ସାଧାରଣ ଜୀବନ ସହିତ ତାଙ୍କର କିଛି ସମ୍ପର୍କ ନ ଥାଏ, ସେହିପରି 'ବର୍ତ୍ତମାନ'ରେ ବନ୍ଦୀ ରହିଥିବା କବି ଗୋଟିଏ ଲୁକ୍‌କାୟିତ ବିଦ୍ରୋହୀ ପରି ରହିଯିବ ।

ଏଇ ପ୍ରସଙ୍ଗରେ ସେକ୍‌ସପିଅର୍, ଦାନ୍ତେ, କାଳିଦାସ, ୟେଟ୍‌ସ ଏବଂ ଏଲିଅଟ୍‌ଙ୍କ କଥା କୁହାଯାଇ ପାରେ । ସେମାନେ ବି ଗୋଟିଏ ନିର୍ଦ୍ଦିଷ୍ଟ ସାମାଜିକ, ରାଜନୈତିକ ଏବଂ ବୌଦ୍ଧିକ ବାୟୁମଣ୍ଡଳ ଭିତରେ ଲେଖୁଥିଲେ । ସେମାନଙ୍କର ଲେଖା ଆଜି ବି ଆଦୃତ ହୁଏ, କାରଣ, ସେମାନେ ତାଙ୍କ ରଚନାରେ ଚିରନ୍ତନର ଅବତାରଣା କରିଥିଲେ । ସେମାନଙ୍କର ଲେଖାରେ 'ବର୍ତ୍ତମାନ' ଗୋଟିଏ ବିରାଟ ପ୍ରସାରଣ । ଏହା ଏକ ଦିଗରେ ଅତୀତ ଏବଂ ଅପର ଦିଗରେ ଭବିଷ୍ୟତକୁ ନିଜ ଭିତରେ ଗ୍ରହଣ କରେ । ସେକ୍‌ସପିଅରଙ୍କ ଯେ କୌଣସି ନାଟକର ପର୍ଯ୍ୟାଲୋଚନା କଲେ ଦେଖାଯାଏ ଯେ ତାହା ଗୋଟିଏ ବିରାଟ ସଙ୍କୁଚିତ ବା ପ୍ରସାରିତ ଚିତ୍ରକଳ୍ପ, ଯାହାକି ସମୟ ଭିତରେ ବନ୍ଦୀ ହୋଇ ରହିନାହିଁ ।

ଖ୍ରୀଷ୍ଟୀୟ ସଭ୍ୟତାର ବହୁ ପୂର୍ବରୁ ଏରିଷ୍ଟୋଟ୍‌ଲ୍ ମଧ୍ୟ ରୂପକଳ୍ପର ଏ ସୁଦୂରପ୍ରସାରୀ ଏବଂ ସର୍ବସଂରକ୍ଷଣକାରୀ ଶକ୍ତିର ପରିଚୟ ପାଇଥିଲେ ।

ତାଙ୍କ Rhetoricରେ (ପୃ ୧୬୭, J. E. Sandys ଦ୍ୱାରା ସଂକଳିତ) ସେ କହୁଛନ୍ତି ଯେ ଶବ୍ଦ ଯଦି ପୁରୁଣା ହୁଏ, ତେବେ ନୂତନତ୍ୱର ଶିହରଣ ଆଣେନା ଏବଂ ଯଦି ସଂପୂର୍ଣ୍ଣ ନୂଆ ହୁଏ, ତେବେ ଅସ୍ପଷ୍ଟ ରହିଯାଏ । କବି ଯଦି ସାଧାରଣର ମାଧ୍ୟମରେ ନୂତନ ଚେତନା ବା ଅନୁଭୂତିର ଆବେଦ ଚିତ୍ରକଳ୍ପରେ ଦିଏ, ତାହା କାବ୍ୟର ଶ୍ରୀବୃଦ୍ଧି କରିବା ସଙ୍ଗେ ସଙ୍ଗେ କବିର ସୃଷ୍ଟିକାରୀ ଶକ୍ତିର ପରିଚୟ ଦେବ । ଆଧୁନିକ ଯୁଗରେ ଏହିପରି ରୂପ-କଳ୍ପର ସୃଷ୍ଟି ବିରଳ ନୁହେଁ । ଏଲିଅଟଙ୍କ 'Objective Correlative' ପୂର୍ବ ବର୍ଣ୍ଣିତ ଚିତ୍ରକଳ୍ପର ନାମାନ୍ତର ମାତ୍ର । ପ୍ରଥମେ ପାଉଣ୍ଡ୍ ଏହାର ସଂଜ୍ଞା ନିର୍ଦ୍ଧାରଣ କରିଥିଲେ ; କିନ୍ତୁ ପାଉଣ୍ଡ୍ ଚିତ୍ରକଳ୍ପର ସୁବିସ୍ତର ବ୍ୟାଖ୍ୟା କରିପାରି ନ ଥିଲେ । ଏଲିଅଟ୍ଙ୍କର 'Objective Correlative', ପାଉଣ୍ଡ୍ଙ୍କ "An 'image' is that which presents an intellectual and emotional complex in an instant of time" (ଅର୍ଥାତ୍ ଗୋଟିଏ ମୁହୂର୍ତ୍ତରେ ବୌଦ୍ଧିକ ଏବଂ ଭାବଗତ ମିଶ୍ରଣର ଉପସ୍ଥାପନ ହିଁ ଚିତ୍ରକଳ୍ପ)ର ପରିମାର୍ଜିତ ପ୍ରକାଶ । ପାଉଣ୍ଡ୍ଙ୍କ ସିଦ୍ଧାନ୍ତର ବାସ୍ତବଧର୍ମୀ ଶିଳ୍ପନୈପୁଣ୍ୟ ଏଲିଅଟ୍ଙ୍କ ଦ୍ୱାରା ହିଁ କରାଯାଇଥିଲା । ଏହାର ସଫଳ ଦୃଷ୍ଟାନ୍ତ ଆମକୁ ପ୍ରଥମ କରି Gerontionରେ ମିଳେ ଏବଂ ପରେ ପରେ The Waste Landରେ ସେ ଏହାକୁ ଆହୁରି ସଫଳତାର ସହିତ ପ୍ରତିପାଦନ କରିଛନ୍ତି । ଅବଶ୍ୟ Four Quarters ତୁଳନାରେ The waste land ସମ୍ପୂର୍ଣ୍ଣ ସଫଳ କବିତା ନୁହେଁ । ତଥାପି ରୂପକଳ୍ପର ପ୍ରୟୋଗଦୃଷ୍ଟିରୁ ଏବଂ କାବ୍ୟିକ ଅନୁଭୂତିର ପରିପ୍ରକାଶ ଦିଗରୁ ଏହା ବୋଦ୍‌ଲେୟାରଙ୍କ ପରେ ଏବଂ ୟେଟ୍‌ସଙ୍କ Tower Poems ପୂର୍ବରୁ ପ୍ରଥମ ସଫଳ କବିତା । ଯେହେତୁ ଆମର ଦୃଷ୍ଟି ଚିତ୍ରକଳ୍ପରେ ଆବଦ୍ଧ, କେବଳ ସେହି ଦୃଷ୍ଟିରୁ ସଂକ୍ଷେପରେ ତା'ର ବିଚାର କରିବା ।

ସମୁଦାୟ କବିତାଟିର ଅର୍ଥ ଏବଂ ସଫଳତା ତା'ର ନାଁଟି ମଧ୍ୟରେ ଆବଦ୍ଧ । ଏହା ୧୯୨୨ରେ ଲେଖା ହେଲେ ମଧ୍ୟ ଦାନ୍ତେଙ୍କର ନର୍କ (Inferns) ବୋଦ୍‌ଲେୟାରଙ୍କ ପାରିସ୍ ଏବଂ ଏଲିଅଟ୍ଙ୍କ ଲଣ୍ଡନ୍ ଅଲଗା ନୁହେଁ । କବିତାଟିର ସମସ୍ତ ଦୃଶ୍ୟ ଗୋଟିଏ (ଆଞ୍ଚଳିକତା ଦୃଷ୍ଟିରୁ ନୁହେଁ, ଭାବଗତ ଏବଂ ବୌଦ୍ଧିକ ଏକତା ଦୃଷ୍ଟିରୁ) ଏବଂ ତାହା ଲଣ୍ଡନ୍, ଭିଏନା ଏବଂ ଆଲେକ୍‌ଜାଣ୍ଡ୍ରିଆ ବା ଯାହା ହେଉ, ଆମରି ପୃଥିବୀ । ଏହା କେବଳ ପ୍ରଥମ ବିଶ୍ୱଯୁଦ୍ଧ ପରର ଇଂଲଣ୍ଡ ନୁହେଁ । କବିତାର ପାଞ୍ଚଟି ବିଭାଗରେ

ପାଞ୍ଚଟି ଦୃଶ୍ୟ ଥିଲେ ମଧ୍ୟ,ପ୍ରତ୍ୟେକ ଦୃଶ୍ୟ ଅନ୍ୟ ସହିତ ମିଶାଇ ଯାଇଛି ଏବଂ ଶେଷରେ କେବଳ ଗୋଟିଏ ଦୃଶ୍ୟ (Scene) ଆମ ଆଗରେ ରହୁଛି ଏବଂ ତାହା—The Waste Land । ସେହିପରି ପ୍ରତ୍ୟେକ ପୁରୁଷ ଚରିତ୍ର ଅନ୍ୟ ପୁରୁଷ ଚରିତ୍ରରେ ଏବଂ ନାରୀ ଚରିତ୍ର ଅନ୍ୟ ନାରୀ ଚରିତ୍ରରେ ମିଶି-ଯାଇଛି । କବିତାଟିରେ ମୋଟେ ତିନୋଟି ଚରିତ୍ର । ଗୋଟିଏ ପୁରୁଷ, ଗୋଟିଏ ନାରୀ ଏବଂ ଅନ୍ୟଟି କାବ୍ୟନାୟକ ; କିନ୍ତୁ କାବ୍ୟନାୟକ ମୁଖ୍ୟ ଚରିତ୍ର ଟାଇରେସିଅସ୍ (Tiresias) ସହିତ ସମ୍ପୂର୍ଣ୍ଣଭାବେ ଏକାତ୍ମତା ସୃଷ୍ଟି କରିଥିବାରୁ ଏବଂ ଏହି ଚରିତ୍ରଟି ଉଭୟ ଲିଙ୍ଗବିଶିଷ୍ଟ (Adam ପରି) ହୋଇଥିବା ଯୋଗୁଁ, କେବଳ ଗୋଟିଏ ଚରିତ୍ରର ବିଭିନ୍ନ ରୂପ ଆମେ ଦେଖିବାକୁ ପାଉଁ । ଏଲିଅଟ୍ ମଧ୍ୟ ତାଙ୍କର ଟୀକାରେ କହିଛନ୍ତି ଯେ ଯାହା ଟାଇରେସିଅସ୍ ଦେଖୁଛି, ତାହା ହିଁ କବିତାର ସାରାଂଶ—ଏହି ଦୃଷ୍ଟିରୁ ଚରିତ୍ରର ବି ଏକତା ଦେଖିବାକୁ ମିଳେ ।

ପୁଣି କବିତାର ବିଷୟବସ୍ତୁ ମୁଖ୍ୟତଃ ତିନୋଟି ସ୍ତରରେ ଗତି କରୁଛି । ପ୍ରତ୍ୟେକ ଚିତ୍ରକଳ୍ପଦ୍ୱାରା କବି ନୃତାତ୍ତ୍ୱିକ, ଐତିହାସିକ ଏବଂ ସମସାମୟିକ ସଂସ୍କୃତିର ବୈଷମ୍ୟ ଏବଂ ସାଦୃଶ୍ୟ ଦେଖାଇଛନ୍ତି । ମନୁଷ୍ୟର ଐତିହାସିକ ଗୌରବମୟ ପରମ୍ପରା ଏବଂ ବର୍ତ୍ତମାନର ଜଘନ୍ୟ, କୁତ୍ସିତ ପ୍ରେମବିଶ୍ୱାସହୀନ ପରିସ୍ଥିତିର ପ୍ରଭେଦ ଓ ସାମଞ୍ଜସ୍ୟ ଫୁଟି ପାରିଛି ଏବଂ ଶେଷରେ ସମୁଦାୟ କବିତାଟି ମାନବର ପରମ୍ପରାର ପୃଷ୍ଠଭୂମି ଉପରେ କବିଙ୍କର ସମସାମୟିକ ପରିସ୍ଥିତିର ଅନ୍ତର୍ଦୃଷ୍ଟି ନିହିତ ଚିତ୍ରକୁ ବେଶ୍ ଏକ ନାଟକୀୟ ପରିବେଶ ମଧ୍ୟରେ ସୃଷ୍ଟି କରି ପାରିଛି । ଏଇଠି ହେଲା ଚିତ୍ର-କଳ୍ପର ଉତ୍କର୍ଷ । ତା'ର ଗତି ଅଛି (ସ୍ଥିରତା ମଧ୍ୟ ଗତି) ସ୍ୱାଚ୍ଛନ୍ଦ୍ୟ ଅଛି ଏବଂ ଶିଳ୍ପନୈପୁଣ୍ୟ ଅଛି । ଚିତ୍ରକଳ୍ପର ପ୍ରତିପନ୍ନକାରିତାର ପରିଚୟ ଏଇଠି ମିଳେ ।

ସ୍ଥାନାଭାବରୁ ଖୁବ୍ ସଂକ୍ଷିପ୍ତଭାବରେ ଏ ଆଲୋଚନା ପରେ, ବର୍ତ୍ତମାନ ଓଡ଼ିଆ କବିଙ୍କର କବିତାର ଚିତ୍ରକଳ୍ପର ପ୍ରୟୋଗବିଧିର ବିଚାର କରିବା ।

ଆଧୁନିକ ଓଡ଼ିଶାର ଲବ୍ଧପ୍ରତିଷ୍ଠ କବିମାନଙ୍କ ମଧ୍ୟରୁ ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ ଏବଂ ଶ୍ରୀ ଗୁରୁପ୍ରସାଦ ମହାନ୍ତିଙ୍କ ନାମ ପ୍ରଥମରେ ମନେ ପଡ଼େ । ତେଣୁ ଏଇ ଦୁଇଜଣ ବିଶିଷ୍ଟ କବିଙ୍କର କବିତା ଆଲୋଚନା କରିବାରେ ମୁଁ ନିଜକୁ ସୀମିତ ରଖୁଛି ।

କେତେକ ବିଶେଷ କାରଣବଶତଃ ଶ୍ରୀ ସଚ୍ଚି ରାଉତରାୟଙ୍କର 'କବିତା ୧୯୬୨'ରୁ ହିଁ କେତେକ ଉଦାହରଣ ନେବା ଉଚିତ ମନେକଲି ।

ତାଙ୍କର 'ଦୃଷ୍ଟି' କବିତାରେ ଚିତ୍ରକଳ୍ପର ପ୍ରୟୋଗ ଅତି ଚମତ୍କାର ।

"କାହାଣୀର ଗୁହାଣିରେ ଦେଖିଚି ମୁଁ ଯାହାକୁ ରୂପକେ
ଝଲମଲ ସପନର ଭୂଇଁତଳ ଜଙ୍କସନ୍ ବୁକେ
ସେ ଯଦିବା ଉଭା ହୁଏ ଥରେ ମାତ୍ର ଜୀବନର ପିଛେ
ଅସଂଖ୍ୟ ଗହଳି ଭେଦି, ଠେଲି ବହୁ ବାସ୍ତବର ଭିଡ଼େ—
ଏ ମୋର କୁନାଳଦୃଷ୍ଟି ଭରି ଥରେ ଶେଷଥର ପାଇଁ
ଦେଖି ନେବାଲାଗି ସ୍ପୃହେଁ ତା ସମେତ ଦୁନିଆଁ ଟା ମୁହିଁ ।
ତା'ପରେ ମୁଁ ଛାହା-ବିନା-ପ୍ରତ୍ୟହର ବଂଧା ପରିବେଶେ
ମୋର ସେ ଦୀପକ ଦୃଷ୍ଟି ଯଦି ପୁଣି ହରାଇ ବା ବସେ
ଭୟ ନାହିଁ । କାରଣ ମୁଁ ଦ୍ରଷ୍ଟା ।
ନୁହେଁ ଖାଲି ନପୁଂସ ଦର୍ଶକ ।
ତେଣୁ ଯଦି କାଲ-ପଥେ ଜାଲି ହୁଏ ରଙ୍କାର ସଲ୍ତକ
ଯାଏ ଆସେ କିଛି ନାହିଁ ।"

କବିଙ୍କର 'ସେ' ଯାହାକୁ ସେ 'କାହାଣୀର ଗୁହାଣିରେ' ଦେଖିଛନ୍ତି, ଅତିବାସ୍ତବ ସ୍ୱପ୍ନମୟ ରାଜ୍ୟର 'ଅଧିବାସୀ' । ସେ ନାରୀ ନୁହେଁ, ଆଦର୍ଶ ଜୀବନର ପ୍ରତୀକ ନୁହେଁ, 'ସାମ୍ରାଜ୍ଞୀ' ନୁହେଁ କମ୍ବା କବିର ଅଲୌକିକ ପ୍ରତିଭା ନୁହେଁ—ବରଂ ଏ ସମସ୍ତର ସମଷ୍ଟି । 'ସେ' କୌଣସି ନିର୍ଦ୍ଦିଷ୍ଟ ରୂପକଳ୍ପରେ ସୀମିତ ନୁହେଁ । ପୁଣି ଏଇ ଅତିବାସ୍ତବ ସ୍ୱପ୍ନମୟ ରାଜ୍ୟ, ଯାହାକୁ ସେ ଏକ କଳାକାରର ଦୃଷ୍ଟିରେ ଦେଖିଛନ୍ତି, ବାସ୍ତବ ଜୀବନର ଚିତ୍ରରେ ତାକୁ ଫୁଟାଇଛନ୍ତି ।

'ଝଲମଲ ସପନର ଭୂଇଁତଳ ଜଙ୍କସନ୍ ବୁକେ'—ଏହା Shelleyଙ୍କର 'A poet hidden in the height of thought' ପରି ଅନିଶ୍ଚିତ ନୁହେଁ । ଯେପରି ଭୂଇଁତଳ ଜଙ୍କସନଟା ବାହାର ଦୁନିଆଁରୁ ସ୍ପଷ୍ଟ ନୁହେଁ ; କିନ୍ତୁ ତାର ଅସ୍ତିତ୍ୱ ବିଷୟରେ ସନ୍ଦେହର ଅବକାଶ ନ ଥାଏ, ସେହିପରି ସେ ଆଦର୍ଶ ଜୀବନର କାଵ୍ୟିକ ପ୍ରତୀକ ବାସ୍ତବକୁ ନ ଆସିଲେ ମଧ୍ୟ, ଆସିବାର ସମ୍ଭାବନାହୀନ ନୁହେଁ । ଯଦି ସେ 'ବାସ୍ତବର ଭିଡ଼ ଠେଲି' ଏବଂ ନିତିଦିନିଆ ଜୀବନର 'ଅସଂଖ୍ୟ ଗହଳି

ଭେଦି' (ରୂପକଳ୍ପ ଦୁଇଟି ଗତିସୂଚକ) ପରେ ମାତ୍ର 'ଜୀବନର ପୀଠ' ଉପରକୁ ଆସିବ, କବି ତା' ସହିତ ଦୁନିଆଁକୁ ଶେଷଥର ପାଇଁ 'କୁନାଳ-ଦୃଷ୍ଟି'ରେ ଦେଖିନେବେ । କୁନାଳ କଥାର ଐତିହାସିକ ପରିଚୟ ସମସ୍ତ ଭାରତୀୟ ଜାଣନ୍ତି । ବିନା ଦୋଷରେ କୁନାଳର ଅନ୍ଧୀକରଣ ଏବଂ ରାଜା ଅଶୋକଙ୍କର ଜାଲପତ୍ରରେ ଜାଲ ଦସ୍ତଖତ, ସ୍ରଷ୍ଟା ଏବଂ ସୃଷ୍ଟିର (Creator and Creature) ଅନ୍ତର୍ନିହିତ ଅନ୍ୱେଷାକୁ ଗୋଟିଏ ସାର୍ବଜନୀନ ଏବଂ ସର୍ବାନୁମୋଦିତ ଭୂମିକାରେ ସ୍ଥାପିତ କରି ପାରିଛି । କୁନାଳ ଅନ୍ଧ ହେଲା ପରେ ମଧ୍ୟ ଗୋଟିଏ ଅତିମାନବ ଚେତନାରେ ଉଦ୍‌ବୁଦ୍ଧ ହୋଇଥିଲେ । ସେହିପରି ବାସ୍ତବର ରୁଗ୍ଣ ପରିବେଶ ମଧ୍ୟରେ, ଅତିବାସ୍ତବର ରୂପ ଯଦି ଥରେମାତ୍ର ଝଲସି ଉଠି ଆତ୍ମଗୋପନ କରେ କିମ୍ବା କବି କୁନାଳପରି ଅନ୍ଧ ହୋଇ ତାକୁ ଇନ୍ଦ୍ରିୟଦୃଷ୍ଟିରେ ଦେଖି ନ ପାରନ୍ତି, ସେଥିରେ ଯାଏ ଆସେ ନାହିଁ । କାରଣ ସେ 'ଦ୍ରଷ୍ଟା', 'ନପୁଂସ ଦର୍ଶକ' ନୁହଁନ୍ତି । ଧରାବନ୍ଧା ଜୀବନର ଦୈନନ୍ଦିନ ପରିବେଶ ମଧ୍ୟରେ ତାକୁ ଦେଖି ପାରିବାର 'ଦୀପକ-ଦୃଷ୍ଟି' ଯଦି ଚୁଲିଯାଏ, କ୍ଷତି ନାହିଁ । କାରଣ ଏଠି କବିର ଦୃଷ୍ଟିସୀମା ବ୍ୟକ୍ତି ବା ବସ୍ତୁ ମଧ୍ୟରେ ଆପୃତ ନୁହେଁ । ପୃଥିବୀର ଚିରନ୍ତନ ସୌନ୍ଦର୍ଯ୍ୟ 'ଗ୍ରହବ୍ୟୋମ ସଫଳ ଔଷଧି'' ମିଥ୍ୟା ନୁହେଁ ଏବଂ କବିର ଖିଆଲି ସ୍ୱପ୍ନ ବି ମିଥ୍ୟା ନୁହଁ । ଯଦିଓ ଏ ଅତିବାସ୍ତବ (Extra-real) ସ୍ୱପ୍ନ ଛଳନା-ପୂର୍ଣ୍ଣ, ଏହାରି ଭିତରେ ହିଁ କବି କଠିକ୍ ସତ୍ୟର 'ଦ୍ରଷ୍ଟା' ରୂପେ ରହିବାକୁ ଚାହାନ୍ତି । ପ୍ରଥମ ଭାଗର 'ରାଜା', ପରେ ପରେ 'ସମ୍ରାଟ' ଏବଂ ଶେଷଭାଗର ଆଧ୍ୟାତ୍ମିକ ଚେତନାସମ୍ପନ୍ନ 'ମହାନ୍ ଈଶ୍ୱର' ଗୋଟିଏ ସଫଳ ଏକତା ରକ୍ଷା କରିଛି । ଆଧ୍ୟାତ୍ମିକ ଚେତନା ବାହ୍ୟ ଜଗତର ଆଡ଼ମ୍ବର ଭିତରେ ବନ୍ଦୀ ନୁହେଁ ଏବଂ ଏହା ହିଁ ମାୟାବିଷ୍ଟ ପ୍ରକୃତିର ସୁଷମା-ସମ୍ଭାର ଡେଇଁ ସେଇ ଅତିବାସ୍ତବ ଅନୁଭୂତି ଆଣିଦେବ । 'କୁନାଳ ଦୃଷ୍ଟି' ଏବଂ 'ଦୀପକ ଦୃଷ୍ଟି'ର ରୂପାନ୍ତର ପୁଣି ଆସିଚି 'ଏକମାତ୍ର ଅଗ୍ନିରେ' । 'ଗ୍ରାମ୍ୟାକନ୍ୟାଗଣ' —ଯାହାଙ୍କ ମାୟିବିନୀ ପ୍ରକୃତିର ସୌନ୍ଦର୍ଯ୍ୟ ଏବଂ ବାସ୍ତବତାର ମାୟା ପ୍ରଲୋଭନ, 'ଏକାନ୍ତ ସ୍ୱାକ୍ଷର' ଦ୍ୱାରା, ନୟନର ତୂଣୀରରେ ଆଲୋକର ଶର ହୋଇ ରହିଥିବା ଦ୍ରଷ୍ଟା ଭାବକୁ ବିଚଳିତ କରିପାରିବେ ନାହିଁ । ପ୍ରଥମ-ଭାଗର 'ରାଜା' ଏବଂ ତା'ର ଜାଲ ସନ୍ତକ, ଦ୍ୱିତୀୟ ଭାଗର 'ଜାଲ ଦେବତାର ବିବର୍ଣ୍ଣ ସ୍ୱାକ୍ଷର'ରେ ମିଶିଛି ଏବଂ ପରିଶେଷରେ 'ଏକାନ୍ତ ସ୍ୱାକ୍ଷର' ହିସାବରେ ରହି, ପୂର୍ବ ଦୁଇ ଚିତ୍ରକଳ୍ପର ବିବର୍ତ୍ତନ କରୁଛି ।

ଶେଷରେ ସବୁ ଚିତ୍ରକଳ୍ପ ସଙ୍କୁଚିତ ହୋଇ କେବଳ ଦୃଷ୍ଟିର ସାର୍ଥକତା ପ୍ରତିପାଦନ କରୁଛି । ବାସ୍ତବ ଏବଂ ଅତିବାସ୍ତବର ବୈଷମ୍ୟରୁ ଆରମ୍ଭ ହୋଇ, କବିତାଟି ଦେହର ଅନ୍ଧାର ଆଉ ଆତ୍ମା ଓ ଆଧ୍ୟାତ୍ମିକ ଚେତନାର ଆଲୋକଦେହୀର ଦ୍ୱନ୍ଦ୍ୱକୁ ଜୀବନ୍ତ କରୁଛି । ଅବଶ୍ୟ କବିତାଟିରେ କୌଣସି ନିର୍ଦ୍ଧାରିତ ପ୍ରସ୍ତାବ ବା ସଙ୍କଳ୍ପ (Resolution) ନାହିଁ, ତଥାପି ଚିତ୍ରକଳ୍ପ ପ୍ରୟୋଗଦୃଷ୍ଟିରୁ କବିତାଟି ସୁନ୍ଦର । ଅର୍ଥ ଏବଂ ଅନ୍ୟାନ୍ୟ କାବ୍ୟିକ ଅଙ୍ଗ ପରିପ୍ରେକ୍ଷୀରେ ଏହାର ମୂଲ୍ୟାଙ୍କନ ଭିନ୍ନ ହୋଇପାରେ ; କିନ୍ତୁ ଏହା ମାନିବାକୁ ହେବ ଯେ 'ଦୃଷ୍ଟି' ଚିତ୍ରକଳ୍ପ ସଂଗଠନର ଗୋଟିଏ ସାର୍ଥକ ସୃଷ୍ଟି ।

ସେହିପରି 'ତିନୋଟି ଚରିତ୍ର' କବିତାର ପ୍ରଥମଟି—'ଅଭିମାନ'ର ଶେଷ ଚିତ୍ରକଳ୍ପଟି ସମୁଦାୟ କବିତାର ଗତି ଏବଂ ପରିବେଶକୁ ସଜୀବ କରି ତୋଳିଛି । ଏହା ସେକ୍ସପିଅରଙ୍କ ଯେକୌଣସି ସନେଟ୍‌ର ଶେଷ ଦୁଇ ପଂକ୍ତିର କାର୍ଯ୍ୟକାରିତା ସହିତ ତୁଳନୀୟ । ଅଭିମାନିନୀ ଗୃହିଣୀ ଶୂନ୍‌ଶାନ୍ ବାୟୁମଣ୍ଡଳଭିତରେ ଗୋଟିଏ ମାସିକ ପତ୍ରିକାର ପୃଷ୍ଠା ଓଲଟାଇ ବାହାର ଜଗତଠାରୁ ନିଜକୁ ବିଚ୍ଛିନ୍ନ କରିବାର ଗୋଟିଏ କୃତ୍ରିମ ଚେଷ୍ଟା କରିଛି । ମୁହଁରେ କଥା ନାହିଁ, କେବଳ 'ପଦେ ଅଧେ ବେସୁରା କଥା', ଯେଉଁଥିରେ କି 'ଶବ୍ଦର କିଙ୍କିଣୀ' ନାହିଁ ; କିନ୍ତୁ ଏହି ଅଭିମାନ, 'ଶୋଫାଟାରେ ଶୋଇ ଶୋଇ ଗୋଡ଼ହଲା' ଯେ କେବଳ ସାମୟିକ, ତା' ସୂଚିତ ହୋଇଛି ପରବର୍ତ୍ତୀ ରୂପକଳ୍ପରେ—

"ସ୍ୱପ୍ନିଳ ବିଭ୍ରମ !
ଚଳଯାଏ ଲକ୍ଷ୍ମୀ ଆସି କେଉଁ କ୍ଷୀରସାଗରର ଏକ ଢେଉ ।
ଅଳତାର ଫ୍ରେମ୍
ଭିତରେ ହଠାତ୍ ବା ଘନ ହୋଇଗଲା ।"

ଦୃଷ୍ଟିରେ ଯେପରି ଉଦାସ ଭାବ ଫୁଟିଛି, ଲୀଳାୟିତ ଅଙ୍ଗଭଙ୍ଗୀରେ ବି ସେଇପରି ବିରକ୍ତି (ଗୋଡ଼ ହଲା) ଏବଂ କ୍ଷୀରସାଗରର ଢେଉ ପରି ଶୁଭ୍ର ଏବଂ ସୁଷମାମଣ୍ଡିତ ଅଙ୍ଗଲତା, 'ଅଳତାର ଫ୍ରେମ୍' ଭିତରେ ଘନ ହୋଇ ଯାଇଛି । କିନ୍ତୁ ତା' ପରର ଇମେଜ୍‌ଟି—

"କିମ୍ବା କେଉଁ ଶବରର କାଣ୍ଡ ବିଦ୍ଧା ଏକ ମୃଗବଧୂଟି ଛଟପଟ କରେ ଯନ୍ତ୍ରଣାରେ ।"

ଅଳତା ଏବଂ ରକ୍ତର ସାମଞ୍ଜସ୍ୟ; କ୍ଷୀର ସାଗରର ଢେଉ ପରି ପାଦ ଏବଂ ମୃଗବର୍ଣ୍ଣ ଭିତରେ ଯୋଗସୂତ୍ର (କ୍ଷୀଣ) ସ୍ଥାପିତ କଲେ ମଧ୍ୟ ପରିବେଶକୁ ସାମାନ୍ୟ ଅଲଗା ରୂପ ଦେଇଛି । ଏ ପରିବେଶ ଗମ୍ଭୀର, କିନ୍ତୁ କଦାପି ଯନ୍ତ୍ରଣାମୟ ନୁହେଁ । ଏଠି ବିବର୍ଣ୍ଣ ବିଷାଦ ଅଛି, ସ୍ତବ୍ଧତା ଅଛି, ବେଦନା ଅଛି ; କିନ୍ତୁ ଯନ୍ତ୍ରଣା ନାହିଁ । ତଥାପି ଏହି ଗୋଟିକୁ ଛାଡ଼ିଦେଲେ କବିତାର ଅନ୍ୟ ଇମେଜ୍‌ଗୁଡ଼ିକର ଏକତା ଅଛି । ଆକାଶରେ କଳାମେଘ ମୁହଁ ନଇଁଛି, ଘର ଭିତରେ ମାନିନୀ ପ୍ରିୟା 'ଫିକା ମୁହଁର ପୋରସିଲିନ୍' ନେଇ ବସିଛି ; କିନ୍ତୁ ଏ ଅଭିମାନ କ୍ଷଣଭଙ୍ଗୁର ଓ ଅସ୍ଥାୟୀ ଏବଂ ଏହା ଭାଙ୍ଗିଛି ସ୍ୱାମୀ ସ୍ତ୍ରୀ ମଧ୍ୟରେ ପ୍ରକୃଷ୍ଟ ଯୋଗସୂତ୍ର—ସନ୍ତାନଦ୍ୱାରା । ବାତ୍ସଲ୍ୟ ମମତାଟି ପ୍ରେମର ରୂପାନ୍ତର ଏବଂ ପୁଣି ଫେରି ଆସିଚି ପ୍ରେମର ପବିତ୍ରତା, ବାତ୍ସଲ୍ୟର ମାନଭଞ୍ଜନରେ । ତା' ପରେ ବ୍ୟସ୍ତତା, 'ନାନା ଖାଦ୍ୟପିଆର ସୂଚନା' ଏବଂ ଶେଷରେ ଏକ ସୁନ୍ଦର ଇମେଜ୍—

"ଦୀର୍ଘ ହରତାଳ ପରେ କଳଗୁଞ୍ଜନ
ଯେମିତି ମଜୁଆଳି
କୌଣସି ଆଇସ୍‌କ୍ରିମ୍‌ର କାରଖାନା"

ଅଭିମାନ ଭାଙ୍ଗିଛି, ହରତାଳ ସରିଛି । ଯେପରି କୌଣସି ହରତାଳ ଚିରସ୍ଥାୟୀ ହୋଇ ନ ପାରେ, ମାନିନୀର ମାନ ବି ସେହିପରି ଅସ୍ଥାୟୀ ଏବଂ ମାନଭଞ୍ଜନ ପରର ବ୍ୟସ୍ତତା ଏବଂ ଖୁସି ପ୍ରତିଫଳିତ ହୋଇଛି କାରଖାନାର 'କଳଗୁଞ୍ଜନ'ରେ । ଅବଶ୍ୟ ପ୍ରଶ୍ନ ହୋଇପାରେ—କାରଖାନାର ପରିବେଶ, ଘରର ପରିବେଶ ସହିତ କିପରି ସମାନ ହେବ ? ବୋଧହୁଏ ସେଥିଲାଗି କବି 'ଆଇସ୍‌କ୍ରିମ୍' କାରଖାନା କହିଛନ୍ତି । ଏଠି ଇସ୍ପାତ ତିଆରି ହୁଏ ନାହିଁ । ପ୍ରସ୍ତୁତ ହୁଏ ସୁସ୍ୱାଦୁ ଖାଦ୍ୟ ।

'ଏକ ଉତ୍ତୀର୍ଣ୍ଣ ଶ୍ରାବଣ'ର ପ୍ରଥମ ଗୁଟିଏ ପଙ୍‌କ୍ତିରେ ମଧ୍ୟ ଶ୍ରୀ ରାଉତରାୟ ଶବ୍ଦକଳ୍ପର ସୁନ୍ଦର ସମାବେଶ କରିଛନ୍ତି—

"ଅବନୀ କବିତା ପରି ଧାନର କିଆରୀ ।
ହୃଡ଼ର ମାଳା ବା ସବୁ ଯାଇଅଛି ଭାଜି—
ତଥାପି ତ ଭଲ ଲାଗେ ବେଶ୍ ସେଇ ମୁଦ୍ରାଦୋଷ,
ସମତଳ ଶୁଆପରି ଭୂମଣ୍ଡଳ ଆଜି ।"

ଧାନ କିଆରି ଏବଂ ଅବନୀ କବିତାର ସାମଞ୍ଜସ୍ୟ କେବଳ ଦୃଷ୍ଟିଜନିତ ନୁହେଁ, ଧାନ କିଆରିରେ ମଧ୍ୟ କବିତାର ଦ୍ୟୋତନା ଅଛି । 'ହିଡ଼ର ମାଳୀ' ସବୁ ଭାଜିଯାଇ ଧାନ କିଆରି ସମତଳ ଶୁଆ ପର ଘର ସବୁଜ; ମସୃଣ, ସୁନ୍ଦର ଏବଂ ବିସ୍ତୀର୍ଣ୍ଣ । ଏଠାରେ ବିଶେଷ କରି ଦୁଇ ପ୍ରକାରର ରୂପକଳ୍ପ ବ୍ୟବହାର କରାଯାଇଛି ; ଯଥା—ଦୃଷ୍ଟିଜନିତ ଏବଂ ସ୍ପର୍ଶଜନିତ ; କିନ୍ତୁ ଏ ଦୁଇଟିର ସମ୍ମିଶ୍ରଣ ଦ୍ୱାରେ, ବାହାର ଜଗତର ବସ୍ତୁଭିତରେ କବି ମଣିଷର ଶ୍ରେଷ୍ଠ କୃତି 'କବିତା'ର ରୂପ ମଧ୍ୟ ଦେଖିଛନ୍ତି । ତେଣୁ ଏଠାରେ ଶବ୍ଦଟି ସମ୍ବେଦନଶୀଳ, ପ୍ରାଣମୟ ଏବଂ ନିଜର କଥା ନିଜେ କହିବାରେ କ୍ଷମ ।

'ମତ୍ସ୍ୟଗନ୍ଧା' କବିତାଟିର ଦ୍ୱିତୀୟ ଭାଗର ଶବ୍ଦଗୁଡ଼ିକ ପୂର୍ବପୂରି ଭାବେ ନାଟକୀୟ ଏବଂ ସ୍ୱୟଂସମ୍ପୂର୍ଣ୍ଣ । ମତ୍ସ୍ୟକନ୍ୟାର ହସ, ନିଖରେ ଗାର-କଟା, 'ମାଛ ନବ ମାଛ ?'—ଗୋଟିଏ ପ୍ରଶ୍ନର ପୁନରାବୃତ୍ତି ଏବଂ ମାଛର ପରିଚୟ ପ୍ରତି ସହଜ ଆଗ୍ରହହୀନତା ପ୍ରଥମ ବିଭାଗର—

"ଅବିଧବା ଗାଉ ଭାଲେ
ଚନ୍ଦ୍ରବିନ୍ଦୁ ଯେବେ ଝଲି ଉଠେ,
ତେବେ ସେ ତା' ନାଆଁଟିକୁ
ପେଲି ଦେଇ ଶୀର୍ଣ୍ଣ ନଈ ତୁଠେ ।
ଭସିଯାଏ ଏଣେ ତେଣେ
ତେଲ୍ଡ଼ି ଖେଳି ପୁଣି ଫେରି ଆସେ,
ବାଲି ଶେଯେ କେବେ ସେ ଯେ
ବସିଥାଏ ଗମ୍ଭୀର ଉଦାସେ ।"

—ହୀରା ଯେଉଁ ଶବ୍ଦର ଚୟନ ହୋଇଛି, ତା' ସହିତ ପୂର୍ବପୂରି ସମତା ରକ୍ଷା କରିଛି । ଗାଉର ସଧବା ବେଶ ଦେଖି ( ଅବିଧବା ଗାଉ ସହିତ ମତ୍ସ୍ୟଗନ୍ଧାର ତୁଳନା କରାଯାଇ ପାରେ । ଯେପରି ଗାଉ ବିଧବା ନ ହେଲେ ମଧ୍ୟ ମିଳନର ପୂର୍ଣ୍ଣତା ପାଏନା, ସେହିପରି ମତ୍ସ୍ୟଗନ୍ଧା ଉଦାସ ଏବଂ ଗମ୍ଭୀର । କାମନା ଅଛି କିନ୍ତୁ ପୂର୍ଣ୍ଣତା ନାହିଁ) ତା' ମନରେ ଆଲୋଡ଼ନ ଆସେ ଏବଂ ସେ ତେଲ୍ଡ଼ି ଖେଳ ଫେରିଆସେ । ତା'ର 'ଏଣେ ତେଣେ' ଭାସିଯିବାଟା ତା' ମନର ଚଞ୍ଚଳତାର ପରିଚୟ ଦିଏ । ହୁଏତ ସେ ବରବୃଣୀ ଏବଂ ମାଛ ଧରିବାର ସାଫଲ୍ୟରେ ସେ ହସେ । ମାଛର ପ୍ରତୀକ

ମୂଲ୍ୟ ବାଦ୍ ଦେଇ ତାକୁ ଏକ ଚିତ୍ର ହିସାବରେ ନେଲେ ମାଛ ଏଠାରେ ଗୌଣ । ମତ୍ସ୍ୟଗନ୍ଧାର ଆଖିର ଚମକ (ଯାହାକି ମାଛ ଧରିବା ପରେ ଉଦାସ ଭାବ କଟାଇ ଦେଇ ଆଖିରେ ଫୁଟିଛି) ତା' 'ଓଠର ଜହ୍ନଉଠା ରଙ୍ଗ' ଆଉ ତା' ଦେହର ବସନ୍ତ ତାକୁ ଗୋଟିଏ ମୂର୍ତ୍ତିମନ୍ତ ବସ୍ତୁରୂପ ଦେଇ ତୋଳିଛି । ସେ ଅକୁଣ୍ଠା । ମୁହଁରେ କହିଲ କହିଲ ଭାବ ଓ ମନରେ ଅସ୍ଥିରତା ନେଇ ସେ ଅନ୍ୟମନସ୍କଭାବେ ବିରହିଣୀ ନାୟିକା ପରି (ମୁରୁକି ମୁରୁକି ହସି ନଖରେ ଗାର କାଟି) ଉଦାସ ହୋଇ ବସିଛି । ନିଜେ ହିଁ ମାଛ—ମତ୍ସ୍ୟଗନ୍ଧା । ମାଛ ତା'ର ଆଖିରେ ଅଛି—'ମାଛର ଆଖିରେ ତା'ର ଆଖିଏ ବଜ୍ରଳ' ଓ 'ମାଛର ଆଖିରେ ତା'ର ଖାଲି ପଶୁରିବା' ତାକୁ ରଖିଚି ଗୋଟିଏ 'ହିରରଙ୍ଗୀ ପ୍ରଶ୍ନର ପାହାଚ' ପରି ।

କିନ୍ତୁ 'ବନ୍ଧନୀ' 'ସ୍ମୃତିଲେଖା', 'ପ୍ରତିଶ୍ରୁତି', 'ବସନ୍ତର ନିଚ୍ଛକ ଜଳ୍ପାରେ' ଓ 'ସାମୁଦ୍ରିକ' ପ୍ରଭୃତି କବିତାରେ ଚିତ୍ରକଳ୍ପଗୁଡ଼ିକ ବହୁଭାବରେ ବୌଦ୍ଧିକ ଏବଂ ଜୀବନର ଗୋଟିଏ ନାଟକୀୟ ରୂପ ପ୍ରକାଶ କରିବାରେ ଅକ୍ଷମ । ଏଠାରେ ଚିତ୍ରକଳ୍ପ ଯାନ୍ତ୍ରିକ କ୍ରମ ରଖିପାରିନି ଏବଂ ଶୋଷଣଭାବେ ଆତ୍ମକେନ୍ଦ୍ରିକ ହୋଇ ପଡ଼ିଛି ।

"ତାଙ୍କ ରେଶମୀ ଚମରେ ଏକ କଅଁଳ ପତ୍ରର ବଗିଚ୍ଛ ନୂଆ ପୁଆର କଞ୍ଚାଳଆ ଭିକ୍ . ." ଶବ୍ଦବିନ୍ୟାସ ଓ ପଦ୍ୟାକରଣ ଗୁରୁତ୍ୱପୂର୍ଣ୍ଣ ହେଲେ ମଧ୍ୟ ନିର୍ଦ୍ଦିଷ୍ଟତା ଏବଂ ନମନୀୟତା ହରାଇ ବସିଛି । ସମୁଦାୟ କବିତାଟି (ବନ୍ଧନୀ) ବିଭିନ୍ନ ଚିତ୍ରକଳ୍ପର ଏକତ୍ର ସମାବେଶ ମାତ୍ର । ଯଦିଓ ଏ ସବୁ ମିଶି ଗୋଟିଏ ନିର୍ଦ୍ଦିଷ୍ଟ ଚରିତ୍ରର କେତୋଟି ମାନସିକ ଅବସ୍ଥାର ଆଭାସ ଦେଉଛନ୍ତି, ସେଥିରେ ପୂର୍ଣ୍ଣତା ନାହିଁ । ଏଠି ଅନୁଭୂତି ଶିଥିଳ, ଚିତ୍ରକଳ୍ପ ଅନେକାଂଶରେ ବିଗ୍ରହିତ ।

'ସ୍ମୃତି ଲେଖା'ରେ ବି ସେହି ଦୁର୍ବଳତା ପରିଲକ୍ଷିତ ହୁଏ । 'ଗୋଧୂଳି ଆକାଶ' ପୋଷ୍ଟକାର୍ଡ଼ ପରି ଧୂସରବର୍ଣ୍ଣ ହୋଇପାରେ; କିନ୍ତୁ ସେଥିରେ ଆକାଶର ମହାଶୂନ୍ୟତା କାହିଁ ? ଚିତ୍ରଟି ଅନେକାଂଶରେ କାଳିଦାସୀୟ । ଆକାଶରେ ପ୍ରିୟାର ଚିଠାଉ ଦେଖିବାଟା ଅସମ୍ଭବ ନୁହେଁ, କିନ୍ତୁ ତାକୁ ସୀମିତ ଏବଂ ତା'ର ଚିରାଚରିତ ସଂଯୋଗରୁ ବିଚ୍ଛିନ୍ନ କରି-

ଦେବାରେ କେବଳ ବୌଦ୍ଧିକ ଉତ୍ତେଜନା ଛଡ଼ା ଅନ୍ୟ କିଛି ଥିଲା ପରି ମନେ ହୁଏ ନାହିଁ। କାବ୍ୟନାଯ଼କ ଆକାଶରେ 'ଖବର' ଦେଖିଛି (ଏ ଖବର ବି କୌଣସି ଶବ୍ଦ ମାଧ୍ୟମରେ ଫୁଟି ନାହିଁ। ଏହା ପୂରାପୂରି ଭାବରେ ଅମୂର୍ତ୍ତ। ଏହା ଯଦି ହୁଏ, ଜଣେ ଆକାଶରେ ମୈଥୁନଠାରୁ ଆରମ୍ଭ କରି ସବୁ କିଛି ଦେଖି ପାରିବ) ଏବଂ ହଠାତ୍ ପ୍ରିୟାର ନଗ୍ନ ବିଷୟରେ ଯଥେଷ୍ଟ ଭଳି ସଚେତନ ହୋଇ ଉଠିଛି। ତା'ର ସ୍ପର୍ଶ, ଗନ୍ଧ ଏବଂ ବାସସ୍ଥାନ ମନେ ପକେଇଛି।—କବିତାଟିରେ ତିନୋଟି ବିଭାଗ। ପ୍ରଥମଟିରେ ପ୍ରିୟାର ଆଞ୍ଚଳିକତାର (Locality) ନିର୍ଦ୍ଦିଷ୍ଟତା ନାହିଁ, ଦ୍ୱିତୀୟଟିରେ 'ଚୌରଂଘି'ର ଅବତାରଣା କରାଯାଇଥିଲେ ମଧ୍ୟ, ଏହି ଶବ୍ଦଟି ସମସ୍ତ ଆଞ୍ଚଳିକତା ହରାଇ ମନସ୍ତାତ୍ତ୍ୱିକ ହୋଇପଡ଼ିଛି।

'ଅଗଣିତ କାମନାର ଅନିଦ୍ରିତ ମିଳାର ଚୌରଂଘି' (ପଙ୍‌କ୍ତିଟି ନିଶ୍ଚୟ ଚମତ୍କାର। ଓଡ଼ିଆ କବିତାରେ ଏପରି ପଙ୍‌କ୍ତି ବିରଳ)

ପ୍ରିୟାର ଆଖିର ଭଙ୍ଗୀ ତା'ର ଗନ୍ଧ ଏବଂ ନାରୀସୁଲଭ ଲାଳିତ୍ୟ ବିରହଜନିତ କାମନାରେ ବିନିଦ୍ର ଚୌରଂଘି ପରି ବ୍ୟସ୍ତ; କିନ୍ତୁ ଶେଷ ବିଭାଗରେ କାଳିଦାସଙ୍କ 'ଦଶାର୍ଣ୍ଣ ଗ୍ରାମ' (ଯାହାକି କାବ୍ୟନାଯ଼କର କେବଳ ପ୍ରେମଭାବ ସହିତ ସଂଯୋଗ ରଖେ) ହଠାତ୍ ମେଲବୋର୍ଣ୍ଣ ହୋଇ ଉଠିଛି। ଅବଶ୍ୟ ଆଞ୍ଚଳିକତା ଦୃଷ୍ଟିରୁ ଆମର କିଛି କହିବାର ନାହିଁ (ନିଜେ ଶ୍ରୀ ରାଉତରାଯ଼ 'କବିତା ୧୯୬୨'ର ଦୀର୍ଘ ମୁଖବନ୍ଧରେ ଏହି ପ୍ରସଙ୍ଗ ଉଠାଇଛନ୍ତି) କିନ୍ତୁ ଶବ୍ଦକଳ୍ପ ଦୃଷ୍ଟିରୁ ମେଲବୋର୍ଣ୍ଣର ପ୍ରତିପନ୍ନକାରିତା ନାହିଁ। ତା' ଜାଗାରେ ଯେ କୌଣସି ସହରର ନାମ ଲେଖିଦେଲେ ଚଳିବ। କବିର କାମ ହେଲା—Shakespeareଙ୍କ ଭାଷାରେ "Airy nothing" କୁ ଗୋଟିଏ "Local habitation and name" ଦେବା। ଏଠି ଏହା ହୋଇନାହିଁ। ଶବ୍ଦକଳ୍ପର ଏଇ ଉଦ୍ଦେଶ୍ୟହୀନତା ଦୃଷ୍ଟିରୁ କବିତାଟି ପ୍ରାଣସ୍ପର୍ଶୀ ହେଲେ ମଧ୍ୟ ଯାନ୍ତ୍ରିକ ସୌନ୍ଦର୍ଯ୍ୟ ହରାଇଛି। ଅବଶ୍ୟ ପ୍ରଥମ ଭାଗର—

"ଉପଳ ବ୍ୟଥିତ ଗତି ଗିରିନଦୀକୂଳେ
ଅସଂଖ୍ୟ ପ୍ରାସାଦ ମେଳେ
ଏକାନ୍ତେ ଓ କୋଳାହଳେ, ଦିନଗଣେ"

ମେଲବୋର୍ଣ୍ଣ ସହିତ କ୍ଷୀଣ ସମ୍ପର୍କ ରଖିଛି, କିନ୍ତୁ—

"ଫଳଭରା ଜାମୁକନ ଗୁମ୍ଫା-ଗହ୍ୱଳରେ" ଚିତ୍ରଟି ଏକତାକୁ ଭାଙ୍ଗି ଦେଇଛି ।

ଚିତ୍ରକଳ୍ପ ସଙ୍ଗଠନ ଦୃଷ୍ଟିରୁ 'ପ୍ରତିଗୁମ୍ଫା' ଏକ ବିଫଳ କବିତା । ପ୍ରଥମେ ଗୋଟିଏ ବିଫଳତା, ଅଶାନ୍ତ ଏବଂ କ୍ଲାନ୍ତ ଚିତ୍ର ଦେଇ କବି ପୁଣି ତାକୁ ଆଉ ଗୋଟିଏ ଚିତ୍ର ମାଧ୍ୟମରେ ଫୁଟାଇବାର ଅପଚେଷ୍ଟା କରିଛନ୍ତି ।

"ସନ୍ଧ୍ୟା ବେଳେ ଏକ
ହାସପାତାଲର ନିଶୂନ ହତା
ଏ ଦେହଟା ।
ତା ଉପରେ ଚୂପ୍‌ଚାପ୍ ହୋଇ
ଶୋଇ ରହିଛି ଅଶାନ୍ତ ମନ ।
ଯେମିତି ଅବା ହାରି ଯାଇଥିବା ବ୍ୟାଡ଼ମିଣ୍ଟନ
ବଲ୍‌ଟା
ପଡ଼ି ରହିଥାଏ ଖେଳ ପରେ
କେଉଁ କଣ୍ଟା ଅରମା ଭିତରେ
ରକ୍ତାକ୍ତ ହୋଇ ।"

ଏ ଦେହଟା ସନ୍ଧ୍ୟାବେଳେ (ମାନସିକ ଏବଂ ଶାରୀରିକ ବୃଦ୍ଧାବସ୍ଥାରେ ବି) ଗୋଟିଏ ହାସପାତାଲର ନିର୍ଜନ ହତା ହୋଇପାରେ ଏବଂ ଅଶାନ୍ତ ମନ ତା' ଭିତରେ ଚୂପ୍‌ଚାପ୍ ଶୋଇବାଟା ବି ଅସମୀଚୀନ ନୁହେଁ । ଚିତ୍ରଟା ନିଶ୍ଚୟ ସଫଳ ; କିନ୍ତୁ ପରେ ପରେ ଅଶାନ୍ତ ମନଟାକୁ ଗୋଟିଏ ଖେଳ ଶେଷର ହାରି ଯାଇଥିବା ବ୍ୟାଡ଼ମିଣ୍ଟନର କଣ୍ଟକିତ ଏବଂ 'ରକ୍ତାକ୍ତ' ବଲ୍ ସହିତ ତୁଳନା କରି ପ୍ରଥମ ଇମେଜ୍‌ର ସମ୍ବେଦନଶକ୍ତିକୁ ବ୍ୟାହତ କରିଛନ୍ତି ବୋଲି ମନେ ହୁଏ । ଯଦିଓ ଏଥିରେ ଏକତା ଅଛି, ତା' ପୁରାପୁରି ବୌଦ୍ଧିକ । ତା'ପରେ ନାୟିକାର ମନପଟରେ ଭାସି ଉଠିଛି କୃତ୍ରିମ ପ୍ରେମ, ବିରହ, ଜନ୍ମର ଗତାନୁଗତିକତା ଏବଂ ଶେଷରେ ପୁରୁଣା ମୃତ୍ୟୁର ଚିତ୍ର । କବିତାଟିରେ ମନସ୍ତାତ୍ତ୍ୱିକ ବାସ୍ତବତା ଥିଲେ ମଧ୍ୟ ଚିତ୍ରକଳ୍ପର ଜୈବିକ ସଙ୍ଗଠନ ନାହିଁ ।

'ବସନ୍ତର ନିଛକ ଜଳରେ' ଏବଂ 'ସାମୁଦ୍ରିକ' କବିତା ଦୁଇଟିରେ ଚିତ୍ରଗୁଡ଼ିକ ସମ୍ପୂର୍ଣ୍ଣ ଭାବେ ଆତ୍ମକୈନ୍ଦ୍ରିକ । ପ୍ରଥମ କବିତାଟିର—

(୧) 'ମୋ ଦ୍ୱିଖଣ୍ଡ ରାଜଧାନୀ'

(୨) ମୋର ନିଭନ୍ତା ସ୍ୱପ୍ନେ ମୋ ଉର୍ଫିକ୍ ଗ୍ରୁପ୍ସା ମୂର୍ତ୍ତିଗଣେ
ଆଜି ମୋର ଜନ୍ମକୁ
ଯୂଥଭ୍ରଷ୍ଟ କରେ,
ସାମରିକ (ଅବା ନାଟ୍ୟଅଣ) ପାବଣ ନୃତ୍ୟରେ"

(୩) "ମୋ ଅଗ୍ନିର ଚତୁର୍ଥ ଶିଖାରେ ।"

—ଇତ୍ୟାଦି, ପୁରାଣ ଏବଂ ଭାରତୀୟ ଦର୍ଶନ ସହିତ ସମ୍ପର୍କ ରଖିଲେ ମଧ୍ୟ ନିଛକ ପ୍ରତୀକଧର୍ମୀ ଏବଂ ସମ୍ପୂର୍ଣ୍ଣରୂପ ସ୍ଥିର । ଏମାନଙ୍କର ନାଟକୀୟତା ଖୁବ୍ କମ୍ ।

'ସାମୁଦ୍ରିକ'ର—

(୧) "ସିନା ସଙ୍କେତ ନିଃଶବ୍ଦର କୋଣେ .."

(୨) "ମୁଁ ବି ଏଇ ସମୁଦ୍ରର, ମୁଁ ବି ଏଇ ସମୁଦ୍ରର
ମହାଯୌନତାର
ଅପଭ୍ରଂଶ .."
ଏଠି ମୁଁ ସତେଜ ରହେ ସବୁ ଶାମୁକା ଓ ମାଛଙ୍କାଠ ଶାଙ୍କର ଖେଳେ ।"

(୩) "ମୁଁ ପଶ୍ଚରେ ମୋ ଚୂନକୁ ମୋ ମଣିଷ ଶଙ୍ଖେ,
ମୋର ଲିଙ୍ଗ ଦେହେ"

ଇତ୍ୟାଦି ଚିତ୍ରକଳ୍ପଗୁଡ଼ିକ ପୂର୍ବବର୍ଣ୍ଣିତ ଦୋଷରେ ପୂର୍ଣ୍ଣ ; କିନ୍ତୁ ଏଠାରେ ଏତିକି କୁହାଯାଇପାରେ ଯେ 'କବିତା ୧୯୬୨'ର ପଞ୍ଚାବନ୍ଟି କବିତା ଭିତରୁ 'ସାମୁଦ୍ରିକ' ଓ 'ବସନ୍ତର ନିଛକ ଜଳରେ' ଖୁବ୍ ଉଚ୍ଚ-ଦରର ପ୍ରତୀକଧର୍ମୀ କବିତା । ବ୍ୟକ୍ତିଗତ ଅନୁଭୂତିର ସଂଘର୍ଷମୟ ଚେତନା ଏ ଦୁଇଟି କବିତାରେ ଯେପରି ଫୁଟିଛି, ଅନ୍ୟଗୁଡ଼ିକରେ ସେପରି ହୋଇ ନାହିଁ । ଦୁଇଟି କବିତାର ସ୍ୱତନ୍ତ୍ର ଅନୁଶୀଳନ ଦରକାର ।

ଶେଷରେ ଶ୍ରୀ ସଚି ରାଉତରାୟଙ୍କ ଚିତ୍ରକଳ୍ପ ପ୍ରୟୋଗ ବିଷୟରେ ଏତିକି କୁହାଯାଇ ପାରେ ଯେ, ଅନ୍ୟ କବିଙ୍କର ତୁଳନାରେ ତାଙ୍କର

ଇମେଜ୍‌ଗୁଡ଼ିକ ପୋଖତ ହାତର ପରିଚୟ ଦିଏ। ତାଙ୍କର ଚିତ୍ରକଳ୍ପରେ ଉତ୍କଟ ଅତ୍ୟାଧୁନିକ ଅସଂଲଗ୍ନତା ନାହିଁ ଏବଂ ଚେଙ୍ଗବାଣ ଚିତ୍ରକଳ୍ପ (ଯାହାକି ଫୁଟି ସାରିବା ପରେ ଅସ୍ତିତ୍ୱ ହରାଏ) ନାହିଁ। କେବଳ ଶ୍ରୀ ଗୁରୁପ୍ରସାଦ ମହାନ୍ତିଙ୍କୁ ଛାଡ଼ିଦେଲେ ଏ ଉତ୍କର୍ଷ ଅନ୍ୟ କବିଙ୍କଠାରେ ବିରଳ।

ଶ୍ରୀ ଗୁରୁପ୍ରସାଦ ମହାନ୍ତିଙ୍କ ରଚନାବଳୀରୁ 'କାଳପୁରୁଷ' ଶ୍ରେଷ୍ଠ ବୋଲି ନିଆଯାଇ ପାରେ। ତେଣୁ ଏଇ ଦୀର୍ଘ କବିତାରୁ କେତୋଟି ଉଦାହରଣ ନେଇ ରୂପକଳ୍ପର ପ୍ରୟୋଗ ଦେଖିବା।

'କାଳପୁରୁଷ'ର ପାଠକ ହଠାତ୍ ଗୋଟିଏ ନୂଆ ଦୁନିଆର ପରିଚୟ ପାଏ। ରୂପକଳ୍ପ ଦୃଷ୍ଟିରୁ ମଧ୍ୟ କେତୋଟି ନୂଆ ଉଦାହରଣ ଆମେ ଏଠି ପାଇଥାଉଁ। ତା' ହେଉଛି Empathic ବା ଭାବ-ପ୍ରକ୍ଷେପିତ ଚିତ୍ରକଳ୍ପ। ଏହାର ସବୁଠାରୁ ଭଲ ସଂଜ୍ଞା ପ୍ରଫେସର C.D. Thorpeଙ୍କର 'Empathy' (ପୃ: ୧୮୬)ରେ ମିଳେ। ସେ କହିଛନ୍ତି—

> "The theory of empathy esseys to explain imaginative experience in which there is an involuntary projection of ourselves into the object."

ଅର୍ଥାତ୍ – କଳ୍ପନାପ୍ରସୂତ ଅନୁଭୂତି ଯେଉଁଥିରେ କି ଆମ୍ଭମାନଙ୍କର (ମାନସିକ ଭାବ ଓ ଚିନ୍ତାର) ଗୋଟିଏ ଅନିଚ୍ଛାକୃତ ପ୍ରକ୍ଷେପଣ ବାହ୍ୟବସ୍ତୁ ଉପରେ ପଡ଼ିଥାଏ, ତାହା ହିଁ 'ଏମ୍ପାଥି'ର ତତ୍ତ୍ୱ।

ଏହାର ଆରମ୍ଭ ଜୀବତାତ୍ତ୍ୱିକ ଭାବରେ ହୋଇ ମନସ୍ତାତ୍ତ୍ୱିକରେ ଶେଷ ହୋଇଥାଏ। ଏଥିରେ ଗତିଶୀଳ, ଶକ୍ତିମୟ ଏବଂ ଜୈବିକ ପ୍ରବୃତ୍ତି ସହିତ କାବ୍ୟିକ ଅନୁଭୂତିର ଦ୍ରବଣ ବା ସଂଯୋଗ ହୋଇଥାଏ। ଏହି ଚିତ୍ରକଳ୍ପ ଅନେକ ସମୟରେ ଗୋଟିଏ ପିଣ୍ଡୀଭୂତ ଏବଂ ଚଳନଶୀଳ ଚିତ୍ର ପ୍ରକାଶ କରିଥାଏ। ଶାରୀରିକ ଏବଂ ଆଧ୍ୟାତ୍ମିକ ଚେତନାର ସମ୍ମିଶ୍ରଣ ଗୋଟିଏ ନିର୍ଦ୍ଦିଷ୍ଟ ବସ୍ତୁ ଉପରେ ହୋଇଥିବାରୁ ଏହା ଅନୁଭୂତିର ପୂର୍ଣ୍ଣତ୍ୱ ଏବଂ ବ୍ୟକ୍ତିତ୍ୱବର୍ଜିତ ଅନୁଧ୍ୟାନରେ ସାହାଯ୍ୟ କରେ।

ଏହି ଚିତ୍ରକଳ୍ପର ଉଦାହରଣ ମିଳେ 'କାଳପୁରୁଷ'ର ୭୦ରୁ ୭୪ ପଂକ୍ତିରେ—

> "ଏ ସହର ମୁହଁ ପରେ ଗୋଳ ଗୋଳ ପାଉଁଶ ଅଙ୍ଗାର
> ରାତର କୁହୁଡ଼ି ବୁଲେ ଗଳି ଗଳି ସଡ଼କେ ସଡ଼କେ
> ରାତର ଅଫିମ ନିଶା ଯାକଯୁକ ଯେବେ ଘୋଟି ଆସେ
> ସଙ୍କୁଚିତ ଡେଣା କରି ଯେବେ ଆସେ ଓହ୍ଲାଇ ଆକାଶ ।"

ଏ ସହର କେବଳ ମୃତ ଜଡ଼ବାଦୀ ସଭ୍ୟତାର ପ୍ରତୀକ ନୁହେଁ । ମୁମୂର୍ଷୁ ହେଲେ ମଧ୍ୟ ଏଠି ଆତ୍ମା ଅଛି, ଦେହର ଦାହ ଅଛି—"ଲୋକ ମରିଯାଇ ନାହିଁ ।" ନଗ୍ନଟିଆ କଣ୍ଟକ ଗଳାରେ (୩୧) । ତା'ର ସୀମା ଅଛି, ରେଖା, ଆକାର ପ୍ରକାର ମଧ୍ୟ ଅଛି । ତେଣୁ, 'ବାଟବାଟ' (କୁହୁଡ଼ିର ଆକାରର ସୀମା ନାହିଁ, ଗତି ଅଛି, ସ୍ଥିତି ଅଛି । ତେଣୁ ଅନ୍ଧ କୁହୁଡ଼ି ବାଟବାଟ ବୁଲିବାଟା ଖୁବ୍ ହୃଦ୍ୟ ହୋଇଛି) ଏ ସହରର ଗଳି ଓ ସଡ଼କରେ ବୁଲୁଛି । 'ଗୋଳ ଗୋଳ' ଦ୍ୱିତ୍ୱ ପଙ୍କ୍ତିର ଗତିକୁ ବି ନିୟନ୍ତ୍ରିତ କରୁଛି । ଚିତ୍ରକଳ୍ପଗୁଡ଼ିକ ବିଶେଷ କରି ସ୍ପର୍ଶଜନିତ (ଗୋଳ ଗୋଳ, ଯାକଯୁକ) 'ରାତର ଅଫିମ ନିଶା'—ଦୃଷ୍ଟିଜନିତରୁ ଆରମ୍ଭ ହୋଇ ମନସ୍ତାତ୍ତ୍ୱିକ ହୋଇଛି ; ଅଫିମ ଦେଖିବାକୁ କଳା ଏବଂ ତା'ର ସେବନରେ ଚିନ୍ତାଶକ୍ତି ଏବଂ ଶରୀରର ଗତି ହ୍ରାସ ପାଏ । ରାତି ଯେତେବେଳେ ଏ ମୁମୂର୍ଷୁ ସହରକୁ କୁହୁଡ଼ି ନେଇ ଆସେ, ସେତେବେଳେ ଏ ପ୍ରାଣହୀନ ସହରକୁ ଆହୁରି ଚେତନାହୀନ କରି ଦେବାଲାଗି—ଏ ଚିତ୍ରଟି ଖୁବ୍ ଯୁକ୍ତିଯୁକ୍ତ ହୋଇଛି । ପୁଣି 'ଡେଣା' ଜୀବଧାରୀର ହୋଇଥିବାରୁ ଏବଂ ସବୁବେଳେ ଗୋଟିଏ ବିସ୍ତୀର୍ଣ୍ଣ ଭାବ ସୂଚାଉଥିବାରୁ, ରାତିର ମୁମୂର୍ଷୁ କାଳମାଭିତରେ ଆକାଶର ହଜିଲା ରୂପକୁ 'ସଙ୍କୁଚିତ ଡେଣା' ଦ୍ୱାରା କବି ଗୋଟିଏ ଯଥାର୍ଥ ଚିତ୍ରରେ ପ୍ରକାଶ କରିଛନ୍ତି । ଅନ୍ଧାର ଭିତରେ 'ସୀମିତ ମୋ ପୃଥିବୀର ଦିଗ ହଜେ, ହଜିଯାଏ ଉପର ଓ ତଳ' (୨୪) । ପ୍ରତ୍ୟେକ ଆକାଶ ଓ ପୃଥିବୀ ଏହି ଅଫିମ ନିଶା ଗତି ଭିତରେ ଯାକଯୁକ ହୋଇ ଏକାକାର ହୋଇଯାଇଛନ୍ତି ; ଏହା ଗୋଟିଏ ସଫଳ ଭାବ-ପ୍ରକ୍ଷେପିତ ଚିତ୍ର କେବଳ ନୁହେଁ—ଏହା ପୂର୍ବବର୍ଣ୍ଣିତ ସହର ଓ କବିତାର ମୂଳକଥା ସହିତ ବାସ୍ତବିକ ଏବଂ ମନସ୍ତାତ୍ତ୍ୱିକ ସମ୍ବନ୍ଧ ରକ୍ଷା କରିଛି ।

ଏହି ପ୍ରକାର ପ୍ରୟୋଗରୁ ଆଉ ଗୋଟିଏ ଉଦାହରଣ ନେଲେ ଚଳିବ । 'କାଳ ପୁରୁଷ'ର ଚତୁର୍ଥ ଭାଗର ୧୯୦ରୁ ୧୯୮ ପଂକ୍ତିରେ ଏହା ବିଦ୍ୟମାନ ।

"ଗୀତ ମୋର ଭାସିଗଲା ଯୁଏ ଯୁଏ କେନାଲ୍ ପାଣିରେ
ଡିଗାରେଟ୍ ଖୋଳ ମୋର ଭାସିଗଲା ଧଣ ଧଣ
ସନ୍ଧ୍ୟା କ୍ରମେ ପାଣି ଫାଟି ମରିଗଲା
ଅପଲନ୍ତ୍ରୀ ଆକାଶ ଭିତରେ ।
ମୁଁ ଶୁଣିଲି ପଛରେ ମୋ ଛତ୍ରା ହେଲା କାର୍ ଆସି
ସାଧବ ଯୁବତୀମାନେ ଅଢ଼ ପ୍ରମୋଦରେ
କାର ଚଢ଼ି ଚାଲିଗଲେ ଉଡ଼ିଗଲେ କାଉ ଓ ବାଦୁଡ଼ି
କି ଶବ୍ଦେ ପବନ ଗଲା ପଥ ସବୁ ତୋଳି ତୋଳି
ଇଟା ଭାଟି ଧୂଆଁ ଠେଲି କାଠଯୋଡ଼ି ଆଡ଼େ ।"

ଚିତ୍ରକଳ୍ପର ପ୍ରତିପନ୍ନକାରିତା ଦୃଷ୍ଟିରୁ ଆଉ ଗୋଟିଏ ଭିନ୍ନ ଧରଣର ଉଦାହରଣ ନିଆଯାଇପାରେ ।

"ସେଦିନ ରମୁର ପୁଅ ସ୍କୁଲ ପିଲା ଦଶବରଷର
ଶ୍ଳୋକ ପଢ଼ି ଲୁହ ପୋଛୁ ନଗ୍ନଛିଆ ମଶାଣି ଉପରେ
ରମୁକୁ ଫେରାଇଦେଲେ ଆକାଶକୁ ପବନକୁ
ନଗ୍ନଛିଆ ନଇ ପଠାରକୁ ।" (୧୮୩-୮୬)

ଚିତ୍ରକଳ୍ପର ସଙ୍କୁଚନ ହିଁ ଏହାର ବୈଶିଷ୍ଟ୍ୟ । ପ୍ରଥମ ପଙ୍‌କ୍ତିରେ ରମୁର ପୁଅର ବୟସ ଏବଂ ଅନ୍ୟ ପରିଚୟ । ଦ୍ୱିତୀୟରେ ହିନ୍ଦୁ ସଂସ୍କୃତିର ଚିରାଚରିତ ପ୍ରଥାଗତ କୃତ୍ୟ ଏବଂ ତୃତୀୟ ପଙ୍‌କ୍ତିରେ ଅନାଚ୍ଛାଦିତ ଦର୍ଶନ ଏବଂ ମୃତ୍ୟୁ-ରହସ୍ୟ । ପୁଣି ରମୁର ପୁଅର ଶୋକ, ମଶାଣିର ଅବସ୍ଥା ଏବଂ ମୃତ୍ୟୁର ବିଷାଦ ମିଶି ଏ ଛବିଟି ଧାଡ଼ି ଖୁବ୍ ନାଟକୀୟ ହୋଇଛି । ଶେଷ ପଙ୍‌କ୍ତିରେ ଆଉରି ଗୋଟିଏ ଉତ୍କର୍ଷ ଦେଖିବାକୁ ମିଳେ । ସମସ୍ତେ ଜାଣନ୍ତି ଯେ ମନୁଷ୍ୟ ପାଞ୍ଚଟି ଉପାଦାନରେ ଗଢ଼ା (ପଞ୍ଚଭୂତ ଆତ୍ମା) । ରମୁର ମୃତ୍ୟୁ ପରେ ତା'ର ପ୍ରେତାତ୍ମାର ଜୀବନ୍ୟାସ ହୋଇଛି ଖଡ଼ିରତ୍ନଙ୍କର ସଂସ୍କୃତ ଶ୍ଳୋକରେ । ଶବଦାହ ପରେ ଅଗ୍ନି ଉପାଦାନଟି ଚାଲିଯାଇଛି ଏବଂ ବାକି

ଗୁଡ଼ିକି—ଅକାଶ, ପବନ, ପାଣି ଏବଂ ମାଟି—ସବୁ ଯେମିତି ଫେରାଇ ଦିଆଯାଇଛି ।

'ଦମ୍ଭକୁ ଫେରାଇ ଦେଲି ଆକାଶକୁ ପବନକୁ ନିସ୍ତବ୍ଧିଆ ନକ୍ଷ ପତ୍ରାରକୁ'—ଏ ଅପୂର୍ବ ସମାବେଶ ଅନ୍ୟ କବିଙ୍କଠାରେ ଦେଖାଯାଏ ନା ।

ଆଉ ଗୋଟିଏ ଉଦାହରଣ ନେଇ 'କାଳପୁରୁଷ'ର ଶବ୍ଦକଳ୍ପର ଆଲୋଚନା ଶେଷ କରିବି । ପଞ୍ଚମ ଭାଗର ୨୮୦ ଠାରୁ ୨୮୫ ପଂକ୍ତିରେ ଶ୍ରୀ ମହାନ୍ତି ଏଲିଅଟ୍‌ଙ୍କର ସମକକ୍ଷ ହୋଇଛନ୍ତି—

"ନିଃଶବ୍ଦ ଏ ବାଲିଚର ବାଲି ଆଉ ବାଲି
ବିବର୍ଣ୍ଣ ଘାସ ଓ ବାଲି ପଥହୀନ ବିବର୍ଣ୍ଣ ପୃଥିବୀ
ଉପରେ ନିସ୍ତେଜ ସୂର୍ଯ୍ୟ ପଥହୀନ ବିବର୍ଣ୍ଣ ଅକାଶ
ବିବର୍ଣ୍ଣ ବାଲି ଓ ଘାସ ଶେଷହୀନ ଶୋଷ ଆଉ ଶୋଷ
ନିସ୍ତେଜ ସୂର୍ଯ୍ୟର ଦୃଷ୍ଟି ବାଲି ପୁଣି ବାଲି ଓ ଆକାଶ ।"

ଏହି ପଂକ୍ତିଗୁଡ଼ିକରେ କୌଣସି କ୍ରିୟା ନାହିଁ ଏବଂ ଏହା ଗତିହୀନ । ଆକାଶ, ପୃଥିବୀ ଏବଂ ଉଦ୍ଭିଦବର୍ଗରେ ନିବିଡ଼ ଶୂନ୍ୟତା, ବେଦନା ଏବଂ କ୍ଳାନ୍ତିହୀନତା ଦେଖାଇବାକୁ ଯାଇ କବି କେତୋଟି ଅସ୍ୱୀକାରବାଚୀ ଇମେଜ୍ ବ୍ୟବହାର କରିଛନ୍ତି । ନିଃଶବ୍ଦ (ଶ୍ରୁତିଜନିତ), ବିବର୍ଣ୍ଣ (ଦୃଷ୍ଟିଜନିତ), ନିସ୍ତେଜ (ଦୃଷ୍ଟି ଏବଂ ସ୍ପର୍ଶଜନିତ) ଏବଂ 'ପଥହୀନ' ଓ 'ଶେଷହୀନ' (ଅନୁଭୂତିବାଚୀ ହେଲେ ମଧ୍ୟ ଅନେକାଂଶରେ ଅଶରୀରୀ ଅନୁଭୂତି) ଦ୍ୱାରା ଗୋଟିଏ ନିର୍ଜୀବ ଏବଂ ସ୍ଥିର ପରିବେଶର ଚିତ୍ର ଦେଇଛନ୍ତି । ଏହିସବୁ ପୁଣି କେତୋଟି ସ୍ପଷ୍ଟ କଥିତ ଶବ୍ଦ ଯଥା 'ବାଲିଚର', 'ବାଲି' ଏବଂ 'ଶୋଷ' ଦ୍ୱାରା ସମୃଦ୍ଧ ହୋଇଛି । ଏହାର ସମ୍ପୂର୍ଣ୍ଣ ପ୍ରଭାବ ଗୋଟିଏ ପ୍ରାଣହୀନ ବାସ୍ତବତାର ସୃଷ୍ଟି କରୁଛି ।

'କାଳପୁରୁଷ'ର ସମସ୍ତ ଶବ୍ଦକଳ୍ପ ଏହିପରି ଏକତା, ସଂହତି ଏବଂ ସାଙ୍କେତିକ ସଂଯୋଗର ଯାନ୍ତ୍ରିକ ନିୟମ ରକ୍ଷା କରୁଛି । ଏ କବିତାଟିର ମଧ୍ୟ ବିସ୍ତୃତ ବିଶ୍ଳେଷଣ ଦରକାର । ଶ୍ରୀ ମହାନ୍ତି ଶ୍ରୀ ରାଉତରାୟଙ୍କ ପରି ପୋଖତ ହାତର 'ଚତୁଷ୍ପଦୀ' ଲେଖନ୍ତି । କିନ୍ତୁ ଶ୍ରୀ ମହାନ୍ତିଙ୍କର ଅନ୍ୟାନ୍ୟ କବିତା

ଯଥା—'ଚିଠି', 'କପୋତ-କପୋତୀ' ପ୍ରଭୃତିରେ ଏ ଦକ୍ଷତାର ଅଭାବ ଅନୁଭୂତ ହୁଏ ।

ପରିଶେଷରେ ଆଧୁନିକ କବିତାରେ ଚିତ୍ରକଳ୍ପର ବ୍ୟବହାର ସମ୍ପର୍କରେ ଏତିକି କୁହାଯାଇପାରେ ଯେ ଅନୁଭୂତିର ସମ୍ପୂର୍ଣ୍ଣ ଅନୁଶୀଳନର ଅଭାବଯୋଗୁ ଅନେକ କବିତାରେ ଚିତ୍ରକଳ୍ପଗୁଡ଼ିକ ମୁହୂର୍ତ୍ତର ଉତ୍ତେଜନା ମଧ୍ୟରେ ସୀମିତ ହୋଇ ପଡ଼ୁଛି । କାବ୍ୟିକ ସଙ୍ଗଠନର ଦୋଷ ଦୁର୍ବଳତା ଏହି ଭ୍ରାନ୍ତ ଚିତ୍ରକଳ୍ପଦ୍ୱାରା ବିଶେଷଭାବେ ଦୃଷ୍ଟିରେ ପଡ଼ୁଛି ; କିନ୍ତୁ ଯେଉଁ କବିତାଟି କାବ୍ୟିକ ଅନୁଭୂତି ସହିତ ଭାଷା ଏବଂ ଛନ୍ଦର ମିଳନ ଆଣି ପାରୁଛି, ସେଥିରେ ଚିତ୍ରକଳ୍ପ ଭୂଷଣ ହେବା ସଙ୍ଗେ ସଙ୍ଗେ ଉପଭୋଗ୍ୟ ବି ହେଉଛି । ମୋଟାମୋଟି ଦେଖିଲେ ଓଡ଼ିଆ କବିତାରେ ଚିତ୍ରକଳ୍ପର ପ୍ରୟୋଗ ଭବିଷ୍ୟତ ଲାଗି ମନରେ ଆଶାର ସଞ୍ଚାର କରେ ।

---

# ମୋ ଦୃଷ୍ଟିରେ
# ସାଂପ୍ରତିକ କବି ଓ କବିତା

**ଅଧ୍ୟାପକ ଶ୍ରୀ ସୌଭାଗ୍ୟକୁମାର ମିଶ୍ର**

"ଆପଣ କାହିଁ ପାଇଁ ଲେଖନ୍ତି ?" ପାଠକର ଏଭଳି ପ୍ରଶ୍ନର ଦୁଇ ପ୍ରକାର ଉତ୍ତର କବିମାନେ ଦେଇଥା'ନ୍ତି । କେହି ଆତ୍ମ-ସଚେତନ କବି କହିପାରନ୍ତି "ମୋ ନିଜ ପାଇଁ" । ଏତାଦୃଶ କବିମାନଙ୍କୁ ପାଠକ ସନ୍ଦେହ କରିଥାଏ; ଅନେକ ସମୟରେ ବିଚଳିତ ହୋଇପଡ଼ି କବି ପାଖରୁ ଦୂରକୁ ଚାଲିଯାଏ । କିନ୍ତୁ ଏ କ୍ଷେତ୍ରରେ ସନ୍ଦେହର ଅବକାଶ ନାହିଁ । କାରଣ ଏମିତି ଉତ୍ତର ଦେଉଥିବା କବି ତା'ର କଳା ସୃଷ୍ଟି ପ୍ରତି ଆନ୍ତରିକ । ତେବେ ସେ ପ୍ରକାଶ କରେ କାହିଁକି ? ଯାହା ଲେଖେ ତାକୁ ଛପା ଅକ୍ଷରରେ ଦେଖିବା ପାଇଁ ଲାଳାୟିତ ହୁଏ କାହିଁକି ? କବିର କାମ ହେଲା ଚେତନ ସ୍ତରକୁ ଟପି ତା'ର ଅବଚେତନ ରାଜ୍ୟର ସମସ୍ତ ଗୁପ୍ତ ରହସ୍ୟ ଉଦ୍‌ଘାଟନ କରିବା । ଅନ୍ୟ କଥାରେ କହିଲେ ସେ ତା'ର କବିତା ଭିତରେ ଏକ ପ୍ରକାର ଲଙ୍ଗଳା ହୋଇ ଠିଆ ହୋଇଯାଏ । ଅନ୍ୟମାନେ ଦେଖିବାର, ମନ୍ତବ୍ୟ କରିବାର ଆଶଙ୍କା ତାକୁ ଏକ ଉତ୍ତେଜନା ଯୋଗାଏ । ଏହି ଉତ୍ତେଜନା ହିଁ ତାକୁ ଅଧିକ କାବ୍ୟସୃଷ୍ଟି ପାଇଁ ପ୍ରେରଣା ଦେଇଥାଏ । ଦ୍ୱିତୀୟ ଗୋଷ୍ଠୀର କବିମାନେ କହନ୍ତି "ସେମାନେ ପାଠକମାନଙ୍କ ପାଇଁ ଲେଖନ୍ତି ।" ଭଲ କଥା, ସେମାନଙ୍କର ଉତ୍ତର ବେଶ୍ ସ୍ପଷ୍ଟ; କିନ୍ତୁ ପ୍ରଶ୍ନ ହେଉଛି କାବ୍ୟ ସୃଷ୍ଟି କାଳରେ କବି କ'ଣ ସତରେ ପାଠକମାନଙ୍କ ସମ୍ପର୍କରେ ସଚେତନ ? ଯଦି ତା' ହୋଇଥାଏ, ସେ ତା'ର ନିଜସ୍ୱ ଅନୁଭୂତି ଆବେଗ ପ୍ରତି ଯଥେଷ୍ଟ ଆନ୍ତରିକ ହୋଇପାରିବ ତ ?

ସେ ଯା' ହେଉନା କାହିଁକି, ଯେ କୌଣସି କବିର ଇଚ୍ଛା ଅନ୍ୟମାନେ ତା'ର କବିତା ପଢ଼ନ୍ତୁ, ଆଲୋଚନା କରନ୍ତୁ, ସାହିତ୍ୟରେ ତା'ର

ସ୍ଥାନ ନିରୂପଣ କରନ୍ତୁ । ଅନ୍ୟ ପକ୍ଷରେ ଜଣେ ସାମାଜିକ ପ୍ରାଣୀ ହିସାବରେ କବିର ଦାୟିତ୍ୱ ରହିଛି ତା'ର ପାଠକ ଗୋଷ୍ଠୀ ପ୍ରତି, ତା'ର ସମାଜ ପ୍ରତି । କବି ଓ ପାଠକ ଭିତରେ ଏତାଦୃଶ ଆଦାନ ପ୍ରଦାନ ସୁସ୍ଥ ସାଂସ୍କୃତିକ ବାତାବରଣ ସୃଷ୍ଟି କରିଥାଏ । ତଦ୍ଦ୍ୱାରା ଉଭୟ କବି ଓ ସମାଜର ଉନ୍ନତି ଘଟିଥାଏ । ଦୁଃଖର କଥା, ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ପରିସ୍ଥିତି କେମିତି ଏକ ଭିନ୍ନ ଧରଣର । କବି ଓ ପାଠକ ଉଭୟେ ଜାଣନ୍ତି ଯେ, ସେମାନଙ୍କ ମଧ୍ୟରେ ଏକ କୃତ୍ରିମ ଦୂରତ୍ୱ ସୃଷ୍ଟି ହୋଇଛି । ଏ ଦୂରତ୍ୱ କମିବା ପରିବର୍ତ୍ତେ ପ୍ରତିଦିନ ବଢ଼ି ଚାଲିଛି । କବି ତା'ର ପ୍ରକୃତିଗତ ଅହଙ୍କାରରୁ ହେଉ ବା କୌଣସି ଉଚ୍ଚତର ଆଦର୍ଶରୁ ହେଉ ପାଠକର ମତାମତକୁ ଖାତିର କରୁନାହିଁ । ପାଠକ କବିତା ପ୍ରତି ଉଦାସୀନ ରହୁଛି, କାରଣ ସେ କଦାପି ଅନୁଭବ କରି ପାରୁନାହିଁ କବିତା କି କି ଭାବରେ ତା'ର ସାଧାରଣ ଜୀବନକୁ ପ୍ରଭାବିତ କରୁଛି । ତଥାପି, କବିତା ଲେଖା ହେଉଛି ନୂଆ ଧରଣର, ନୂଆ ସ୍ୱାଦର । କବି ଓ ପାଠକର ପରସ୍ପର ପ୍ରତି ଅଭିଯୋଗ ମଧ୍ୟ ଅବାରିତ ଭାବରେ ବଢ଼ି ଚାଲିଛି । ତେବେ ଆଧୁନିକ କବିତାକୁ ଏକ ସୀମିତ ଗୋଷ୍ଠୀର ଓଡ଼ିଆ ପାଠକ ଗ୍ରହଣ କରି ନେଲେଣି । ପାଞ୍ଚ ସାତ ବର୍ଷତଳେ ଆଧୁନିକତା ବିରୋଧରେ ଯେତେ ତର୍କ, ବାକ୍‌ବିତଣ୍ଡା ହେଉଥିଲା ଆଜି ତା' ହେଉ ନାହିଁ । ଏହା ଭଲ ସୂଚନା ନୁହେଁ, କାରଣ ଯା' ପଛରେ କବି-ପାଠକର ପାରସ୍ପରିକ ଉଦାସୀନତା ରହିଛି । ମନେ ହେଉଛି, ଆଧୁନିକତା ନାମକ ସାଂସ୍କୃତିକ ପରିବର୍ତ୍ତନକୁ ଅପରିହାର୍ଯ୍ୟ ବୋଲି ଓଡ଼ିଆ ପାଠକ ଗ୍ରହଣ କରି ନେଇଛି । ପୁଣି ଆଧୁନିକତା ଏକ ସମ୍ମାନସୂଚକ ; ତେଣୁ ଭୟ-ଉଦ୍ରେକକାରୀ ଶବ୍ଦରେ ପରିଣତ ହୋଇଗଲାଣି ।

ଏ ଦୂରତ୍ୱ କାହିଁକି ? ଆଧୁନିକ ଓଡ଼ିଆ କବିତାର ପାଠକ କେଉଁମାନେ ? ଗଲା କେତେ ବର୍ଷ ଭିତରେ ଆଧୁନିକ କବିତା ସମ୍ପର୍କରେ ଯେତେ ସବୁ ଆଲୋଚନା ପତ୍ରପତ୍ରିକାରେ ପ୍ରକାଶିତ ହୋଇଛି, ଅଧିକାଂଶ କବିମାନଙ୍କଦ୍ୱାରା ଲିଖିତ । ତା'ର ଅର୍ଥ, ବୋଧ ହୁଏ କବିମାନେ ହିଁ ସେମାନଙ୍କର କବିତା ବୁଝୁଛନ୍ତି, ରସ ଗ୍ରହଣ କରୁଛନ୍ତି । କବି ଓ କବିତାର ରାଜ୍ୟ ସଂକୀର୍ଣ୍ଣ ହୋଇ ପଡ଼ୁଛି । ପରିସର ବାହାରେ ସାଧାରଣ ଜୀବନ ଆଗ ପରି ଚାଲିଛି । କୌଣସି କାଳ୍ପନିକ ପାଠକ କବିତାଦ୍ୱାରା ପ୍ରଭାବିତ ହୋଇପାରି ନାହିଁ । ଯଦି ହୋଇଥାନ୍ତା, ସେ ଆଧୁନିକ ଓଡ଼ିଆ

କବିତାର ସୂକ୍ଷ୍ମ ଆଲୋଚନା କରିଥାନ୍ତା, ମୂଲ୍ୟାୟନ କରିଥାନ୍ତା । ମତେ ବା ଅନ୍ୟ କବିମାନଙ୍କୁ ଏ ପ୍ରକାରର ପ୍ରବନ୍ଧ ଲେଖିବାକୁ ପଡ଼ି ନ ଥାନ୍ତା । ଏଇଟା କ'ଣ ଲେଖିଚ, ବୁଝାଅ—ଭଳି ଦାବୀକୁ ଏଡ଼ାଇ ଦେଇ ହୋଇଥାନ୍ତା ; କିନ୍ତୁ ପରିସ୍ଥିତି ଅନ୍ୟ ପ୍ରକାରର ।

ଆମମାନଙ୍କ ବିରୋଧରେ ପାଠକର ଅଭିଯୋଗ କ'ଣ ? ଆମର କବିତା ଅତ୍ୟନ୍ତ ବୌଦ୍ଧିକ ଓ ଦୁର୍ବୋଧ । ଏହା ହିଁ ମୁଖ୍ୟ ଅଭିଯୋଗ । ଓଡ଼ିଆ କବିତା କାହିଁକି, ଯେ କୌଣସି ଦେଶର ଆଧୁନିକ କବିତାରେ ବୁଦ୍ଧିର ପ୍ରାଧାନ୍ୟ ଅନସ୍ୱୀକାର୍ଯ୍ୟ । ସପ୍ତଦଶ ଶତାବ୍ଦୀରୁ ଆରମ୍ଭ କରି ଏ ଯାବତ୍ ମନୁଷ୍ୟର ବୁଦ୍ଧି ଅଧିକ ତୀକ୍ଷ୍ଣ ଓ ଶକ୍ତିଶାଳୀ ହୋଇଚି । ଜୀବନର ସମସ୍ତ ଜଟିଳ ସମସ୍ୟାକୁ ସେ ବୁଦ୍ଧିର ଯନ୍ତ୍ରପାତି ଧରି ପରୀକ୍ଷା କରିଚି ଓ ବହୁ ସୁଫଳ ପାଇଚି । କବିତା, ଉପନ୍ୟାସ, ନାଟକ ପ୍ରଭୃତି ଏହି ମନୁଷ୍ୟର ସୃଷ୍ଟି ହୋଇଥିବାରୁ ସବୁଥିରେ ବୁଦ୍ଧିର ପ୍ରୟୋଗ ହେବା ସ୍ୱାଭାବିକ ; କିନ୍ତୁ ଏ କ୍ଷେତ୍ରରେ ବୌଦ୍ଧିକତା କାବ୍ୟ-ଆବେଗ ଅପେକ୍ଷା ଅଧିକ ଶ୍ରେଷ୍ଠ ବା ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଚି, ଏହା ଭାବିବା ଭ୍ରମାତ୍ମକ । ବିଶେଷ କରି କବିତାରେ କାବ୍ୟ-ଆବେଗ ହିଁ ବଡ଼ କଥା । ଏହି ଆବେଗକୁ ଶୃଙ୍ଖଳିତ, ସଂଯତ ଭାବରେ ପ୍ରକାଶ କରିବା ପାଇଁ କବି ବୁଦ୍ଧିର ସାହାଯ୍ୟ ନେଉଥାଏ । କାବ୍ୟ-ସୃଷ୍ଟି ପ୍ରକୃତିରେ ଏକ ବୌଦ୍ଧିକ ପ୍ରକ୍ରିୟା ନୁହେଁ । ରାଧାନାଥ ତାଙ୍କ ଇଚ୍ଛା ଅନୁସାରେ ବୁଦ୍ଧିର ପ୍ରୟୋଗ କରିଚନ୍ତି । ରମାକାନ୍ତ ରଥଙ୍କର ବୋଧ ହୁଏ ଆଉ ଟିକିଏ ବେଶି ଦରକାର ଏବଂ ସେ ସେପରି ଭାବରେ ବୁଦ୍ଧିର ବ୍ୟବହାର କରିଚନ୍ତି । 'ଲଣ୍ଠନ' ବା 'ମାଷ୍ଟ୍ରାଣୀ' କବିତାରେ କ'ଣ ଖାଲି ବୌଦ୍ଧିକତା ଅଛି ? 'ବାଘ ଶିକାରରେ' ଯେ କୌଣସି ସଚେତନ ପାଠକ ନିଶ୍ଚୟ ଅନୁଭବ କରିବ ଯେ ଏ କବିତାମାନଙ୍କରେ ବୁଦ୍ଧିର ବ୍ୟବହାର କାବ୍ୟ-ଆବେଗ ଓ ଅନୁଭୂତିକୁ ଅଧିକ ଶାଣିତ କରିଚି । କବି ମଧ୍ୟ ଜଣେ ଅତ୍ୟନ୍ତ ବୁଦ୍ଧିମାନ ଲୋକ । ସେ ଆଉ ଆଗପରି ଭଗବତ୍-ପ୍ରେରିତ ହୋଇ ଅଚେତନ ଉଚ୍ଛ୍ୱାସରେ କବିତା ଲେଖୁ ନାହିଁ । କବି ପ୍ରତି ଆମର ଦୃଷ୍ଟିଭଙ୍ଗୀ ବଦଳିବା ଉଚିତ, ବଦଳିବାକୁ ବାଧ୍ୟ । ବୁଦ୍ଧିର ସାହାଯ୍ୟ ନେଇ କବି ତା'ର ଅନୁଭୂତିର ଅନୁଶୀଳନ କରିବା ମଧ୍ୟ ଦରକାର, କାରଣ ଅନେକ ସମୟରେ ତା'ର ମୌଳିକ ଆବେଗ ପ୍ରେରଣା ନ୍ୟୂନତର ହୋଇ ପାରିଥାଏ । ତେବେ ବୁଦ୍ଧିର ପ୍ରାଧାନ୍ୟ ଫଳରେ କବିତା ତା'ର ଆଗର ଉଚ୍ଛ୍ୱାସ, ସଙ୍ଗୀତମୟତା କେତେକାଂଶରେ ହରାଇ

ବସିଛି । ଏହା ସ୍ୱାଭାବିକ ପରିଣତି ; କିନ୍ତୁ କବିତା ଆଉ କବିତା ହୋଇ ରହି ନାହିଁ କହିବା କଷ୍ଟକର ମାତ୍ର ।

ଆଧୁନିକ କବିତା ଦୁର୍ବୋଧ ନିଶ୍ଚୟ । ଦୁର୍ବୋଧର ଅର୍ଥ ବୁଝିବା କଷ୍ଟସାଧ୍ୟ । କବିତା ମାତ୍ରେ ହିଁ ଦୁର୍ବୋଧ । ଉପେନ୍ଦ୍ରଭଞ୍ଜ, ଅଭିମନ୍ୟୁ ବା କବିସୂର୍ଯ୍ୟଙ୍କ କବିତା କେଉଁ ଭାବରେ ସହଜ ? କେବଳ ଏତିକି କୁହାଯାଇପାରେ ଯେ, ସେମାନଙ୍କ କବିତା ପଢ଼ିଲା ବେଳେ ଆମେ ସଙ୍ଗୀତ-ମୟତାରେ ଏତେ ତନ୍ମୟ ହୋଇପଡୁ ଯେ ଅର୍ଥ ବୁଝିବା ପାଇଁ ଆମର ସମୟ ନ ଥାଏ । ସେମାନଙ୍କ ଭାଷାର ଲାଳିତ୍ୟ ଓ ଛନ୍ଦ ଆମକୁ ମୁଗ୍ଧ କରି ରଖେ ।

"ଗାଏ ତୁମ୍ଭ ଗୀତ ସ୍ୱରରେ ପଣ୍ଡିତ ପଥେ ପାନ୍ଥ ହୃଷ୍ଟମନା ।"

ହିଁ ନିଶ୍ଚୟ ; କିନ୍ତୁ ଏମାନେ ସମସ୍ତେ ଗାଆନ୍ତି ମାତ୍ର । ବୁଝନ୍ତି କି ନାହିଁ କିଏ କହିବ ? କବିତା କାହିଁକି ଦୁର୍ବୋଧ ? ପ୍ରଥମତଃ କବିତା ଏପରି ଏକ କଳା, ଦୁର୍ବୋଧତା ଯାହାର ପ୍ରକୃତିଗତ । ଗଦ୍ୟରେ ଭାଷାର ବ୍ୟବହାର କରି ଯାଇଥାଏ । କବିତାରେ ସେତିକି ବଙ୍କା ଓ ଆପାତପକ୍ଷେ ଅସଂଲଗ୍ନ ଭାବରେ ହୋଇଥାଏ । ମାନସିଂହଙ୍କ—

"ଏହି ସହକାର ତଳେ
ସେଦିନ ପ୍ରିୟାର କରକଙ୍କଣ ଭିଡ଼ିଥିଲା ମୋର ଗଳେ ।"

ଆମେ କ'ଣ ବୁଝୁ ? ସେଦିନ ଆମ୍ବ ଗଛ ତଳେ ଠିଆ ହୋଇ ପ୍ରିୟା ମଣ୍ଡେ ଆଲିଙ୍ଗନ କରିଥିଲା ? ଏହା କ'ଣ ତା'ର ଅର୍ଥ ? ସହକାର, କରକଙ୍କଣ ଓ ଭିଡ଼ିଥିଲା ପ୍ରଭୃତି ଶବ୍ଦଗୁଡ଼ିକ ବଦଳାଇଦେଲେ ଏ ଧାଡ଼ିଟିର ସୌନ୍ଦର୍ଯ୍ୟ ଅକ୍ଷୁର୍ଣ୍ଣ ରହିବ ତ ? ଭିଡ଼ିଥିଲା ଶବ୍ଦର ଆବେଗ ଓ ଘନିଷ୍ଠତା ବୋଧ ହୁଏ ଅନ୍ୟ କୌଣସି ଶବ୍ଦଦ୍ୱାରା ପ୍ରକାଶିତ ହୋଇପାରିବ ନାହିଁ । ମୋଟ କଥା ହେଲା ଯେ କୌଣସି କବିତାର ଅର୍ଥ—ଆମେ ଯାହା ବୁଝିବାକୁ ଚାହୁଁ—ତା'ର ଗଦ୍ୟାର୍ଥ କେବଳ ନୁହେଁ । ଭାଷା ଓ ଭାବର ଏକ ଅପୂର୍ବ ସମନ୍ୱୟରେ କବିତାର ସୃଷ୍ଟି ହୁଏ । ତେଣୁ କୌଣସି କବିତାର ଏକ ଏବଂ ନିର୍ଦ୍ଦିଷ୍ଟ ଅର୍ଥ ନାହିଁ । ତା' ହୋଇଥିଲେ ସେକ୍ସପିୟରଙ୍କ ଉପରେ ଏତେ ଆଲୋଚନା ଲେଖା ହେବାର କୌଣସି ଯୁକ୍ତି ନାହିଁ ।

'ହ୍ୟାମଲେଟ୍' ଭଳି ନାଟକର ବହୁ ବିଭିନ୍ନ ଅର୍ଥ ଭିନ୍ନ ଭିନ୍ନ ସମାଲୋଚକ ଦେଇଛନ୍ତି । ଏସବୁର ଅର୍ଥ କ'ଣ ସମାଲୋଚକମାନଙ୍କର ବାତୁଳତା ?

ଆଗରୁ କୁହାଯାଇଛି କବିତାରେ ଭାଷାର ବ୍ୟବହାର ଗଦ୍ୟ ଅପେକ୍ଷା ଭିନ୍ନ । ଏ ଦୁଇଟି ବାକ୍ୟ ଦେଖାଯାଉ—(୧) 'ମୋ ଘରେ ଦୁଇଟି ଟେବୁଲ ଅଛି । (୨)' 'ମୋ ଘର ଉଜୁଡ଼ି ଗଲା ।' ପ୍ରଥମ ବାକ୍ୟର 'ଘର' ଓ ଦ୍ୱିତୀୟ ବାକ୍ୟର 'ଘର' ଭିତରେ ଅର୍ଥଗତ ପାର୍ଥକ୍ୟ ବହୁତ । ପ୍ରଥମ ବାକ୍ୟରେ 'ଘର' ଶବ୍ଦର ବାଚକ ଅର୍ଥ ବ୍ୟବହୃତ । ଦ୍ୱିତୀୟରେ 'ଘର'ର ଅର୍ଥ ବ୍ୟାପକ ଓ ତା' ସହିତ ଏକ ନିର୍ଦ୍ଦିଷ୍ଟ ଆବେଗ ଜଡ଼ିତ ହୋଇ ପଡ଼ିଛି । ପ୍ରଥମ ଅପେକ୍ଷା ଦ୍ୱିତୀୟ ବାକ୍ୟ ଅଧିକ କାବ୍ୟିକ । ଆମର ଚଳନ୍ତି ଭାଷାରେ ଏ ପ୍ରକାର ବହୁ ପ୍ରକାଶଭଙ୍ଗୀ ଦେଖିବାକୁ ମିଳେ । କାବ୍ୟିକ ଛଟା ଦେଇ କହିବା ଓ ଲେଖିବା ପାଇଁ କିଏ ନ ଚାହେଁ ? ବିଶେଷ କରି କବି ଭାଷାକୁ ଏହି ଭାବରେ ବ୍ୟବହାର କରିଯାଏ । କବିତାର ଭାଷା ଗଦ୍ୟ ଅପେକ୍ଷା ଅଧିକ ସଂକ୍ଷିପ୍ତ ଓ ଭାବାଶ୍ରୟୀ । ପ୍ରସଙ୍ଗ ସଂଗତି ବିଶେଷରେ ଗୋଟିଏ ଶବ୍ଦର ବିଭିନ୍ନ ଅର୍ଥ ମିଳିଥାଏ । ପୁଣି ସାହିତ୍ୟିକ ରଚନାରେ ବାରମ୍ବାର ବ୍ୟବହାର ଫଳରେ ଗୋଟିଏ ନିର୍ଦ୍ଦିଷ୍ଟ ଶବ୍ଦର ଅନ୍ୟ ଏକ ଅର୍ଥ ମଧ୍ୟ ପ୍ରକାଶିତ ହୋଇଥାଏ । ସଚି ରାଉତରାୟଙ୍କର 'ମୁଁ କ'ଣ ସୁନାର ସିଂହ ଗର୍ଜି ଉଠେ ପାହାଡ଼େ ପାହାଡ଼େ !' ବା ଗୁରୁପ୍ରସାଦ ମହାନ୍ତିଙ୍କର 'ଆଖିର କପୋତ ମୋର ଆକାଶର ଇସ୍ପାତ ଦେହରେ' ପ୍ରଭୃତି ଧାଡ଼ିର ଅର୍ଥ ବହୁଦିଗରେ ବିଚ୍ଛୁରିତ । ଏମାନଙ୍କର ଅର୍ଥ ପ୍ରତ୍ୟେକ ଶବ୍ଦରୁ ବାଚକ ଅର୍ଥର ସମଷ୍ଟିଠାରୁ ବୃହତ୍ତର । ଏ ମନ୍ତବ୍ୟ ଯେ କୌଣସି କବିତା ପ୍ରତି ମଧ୍ୟ ପ୍ରଯୁଜ୍ୟ । ରସଗ୍ରାହୀ ପାଠକ ମାନେ କବିତାର ଏ ଗୁଣ ପ୍ରତି ସଚେତନ ରହିବେ, ଏଥିରେ ସନ୍ଦେହ ନାହିଁ ।

ଅନେକ ସମୟରେ ପାଠକ ଅଭିଯୋଗ କରେ ଯେ, ଆଧୁନିକ କବିତାରେ ପ୍ରଥମ ଧାଡ଼ି ସହିତ ଦ୍ୱିତୀୟ, ତୃତୀୟ ଇତ୍ୟାଦି ଧାଡ଼ିର କୌଣସି ସଂପର୍କ ନାହିଁ । ସମ୍ପର୍କ ନିଶ୍ଚୟ ରହିଛି, କିନ୍ତୁ ଏ ସମ୍ପର୍କ କେବଳ ଆଭିଧାନିକ ଅର୍ଥ ମାଧ୍ୟମରେ ଧରିପାରିବା ସମ୍ଭବ ନୁହେଁ । ଗୋଟିଏ ଭଲ କବିତା (ସବୁ ଆଧୁନିକ କବିତା ଭଲ ନ ହୋଇପାରନ୍ତି, ଭଲ ସଫଳ ଅର୍ଥରେ) ପାଠକର ସମଗ୍ର ବ୍ୟକ୍ତିତ୍ୱ – ତା'ର ଚିନ୍ତାଶକ୍ତି, ଭାବାବେଗ, ବିଶ୍ୱାସ—କୁ ଆନ୍ଦୋଳିତ, ଉତ୍ତେଜିତ କରିଥାଏ । ଯେଉଁ ପାଠକ ତା'ର

ସମଗ୍ର ବ୍ୟକ୍ତିତ୍ଵ ପ୍ରୟୋଗ କରି କବିତା ପଢ଼ିପାରେ ସେ ନିଶ୍ଚୟ କବିତାକୁ ଅଧିକ ଉପଭୋଗ କରିବ, ଅଧିକ 'ତୃପ୍ତି' ପାଇବ ।

ଆଧୁନିକ କବିତାର ଅସଂଲଗ୍ନତା ଓ ଜଟିଳତାକୁ ବୁଝାଇବାକୁ ଯାଇ କେତେକ ସମାଲୋଚକ ଏଥିପାଇଁ ଆଧୁନିକ ଜୀବନକୁ ଦାୟୀ କରିଚନ୍ତି । ଆଧୁନିକ ଜୀବନ ଜଟିଳ, ତେଣୁ କବିତା, ଯାହା ଜୀବନର ଚିତ୍ର, ଜଟିଳ ହେବାକୁ ବାଧ୍ୟ । ଉଚିତ ଯୁକ୍ତି; କିନ୍ତୁ ଅଧିକାଂଶ ପାଠକ ଏ ଯୁକ୍ତିକୁ ଗ୍ରହଣ କରି ନେବାକୁ ଅକ୍ଷମ—ସେମାନଙ୍କର ପ୍ରଶ୍ନ ହେଲା ଆମ ଜୀବନ—ଓଡ଼ିଆ ଜୀବନ—କ'ଣ ସତେ ଏତେ ଜଟିଳ ? ଆପାତପକ୍ଷେ ସବୁ ତ ସହଜ ଭାବରେ ଚାଲିଚି ; କିନ୍ତୁ କବି ଭାବେ ମୁଁ କ'ଣ କେବଳ ଜଣେ ଓଡ଼ିଆ ? ଆଜିର ଓଡ଼ିଆ କବି କ'ଣ ଏକ ଭୌଗୋଳିକ ସୀମା ମଧ୍ୟରେ ନିଜକୁ ଆବଦ୍ଧ କରି ରଖିପାରେ ? ସେ ଯାହା ପଢ଼ିଚି, ସିନେମା ରେଡ଼ିଓ ମାଧ୍ୟମରେ ଯାହା ଦେଖିଚି, ଶୁଣିଚି ସେ ସବୁ କ'ଣ ତା'ର ଚିନ୍ତା ଓ ଭାବ-ରାଜ୍ୟକୁ ପ୍ରଭାବିତ କରୁନାହିଁ ? ମାର୍କସ ସାଙ୍ଗରେ ଲାବଣ୍ୟବତୀ, କାମୁ ଓ ସାର୍ତ୍ତ ସାଙ୍ଗରେ ଧର୍ମପଦ, ମାର୍କୁ୍ୟଜ୍, ଜେନ୍ ଓ ଭାଗବତ – ଏସବୁ ଆଧୁନିକ ଓଡ଼ିଆ କବିର ଚେତନା ଭିତରକୁ ନିଶ୍ଚୟ ଆସିବେ । ତେଣୁ ସେ ଅନେକ ସମୟରେ ଏପରି ଚିନ୍ତା ଓ ଭାବଗୁଡ଼ିକ ବ୍ୟବହାର କରେ, ଯାହା ସହିତ ସାଧାରଣ ପାଠକର ପରିଚୟ ନାହିଁ । ତେଣୁ ବୋଧ ହୁଏ, ଏକ ନିର୍ଦ୍ଦିଷ୍ଟ ଶିକ୍ଷିତ-ସଂପ୍ରଦାୟ ଭିତରେ କବିତା ପ୍ରଚଳିତ ରହିବା କେତେକାଂଶରେ ଅପରିହାର୍ଯ୍ୟ ହୋଇପଡ଼ିଚି । ଆଧୁନିକ ଓଡ଼ିଆ କବିତାରେ ଅନ୍ୟ କେତେକ ପ୍ରାଦେଶିକ କବିତାରେ ମଧ୍ୟ—ଆଉ ଗୋଟିଏ ମଜା କଥା ଘଟିଛି । ଅଧିକାଂଶ କବି ଉଚ୍ଚଶିକ୍ଷିତ, ଇଂରେଜି ସାହିତ୍ୟର ପାଠକ । ଅତି ସ୍ଵାଭାବିକ ଭାବରେ ସେମାନେ ପାଶ୍ଚାତ୍ୟ ଦୃଷ୍ଟିଭଙ୍ଗୀ (ଆଜି କାଲି ତାହା ହିଁ ଆନ୍ତର୍ଜାତିକ—ଆମକୁ ଏ ପ୍ରକାର ଯୁକ୍ତି ଯେତେ ବାଧୁ ପଛକେ) ସହିତ ଜଡ଼ିତ ହୋଇ ପଡ଼ୁଛନ୍ତି । ତେବେ ଏଥିରେ ଆତଙ୍କିତ ହେବାର କୌଣସି କାରଣ ନାହିଁ । ସେମାନେ ଓଡ଼ିଆ ଭାଷାରେ ଲେଖୁଚନ୍ତି । ତାଙ୍କର ସ୍ଵକୀୟ ସଂସ୍କୃତି ମାଧ୍ୟମରେ ନିଜକୁ ପ୍ରକାଶ କରୁଚନ୍ତି । (କାରଣ ଯେ କୌଣସି ଭାଷା ସେହି ସଂସ୍କୃତିର ମୂଳାଧାର ଏବଂ ଭାଷାର ନିଜସ୍ଵ ସଂଯମ-ବିଧିମାନ ରହିଚି ) । ଆମର ପାଠକ ଏ ସଂପର୍କରେ ଅଧିକ ସଚେତନ ହେଲେ ବୋଧ ହୁଏ ଉଭୟ ପକ୍ଷ ପାଇଁ ଏକ ସୁସ୍ଥ ବାତାବରଣର ସୃଷ୍ଟି ହୁଅନ୍ତା ।

ଆଧୁନିକ ଚିନ୍ତା-ଭାବ-ରାଜ୍ୟ ସହିତ ଆମକୁ ଆହୁରି ବେଶି ସାମିଲ୍ ହେବାକୁ ପଡ଼ିବ । ଜୀବନ, ସମୟ, ମୃତ୍ୟୁ ଏବଂ ପ୍ରେମ ପ୍ରତି ଆମର ଦୃଷ୍ଟି-ଭଙ୍ଗୀ ବଦଳିଛି । ଏ ପରିବର୍ତ୍ତନ ସହିତ ଆମେ ଅଧିକ ପରିଚିତ ନ ହେଲେ ଆଜିର କବିତା ଉପନ୍ୟାସ ନାଟକ ପରି ଆମଠୁ ଦୂରରେ ରହିଯିବ । ନା, ଆମେ ତା'ଠାରୁ ଦୂରରେ ରହିଯିବା । ଏ ପରିସ୍ଥିତି ଉଭୟ କବି ଓ ପାଠକ ପକ୍ଷରେ କ୍ଷତିକାରକ । ମୋର କୌଣସି କବିତାର ପ୍ରଥମ ପଦରେ ସ୍ତ୍ରୀ ଗର୍ଭବତୀ ବୋଲି କୁହାଯାଇଛି ଓ ତୃତୀୟ କିମ୍ବା ଚତୁର୍ଥ ପଦରେ ମୋ ସଦ୍ୟ-ଜନ୍ମିତ କନ୍ୟାର ଉଲ୍ଲେଖ ରହିଛି । ଏ ପ୍ରକାର ଅସଙ୍ଗତ କଥା କିପରି ଘଟିଲା ବୋଲି ଅଭିଯୋଗମଧ୍ୟ ଶୁଣିବାକୁ ହୋଇଛି । କବିତାରେ ସମୟ ଟିକିଏ ଜୋର୍‌ରେ ଗଲେ କ୍ଷତି କ'ଣ ? ତା'ପରେ ଅତୀତ ବର୍ତ୍ତମାନ, ଭବିଷ୍ୟତକୁ ଆଉ କ'ଣ ଆଗପରି ଗୋଟିଏ ସରଳ ରେଖାରେ ତିନିଭାଗ କରି ଗ୍ରହଣ କରି ହେଉଛି ?

ଆଜି କାଲିର କବିତା ବୋଧ ହୁଏ ବେଶୀ ଦୁର୍ବୋଧ ମନେ ହେଉଛି; କାରଣ ଆମ ପାଠକମାନଙ୍କର ଉପଯୁକ୍ତ ରୁଚି ତିଆରି କରିବାରେ ପ୍ରଚଳିତ ଶିକ୍ଷାପଦ୍ଧତି ସଫଳ ହୋଇ ପାରିନାହିଁ । ଆମର ଓଡ଼ିଆ ସାହିତ୍ୟ ଶିକ୍ଷା ପ୍ରତି ଦୃଷ୍ଟି ହିଁ ଆସାଉ । କ୍ଲାସ୍‌ରୁମ୍‌ରେ ଯାହା ପଢ଼ାଯାଏ, (ବାହାରେ ଖୁବ୍ କମ୍ ଲୋକ ଓଡ଼ିଆ ଲେଖା ପଢ଼ନ୍ତି—ଗୋଏନ୍ଦା କାହାଣୀ ବା ଶସ୍ତା ଗଳ୍ପ ଛଡ଼ା) ତା' ମୁଖ୍ୟତଃ କବି ଓ କବିତା ସଂପର୍କରେ କିଛି ଐତିହାସିକ ବର୍ଣ୍ଣନାତ୍ମକ ଆଲୋଚନା । ଏହାର ଗୁରୁତ୍ୱକୁ ମୁଁ ଅସ୍ୱୀକାର କରୁନାହିଁ ; କିନ୍ତୁ ଏହା ଯଥେଷ୍ଟ ନୁହେଁ । ପୁଣି ବାରମ୍ବାର କେବଳ ବିଷୟବସ୍ତୁ ସଂପର୍କୀୟ ଆଲୋଚନା କବିତାର ଅଧିକ ଗୁରୁତ୍ୱପୂର୍ଣ୍ଣ ବିଭାବକୁ ବାଦ୍ ଦେଇଥାଏ । ରାଧାନାଥଙ୍କ ଜାତୀୟତା ଓ ଗଙ୍ଗାଧରଙ୍କ ପ୍ରକୃତିବୋଧ ଉପରେ ଶହ ଶହ ପ୍ରବନ୍ଧ ଲେଖାଯାଇପାରେ । ସେହି ସେହି କଥା ବାରମ୍ବାର ପତ୍ରପତ୍ରିକା ଓ ଆଲୋଚନା ପୁସ୍ତକର ପୃଷ୍ଠା ସଂଖ୍ୟା ବଢ଼ାଇପାରେ । କିନ୍ତୁ ଜଣେ ସାହିତ୍ୟର ଛାତ୍ରକୁ ପଚାରିଯାଉ—ଗଙ୍ଗାଧର ଓ ନନ୍ଦକିଶୋର ବଳଙ୍କ ପ୍ରକୃତିବୋଧ ଭିତରେ ନିର୍ଦ୍ଦିଷ୍ଟ ପାର୍ଥକ୍ୟଟି କ'ଣ ? ଉପେନ୍ଦ୍ର ଭଞ୍ଜ ଓ ଗୁରୁପ୍ରସାଦ ମହାନ୍ତିଙ୍କ ପ୍ରେମବୋଧ ଭିତରେ କ'ଣ ତଫାତ୍ ରହିଛି । ଏହି ପ୍ରଭେଦରେ ସେମାନଙ୍କର ଶବ୍ଦ-ସଂଯୋଜନା ଓ ଭାଷା-ବିନ୍ୟାସର କି ଭୂମିକା ରହିଛି ? ମୋର ଆଶଙ୍କା ଅଧିକାଂଶ ଛାତ୍ର ଉତ୍ତର ଦେବାକୁ ଅକ୍ଷମ ହେବେ । ମୋର

କହିବାର କଥା କବିତା ପଢ଼ାଇଲାବେଳେ ଏବଂ ପଢ଼ିଲାବେଳେ ଭାଷା ଓ ଶୈଳୀ ଉପରେ ଅଧିକ ଗୁରୁତ୍ୱ ଦିଆଯାଉ । ଏ କ୍ଷେତ୍ରରେ ପ୍ରତ୍ୟେକ କବିର ସ୍ୱାତନ୍ତ୍ର୍ୟ କ'ଣ ସେ ବିଷୟରେ ସାହିତ୍ୟର ଛାତ୍ରକୁ ସମୁଚିତ ଧାରଣା ଦିଆଯାଉ । ଆମର ଏକ ଋଦ୍ଧିମନ୍ତ ସୌନ୍ଦର୍ଯ୍ୟ-ତତ୍ତ୍ୱ ରହିଛି । ତା' ସହିତ ପାଶ୍ଚାତ୍ୟ ସୌନ୍ଦର୍ଯ୍ୟ ତତ୍ତ୍ୱର ତୁଳନାତ୍ମକ ଅନୁଶୀଳନ କରାଗଲେ ଏକ ଉପଯୁକ୍ତ ପରିପ୍ରେକ୍ଷୀ ନିର୍ମିତ ହୋଇପାରିବ । ଛାତ୍ରର ଚେତନା ପ୍ରସାରିତ କରିବାରେ ଶିକ୍ଷକ ଅଧିକ ସମର୍ଥ ହେବ ।

ଆଧୁନିକ କବିର ଉଦ୍ଦେଶ୍ୟ ନୁହେଁ, ବାତୁଳ ଭାବରେ ଏଣୁ ତେଣୁ କହି ଆମକୁ ଥଟ୍ଟା ପରିହାସ କରିବା, ଉଗାଇବା । ସେ ତା' ସମ୍ପର୍କରେ ତା'ର ପୃଥିବୀ ସମ୍ପର୍କରେ ସତ କଥା କହିବାକୁ ଚେଷ୍ଟା କରୁଛି । ( ପୁରୁଣା କବିମାନେ ବି ସେୟା କରୁଥିଲେ । ) କେବଳ ତା'ର ବକ୍ତବ୍ୟର ଏମିତି କେତେକ ଜଟିଳତା ରହିଛି, ଯାହାକୁ ପରିହାର କଲେ ସେ ଆନ୍ତରିକ ହୋଇପାରିବ ନାହିଁ । ଯେଉଁ କବିମାନେ ଜାଣିଶୁଣି ଦୁର୍ବୋଧ ହୁଅନ୍ତି, ଦୁର୍ବୋଧତାକୁ ଆଧୁନିକ ବୋଲାଇବାର ଏକ ବ୍ୟାଜ୍ ଭାବରେ ବ୍ୟବହାର କରନ୍ତି, ସେମାନେ ପଛରେ ରହିଯିବେ । ପ୍ରକୃତରେ ସଫଳ ଆଧୁନିକ କବିତାରୁ ରସଗ୍ରହଣ କରିବା ପାଇଁ ଅଧିକ କଷ୍ଟ ଶ୍ରମ ସ୍ୱୀକାର କରିବାକୁ ହେବ । ଟ୍ରେନରେ ଶୋଇ ଶୋଇ ବା ଚୈତ୍ର ଅପରାହ୍ଣରେ ମଲ୍ଲୀ ବୁଦା ମୂଳେ ଆରାମ ଚୌକିରେ ବସି ଆଧୁନିକ କବିତା ଉପଭୋଗ କରିହେବ ନାହିଁ । କବିତାର ଭାବୋପଲବ୍ଧି ଆଇସ୍‌କ୍ରୀମ ଖାଇବା ଭଳି ଏକ ସହଜ ପ୍ରକ୍ରିୟା ହେବ ବା କାହିଁକି ? ପାଠକମାନଙ୍କ ପ୍ରତି କବିର ଦାୟିତ୍ୱ ରହିଛି ନିଶ୍ଚୟ ; କିନ୍ତୁ କୌଣସି ଦାୟିତ୍ୱବାନ୍ ପାଠକ କବିକୁ ପଛକୁ ଟାଣେ ନାହିଁ । ବରଂ ଆଗୁଆ ହୋଇ ଚାଲିଥିବା କବି ସାଙ୍ଗରେ ସେ ପାଦ ମିଳାଇ ଚାଲିବାକୁ ଶିଖିବା ଉଚିତ । ଆମେ ସମସ୍ତେ ଜାଣିବା କଥା – ଅନ୍ୟାନ୍ୟ ବହୁ ପ୍ରାଦେଶିକ କବିତାଠାରୁ ଆଜିର ଓଡ଼ିଆ କବିତା ବହୁତ ଦୂର ଆଗେଇଯାଇଛି । ବହୁ ବିଚିତ୍ର ସମ୍ଭାବନାରେ ତା'ର ଭବିଷ୍ୟତ ଉଜ୍ଜ୍ୱଳ ହେବ ଏହା ଆଜି ପ୍ରାଞ୍ଜଳ ।

---

# ମୋ ଦୃଷ୍ଟିରେ
# ସାଂସ୍କୃତିକ ଓଡ଼ିଆ ଅକବିତା ଓ ଅକବିତା

ଅଧ୍ୟାପକ କୃଷ୍ଣଚନ୍ଦ୍ର ଭୂୟାଁ

ପ୍ରକୃତି ପୂଜାରୀ କବି ଓ୍ୱାର୍ଡ୍ସ୍‌ଓ୍ୱାର୍ଥ (୧୭୭୦—୧୮୫୦) ସର୍ବପ୍ରଥମେ ଇଂରାଜୀ ସାହିତ୍ୟରେ ଅକବିତାର ପରିକଳ୍ପନା କରିଥିଲେ ବୋଲି ପାଶ୍ଚାତ୍ୟ ସମାଲୋଚକମାନେ ଅଭିମତ ଦିଅନ୍ତି । ସଂପ୍ରତି ହିନ୍ଦି ଅକବିତାର ସମାଲୋଚକମାନେ ମଧ୍ୟ ଏହି ଅଭିମତର ସମର୍ଥନ କରନ୍ତି । ଅକବିତା ଜନଭାଷାରେ ସୃଷ୍ଟି ହେବା ଉଚିତ । ସେଇଥି ପାଇଁ କବି ଓ୍ୱାର୍ଡ୍ସ୍-ଓ୍ୱାର୍ଥ କାବ୍ୟ ଭାଷା ପରିତ୍ୟାଗ କରି ଜନଭାଷାରେ କେତେକ କବିତା (ଅକବିତା)ର ସୃଷ୍ଟି ପାଇଁ ବ୍ରତୀ ହୋଇଥିଲେ । କେବଳ ଭାରତୀୟ ସାହିତ୍ୟ ନୁହେଁ, ସମଗ୍ର ବିଶ୍ୱ ସାହିତ୍ୟରେ ଓ୍ୱାର୍ଡ୍ସ୍‌ଓ୍ୱାର୍ଥୀୟ କାବ୍ୟପରମ୍ପରାର ପ୍ରବର୍ତ୍ତନ ପୂର୍ବେ ଓ ପରେ ଯଥାକ୍ରମେ ସାମନ୍ତବାଦ ଓ ପୁଞ୍ଜିବାଦ-ସାହିତ୍ୟର ପ୍ରଚଳନ ପରିଲକ୍ଷିତ ହୁଏ । ଓ୍ୱାର୍ଡ୍ସ୍‌ଓ୍ୱାର୍ଥୀୟ କାବ୍ୟ ପରମ୍ପରାର ପୂର୍ବ-ବର୍ତ୍ତୀ ରାଜା, ମହାରାଜା ଉପାଖ୍ୟାନ, ରସାତ୍ମକ କାବ୍ୟ, କାନ୍ତା-ବିରହ କାବ୍ୟ ଓ ଓ୍ୱାର୍ଡ୍ସ୍‌ଓ୍ୱାର୍ଥୀୟ କାବ୍ୟ-ପରମ୍ପରାର ପରବର୍ତ୍ତୀ ଧନୀକ, ଶିଳ୍ପ-ପତିର ଉପାସନାମୂଳକ କବିତା, ଶୋଷକର ପ୍ରତିନିଧି-ଭିତ୍ତିକ କବିତା ଓ ତଥାକଥିତ ବରଣୀୟ ବ୍ୟକ୍ତିର ସମ୍ମାନ-ସୂଚକ କବିତା ବିଶେଷତଃ ସମାଜକୁ ଗ୍ରାସ କରିଥିଲା । ସାମନ୍ତବାଦୀ ଶାସନକାଳରେ 'ସାହିତ୍ୟ ବ୍ରହ୍ମା-ନନ୍ଦ ସହୋଦର', 'ସାହିତ୍ୟ ଧନଜନ ଗୋପଲକ୍ଷ୍ମୀ, ଯଶର ମୂଳ ପିଣ୍ଡ'— ଦର୍ଶନରେ ନିମଜ୍ଜିତ ହୋଇ ସାମନ୍ତବାଦର ପୃଷ୍ଠପୋଷକ, ଦରବାରୀ ସଂସ୍କୃତିର ପ୍ରଚାରକ ଓ ରାଜା ମହାରାଜାଙ୍କ ବାହୁସ୍ତମ୍ଭରେ ବନ୍ଦୀ । କାବ୍ୟ-ସ୍ରଷ୍ଟାମାନେ ସମଗ୍ର କାବ୍ୟସାମାଜ୍ୟରେ ରକ୍ଷଣଶୀଳ ଧର୍ମ, ନୀତି, ନ୍ୟାୟ

ବାଣୀର ମନ୍ତ୍ର ସିଞ୍ଚି ଶୃଙ୍ଗାର ରସର ଜୁଆରରେ ରାଜା, ଯୁବରାଜଙ୍କ କାମ, ବାସନା ଜାଗ୍ରତ କରି କାମାତୁରା ଓ ଶଯ୍ୟଶାୟିନୀ ରାଣୀ ଓ ରାଜକନ୍ୟାଙ୍କ କୋଳରେ ସନ୍ତାନ ଖେଳାଇ ପରୋକ୍ଷରେ ଏକଛତ୍ରବାଦ, ସତ୍ୟଦ୍ରଷ୍ଟା, ସମାଜ-ନିର୍ଦ୍ଦେଶକ ଭାବରେ ନିଜର ପରିଚୟ ଦେଇ ପ୍ରତ୍ୟକ୍ଷରେ ରାଜ-ଦରବାରର ଭୃତ୍ୟ, ଅନୁଚର ଭାବରେ ବହୁ ଶତାବ୍ଦୀ ପାଇଁ ଜୀବନ ଧାରଣ କରିଥିଲେ । ପୁଞ୍ଜିବାଦୀ ସମାଜରେ ସାହିତ୍ୟ-ସାରଥୀମାନେ Literature is the mirror of the society 'କମ୍ବା' Literature is the direction for the mankind ପ୍ରଭୃତି ଉକ୍ତିର ଅପବ୍ୟବହାର, ଉପେକ୍ଷା ଓ ବେଖାତିର କରି ଅଗଣିତ ଶ୍ରମିକ ଓ କୃଷକର ସ୍ୱାର୍ଥପ୍ରତି ନଜର ନ ଦେଇ ପୁଞ୍ଜିପତି, ଶିଳ୍ପପତି ଓ ଧନିକ ଗୋଷ୍ଠୀର ପ୍ରଭାବରେ ଅଙ୍କ ମଣିଷସମାଜର ଅଗୋଚରରେ ସାହିତ୍ୟ-ରୂପକ ମହାସ୍ତ୍ରରେ ଯୁଗଯୁଗର ଶୋଷିତ, ଲାଞ୍ଛିତ, ପୀଡ଼ିତ ମଣିଷର ବକ୍ଷ ବିଦାରି ସମାଜର ଆୟୁଷକୁ ହ୍ରାସ କଲେ ।

କବି ଓ୍ୟାଡ଼ସ୍‌ଓ୍ୱାର୍ଥଙ୍କ ପୂର୍ବବର୍ତ୍ତୀ କବି ଜନ ମିଲ୍‌ଟନ୍ (୧୬୦୮-୭୪), ଜନ ଡ୍ରାଇଡେନ (୧୬୩୧-୧୭୦୦), ଆଲେକଜାଣ୍ଡାର ପୋପ (୧୬୮୮-୧୭୪୪) ଓ ରବର୍ଟ ବର୍ନସ (୧୭୫୯-୯୬) ପ୍ରମୁଖ ସିଭିଲ-ଓ୍ୱାର୍‌ର କୁପରିଣାମରେ ବ୍ୟଥିତ ହୋଇ ଇଂରାଜୀ କାବ୍ୟ ସାହିତ୍ୟରେ ଏକ ନୂତନ ଚେତନା, ଆକସ୍ମିକ ପରିବର୍ତ୍ତନ ଓ ସ୍ୱତନ୍ତ୍ର ଆଭିମୁଖ୍ୟର ପ୍ରୟୋଗ କରିଥିଲେ ତଥା ରଚନାଶୈଳୀ, ବିଷୟବସ୍ତୁ, ଶବ୍ଦଯୋଜନା ଓ ବର୍ଣ୍ଣନାଭଙ୍ଗୀରେ ମଧ୍ୟ ମୌଳିକ ପରିଚୟ ଦେଇଥିଲେ । ସପ୍ତଦଶ ଶତାବ୍ଦୀର ଏହି ସିଭିଲଓ୍ୱାର ପୁରାତନ ଦୁନିଆ ପ୍ରଚଳିତ ଚଳଣି, ଯୁଗ ଯୁଗର କୁସଂସ୍କାର ଓ ସୁଦୃଢ଼ ରକ୍ଷଣଶୀଳ ବନ୍ଧନକୁ ଛିନ୍ନ କରି ପାଶ୍ଚାତ୍ୟ ଜଗତରେ ଏକ ନୂତନ ଦୁନିଆର ସୂତ୍ରପାତ କରିଥିଲା । ଏହି ସିଭିଲଓ୍ୱାର ଯୋଗୁ କଳା, ବିଜ୍ଞାନ, ରାଜନୀତି, ସଂସ୍କୃତି, ଧର୍ମ, ସମାଜ-ବିଜ୍ଞାନ ଓ କାବ୍ୟ ସାହିତ୍ୟର ଚେହେରା ମଧ୍ୟ ସେତେବେଳେ ବଦଳିଗଲା । କବି ମିଲଟନ ଓ ଓ ପରେ ଉଇଲିଅମ ବ୍ଲେକ୍‌ଙ୍କ ପର୍ଯ୍ୟନ୍ତ ତତ୍‌କାଳୀନ ବୈଜ୍ଞାନିକ କବି-ମାନେ ଏହି ନବ ଉନ୍ମେଷର ବାହକ ଭାବରେ ଇଂରାଜୀ କାବ୍ୟ-ସାହିତ୍ୟରେ ନୂତନ ସ୍ପନ୍ଦନ, ଚେତନ, ଆନ୍ଦୋଳନ ଓ ବିପ୍ଳବର ବୀଜ ବପନ କରିଥିଲେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଠିକ୍ ଏହି ସମୟରେ ଭାରତରେ ଓଡ଼ିଆ, ବଙ୍ଗଳା ଓ ହିନ୍ଦି କାବ୍ୟ ସାହିତ୍ୟରେ ରାଜା, ମହାରାଜା ଓ ସାମନ୍ତରାଜାଙ୍କ

ପ୍ରାଦୁର୍ଭାବ, ଜପ୍ୟସାଧନା, ପୂଜା ଉପାସନା ଉତ୍ତୁଙ୍ଗ ସୋପାନରେ ପହଞ୍ଚିଥିଲା । କବି ଓ୍ୱାର୍ଡ଼ସ୍‌ଓ୍ୱାର୍ଥଙ୍କ ପୂର୍ବବର୍ତ୍ତୀ କବିମାନେ କାବ୍ୟ ସୃଷ୍ଟିରେ ସମ୍ପୂର୍ଣ୍ଣ ମୌଳିକ ଓ ଅଭିନବ ପ୍ରବୃତ୍ତି ବହନ କରିଥିଲେ ହେଁ ଓ୍ୱାର୍ଡ଼ସ୍‌ଓ୍ୱାର୍ଥୀୟ କାବ୍ୟ-ପରମ୍ପରା ପର୍ଯ୍ୟନ୍ତ ଅଗ୍ରସର ହୋଇ ପାରି ନ ଥିଲେ । ପୁଣି ଓ୍ୱାର୍ଡ଼ସ୍‌ଓ୍ୱାର୍ଥଙ୍କ ପରବର୍ତ୍ତୀ କବିମାନେ କବିତା, ଅତି-କବିତା ଓ ଅକବିତା ଆନ୍ଦୋଳନରେ ଯଥା ଅଧିକେ ଅଂଶ ଗ୍ରହଣ କରିଥିଲେ ହେଁ ଇଲିଅଟ୍ ଯୁଗର (Experimentalist) କବିମାନଙ୍କ ସମକକ୍ଷ ହୋଇ ପାରି ନ ଥିଲେ । କବି ଟି. ଏସ୍. ଇଲିଅଟ୍ (୧୮୮୮—୧୯୬୫), ଓ୍ୱାଲଟାର ଡଲା ମେୟାର (୧୮୭୩—୧୯୫୬), ଡବ୍ଲୁ. ବି. ଇଟ୍‌ସ (୧୮୬୫—୧୯୩୯), ଇଡ଼ିଥ ସିଟ୍ ଓ୍ୱେଲ୍ (୧୮୮୭ – ୧୯୬୪) ଓ ରୟ କାମ୍ପବେଲ (୧୯୦୧—୫୭) ପ୍ରମୁଖ ସମାଲୋଚକଙ୍କ ଦୃଷ୍ଟିରେ ଅକବିତା ଆନ୍ଦୋଳନର ଉଦ୍‌ଘାଟକ ଭାବରେ ବିବେଚିତ ହୋଇ ମଧ୍ୟ ଇଂରାଜୀ ସାହିତ୍ୟ ତଥା ବିଶ୍ୱ ସାହିତ୍ୟର ଅବଗୁଣ୍ଠନ ତଳେ ମୃତ୍ୟୁ ପର୍ଯ୍ୟନ୍ତ ବିହ୍ୱ ବିବାଦୀୟ ଓ ଅମୀମାଂସିତ ଅବସ୍ଥାରେ ଆତ୍ମଗୋପନ କରିଥିଲେ । କବି ଇଲିଅଟ୍‌ଙ୍କ ବ୍ୟତୀତ ସମକାଳୀନ ଅନ୍ୟ କବିମାନେ ଅକବିତାର ସ୍ରଷ୍ଟା କିମ୍ବା ଅକବି ଭାବରେ ସମ୍ମାନିତ ହୁଅନ୍ତି; କିନ୍ତୁ ସେମାନଙ୍କର ଅଧିକାଂଶ ସୃଷ୍ଟି ଏହି ପର୍ଯ୍ୟାୟର ଅନ୍ତର୍ଭୁକ୍ତ ନୁହେଁ । ଇଂରାଜୀ କବି ଇଲିଅଟ୍, ହ୍ୟୁମ୍, ପାଉଣ୍ଡ, ଆଡ଼େନ, ରିଲ୍ଡ଼ ଓ ରୁଷୀୟ କବି ମାଇକୋଭସ୍କି ହିଁ ଅକବିତା ଆନ୍ଦୋଳନର ପ୍ରକୃତ ଉଦ୍‌ଘାଟକ ଓ ପ୍ରଚାରକ ।

ସପ୍ତଦଶ ଶତାବ୍ଦୀ ପରେ ପୃଥିବୀ ବହୁମୁଖୀ ସମସ୍ୟା, ରକ୍ତାକ୍ତ ବିପ୍ଳବ, ଯୁଦ୍ଧ, ଦୁର୍ଭିକ୍ଷ, ଭୂମିକମ୍ପ, ଆତଙ୍କ ଓ ଆନ୍ଦୋଳନର ସମ୍ମୁଖୀନ ହୁଏ । ଏଥିପାଇଁ ପୃଥିବୀର ଚେହେରା, ସାମାଜିକ ଚଳଣି, ପରଂପରା ଓ ମାନବୀୟ ଚେତନାରେ ଅଭୂତପୂର୍ବ ପରିବର୍ତ୍ତନ ଘଟେ । ସପ୍ତଦଶ ଶତାବ୍ଦୀ ପରେ ସିଭିଲଓ୍ୱାର, ଫ୍ରେଞ୍ଚ ରିଭୋଲ୍ୟୁସନ, ରୁଷ ରିଭୋଲ୍ୟୁସନ, ପ୍ରଥମ ବିଶ୍ୱଯୁଦ୍ଧ, ଦ୍ୱିତୀୟ ବିଶ୍ୱଯୁଦ୍ଧ, ଆମେରିକାର ସ୍ୱାଧୀନତା ସଂଗ୍ରାମ, ଭିଏତ-ନାମ ସ୍ୱାଧୀନତା ସଂଗ୍ରାମ, ଭାରତର ସ୍ୱାଧୀନତା ଆନ୍ଦୋଳନ, ଜର୍ମାନ ଐକ୍ୟ ଆନ୍ଦୋଳନ, ଶ୍ରମିକ ଆନ୍ଦୋଳନ ଓ କୃଷକ ଆନ୍ଦୋଳନ ପ୍ରଭୃତି ପୃଥିବୀର ସାମାଜିକ ପୃଷ୍ଠଭୂମି, ସାଂସ୍କୃତିକ ଆଭିମୁଖ୍ୟ, ରାଜନୀତିକ ଚେତନା ଓ କଳାତ୍ମକ ପରମ୍ପରାର ପରିବର୍ତ୍ତନ ପାଇଁ ମୁଖ୍ୟ ଭୂମିକା ଗ୍ରହଣ କଲା ।

ସାହିତ୍ୟ ସମାଜର ଅନୁପୂରକ ; ସାହିତ୍ୟ ସମାଜକୁ ଓ ସମାଜ ସାହିତ୍ୟକୁ ଯୁଗେ ଯୁଗେ ଅପେକ୍ଷା କରେ । ଇତି ମଧ୍ୟରେ ସମାଜ ଯେଉଁ ସଙ୍କଟ, ସଂଘର୍ଷ ଓ ପରୀକ୍ଷା ନିରୀକ୍ଷା ମଧ୍ୟରେ ଅଗ୍ରସର ହୋଇଛି, ସାହିତ୍ୟ ମଧ୍ୟ ସେହି ସଂକଟ, ସଂଘର୍ଷ ଓ ପରୀକ୍ଷା ନିରୀକ୍ଷା ମଧ୍ୟରେ ଅଗ୍ରସର ହୋଇଛି । ସମାଜ ପରି ସାହିତ୍ୟର ଭଗ୍ନାଂଶ ଓ ବିଭକ୍ତିକରଣ ଫଳରେ ସାହିତ୍ୟରେ ବହୁବାଦ, ମତବାଦ, ରୂପ, ରୂପାନ୍ତରର ସୃଷ୍ଟି ହେଲା । ଏହି ଅବକାଶରେ ଖଣ୍ଡ ସାହିତ୍ୟ, ଉପାନ୍ତ ସାହିତ୍ୟ, ପ୍ରାଦେଶିକ ସାହିତ୍ୟ, ଦେଶୀୟ ସାହିତ୍ୟ ଆନ୍ତର୍ଜାତୀୟ ସାହିତ୍ୟ ଓ ବିଶ୍ୱ ସାହିତ୍ୟରେ ଯେଉଁ ସ୍ୱପ୍ନବାଦ, ରହସ୍ୟ-ବାଦ, ଶୂନ୍ୟବାଦ, ଊଅତ୍ରୂକ୍ୟବାଦ, ସୌନ୍ଦର୍ଯ୍ୟବାଦ, କଳାବାଦ, ପ୍ରୟୋଗ-ବାଦ, ସାମ୍ୟବାଦ, ସମାଜବାଦ, ପ୍ରଗତିବାଦ ଓ ଚରମବାଦ ତଥା ଆଧୁନିକ କବିତା, ଅତ୍ୟାଧୁନିକ କବିତା, ଗଦ୍ୟ କବିତା, ଅନାଗରିକ କବିତା, ବିପ୍ଲବ କବିତା, ସଜ କବିତା, ଭୋକିଲା କବିତା, ଅସ୍ୱୀକୃତ କବିତା, ଦିଗମ୍ବର କବିତା, ଅବଧୂତ କବିତା, ଅନାମ କବିତା, ଭଞ୍ଜି-କବିତା, ଅବୁଝା କବିତା ବା ଅକବିତା ପ୍ରଭୃତି ମୁକ୍ତିଲାଭ କଲା, ତାହା ବାହ୍ୟାଭ୍ୟନ୍ତରୀଣ ବହୁମୁଖୀ ପରିସ୍ଥିତିର ପ୍ରତିଫଳନ ମାତ୍ର—

ସଂପ୍ରତି ମଣିଷ ସମାଜ ଯେଉଁ ଅଭୂତପୂର୍ବ ଓ ଅକଥନୀୟ ସମସ୍ୟାର ସମ୍ମୁଖୀନ ହୋଇଛି, ତାହା ପୃଥିବୀ ଇତିହାସରେ ଏକ ଅବିସ୍ମରଣୀୟ ରେକର୍ଡ଼, ଏଥିରେ ସନ୍ଦେହ ନାହିଁ । ବିଶ୍ୱର ବିଭିନ୍ନ କୋଣରେ ଆଜି ବର୍ଣ୍ଣବିଭେଦ, କଳା ଧଳା ମଣିଷର ସଂଘର୍ଷ, ପୁଞ୍ଜିପତି ଗୋଷ୍ଠୀର ଶୋଷଣ, ସାମ୍ରାଜ୍ୟ-ବାଦର ରାଜ୍ୟ ବିସ୍ତାର, ଯୁଦ୍ଧ-ହୁଙ୍କାର, ଆର୍ଥିକ ଅନାଟନ, ଚରମ ଦାରିଦ୍ର୍ୟ, ଅଗଣତାନ୍ତ୍ରିକ ଶାସନ, ପ୍ରଶାସନିକ ଅସଫଳତା, ସ୍ୱାର୍ଥାନ୍ଧ ନେତୃତ୍ୱ, ବ୍ୟାପକ ଭ୍ରଷ୍ଟାଚାର, ଯାନ୍ତ୍ରିକ ବିଭ୍ରାଟ, ରାଷ୍ଟ୍ରୀୟ ବିଘଟଣ, ଖଣ୍ଡିତ ଜୀବନାଦର୍ଶ, ବେକାରସମସ୍ୟା, ଦୁର୍ବଳ ଶିକ୍ଷାନୀତି, ମୁଦ୍ରାସ୍ଫୀତି, ଶୋଷଣ, ଲାଞ୍ଛନା, ପୀଡ଼ନ, ଯାତନା, ଗୃହ-ବିଶୃଙ୍ଖଳା, ଶ୍ରମିକ-ଆନ୍ଦୋଳନ, ରାଜନୀତିକ ସଂଘର୍ଷ, ହତ୍ୟା, ଆତ୍ମହତ୍ୟା, ଚୋରି, ଲୁଣ୍ଠନ, ଧର୍ମଘଟ, ଘେରାଉ, ଧାରଣା; ସାମାଜିକ ଅବ୍ୟବସ୍ଥା, ଦଳ ଅଦଳବଦଳ, ନିର୍ବାଚନ, ସରକାର ଗଠନ, ପୁନର୍ଗଠନ, ଅର୍ଥ-ଆତ୍ମସାତ୍, ଖାଦ୍ୟାଭାବ, ଉପବାସ, ଅପମୃତ୍ୟୁ, ଭୌତିକ ବିପନ୍ନତା, ନୈରାଶ୍ୟ, ସନ୍ତ୍ରାସ ଓ ଆତଙ୍କ ଆଦି ଦୈନିକ ରୁଟିନ ଅନ୍ତର୍ଭୁକ୍ତ । ଏହି ସମସ୍ୟାବହୁଳ ସମାଜରେ କବି, କଳାକାରମାନେ ଯେଉଁ ବିକଟ ପରି-ସ୍ଥିତିର ସମ୍ମୁଖୀନ ହୋଇଛନ୍ତି, ଏକଦା ମହାକବି କାଳିଦାସ, ସେକ୍ସପିଅର,

ମିଲ୍‌ଟନ୍, ରବୀନ୍ଦ୍ର ଠାକୁର, ସୁର ଦାସ, ତୁଳସୀ ଦାସ,ସାରଳା ଦାସ, ଉପେନ୍ଦ୍ର ଭଞ୍ଜ କିମ୍ବା ଇଳିଅଟ ପୂର୍ବଯୁଗୀୟ କବିମାନେ ସେହି ପରିସ୍ଥିତିର ସମ୍ମୁଖୀନ ହୋଇ ନ ଥିଲେ । କୌଣସି ଏକ ଦୁର୍ବଳ ମୁହୂର୍ତ୍ତରେ ଯଦି ବର୍ତ୍ତମାନର ସମାଜ ଇଚ୍ଛା ପ୍ରକାଶକରେ, ତେବେ କାଳିଦାସ, ସେକ୍‌ସପିଅର୍ ଓ ଉପେନ୍ଦ୍ର-ଭଞ୍ଜ ପ୍ରମୁଖ କବିମାନଙ୍କୁ ଜନ୍ମ ଦେଇ ପାରିବ ନାହିଁ କିମ୍ବା ଏଠାରେ ସେହି ପୂର୍ବସୁରିମାନଙ୍କ ସାହିତ୍ୟ-ସୃଷ୍ଟି ସମ୍ଭବ ହୋଇ ପାରିବ ନାହିଁ । ତେଣୁ ଏହି ବିଘୂର୍ଣ୍ଣିତ ଓ ବହିର୍ମୁଖୀ ସମାଜରେ ସ୍ୱାଭାବିକ ଭାବରେ କାବ୍ୟ ପରେ ଅକାବ୍ୟ, କବିତା ପରେ ଅକବିତାର ସୃଷ୍ଟି ଅସମ୍ଭବ ନୁହେଁ । ଏହି ଅକାବ୍ୟ ଓ ଅକବିତା ପାଇଁ ସମାଜରେ ପ୍ରଚୁର ଅନୁକୂଳ ଉପାଦାନ ଭରି ରହିଛି । ଅକବିତା ବିଶ୍ୱର ଗତାନୁଗତିକ ସାହିତ୍ୟର ପ୍ରଶାନ୍ତ ବକ୍ଷକୁ ମନ୍ଥିତ ଓ ବିଦୀର୍ଣ୍ଣ କରିବାକୁ ଏକ ଶାଣିତ ଅସ୍ତ୍ର ହୋଇଛି । ପ୍ରଥମ ଓ ଦ୍ୱିତୀୟ ବିଶ୍ୱ ଯୁଦ୍ଧ ଫାଙ୍କରେ ମୁଖ୍ୟତଃ ଇଂରାଜୀ ସାହିତ୍ୟରେ ଏହି ଅକବିତାର ଜନ୍ମ ହୋଇଥିଲେ ହେଁ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ବିଶ୍ୱର ବିଭିନ୍ନ ପ୍ରାନ୍ତରେ ଏହାର ପ୍ରଚୁର ଓ ପ୍ରସାର ଆରମ୍ଭ ହୁଏ । ଭାରତରେ ସ୍ୱାଧୀନତା ପରେ ଅକବିତା ଆନ୍ଦୋଳନ ପାଇଁ ଉପଯୁକ୍ତ ପରିବେଶର ଅଭାବ ନ ଥିଲେ ହେଁ ୧୯୬୦ ମସିହା ପରେ ପ୍ରଥମେ ହିନ୍ଦି ସାହିତ୍ୟରେ ଏହାର ଜନ୍ମ ହୁଏ ଓ ୧୯୬୫ ମସିହା ପରେ ଏହି ଆନ୍ଦୋଳନର ଦ୍ରୁତ ପ୍ରସାର ଯୋଗୁ ବିଭିନ୍ନ ପ୍ରାଦେଶିକ ସାହିତ୍ୟରେ ଏହା କ୍ରମଶଃ ମୁଣ୍ଡ ଟେକେ । ସ୍ୱାଧୀନତା ପରେ ଯେଉଁ ସଂଖ୍ୟାନ୍ୟୂନ ଅକବିତାର ଉଦାହରଣ ମିଳେ, ତାହା ବିଶେଷ ସଫଳ ଓ ଉଲ୍ଲେଖଯୋଗ୍ୟ ନୁହେଁ ।

ସାହିତ୍ୟରେ ଗଳ୍ପ, ଉପନ୍ୟାସ ଓ କବିତାର ଜନ୍ମ, ଅଭିବୃଦ୍ଧି, ଗତି ପ୍ରକୃତିରେ ଯେଉଁଳି ପରିବର୍ତ୍ତନ ହୁଏ, ଅକବିତାର ଇତିହାସରେ ମଧ୍ୟ ସେଉଁଳି ପରିବର୍ତ୍ତନ ହୁଏ । ଯଦି କବି ଓ୍ୟାଲ୍‌ଟ୍‌ସ୍‌ଓ୍ୟାର୍ଥ- ଅକବିତାର ପ୍ରଥମ ବାର୍ତ୍ତାବହ ବୋଲି ବିବେଚିତ ହୁଅନ୍ତି, ତେବେ ସେ ମାତ୍ର ଅଳ୍ପ କେତେକ ସୃଷ୍ଟିରେ ଅକବିତାର ଗଠନଶୈଳୀ ତଥା ମନସ୍ତାତ୍ତ୍ୱିକ ବିଶ୍ଳେଷଣାତ୍ମକ ଅଭିମୁଖ୍ୟ ପାଇଁ ଅକବିର ଆସନରେ ସମ୍ମାନିତ ହେବେ । କବି ଓ୍ୟାଲ୍‌ଟ୍‌ସ୍-ଓ୍ୟାର୍ଥଙ୍କ ପରେ ଇଂରାଜୀ ସାହିତ୍ୟରେ ଅକବିତା ତଥା ଅକବିତାର ସମ-ଧର୍ମୀ କବିତାର ସ୍ରଷ୍ଟା ଭାବରେ ଡ. ଜି. ରୋସେଟି, ମାଡ଼କ୍‌ସ ବ୍ରାଉନ୍, ହୋଲ୍‌ମ୍ୟାନହଣ୍ଟ, ମିଲ୍‌ଆସ୍, ଉଇଲିଅମ ମୋରିସ ଓ ରୁଡ୍‌ୟାର୍ଡ଼ କିପ୍‌ଲିଂ

ପ୍ରଭୃତି କବିଙ୍କ ନାମ ସ୍ୱୀକୃତ । ଏଠାରେ ଉଲ୍ଲେଖ୍ୟଯୋଗ୍ୟ ଯେ ଓ୍ୱାର୍ଡ୍‌ସ୍-ଓ୍ୱାର୍ଥଙ୍କ କାବ୍ୟସାହିତ୍ୟକୁ ଏକଦା ଟେନିସନ ଓ ରବର୍ଟ୍ ବ୍ରାଉନିଂ ପ୍ରମୁଖ ଅପ୍ରତିଦ୍ୱନ୍ଦ୍ୱୀ କବିମାନେ ବିନା ଦ୍ୱନ୍ଦ୍ୱ ଓ ଦ୍ୱିଧାରେ ନିର୍ବାସନ ଦେଇଥିଲେ । ପୁଣି ଇଂରାଜୀ ସାହିତ୍ୟରେ ରୋସେଟି, ମାର୍କସ, ବ୍ରାଉନ ପ୍ରଭୃତି କବିମାନେ ଶୈଳୀ, ଶବ୍ଦ-ଯୋଜନା, ବିଷୟବସ୍ତୁ ତଥା କାବ୍ୟାଭିମୁଖ୍ୟରେ ଯେଉଁ ଅସାଧାରଣ କଳା, କୁଶଳତା ପ୍ରୟୋଗ କଲେ, ତଦ୍ଦ୍ୱାରା ଓ୍ୱାର୍ଡ୍‌ସ୍‌ଓ୍ୱାର୍ଥ, ଟେନିସନ୍, ବ୍ରାଉନିଂ ପ୍ରଭୃତି କବିମାନେ ଅକ୍ଳେଶରେ ହାର ମାନିଲେ । ଏହାପରେ ଇଲିଅଟ୍ ଯୁଗୀୟ Experimentalist କବିମାନଙ୍କ କାବ୍ୟ ପର୍ବ ଆରମ୍ଭ ହୁଏ । Experimentalist କବିମାନେ ପୂର୍ବ କାବ୍ୟ-ପରମ୍ପରାର ଚେହେରା ସମ୍ପୂର୍ଣ୍ଣ ବଦଳାଇ ସମଗ୍ର ବିଶ୍ୱ ସାହିତ୍ୟରେ ଯେଉଁ ଅତିମାନବବାଦ ଓ ଅତି-କବିତାବାଦର ମର୍ମ ପ୍ରଚାର କଲେ ତାହା ହିଁ ଯଥାର୍ଥରେ ଅକବିତାର ଆଲୋକବର୍ତ୍ତିକା ହୋଇ ଯୁଦ୍ଧୋତ୍ତର କବିମାନଙ୍କୁ ପ୍ରଭାବିତ କଲା । ଏଠାରେ ସ୍ମରଣୀୟ ଯେ ଆଧୁନିକ କବିତା, ଅତ୍ୟାଧୁନିକ କବିତା କିମ୍ବା ଗଦ୍ୟ କବିତା ଅକବିତା ପର୍ଯ୍ୟାୟର ଅନ୍ତର୍ଭୁକ୍ତ ନୁହେଁ । ଅକବିତା କାବ୍ୟ-ଜଗତରେ ଏକ ସ୍ୱତନ୍ତ୍ର ପରଂପରା, ଏପର୍ଯ୍ୟନ୍ତ ଅକବିତାର ବିଶଦ ଆଲୋଚନା ପୂର୍ବରୁ ଏହାର ଜନ୍ମ, ଅଭିବୃଦ୍ଧି ଓ ଅଗ୍ରଗତି ସମ୍ପର୍କରେ ଏକ ସଂକ୍ଷିପ୍ତ ସୂଚନା ମାତ୍ର ପ୍ରଦାନ କରାଗଲା । ସଂପୃକ୍ତ କବିମାନେ ଯେତେବେଳେ କବିତା ପାଇଁ କଲମ ଧରନ୍ତି, ସେତିକିବେଳେ ଅକବିତାର ବାର୍ତ୍ତା ମଧ୍ୟ ବହନ କରନ୍ତି । ତେଣୁ ସେମାନଙ୍କର କେଉଁ ସୃଷ୍ଟି କବିତା ଓ କେଉଁ ସୃଷ୍ଟି ଅକବିତା ପର୍ଯ୍ୟାୟର, ତାହା ପାଠକ ଓ ସମାଲୋଚକମାନେ ସମଗ୍ର କାବ୍ୟରାଶି ଅଧ୍ୟୟନ ନ କରି ଜାଣିବା କଷ୍ଟସାଧ୍ୟ । ଅନୁରୂପ ଦୃଷ୍ଟାନ୍ତ ଯୁଦ୍ଧୋତ୍ତର ଭାରତୀୟ କବିମାନଙ୍କ ପକ୍ଷରେ ମଧ୍ୟ ପ୍ରଯୁଜ୍ୟ । ଯୁଦ୍ଧୋତ୍ତର ଭାରତୀୟ କବିମାନେ ଅକବିତାର ଚିନ୍ତାଧାରା ଓ ପ୍ରସ୍ତୁତିପର୍ବ ପାଇଁ ଯେ କଲମ ଧରି ନ ଥିଲେ ଏ କଥା ନୁହେଁ । କିନ୍ତୁ ସେମାନଙ୍କର ମୁଖ୍ୟ କାବ୍ୟାଭିମୁଖ୍ୟ ନିକଟରେ ଅକବିତାର କ୍ଷୀଣ ଧାରା ମଳିନ ପଡ଼ି-ଗଲା । କବି ସଚ୍ଚି ରାଉତରାୟ (ଓଡ଼ିଆ), ସମୀନ୍ଦ୍ର ରାୟ, ସୁଭାଷ ମୁଖାର୍ଜୀ, ବିଷ୍ଣୁ ଦେ (ବଙ୍ଗଳା), ପ୍ରଭାକର ମାଚେ (ହିନ୍ଦି), ଅବ୍ଦୁଲ ଖଲିଲ୍, ତାକଜିୟୁ-ନାଗିସି ଏଦେଶରୀ ଗୋବିନ୍ଦ ନାପ୍ପାର (କାଶ୍ମୀର) ଓ ଏମ୍. ୟୁ. ମାଲକାନି (ସିନ୍ଧି) ପ୍ରମୁଖ ଯୁଦ୍ଧୋତ୍ତର ସ୍ରଷ୍ଟାମାନେ ଭାରତୀୟ ସାହିତ୍ୟ ଜଗତରେ ଅ-କବିତାର ଯେଉଁ ଶୁଭ ଶଙ୍ଖ ବଜାଇଲେ, ତାହା ୧୯୬୦ ମସିହା ପରବର୍ତ୍ତୀ

ପରିଣତି ଅକବିତାର ଆଦର୍ଶ, ଶୈଳୀଗଠନ ସ୍ୱଭାବଠାରୁ ଅନେକ ପୃଥକ୍ ।
୧୯୬୦ ମସିହା ପରେ ଇଂରାଜୀ ସାହିତ୍ୟ, ଫ୍ରେଞ୍ଚ ସାହିତ୍ୟ ସମେତ ଭାରତର
ବିଭିନ୍ନ ପ୍ରାଦେଶିକ ସାହିତ୍ୟ ମୁଖ୍ୟତଃ ହିନ୍ଦି ସାହିତ୍ୟରେ ଅକବିତାର
ଚେହେରା ସଂପୂର୍ଣ୍ଣ ବଦଳିଗଲା । ଏତେବେଳକୁ ଅକବିତା ଆନ୍ଦୋଳନର
ଶେଷ ପ୍ରତିନିଧି ଭଳିଅଛି ମଧ୍ୟ କେଉଁ ଏକ ଅପନ୍ତରା ନିର୍ଜନ ମରୁଭୂମିରେ
ପରାସ୍ତ ସୈନିକ ଭାବରେ ନିର୍ବାସିତ ହେଲେଣି ।

ଏହି ଅକବିତା ଆନ୍ଦୋଳନ ସଂପ୍ରତି କେବଳ ଭାରତରେ ଓଡ଼ିଆ
କିମ୍ବା ହିନ୍ଦି ସାହିତ୍ୟରେ ନୁହେଁ, ସମଗ୍ର ବିଶ୍ୱ ସାହିତ୍ୟରେ ଏକ ଚମକପ୍ରଦ
ଆଲୋଡ଼ନ ସୃଷ୍ଟି କରେ । ଅକବିତାର ପରିଚୟ, ଦର୍ଶନ ଓ ଅଭିମୁଖ୍ୟ
କ'ଣ ? ଏହାର ସ୍ଥିତି, ଭିତ୍ତି, ଅତୀତ ଓ ଭବିଷ୍ୟତ କ'ଣ ? ସଂପ୍ରତି କେଉଁ
ପରିସ୍ଥିତିରେ ଏହାର ଜନ୍ମ ଓ ଅଗ୍ରଗତି ? କ'ଣ ଏହାର ତାତ୍ପର୍ଯ୍ୟ,
ପରିଣତି ଓ ଭୂମିକା ? ଏଭଳି ଅଗଣିତ ପ୍ରଶ୍ନ ଆଜିର ଅକବିତାର ପାଠକ
ଓ ସମାଲୋଚକ ମନରେ ଉଙ୍କିମାରେ ।

ଅକବିତା—କୁକବିତା, ଅବୋଧ କବିତା କିମ୍ବା ହୀନ କବିତା
ନୁହେଁ । ଏହା ଏକ କବିତାନ୍ତର ସ୍ଥିତି, କବିତା-ବିରୋଧୀ କବିତା ଓ
ଅତିବାଦର କବିତା । ସଂପ୍ରତି ଏହା ଏକ ସଂପୂର୍ଣ୍ଣ ନୂତନ ଓ ଗତିଶୀଳ
କବିତା । ସାମାନ୍ୟ ପରିବର୍ତ୍ତନରେ ବହୁତ କିଛି ଏହି କବିତାରେ ଅସ୍ୱୀ-
କାର କରିବାକୁ ହୁଏ । ଅଘଟଣ, ଅକଥା ଓ ଅପରିବେଶକୁ ଭିତ୍ତି କରି
ଏହା ଲେଖାଯାଏ । ଅକବିତା ବୁଝିଲେ ଆଧୁନିକତା ବା ଆଧୁନିକ ମଣିଷ
ସମାଜ କ'ଣ ବୁଝିହେବ ? ଅକବିତା—ଶିଳ୍ପ, ବିଜ୍ଞାନ ଓ ଯାନ୍ତ୍ରିକ ସଭ୍ୟତାର
ବିରୋଧୀ ନୁହେଁ । କେତେକ ସମାଲୋଚକ ମତ ଦିଅନ୍ତି, ଅକବିତା ଆଧୁନିକ
କିମ୍ବା ଗଦ୍ୟ କବିତାର ଶେଷ ନିଃଶ୍ୱାସ ; କିନ୍ତୁ ଏହା ସତ ନୁହେଁ । ଏହି
କବିତାନ୍ତର ଅକବିତା ବାସ୍ତବ ସଫଳ ଅନୁଭୂତିପୂର୍ଣ୍ଣ ଅମୂର୍ତ୍ତତାର
ବ୍ୟାୟାମରେ ସାଧିତ ହୁଏ । ଏହା କବିତାନ୍ତର ସ୍ଥିତିର ସଂକ୍ରମଣ ନୁହେଁ ।
ଏହା ଏକ ନୂତନ ଅବତରଣ । କେତେକ ସମୟରେ ଅନୁମାନରେ କିମ୍ବା
ଅନ୍ଧାରରେ ବାଡ଼ି ବୁଲେଇ ଅକବି ଅକବିତାରେ ଦୁନିଆକୁ ବୁଝିବାର
ପ୍ରୟାସ କରିଥାଏ । ତେଣୁ ଏ ଅକବିତାକୁ ଏକ ବିଶିଷ୍ଟ ଶିଳ୍ପ ବୋଲି
କୁହାଯାଏ । କବିତା ଶବ୍ଦମୟ, ଶବ୍ଦଗତିରେ ଏହାର ପ୍ରକାଶ ହୁଏ । କିନ୍ତୁ
ଅକବିତା ଶବ୍ଦାତୀତ ଓ ଶବ୍ଦାତିରିକ୍ତ ଅଟେ । ଶବ୍ଦାତୀତ ଓ ଶବ୍ଦାତିରିକ୍ତରେ

ଏହାର ପ୍ରକାଶ ହୁଏ । ଅକବିତାର ଶବ୍ଦସମଷ୍ଟି ପରେ ଏଥିରେ ଅଧିକ ଗତିଶୀଳ ଚେତନଶୀଳ ଓ ସପ୍ରାଣ ଶବ୍ଦ ପ୍ରୟୋଗ କରି ଏହାକୁ ମୂର୍ତ୍ତିମୟୀ ଓ ଚଳନ୍ତ କରିବାକୁ ହୁଏ । ତେଣୁ ଅକବିତା ପାଠକକୁ ଅଧିକ ଜାଗ୍ରତ ଓ ସଚେତନ କରେ । ଅକବିତା ଆତ୍ମବୋଧ ବିସଙ୍ଗତି ବିଚ୍ୟୁତ ଏକାକୀ ଜୀବନର ପ୍ରସ୍ତାବକ । ବିଶିଷ୍ଟ ହିନ୍ଦି ସାହିତ୍ୟିକ ଓ ଅକବିତା ଆନ୍ଦୋଳନର ଅନ୍ୟତମ ମୁଖ୍ୟ ପ୍ରବର୍ତ୍ତକ ଶ୍ରୀ ଜଗଦୀଶ ଚତୁର୍ବେଦୀ ମତ ଦିଅନ୍ତି—କବିତା ଏକ ନିଃଶେଷ ଶବ୍ଦ । ତେଣୁ ସେ କବିତାନ୍ତର କବିତାକୁ ଅକବିତା ବୋଲି ସମ୍ବୋଧନ କରନ୍ତି ଓ ଏହାକୁ ନିସଙ୍ଗତିର 'ଅଭିବ୍ୟକ୍ତି' ବୋଲି କୁହନ୍ତି । ଅକବିତା ଆନ୍ଦୋଳନର ଅନ୍ୟତମ ମୁଖ୍ୟ ପ୍ରବର୍ତ୍ତକ ଶ୍ୟାମ ପରମାର କୁହନ୍ତି—କବିତାର ବିରୋଧୀ ବୋଲି ଏହା କେବଳ ଅକବିତା ତାହା ଠିକ୍ ନୁହେଁ । ଅକବିତା ନୂଆ ଆବେଗର ସାର୍ଥକ ପରିଣତି ଓ ଏହା ପରମ୍ପରାର ବିରୋଧୀ କବିତା ଅଟେ । ପ୍ରଚଳିତ କବିତାର ସ୍ୱର, ଭାବଭଙ୍ଗୀରୁ ବିଚ୍ୟୁତ ସମକାଳୀନ ଚରମ ଯୁବକବିମାନେ ଏହି ଅକବିତା ପରମ୍ପରାର ବାହକ ।

ଅକବିତା ଲୋକ-ସଂସ୍କୃତିର ପ୍ରକୃତ ପ୍ରତିନିଧି । ମଣିଷ ଜୀବନର ଗଭୀର ଗମ୍ଭୀର ଓ ଅନ୍ତର୍ନିହିତ ସମସ୍ୟା ଏଥିରେ ପ୍ରତିବିମ୍ବିତ ହୁଏ । ଏହାର ଶିଳ୍ପକଳା ଓ ସମ୍ବେଦନଶୀଳତା ବ୍ୟାପକ ଓ ବାସ୍ତବ ମଧ୍ୟ । ଅକବିତାର ଶିଳ୍ପୀ ଯଥେଷ୍ଟ ସତର୍କତା ଅବଲମ୍ବନପୂର୍ବକ ଦୂରଦୃଷ୍ଟିସମ୍ପନ୍ନ ହୋଇ ଅକବିତା ରଚନା କରେ । ଧୂର୍ତ୍ତତା, ଧୃଷ୍ଟତା ଓ ଚୌର୍ଯ୍ୟବୃତ୍ତିଦ୍ୱାରା ଏହାର ସୃଷ୍ଟି ସମ୍ଭବ ନୁହେଁ । ସହଜ ପ୍ରବୃତ୍ତିରେ ମଧ୍ୟ ଏହା ପରିଚାଳିତ ନୁହେଁ । ବହୁ ମତବାଦ, ସ୍ୱାତନ୍ତ୍ର୍ୟ, ସମସ୍ୟା, ବନ୍ଧନ ଓ ଅରାଜକତା ମଧ୍ୟରେ ଅକବିତାର ସ୍ୱର ମୁଖ୍ୟତଃ ମୁକ୍ତି ପାଇଁ ଡାକରା ଦିଏ । ହିପ୍ପି, ବିଟ୍‌ଲସ, ବିଟନିକ୍, ହଙ୍ଗ୍ରି ଜେନେରେସନ ଓ ମ'ଭଜଆନା ଗୋଷ୍ଠୀ ଭଳି ଅକବି-ଗୋଷ୍ଠୀ ସମାଜର ପୃଥକ୍ ମଣିଷ ଭାବରେ ଦୁଃସାହସିକତା ଓ ଅସୀମ ବୀରତ୍ୱର ପରିଚୟ ଦେଖାଇ ଜନସାଧାରଣ ସହିତ ସଂଗ୍ରାମ କରି ନିଜର ଅସ୍ତିତ୍ୱ ବଜାୟ ରଖେ ଓ ଏଥିପାଇଁ ଦରକାର ହେଲେ ସଂଗ୍ରାମ କ୍ଷେତ୍ରରେ ଶହୀଦ ମଧ୍ୟ ହୁଏ । କବିତା ଗତାନୁଗତିକ ଭାବ, ଚିନ୍ତାଧାରା, ମନ ଓ ହୃଦୟର ତରଙ୍ଗରେ ତରଙ୍ଗାୟିତ ହୁଏ । କିନ୍ତୁ ଅକବିତା ଏହି ପ୍ରବୃତ୍ତିର ବିରୋଧ କରେ । ଏହି କବିତାର ପରିପନ୍ଥୀ ରଚନା ହିଁ ଅକବିତା ଅଟେ । ଧର୍ମ, ବିଜ୍ଞାନ ଓ ସେକ୍‌ସକୁ ଭିତ୍ତି କରି ମୁଖ୍ୟତଃ ଆଧୁନିକ ବା ପ୍ରଚଳିତ

କବିତା ରଚିତ ହୁଏ । କିନ୍ତୁ ପ୍ରଚଳିତ ପାରମ୍ପରିକ କାବ୍ୟାଦର୍ଶକୁ ଆଘାତ ଦେଇ ବାସ୍ତବ ରାଜନୀତି, ଅର୍ଥନୀତି ଓ ବିଜ୍ଞାନକୁ ଭିତ୍ତି କରି ଅକବିତା ନିଜର ପରିଚୟ ଦିଏ । ଉତ୍କୃଷ୍ଟ ମାନସିକ ଅବସ୍ଥା Liberated ମଣିଷର ହିଁ ମାନସିକ ଅବସ୍ଥା । ଅକବିତା ଏହି Liberated ମଣିଷର ଉତ୍କୃଷ୍ଟ ମାନସିକ ଅବସ୍ଥାର ସାର୍ଥକ ଓ ବଳିଷ୍ଠ ଉପସ୍ଥାପନ । ପ୍ରଚଳିତ କିମ୍ବା ପାରମ୍ପରିକ କବିତାର ପ୍ରୟୋଗ ସ୍ଥିତି, ଅର୍ଥ ନିୟୋଜନ କଳା, ପ୍ରସାର-ମୁଖତା, ପଦମୟତା, ଗୁଣ-ବୋଧକତା, ବିପ୍ରତ୍ୟର୍ଥିକ କଳା କୁଶଳତା, ସ୍ଥିତି-ସଂଗତ ନିବେଶନ ସିଦ୍ଧି, କାବ୍ୟାତ୍ମକ ବିଡ଼ମ୍ବନା, ଧର୍ମୀୟ ମତାନ୍ଧତା, ଶବ୍ଦ-କ୍ଲିଷ୍ଟତା, ଔପଚାରିକତା, ବାହ୍ୟ ଫେସନ, ରୋମାନ୍‌ସ, ସ୍ୱଚ୍ଛଳତା, ପ୍ରୟୋଗବାଦ, ପ୍ରଗତିବାଦ, ପ୍ରଭାବବାଦ, ପୂର୍ବ ପ୍ରୟୋଗବାଦ, ଉତ୍ତର ପ୍ରୟୋଗବାଦ, ବିମ୍ବବିଧାନ, ସୌନ୍ଦର୍ଯ୍ୟସୃଷ୍ଟି, କଳ୍ପନାତ୍ମକ ଉନ୍ମେଷ, ସ୍ୱପ୍ନ-ବିଳାସ, ଭାବ-ବ୍ୟଞ୍ଜନା, ଅଳଙ୍କାର ପ୍ରତୀକ, ବିଶେଷୋକ୍ତି, ସାମାସିକ ଶବ୍ଦଗଠନ ପ୍ରବୃତ୍ତି ଆଦି ପରିହାର କରି ବିଶିଷ୍ଟ ଜ୍ଞାପିତ ଅର୍ଥରେ ସହଜ ଓ ବୋଧଗମ୍ୟ ସ୍ଥାନ, ପରିବେଶ ଓ ଘଟଣା-ସମ୍ଭାବିତ ସମ୍ବୋଧନ ତଥା ସମସାମୟିକ ମନସ୍ଥିତିର ବିଶ୍ଳେଷଣ କରି ମଣିଷକୁ ଭିନ୍ନ ଢଙ୍ଗରେ ସ୍ୱାଗତ କରେ ।

ଫଳରେ ଅକବିତା ଶିଳ୍ପର ନୂତନ ସୃଜନ ପ୍ରକ୍ରିୟା ଓ ଜୀବନ ସଂଗଠନ ପାଇଁ ଅନୁକୂଳ ବାତାବରଣ ସୃଷ୍ଟି କରି ପାରେ । ପୁରାତନ ଓ ପ୍ରଚଳିତ କାବ୍ୟର ପରିବେଶଗତ ଗୋପନୀୟତା, କାଳ୍ପନିକ ରହସ୍ୟମୟତା, ଅଯଥାର୍ଥ ଉଦ୍‌ଭାବନା ଅକବିତାର ଜୀବନ କ୍ଷମତାକୁ ବିନଷ୍ଟ କରେ । ପ୍ରାକୃତିକ ମାପଦଣ୍ଡ, ତାଳ, ଧର୍ମ, ଶକ୍ତି, ନିୟମକୁ ବଦଳାଇ ପୁରୁଣାକୁ ବାସି ଭାବି ଓ ଅଭୋଗ୍ୟ କହି ଯଥାର୍ଥ କ୍ରିୟାତ୍ମକ ଅଭିବ୍ୟକ୍ତି ଉପରେ ପ୍ରାଧାନ୍ୟ ଆରୋପ କରି ଜୀବନର ସହଜତା, ଅନୁଭୂତିର ସମଗ୍ରତା ତଥା ବ୍ୟକ୍ତି-ଚେତନାର ଜୀବନ୍ତତାର ନିର୍ଦ୍ଦେଶରେ ଅକବିତା ଅକବିର କଲମରେ ରୂପାୟିତ ହୁଏ । ରସ, ଅଳଙ୍କାର, ଭାବ, ଅନୁଭାବ, ଆତ୍ମା, ପରମାତ୍ମା, ଇଡ଼ା, ପିଙ୍ଗଳା, ସୁଷୁମ୍ନା ପ୍ରଭୃତି ରକ୍ଷଣଶୀଳ କାବ୍ୟିକ ଧର୍ମୀୟ ସଂଜ୍ଞା ତଥା ବୌଦ୍ଧିକ ପ୍ରଯୁକ୍ତିରୁ ଅନ୍ତର ହୋଇ ଆନ୍ତରିକ ପରିବର୍ତ୍ତନରେ ବିଶ୍ୱାସ ରଖି ସମସାମୟିକ, ସାଂସ୍କାରିକ ଓ ସାମାଜିକ ଆବର୍ତ୍ତନରୁ ମୁକ୍ତି ପାଇବାକୁ ଅକବି ବ୍ୟତିବ୍ୟସ୍ତ ହୁଏ । ସେଇଥିପାଇଁ ଓ୍ୟାଟସନ୍‌ଙ୍କ ଚେଷ୍ଟିତ, ଶେଲରଙ୍କ ସମାଜଶାସ୍ତ୍ର ଓ ଜେମସଓ୍ୱାଇଙ୍କ

ବ୍ୟବହାରର ଉପରେ ବେଖାତିର ଦୃଷ୍ଟି ରଖି ହତ୍ୟା, ଆତ୍ମହତ୍ୟା, ମୃତ୍ୟୁ, ଅପମୃତ୍ୟୁ, ଭୂତ, ଅଭୂତ, ଯୌନଭୋଗ, ଅତି ସଂଭୋଗ ଓ ନପୁଂସକତା ଆଦି ଉପାଦାନକୁ ଅକବି ଅକବିତାର ଉପଜୀବ୍ୟ କରେ ଓ ସମାଜର ଅନ୍ତର୍ବିରୋଧ, ପରିବେଶଗତ ଅସଂହତି, ମନୁଷ୍ୟର ବିଦଗ୍ଧ ଚେତନା ଓ ଅସନ୍ତୁଳିତ ବ୍ୟବହାର ବିରୋଧରେ ଅଗ୍ରସର ହୁଏ । ଗତାନୁଗତିକ ଚେତନା, ପ୍ରଚଳିତ ଗତିବିଧି ଓ ଆଦର୍ଶକୁ ଅକବିତା ଚ୍ୟାଲେଞ୍ଜ୍ କରେ । ଅତୀତ ପ୍ରତି ଏଥିରେ ସାମାନ୍ୟ ସ୍ନେହ, ମୋହ ଓ ମମତା ନ ଥାଏ । ଅତୀତ ଅକବିର ଏକ ସ୍ମୃତିକୋଷ ମାତ୍ର । ଅତୀତର କୌଣସି ଏକ ସ୍ମୃତି ବର୍ତ୍ତମାନର ଆଧାର ଉପରେ ପ୍ରତିବିମ୍ବିତ ହୋଇ ଅକବିର କଲମ-ମୂନରେ ପରିଚୟ ଲାଭ କରେ । ଅକବି ନିକଟରେ ଅତୀତ ଏକ-ମାତ୍ର ଖୋଦିତ ଗୁମ୍ଫା । ଅନାଗତ ଓ ଆଗାମୀ ପାଇଁ ଏହାର ଦୃଷ୍ଟି ଅଧିକ ସାପେକ୍ଷ । ଯୁଗ ସାପେକ୍ଷ ପ୍ରସ୍ତୁତ ମୁହୂର୍ତ୍ତରେ ଭବିଷ୍ୟତର ଜିଜ୍ଞାସା ପ୍ରତି ଏହାର ଅଧିକ ମମତାବୋଧ । ଅକବିର ଦୃଷ୍ଟିରେ ମଦର ମଦ-ପାନରେ ବର୍ତ୍ତମାନ ଓ ମଦର ମଦନଶାରେ ଭବିଷ୍ୟତର ସ୍ଥିତି ଓ ସଂଧାନ ମିଳେ । ଭବିଷ୍ୟତ ବର୍ତ୍ତମାନର ପ୍ରତିକ୍ରିୟାର ପରିଣାମ । ଭବିଷ୍ୟତ ବର୍ତ୍ତମାନର ବକ୍ଷରୁ ଜନ୍ମ ଲାଭ କରେ ।

ତେଣୁ ବର୍ତ୍ତମାନ ଉପରେ ପ୍ରବଳ ଆତ୍ମବିଶ୍ୱାସ ରଖି ଅକବି ଅକବିତା ସୃଷ୍ଟିରେ ବ୍ରତୀ ହୁଏ । ଅକବିତାର ନିଜର ସ୍ୱାତନ୍ତ୍ର୍ୟ, ମୌଳିକ ଆଦର୍ଶ, ସଂସାର ଓ ସଂସ୍କାର ଅଛି । ଏହା ପରିସ୍ଥିତିର ଉପଜ ଅଟେ । ପରିସ୍ଥିତିକୁ ଅକବି ସର୍ବାଧିକ ଭୋଗ୍ୟ ଓ ଯୋଗ୍ୟ କରି ଅକବିତା ପାଇଁ ଅନୁକୂଳ ପରିବେଶ ସୃଷ୍ଟି କରେ । ବସ୍ତୁ ଅକବିର ଚେତନ ଓ ଅବଚେତନ ମନର ପ୍ରାବଲ୍ୟରେ ପ୍ରଭାବିତ ହୋଇ ଭବିଷ୍ୟାତ୍ମକ ପ୍ରତ୍ୟାଶାର ସ୍ୱପ୍ନ ଦେଖେ । ବସ୍ତୁର ସମସ୍ତ ଆକୁଳତା ଓ ବ୍ୟାକୁଳତା ଅକବିର ସଚେତନ, ସମ୍ବେଦନଶୀଳ ଶିଳ୍ପ ମାଧ୍ୟମରେ ବ୍ୟକ୍ତ ହୁଏ । କୌଣସି ବସ୍ତୁ ପ୍ରତି ଖାମ-ଖେୟାଲ ନ ହୋଇ ଉତ୍ତେଜନା ଓ ବୈଜ୍ଞାନିକ ଚେତନାଦ୍ୱାରା ଅକବି ପ୍ରତିକ୍ରିୟା ସୃଷ୍ଟି କରେ । ଅନୁଭୂତିର ଅଭାବରେ କାବ୍ୟକବିତାର ସୃଜନାତ୍ମକ କ୍ରିୟାର ବିଲୋପ ଘଟେ । ଅନୁଭୂତିର ପ୍ରାଚୁର୍ଯ୍ୟ ହିଁ ସଭ୍ୟତାର ସୂର୍ଯ୍ୟୋଦୟକାଳରେ କବି ବାଲ୍ମୀକିଙ୍କୁ ନିଷାଦ-କ୍ରୌଞ୍ଚ-ଦମ୍ପତି ଉପାଖ୍ୟାନର ମୂଳଦୁଆ ଉପରେ ରାମାୟଣ ସୃଷ୍ଟି ପାଇଁ ପ୍ରେରଣା ଦିଏ । ଏହି ପ୍ରେରଣା ପ୍ରତ୍ୟକ୍ଷ ଓ ଅପ୍ରତ୍ୟକ୍ଷ ଭାବରେ ଯୁଗେ ଯୁଗେ କବିର କଲମମୁନକୁ

ଶକ୍ତିଶାଳୀ କରେ । ସ୍ଥାନ, କାଳ, ପରିସ୍ଥିତି ପ୍ରଭୃତି ମଧ୍ୟ ଅକବିତାର ମୂଳପିଣ୍ଡ । କିନ୍ତୁ ଏହାର ଗତାନୁଗତିକତା, ଅବିଚ୍ଛିନ୍ନ ପ୍ରବାହ ଓ ପ୍ରଭାବ ଅକବିତାର ମୂଳପିଣ୍ଡ ନୁହେଁ । ପରଂପରାର କଥନ ଓ ମାଧ୍ୟମର ବ୍ୟତିକ୍ରମ, ବର୍ତ୍ତମାନ ଜୀବନର ମୂଲ୍ୟ ନିର୍ଣ୍ଣୟ, ପରିବେଶର ପରିବର୍ତ୍ତନ, ବାସ୍ତବତାର ତୀବ୍ର କ୍ରିୟା, ଚେତନାର ନୂତନ ସ୍ପନ୍ଦନ, ନୂତନ ଇନ୍ଦ୍ରିୟ ସମ୍ବେଦନ, ସମୟର ବିଶିଷ୍ଟ ଅନୁଭବ ଗ୍ରହଣ ଓ ସ୍ଥାପନ ପ୍ରକ୍ରିୟାକୁ ଭିତ୍ତି କରି ଅକବିତାର ସୃଷ୍ଟି ସମ୍ଭବ ହୁଏ । ଅଧିକନ୍ତୁ ସମସାମୟିକ ଜୀବନର ବୈଷମ୍ୟର ଅଭିବ୍ୟକ୍ତି, ଧର୍ମ, ଜାତି, ସଂସ୍କୃତିର ନୂତନ ମାନବିକ ମୂଲ୍ୟ ପ୍ରଦାନ, ନବୀନତାର ଉପାଦାନ ଓ ସ୍ୱୀକୃତି ପ୍ରତି ଚରମ ପ୍ରବୃତ୍ତି, ଜୀବନର ଯଥାର୍ଥ ସ୍ଥିତିର ପର୍ଯ୍ୟାଲୋଚନା, ପରଂପରା ପାଇଁ ଆକ୍ରୋଶହୀନତା ଓ ରୋମାନ୍ସମୁଖୀ ସୃଷ୍ଟି ପାଇଁ ସଂପୂର୍ଣ୍ଣ ସମର୍ଥନ କିମ୍ବା ପ୍ରତିରୋଧର ପ୍ରଖରତା ହିଁ ସାର୍ଥକ ଅକବିତାର ସଫଳ ନମୁନା । ପ୍ରଚଳିତ ଗଦ୍ୟ କବିତା କିମ୍ବା ଆଧୁନିକ କବିତାରେ imageର ସ୍ୱରୂପ, ଅବ୍ୟକ୍ତ କାହାଣୀ, ଅବ୍ୟାପ୍ତ ବୌଦ୍ଧିକତା ଓ ଅଭେଦ୍ୟ ଚିନ୍ତାଧାରା ବିଶେଷ ଉପଜୀବ୍ୟ ଓ ଉପଭୋଗ୍ୟ ହୋଇଥାଏ ; କିନ୍ତୁ ଅକବିତାରେ ସରଳ, ବ୍ୟବସ୍ଥିତ ବିଶ୍ଳେଷଣ, ପରିଷ୍କାର ପରିବେଷଣ ଓ direct touch ହିଁ ବାଞ୍ଛନୀୟ ବୋଲି ମନେ କରାଯାଏ ।

ବର୍ତ୍ତମାନର ତୀବ୍ର କଟୂକ୍ତି, ଯଥାର୍ଥ ଚେତନାଯୁକ୍ତ ଅଙ୍ଗନିର୍ମାଣ-ବିଗ୍ରହ-ପଦ୍ଧତି ସମ୍ବେଦନଶୀଳତା ଅଟେ । ଭୌତିକ ପରିସ୍ଥିତିରେ ଏହି ସମ୍ବେଦନଶୀଳତାର ଜନ୍ମ । ଭୌତିକ ପରିସ୍ଥିତିରେ ମଧ୍ୟ ବର୍ତ୍ତମାନର ଏହି ମଣିଷର ଜନ୍ମ । ବର୍ତ୍ତମାନ ମଣିଷର ସମସ୍ୟା ଯେଉଁଳି ବିଭିନ୍ନ ସେହିଭଳି ସମ୍ବେଦନଶୀଳତା ହିଁ ବିଭିନ୍ନ । ମଣିଷର ସମସ୍ୟା ଯେଉଁଳି ପରିବର୍ତ୍ତନଶୀଳ ସମ୍ବେଦନଶୀଳତା ସେଉଁଳି ପରିବର୍ତ୍ତନଶୀଳ । ଏହି ପରିବର୍ତ୍ତନଶୀଳ ସମ୍ବେଦନଶୀଳତା ହିଁ ଆଧୁନିକତା ଓ ଅକବିତା । ଏହି ସମ୍ବେଦନଶୀଳତା ଏକକ, ଅନିଶ୍ଚିତ ଓ ଅନିର୍ଣ୍ଣେୟ ଏବଂ ଆଶା, ଆସ୍ଥା, ପ୍ରସନ୍ନତା ଓ ଭବିଷ୍ୟବାଦର ଉଦ୍‌ଘାଟକ ।

ଅକବି ବନ୍ଧନ ସ୍ୱୀକାରେ ନା । କବିତାର ଛନ୍ଦରେ ସେ ମୁକ୍ତି ପ୍ରତ୍ୟାଶା କରେ, ଅଥଚ ସେ ଛନ୍ଦଯୁକ୍ତ କିମ୍ବା ଛନ୍ଦ-ବିଯୁକ୍ତ କବିତା ପାଇଁ ବ୍ୟସ୍ତ ନୁହେଁ । ସମ୍ପ୍ରତି ଘରଣୀୟ କାବ୍ୟ, କବିତାର ଏକମାତ୍ର ସ୍ୱର ଅକବିତା । ଅକବିତା ମାଧ୍ୟମରେ ଅକବି କବିତାରେ ଢଗ ନିର୍ଣ୍ଣୟ କରେ । ସମକାଳୀନ

କାବ୍ୟ, କବିତା ଅକବିତାର ପରିଚୟ ନୁହେଁ, ଏହା କାବ୍ୟ ସାହିତ୍ୟରେ ଏକ ଆନ୍ଦୋଳନ । ଏହା ଅନ୍ତର୍ବିରୋଧ, ପ୍ରବଞ୍ଚନା, ଅସଙ୍ଗତି, ବିସଙ୍ଗତି, ବିଘଟଣାର ଭିତ୍ତିଭୂମି ଓ ମନ, ସ୍ଥିତି, ପ୍ରବୃତ୍ତିଠାରେ ପୃଥକ୍ । ଆତ୍ମସଂଳାପ ଓ ବାର୍ତ୍ତାଳାପଦ୍ୱାରା ଏହା ପରିଚୟ ପ୍ରଦାନ କରେ । ଇତିହାସର ଶବ-ସଂସ୍କାର ପାଇଁ ଶ୍ରମ ନ କରି ଏହା ଯୁଗର ଗତିଶୀଳ ଚେତନାକୁ ଧରିବାକୁ ବ୍ୟଗ୍ର ହୁଏ ଓ ଆତ୍ମନିର୍ଣ୍ଣୟ ସକାଶେ ନ୍ୟୂର ନିସ୍ପୃତ ପାଖରେ ନିର୍ବାସନ ଭୋଗିବାକୁ ପ୍ରସ୍ତୁତ ରହେ । ରୋମାନ୍ସ-ସର୍ବସ୍ୱ, ପ୍ରଗତିଶୀଳ ଓ ପ୍ରଚଳିତ କାବ୍ୟ କବିତାକୁ ପ୍ରତ୍ୟାଖାନ କରି ଅକବି ଏକ ସ୍ୱତନ୍ତ୍ର ଓ ଅଭିନବ ଦୃଷ୍ଟି-ଭଙ୍ଗୀରେ ଉପସ୍ଥିତ ସମସ୍ୟାର ଗ୍ରନ୍ଥି ଉପରେ କସରତ୍ କରେ । ତେଣୁ ଅକବିତା ସଂଘର୍ଷ ଓ ଦୁଃସାହସିକ ଅଭିବ୍ୟକ୍ତିର ଏକ ପ୍ରଚଣ୍ଡ ନିୟାମକ ଓ ଏହାର ଚିନ୍ତାଧାରା ବିମ୍ବଧାରଣା, ଶବ୍ଦ ଗଠନ, ବିଷୟବସ୍ତୁର ଅଭିନବତ୍ୱ ବିଶେଷ ଉଲ୍ଲେଖଯୋଗ୍ୟ । ଏହି ଅବସରରେ ଅକବିତାରେ ସାମଗ୍ରିକ ଊର୍ଦ୍ଧ୍ୱଗାମୀ ଅସହାୟତା ପ୍ରକାଶ ପାଇବା ସ୍ୱାଭାବିକ । ସେଥିପାଇଁ ପ୍ରକାରାନ୍ତରରେ ସାର୍ତ୍ରେ, କାମୁ, ଦସ୍ତୟଭସ୍କି ଓ ମୈନେହାଇମଙ୍କ ନିକଟରେ ଏଭଳି ପ୍ରତିକ୍ରିୟା ଓ ବ୍ୟତିକ୍ରମକୁ ମଧ୍ୟ ସ୍ୱୀକୃତି ମିଳିଛି ।

ପ୍ରତ୍ୟେକ ଯୁଗରେ ଏକ ବ୍ୟତିକ୍ରମ-ମୂଳକ ସାହିତ୍ୟର ସୃଷ୍ଟି ହୁଏ । ପ୍ରତ୍ୟେକ ଯୁଗରେ ବ୍ୟକ୍ତିକ, ସାମାଜିକ, ନୈତିକ ଓ ଆଦର୍ଶାତ୍ମକ ମୂଲ୍ୟର ପରୀକ୍ଷା ହୁଏ ଏବଂ ବ୍ୟକ୍ତି ସ୍ୱୀକୃତିକୁ ସାମାଜିକ ମୂଲ୍ୟ ମିଳେ । ବର୍ତ୍ତମାନ ଯୁଗରେ ଯେଉଁ ବ୍ୟତିକ୍ରମମୂଳକ ଅକବିତା ସୃଷ୍ଟି ହୋଇଛି ତାହା ଏକ ବ୍ୟତିକ୍ରମର ବ୍ୟତିକ୍ରମ । ଏଭଳି ବ୍ୟତିକ୍ରମ କେତେବେଳେ, କିଭଳି ଓ କାହିଁକି ସୃଷ୍ଟି ହେଲା ? ଅଧୁନା ପ୍ରାଶ୍ନିକର ଏହା ଏକ ଜଟିଳ ଜିଜ୍ଞାସା । ଏହି ଜିଜ୍ଞାସାର ବ୍ୟକ୍ତିଗତ, ସାମାଜିକ ଓ ସାଂସ୍କୃତିକ ପରୀକ୍ଷାର ବାସ୍ତବ ବୌଦ୍ଧିକ, ମାର୍ମିକ ଓ ତାତ୍ତ୍ୱିକ ଉତ୍ତର—ଅକବିତା ।

ଅକବିତାରେ ଅକବି ନିଜର ଜୀବନ ଓ ମରଣକୁ ଉପେକ୍ଷିତ ଦୃଷ୍ଟିରେ ଦେଖେ । ଏଥିରେ ସେ ନିଜ ପାଇଁ ଯେତେ କ୍ଷୁବ୍ଧ ନୁହେଁ, ପାରିପାର୍ଶ୍ୱିକ ପରିସ୍ଥିତି, ବିଷାକ୍ତ ପରିବେଶ ଓ କଦର୍ଥ ବାତାବରଣ ପାଇଁ ତହିଁ ଅପେକ୍ଷା ଅଧିକ କ୍ଷୁବ୍ଧ ଓ ବିଚଳିତ ହୁଏ । ମଣିଷ ତଥାକଥିତ ସଭ୍ୟତାର ସୂର୍ଯ୍ୟୋଦୟ କାଳରୁ ଏ ପର୍ଯ୍ୟନ୍ତ ମର୍ଦ୍ଦିତ, ମନ୍ଥିତ, ପୀଡ଼ିତ, ନିଷ୍ପେଷିତ, ଲାଞ୍ଛିତ ଓ କ୍ଷଧିତ ହୋଇ ଏଠାରେ ଜୀବନ ଧାରଣ କରେ ।

ଶାସକ ଗୋଷ୍ଠୀ ସମାଜ ସେବା ନାମରେ ନିଜର ଈପ୍‌ସିତ ସ୍ୱାର୍ଥ ହାସଲ ପାଇଁ ବ୍ୟସ୍ତ ରହେ । ଦାରିଦ୍ର୍ୟ, ଉପବାସ ମଣିଷର ଏଠାରେ ଏକାନ୍ତ ନିତିଦିନିଆ ଓ ଦେହସୁହା । ସେମାନେ ବହୁ ପରିଶ୍ରମ ପରେ ପେଟ ପାଇଁ ରୁଟି ଖଣ୍ଡେ କମ୍ବା ପଖାଳ ଭାତ ଗଣ୍ଡିଏ ପାଆନ୍ତି ନାହିଁ । ଏଠାକାର ବମ୍ବେ ଓ କଲିକତା ଭଳି ସାର୍ବଜନୀନ ସହରର ଫୁଟପାଥ ଉପରେ ଯଥା-କ୍ରମେ ଲକ୍ଷ ଲକ୍ଷ ବାସହୀନ ମଣିଷ ଆଶ୍ରୟ ନିଅନ୍ତି । ଏହି ସହରରେ ଯଥାକ୍ରମେ ବେଶ୍ୟାବୃତ୍ତିଦ୍ୱାରା ୧୪ ହଜାର ଓ ୧୧ ହଜାର ନାରୀ ଜୀବିକା ଅର୍ଜ୍ଜନ କରନ୍ତି । ଏ ଦେଶରେ ଯେ ଗରିବ ପ୍ରକାରାନ୍ତରେ ସେ ବୁଦ୍ଧିହୀନ, ମୂକ, ବଧିର, ଅନ୍ଧ, ଅଶିକ୍ଷିତ, ଅମଣିଷ ଓ ବେକାର । ଏ ଦେଶରେ ଯେ ଭୋକଲା ସେ ପେଟର ଜ୍ୱାଳା ନ ସହି ଖାଅନ୍ତା ମୂଷା ଓ ବେଙ୍ଗ ମଧ୍ୟ ପେଟରେ ପୂରାଏ । ସେ ରାସ୍ତା କଡ଼ର ଅଇଁଠା ଭାତ, ମାଛ ଓ ମାଂସ କଣ୍ଟା ଆଗ୍ରହରେ ସଂଗ୍ରହ କରେ । ଏ ଦେଶର ପାହାଡ଼, ଜଙ୍ଗଲରେ ମଣିଷ ଏବେ ସୁଦ୍ଧା ଲଙ୍ଗଳା ରହେ । ଲୁଗା କ'ଣ ସେ ପିନ୍ଧି ଜାଣେନା । ଭାତ କ'ଣ ସେ ଖାଇ ଜାଣେନା । ଶୀତରେ ଥର ଥର ମରିଯାଏ । ଏ ଦେଶର ଲକ୍ଷ ଲକ୍ଷ ବେକାର ଶିକ୍ଷିତ, ଅଶିକ୍ଷିତ, ଗ୍ରାଜୁଏଟ୍, ଇଞ୍ଜିନିୟର ଅଫିସରୁ ଅଫିସ, କାରଖାନାରୁ କାରଖାନା ହୋଇ ଆକାଶକୁ ଚାହାଁନ୍ତି । ରାସ୍ତାରେ ଭିଡ଼ ଜମାନ୍ତି ଓ ଶେଷରେ ନିଜ ନିଜର ବାଟରେ ଚାଲନ୍ତି । ରୋଗୀ ଔଷଧ ନ ଖାଇ ଜୀବନ ହରାଏ । ଡାକ୍ତର, ଇଞ୍ଜିନିୟର, ଅଫିସର ଏଠାରେ କଳାପୋତା ଟଙ୍କା ନିଅନ୍ତି । ଦେଶର ଅର୍ଥ ଆତ୍ମସାତ୍ କରନ୍ତି । ପିଅନ, କିରାଣୀ ପଛ ପାଖରେ ନୋଟ୍ ଦେଖିଲେ ଫାଇଲ କାଢ଼ନ୍ତି । ଏମ୍. ଏଲ୍. ଏ., ଏମ୍. ପି, ମନ୍ତ୍ରୀ, ଶାସକ ଭାଷଣରେ ଶାସନ ଚଳାନ୍ତି । ସରପଞ୍ଚ, ନାଏବ ପଞ୍ଚ, ଗ୍ରାମସେବକ, ବ. ଉ. ଓ., ମଳମୁଣ୍ଡିଆ ଗାଁ ମଣିଷ-ମାନଙ୍କୁ ହାତରେ ନ ମାରି ଭାତରେ ମାରନ୍ତି । ମଜୁରିଆ ଏଠାରେ ଖୁନ୍ ହୁଏ । ବନ୍ୟା କାରଣରେ ଗୃହଶୂନ୍ୟ ହୁଏ । କଳକାରଖାନାର ଗେଟରେ ତାଲା ପଡ଼େ । ଏଠାରେ ସରକାର ତିଆରି ହୁଏ । ସରକାର ଭଙ୍ଗା ହୁଏ । କଂଗ୍ରେସ କମ୍ୟୁନିଷ୍ଟ ହୁଏ, କମ୍ୟୁନିଷ୍ଟ କଂଗ୍ରେସ ହୁଏ, ପୁଣି ଭୋଟ ଆସେ, ମଣିଷର ଯେଉଁ ଦଶା ସେହି ଦଶା । ଠିକ୍ ଏ ପାଖ ହୁଏନା କି ସେପାଖ ହୁଏନା । ଆରମ୍ଭ ହୁଏ ଧର୍ମଘଟ, ଶୋଭାଯାତ୍ରା, ଘେରାଉ, ଧାରଣା, ଛାତ୍ର ଆନ୍ଦୋଳନ, ଶିକ୍ଷକ ଆନ୍ଦୋଳନ, କର୍ମଚାରୀ ଆନ୍ଦୋଳନ, ବ୍ୟବସାୟୀ ଆନ୍ଦୋଳନ । ଆରମ୍ଭ ହୁଏ ବ୍ୟାଙ୍କ ଡକାୟତି, ରେଳ ଡକାୟତି, ଟ୍ରାମ

ପୋଡ଼୍, ବସ୍ ପୋଡ଼୍, ଟେରିଲ୍, ପ୍ରେସ୍ପେସନ, ଷ୍ଟ୍ରାବଂ, ମାସାଞ୍ଜ । ଏଠାରେ ଦେବମନ୍ଦିର, ଗୀର୍ଜା, ମସ୍‌ଜିଦ୍‌ରେ ଧର୍ମ ନାଆଁରେ ବ୍ୟଭିଚାର ଚଳେ । କଳା ମଣିଷ ଧଳା ମଣିଷକୁ ଘୃଣା କରେ । ହରିଜନର ଘରେ ନିଆଁ ଲଗେ । ଚମ ଉପରେ ଚନ୍ଦନ, ତିଳକ, ସିନ୍ଦୂର ଓ ମାଳ ଦିଶେ, ମନ ଭିତରେ ପାପ, ଅହଂକାର, ଘୃଣା ବସା ବାନ୍ଧିଥାଏ । ବିବାହ, ପୂଜା ପର୍ବରେ ଆଖିବୁଜା ଖର୍ଚ୍ଚ ହୁଏ । ହୋଟେଲ, ରେଷ୍ଟୁରାଣ୍ଟରେ ମାଂସ, ମଦରେ ଟଙ୍କା ସରେ । ଗରିବକୁ ପଇସାଏ ଦାନ ଦେଇ ପୁଞ୍ଜିପତି ଦାନୀ ସାଜେ । ଧର୍ମ ମନ୍ଦିରରେ ଠାକୁର ଥାପି ପୁଣ୍ୟାତ୍ମା ବୋଲାଏ । ଏଠାରେ ଖାଲି ଟଙ୍କା ଯାହାର ଥାଏ ଶ୍ରେଷ୍ଠ ତାହାର ହୁଏ । ଯାହା ହାତ ମୁଠାରେ ଟଙ୍କା ଥାଏ, ତାହା ହାତ ମୁଠାରେ ଶିକ୍ଷା, ସମ୍ମାନ, ଖ୍ୟାତି, ପ୍ରତିପତ୍ତି ଧରା ଦିଏ । ଯେ ଧନୀ, ପୁଞ୍ଜିପତି, ଶିଳ୍ପପତି, ଜମିମାଲିକ ସେ ବୁଦ୍ଧିଜୀବୀ, ବିଦେଶ-ଯାତ୍ରୀ, ରାଜନୀତି ବିଶାରଦ ଓ ସମାଜର ଅଭିଭାବକ । ସମଗ୍ର ବିଶ୍ୱ ସାହିତ୍ୟ, ସଂସ୍କୃତି, ବିଜ୍ଞାନ, ଐତିହ୍ୟ ତାଙ୍କର ନଖ-ଦର୍ପଣରେ ପ୍ରତିବିମ୍ବିତ, ଦୋଳାୟିତ । ତା'ର ଅକ୍ତିଆରରେ ଶିଳ୍ପ, କାରଖାନା, ଯନ୍ତ୍ରପାତି ଓ ସରକାରୀ କଳ ପରିଚାଳିତ । ଏଠାରେ ଯେ ସାମ୍ୟବାଦ, ସମାଜବାଦ ଓ ପ୍ରଗତିବାଦର କଥା କୁହେ, ସେ ସାମ୍ରାଜ୍ୟବାଦ, ସାମନ୍ତବାଦ ଓ ପୁଞ୍ଜିବାଦର ଗୋଲାମୀ କରେ । ନିର୍ବୋଧ ଜନସମାଜର ତଣ୍ଟି ଚିପିବାକୁ ଚରମ କୌଶଳ ପ୍ରୟୋଗ କରେ । ସଂସ୍କାର, ଶୋଧନ, ସଂଗ୍ରାମ, ବିପ୍ଳବ, ଆନ୍ଦୋଳନ, ପ୍ରଗତି ଓ ମୁକ୍ତି ନାମରେ ଏଠାରେ ଯେଉଁ ଶିଳ୍ପୀ, ସାମାଜିକ, ସାହିତ୍ୟିକ ଲେଖନୀ ଚଳାଏ ସେ ପରୋକ୍ଷରେ ସାମ୍ରାଜ୍ୟବାଦ, ସାମନ୍ତବାଦ ଓ ପୁଞ୍ଜିବାଦର ଦଲାଲି କରେ । ସେ ରୁଷୋ, ଭଲଟାୟାର, ସକ୍ରେଟିସ୍, ମାର୍କସ୍, ଏଙ୍ଗେଲ୍‌ସ, ଲେନିନ୍, ମାଓ, ହୋଚିମିନ୍‌ଙ୍କ ସମତଳ ପିଠିରେ ଛୁରୁକ୍ ମାରେ । ଏଠାରେ ଯେଉଁ ପତ୍ର, ପତ୍ରିକା, ସମ୍ବାଦପତ୍ର, ପୁସ୍ତକ, ପୁସ୍ତିକା ପ୍ରକାଶ ପାଏ, ତାହା ସ୍ୱାର୍ଥାନ୍ୱେଷୀ ଓ ପୁଞ୍ଜିପତି ଗୋଷ୍ଠୀର ବୋଲ ମାନି ଚଳେ ।

ଏ ସଂପର୍କରେ ଅଧିକ ଅଗ୍ରସର ହେବା ଅନାବଶ୍ୟକ ମନେହୁଏ । ଏଠାରେ ପ୍ରଶ୍ନ ଉଠେ—ଏହି ବିଘୂର୍ଣ୍ଣିତ, କଳଙ୍କିତ ପର୍ଯ୍ୟାୟର ପରିଣତି କ'ଣ ? ଏହି ଯୁଗ ଯୁଗର, ପ୍ରଚଳିତ ସାମାଜିକ ସଂକ୍ରାମକ ରୋଗର ପ୍ରତିକାର ପାଇଁ ଔଷଧ କ'ଣ ? ଏହି ଜନ ସ୍ୱାର୍ଥ ବିରୋଧୀ ହିଂସ୍ର ବ୍ୟାଘ୍ର ପ୍ରବୃତ୍ତିର ମୂଳୋତ୍ପାଟନ ପାଇଁ ଉପାୟ କ'ଣ ? ଏହି ଧୋକାବାଜ, ଦଲାଲି, ଗୁଣ୍ଡାମି, ଶୋଷଣ, ସ୍ୱାର୍ଥାନ୍ଧ ମନୋବୃତ୍ତିକୁ ଖତମ୍ କରିବାକୁ ଅସ୍ତ୍ର କ'ଣ ?

ଉତ୍ତର ମିଳେ—ଅସ୍ତ୍ର ଅକବିର ଶାଣିତ କଲମ, ଅସ୍ତ୍ର ଚରମ ପନ୍ଥୀର ତୀକ୍ଷ୍ଣ କଲମ । ଆଜି ଅକବି ଓ ଚରମ ପନ୍ଥୀର ଆନ୍ଦୋଳିତ ମନରେ ସ୍ୱାଭାବିକ ଏହି ରକ୍ତମୁଖୀ ଜବାବ ମିଳେ—ମୋତେ ଭୁରନ୍ତ ଦିଅ, ମୁଁ ସ୍ୱାଧୀନତା ଦେବି, ରକ୍ତପାତ ମୁକ୍ତିର ଦ୍ୱାର ଉନ୍ମୋଚକ, ବିପ୍ଳବ ସମାଜ-ବାଦର ନିୟାମକ, ବିପ୍ଳବ ସମାଜର ମହୋତ୍ସବ, ବନ୍ଧୁକ ଗୁଳିରେ ରକ୍ତ ମିଳେ—ଏହି ସ୍ୱର ଆଜି ବିଶ୍ୱର ଗଳି, କନ୍ଦି, ସହର, ବନ୍ଦର, ମଫସଲ ପଥ, ରାଜପଥ, କାଗଜ କଲମରେ ଅବଶ୍ୟ ଅସ୍ତମିତ ; କିନ୍ତୁ ବିସ୍ତୃତ ଏହି ଏସିଆ, ଆଫ୍ରିକା ଓ ଆମେରିକା ଭୂଖଣ୍ଡର ବଣ, ଜଙ୍ଗଲ, ପାହାଡ଼, ପର୍ବତ, ଗିରିଗୁହା, ନଦୀପଠାରେ ଏହି ସ୍ୱର ଅଧିକ ଜ୍ୱଳନ୍ତ, ଚଳନ୍ତ ଓ ପ୍ରତିଧ୍ୱନିତ । ସେଠାରେ ଚେ ଗୁଏଭାରା, ହୋଚିମିନ୍, ଏଙ୍ଗେଲ୍ସ, ମାର୍କସ୍, ଲେନିନ୍ ଓ ମାଓ ସେ ତୁଙ୍ଗ୍‌ଙ୍କ ଜୟନ୍ତୀ ଉତ୍ସବ, ଜୟଶ୍ରୀ ରାଣୀ, ମେରି ଟେଲର, ଅଜିତା, ନିର୍ମଳା, ସତ୍ୟନାରାୟଣ, କାହ୍ନୁ ସାନ୍ୟାଲ ଓ ଗୁରୁ ମଜୁମୁଦାରଙ୍କ ନେତୃତ୍ୱ ଓ ତତ୍ତ୍ୱାବଧାନରେ ପରିଚାଳିତ । ଏହି ଜୟନ୍ତୀ ଉତ୍ସବ, ମୁକ୍ତି ସଂଗ୍ରାମ, ଅବିଶ୍ରାନ୍ତ ରକ୍ତପାତ ଓ ଆଗାମୀ ଶୋଷଣ-ହୀନ ସମାଜର ଉଦ୍‌ଘାଟକ ଅକବି ହେକିମ ନିହାଭି, ଛଂସ୍ଟୁଂ ହୁସ୍ଥାନ, ଓସ୍ମାର ପାଓର୍ନ, ଭିକ୍ଟର ହ୍ୱଜ୍, ରଭିଇ ଆଲି ଓ ରନଡ଼ାଂ ଏରଲିନା ମାରଫିଙ୍କ କଲମ ମୁନରେ ଆଜି ଉଦ୍ଗିନ୍ନିତ ।

ଏହି ବିଷାକ୍ତ ଅଗ୍ନିଦଗ୍ଧ ସମାଜରେ କବି ଅକବିର ପୋଷାକ ପିନ୍ଧିବାକୁ ବାଧ୍ୟ ହୁଏ । ସେ ଆଜି ମର୍ମାହତ, ବିଚଳିତ, ନିରାଶ, ବିସ୍ମୃ-ଭିଭୂତ, ଦିଗନିର୍ଣ୍ଣୟକ, ସମସ୍ୟାନିର୍ଦ୍ଧାରକ, ଆତଙ୍କିତ, ଗତିମୁଖର, ପ୍ରାଣ୍ଟିକ, ପ୍ରଚଣ୍ଡ, ପ୍ରଜ୍ୱଳିତ, ଭୟଙ୍କର, ଏକମୁଖୀ, ଅସ୍ଥିର ଓ ଚଳଚଞ୍ଚଳ । ତେଣୁ ଅକବିର ଅକବିତା ପ୍ରଚଣ୍ଡ ବୋଧସଙ୍କୋଚ ଅନୁଭୂତିର ରକ୍ତାକ୍ତ ଉଚ୍ଚାରଣ, ଯୁଦ୍ଧମୟ ଅତୀତ, ଜଳାପୋଡ଼ା ବର୍ତ୍ତମାନ ଓ ଉଦ୍ଧତ ଭବିଷ୍ୟତର ତରଙ୍ଗ, ବିସ୍ମୃତ ଯୁଇ, ରଜନୀଗନ୍ଧାର ସ୍ୱପ୍ନ, ରକ୍ତ ଗୋଲାପର ଚେତ୍ରହେରା—ବୈଶାଖୀ କ୍ରୋଧ, ମାଟିର ରୋଷ, ଦାହ, ଶ୍ରାବଣ ମେଘର ନିବିଡ଼ ବର୍ଷଣ । ଏହା ଧ୍ୱଂସମୁଖୀ ମଣିଷର ହୃତ୍‌ପିଣ୍ଡର ଘନ ସ୍ପନ୍ଦନ, ମଧ୍ୟାହ୍ନର ଜିଦ୍‌ଖୋର ସୂର୍ଯ୍ୟ, ଅଶ୍ୱମେଧ ଯଜ୍ଞର ବିଜୟୀ ଅଶ୍ୱ, ଉଦ୍ଧତ ସଂଗ୍ରାମୀ ଯୌବନର ହତିଆର, ସୋନାଲି କୈଶୋରର ସ୍ମୃତି ଓ ପ୍ରାଜ୍ଞ ବାର୍ଦ୍ଧକ୍ୟର ସାର୍ଥକ ରଙ୍ଗମଞ୍ଚ ।

ଅକବିତା ମାଟିର ଦୁନିଆର ଅନେକ ଉର୍ଦ୍ଧ୍ୱରେ ଅନନ୍ତ ଆକାଶ, ଅବିନଶ୍ୱର ଶୁଦ୍ଧ ଆତ୍ମା, ଅସୀମ ମାଳମାର ଅପାର୍ଥିବ ଶୂନ୍ୟତାର ସନ୍ଧାନ

ପାଇଁ ଉଦ୍ଦିଷ୍ଟ ନୁହେଁ । ଏହା ଏକ ରକ୍ତାକ୍ତ ଅନୁଭୂତି, ରକ୍ତ ଭିଜା ଗୋଲାପ ଓ ଉପ୍ତାବନ୍ଧ ନ୍ତୁସେଡ୍ । ମନେପଡ଼େ ଆଦମ ପୃଥିବୀ ସେଦିନ ଆବାଲ୍ୟ ସଞ୍ଚିତ ଅଗ୍ନିକଣାରେ ଦଗ୍ଧ ହୋଇଥିଲା । ବସନ୍ତ ବକ୍ଷରେ ତା'ର ବୈଶାଖୀ ଝଞ୍ଜାର ପ୍ରବାହ ଛୁଟିଥିଲା । କୁମେରୁଠାରୁ ସୁମେରୁ ପର୍ଯ୍ୟନ୍ତ ଘଞ୍ଚ କୁହୁଡ଼ ଘୋଟି ରହିଥିଲା । ସେହି ଘଞ୍ଚ କୁହୁଡ଼, ବୈଶାଖୀ ଝଞ୍ଜା ଓ ଦଗ୍ଧ ବେଦନା ଏ ମାଟିର ମଣିଷ ଏବେ ବି ଭୁଲିନି । ତେଣୁ ଏ ମାଟିର ମଣିଷ ପୃଥିବୀର ସେହି ପୁରାତନ ପରିଚୟକୁ ପାଇବାକୁ ଉଦ୍‌ବିଗ୍ନ ହୁଏ । ଏ ମାଟିର ମଣିଷ ଅକବିର କଲମ ମୁନରେ ପୃଥିବୀର ସେହି ପୁରାତନ ପରିଚୟକୁ ଆନ୍ତରିକ ଆଲିଙ୍ଗନ କରେ । ସେଇଥିପାଇଁ ନୂତନ ପରିଚୟ ଦେବାକୁ ଅକବିତାର ଏହି ଅମାନିଆ ଗତି ଆରମ୍ଭ ହୁଏ ।

ସଂପ୍ରତି ପୃଥିବୀର ବିଭିନ୍ନ ଦେଶରେ ଅକବିତାର ବୁଲେଟ୍ ପ୍ରତି-କ୍ରିୟାଶୀଳ ଗୋଷ୍ଠୀର ବକ୍ଷ ବିଦ୍ଧ କରେ । ଅକବିତାର ଅଙ୍ଗ ଗଠନ, ସ୍ୱର, ତାଳ, ଲୟରେ ପୃଥିବୀ ମାଟି ଦୋଳୁକି ଉଠେ । ଅକବିତାର ଏକ ସ୍ୱର ବିପ୍ଳବ, ଅନ୍ୟ ସ୍ୱର ଗଠନ, ଶୈଳୀ, ସଂଳାପ ଓ କଥନ । ଗଠନରେ ଏହା ବୈଶାଖୀ ଝାଞ୍ଜି, ଶୈଳୀରେ ଶ୍ରାବଣୀ ବନ୍ୟା, ସଂଳାପରେ ମଧ୍ୟାହ୍ନ ରୌଦ୍ର ଓ କଥନରେ ସମୁଦ୍ରର ଜୁଆର । ଅକବିତାର ଏହି ଦୁଇ ସ୍ୱର ଆଜି ଚୀନର ଅକବି ଓୟାର୍ ପାଓଚୁନ୍, ଲୌଚେନ୍, ତଂ ୟୁଂ ହୁୟାନ୍ ; ଆଲବେନିଆର ହେକମ ନଦ୍ରିଭ୍, ମାର୍କିନ ଯୁକ୍ତରାଷ୍ଟ୍ରର ଉଣ୍ଟରବ୍ରୁଜ, ନିଉଜିଲାଣ୍ଡର ଶଭଇଆଲ୍, ଇଣ୍ଡୋନେସିଆର ରନଡ଼ାଂ, ଏରଲିନା ମାରଫ ଓ ଆଫ୍ରିକାର ଶକାୟା ଉତାମସି ବାଗଗୋ ଦିଓପ, ଜାଁ ବ୍ରିଏରଶୟୋସେ କ୍ଷେୟାଡ଼େ-ବନହା, ଲଓ ପୋଲଦ ସେଡ଼ାର ସେନଗର, ଭାରତର ମୁଦ୍ରାରାକ୍ଷସ, ବିନୋଦ ପାଣ୍ଡେ, କମଲେଶ, ସୁମଲ, କାହ୍ନୁଚରଣ ଓ ଜୟକୃଷ୍ଣ ପ୍ରମୁଖଙ୍କ କଲମରେ ଆଗାମୀ ଦୁନିଆର ଆବାଜ ତୋଳେ ।

୧୯୬୦ ମସିହାରେ ଭାରତରେ ପ୍ରଥମେ ହିନ୍ଦି ସାହିତ୍ୟରେ ଏହି ଅକବିତା ଆନ୍ଦୋଳନର ସୂତ୍ରପାତ ହୁଏ ଓ ୧୯୬୫ ମସିହାରେ ଏହି ଆନ୍ଦୋଳନର ବ୍ୟାପକ ପ୍ରସାର ଘଟେ । ୧୯୬୫ ମସିହା ପରେ ଅକବିତା ଆନ୍ଦୋଳନ କ୍ରମେ ଓଡ଼ିଆ, ବଙ୍ଗଳା ତଥା ଅନ୍ୟାନ୍ୟ ପ୍ରାଦେଶିକ ସାହିତ୍ୟରେ ଅନୁପ୍ରବେଶ କରେ । ହିନ୍ଦୀ ଭାଷାରେ ସମ୍ପାଦିତ ବିଭିନ୍ନ ପତ୍ର ପତ୍ରିକାରେ ବିଚ୍ଛିନ୍ନ ଭାବରେ ଅକବିତା ପ୍ରଥମେ ପ୍ରକାଶ ପାଏ ଓ

ଅକବିତାକୁ ଭିତ୍ତି କରି କେତେକ ସ୍ୱତନ୍ତ୍ର ପତ୍ରପତ୍ରିକା, ପୁସ୍ତକ ଓ ସଂକଳନ ମୁକ୍ତି ଲାଭ କରେ । ହିନ୍ଦୀ ସାହିତ୍ୟରେ ବଶିଷ୍ଟ ଅକବି ଶିବମଙ୍ଗଳଙ୍କ ସମ୍ପାଦିତ 'ଅଧିକରଣ', ଡକ୍ଟର ରମେଶଚନ୍ଦ୍ର କୁନ୍ତଳଙ୍କ 'ମେଧ', ଗଙ୍ଗାପ୍ରସାଦ କମଳଙ୍କ ସମ୍ପାଦିତ 'ଅଭିବ୍ୟକ୍ତି' ଓ ରାମବ୍ୟାସ ପାଣ୍ଡେଙ୍କ ସମ୍ପାଦିତ 'ମଣିମୟ' ତଥା ଅନ୍ୟାନ୍ୟ ଅକବିମାନଙ୍କ ସମ୍ପାଦିତ 'ଅକବିତା', 'ମର୍ତ୍ତ୍ୟ କବିତା' ଓ 'କଳାବର୍ତ୍ତ' ପ୍ରଭୃତି ଅକବିତା, ଅକବିତାମୂଳକ ଆଲୋଚନା ଗ୍ରନ୍ଥ, ସଂକଳନ ଓ ପତ୍ରିକା ସେଥିମଧ୍ୟରେ ବିଶେଷ ଉଲ୍ଲେଖଯୋଗ୍ୟ । ହିନ୍ଦି ଅକବିତା ଆନ୍ଦୋଳନର ଯେଉଁମାନେ ପ୍ରଥମ ବାର୍ତ୍ତାବହ ଓ ପ୍ରବର୍ତ୍ତକ ସେମାନଙ୍କ ମଧ୍ୟରେ ଜଗଦୀଶ ଚତୁର୍ବେଦୀ, ପ୍ରୟାଗ ଶୁକ୍ଳ, ଶ୍ରୀକାନ୍ତ ବର୍ମ୍ମା, ଗଙ୍ଗାପ୍ରସାଦ କମଳ, ଶ୍ୟାମ ପରମାର, ଓଁକାର ଠାକୁର, ଚନ୍ଦ୍ରକାନ୍ତ ଦେବତାଳେ, ରାଜୀବ ସାକ୍‌ସେନା, ରବୀନ୍ଦ୍ରନାଥ ତ୍ୟାଗୀ, ବିନୋଦଚନ୍ଦ୍ର ପାଣ୍ଡେ, ସୁରେନ୍ଦ୍ର ପାଲ, ସୌମିତ୍ର ମୋହନ, ଶ୍ରୀରାମ ତିୱାରୀ, ବେଦନନ୍ଦନ ପରମାନନ୍ଦ ଶ୍ରୀବାସ୍ତବ, ରାମସେବକ ଶ୍ରୀବାସ୍ତବ, ମୁଦ୍ରାରାକ୍ଷସ, କମଳେଶ, ତାରିତକୁ, କୁମାର ବିକଳ, ପରେଶ, ମଣିକାମୋହିନୀ ଓ ମମତା କାଲିଆ ପ୍ରଭୃତିଙ୍କ ନାମ ବିଶେଷ ସ୍ମରଣୀୟ । ଅକବିତା ଆନ୍ଦୋଳନର ସମୟସୀମା ଯଥେଷ୍ଟ ସଂକ୍ଷିପ୍ତ ହେଲେ ହେଁ ବହୁ ବାଧାବିଘ୍ନ, ସଂଘାତ, ବ୍ୟାଘାତ, ଯୁକ୍ତି, ପ୍ରଯୁକ୍ତି, ଆଲୋଚନା ଓ ପ୍ରତ୍ୟାଲୋଚନା ଭିତରେ ହିନ୍ଦି ସାହିତ୍ୟରେ ବର୍ତ୍ତମାନ ଏହାର ସ୍ଥିତି ଓ ସ୍ୱୀକୃତି ଏବଂ ଏହାର ସ୍ରଷ୍ଟାମାନେ ହିନ୍ଦି ତଥା ବିଭିନ୍ନ ପ୍ରାଦେଶିକ ସାହିତ୍ୟରେ ଏକାନ୍ତ ସମ୍ମାନିତ ଓ ସମାଦୃତ ।

ହିନ୍ଦି ସାହିତ୍ୟରେ ଅକବିତା ଆନ୍ଦୋଳନ ଯେପରି କ୍ଷିପ୍ରତର, ଭିତ୍ତିରାନ୍ୱିତ ଓ ସୁସଙ୍ଗଠିତ ହୋଇଛି, ସେପରି ବଙ୍ଗଳା ସାହିତ୍ୟରେ ସମ୍ଭବ ହୋଇନାହିଁ । ବଙ୍ଗଳା ସାହିତ୍ୟରେ ଏହି ଆନ୍ଦୋଳନର ଶିଥିଳତା ଓ ମନ୍ଥର ଗତି ପାଇଁ ବିଭିନ୍ନ ପାରିପାର୍ଶ୍ୱିକ କାରଣ ଦାୟୀ । ଇତି ପୂର୍ବରୁ ଭାରତୀୟ ଆଧୁନିକ ସାହିତ୍ୟ, ସଂସ୍କୃତି ଓ ରାଜନୀତିକ ଆନ୍ଦୋଳନ ପ୍ରଭୃତି ବିଭିନ୍ନ କ୍ଷେତ୍ରରେ ବଙ୍ଗଳାର ଉଲ୍ଲେଖଯୋଗ୍ୟ ନେତୃତ୍ୱ ସ୍ମରଣୀୟ । କିନ୍ତୁ ଅକବିତା ଆନ୍ଦୋଳନ ପାଇଁ କଲିକତା ଭଳି ସାଦରଜୀବନ, କ୍ଷତବିକ୍ଷତ ଓ ବହୁମୁଖୀ ସମସ୍ୟା ବିଜଡ଼ିତ ସହରରେ ପ୍ରଚୁର ଉପାଦାନରେ ଅଭାବ ନ ଥିଲେ ହେଁ ଏହାର ଆଶାନୁରୂପ ସମୃଦ୍ଧି ଓ ଅଗ୍ରଗତି ନାନା କାରଣ ପାଇଁ ହୋଇନାହିଁ । ବରଂ ଏଠାରେ ହିନ୍ଦି ସାହିତ୍ୟର ଅକବିଗୋଷ୍ଠୀ ବିଭିନ୍ନ ପ୍ରକାଶନ

ମାଧ୍ୟମରେ ପ୍ରଥମେ ଅକବିତା ଆନ୍ଦୋଳନର ସୂତ୍ରପାତ କରନ୍ତି । ସଂପ୍ରତି ବଙ୍ଗଳା ସାହିତ୍ୟରେ ବୈଷମ୍ୟମୂଳକ ଚିନ୍ତାଧାରା, ଗୋଷ୍ଠୀଗତ ବିବାଦ ଓ ଜୀବନ ପାଇଁ ଦୁଃସହ କ୍ଷୁଧା ହିଁ ଏହି ପଶ୍ଚାତଗାମୀ ପଦକ୍ଷେପର ଅନ୍ୟତମ ମୁଖ୍ୟ କାରଣ । ମାତ୍ର ୧୯୬୫ ମସିହା ପରେ ଇଂରାଜୀ ସାହିତ୍ୟ, ବିଭିନ୍ନ ବିଦେଶୀ ସାହିତ୍ୟ ତଥା ହିନ୍ଦି ସାହିତ୍ୟର ଅନୁପ୍ରେରଣା ଓ ଅନୁସରଣରେ ବଙ୍ଗଳା ସାହିତ୍ୟରେ ଅକବି ଗୋଷ୍ଠୀର ଜନ୍ମ ହୁଏ । ଶ୍ରୀ ସୁନୀଲ ବନ୍ଦୋ-ପାଧ୍ୟାୟ, ଶକ୍ତି ଚଟ୍ଟୋପାଧ୍ୟାୟ, ସନ୍ଦୀପନ ରାୟ, ମୋଜାମେଲହକ, ଉତ୍ପଳ ଚୌଧୁରୀ, ଆବୁବକର ସିଦ୍ଦିକ, କଲ୍ୟାଣ ଚଟ୍ଟୋପାଧ୍ୟାୟ, ମନୋଜ ନନ୍ଦୀ, ଅଭିରୂପ ସରକାର, ମନୀଷା ମୁଖୋପାଧ୍ୟାୟ, ଅଜୟ ନାଗ, କାଶିନାଥ ସେନ ଓ ଦୀପଙ୍କର ସେନ ପ୍ରମୁଖ ବଙ୍ଗଳା ଅକବିତା ଆନ୍ଦୋଳନର ପ୍ରବର୍ତ୍ତକ ଭାବରେ ପରିଚିତ । ଅକବିତାର ଅଙ୍ଗଗଠନ, ବିଷୟବସ୍ତୁ ନିର୍ବାଚନ ପାଇଁ ଏହି ଅକବିଗୋଷ୍ଠୀ ବିଶେଷ ସତର୍କ ଓ ଅନେକାଂଶରେ ଅକବିତା ଆନ୍ଦୋଳନର ସାର୍ଥକ ପ୍ରତିନିଧି । ବଙ୍ଗଳା ସାହିତ୍ୟରେ ଭୂଣା ଅଧିକ ପରିଚିତ ଏହି ଅକବି ସଂପ୍ରଦାୟ ମୁଖ୍ୟତଃ ଇଲଅଟ୍ ବିରୋଧୀ ଓ ତଥା କଥିତ ବଙ୍ଗଳା ଅକବିଗୋଷ୍ଠୀର ଚରମ ବ୍ୟକ୍ତିତ୍ୱ ଓ ବିପରୀତ ମୁଖୀ । କଲିକତା ସହର ଏହି ଅକବିମାନଙ୍କର କସରତ୍‌ଭୂମି ।

୧୯୬୫ ମସିହା ପରେ ବଙ୍ଗଳା ସାହିତ୍ୟରେ ଅକବିତାର ଅନୁ-ପ୍ରବେଶ ପରେ ଭାରତର ବିଭିନ୍ନ ପ୍ରାଦେଶିକ ସାହିତ୍ୟରେ ଅକବିତାର ଅନୁପ୍ରବେଶ ଓ ପ୍ରସାର ଘଟେ ; କିନ୍ତୁ ଭାରତରେ ହିନ୍ଦି ସାହିତ୍ୟ ପରେ ଓଡ଼ିଆ ସାହିତ୍ୟରେ ଏହାର ଆଶାନୁରୂପ ପରୀକ୍ଷା, ସମଧିକ ଉନ୍ନତି ଓ ପ୍ରଚାର ହୁଏ ବୋଲି ହିନ୍ଦି ଅକବି ଗୋଷ୍ଠୀର ପ୍ରତିନିଧି ରାଜୀବ ସାକସେନା ଓ ଶ୍ୟାମ ପରମାର ମତ ପୋଷଣ କରନ୍ତି । ଓଡ଼ିଆ ଅକବି ହିନ୍ଦି ଅକବିତା ଆନ୍ଦୋଳନଦ୍ୱାରା ଯେତେ ଅନୁପ୍ରାଣିତ ଓ ପ୍ରଭାବିତ ସେତେ ଇଂରାଜୀ କିମ୍ବା ବିଭିନ୍ନ ବିଦେଶୀ ଅକବିତାଦ୍ୱାରା ନୁହେଁ । ( ଅବଶ୍ୟ କେତେକ ନିର୍ଦ୍ଦିଷ୍ଟ ଓଡ଼ିଆ ଅକବିଙ୍କ ସୃଷ୍ଟିରେ ଇଂରାଜୀ ଅକବିତାର ପ୍ରଭାବ କମ୍ ନୁହେଁ ) ୧୯୬୫ ମସିହା ପରେ ଓଡ଼ିଆ ସାହିତ୍ୟରେ ଅକବିତାର ସୃଜନାତ୍ମକ ଅଭିମୁଖ୍ୟ ପାଇଁ ଏକ ସାମୁହିକ ଚେତନା ପ୍ରକାଶ ପାଏ । ସେହି ଚେତନା, ଜାଗରଣ ଓ ଦରଦ ଓଡ଼ିଶାର କଟକ, ସମ୍ବଲପୁର, ଗଞ୍ଜାମ, ପୁରୀ ଓ ବଲାଙ୍ଗିର ପ୍ରଭୃତି ସ୍ଥାନରେ ପ୍ରଥମେ ମୁଖ୍ୟତଃ ଯୁବମାନସରେ ପ୍ରତିବିମ୍ବିତ

ହୁଏ । ଏହାକ୍ରମେ କେତେକ ଗୋଷ୍ଠୀ ସମ୍ପାଦିତ ପତ୍ରିକା, ସ୍ୱନିର୍ବାଚିତ ପ୍ରକାଶନ ଓ ବିଭିନ୍ନ ପତ୍ରପତ୍ରିକା ମାଧ୍ୟମରେ ଆତ୍ମପ୍ରକାଶ କରେ ।

ଓଡ଼ିଆ ସାହିତ୍ୟରେ ଂ, ଃ, ँ, ଙ, ଞ, ଲୃ, ଅକବିତା, ଅକ୍ଷର, ଅନାମ, ଅଗ୍ନିମୁଖୀ, ପଞ୍ଚମୁଖୀ, ଅକ୍ଷର ଓ ଅକ୍ଷର, ଅବଧୂତ ଗୋଷ୍ଠୀ ଓ ବହୁ ଗୋଷ୍ଠୀ-ହୀନ ବୈୟକ୍ତିକ ସ୍ଥିତି ପ୍ରଭୃତି ଏହି ଅକବିତା ଆନ୍ଦୋଳନର ପରିସ୍ଫୁରଣ ଓ ଉପଢୌକନ । ଏକଦା ଓଡ଼ିଆ ସାହିତ୍ୟରେ ରୀତିଯୁଗୀୟ କାବ୍ୟ ପରମ୍ପରା ପରେ ରାଧାନାଥୀୟ କାବ୍ୟ ପରଂପରାକୁ ପ୍ରତ୍ୟାଖ୍ୟାନ କରି ସତ୍ୟବାଦୀ ଗୋଷ୍ଠୀ କଲମ ଧରିଥିଲେ । ରାଧାନାଥ ଗୋଷ୍ଠୀ ରୀତିଯୁଗୀୟ କାବ୍ୟ ସାହିତ୍ୟର ଚରମ ବିରୋଧୀ ଥିଲେ ହେଁ ସଫଳ ରୀତିକାବ୍ୟ ବିରୋଧୀ କାବ୍ୟସ୍ରଷ୍ଟା ନ ଥିଲେ । ସତ୍ୟବାଦୀ ଗୋଷ୍ଠୀର କବିମାନେ ବରଂ ଅଧିକାଂଶ ରୀତିକାବ୍ୟର ପରିପନ୍ଥୀ କାବ୍ୟସ୍ରଷ୍ଟା ଥିଲେ ! ଏହାପରେ ଓଡ଼ିଆ ସାହିତ୍ୟର ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ସବୁଜ ଗୋଷ୍ଠୀ ସତ୍ୟବାଦୀୟ ପରଂପରାକୁ ହତ୍ୟା କରି ଏକ ଯୁଗୋଚିତ କାବ୍ୟିକ ଚେତନାର ଧାରକ ହେଲେ । ହେଲେ, କେଉଁ ଏକ ଦୁର୍ବଳ ବେଳାରେ ସବୁଜଗୋଷ୍ଠୀର ମୃତ୍ୟୁ ସ୍ୱୀକୃତ ହୁଏ । ଓଡ଼ିଆ ସାହିତ୍ୟରେ ତା'ର ହିସାବ ନାହିଁ । ଅବିକଳ ପରିସ୍ଥିତିରେ ମାୟାଧର ମାନସିଂହ, ରାଧାମୋହନ ଗଡ଼ନାୟକ, କୃଷ୍ଣଚନ୍ଦ୍ର ତ୍ରିପାଠୀ, ଉମ୍ବରଧର ପରିଡ଼ା, ବାଞ୍ଛାନିଧି ଦାସ, ଅନନ୍ତପ୍ରସାଦ ପଣ୍ଡା, କୃଷ୍ଣପ୍ରସାଦ ବସୁ, ବାଲକୃଷ୍ଣ ପଟ୍ଟନାୟକ, ବୀରକିଶୋର ଦାସ ଓ ଭାବଗ୍ରାହୀ ପନ୍ଥ ପ୍ରମୁଖ ଓଡ଼ିଶାର ସ୍ୱନାମଧନ୍ୟ, ରୋମାଣ୍ଟିକ୍ ଓ ଜାତୀୟ କବିମାନେ ପରବର୍ତ୍ତୀ ସମୟରେ ସଚି ରାଉତରାୟ, ଜ୍ଞାନୀନ୍ଦ୍ର ବର୍ମା, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର ବ୍ରହ୍ମୋତ୍ରୀ ମହାନ୍ତି, ରବି ସିଂହ, ବିନୋଦ ନାୟକ, କୁଞ୍ଜବିହାରୀ ଦାଶ ଓ ଜୀବନାନନ୍ଦ ପାଣି ପ୍ରମୁଖ ଅପ୍ରତିଦ୍ୱନ୍ଦ୍ୱୀ, ବିପ୍ଲବୀ, ଆଧୁନିକ କବି-ମାନଙ୍କ କଲମ ମୁନରେ ହଜିଗଲେ । ବଙ୍ଗଳା ସାହିତ୍ୟରେ ବିପ୍ଳବୀ କବି ସୁଭାଷ ମୁଖୋପାଧ୍ୟାୟ ଯେଭଳି ଅକବି ଓ ଚରମ କବିମାନଙ୍କ କବଳରେ ବନ୍ଦୀ ହେଲେ ସେଭଳି ଓଡ଼ିଆ ସାହିତ୍ୟରେ ବିପ୍ଳବୀ କବି ସଚି ରାଉତରାୟ ସଂପ୍ରତି ଅକବି ଓ ଚରମ କବିମାନଙ୍କ ଦୁଆଡ ଭିତରେ ଆତ୍ମ ଗୋପନ କଲେ । ଜୀବନର ସାନ୍ଧ୍ୟ ବେଳାରେ କବି ରାଉତରାୟ ଦିଗନ୍ତ ଗୋଷ୍ଠୀର ଉଦ୍‌ଘାଟନ କରି ଅକବିତା ଆନ୍ଦୋଳନର ଯେଉଁ ଶୁଭ ଉଦ୍‌ବୋଧନ ହେଲେ ଓ ଯୁବ କବିମାନସରେ ଅକବିତାର ଯେଉଁ ବୀଜବପନ କଲେ

କଲେ ସେଥିପାଇଁ ଅବଶ୍ୟ ସେ ବଞ୍ଚି ରହିବେ; କିନ୍ତୁ ୧୯୬୫ ମସିହା ପରେ କବି ସଚ୍ଚି ରାଉତରାୟ ଦିଗନ୍ତ ଗୋଷ୍ଠୀର ଦ୍ୱିମାସିକ ଦିଗନ୍ତ ପ୍ରକାଶନଦ୍ୱାରା ଓଡ଼ିଆ ସାହିତ୍ୟରେ ଅକବିତା ଆନ୍ଦୋଳନକୁ ପରିକଳ୍ପିତ ଉଦ୍ରାନ୍ତ କରି ମଧ୍ୟ ନିଜର ସ୍ୱଳ୍ପ ସୃଷ୍ଟି ମଧ୍ୟରେ ଅକବିତାର କଠୋର ଆଭିମୁଖ୍ୟକୁ ପ୍ରଚୁର କରିବାକୁ ସମର୍ଥ ହୋଇ ନାହାନ୍ତି । ବରଂ ଦିଗନ୍ତ ଗୋଷ୍ଠୀର ଅନ୍ୟ ତମ ପ୍ରତିନିଧି ସୌଭାଗ୍ୟ ମିଶ୍ର, ଦୀପକ ମିଶ୍ର ଓ ପରେଶ ରାଉତ ପ୍ରମୁଖ ଏହି ଆନ୍ଦୋଳନର ଯଥାର୍ଥ ପ୍ରତିନିଧିତ୍ୱ କରିଛନ୍ତି । ଦିଗନ୍ତ ଗୋଷ୍ଠୀର ସମସାମୟିକ ଓ ପରବର୍ତ୍ତୀ ଅକବି କୈଳାସ ଲେଙ୍କା, ଗୁରୁ ମହାନ୍ତି, ପ୍ରଶାନ୍ତ ପଟ୍ଟନାୟକ ଓ ସତ୍ୟ ମହାପାତ୍ର ପ୍ରମୁଖ ଙ, ଞ, ଲୁ ଗୋଷ୍ଠୀ, ରାମକୁମାର ଅଗ୍ରୱାଲ, କ୍ଷେତ୍ରବାସୀ ନାୟକ ଓ ଶ୍ରୀନିବାସ ଉଦ୍‌ଗାତା ପ୍ରମୁଖ ଅକବି-ଗୋଷ୍ଠୀ, ହରିହର ମିଶ୍ର ଓ କୁମାର ମହାନ୍ତି ପ୍ରମୁଖ ଅନାମ ଗୋଷ୍ଠୀ, ପ୍ରଫୁଲ୍ଲ କୁମାର ତ୍ରିପାଠୀ, ବିକ୍ରମ ତ୍ରିପାଠୀ ଓ ଉମାଶଙ୍କର ପଣ୍ଡା ପ୍ରମୁଖ ପଞ୍ଚମୁଖୀ ଗୋଷ୍ଠୀ, ଜୟକୃଷ୍ଣ ବରାଳ ଓ ନୟନ୍ତ ସେନାପତି ପ୍ରମୁଖ ଅରୁଣା ଗୋଷ୍ଠୀର ସ୍ରଷ୍ଟାମାନେ ଓଡ଼ିଆ ସାହିତ୍ୟରେ କୁଳ କିନାରା ନ ପାଇ ଅକବିତା ଆନ୍ଦୋଳନର ମଙ୍ଗ ଧରନ୍ତି । ଏହି ଷାଠିଏତ୍ତର ଲହଡ଼ି ଭିତରେ ହରପ୍ରସାଦ ଦାସ, ଦେବଦାସ ଛୋଟରାୟ, ଅଭୟକୁମାର ପାଢ଼ୀ, ପ୍ରିୟମ୍ବଦ ଶ୍ରୀଧର, ହୃଦୟମଣି, କୁମୁଦବାନ୍ଧବ ରାଉତରାୟ, ନୃସିଂହକୁମାର ରଥ, ରାଜେନ୍ଦ୍ର କିଶୋର ପଣ୍ଡା, ହଳଧର ପଣ୍ଡା, ସୌରୀନ୍ଦ୍ର ବାରିକ, ମୁରାରି ମୋହନ ସାହୁ ଓ କାହ୍ନୁଚରଣ ସାହୁ ପ୍ରମୁଖ ସମଧର୍ମୀ ଓ ଦରଦୀସ୍ରଷ୍ଟାମାନେ ଗୋଟିଏ ଡଙ୍ଗାରେ ମଧ୍ୟ ଯାତ୍ରା ସୁରୁ କରନ୍ତି । ଓଡ଼ିଶାର ଏହି ଅକବି ଗୋଷ୍ଠୀର ସ୍ୱତନ୍ତ୍ର ପ୍ରକାଶନ—ଙ, ଞ, ଲୁ, ଅକବିତା, ବିଫଳତା ସପକ୍ଷରେ ଓ ପଞ୍ଚମୁଖୀ ବ୍ୟତୀତ ବିଭିନ୍ନ ସାମୟିକ, ମାସିକ ପତ୍ରପତ୍ରିକାରେ ବିଚ୍ଛିନ୍ନ ଭାବରେ ଯେଉଁ ଅକବିତା ପ୍ରକାଶିତ ହୋଇଚି ତାହା ତୁଳନାତ୍ମକ ଭାବରେ ହିନ୍ଦି ଅକବିତାର ସମକକ୍ଷ ଓ ଅନେକସ୍ଥାନରେ ସମଧିକ ମୂଲ୍ୟ ବହନ କରେ । ଆଲୋଚ୍ୟ ଅଧିକାଂଶ ଗୋଷ୍ଠୀଛଡ଼ା ଅକବିଙ୍କ ସୃଷ୍ଟିରେ ଅକବିତାର ସ୍ୱର, ଶୈଳୀ, ସ୍ପନ୍ଦନ, ଆଭିମୁଖ୍ୟ ଓ ଆନ୍ଦୋଳନର ପ୍ରଚଣ୍ଡ ପରିଣତି ପ୍ରତ୍ୟୟ ହେଉଥିଲେ ହେଁ ସେମାନେ ଅକବିର ପରିଚୟ, ଗୌରବ ଓ ଗୋଷ୍ଠୀ ପ୍ରୟାସରେ ପ୍ରୟାସୀ ନୁହଁନ୍ତି କିମ୍ବା ଅକବିତା ଆନ୍ଦୋଳନରେ ଅଗ୍ରଦୂତ ବୋଲି ଏପର୍ଯ୍ୟନ୍ତ ଦାବୀ କରି ନାହାନ୍ତି ।

ହତଭାଗ୍ୟ ଗୋଷ୍ଠୀର ଅନ୍ୟତମ ପ୍ରବର୍ତ୍ତକ ସୌଭାଗ୍ୟ ମିଶ୍ର 'ଦସ୍ୟୁ ଓ ଶବଗ୍ନି'ରେ ଯଦିଓ ଅସ୍ପଷ୍ଟ ଓ କୁଣ୍ଠିତ ତଥାପି ନିଜର Liberated କଲମ ଓ ବୌଦ୍ଧିକ ଚେତନାରେ ପ୍ରତିବିମ୍ବିତ ଅନ୍ତର୍ଦ୍ୱନ୍ଦ୍ୱ, ଅବିଶ୍ୱାସ, ଶଙ୍କା, ଶିଥିଳତା ଓ ଜଡ଼ତାର ବନ୍ଧନ ଛିନ୍ନ କରି କଣ୍ଟିତ ବର୍ତ୍ତମାନ ସାପେକ୍ଷ ଉତ୍ତେଜିତ ଓ ଆନ୍ଦୋଳିତ ମନରେ ଉତ୍ତପ୍ତ ଆଲୋକର ରକ୍ତ କଣିକାର ପ୍ରଲେପ ଦିଅନ୍ତି । ତେଣୁ 'ଦସ୍ୟୁ ଓ ଶବଗ୍ନି' ଜିଜ୍ଞାସୁ ଦୃଷ୍ଟିରେ ଉତ୍ତର ଦିଏ—

> "ଆମେ କାଠ କଙ୍କାଳ କେବଳ ଗଛମାନଙ୍କ ଇଚ୍ଛାରେ ଏଠାକୁ ଆସିଚୁ, ପତ୍ରକୁ ଛୁଇଁବା ମନା, ପତ୍ର ଦେଖିଲେ ଜୀବନ ମନେ ପଡ଼େ ଯେ ! ପକ୍ଷୀକୁ ଡାକିବା ମନା, ପକ୍ଷୀକୁ ଡାକିଲେ ଭୟ ମାଡ଼ି ପଡ଼େ ଯେ ! ଆମେ କାଠ-କଙ୍କାଳ କେବଳ ଧକ୍କା ମାଟିରେ ଜଡ଼ ହୋଇ ବସିଚୁ । ଶବଗ୍ନି ତୋର ଶିଶୁ ପୁତ୍ରର ଶବକୁ ଆମେ ଦେଖିଲୁ ଧନୁପରି ବଙ୍କା ନଈର ଶିଥିଳ ଉଲ୍ଲାସରେ, ଚୁମ୍ବନ ଲାଗି ହେଟେଚେଦେଲକୁ ରକ୍ତ ନ ଥିଲା ପଥର ଉପରେ, ଆମର ଆମୃତ୍ୟୁର ହୃଦୟରେ ଅମର ବିଶ୍ୱାସ ନ ଥିଲା । ଶବଗ୍ନି, ତୁ ଆମକୁ ତୋର କେଉଁ ଅମାବାସ୍ୟାରେ ଘୋଡ଼ାଇ ରଖିଚୁ ? କାଲି ନଈକୁ ବାଟ ପରିଷ୍କାର ହୋଇବ ତ ? ଜାଲରେ ମାଛ ଉଠିବେ ତ ?"

ଅନୁରୂପ ଜିଜ୍ଞାସା, ଅନ୍ତର୍ଦ୍ୱନ୍ଦ୍ୱ ଓ ଆଶଙ୍କା ବ୍ୟଥିତ ଅତୀତପ୍ରତି ଅଶ୍ରଦ୍ଧା ଓ ମମତା ବୋଧହୀନତା ତଥା ରୁଦ୍ଧଅନାବିଷ୍କୃତ ଭବିଷ୍ୟତ ପ୍ରତି ସଚେତନ ଅଜ୍ଞତା, ଇଙ୍ଗିତ ଓ ଅସାମର୍ଥ୍ୟ ପ୍ରକାଶ କରି ବର୍ତ୍ତମାନର ଦୋଳାୟମାନ ଗଣ୍ଡି ଉପରେ ସ୍ଥିତିର ଅସ୍ଥିରତାର ସ୍ୱୀକୃତି ମଧ୍ୟରେ ହତଭାଗ୍ୟ ଗୋଷ୍ଠୀର ଅନ୍ୟତମ ପ୍ରତିନିଧି ଦୀପକ ମିଶ୍ର 'ମୁଁ ଓ ଏକ ପରିପୂର୍ଣ୍ଣ ପୋଖରୀ'ରେ—

> "ମୁଁ ଯେଉଁ ପୋଖରୀ ଓ ପଦ୍ମ ଦେଖିଅଛି ପଦ୍ମର ପତ୍ରରେ ପାଣି ଟଳମଳ ହୁଏ ନାହିଁ ; ଖୁବ୍ କେଉଁ ଅତୀତରେ ଶୁଣିଥିବା ସ୍ୱରଙ୍କର ଅସ୍ତିତ୍ୱ ସେଥିରେ ନାହିଁ; ଖୁବ୍ କେଉଁ ଅତୀତରେ ଦେଖିଥିବା ମଣିଷଙ୍କ ଗ୍ଲାନି ସବୁ ଗଲେଣି ଉଭେଇ; ତଥାପି ମୁଁ କହୁଛି ଶୁଣ ଉକ୍ତ ପୋଖରୀରେ ପାଣି ନାଲି ଏବଂ ତହିଁର ଉତ୍ତାପ ବହୁ ତନ୍ଦ୍ରା ଶବମାନ ଫିଙ୍ଗିଦିଏ ଆମର ଆଡ଼କୁ ଓ ସେ ପୋଖରୀ ଦେଖି ଗ୍ଲାନିଥିବା ବ୍ୟକ୍ତିମାନେ ପଚାରନ୍ତି କେଉଁବାଟେ ନିର୍ବିଘ୍ନରେ ଯାଇ ହେବ ଦକ୍ଷିଣ ଦିଗକୁ ! ! ! × × × ବର୍ତ୍ତମାନ ତୁମେ ବୁଝ : ମୁଁ ଯିବି କି ଯିବି ନାହିଁ ଆଉ ସେହି ପୋଖରୀ ହୁଡ଼ାକୁ ।"

—ଇତ୍ୟାଦି ଯେଉଁ ବାର୍ତ୍ତାଳାପ, ସ୍ୱଗତୋକ୍ତି, ସ୍ଥାନ, କାଳ, ଘଟଣା ସମ୍ପର୍କିତ ସମ୍ବୋଧନ ଓ କବିତାନ୍ତର ମନସ୍ଥିତିର ଅଭିବ୍ୟକ୍ତି ପ୍ରଦାନ କରନ୍ତି ତାହା ଅକବିତା ଆନ୍ଦୋଳନର ଆଭିମୁଖ୍ୟ ପାଇଁ ଅଧିକ ହେଲେ ହେଁ କୌଣସି ଦୃଷ୍ଟିରୁ ଊଣା ନୁହେଁ ।

'ପୁରାତନୀ'ର ଶେଷ ପଂକ୍ତିରେ ବର୍ତ୍ତମାନର ବିଶିଷ୍ଟ ବାହକ ନୃସିଂହ କୁମାର ରଥ ବିଘୂର୍ଣ୍ଣିତ ବିଦ୍ରୋହୀ ମନର ତରଙ୍ଗ, କ୍ଷୁବ୍ଧ ଆବେଗ, ଛିଦ୍ର କଣ୍ଟୁକ୍ତି ଓ ପରିବେଶର ଦୁଃସହ ଆଘାତରେ କ୍ଷତ ବିକ୍ଷତ ହୋଇ ସିଧା ସଳଖ ରକ୍ତାକ୍ତ ଅନୁଭୂତିପୂର୍ଣ୍ଣ କଠୋର ଉକ୍ତିରେ—

> "ଦୁଃଖ ମୋର ହେଲା କ୍ରମେ ହୁ ହୁ ସ୍ତବ୍ଧ ବାଲିଚର, ଯେଉଁଠି ଛନ୍ଦିହୋଇଗଲା କୋଣାର୍କର ଶିଳ୍ପ ଓ ସାଧନା, ମୋ ଛାତିରେ ଲୁସିଫର, ଜର୍ଜରିତ ନର୍କର ଯନ୍ତ୍ରଣା, ମୋ ଗୃହ ପାଖରେ ବ୍ୟାପ୍ତ ମୃଗାବ୍ଧୀର ଦୁଃସହ ଅନ୍ଧାର ।"

—ବୋଲି ଚିତ୍କାର କରନ୍ତି । କ୍ରମେ ଏ ଚିତ୍କାର ସ୍ତବ୍ଧ, ମନ୍ଥର ଓ ଶୀତଳ ହୁଏ ଯେତେବେଳେ 'ଶତନୋଟି ଚିହ୍ନ'ର ପ୍ରବକ୍ତା ଓ ଓଡ଼ିଆ ଅକବିତାର ରଙ୍ଗମଞ୍ଚର ସାର୍ଥକ ଅଭିନେତା କାହ୍ନୁଚରଣ ସାହୁ—

> "ମୁଁ ହେବି ବିଶ୍ୱ-କର୍ମୀ ସୃଜିମୋର ନୂତନ ପୃଥିବୀ, ଆସନ୍ତା କାଲିର ମୁଁ ଈଶ୍ୱରଙ୍କ ପ୍ରତିଦ୍ୱନ୍ଦୀ ହେବି । ମୁଁ କହ୍ନୁଚରଣ ସାହୁ—ଏଇ ନାମ, ଏଇ କ୍ଷୁଦ୍ର ବ୍ୟକ୍ତିଗତ ପରିଚୟ ସୀମା ଅତିକ୍ରମି ମୁଁ ହେବି ନୈର୍ବ୍ୟକ୍ତିକ ଅନୁଷ୍ଠାନ ଅନାମ ଓ ସହସ୍ରନାମର, ଅକ—ମୁଁ ଏକକରୁ ଅସନ୍ତାକାଳି—ମୁଁ ହେବି ଅନେକ, ଅନେକ, ମୁଁ ହେବି ମହାପୁରୁଷ, ଇତିହାସ, ଯୁଗ ଅବତାର, ଆସନ୍ତା କାଲିର ମୁଁ—ସିନ୍ଧୁହେବି ଆଜ—ମୁଁ—ବିନ୍ଦୁ ।"

—ବୋଲି ଦୁଃସାହସିକ ଆତ୍ମପରିଚୟ ଦେଇ ଜଡ଼, ମୂକ, ନିର୍ବୋଧ, ନିସ୍ତେଜ, ପୀଡ଼ିତ ଓ ମନ୍ଥିତ ପୃଥିବୀର ଭବିଷ୍ୟତ ଜୀବନ ପାଇଁ ଏକ ବେଖାତିର ଓ ନିର୍ଭିକସେତୁ ବାନ୍ଧନ୍ତି । ବଙ୍ଗଳାର ଅକବି ଗୋଷ୍ଠୀ ଯେପରି ବିପ୍ଳବୀ କବି ସୁଭାଷ ମୁଖୋପାଧ୍ୟାୟ ସମେତ ଇଲିଅଟ୍ ପରମ୍ପରା ବିଧ୍ୱଂସୀ ଚିହ୍ନପଟ ଉପରେ ମୁର୍ଦ୍ଦାରର ଚିକିତ୍ସା ପରିହାର କରି ମୃତ୍ୟୁମୁଖୀ ମଣିଷର ଔଷଧ ଖୋଜନ୍ତି ସେପରି ବିପ୍ଳବୀ କବି ସଚ୍ଚି ରାଉତରାୟଙ୍କ କଲମର କାଳି ପିଇ ଓଡ଼ିଆ କାବ୍ୟ ପରମ୍ପରାର ଗୁମ୍ଫ ଉପରେ ଅବୁଝା ଗୋଷ୍ଠୀର ଅକବି

ଜୟକୃଷ୍ଣ ବରାଳ ଅକବିତାର ମଦନଶାରେ ଯେତେବେଳେ ଚେତନା ହରାନ୍ତି ସେତେବେଳେ ଅକବିତାର ମଧୁଗୁଞ୍ଜନ ବିଧ୍ୱନିତ ହୁଏ—

"ମୋ ଟେବୁଲ୍ ଆରପାଖେ ରେସ୍ତୋରାଁ ବିର ଫାଣ୍ଟା ପିଏ, ପ୍ରଥମା ନାୟକ, କେବେ କେଉଁ ଅତୀତରେ ଦେଖିଥିଲେ ସଚି ରାଉତରାୟ। ××× ଏ ଥୋବଟି ବସନ୍ତଟା କୁଚପୁଡ଼ି ଓଡ଼ଶୀ ନାଚୁଛି, ଏ ଅଙ୍ଗନେ ଜଳେ ନିଆଁ, ଈର୍ଷାରେ ଜଳୁଛନ୍ତି ଗହଳିଆରାମାନେ। ତେଣୁ ହେ ପ୍ରଥମା ନାୟକମାନେ, ଏ ନାଚ ବନ୍ଦକର, ବନ୍ଦକର। କୁଙ୍କୁମର ହୋଉ; ମୁଁ ପଢ଼ୁଛି ଅଜଗର ଲଣ୍ଡା ବିରଗଛ।"

ଏଠାରେ ଅକବି 'ଅଥ ବସନ୍ତ ଗାଥା'ର ଏହି ପ୍ରଚଳିତ ପରମ୍ପରା ବିରୋଧୀ ଆତ୍ମସଂଳାପରେ ଅଭୋଗ୍ୟ ଓ ଅଯୋଗ୍ୟ ଅତୀତ ତଥା ରକ୍ଷଣଶୀଳ ଆବର୍ତ୍ତନରୁ ଚରମ ମୁକ୍ତି ପାଇବାକୁ ଉଦ୍‌ବୁଦ୍ଧ ହୁଅନ୍ତି। ଓଡ଼ିଆ ଅକବିତାର ଅପ୍ରତିଦ୍ୱନ୍ଦୀ ଶିଳ୍ପୀ ଓ ପଞ୍ଚମୁଖୀଗୋଷ୍ଠୀର ଟାଣୁଆ ପ୍ରତିନିଧି ରାଜେନ୍ଦ୍ର କିଶୋର ପଣ୍ଡା ଜୀବନ ନିରର୍ଥକ ଭଗ୍ନାଂଶ, ଚିରଜୀର୍ଣ୍ଣ, ସଂଜ୍ଞାହୀନ ଓ କ୍ରିୟାହୀନ ଅଭିବ୍ୟକ୍ତି ବୋଲି ଅତୀତର ମତାନ୍ଧତା, ବିସ୍ମୃତି, ଭକ୍ତିହୀନତା ତଥା ବର୍ତ୍ତମାନର ଅସ୍ଥିରତା, କମ୍ପନ ଓ ଆଗ୍ନେୟଶିଖା ମଧ୍ୟରେ 'ସାଙ୍କେତିକା'ରେ ପ୍ରଚାର କରନ୍ତି—

"ମର ମର ବଞ୍ଚିବାର ଆଦବ କାଇଦା, କପଟିଆ ଧନ୍ଦୋଳ ଓ ଟ୍ରିନିଟିର ଝଞ୍ଜାରେ ଦୋହଲି ମୁଁ କି ଏଠି ଚିରଜୀର୍ଣ୍ଣ ଟିଥୋନସ୍ ? ମହ ମହ ମୁଁ ନିଜେ ବାସିଲି ? ମୂକ ଫିଲମ୍ ପରଦାରେ ଦୁଃଖାହତ ବ୍ୟର୍ଥ ହିରୋଭଳି, ନାବାଳକ ହୃଦୟରଗଛ ଭେଏଁ ଭେଏଁ କାନ୍ଦିଲି ମିଉବେ······ପପୋଛ ଜୀବନ ତଳେ ଅଘାଟର ଭୁଠେ ମେରୁଦଣ୍ଡ ଭାଙ୍ଗିଥିଲା ଜନ୍ମପଙ୍ଗୁ ଶିଶୁଭଳି ଆଣ୍ଠୁରେ ଇ ଗୁରୁଣ୍ଡିବା ସାର, ଭରସାମ୍ୟ ରହୁ ନାହିଁ···ଆଉଜିବା ପାଇଁ ନାହିଁ କିଛି ଅତଡ଼ା ଖସୁଛି ଏବଂ ଦୁଲ୍ ଦୁଲ୍ ଭୂଇଁ ଦୁଲୁକୁଛି।"

ସ୍ୱାର୍ଥାନ୍ଧ ନେତୃତ୍ୱ, ହିଂସ୍ରକ ବ୍ୟକ୍ତିତ୍ୱ ତଥାକଥିତ ବାକ୍‌ଚାତୁରୀ, ବୌଦ୍ଧିକତା ଓ ସାଧୁ ଆବରଣକୁ ଅନାବରଣ କରି ପଞ୍ଚମୁଖୀ ଗୋଷ୍ଠୀର ଅନ୍ୟତମ ଅକବି ପ୍ରଫୁଲ୍ଲ କୁମାର ତ୍ରିପାଠୀ ସମାଜ ବିରୋଧରେ ଯେଉଁ ଦୁଃସାହସିକ ଓ ରୋକ୍‌ଠୋକ୍ ଯୁଦ୍ଧ ଡାକରା ଦିଅନ୍ତି ତାହା ସମଗ୍ର ଓଡ଼ିଆ ଅକବିତା ଆନ୍ଦୋଳନରେ ଉଲ୍ଲେଖଯୋଗ୍ୟ। ସେଥିପାଇଁ ଅକବିଙ୍କ କଲମ ଜବାବ ଦିଏ—

"ତାଙ୍କ ପୋଷା କୁକୁର ଖାଲି ଶୁଙ୍ଘେ ଜାଣେ—ଏଣୁ ଡର ନାହିଁ ତାଙ୍କ ପୋଷା ସିଂହ—ଖାଲି ଗୁଡ଼ି ଜାଣେ ତାହା ସିଂହ ସତ, ମାତ୍ର ସେହି ସିଂହ ମଧ୍ଯ ନର୍ଗବ ପ୍ରଜାତି ଭଳି ଶାନ୍ତ, ଡର ନାହିଁ । ତାଙ୍କ ପୋଷା ସାପ ଖାଲି ନାଚ ଜାଣେ ।"

ଅକବିତା ଆନ୍ଦୋଳନର ଚରମ ଦରଣି, ଅନ୍ୟତମ ସମଧର୍ମୀ ଅକବି କୁମୁଦବାନ୍ଧବ ଗଡ଼ତଗପ୍ତ ନପୁଂସକ ସମାଜ, ମନଗଢ଼ା, ଅଖାଡ଼ ଓ ଅନାବଶ୍ୟକ ପରମ୍ପରାର ମଥା ଉପରେ ଏକ ଉଜ୍ଜ୍ୱଳତମ ପୂର୍ଣ୍ଣଚ୍ଛେଦ ଆଙ୍କି ଚୂଡ଼ାନ୍ତ ବାସ୍ତବତା ଓ ସାମାଜିକ ବିପ୍ଳବମୁଖୀ ତିକ୍ତ କଷାୟ ମାନସରେ ଧର୍ଦ୍ଧକେଶ ଓ ଶ୍ମଶ୍ରୁଧାରୀ ସାୟାହ୍ନ କାଳୀନ ମଣିଷମାନଙ୍କ ଉଦ୍ଦେଶ୍ୟରେ ବ୍ୟକ୍ତ କରନ୍ତି—

"ମାତ୍ର ଆଜି ଜୀବନର ସୂର୍ଯ୍ୟାସ୍ତରେ ଲମ୍ବକେଶ, ଲମ୍ବ ଦାଢ଼ି ଧରି ମୁଁ ହୁଏତ ପୋଷା ମନାସିଂହ ‥ହିସାବ ମୁଁ ରଖି ନାହିଁ ନିଜ ପିତୃତ୍ୱର ।"

କିମ୍ବା

"ଘଜଲି ସେଉ, ହଜଲି ହେଉ । ବାଲୁଙ୍ଗା ଡାକିଲି ଖେଉ, କିଏ ରେ ତୁ-? କରତ ଦାନ୍ତ, ନାଲୁଆ ନାଡ଼, କଣ୍ଟକିତ ଛଅର ରୋମାଳି । ଅମଳ ପରେ ଲଣ୍ଡା ବିଲର ନଡ଼ା ପରି ।"

ରକ୍ଷଣଶୀଳ, ଧର୍ମୀପ୍ସୁ, ମନ୍ଦାନ୍ଧ ଜୁଆରରେ ନ ହଜି ସୃଷ୍ଟିର ବିଭିନ୍ନ ପର୍ଯ୍ୟାୟରେ ଅକବିର ପରିଚୟ ଦେବାପରେ ଉମାଶଙ୍କର ପଣ୍ଡା ବର୍ତ୍ତମାନର ଟେବୁଲର ଫୁଲଦାନୀ, ଆସ୍‌ଟ୍ରେ ଓ ବେହେଲା ତଥା ଭଙ୍ଗା ଆଇନା ମୁହଁରେ ଆକଣ୍ଠ ମଦପାନ କରି ଓ ମଦନଶାରେ ଥରି ଥରି ଭବିଷ୍ୟତର ଦୃଶ୍ୟ ଅଦୃଶ୍ୟ, ରାସ୍ତାରେ ଏକ ମୁହାଁ ହୋଇ କ୍ଷିପ୍ର ଗତିରେ ଦୌଡ଼ୁଛନ୍ତି । ସେତିକିବେଳେ ଅକବିର କଲମ ଗାଇ ଉଠେ—

"ଏବଂ ସମ୍ଭବତଃ ମୋତେ ହିଁ ମୁଁ ଖୋଜୁଥିଲି ରାମକୃଷ୍ଣ ମିଶନ ଓ ପଣ୍ଡିଚେରୀ ଆଡ଼େ । ପୁରାତନ ମଦଭଳି ମୋତେ ନିଶା ଧାରି ଥିଲା । ଆକାଶକୁ ଛୁଇଁବାର ଓ ମୈଥୁନେ ରତ ହେଲା ଗଣିକା ନାଗରେ । ମୋତେ ଘାରିଥିଲା ନିଶା । ମୁଁ ଧାଇଁଲି ପାରିହୋଇ ବସ ଷ୍ଟାଣ୍ଡ, ଡାକଘର, ସାଲୁରା ସାହର କିମ୍ବା ମୋ ଉଲଗ୍ନ ଇଚ୍ଛା ଝୁଲୁଥିଲା ଆକାଶର ମହାଶୂନ୍ୟତାରେ ।"

ଅବିକଳ ଆକୁଳତା, ବ୍ୟାକୁଳତା, ଆତ୍ମଜିଜ୍ଞାସା ଓ ବିଷଜ୍ୱାଳା ଅକବିତାର ସଂକ୍ଷିପ୍ତ ବାର୍ତ୍ତାବହ ଦେବଦାସ ଛୋଟରାୟଙ୍କ 'ଅପରାହ୍ନ' ମୁଖୀ ଆତ୍ମଘାତୀ ମନରେ ବାଜିପି ଉଠେ । ଦ୍ରୁତଗାମୀ କଲମ ତାଙ୍କର ଅଣନିଶ୍ୱାସୀ ଉତ୍ତର ଦିଏ—

"ମୁଁ ଏଠାରୁ ଦୌଡ଼ୁଥିବ (ପ୍ରତାରିତ ସମୁଦ୍ର, ପୃଥିବୀ !) ମୋର ଆତ୍ମଘାତୀ ଭାଗ୍ୟ ନିଏ ମୋତେ କ୍ଷଣରୁ କ୍ଷଣକୁ, ପ୍ରଚଣ୍ଡ ସୂର୍ଯ୍ୟରେ ବାଜି । ପାର୍ଶ୍ୱବର୍ତ୍ତୀ ଧାନକ୍ଷେତ ମାନ, ମୋ ରକ୍ତରେ କରି ଓଦା, ଫେରୁଥିବ ଛାତାର ଗ୍ରାଇକୁ ! ଟପିବ ସହର ଦେଶ, ଗାଆଁ ଗଣ୍ଡା, ଜମ୍ମୁ ଓ କୋଟର ଜଙ୍ଗଲ୍ ଜଙ୍ଗଲେ ଫେର ପାହାଡ଼ରୁ ଅନ୍ୟ ପାହାଡ଼କୁ । ଲୁହ ସେମିତ ବହୁଥିବ ।"

ପୂର୍ବୋକ୍ତ ଅଭିନ୍ନ ଆଭିମୁଖ୍ୟ ବ୍ୟକ୍ତିତ ପ୍ରବଳ ଅନ୍ତର୍ଦ୍ୱନ୍ଦ୍ୱ ଅନ୍ତର୍ଦାହ ସଂଘର୍ଷ ଓ ଊର୍ଦ୍ଧ୍ୱଗାମୀ ସୃଜନାତ୍ମକ ଶିଳ୍ପ ପ୍ରକ୍ରିୟାରେ ସଚେତନ ହୋଇ 'ରାଜପଥ'ର ଅଗ୍ରଦୂତ ହରିପ୍ରସାଦ ଦାସ—

"ମୁଁ ଏକ ବିସ୍ତୀର୍ଣ୍ଣ ରାଜପଥ, ଲମ୍ବ ଓ ବିସ୍ତୃତ, ସୁଦୀର୍ଘ, ପ୍ରଶସ୍ତ, ଚିତ୍ରୁରାସ୍ତା, ଚକ୍‌କଣ ମସୃଣ ।"

—ବୋଲି ନିଜର ପରିଚୟ ଦିଅନ୍ତି । ଠିକ୍ ଏହି ଫାଙ୍କରେ ଏକ ସିଧାସଳଖ ପରିବେଷଣଦ୍ୱାରା ଅଗଣିତ ନିରୁତ୍ତର ଜିଜ୍ଞାସାର ଜବାବ ପାଇବାକୁ ଅନାମ ଗୋଷ୍ଠୀର ଅଗ୍ରଣୀ ଅକବି ହରିହର ମିଶ୍ର ଆଗଭର ହୁଅନ୍ତି । ଅକବି ସୁସ୍ଥ ମନରେ ଉତ୍ତର ଦିଅନ୍ତି—

"ତେଣୁ ଆଜି ସୂର୍ଯ୍ୟକୁ ଡାକିବାକୁ ହେବ ମତେ ପାହାଡ଼ ସନ୍ଧିରୁ ରଖିବାକୁ ହୋଇପାରେ ମୋ ଦୁଇଟି ଭ୍ରୂଲତା ମଝିରେ ଖୋଜ କେନ୍ଦ୍ରବିନ୍ଦୁ ।"

ଅକବିତା ଆନ୍ଦୋଳନର କେନ୍ଦ୍ରବିନ୍ଦୁ ଛୁଇଁବାକୁ କେତେ ମାଇଲ ବାକି ଥିଲେ ବି ହେଁ ରୋମାନ୍‌ସମୁଖୀ ଓ ରୋମାନ୍‌ସ ବିମୁଖୀ, ପରିଚିତ ଓ ଅପରିଚିତ, ସୀମା ଓ ଅସୀମାର ଆବର୍ତ୍ତନଭେଦ କରି ଯଥାକ୍ରମେ ଅକବିତା ଗୋଷ୍ଠୀର ଅକବି ଶ୍ରୀନିବାସ ଉଦ୍‌ଗାତା ଓ ଙ, ଞ, ଲ୍ଲ, ଗୋଷ୍ଠୀର ଅକବି ଚନ୍ଦ୍ର ମହାନ୍ତି ସୃଷ୍ଟିର ଏକାନ୍ତ ପରିସରରେ ଦିଗନ୍ତର କଥା କୁହନ୍ତି ।

"ମୁଁ ମୋତେ ଜାଣି ନାହିଁ, ଜାଣିଛି ତୁମ ଲାଗି ନିଜକୁ, ମୁଁ ମୋତେ ଦେଖି ନାହିଁ ଦେଖିଛି ତୁମ ଲାଗି ନିଜକୁ"

('କବିତା ଆସ ନଗୋ'—ଶ୍ରୀନିବାସ ଉଦ୍‌ଗାତା)

"ଯୋଡର ପରିଧି ନେଇ ମୁଁ ତୁମକୁ ପରିକ୍ରମା କରେ, ନିଜର ସମୃଦ୍ଧି ପାଇଁ"

('ସମ୍ପର୍କ' ଚନ୍ଦ୍ର ମହାନ୍ତି)

ଉଦ୍ଧିଷ୍ଟ ପଂକ୍ତିରେ ପ୍ରଯୁକ୍ତ ଏକମୁଖୀ ବୋଲି ପ୍ରତ୍ୟୟ ହେଲେ ହେଁ ପ୍ରକୃତରେ ଏହା ଅକବିତା ଆନ୍ଦୋଳନର ପ୍ରତିମୁଖୀ ଆଭିମୁଖ୍ୟ ।

ଏହା ବ୍ୟକ୍ତିତ ଅକବିତା ଆନ୍ଦୋଳନର ବହୁମୁଖୀ ଉଦ୍ଦେଶ୍ୟ ଓ ଅଭିମୁଖ୍ୟ ଅକବି ସୌରୀନ୍ଦ୍ର ବାରିକ (ଜୀବନ-ବ୍ୟାକରଣରେ ବ୍ୟତିକ୍ରମ ନୁହେଁ, କେବଳ ପରିଚିତ ନିୟମଟିଏ), ବିକ୍ରମ ବିପାଠୀ ("କବି ମୁହିଁ, କୋବି ନୁହେଁ ବିପ୍ଳବର କୁରୁକ୍ଷେତ୍ରେ କୃଷ୍ଣ ମୁହିଁ ଦେଶ ପାଇଁ, ଜାତି ପାଇଁ") ଅନ୍ତର୍ଯାମୀ ସାହୁ ("ମୁଁ ପରସ୍ତ ଏକ ଗଣିତ ଶାସ୍ତ୍ର"), ଅଭୟ କୁମାର ପାଢ଼ୀ ("ବୁଢ଼ା ବାପା ସମସ୍ତର ଅନୁଗତ ଅବାଞ୍ଛିତଦାସ), ପ୍ରିୟମ୍ବଦ ଶ୍ରୀଧର ("ମୋ ଚେହେରା ଭଲ ଲାଗେ ନାହିଁ ତୁମ କୂଅ ଗହ୍ୱର ପାଣିରେ"), ହୃଦୟମଣି ("ମୁଁ ଜାବୁଡ଼ି ଧରିଛି ଆଜି ଏକ ଆଗ୍ନେୟ ଚିରିକୁ") ଓ ରାମକୁମାର ଅଗ୍ରୱାଲ ("ସେ ଏକ ଦିଗନ୍ତ") ପ୍ରଭୃତିଙ୍କ ସତକ କଲମମୁନରେ ସଫଳ ଓ ଯଥାର୍ଥ ବିବେଚିତ ହୁଏ ।

ଉପରୋକ୍ତ ଆଲୋଚନା ମଧ୍ୟରେ କବି ସୌଭାଗ୍ୟ ମିଶ୍ର, ଦେବଦାସ ଛୋଟରାୟ, ହରପ୍ରସାଦ ଦାସ, ନୃସିଂହ କୁମାର ରଥ ଓ ଦୀପକ ମିଶ୍ର ପ୍ରମୁଖ ଅକବିତା ଆନ୍ଦୋଳନ ଗୋଷ୍ଠୀ ସମ୍ପ୍ରଦାୟରେ ସମ୍ପୃକ୍ତ ନ ହୋଇ କିମ୍ବା ଅକବିର ପରିଚୟ ନ ଦେଇ ସୁଦ୍ଧା ଅକବିତାର ଶୈଳୀ, ସଲାତ୍ର ଆଭିମୁଖ୍ୟ, ସ୍ଥିତି, ଯୋଜନା, ଘଟଣା, ପରିବେଶ, ଭାବ, ଭଙ୍ଗୀ, ସ୍ୱର, ସଂଗ୍ରାମ, ଦ୍ୱନ୍ଦ୍ୱ, ସଂଘର୍ଷ, ଉତ୍ତେଜନା, ଚେତନା, ସମ୍ବେଦନଶୀଳତା, ସୃଜନାତ୍ମକ ପ୍ରକ୍ରିୟା, ମନସ୍ତାତ୍ତ୍ୱିକ ବିଶ୍ଳେଷଣ, ଶବ୍ଦାତିରିକ୍ତ ବ୍ୟବହାର ଓ ଯଥାର୍ଥ ପରିବେଷଣରେ ଅପ୍ରତିଦ୍ୱନ୍ଦୀ ଶିଳ୍ପୀ ଓ ଏକାକୀ ଜୀବନର ପ୍ରସ୍ତାବକ ଭାବରେ ଅକବିର ଅପ୍ରତିହତ ଆସନରେ ସମାସୀନ ହୁଅନ୍ତି । ଏଠାରେ ସ୍ମରଣୀୟ ଯେ ଅକବିତାର ସବାତ୍ମକ ଉତ୍କୃଷ୍ଟ ଆଭିମୁଖ୍ୟରୁ ଓଡ଼ିଶାର ଚରମ ବିପ୍ଳବୀ କବି ରବିସିଂହ ବଞ୍ଚିତ ନ ହେଲେ ହେଁ ଅକବି ଗୋଷ୍ଠୀ ଭୁକ୍ତ ନୁହଁନ୍ତି । କାରଣ କବି ରବିସିଂହଙ୍କ ସମସ୍ତ ଉଲ୍ଲେଖଯୋଗ୍ୟ ସୃଷ୍ଟିରେ

ଅକବିତାର ଏକ ମୁଖ୍ୟ ସ୍ୱର—ବିପ୍ଳବ, ଧ୍ୱଂସ, କମ୍ପନ, ପରିବର୍ତ୍ତନ ଓ ଉତ୍କ୍ରୋଶିତ ବ୍ୟଥିତ ଅନ୍ୟସ୍ୱର ନିସ୍ପ୍ରଭ, ଅନୁପସ୍ଥିତ କିମ୍ବା ଗୌଣ, ତଥାପି ଅକବିତାର ଏହି ମୁଖ୍ୟ ସ୍ୱର କବି ରବିସିଂହଙ୍କ ସଂଗ୍ରାମୀ କଲମରେ ଯେଭଳି ନିପୁଣ, ଜୀବନ୍ତ ଓ ଚଞ୍ଚଳ ସେଭଳି ଅକବିମାନଙ୍କ କଲମରେ ନୁହେଁ । ସଂପ୍ରତି ଓଡ଼ିଶାର ଅର୍ଦ୍ଧଶତାଧିକ ଉଦୀୟମାନ ଓ ପ୍ରତିଷ୍ଠିତ କବି କଣ୍ଠରେ ବିପ୍ଳବ, ସଂଘର୍ଷ, ଶୋଷଣ, ଆନ୍ଦୋଳନ ଓ ପ୍ରଚଳିତ କବିତା ବିରୋଧୀ ସ୍ୱର ଶୁଣାଯାଏ । କିନ୍ତୁ ଅକବିତାର ଯେଉଁ ବ୍ୟତିକ୍ରମ, ସ୍ୱାତନ୍ତ୍ର୍ୟ, ମୌଳିକତା ଓ ଅନ୍ତିମତା ଅକବିମାନଙ୍କ କଣ୍ଠରେ ମୁଖରିତ ହୁଏ ତାହା ସେମାନଙ୍କ କଣ୍ଠରେ ସ୍ତିମିତ ପ୍ରାୟ । ସେଇଥିପାଇଁ ସେମାନେ ଅକବି ପଦବାଚ୍ୟ ନ ହୋଇ ପାରନ୍ତି ।

ଓଡ଼ିଆ ସାହିତ୍ୟରେ ଏଭଳି ଅଭିନବ ଆନ୍ଦୋଳନର ପରିପନ୍ଥୀ ପ୍ରବକ୍ତା, ପାଠକ ଓ ଆଲୋଚକ ବିରଳ ନୁହଁନ୍ତି । ଓଡ଼ିଆ, ହିନ୍ଦି ତଥା ଅନ୍ୟାନ୍ୟ ରାଜ୍ୟସ୍ତରୀୟ ସାହିତ୍ୟରେ ଅକବିତା ଆନ୍ଦୋଳନର ନିରପେକ୍ଷ, ରକ୍ଷଣଶୀଳ, ବୈଜ୍ଞାନିକ, ଚେତନଶୀଳ, ମତାନ୍ଧ ଓ ଭାବ ପ୍ରବଣ ଆଲୋ-ଚକମାନେ ଅନେକ ପଶ୍ଚାଦ୍‌ଗାମୀ, ଅଗ୍ରଗାମୀ ଶୁଦ୍ଧ, ପଙ୍କିଳ, ପ୍ରତିବନ୍ଧ-ମୂଳକ ଅନାବଶ୍ୟକ, ଘୃଣା ସୂଚକ, ଯଥାର୍ଥ, ଅଯଥାର୍ଥ, ସ୍ୱାଗତ ଯୋଗ୍ୟ, ହିତବାଦୀପକ ଓ ସ୍ୱୀକୃତିପୂର୍ଣ୍ଣ ମନ୍ତବ୍ୟ ମାଧ୍ୟମରେ ଏହାର ପରିଚୟ, ପ୍ରସାର ଓ ପ୍ରଚାର ପାଇଁ ଅନୁକୂଳ ପରିବେଶ ପ୍ରସ୍ତୁତ କରିଛନ୍ତି । ଅକବି କିନ୍ତୁ ଏହି ବିଭିନ୍ନ ଅଥଚ ଅଭିନ୍ନ ମନ୍ତବ୍ୟରେ କେବେହେଲେ ବ୍ୟଥିତ ନୁହେଁ । ଅଧିକନ୍ତୁ ସେ ନିଜର କାଳି, କଲମ ଓ କାଗଜ ପାଇଁ ସଚେତନ, ଶକ୍ତିଶାଳୀ ଓ ସୁନିପୁଣ ।

ଓଡ଼ିଆ ଅକବିତାର ପ୍ରତିବାଦୀ ଆଲୋଚକର ଦୃଷ୍ଟିରେ ବର୍ତ୍ତମାନର ଅନାୟାସ ପଠନ, ଗ୍ରହଣ, ବିଦେଶୀ ଅନୁକରଣ, ଉଲଗ୍ନ କାମପୀଡ଼ିତ ସମାଜର ଅନୁସରଣ ହିଁ ଏଭଳି ପରିସ୍ଫୁରଣର ମୁଖ୍ୟ କାରଣ । ଅକବି ସୃଷ୍ଟି ପ୍ରତି ଯତ୍ନଶୀଳ ନୁହେଁ । ତେଣୁ ଅକବିତା ଶବ୍ଦ ପୀଡ଼ା, ଅବାନ୍ତର-ଅଭିମତ, ଉଦ୍ଦେଶ୍ୟହୀନ ବକ୍ତବ୍ୟ ଓ ଚେତଚହୀନତାରେ ଶ୍ୱାସ ରୁଦ୍ଧ ହୁଏ । ଏହା ଅକବିତା ନୁହେଁ, କିମ୍ବା କବିତା ନୁହେଁ, କବିତା ଅଭ୍ୟାସ ମାତ୍ର । ଏଥିରେ ଯୁଗୋଚିତ ମୂଲ୍ୟ, ମହତ୍ତ୍ୱ, ଦର୍ଶନ, କାବ୍ୟାତ୍ମକ ଚେତନା ଓ ସମକାଳୀନ ସମସ୍ୟା ନାହିଁ । ଏହା ତଥାକଥିତ ଆଧୁନିକତା ପ୍ରୟାସୀ ବିଜ୍ଞାପନ ଆଶ୍ରୟୀ ଓ ଯଶପ୍ରାର୍ଥୀ କେତେକ ଦଳ, ଗୋଷ୍ଠୀ ସମ୍ପ୍ରଦାୟଭୁକ୍ତ

ତରୁଣମାନଙ୍କର କ୍ଷଣିକ ଉତ୍ତେଜନା ଓ ସାଂଧ୍ୟକାଳୀନ ପଶାଖେଳ ମାତ୍ର । ତେଣୁ ଅକବିତା କବିତାରେ ଏକ ନାମ ଓ ନିଶାଖୋର ଖେୟାଲି ମନର ଉପହାର । ସଂପ୍ରତି ଅକବିତା ନାମରେ ଓଡ଼ିଆ ସାହିତ୍ୟରେ ବହୁ ଅନର୍ଥକ, ଅନର୍ଗଳ ଅନୁକରଣ ଓ କାରୁଣାସିକ୍ତ ଅର୍ଥହୀନ ରଚନାର ଅନୁପେକ୍ଷିତ ପ୍ରଶ୍ରୟ ଦୃଷ୍ଟିରେ ପଡ଼େ । ଏହା ଦ୍ୱାରା ଓଡ଼ିଆ ସାହିତ୍ୟର ଉତ୍ତରୋତ୍ତର ଉନ୍ନତି ଓ ପରିକଳ୍ପନାର ପଥ ରୁଦ୍ଧ ହୁଏ ତଥା ଗତିପଥରେ ଅନେକ କମା ପଡ଼େ । ୧୯୬୫ ମସିହା ପରେ କେତେ ଜଣ ତରୁଣ କବି ଆଧୁନିକ ଓଡ଼ିଆ କବିତା ପାଇଁ କଲମ ଧରି ବିଫଳ ଓ ନିରାଶ ହେବା ପରେ ମୁଖ୍ୟତଃ ବିଦେଶୀ କବିତାର ଅନୁସରଣ ଓ ଅନୁକରଣରେ କେତେକ କବିତା ସୃଷ୍ଟି କରନ୍ତି ଓ ସେଥିରେ ଅଯୋଗ କରି ଅକବିତା ନାମ ଦିଅନ୍ତି । ଓଡ଼ିଆ ସାହିତ୍ୟରେ ଅନାମ, ଅବୁଝା ଓ ଅକବିତା ଗୋଷ୍ଠୀର 'ଅ' ଏହି ଷଡ଼ଯନ୍ତ୍ରର ପ୍ରମାଣ ଦିଏ । ଅନୁରୂପ ସମାଲୋଚନା ହିନ୍ଦି ସାହିତ୍ୟରେ 'ଅକବିର'ର ସଂପାଦକ ସଚ୍ଚିଶ ଜମାଲଙ୍କ ଲେଖାରେ ଏକଦା ପ୍ରକାଶ ପାଇଥିଲା । ଅକବି ସଚ୍ଚିଶ ଜମାଲ ଧର୍ମଯୁଗରେ ଅକବିତା ସଂପର୍କରେ ଅନୁରୂପ ମନ୍ତବ୍ୟ ଦେଇ ଏହି ଆନ୍ଦୋଳନର ପରିପନ୍ଥୀ କବିମାନଙ୍କୁ ପ୍ରବଳ ଆକ୍ରମଣ କରିଥିଲେ । ସାହିତ୍ୟରେ ଗଦ୍ୟ କବିତା ପରେ ଅକବିତା ଅତି-ଗଦ୍ୟକବିତାର ଦ୍ୱିତୀୟ ପରିଚୟ । ଏଠାରେ ଆଲୋଚକର ମନରେ ପ୍ରଶ୍ନ ଉଠେ—ଯଦି କବିତା ଗଦ୍ୟର ସ୍ଥାନ ଦଖଲ କରେ, ତେବେ ଗଦ୍ୟର ଗତିଚ୍ୟୁତି ପାଇଁ ରାସ୍ତା କୁଆଡ଼େ ? ସଂପ୍ରତି ଗଦ୍ୟ କବିତା କିମ୍ବା ଅତି ଗଦ୍ୟ କବିତା ବା ଅକବିତାରେ କବିତାର ମୌଳିକ ଅର୍ଥ, ସଂଜ୍ଞା ଓ ଆଭିମୁଖ୍ୟ ଅନେକାଂଶରେ ମିଳେନା । ଏ କ୍ଷେତ୍ରରେ ଅକବିତା ବିଶେଷ ଅଗ୍ରଣୀ ଓ କବିତାବିଧର୍ମୀ ଭୂମିକା ପାଇଁ ଦାୟୀ । ଓଡ଼ିଆ ଅକବିତା ସାହିତ୍ୟରେ କେତେ ଜଣ ବିଧର୍ମୀସ୍ରଷ୍ଟା ବିଭିନ୍ନ ଶବ୍ଦର ଅପପ୍ରୟୋଗ, ଖାମଖେୟାଲି ବିଷୟ ନିର୍ବାଚନ ଓ ମନମୁଖୀ ବକ୍ତବ୍ୟ ପରିବେଷଣ ଦ୍ୱାରା ରାତାରାତି ଅକବି ଆସନରେ ବସିବାକୁ ମନସ୍ଥ କରନ୍ତି । ସେହି ମୁଷ୍ଟିମେୟ ଅକବି ଅଥଚ କୁକବିମାନେ ହାତମୁଠାରେ ବ୍ୟାକରଣ, ଜଙ୍ଘ, ଅଜଗର ସାପ, ବିସ୍ଫାରିତ ଆଖିରେ ବେଲୁନ ଫାଟିଲା, ନପୁଂସକର ହସ୍ତ ମୈଥୁନ, ଲିଙ୍ଗ ଭଳି ସଜନା ଛୁଇଁ ଝୁଲୁଛି ଓଁ ଏକ ଆଦମ ଦାଢ଼ିବାଲା ଶିକାରୀ ଭଳି ସୂର୍ଯ୍ୟ—ଏଭଳି ଅଗଣିତ ଶବ୍ଦର ବ୍ୟବହାରରେ ଅକବିତାର ଉନ୍ନତି କରନ୍ତି ନାହିଁ । ବରଂ ଅକବିତାର ମୁହଁରେ କାଳି ବୋଳନ୍ତି ।

ଅକବିତା ଅନେକ ଗଦ୍ୟ କବିତା କିମ୍ବା ଆଧୁନିକ କବିତାର ମିଶ୍ରଣରେ ପ୍ରସ୍ତୁତ ବୋଲି ଅକବିତାର ସଚେତନ ସମାଲୋଚକମାନେ ନିର୍ଦ୍ଦ୍ୱନ୍ଦ୍ୱରେ ମନ୍ତବ୍ୟ ଦିଅନ୍ତି । ଅକବି ସୃଷ୍ଟି ପୂର୍ବରୁ ଅକବିତାର ସ୍ୱର, ଭଙ୍ଗୀ, ମୁଦ୍ରା, ଶୈଳୀ ତଥା ବିଭିନ୍ନ କବିତାରୁ ସଂଗୃହୀତ ଶବ୍ଦ ପଂକ୍ତି ନିର୍ବାଚନରେ ନିଯୁକ୍ତ ରହେ । ଅକବି ଏଭଳି ଆଦବ କାଇଦା ଓ ଜବରଦସ୍ତି ଫନ୍ଦରେ ଯେଉଁ ଅକବିତା ରଚନା କରେ, ତାହା କେବେହେଲେ ବିଦ୍ରୋହର ଚେତନା ଓ ନୂତନ ଦିଗନ୍ତର ସନ୍ଧାନ ଦିଏ ନାହିଁ । ଏହି ପ୍ରଚଣ୍ଡ ନାରକୀୟ ଅନ୍ଧାନୁସରଣ ଓ ଉପାୟହୀନ ପ୍ରଚେଷ୍ଟା ଯେ କୌଣସି ସାହିତ୍ୟ ପାଇଁ ଏକ ବିଷାକ୍ତ ଇଞ୍ଜେକ୍‌ସନ । ଅକବିର କଲମରେ କବିତା-ଅକବିତା, କଥା-ଅକଥା, ସାମଞ୍ଜସ୍ୟ-ଅସାମଞ୍ଜସ୍ୟ, ଘଟଣ-ଅଘଟଣ, ପରିବେଶ-ଅପରିବେଶ ଭଳି ରୂପାୟିତ ହୁଏ । ଅକବିତାର ପାଠକ ମନରେ ଏହି ଅନୁଦ୍‌ଘାଟିତ ସତ୍ୟର ସଂଳାପ କୌଣସି ରେଖାପାତ କରେନା । ଅଧିକନ୍ତୁ ଓଡ଼ିଆ ଅକବି ଶତମୁଖରେ ଅକବିତାର ଅଗଣିତ ଅନୁରାଗୀ ସମର୍ଥକ ଓ ଦରଦୀ ପାଠକମାନଙ୍କର ସ୍ୱାଗତୋକ୍ତି ଶୁଣାଏ । ଅକବି କୁହେ—ଯେଉଁମାନେ ଅକବିତାର ମୌଳିକ ଅର୍ଥ, ସାରମର୍ମ ଓ ଅନ୍ତର୍ନିହିତ ଉଦ୍ଦେଶ୍ୟ ବୁଝିବାକୁ ଅସମର୍ଥ, ସେମାନେ ପ୍ରକୃତରେ ପାଠକ ନୁହନ୍ତି । ଯେଉଁମାନେ ଅଜ୍ଞ, ନିର୍ବୋଧ ଓ ଅବଚେତନ, ସେମାନେ ଅକବିତାର ଧାର ଧାରନ୍ତେ ନାହିଁ । ଅନ୍ୟ ପକ୍ଷରେ ଅକବିତାର ବିରୋଧୀ ପାଠକ ଅକବି ଉପରେ ଆକ୍ରମଣ କରେ । ବିଦେଶୀ ଆଧୁନିକତା, ପ୍ରଗତିଶୀଳ ଚିନ୍ତାଧାରା ଓ କାବ୍ୟପରମ୍ପରାର ରକ୍ତ ମାଂସରେ ଅକବିତାର ଜନ୍ମ ସମ୍ଭବ ହୋଇପାରେ; କିନ୍ତୁ ଦେଶୀୟ ପରମ୍ପରା ବୁନିଆଦ, ଚଳଣି ଓ ସାମାଜିକ ପରିବେଶରେ ଏହାର ଜୀବନ ଉଧୁରିବ ତ ? ଏଠାରେ ଏକ ନିହାତି ଜୀଅନ୍ତା କଥା ପ୍ରାଶ୍ନିକର ମନରେ ଚହଁକି ଉଠେ—ଯେଉଁ ଅକବି ସମସାମୟିକ ସମସ୍ୟା ପାଇଁ ସଂଗ୍ରାମ-କ୍ଷେତ୍ରରେ ଅବତୀର୍ଣ୍ଣ ହୁଏ, ସେହି ଅକବିର ସଂଗ୍ରାମୀ କଲମ କେତେ ଜଣ ରୋଗୀର ଔଷଧ, କ୍ଷୁଧାତୁରର ଖାଦ୍ୟ, ଉଲଗ୍ନର ବସ୍ତ୍ର ସଂଗ୍ରହ କରେ କିମ୍ବା ସମସାମୟିକ ବହୁମୁଖୀ ବିଷାକ୍ତ ସମସ୍ୟାର ସମାଧାନ ପାଇଁ ପଥ କଢ଼ାଏ ? ପ୍ରକାରାନ୍ତରେ ଅକବିତାରେ ଉଗ୍ର ଆଧୁନିକତା, ବୈଜ୍ଞାନିକତା ଓ ବିଶ୍ଳେଷଣାତ୍ମକତାର ଅନୁପ୍ରବେଶ ଯୋଗୁ ନିଷ୍ଟୟାତ୍ମକତାର ଦାରୁଣ [ଅଭାବ ଅନୁଭୂତ ହୁଏ ଓ ସେଇଥିପାଇଁ ଏଥିରେ ଶଙ୍କା, ସଙ୍କୋଚହୀନ ମନୋବୃତ୍ତି, ପ୍ରଭାବାପନ୍ନ ଯାନ୍ତ୍ରିକତା, ଅସୌଜନ୍ୟତା, ଅଶିଷ୍ଟତା, ଯୌନବିଭତ୍ସତା,

କୁରୁଚି, ଦୈହିକ ପ୍ରକ୍ରିୟା ଓ ଉଲଗ୍ନତାର ଆଧିକ୍ୟ ପ୍ରକାଶ ପାଏ । ସର୍ବୋପରି ଏଥିରେ ଜୀବନର ପ୍ରକୃତ ମୂଲ୍ୟ ପରିସ୍ଫୁଟ ହୁଏ ନା ଓ ଏହା ସମାଜର ଯଥାର୍ଥ ପ୍ରତିନିଧିତ୍ୱ କରେ ନା ।

ବସ୍ତୁ, ସ୍ଥିତି ଓ ଘଟଣାର ଶୃଙ୍ଖଳିତ ପରିବେଶରେ ଭାବାଭିବ୍ୟକ୍ତି ବ୍ୟାହତ ହୁଏ । ଭୂଲମୀ, କବୀର, ସେକ୍‌ସପିଅର, ଗର୍କି ଓ ଟଲଷ୍ଟୟ ପ୍ରମୁଖ ଚିରନ୍ତନ ସାହିତ୍ୟସ୍ରଷ୍ଟାମାନଙ୍କ ଲେଖନୀ-ମୁନରେ ଏହାର ସତ୍ୟତା ଓ ବାସ୍ତବମୁଖୀ ଉତ୍ତର ମିଳେ । କୌଣସି ଧାରଣାର ବଶବର୍ତ୍ତୀ ଓ ଜୀବନ ତଥା ଜଗତ ପ୍ରତି ବିମୁଖ ନ ହୋଇ ଯୁଗୀୟ ସନ୍ଦର୍ଭ ଓ ଅଭିବ୍ୟକ୍ତିର ବୈଶିଷ୍ଟ୍ୟ ଉପରେ ସେମାନେ ସାହିତ୍ୟ ସୃଷ୍ଟି କରିଥିଲେ । ଆଧୁନିକ ଅକବିତାର ଅନ୍ୟତମ ଝାଣୁଆ ପ୍ରତିନିଧି ଓ ପ୍ରବର୍ତ୍ତକ ଟି. ଏସ୍. ଇଲିଅଟ ପରିଶେଷରେ ଏହି କାବ୍ୟଦର୍ଶନ ପରିହାର କରି ନ ଥିଲେ । ତେଣୁ ସେ ବ୍ୟକ୍ତ କହିଥିଲେ—

> "The only way of expressing emotion in the form of art is by finding an 'objective correlative,' in other words a set of objects, a situation, a chain of events, which shall be the formula of that particular emotion in sensory experience are given the emotion is immediately involved."
>
> (Selected Essays)

ଏହି ଉକ୍ତିର ଅନ୍ୟତମ ଶକ୍ତିଶାଳୀ ସମର୍ଥକ ଏଜରା ପାଉଣ୍ଡ ମଧ୍ୟ ଏକଦା ଏ ସମ୍ପର୍କରେ ଅନୁରୂପ ଅନୁକୂଳ ମନ୍ତବ୍ୟ ଦେଇଥିଲେ । କିନ୍ତୁ ପରିତାପର ବିଷୟ ପରବର୍ତ୍ତୀ କାଳରେ ସଂପ୍ରତି ଅକବିମାନେ ଅକବିତାର ମୌଳିକ ଉପାଦାନ -- ସ୍ଥାନ, ଘଟଣା, ବସ୍ତୁ, ସ୍ଥିତି ଓ ପରିବେଶର ବୈଜ୍ଞାନିକ ସମୀକ୍ଷା ଓ ପରୀକ୍ଷା ନ କରି ଅକବିତାର ଇତିହାସକୁ ଅସ୍ୱୀକାର କଲେ ।

ଏପର୍ଯ୍ୟନ୍ତ ପ୍ରବନ୍ଧର ବିଭିନ୍ନ ଅଂଶରେ ଅକବିତାର ଅତୀତ, ବର୍ତ୍ତମାନ, ଭବିଷ୍ୟତ, ଜନ୍ମ, ଅଭିବୃଦ୍ଧି, ସମସ୍ୟା, ପ୍ରଭାବ, ପରିଣାମ,

ଅଭିମୁଖ୍ୟ, ଆନ୍ଦୋଳନ, ସଫଳତା, ବିଫଳତା, ପରିବେଶ, ପାରିପାର୍ଶ୍ୱିକତା ଓ ଆନୁସଙ୍ଗିକତା ସଂପର୍କରେ ପ୍ରଶସ୍ତ ପର୍ଯ୍ୟାଲୋଚନା ହୁଏ । ସଂପ୍ରତି ଇଂଲଣ୍ଡ, ଆମେରିକା, ରୁଷ, ଚୀନ, ଜାପାନ, ଭିଏତ୍‌ନାମ, ଦକ୍ଷିଣ ଆଫ୍ରିକା ଓ ଭାରତ ପ୍ରଭୃତି ବିଶ୍ୱର ବିଭିନ୍ନ ଦେଶରେ ଅକବିତା ଆନ୍ଦୋଳନର ପ୍ରବୃତ୍ତି ପ୍ରସାର ଓ ପ୍ରଖରତା ନଜରରେ ପଡ଼େ । ବିଭିନ୍ନ ଦେଶୀୟ, ଉପଦେଶୀୟ, ଖଣ୍ଡଦେଶୀୟ ଓ ପ୍ରାଦେଶୀୟ ସାହିତ୍ୟରେ ଏହାର ଦ୍ୟୁମୁଖୀ, ବହୁମୁଖୀ ଓ ବିପରୀତ ମୁଖୀ ଆଲୋଚନା, ପ୍ରତ୍ୟାଲୋଚନା, ପରୀକ୍ଷା ଓ ନିରୀକ୍ଷା ଏବେ ମଧ୍ୟ ନିସ୍ତବ୍ଧ ନୁହେଁ । ପାଶ୍ଚାତ୍ୟ ସ୍ପର୍ଶ ଓ ପୃଷ୍ଠଭୂମି ତଥା କେତେକ ବ୍ୟତିକ୍ରମମୂଳକ ପରିବେଶ ପ୍ରଚଣ୍ଡ ବର୍ଗୀୟ ବୈଷମ୍ୟ, ଶ୍ରେଣୀ ସଂଘର୍ଷ, ପ୍ରଶାସନିକ ଅବ୍ୟବସ୍ଥା, ଶୋଷଣ, ଚରମ ଦାରିଦ୍ର୍ୟ ଓ ସ୍ୱାର୍ଥାନ୍ଧ ନେତୃତ୍ୱ ପାଇଁ ଭାରତରେ ହିନ୍ଦି ଓ ଓଡ଼ିଆ ସାହିତ୍ୟରେ ଅକବିତା ଆନ୍ଦୋଳନ କ୍ଷିପ୍ରତର ହୁଏ । ଏହି ଅକବିତା ବ୍ୟାକରଣର ବ୍ୟତିକ୍ରମ କିମ୍ବା ଓଡ଼ିଆ ସାହିତ୍ୟରେ ଏକ ଅବାଞ୍ଛିତ ସୃଷ୍ଟି ନୁହେଁ । ପ୍ରତିବେଶୀ ସାହିତ୍ୟ ଭଳି ଓଡ଼ିଆ ସାହିତ୍ୟରେ ଏହା ନବାଗତ ଓ ଏକ ନୂତନ ଅତିଥି । ନବାଗତ କିମ୍ବା ନୂତନ ଅତିଥିର ସଂପୂର୍ଣ୍ଣ ପରିଚୟ ପାଇବା ସମୟସାପେକ୍ଷ । ଓଡ଼ିଆ ଅକବିତାର ପାଠକ, ସମାଲୋଚକ, ସମର୍ଥକ ଓ ଶତ୍ରୁମାନଙ୍କ ନିକଟରେ ସମୟର ଅନୁକ୍ରମରେ ଏହି ନୂତନ ଅତିଥିର ଆଶାନୁରୂପ ପରିଚୟ ମିଳିବ । ଅଧିକନ୍ତୁ ସମୟ ଏହି ଅତିଥିର ଉଚିତ ପରିଚୟ ଦେବ ।

---

# ମୋ ଦୃଷ୍ଟିରେ
# ସାଂପ୍ରତିକ କବିତାରେ
# ନୂତନ ଓ ପୁରାତନର ବିବାଦ

ଯଦୁନାଥ ଦାଶ ମହାପାତ୍ର

କାବ୍ୟ-କବିତା ସାହିତ୍ୟରେ 'ନୂତନ ଓ ପୁରାତନ'ର ବିବାଦ ସର୍ବଦା ଲାଗି ରହିଛି । ଏ ସତ୍ୟ ସବୁ ସାହିତ୍ୟ ପ୍ରତି ଯେପରି ପ୍ରଯୁଜ୍ୟ ଓଡ଼ିଆ ସାହିତ୍ୟ ପ୍ରତି ମଧ୍ୟ ସେହିପରି ପ୍ରଯୁଜ୍ୟ । ଉପେନ୍ଦ୍ର ଭଞ୍ଜ ଯେତେବେଳେ କବିତା ଲେଖିଲେ, ସେ ସେତେବେଳେ ଓଡ଼ିଆ କାବ୍ୟ କବିତାରେ ଏକ ନୂତନ ଯୁଗ ସୃଷ୍ଟି କଲେ, ଅର୍ଥାତ୍ ତାଙ୍କ ସମୟରେ ପ୍ରଚଳିତ ଥିବା ବହୁଳ କାବ୍ୟ କବିତାରୁ ତାଙ୍କ ସୃଷ୍ଟି ଥିଲା ଏକ ବ୍ୟତିକ୍ରମ । ସେହିପରି ରାଧାନାଥ ଯେତେବେଳେ ତାଙ୍କର କାବ୍ୟ-କବିତାମାନ ରଚନା କଲେ, ସେତେବେଳେ ଓଡ଼ିଆ କବିତାରେ ସଂସ୍କୃତ ବାହୁଲ୍ୟ ପ୍ରବଳ ଥିଲା ଏବଂ କଥାବସ୍ତୁ ମଧ୍ୟ ରାଜାରାଣୀ ଦେବାଦେବୀ ପ୍ରଭୃତିଙ୍କୁ ନେଇ ରଚିତ ହେଉଥିଲା । ରାଧାନାଥ ତାଙ୍କ ସମସାମୟିକ କାବ୍ୟ ସାହିତ୍ୟରେ ଆଧୁନିକତା ଭରି ଆଉ ଏକ ନୂତନ ଯୁଗ ସୃଷ୍ଟି କଲେ । ଇନ୍ଦ୍ରଧନୁ ଓ ବିଜୁଳିର ପରସ୍ପର ପ୍ରତି ଆକ୍ରମଣ ଏହାର ଜ୍ୱଳନ୍ତ ଦୃଷ୍ଟାନ୍ତ । ରାଧାନାଥ, ଫକୀରମୋହନ, ମଧୁସୂଦନ ପ୍ରମୁଖ ସେତେବେଳେ ଜନ୍ମଗ୍ରହଣ କରି ନ ଥିଲେ, ଓଡ଼ିଆ ଭାଷା, ଓଡ଼ିଆ ସଂସ୍କୃତି ହୁଏତ ଆଜି ନ ଥାନ୍ତା । କ୍ରମାନୁସାରେ ସେହିପରି ଦେଖିବାକୁ ଗଲେ ସତ୍ୟବାଦୀ ସାହିତ୍ୟ, ସବୁଜ ସାହିତ୍ୟ ପ୍ରଭୃତି ପ୍ରଚଳିତ ସାହିତ୍ୟଠାରୁ ଭିନ୍ନ ଥିବାରୁ ତାହା ସେ ସମୟରେ ଆଧୁନିକ ସାହିତ୍ୟ ଭାବରେ ପରିଗଣିତ ହେଉଥିଲା । ଆଜି ଯାହା ଆଧୁନିକ କାଳର, ଗତି ଅନୁସାରେ ତାହା ପୁରାତନରେ ପରିଗଣିତ ହୁଏ । ସଚି ରାଉତରାୟଙ୍କର

କାବ୍ୟ-କବିତା ବହୁ ଆଧୁନିକ ଓଡ଼ିଆ କବିଙ୍କୁ ସେ ସମୟରେ ପ୍ରେରଣା ଦେଇଥିଲା । ତାଙ୍କର ବାଜିରାଉତ ଓ ଅନ୍ୟାନ୍ୟ ଖଣ୍ଡ କବିତାମାନ ଓଡ଼ିଆ କବିତାକୁ ତତ୍‌ପୂର୍ବ ସାହିତ୍ୟରୁ ମୁକ୍ତ କରି ସୃଷ୍ଟି କରିଥିଲା ଏକ ନୂତନ ଦିଗନ୍ତ । ବିନୋଦ ନାୟକ, ଅନନ୍ତ ପଟ୍ଟନାୟକ, ରାଧାମୋହନ ଗଡ଼ନାୟକ ପ୍ରାକ୍‌-ସ୍ୱାଧୀନତା ଯୁଗରେ ଆଧୁନିକ କାହିଁକି ଅତ୍ୟାଧୁନିକ କବି ହିସାବରେ ପରିଗଣିତ ହେଉଥିଲେ । ଯୁଦ୍ଧ ପରବର୍ତ୍ତୀ କାଳରେ କାବ୍ୟକବିତାର ଧାରା କେତେକାଂଶରେ ପରିବର୍ତ୍ତିତ ହେଲା ଏବଂ ସେ ସମୟର ବହୁ କବି ଆଜି ଓଡ଼ିଆ ସାହିତ୍ୟରେ ସ୍ୱୀକୃତ । ସେତେବେଳେ ଗୁରୁପ୍ରସାଦ ମହାନ୍ତି, ଗୋପାଳ ଚନ୍ଦ୍ର ମିଶ୍ର, ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ), ବେଣୁଧର ରାଉତ, ଚିନ୍ତା-ମଣି ବେହେରା, ଦୁର୍ଗାମାଧବ ମିଶ୍ର, ଦୁର୍ଗାଚରଣ ପରିଡ଼ା, ବିଦ୍ୟୁତ୍‌ପ୍ରଭା ଦେବୀ ପ୍ରମୁଖ ଏବଂ ଏମାନଙ୍କ ଅନନ୍ତରରେ କୃଷ୍ଣଚରଣ ବେହେରା, ରମାକାନ୍ତ ରଥ, ବ୍ରଜନାଥ ରଥ, ସୀତାକାନ୍ତ ମହାପାତ୍ର, ସୌଭାଗ୍ୟ ମିଶ୍ର, ପରେଶ ରାଉତ, ତୁଳସୀ ଦାସ ପ୍ରଭୃତି ଆଧୁନିକ କବି ହିସାବରେ ଯଥେଷ୍ଟ ଖ୍ୟାତି ଅର୍ଜନ କରିଥିଲେ । ବର୍ତ୍ତମାନ ପୂର୍ବପ୍ରଚଳିତ କବିତାର ଧାରା ବଦଳି ଯିବାକୁ ବସିଛି । ଅତ୍ୟାଧୁନିକ ବହୁ କବିଙ୍କ କବିତା ଏହାର ସୁସ୍ପଷ୍ଟ ପ୍ରମାଣ । ବର୍ତ୍ତମାନର ଧାରା ଯେ ସବୁଦିନ ପାଇଁ ନୂତନ ହୋଇ ରହିବ, ତାହା ମଧ୍ୟ ନୁହେଁ । କାଳର ଗତିରେ ଏ ମଧ୍ୟ ପୁରୁଣା ହେବ । ଆଜି ଯେଉଁମାନେ Angry young man ବା hungry generation ସେମାନେ ବି କେତେ ବର୍ଷ ପରେ ହେବେ outdated, ପୁଣି ହେବେ old fossils— ଧୃଷ୍ଟ୍ୟ ପୁରାତନ । ସମାଜ ଯଦି ବଦଳୁ ନ ଥାନ୍ତା—ସ୍ଥିର ଭାବରେ ଆବହ-ମାନ କାଳରୁ ରହି ଆସୁଥାନ୍ତା—ନୂତନ ପୁରାତନ ସମସ୍ୟାର ଉଦ୍ଭବ ହେଉ ନ ଥାନ୍ତା, ତେବେ ସାହିତ୍ୟ ବା କବିତାର ପରିବର୍ତ୍ତନ ହେଉ ନ ଥାନ୍ତା । କାଳିଦାସ ବା ଉପେନ୍ଦ୍ର ଭଞ୍ଜ ଯେଉଁ ସମୟରେ କବିତା ରଚନା କରିଥିଲେ, ସେହି ସମୟର ସାମନ୍ତବାଦୀ ସମାଜ ଆଜି ଯଦି ଥାନ୍ତା, ତେବେ ଆଜି ମଧ୍ୟ ଆମେ ସେହି ମେଘଦୂତ ବା ଲାବଣ୍ୟବତୀ ସୃଷ୍ଟି କରୁଥାନ୍ତେ । ମାତ୍ର କାଳିଦାସଙ୍କ ପରେ କ୍ରମଶଃ ସମାଜର ଅଦ୍ଭୁତ ପରିବର୍ତ୍ତନ ହୋଇଛି । ଏ ପରିବର୍ତ୍ତନ ଯୁଦ୍ଧୋତ୍ତର ଯୁଗରେ ଅତ୍ୟନ୍ତ କ୍ଷିପ୍ର । ସମାଜର ଯନ୍ତ୍ରଣା ଆଜି ଯୁବ-ପ୍ରାଣକୁ ଅହରହ ବ୍ୟଥିତ କରୁଛି । ଦେଶର ଅର୍ଥନୈତିକ ସମସ୍ୟାର ପ୍ରଭାବ ମଣିଷର ମନ ଉପରେ ଯଥେଷ୍ଟ ପ୍ରଭାବ ବିସ୍ତାର କରିଛି । ଆଜି କବି ତା'ର ଭବିଷ୍ୟତକୁ ଅନ୍ଧକାରମୟ ଦେଖୁଛି । ବିଶ୍ୱବିଦ୍ୟାଳୟ

ଶିକ୍ଷାଲାଭ ପରେ ତାର ଜୀବନ ଧାରଣର ପନ୍ଥା କଣ ? ତା'ର ବୃଦ୍ଧ ପିତା-ମାତା ନାବାଳକ ଭାଇଭଉଣୀ ମୁହଁରେ ସେ ଆହାର ଦେବ କିପରି ? ସମାଜରେ କେତେକ ଲୋକ ଶୀତାତପ ନିୟନ୍ତ୍ରିତ ହିତଳ ପ୍ରାସାଦରେ ଭୋଗବିଳାସରେ ଲିପ୍ତ ରହିବେ ଆଉ ବେଶ୍ ଯନ୍ଥୋଷ୍ଟ ଲୋକ ହା'ଅନ୍ନ ଚିତ୍କାର କରି ଫୁଟ୍‌ପାଥରେ ଆଶ୍ରୟ ନେବେ—ଏ ଦ୍ୱନ୍ଦ୍ୱର ସମାଧାନ କେଉଁଠି ? Young man ଆଜି hungry, ତେଣୁ ସେ angry ହେବା ସ୍ୱାଭାବିକ । ତେଣୁ ସେ ଖୋଜୁଛି ଭଗବାନଙ୍କୁ ତୁଚ୍ଛବିଦ୍ଧ କରିବାକୁ, ତେଣୁ ସେ ଚାହୁଁଛି ସମାଜକୁ ଭାଙ୍ଗି ନୂତନ କିଛି ସୃଷ୍ଟି କରିବ । ତେଣୁ ତା'ର କବିତା ଆଜି ପରମ୍ପରାରୁ ବିଚ୍ୟୁତ । ତା'ର ଭାଷା ଦୁର୍ବୋଧ । ସେ ଚାହେଁ ଆଜି ସଂଗ୍ରାମ କରିବାକୁ । ଏଇଟା ତା'ର ଦୋଷ ନୁହେଁ—ଯୁଗର ଦୋଷ । ଯେଉଁମାନେ ଦିନେ ଏଭଳି ପ୍ରଚଳିତ ସମାଜ ଉପରେ ପ୍ରଚଣ୍ଡ ଆକ୍ରମଣ କରୁଥିଲେ, ସେମାନେ ପୁଣି ଅର୍ଥନୀତି କ୍ଷେତ୍ରରେ ପ୍ରତିଷ୍ଠିତ ହେବା ପରେ ସେମାନଙ୍କ ଚିନ୍ତା ସହିତ କବିତାର ଧାରାକୁ ବଦଳାଇ ଦେଲେ । ଅତୀତରେ ଥିଲା ମନୁଷ୍ୟ ଏକ ସାମାଜିକ ଜୀବ । ପରେ ପୁଣି ହେଲା ମନୁଷ୍ୟ ଏକ ରାଜନୈତିକ ଜୀବ । ବର୍ତ୍ତମାନ ପୁଣି ମଣିଷ ଏକ ଅର୍ଥନୈତିକ ଜୀବରେ ପରିଣତ ହେଲାଣି । ପ୍ରଚଳିତ ଅର୍ଥନୈତିକ ବ୍ୟବସ୍ଥା ମଣିଷ ଜୀବନକୁ ଯେପରି ପ୍ରଭାବିତ କରେ, ଅନ୍ୟ କୌଣସି ଚିନ୍ତା ତାକୁ ଏତେ ମାତ୍ରାରେ ପ୍ରଭାବିତ କରିପାରେ ନାହିଁ । ସେ ଯାହା କରନ୍ତୁ ନା କାହିଁକି, କବିତା ନିଶ୍ଚିତ ଭାବରେ ଯୁଗାଶ୍ରୟୀ ଏବଂ ଯୁଗର ଛବି ଉପରେ ପ୍ରତିଫଳିତ ହେବା ସ୍ୱାଭାବିକ । ତେଣୁ କବିତା କ୍ଷେତ୍ରରେ କେହି କାହାକୁ ଦୋଷାରୋପ କରିବାର କୌଣସି କାରଣ ନାହିଁ । ଆଜିକାର Angry young man ଅମୁକ ଦାସ ଯଦି ଉପେନ୍ଦ୍ର ଭଞ୍ଜଙ୍କ ଯୁଗରେ ଅମୁକ ଭଞ୍ଜଦେଓ ହୋଇ ଓଡ଼ିଶାର କୌଣସି ରାଜଗଡ଼ରେ ଜନ୍ମଗ୍ରହଣ କରିଥାନ୍ତେ, ସେ ମଧ୍ୟ 'ଲାବଣ୍ୟବତୀ' ପରିବର୍ତ୍ତେ 'ମଉନାବତୀ' ବା 'କନକାବତୀ' ବା 'ଲାଜବତୀ' ଏଇଭଳି କିଛି କାବ୍ୟ ଅନୁପ୍ରାସ ଯମକ ଦେଇ ରଚନା କରିଥାଆନ୍ତେ ।

ଆଜିକାଲି ସାହିତ୍ୟ କ୍ଷେତ୍ରରେ ନୁହେଁ, ପରସ୍ପରକୁ ଗାଳିଦେବା, ନିନ୍ଦା କରିବା, ନ୍ୟୂନ କରିବା ଏ ଯୁଗର ଧର୍ମ ହୋଇଛି । ଶିକ୍ଷାକ୍ଷେତ୍ରରେ, ଶାସନକ୍ଷେତ୍ରରେ, ରାଜନୀତିକ୍ଷେତ୍ରରେ ସର୍ବତ୍ର ଏଇ ଭାବ । ଦଳାଦଳି ଗୋଷ୍ଠୀବିବାଦ । ହୁଏ ତ ଏଇ ବାଦବିସମ୍ବାଦ ବିଭିନ୍ନ କ୍ଷେତ୍ରରେ ଆମ

ପ୍ରଗତିର ଅନ୍ତରାୟ ହେଉଛି । ଏହାଦ୍ୱାରା ଉଭୟ ଗୋଷ୍ଠୀର କ୍ଷତି ହେଉଛି— କ୍ଷତି ହେଉଛି ସମାଜ ତଥା ଦେଶର । ଏହିଭଳି ବିବାଦ ନ ଥିଲେ ଏକ ଶାନ୍ତ ପରିବେଶ ମଧ୍ୟରେ ଅଗ୍ରଗମନର ଦଣ୍ଡଯାତ୍ରା ହୁଏ ତ ସୁଗମ ହୁଅନ୍ତା । ଅନ୍ୟ ବିଷୟକୁ ବାଦ୍ ଦେଇ ଏହି ପରିପ୍ରେକ୍ଷୀରେ ବର୍ତ୍ତମାନ ଯୁଗର କବିତା କଥା ଆଲୋଚନା କରାଯାଉ । କବିଙ୍କର ଯେ କୌଣସି ଦାୟିତ୍ୱ ନାହିଁ, ତାହା ନୁହେଁ । ଦେଶ ତଥା ସମାଜକୁ ଗଠନ କରିବା ଦିଗରେ କବିଙ୍କର ଗୁରୁ ଦାୟିତ୍ୱ ରହିଛି । କବିତା ଯୁଗାଶ୍ରୟୀ ହେଲେ ମଧ୍ୟ କବି ଯୁଗସ୍ରଷ୍ଟା ଓ ଦୂରଦ୍ରଷ୍ଟା । ଓଡ଼ିଶାର ସାମାଜିକ ଜୀବନ ସେହି ପୁରୁଣା ଆଇମା' ଯୁଗରେ ରହିଛି । ଖାଲି ଓଡ଼ିଶା କାହିଁକି, ଭାରତବର୍ଷ ପକ୍ଷରେ ମଧ୍ୟ ଏହା ପ୍ରଯୁଜ୍ୟ । ସମାଜରେ ଆଜି ବହୁ ସମସ୍ୟା । ଓଡ଼ିଶାର ବଣ ଜଙ୍ଗଲରେ ଅର୍ଦ୍ଧନଗ୍ନ— ନଗ୍ନ ଅସଭ୍ୟ ମଣିଷ ମଧ୍ୟ ଆଜି ଏ ଦେଶର ଅଧିବାସୀ । ଗାଁ ଗହଳରେ ଅଗଣିତ ନରନାରୀ ଦୁଇ ଓଳି ଗଣ୍ଡେ ଖାଇବାକୁ ପାଆନ୍ତି ନାହିଁ । ଯୁବତୀ ଝିଅ ବସ୍ତ୍ର ଅଭାବରୁ ତା'ର ଲଜ୍ଜା ଢାଙ୍କିପାରେ ନା, ଶିକ୍ଷିତ ଯୁବକ ବେକାର ହୋଇ ଆତ୍ମହତ୍ୟା କରେ । ଓଡ଼ିଶାର ବହୁ କ୍ଷେତ୍ରରେ ଓଡ଼ିଆ ଆଜି ଅବ- ହେଳିତ । ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା ଓ ସଂସ୍କୃତିକୁ ହତ୍ୟା କରିବା ପାଇଁ ଅହରହ ଷଡ଼ଯନ୍ତ୍ର । ଏଇସବୁ ବିବିଧ ସମସ୍ୟା ଆଜି ଓଡ଼ିଶାର ସାମାଜିକ ଜୀବନରେ ଆଣିଛି ଘୋର ଅଶାନ୍ତି—ଏତଦ୍‌ବ୍ୟତୀତ ହିନ୍ଦୀ ସାମ୍ରାଜ୍ୟବାଦର ଗୃପ ଫଳରେ ବିଭିନ୍ନ ପ୍ରାନ୍ତୀୟ ଭାଷା ମଉଳି ପଡ଼ୁଛି । ଓଡ଼ିଆ କବି—ଯାହାର ଚିନ୍ତା ନୂତନ ଆଲୋକରେ ଉଦ୍‌ଭାସିତ—ଯାହାର ଭାଷା ଭବିଷ୍ୟତ ପାଇଁ ଦିଗ୍‌ଦର୍ଶନ ଦେବ, ସେ ଏସବୁ ଦିଗ ପ୍ରତି ସଚେତନ ହେବା ଉଚିତ ।

ଓଡ଼ିଆ କବିତା ଆଜି ଘୋର ସମସ୍ୟାର ସମ୍ମୁଖୀନ । ଯେତେ ଯାହା କହିଲେ ମଧ୍ୟ କବିତା ଆଜି ସର୍ବଜନାଦୃତ ଓ ସର୍ବଜନ ପାଠ୍ୟ ହୋଇନାହିଁ । ୧୯୭୨ରେ ଯଦି କୌଣସି ଓଡ଼ିଆ କବିଙ୍କର ଏକ ପୁସ୍ତକ ୧୦୦୦ ଖଣ୍ଡ ଛପାଗଲା, ତେବେ ଏଇତକ ବହିକୁ ବିକି କରିବା ପାଇଁ ୧୦ ବର୍ଷରୁ ଯେ ଊର୍ଦ୍ଧ୍ୱ ଲାଗିବ ଏଥିରେ ସନ୍ଦେହ ନାହିଁ । କବି କବିତା ଲେଖେ କ'ଣ ପବନ ଖାଇ ବଞ୍ଚିବା ପାଇଁ ? ନୂତନ ସୃଷ୍ଟି ପାଇଁ ଯଥେଷ୍ଟ ପ୍ରେରଣା ତା'ର ଆବଶ୍ୟକ । ସେ ପ୍ରେରଣା ଆର୍ଥିକ ଓ ବୌଦ୍ଧିକ ଉଭୟ ଦିଗରୁ । ଲେଖି କରି ସେ ବଞ୍ଚିବାର ଖୋରାକ ଓ ପ୍ରଶଂସା ଉଭୟ ପାଇବ । ତାହାହେଲେ ଯାଇ ସେ ନୂତନ କବିତା ସୃଷ୍ଟି କରି

ପାରିବ । ଓଡ଼ିଶା ଦେଶରେ କେତେଜଣ କବିଙ୍କ ଭାଗ୍ୟରେ ଏହା ଘଟେ ? ଯେଉଁମାନେ ହୁଏ ତ କବିତା ଲେଖା ଛାଡ଼ି ବିଗିଦିଆ ପାଠ୍ୟ ପୁସ୍ତକ ପାଇଁ ଲେଖନ୍ତି, ସେମାନେ ହୁଏ ତ ଆର୍ଥିକ ଦୃଷ୍ଟିରୁ ଲାଭବାନ୍ ହୁଅନ୍ତି; କିନ୍ତୁ କବିତ୍ୱ ଦୃଷ୍ଟିରୁ ସେମାନଙ୍କର ଅପମୃତ୍ୟୁ ହୁଏ । ଏ ଦୃଷ୍ଟାନ୍ତ ଓଡ଼ିଶାରେ ଅଛି । ଏ ସମସ୍ୟା କେବଳ ଅତ୍ୟାଧୁନିକ କବିଙ୍କର ନୁହେଁ । ସ୍ୱାଧୀନତାର ଠିକ୍ ପରବର୍ତ୍ତୀ ଓ ପୂର୍ବବର୍ତ୍ତୀ ପ୍ରତ୍ୟେକ କବିଙ୍କର ଏ ସମସ୍ୟା । ଶିକ୍ଷିତ ଓଡ଼ିଆ ଲୋକେ ମୁହଁରେ ବହୁତ ଆଦର୍ଶ କଥା କହନ୍ତି—ପ୍ରତ୍ୟହ ହୁଏ ତ ଦଶ ପ୍ୟାକେଟ୍ ଫିଲ୍ଟର ଟିପ୍ଡ଼ ଉଇଲସ୍ ଫୁଙ୍କି ଉଡ଼ାଇ ଦିଅନ୍ତି । କିନ୍ତୁ କେତେ ଖଣ୍ଡ ଓଡ଼ିଆ କବିତା ବହି କିଣି ପଢ଼ନ୍ତି ? ବଙ୍ଗଦେଶ, ତାମିଲ୍‌ନାଡ଼ୁ, ମହାରାଷ୍ଟ୍ର, କେରଳ ପ୍ରଭୃତି ରାଜ୍ୟରେ ଶିକ୍ଷିତ ଲୋକଙ୍କର ନିଜ ଅଞ୍ଚଳ ସାହିତ୍ୟ ପ୍ରତି ଏତେ ଅନିଚ୍ଛା ଭାବ ନାହିଁ, ଯାହା କି ଓଡ଼ିଶାରେ ଅଛି । ଓଡ଼ିଶାର ଶିକ୍ଷିତ ସମାଜକୁ ଓଡ଼ିଆ ବହି ପ୍ରତି ଆଗ୍ରହୀ କରିବାକୁ ପଡ଼ିବ । ଗ୍ରାମେ ଗ୍ରାମେ ପୁସ୍ତକାଗାର ପ୍ରତିଷ୍ଠା କରି ଓଡ଼ିଆ ପାଠକସଂଖ୍ୟା ବୃଦ୍ଧି କରିବାକୁ ପଡ଼ିବ । ଏଇଠି ମୁଁ କହିରଖେ, ପ୍ରତ୍ୟେକ ଶ୍ରେଣୀର କବିତା ପାଇଁ ପାଠକ ଅଛନ୍ତି । ଯଦି ନ ଥାନ୍ତି, ତେବେ ସୃଷ୍ଟି କରିବାକୁ ପଡ଼ିବ । ପ୍ରେମ-କବିତା ପାଇଁ ନିଶ୍ଚିତ ପାଠକ କିଛି ଥିବେ, ବିପ୍ଳବ କବିତା ପଢ଼ିବା ପାଇଁ ମଧ୍ୟ ସେହିଭଳି ଆଉ କେତେକ ପାଠକ ଥିବେ । ସେହିଭଳି ହାସ୍ୟରସ, ପାଣ୍ଡିତ୍ୟପୂର୍ଣ୍ଣ ଯମକ ଅଳଙ୍କାରଯୁକ୍ତ କବିତା ପଢ଼ିବା ପାଇଁ ସ୍ୱତନ୍ତ୍ର ପାଠକ ଅଛନ୍ତି । ସେ ସମସ୍ତଙ୍କୁ ଯେ ଯାହାର ଚିନ୍ତାରେ ଅଗେଇ ନେବାକୁ ପଡ଼ିବ ।

ପ୍ରଶ୍ନ ହେଉଛି ଏସବୁ ହେବ କେମିତି ? କିଏ କରିବ ? ଏ ପ୍ରଶ୍ନର ଆଜି ସମାଧାନ ହେବା ଦରକାର । ତାହାହେଲେ ଯାଇ ଆଉ ଅଧିକ କବିତା ରଚନା କରିପାରିବା—କବିତା ରଚନା କରି ବଞ୍ଚି ମଧ୍ୟ ପାରିବା ।

କବି ଯଦି ବିବଦମାନ ଅବସ୍ଥାରେ ରହେ—ପରସ୍ପର ଭିତରେ ଯୁଦ୍ଧ ଘୋଷଣା କରେ, ତେବେ ପାଠକମାନେ ସ୍ୱତଃ ସେମାନଙ୍କଠାରୁ ଦୂରେଇ ଯିବେ । ଆମ ଯୁଦ୍ଧରେ ସେମାନେ କାହିଁକି ଅଯଥା ଭାଗୀଦାର ହେବେ ? ଏଭଳି ଭାଗୀଦାର ହେବାର ଆବଶ୍ୟକତା ବା ସେମାନଙ୍କ ପାଖରେ କ'ଣ ଅଛି ?

କବି ସଚ୍ଚି ରାଉତରାୟ ବା କବି ରମାକାନ୍ତ ରଥଙ୍କ ସହିତ କବି ରବି ସିଂ ବା କବି ପ୍ରସନ୍ନ କୁମାର ପାଟଶାଣୀଙ୍କର ବିବାଦ ହେବାର

କୌଣସି ଦୃଶ୍ୟମାନ କାରଣ ନାହିଁ । ଦୃଷ୍ଟିଭଙ୍ଗୀର ପାର୍ଥକ୍ୟ ମନାନ୍ତରର କାରଣ ହେବା ସବୁ ସମୟରେ ଅବଧେୟ । ଆମେ କବି ହେଲେ ମଧ୍ୟ ସାମାଜିକ ତଥା ରାଷ୍ଟ୍ରୀୟ ଜୀବ । ଏକ ରାଷ୍ଟ୍ରରେ ବହୁ ଭାଷାଭାଷୀ, ବହୁ ଧର୍ମ, ବହୁ ମତର ଲୋକ ଏକତ୍ର ଶାନ୍ତିପୂର୍ଣ୍ଣ ସହାବସ୍ଥାନ କରିପାରୁଛନ୍ତି—ସମାଜରେ ପରିବାରରେ ବୃଦ୍ଧ ଜରଦ୍‌ଗବ ପିତାଙ୍କ ସହିତ ଅତ୍ୟାଧୁନିକ କଲେଜପଢ଼ୁଆ ଏ ଯୁଗୀୟ ପୋଷାକ ପରିହିତ ପୁତ୍ର ସହାବସ୍ଥାନ କରିପାରୁଛି—ସହର ବଜାରରେ ଲୁଗା, ତେଜରାତି, ଜଳଖିଆ ଓ ମାଛ ଦୋକାନୀ ଏକତ୍ର ବସିପାରୁଛନ୍ତି, ଏ ସ୍ଥଳେ ଆମେ ସବୁ କବି ଏକତ୍ର ବସି ଆମ ବଞ୍ଚିବାର ଯୋଜନା ଓ ଆମ ଭାଷା ସଂସ୍କୃତିର ବଞ୍ଚିବାର ଯୋଜନା କଲେ କ୍ଷତି କ'ଣ ହୁଅନ୍ତା ?

ଆମ ପାଇଁ କିଏ କରିବ ? ପ୍ରକାଶକ ? ସେ ତ ବ୍ୟବସାୟୀ ସରକାର୍ ? ତାଙ୍କର ଯୁକ୍ତି ଆଗେ ଲୋକଙ୍କୁ ମୁଠାଏ ଖାଇବାକୁ ନ ଦେଇ ପାରିବା ପର୍ଯ୍ୟନ୍ତ କବିତା ଚିନ୍ତା କରିବାକୁ ବେଳ କାହିଁ ? ଆଗ ଜମିରେ ପାଣି ଦେବା, ଗାଁକୁ ବିଜୁଳି ଦେବା—ସ୍ୱାସ୍ଥ୍ୟ ପାଇଁ ଡାକ୍ତରଖାନା ଦେବା ଇତ୍ୟାଦି ଇତ୍ୟାଦିର ଦାୟିତ୍ୱ ସରକାରଙ୍କର । କାରଣ ଏ ହେଲା ନାଗରିକମାନଙ୍କର ପ୍ରଥମ ଗୃହିଦା । ଏସବୁ ହେଲେ ସିନା ଆମେ କବିତା କଥା ଚିନ୍ତା କରିବୁ ? ଆଜି ଏ ଦେଶର ଅଗଣିତ ନାଗରିକ—ସେଇମାନେ ଉଦ୍‌ବୁଦ୍ଧ ହେଲେ କବିତା ବଞ୍ଚିବ —କବି ଆଶ୍ୱସ୍ତିର ନିଃଶ୍ୱାସ ମାରିବ । ସେଇମାନଙ୍କୁ କବିତା-ଚେତନଶୀଳ କରିବା ପାଇଁ ଆଜି କବି-ମାନେ ଐକ୍ୟବଦ୍ଧ ହୋଇ କାମ କରିବା କ'ଣ ଉଚିତ ନୁହେଁ ? ଆଜି ପରା କୃଷକ ସମାଜ ଐକ୍ୟବଦ୍ଧ, ଶିଳ୍ପପତି ଐକ୍ୟବଦ୍ଧ, ମଟର ମାଲିକ ଐକ୍ୟ-ବଦ୍ଧ, ଶ୍ରମିକ ସମାଜ ଐକ୍ୟବଦ୍ଧ, ରିକ୍‌ସାଚାଳକ ଐକ୍ୟବଦ୍ଧ, ଛାତ୍ର, ଶିକ୍ଷକ, ଅଧ୍ୟାପକ, ଇଂଜିନିୟର, ଡାକ୍ତର ସଭିଏଁ ନିଜ ପାଇଁ ଐକ୍ୟବଦ୍ଧ । ତେଣୁ ପୁରାତନ ଓ ନୂତନ ଅଯଥା ବିବାଦରୁ ମୁକ୍ତିଲାଭ କରି ଯୁଗ-ଜୟୀ କବିତାକୁ ଓ ତା'ର ସ୍ରଷ୍ଟା ତଥା ସମାଜ ଓ ଜାତିକୁ ବଞ୍ଚାଇ ରଖିବା ପାଇଁ ଆମେ ସମସ୍ତେ ଶପଥବଦ୍ଧ ହେବା, ଓଡ଼ିଆ କବିତାକୁ ଜନପ୍ରିୟ କରାଇବା ଓ ପାଠକ ବୃଦ୍ଧି କରାଇବାର ଯୋଜନା କରି ନିର୍ଦ୍ଦିଷ୍ଟ ପନ୍ଥା ଗ୍ରହଣ କରିବା ।

———

# ମୋ ଦୃଷ୍ଟିରେ

## ସାଂପ୍ରତିକ କବିତା—ଏକ ବିହଙ୍ଗଦୃଷ୍ଟି

ଜ୍ଞାନୀନ୍ଦ୍ର ବର୍ମା

ବିବର୍ତ୍ତନର ଭିତ୍ତିରେ ଆଧୁନିକ ସାହିତ୍ୟରେ ବିକାଶ ଘଟିଯିବାରେ ଲାଗିଛି । ସେହି ବିକାଶ ପୂର୍ବବର୍ତ୍ତୀ ସାହିତ୍ୟଠାରୁ ଉତ୍କୃଷ୍ଟ କିମ୍ବା ନିକୃଷ୍ଟ, ତାହା ବର୍ତ୍ତମାନ ସହଜରେ କହିହେବ ନାହିଁ । କାରଣ, ଆମେ ଯେଉଁ ପୂର୍ବବର୍ତ୍ତୀ ସାହିତ୍ୟକୁ ଛାଡ଼ି ଆସିଛୁ, ତାହାର ବ୍ୟାପ୍ତି ଓ ଅବଦାନ ଏପରି ବିଶାଳ ଯେ ଆଧୁନିକ ସାହିତ୍ୟର ସୃଷ୍ଟି ତାହାର ସମକକ୍ଷ ହେବାକୁ ଅନେକ କାଳ ଲାଗିଯିବ । ଆଜି ମଧ୍ୟ ପୂର୍ବବର୍ତ୍ତୀ ସାହିତ୍ୟରେ ସମକକ୍ଷତା ଲାଭ କରିବା ଯାଏ ଅଜର ପ୍ରୟୋଗବାଦୀ ଆଧୁନିକ ସାହିତ୍ୟ ତିଷ୍ଠି ରହିବ କି ନା ସେ ବିଷୟରେ ମଧ୍ୟ ସନ୍ଦେହ ଦେଖା ଦେଇଛି ।

ଆଧୁନିକ ସାହିତ୍ୟ ବୋଲି ଆମେ ମୋଟାମୋଟି ଭାବରେ ମୋଟା ଧ୍ୱନି ଉଠାଇଲେ ମଧ୍ୟ ଆଧୁନିକ ସାହିତ୍ୟର ସବୁ ବିଭାବରେ ପ୍ରୟୋଗବାଦୀ ଧାରା ସେପରି ପୁଷ୍କଳ ଓ ସ୍ପଷ୍ଟ ନୁହେଁ । ହୁଏ ତ ସବୁ ବିଭାବ ପାଇଁ ପ୍ରୟୋଗବାଦୀ ଧାରା ଆବଶ୍ୟକ ନ ଥିବାରୁ ତାହା ସେପରି ସ୍ପଷ୍ଟ ହୋଇପାରୁ ନାହିଁ—ଯେତେଟା ସ୍ପଷ୍ଟ ହେଉଛି ଆଧୁନିକ କବିତାରେ । ତେଣୁ ଆଧୁନିକ ସାହିତ୍ୟ ସଂପର୍କରେ କିଛି କହିବାକୁ ଗଲେ ଆମକୁ ବିଶେଷ ଭାବରେ ଦୃଷ୍ଟିପାତ କରିବାକୁ ହୋଇଥାଏ ଆଧୁନିକ କବିତା ଉପରେ । ଯଦି ବିକାଶଟା ବିବର୍ତ୍ତନର ଅଭିମୁଖ୍ୟ ହୁଏ କିମ୍ବା ବିବର୍ତ୍ତନ ହୁଏ ବିକାଶର ଭିତ୍ତି, ତା' ହେଲେ ଆଧୁନିକ କବିତା ବର୍ତ୍ତମାନ ଯେଉଁ ରୂପ ଗ୍ରହଣ କରିଛି, ତାହାକୁ ବୈବର୍ତ୍ତନିକ ବିକାଶ କହିବାକୁ ପଡ଼ିବ । ସେ ଦୃଷ୍ଟିରୁ ଆମକୁ ଏହି ବିବର୍ତ୍ତନର ଭିତ୍ତି ମଧ୍ୟ

ଖୋଜିବାକୁ ପଡ଼ିବ । ଏ ଅନୁସନ୍ଧାନର ପଥରେ ଯାଇ ଆମକୁ ପ୍ରଥମେ ନନ୍ଦକିଶୋରଙ୍କ ପାଖରେ ପହଞ୍ଚିବାକୁ ହୋଇଥାଏ । ସେଠି ଆମେ ଆଧୁନିକ କବିତାର ଗୁଣାତ୍ମକ ବିକାଶର ପରିଚୟ କେତେକ ପରିମାଣରେ ପାଇ ପାରୁ । କିନ୍ତୁ ତାହାର ରୂପାତ୍ମକ ଦିଗ ପାଇବା ପାଇଁ ଆମକୁ ଗୁଡ଼ାଏ ଖାପ୍‌ଛଡ଼ାର ଡିଆଁ ମାରି ପଞ୍ଚଦଶ ଶତାବ୍ଦୀରେ ପହଞ୍ଚିବାକୁ ପଡ଼ିଥାଏ । ସେଠି ଆମେ ପାଉଁ ସାରଳା ଦାସଙ୍କୁ—ଦାଣ୍ଡିବୃତ୍ତର ବିଧାତା ।

ବିଦେଶୀ ପ୍ରଭାବ କଥା ଛାଡ଼ିଦେଲେ ଆମ ନିଜର ପରଂପରାରେ ଆମେ ସାରଳା ଦାସଙ୍କ ଦାଣ୍ଡିବୃତ୍ତର ଭିତ୍ତିରେ ପ୍ରଥମେ ସୃଷ୍ଟି କଲେ ଗଦ୍ୟ-କବିତା । ଏଠି ମଧ୍ୟ ରାଧାନାଥଙ୍କ ଅମିତ୍ରାକ୍ଷର ଛନ୍ଦକୁ ଆମର ଆଭିମୁଖ୍ୟ ପାଇଁ କିଛିଟା ସହାୟକ ରୂପେ ଗ୍ରହଣ କରାଯାଇପାରିବ ।

ଏହା ହେଲା ଆଧୁନିକ କବିତା ପାଇଁ ଆମ ପକ୍ଷରେ କେତେକ ପରିମାଣରେ ସହାୟକ ପନ୍ଥା । କିନ୍ତୁ ମନେ ରଖିବାର କଥା ଯେ, ଆଧୁନିକ କବିତା ଅର୍ଥରେ ମଧ୍ୟବର୍ତ୍ତୀ ଗଦ୍ୟକବିତାର ଧାରା ଏବେ ଆଉ ଅନୁସୃତ ହେଉନାହିଁ । ସେଥିପାଇଁ ଆଧୁନିକ କବିତାର ବାର୍ତ୍ତିମାନିକ ବିକାଶକୁ ସ୍ପଷ୍ଟୀକୃତ କରିବା ପାଇଁ ଅନେକେ ସାଂପ୍ରତିକ କବିତା କହୁଛନ୍ତି । କିନ୍ତୁ ଏପରି ନାମକରଣର ଯୁକ୍ତି ମଧ୍ୟ ବିଶେଷ ଦୃଢ଼ ନୁହେଁ । ତାହାର କାରଣ ହେଉଛି, ଯେ କୌଣସି ଯୁଗର କବିତା କଥା କୁହାଗଲେ ମଧ୍ୟ ତାହାକୁ ସେହି ଯୁଗର ସମ୍ପତ୍ତି ଭିତରେ ଅନ୍ତର୍ଭୁକ୍ତ କରିବାକୁ ପଡ଼ିବ । ସେହିହେତୁ ସେସବୁ ମଧ୍ୟ ସମ୍ପୃକ୍ତ ଯୁଗର ସାଂପ୍ରତିକତା ବୋଲି ଅବଶ୍ୟ ସ୍ୱୀକୃତି ଲାଭ କରିବ । ଆଉ ମଧ୍ୟ ସଂପ୍ରତିଟା କେବଳ ଆଜିର ନୁହେଁ, ଆସନ୍ତା କାଲିର ଯେ କୌଣସି ଦୀର୍ଘାୟିତ ପରିସରରେ ମଧ୍ୟ ସଂପ୍ରତିର ବିକାଶ ଘଟିବ । ସୁତରାଂ, ଏହି କାରଣରୁ ଆଧୁନିକ କବିତା କିମ୍ବା ସାଂପ୍ରତିକ କବିତା କୌଣସି ଉଦ୍ଦିଷ୍ଟ ନାମବାଚକର ଲକ୍ଷ୍ୟ ପୂରଣ କରିପାରିବେ ନାହିଁ ଏବଂ ଆମକୁ ତଥାପି, ଯୁକ୍ତିର ସମସ୍ତ ଅସିଦ୍ଧତା ସତ୍ତ୍ୱେ 'ଆଧୁନିକ କବିତା' କିମ୍ବା 'ସାଂପ୍ରତିକ କବିତା' ବୋଲି ଆଜିକାଲିର ଗଦ୍ୟଧର୍ମୀ ପଦ୍ୟକୁ ନାମ ଦେବାକୁ ହିଁ ପଡ଼ିବ ।

କବିତାର ପ୍ରଚଳିତ ପରଂପରାଠାରୁ ଭିନ୍ନତା ସୃଷ୍ଟି କରିବା ହେଉଛି ଆଧୁନିକ କବିତା ରଚନାର ମୁଖ୍ୟ ଧର୍ମ । ତେଣୁ ଏହି ଧର୍ମ ବିରୋଧରେ ଯେତେବେଳେ ଆଗାମୀର ଆହ୍ୱାନ ଆସିବ, ସେତେବେଳେ

ଅବସ୍ଥା କ'ଣ ହେବ ତାହା ମଧ୍ୟ ବିଚାର୍ଯ୍ୟ । ସ୍ଥଳବିଶେଷରେ ଏ ଆହ୍ୱାନ ମଧ୍ୟ ଆସିଲାଣି । ଯେଉଁଠି ଏ ଆହ୍ୱାନ ଆସିଛି, ସେଠି ଧ୍ୱନି ଉଠିଛି Back to Past, ଅର୍ଥାତ୍ ଅତୀତର କାବ୍ୟସମ୍ଭାର ପାଖକୁ ଚାଲ, ଏଜ୍ରା ପାଉଣ୍ଡଙ୍କ କ୍ୟାଣ୍ଟୋଜ୍ କିମ୍ବା ଟି. ଏସ୍. ଏଲିୟଟଙ୍କ ଓ୍ୱେଷ୍ଟଲାଣ୍ଡ ନୁହେଁ, ବେଶି ହେଲେ, ପାଉଣ୍ଡଙ୍କ କବିତାରୁ ପଢ଼ିଥିବା ଚୀନା କବିତାର ଅନୁବାଦ ଏବଂ ଏଲିୟଟଙ୍କ 'ମେରିନା' ।

ବାସ୍ତବିକ ଏ ଆହ୍ୱାନ ବଡ଼ ବିଚିତ୍ର । ଅନେକ ଦୂର ଆଗେଇ ଚାଲିଲା ପରେ ଆମେ ପୁଣି ଯିବା କୁଆଡ଼େ ? କୋଣାର୍କ ଘୋଡ଼ାର ଗ୍ରୀବାଭଙ୍ଗୀରେ ଗ୍ରେମିସ୍ କଳାର ସାଦୃଶ୍ୟ ଅଛି ବୋଲି ସମାଲୋଚକମାନେ ଯେତେ କହିଲେ ମଧ୍ୟ କୋଣାର୍କ ଘୋଡ଼ାକୁ ଏ ପର୍ଯ୍ୟନ୍ତ ଅସ୍ୱୀକାର କରା-ଯାଇ ନାହିଁ । ଆଜି ଆଧୁନିକ କବିତାର ଏ ଯେଉଁ ବିଚିତ୍ର ଶୋଭାଯାତ୍ରା ଆରମ୍ଭ ହୋଇଛି, ସେଥିରେ କ'ଣ କିଛି ହେଲେ ନାହିଁ—ଶିଳ୍ପ ଏବଂ କଳା-ନୈପୁଣ୍ୟ ? ଯଥେଷ୍ଟ ଅଛି । ଆଗାମୀର ଆହ୍ୱାନକୁ ମୁକାବିଲା କରିବା ପାଇଁ ଆମର ଆଧୁନିକ କବିତାରେ ଅଛି ବହୁ ବିକ୍ଷିପ୍ତ ଚିନ୍ତାର ଏକତ୍ର ସମାହାର ଏବଂ ବିକାଶଧର୍ମୀ କଳ୍ପିତ ଦୁର୍ବୋଧ୍ୟତା ଭିତରେ ରହିଛି ଏକ ରହସ୍ୟମୟ ଆକର୍ଷଣ, ଯାହା କି ଆମର ପ୍ରବୁଦ୍ଧ ବୁଦ୍ଧିଜୀବୀ ରୁଚିକୁ ପୂର୍ବବର୍ତ୍ତୀ ବହୁ କାବ୍ୟକବିତା ସନ୍ତୋଷ ଦେଇପାରି ନ ଥିଲା । ଏହା ସ୍ମରଣ କରି ମୁଁ ମୋର 'ରେନେସାଁ ଓ ଡିକାଡେନ୍ସର ଏପିକ୍'ରେ ଲେଖିଥିଲି ଫୁଲବଣ ଭିତରେ ମୂଷାର ପ୍ରଜାପତି ହୋଇଯିବା କବିତା ।

ଶିଶୁ ଆତ୍ମା ଓ ପ୍ରବୁଦ୍ଧ ବୁଦ୍ଧିଜୀବୀର ଆତ୍ମା ଭିତରେ ଯେଉଁ ତଫାତ୍ ରହିଛି, ତାହାର ମୀମାଂସା ପାଇଁ ଆମର ଆଧୁନିକ କବିତା କେତେକ ପରିମାଣରେ ଯେ ସାମର୍ଥ୍ୟ ପ୍ରକାଶ କରିଛି, ତାହା କେହି ଅସ୍ୱୀକାର କରି ପାରିବ ନାହିଁ । ଆଧୁନିକ କବିତାର ଲୋକପ୍ରିୟତା ଯେବେ ଅବଶ୍ୟ ଗୋଟାଏ ବଡ଼ ପ୍ରଶ୍ନ ଉଠୁଛି । ଏହା ଛଡ଼ା ଏ କବିତା ଗଣଭୋଗ୍ୟ ହେବାର ପ୍ରତିବନ୍ଧକ ଦେଖାଦେଇଛି ଗୋଷ୍ଠୀଗତ ଶିକ୍ଷାବିତମାନଙ୍କ ରଚନା-ପଦ୍ଧତି ଯେବେ ; ତାହାକୁ ହ୍ରାସ କରିବା ସଙ୍ଗେ ସଙ୍ଗେ ତଥାକଥିତଗଣଙ୍କୁ ମଧ୍ୟ ଭିନ୍ନ ପାରସ୍ପରିକ ରସର ଆସ୍ୱାଦନ ପାଇଁ ସ୍ତରପର୍ଯ୍ୟାୟରେ ଉନ୍ନୀତ କରିବାକୁ ପଡ଼ିବ । ଆମର ପୂର୍ବବର୍ତ୍ତୀ କାବ୍ୟ-କବିତାରେ ସବୁଗୁଡ଼ିକ ଯେପରି ଉତ୍କର୍ଷର ସ୍ପର୍ଶ ଲାଭରେ ସ୍ପନ୍ଦିତ ନୁହେଁ, ଆମର ଆଧୁନିକ କବିତାର ବହୁ ରଚନା ମଧ୍ୟ

ସେହି ପ୍ରଯୋଗଯୁକ୍ତ । ଆଧୁନିକ କବିତାର ଗୋଟିଏ ବଡ଼ ତ୍ରୁଟି ହେଉଛି, କୌଣସି ଜାତୀୟତାବୋଧର ଉଦ୍‌ବୋଧନ ଦେବା ପାଇଁ ଏହା ଅସମର୍ଥ । ଗୀତାର ନିଷ୍କାମଧର୍ମୀ ଯୁଦ୍ଧ ଆହ୍ୱାନ ଏବଂ ବୁଦ୍ଧଙ୍କ ସୂକ୍ଷ୍ମବାଣୀ ନିର୍ବାଣ ଧ୍ୱନି ତୋଳିବାର ଆକର୍ଷଣୀ ଶକ୍ତି ଏ କବିତାରେ ନାହିଁ । ସ୍ୱାଧୀନତା ଭିତ୍ତିରେ ବଳିଷ୍ଠ ବୀର-ଗାଥା ସୃଷ୍ଟି ପାଇଁ ଏହାର ଅନୁପଯୁକ୍ତତା ମଧ୍ୟ ପରିଲକ୍ଷିତ ହୁଏ । ଏସବୁ ପ୍ରତି ଆଧୁନିକ କବିତାର ଶକ୍ତିଶାଳୀ ଲେଖକ ଦୃଷ୍ଟି ଦେବା ଆବଶ୍ୟକ । ଆଧୁନିକ କବିତା ଚିନ୍ତାର ବ୍ୟାପକ ସମାହାର ପାଇଁ ଯେଉଁ ପ୍ରଶସ୍ତ କ୍ଷେତ୍ର ସୃଷ୍ଟି କରିଛି, ତାହା ତାକୁ ବହୁ କାଳ ଧରି ସ୍ମରଣୀୟ କରି ରଖିବ, ଏଥିରେ ସନ୍ଦେହ ନାହିଁ ।

---

## ମୋ ଦୃଷ୍ଟିରେ

# ସାଂପ୍ରତିକ କବିତା—ଏକ ଦୃଷ୍ଟିପାତ

ଅଧ୍ୟାପକ ଦୁର୍ଗାପ୍ରସନ୍ନ ପଣ୍ଡା

ସାହିତ୍ୟ-କ୍ଷେତ୍ରରେ କୌଣସି ଆନ୍ଦୋଳନ ବିନା ପାରମ୍ପରିକ ସୃଷ୍ଟିର ସ୍ଥାଣୁତ୍ୱକୁ ଭାଙ୍ଗିବା ଅସମ୍ଭବ । ସାହିତ୍ୟର ଇତିହାସ ପର୍ଯ୍ୟାଲୋଚନା କଲେ ଏହି ସତ୍ୟ ଉପଲବ୍ଧ ହୋଇଥାଏ । ଏକ ଯୁଗୀୟ ଚିନ୍ତାର ସ୍ଥାଣୁତ୍ୱ ବିରୋଧରେ ସ୍ୱର ଉତ୍ତୋଳନ ହେଉଛି ନୂତନ ଯୁଗ ସୃଷ୍ଟିର ଆଦ୍ୟ ବିକାଶ ପର୍ଯ୍ୟାୟ । କିନ୍ତୁ ଅତି ନିରପେକ୍ଷ ଦୃଷ୍ଟିକୋଣରୁ ବିଚାର କଲେ ଏହା ପ୍ରତୀତ ହୁଏ ଯେ ଶୂନ୍ୟତାରେ ନୂତନ ସାହିତ୍ୟ ସୃଷ୍ଟି କଦାପି କାଳେ ଆଧାରିତ ହୋଇ ନ ଥାଏ । ସାହିତ୍ୟର ଆଙ୍ଗିକ ଏବଂ ଆତ୍ମିକ ରୂପସମ୍ଭାର ସମ୍ପର୍କୀୟ ନୂତନ ଚିନ୍ତା ପୂର୍ବସୂରୀମାନଙ୍କ ଚିନ୍ତାର ବିବର୍ତ୍ତନ ମାତ୍ର । ଓଡ଼ିଆ ସାହିତ୍ୟ-କ୍ଷେତ୍ରରେ ପ୍ରୟୋଗବାଦ ଓ ରୂପକଳ୍ପବାଦ ବିଦେଶୀ ସାହିତ୍ୟ ଅନୁଶୀଳନର ଏକ ପ୍ରତ୍ୟକ୍ଷ ପ୍ରଭାବ । ଆନ୍ତର୍ଜାତିକ ସାହିତ୍ୟରେ ନୂତନ ଶୈଳୀର ପ୍ରତିଷ୍ଠା ପ୍ରତି ଓଡ଼ିଆ ସାହିତ୍ୟ ଶିଳ୍ପୀମାନେ ପୂର୍ଣ୍ଣ ପ୍ରାଣରେ ସମର୍ଥନ ଜଣାଇଥିବାରୁ ଆମ ସାହିତ୍ୟ ଆନ୍ତର୍ଜାତିକ ମର୍ଯ୍ୟାଦା ଲାଭ କରିବାକୁ ଯେ ଯୋଗ୍ୟ, ଏ ବିଷୟରେ ତର୍କ ବିତର୍କର ଅବକାଶ ଥାଇ ନ ପାରେ । ତେବେ ନୂତନ ସାହିତ୍ୟ, ବିଶେଷ କରି ନୂତନ କବିତା କ୍ଷେତ୍ରରେ ବିଭିନ୍ନମତ ପରିପୋଷିତ ବାଦ ବିସମ୍ବାଦର କାରଣ କ'ଣ ଏହା ଆଲୋଚନାସାପେକ୍ଷ ।

ସାହିତ୍ୟ-କ୍ଷେତ୍ରରେ ଅତିମାନବିକ ବୁଦ୍ଧିବାଦକୁ ଅସ୍ୱୀକାର କରି ଫରାସୀ ପ୍ରତୀକବାଦୀ କାବ୍ୟଗୁରୁ ଷ୍ଟିଫେନ୍‌ସ ମାଲମେ କହିଥିଲେ,

''ବୁଦ୍ଧି ଜୀବନର ରହସ୍ୟମୟ ତତ୍ତ୍ୱକୁ ପ୍ରକାଶିତ କରିବାକୁ ସମ୍ପୂର୍ଣ୍ଣ ଅସମର୍ଥ । ମାନବୀୟ ଚେତନାର ପ୍ରବହମାନତା ଯୋଗୁଁ କବିର ସମ୍ବେଦନଶୀଳତାକୁ

ପାଠକ ନିକଟରେ ପହଞ୍ଚାଇବାର ଏକମାତ୍ର ଉପାୟ ହେଉଛି ପ୍ରତୀକାତ୍ମକ ଭାଷା ବ୍ୟବହାର କରିବା । ମାନବୀୟ ଚେତନାର ଅନ୍ତର୍ମୁଖୀ ସ୍ୱରୂପ ନାନାବିଧ ସାମାଜିକ ବାଦ ବିସମ୍ବାଦ ଦ୍ୱାରା ପ୍ରଭାବିତ ହେଉଥିବାରୁ ଏହି ଚେତନାର ଦ୍ୟୋତକ 'ପ୍ରତୀକ'ଗୁଡ଼ିକ ମଧ୍ୟ ରହସ୍ୟମୟ ହେବା ଉଚିତ । ପ୍ରତୀକ ଅନୁଭୂତି ଗମ୍ୟ, ବୁଦ୍ଧିଗମ୍ୟ ନୁହେଁ ।"

(*Mallarmie*—Verse et Prose P.P. 184 ଦ୍ରଷ୍ଟବ୍ୟ)

ଫରାସୀ କାବ୍ୟଧାରା ଇଂରାଜୀ ବାଟେ ବିଭିନ୍ନ ସାହିତ୍ୟକୁ ନୂତନ ସୃଷ୍ଟି ପାଇଁ ଯଥେଷ୍ଟ ଅନୁପ୍ରେରଣା ଦେଇଛି । ତେଣୁ ସାହିତ୍ୟ କ୍ରମେ ସଙ୍କେତମୟ ହୋଇ ଉଠିଛି । କଳାସୃଷ୍ଟିରେ କବିଙ୍କ ଆତ୍ମୋପଲବ୍ଧି ମଧ୍ୟରେ ବିଶ୍ୱବେଦନା ଠୁଳୀଭୂତ ହୋଇଥାଏ ଏବଂ କବି ଏହି କାଳରେ ଦିବ୍ୟଦ୍ରଷ୍ଟା ହୋଇ ଉଠନ୍ତି । କବିପୁରୁଷର ଏହି ରହସ୍ୟାନୁଭୂତି ପାଇଁ ଭାଷା ସଙ୍କେତାତ୍ମକ ହେବା ଉଚିତ । (Axel's castle by Edmund Wilson pp 270 ଦ୍ରଷ୍ଟବ୍ୟ) । କବିତାରେ ପ୍ରତୀକ ପ୍ରୟୋଗ ସମ୍ପର୍କରେ ଯେଉଁମାନେ ସ୍ୱୀୟ ଚିନ୍ତନପ୍ରଣାଳୀ ପ୍ରଦର୍ଶନ କରିଯାଇଛନ୍ତି, ସେମାନେ ସମସ୍ତେ ଅନୁଭୂତି ଉପରେ ସମ୍ୟକ୍ ଗୁରୁତ୍ୱ ଅର୍ପଣ କରିଅଛନ୍ତି । କବିତା-କ୍ଷେତ୍ରରେ ଶୈଳୀଗତ ନୂତନ ପ୍ରୟୋଗ ଓ ପରୀକ୍ଷା ଏବଂ ଅନୁଭୂତିର ବ୍ୟାପ୍ତିକୁ ପ୍ରତୀକ ଦ୍ୱାରା ସଂକ୍ଷିପ୍ତଭାବେ ପ୍ରକାଶ କରିବାର ଧାରା ପ୍ରତୀକ-ବାଦୀମାନଙ୍କର ସାହିତ୍ୟ ପ୍ରତି ସର୍ବଶ୍ରେଷ୍ଠ ଅବଦାନ ।

୧୯୦୧ରେ E. T. Humeଙ୍କ ଦ୍ୱାରା ପ୍ରବର୍ତ୍ତିତ ପ୍ରତୀକବାଦ ୧୯୧୨ ବେଳକୁ ଏଜ୍ରା ପାଉଣ୍ଡଙ୍କ ଦ୍ୱାରା ପ୍ରତିବିମ୍ବ ବାଦ ଭାବେ ଅଭିହିତ ହୁଏ ଏବଂ ୧୯୧୪ ବେଳକୁ The Egoist ନାମକ ସାହିତ୍ୟିକ ପତ୍ରିକାରେ ଏହା ସ୍ୱୀକୃତି ଲାଭ କରେ, ୧୯୩୦ରେ ଏହି ପ୍ରତିବିମ୍ବବାଦୀ ଗୋଷ୍ଠୀମାନଙ୍କର ଏକ କବିତା ଗ୍ରନ୍ଥ ପ୍ରକାଶିତ ହୁଏ । ପ୍ରତିବିମ୍ବବାଦୀମାନେ ସ୍ୱଚ୍ଛନ୍ଦବାଦୀମାନଙ୍କ ବିରୋଧରେ ଯେଉଁ ତୀବ୍ର ଆନ୍ଦୋଳନ କରନ୍ତି ତା'ର ଆଦ୍ୟ ଜନକ ହେଉଛନ୍ତି ଇ. ଟି. ହ୍ୟୁମ୍ । ମାର୍ଟିନ୍ ଗିଲ୍‌କ୍ସ (Martine Gilkes) ତାଙ୍କର A key to Modern Poetry ନାମକ କବିତା ଗ୍ରନ୍ଥର ୪୩ ପୃଷ୍ଠାରେ ହ୍ୟୁମ୍‌ଙ୍କୁ ଉଦ୍ଧାର କରି ଲେଖିଅଛନ୍ତି, "ମୁଁ ଉତ୍କୃଷ୍ଟତମ ସ୍ୱଚ୍ଛନ୍ଦବାଦୀମାନଙ୍କୁ ବିରୋଧ କରେ । ଏମିତି କେତେଜଣ ପାଠକ ଛାତିରେ ହାତ ଦେଇ କହିବେ ଯେ ସେମାନେ ହୋରେସ୍ ଓ ପୋପ୍‌ଙ୍କୁ ପସନ୍ଦ କରନ୍ତି ?" ଇଂରେଜୀ ସାହିତ୍ୟ

ସମୀକ୍ଷକମାନଙ୍କଠାରେ ୧୯୩୦ ବେଳକୁ ନୂତନ କବିତା କିପରି ଲୋକପ୍ରିୟ ହୋଇ ଉଠିଛି ତାହାହିଁ ଏହି ଉକ୍ତିରେ ଲକ୍ଷଣୀୟ । ଆମେରିକାର ସାହିତ୍ୟରେ ଲୋକପ୍ରିୟତା ଅର୍ଜନ କରିଥିବା ପ୍ରତିବିମ୍ବ ୧୯୪୦ ବେଳକୁ କବି ସଚି ରାଉତରାଙ୍କ ନିର୍ଭରତା ଯୋଗୁଁ ଓଡ଼ିଆ ସାହିତ୍ୟ କ୍ଷେତ୍ରକୁ ପ୍ରବେଶ କରିଛି । ଏହାହିଁ ଓଡ଼ିଆ ଆଧୁନିକ କବିତାର ଜନ୍ମକାଳ ।

ସାହିତ୍ୟରେ ପ୍ରଗତିବାଦର ଝଙ୍କାର ଓଡ଼ିଶାରେ ବିସ୍ତୃତ ହେବା ପାଇଁ ମୁଖ୍ୟତଃ ସଚି ରାଉତରାୟ ହିଁ ଚେଷ୍ଟା କରି ଆସିଛନ୍ତି । ତେଣୁ ତାଙ୍କୁ ନୂତନ ଶୈଳୀର ଜନକ ଭାବେ ଅଭିହିତ କରିବା ସର୍ବାଦୌ ଆବଶ୍ୟକ । ପ୍ରାଚୀନ ପରମ୍ପରାର ସ୍ଥାଣୁତ୍ୱକୁ ବିଲୋପ କରି ଓଡ଼ିଆ କବିତାକୁ ଯେଉଁ ଅଭିମୁଖ୍ୟ ଦେଇ ପାରିଲେ ତାହା ପ୍ରବୀଣ ଓ ନବୀନମାନଙ୍କ ଆଦୃତି ଲାଭ କଲା । ଅନନ୍ତ ପଟ୍ଟନାୟକ, କୁଞ୍ଜବିହାରୀ ଦାଶ, ବିନୋଦ ନାୟକ, କାଳନ୍ଦୀ ପାଣିଗ୍ରାହୀ ଆଦି ପ୍ରବୀଣ ଗୋଷ୍ଠୀ ୧୯୫୦ ପରେ ସେମାନଙ୍କ ପୂର୍ବ ରଚନା-ରୀତି ସମ୍ପୂର୍ଣ୍ଣ ଭାବେ ବିସ୍ମୃତ ହୋଇ ନୂତନ ଶୈଳୀ ଓ ଆଙ୍ଗିକ ପ୍ରତି ମନୋନିବେଶ କରିଅଛନ୍ତି । ନୂତନ ଗୋଷ୍ଠୀ ମଧ୍ୟରେ କବିମାନଙ୍କ ସଂଖ୍ୟାକୁ ତାଲିକା ଭୁକ୍ତ କରିବା ବର୍ତ୍ତମାନ ଏକ ପ୍ରକାର ଅସମ୍ଭବ ହୋଇ ଉଠିଲଣି । ଏମାନଙ୍କୁ ଲକ୍ଷ୍ୟ କରି କେତେକ ସମାଲୋଚକ 'କାବ୍ୟ ଉପବନ' ବର୍ତ୍ତମାନ 'ଗୁଳୁଣ୍ଡା ବଣ' ବିମଣ୍ଡିତ ବୋଲି ମତ ଦେଉଛନ୍ତି । (୧୯୬୯ ଜୁନ ଆସନ୍ତାକାଲିରେ ପ୍ରକାଶିତ ଡଃ ମାନସିଂଙ୍କ 'ନୂତନ କବିତାର ତନୁତ୍ୟାଗ' ପ୍ରବନ୍ଧ ଦ୍ରଷ୍ଟବ୍ୟ) । ନିଜେ ରାଉତରାୟ ମଧ୍ୟ ନିଜକୁ ଆଧୁନିକ କବି କହିବାକୁ 'ଲଜ୍ଜା ବୋଧ' କରନ୍ତି; କାରଣ ଏଇ ଗୁଳୁଣ୍ଡା ବଣର ମାତ୍ରା ଅତ୍ୟଧିକ ।

ଏହା ହିଁ ହେଉଛି ସାଂପ୍ରତିକ ସାହିତ୍ୟର ସମସ୍ୟା । ଜଣେ ଅନ୍ୟକୁ ଅପସ୍ରଷ୍ଟା ବୋଲି କହି ନିଜର ଯଶୋଭେରୀ ନିଜେ ଫୁଙ୍କିବାରେ ବ୍ୟସ୍ତ । ଅନ୍ଧକାର ଗୃହ ମଧ୍ୟରେ ଶତ୍ରୁ ସହିତ ଯୁଦ୍ଧ କରିବାକୁ ଯାଇ ପ୍ରତ୍ୟେକ ନିଜକୁ ମାତ୍ର ଆଘାତ କରୁଛନ୍ତି । ଗୁଳୁଣ୍ଡା ବଣ ମଧ୍ୟରେ ପ୍ରକୃତ ବଣମଲ୍ଲୀର ସଂଖ୍ୟା ନିଷ୍ପ୍ରଭ । ଆଧୁନିକ କବି ନିଜ କବିତାକୁ ବୁଝିବାକୁ ଅସମର୍ଥ । କବି ହେବାକୁ ହେଲେ ଗୁଡ଼ାଏ ଅବାନ୍ତର ଦୁର୍ବୋଧ ପଙ୍କ୍ତି ଲେଖିବା ଆବଶ୍ୟକ ଏବଂ ବୋଧ କବିତା ଲେଖିଲେ ଆଧୁନିକତା ବ୍ୟାହତ ହେବ ବୋଲି ଆଜି ଅଧିକାଂଶ କବିଙ୍କର ମତ । ଆଧୁନିକ କବିତା କ୍ଷେତ୍ରରେ ଏ ଦୟନୀୟ ଦୁର୍ଗତିର କାରଣ କ'ଣ ? ପ୍ରଥମତଃ, ପ୍ରତିବିମ୍ବ ବାଦ ସମ୍ପର୍କରେ

ସମ୍ୟକ୍ ଜ୍ଞାନର ଅଭାବ ଓ ଭାଷା ପ୍ରୟୋଗ କାଳରେ ନିରଙ୍କୁଶ ସ୍ୱାଧୀନତା ଆଜିର କବିତାକୁ ଦୁର୍ବୋଧ କରୁଛି । ଦ୍ୱିତୀୟତଃ, ଦୁର୍ବୋଧତା ନୂତନ କବିତାର ଏକ ଧର୍ମ ହୋଇଥିବାରୁ ଆଧୁନିକ କବିମାନେ ତାହାକୁ କବିତାର ଏକମାତ୍ର ଶ୍ରେଷ୍ଠ ଗୁଣ ବୋଲି ବିବେଚନା କରୁଛନ୍ତି ।

ଆଧୁନିକ କବିତା ଅଧ୍ୟୟନର ଦିଗକୁ ପ୍ରସାରିତ କରିବା ଉଦ୍ଦେଶ୍ୟରେ ପ୍ରତ୍ୟେକ କବିଙ୍କୁ ନିଜ କବିତାର ମର୍ମ ଉଲ୍ଲେଖ କରିବା ପାଇଁ ଉଗର ଅନୁଷ୍ଠାନ ପକ୍ଷରୁ ଅନୁରୋଧ କରାଯାଇଥିଲା । ମାତ୍ର ଉଗର ଆଧୁନିକ କବିତା ବିଶେଷାଙ୍କ ପ୍ରକାଶିତ ହେବାପରେ ଏ ଉଦ୍ଦେଶ୍ୟ ଯେ ସଫଳ ହୋଇଛି ତାହା ଆଦୌ ଜଣାପଡ଼ିଲା ନାହିଁ । ଫଳରେ କବିମାନେ ନିଜ ଲେଖାକୁ ବିଶ୍ଳେଷଣ କରିବାରେ ଯେ ନିତାନ୍ତ ଅସମର୍ଥ ତାହା ହିଁ ଅତି ସୁନ୍ଦର ଭାବେ ପ୍ରମାଣିତ ହୋଇଗଲା । ଏଠାରେ ନୂତନ କବିତାର ଦୁର୍ବୋଧତା ସମ୍ପର୍କରେ କେତେକ କାରଣ ଓ ତା'ର ପ୍ରତିକାର ଆଲୋଚିତ ହେଉଛି ।

ସମାଲୋଚକଙ୍କ ଦୁର୍ବୋଧତା ପ୍ରସଙ୍ଗ ଉପରେ କୁହାଯାଏ ଯେ କବିତା ପାଠକାଳରେ ତାହାର ଅର୍ଥ ସମ୍ପର୍କରେ ପ୍ରଶ୍ନ ଉତ୍ଥାପିତ ହେବା ଅନୁଚିତ । କବିତାରେ ପ୍ରଯୁକ୍ତ ହୋଇଥିବା ପ୍ରତୀକ ବା ରୂପକଳ୍ପ ଏହାର ସାମୂହିକ ପ୍ରଭାବଶାଳିତା ସହିତ ମୂଳତଃ ସମ୍ପୃକ୍ତ । ତେଣୁ ଶବ୍ଦ ବିଶେଷକୁ ବ୍ୟାଖ୍ୟା ବିଶ୍ଳେଷଣ କରିବା ମାତି ଓ ଆଦର୍ଶ ସର୍ବଥା ଏକ ଅଶୋଭନୀୟ ପନ୍ଥା । କବିତାର ଦୁର୍ବୋଧତା ବିଷୟରେ ଆଲୋଚନା ବେଳେ ଯେଉଁ ସମାଲୋଚକଗୋଷ୍ଠୀ କବିତାର କେତେକ ଅଂଶ ଉଦ୍ଧାର କରି ତା' ଉପରେ ପ୍ରତିକୂଳ ମନ୍ତବ୍ୟ ଦିଅନ୍ତି, ସେମାନେ ସମାଲୋଚନା କ୍ଷେତ୍ରରେ ନିରପେକ୍ଷତା ଓ ନିଷ୍ଠା ପ୍ରଦର୍ଶନ କରନ୍ତି ନାହିଁ । କବିତାର ସାମୂହିକ ପ୍ରଭାବଶାଳିତା ହିଁ ନୂତନ କବିତା ଆଲୋଚନା କାଳରେ ପ୍ରଥମ ବିଚାର୍ଯ୍ୟ ବସ୍ତୁ । କାବ୍ୟ-ସୌଧ ନିର୍ମାଣ କାଳରେ କବିଙ୍କୁ କି କି ବିଷୟ ପ୍ରତି ସଚେତନ ହେବାକୁ ପଡ଼ିବ ତାହା ଉଲ୍ଲିଖିତ ହେଉଛି ।

**ସଂକେତ ଓ ବସ୍ତୁ ମଧ୍ୟରେ ଥିବା ପାର୍ଥକ୍ୟର ଅବବୋଧ**

ଶବ୍ଦକୁ ଏକ ସଙ୍କେତ ଭାବେ ଗ୍ରହଣ କରି କବିତାରେ ପ୍ରୟୋଗ କରାଗଲେ ସେଥି ଶବ୍ଦ ଦ୍ୱୈତ ଭାବର ସନ୍ଧାନଦ୍ୱ ପ୍ରତିପାଦନ ଦିଗରେ

ଅସାମର୍ଥ୍ୟ ପ୍ରକାଶ କରିବ । କବିତାର ପ୍ରତ୍ୟେକ ଶବ୍ଦ ଫୁଲର ଧର୍ମରେ ଘର୍ଷିତ ହେବା ଉଚିତ, ଅର୍ଥାତ୍ ଏହା ବର୍ଣ୍ଣବୈଭବ ଓ ସ୍ନିଗ୍ଧତା ଗୁଣରେ ପରିପୂର୍ଣ୍ଣ ହେବା ବାଞ୍ଛନୀୟ । ସଂକେତ ଓ ବସ୍ତୁ ମଧ୍ୟରେ ପାର୍ଥକ୍ୟ ଏତିକି ଯେ ଗୋଟିଏ ନିରର୍ଥକ ଅନ୍ୟଟି ସାର୍ଥକ ଓ ଭାବୋଦ୍ଦୀପକ । ନିରର୍ଥକ ସାଙ୍କେତିକତା କବିତାକୁ ଅତିମାନିକ ବୌଦ୍ଧିକ କରେ ; କିନ୍ତୁ ଏହା ବସ୍ତୁ ସମ୍ବନ୍ଧାନ୍ୱିତ ହେଲେ ଲେଖକଙ୍କର ଭାବର ସ୍ପନ୍ଦନଗୁଡ଼ିକୁ ପାଠକ ନିକଟରେ ପହଞ୍ଚାଇ ପାରେ । ଅଜିର କବିତା ତଥାକଥିତ ଇଙ୍ଗିତଧର୍ମୀ ଏବଂ ଏହି ଇଙ୍ଗିତ ମଧ୍ୟରେ କୌଣସି ଆବେଦନ ନାହିଁ । କାବ୍ୟ-ଆବେଦନ କବିତାକୁ ପ୍ରଭାବଶାଳୀ କରିଏ । କବିତାର ଶବ୍ଦାବଳୀକୁ ବସ୍ତୁ ସମ୍ବନ୍ଧାନ୍ୱିତ କରିବାକୁ ହେଲେ ଏ ଦେଶର ମାଟି ଓ ମଣିଷ ସମ୍ପର୍କରେ ଉଦାସୀନତା ପରିହାର କରିବାକୁ ହେବ । ବିଦେଶୀ ମାଟିରୁ କୌଣସି ଏକ ଯୁଗ-ଯନ୍ତ୍ରଣାକୁ ଓଟାରି ଆଣି ନିଜର ଅକ୍ଷରରେ ପ୍ରକାଶ କରିବା ମନୋବୃତ୍ତି ଯୋଗୁଁ କବିତାର ଶବ୍ଦ ନିରର୍ଥକ ହେଉଛି । ଲବଙ୍ଗ ଫୁଲର ସୁଗନ୍ଧରେ ବିମୁଗ୍ଧ ହେବାର ବାସନାଠାରୁ କବିଙ୍କୁ ଦୂରରେ ରହିବାକୁ ହେବ । ଅନୁଭୂତିର ଗନ୍ଧାନୁଲିପ୍ତ ଶବ୍ଦ ଚୟନ ପାଇଁ ବିଦେଶକୁ ଯିବା ଅନାବଶ୍ୟକ ।

ସାଙ୍କେତିକ ବୈଖିକ ଶବ୍ଦ ସମ୍ବଳିତ କବିତା ଲେଖିବାରେ ତାରିଣୀ ଚରଣ ଦାସଙ୍କ କୃତି ପ୍ରଥମେ ଦୃଷ୍ଟିଗୋଚର ହୁଏ । କେତେକ ଶବ୍ଦ, ଯୋଗ ବିଯୋଗ ଚିହ୍ନ, ସମୀକରଣ ସୂତ୍ରରେ ଲେଖାଯାଇଥିବା କବିତା ନିତାନ୍ତ ଦୁର୍ବୋଧ । ସଂକେତ ଯଦି ସଙ୍କେତସର୍ବସ୍ୱ ହେଲେ କବିତା ହୁଏ ବୋଲି ସେ ମନେ କରନ୍ତି, ତେବେ ତାଙ୍କୁ କିଛି କହିବାର ନାହିଁ । ସଂକେତ ବସ୍ତୁ ଭାବନା ନ ଜନ୍ମାଇଲେ କବିତା ଦୁର୍ବୋଧ ହେବାକୁ ବାଧ୍ୟ ।

**ରୂପକଳ୍ପର ପ୍ରୟୋଗରେ ଏହାର ସାର୍ବଜନୀନ ଭାବୋଦ୍ଦୀପକତା ପ୍ରତି ସତର୍କତା ଅବଲମ୍ବନ ।**

ରୂପକଳ୍ପ ବହୁ ଆଧୁନିକ କବିଙ୍କ ପକ୍ଷେ ଏକ ରହସ୍ୟମୟ ଶବ୍ଦ । ତେଣୁ ଓଡ଼ିଶୀ କବି ହେବା ପୂର୍ବରୁ ଆନ୍ତର୍ଜାତିକ କବି ଭାବେ ସମ୍ମାନିତ ହେବା ପାଇଁ ଏମାନଙ୍କର ଦାବୀ । ଜଣେ କବି ତାଙ୍କର ନିସର୍ଗ ପ୍ରତିଭାର ବାଚନିକ ନିଦର୍ଶନ ଦେବା ପାଇଁ କହିଛନ୍ତି—ସେ କୌଣସି ଇଜମ୍ ବା ବାଦର ଅର୍ଥ ବୁଝନ୍ତି ନାହିଁ । ପ୍ରତିଭା ଇଜମ୍‌କୁ ଅପେକ୍ଷା କରେ ନାହିଁ ।

ତାଙ୍କର ମନେ ରଖିବା ଉଚିତ ଯେ କବି ମାନେଇ ଜଣେ ଜଣେ ବିଦଗ୍ଧ ପାଠକ । ଅପାଠକ ତେଣୁ ଏକ ପ୍ରଥମ ଶ୍ରେଣୀର ଅକବି ।

ହ୍ୟୁମ୍‌ଙ୍କ ମତରେ କବିତାର ପ୍ରତ୍ୟେକ ଶବ୍ଦ ସାଧାରଣ ଅର୍ଥ-ଦ୍ୟୋତକ ନ ହୋଇ ଏକ ପରିଚିତ ରୂପ କଳ୍ପ ହେବା ଉଚିତ । (1) ସେ ପୁଣି କହନ୍ତି—ଏକ ପ୍ରାକୃତିକ ବସ୍ତୁର ଅବତାରଣା ଦ୍ୱାରା ରୂପକଳ୍ପ ସୃଷ୍ଟି କରାଯାଏ । ପାଠକ ପ୍ରାକୃତିକ ବସ୍ତୁକୁ ଅବଲୋକନ କରି ଯେପରି ଭାବ-ବିହ୍ୱଳ ହୁଏ, କବିତା ଅନ୍ତର୍ଗତ ରୂପକଳ୍ପ ମଧ୍ୟରେ ସେଇ ଭାବ-ତନ୍ମୟତା ବା ଇଙ୍ଗିତ ପାଠକକୁ ସେହିପରି ଭାବବିହ୍ୱଳ କରାଏ । (2) କେବଳ ପ୍ରାକୃତିକ ବସ୍ତୁ ନୁହେଁ, ଅନ୍ୟାନ୍ୟ ପରିଚିତ ବସ୍ତୁକୁ ରୂପକଳ୍ପ ଭାବେ ଗ୍ରହଣ କରାଯାଇପାରେ । ସାଧାରଣତଃ ପୁରାଣ, ଲୋକକଥା, ଧର୍ମ ସମ୍ପର୍କୀୟ ଗଳ୍ପ, ସୁପରିଚିତ ସାହିତ୍ୟ ବା ଧର୍ମଗ୍ରନ୍ଥରୁ କେତେକ ପ୍ରସିଦ୍ଧ ଶବ୍ଦକୁ ରୂପକଳ୍ପ ଭାବେ ଗ୍ରହଣ କରାଯାଇପାରେ । ମାନବୀୟ ସମ୍ବେଦନ ଅନୁରଞ୍ଜିତ ବାକ୍-ଛବି ହେଉଛି ଚିତ୍ରକଳ୍ପ । ଯେଉଁ ଶବ୍ଦ ଚିତ୍ରାବଳୀ କବିଙ୍କର ଅନୁଭୂତିକୁ ଅକ୍ଷୁଣ୍ଣ ଭାବରେ ପାଠକ ନିକଟରେ ପହଞ୍ଚାଇବାକୁ ସମର୍ଥ, ସେଗୁଡ଼ିକ ଚିତ୍ରକଳ୍ପ ନିର୍ବାଚନ କାଳରେ ଗୃହୀତ ହେବା ବାଞ୍ଛନୀୟ । ଅଧ୍ୟାପକ ବିପିନ ମହାନ୍ତିଙ୍କ ଦ୍ୱାରା ଲିଖିତ 'କାବ୍ୟରେ ଚିତ୍ରକଳ୍ପ' (ଦିଗନ୍ତ, ୧୯୬୬ ଶୀତର ସଂଖ୍ୟା ଦ୍ରଷ୍ଟବ୍ୟ) ପ୍ରବନ୍ଧରେ ଉଦାହୃତ ହୋଇଥିବା Audenଙ୍କ ଦୁଇଗୋଟି ପଙ୍‌କ୍ତି ହେଉଛି—

> "O dear white children causal as birds playing
> amid the ruined languages."

ଏହାର ଅର୍ଥ ହେଉଛି—ଦ୍ୱିଧାହୀନ ପକ୍ଷୀମାନଙ୍କ ପରି ଶୁଭ୍ର ଶିଶୁମାନେ ଖେଳୁଛନ୍ତି । ଚତୁର୍ଦ୍ଦିଗରେ ଭଗ୍ନାବଶେଷ ଅତୀତ ସଭ୍ୟତାର ଗାଥା ।

---

(1) Each word must be an image seen, not a counter. *Notes on language and styl* by E. T. Hume, pp 292.

(2) The image is a representation of a physical object and the reader reacts to it in the same way as he would to a physical object. (ତଦେବ)

ଏହା ପାଠ କରିବା ପରେ ପାଠକ ଶିଶୁମାନଙ୍କର କ୍ରୀଡ଼ାରତ ଚିତ୍ର ମନଃ ଫଳକରେ କଳ୍ପିତ ହୋଇଥିବା ଉପଲବ୍ଧି କରେ । 'ଶୁଭ୍ର', 'ପକ୍ଷୀମାନଙ୍କ ପରି' ଆଦି ଶବ୍ଦାବଳୀ ମଧ୍ୟରେ ଶିଶୁମାନଙ୍କର ଶୁଚିମନ୍ତତା, ନିଷ୍ପାପପ୍ରାଣତା, ନିଶ୍ଚିନ୍ତତା ଆଦି ପ୍ରଶଂସାତ୍ମକ ଗୁଣର ବ୍ୟଞ୍ଜନା ରହିଛି । ମଣିଷ ସମାଜରେ ଥିବା ପୁଞ୍ଜୀଭୂତ ଅଶାନ୍ତି କବିଙ୍କୁ କ୍ଳାନ୍ତ କରୁଥିଲା ବେଳେ ତାଙ୍କର ଏକମାତ୍ର ସାନ୍ତ୍ୱନା ହେଉଛି ଆଗାମୀ ଯୁଗର ବଂଶଧର ଓ ଅନାଗତ ଭବିଷ୍ୟତରେ ନିର୍ମାତା ଦେଶର ଅଗଣିତ ଶିଶୁ, ଯେଉଁମାନେ କୁତ୍ସିତ ଦୋଷଦୁଷ୍ଟ ସମାଜକୁ ଶୁଚିମନ୍ତ କରି ଗଢ଼ିପାରିବେ । ଅତୀତରେ ଆଦର୍ଶ କୁତ୍ସିତ ସେମାନଙ୍କ ପକ୍ଷେ ନିତାନ୍ତ ଅଳୀକ ପ୍ରତୀତ ହେବ, ତଥାପି ତାହାର ଧ୍ୱଂସସ୍ତୂପ ଉପରେ ସେମାନେ ନୂତନ ସଭ୍ୟତାର ହର୍ମ୍ୟ ଉତ୍ତୋଳନ କରିବାକୁ ସମର୍ଥ ହେବେ ।

ଆଧୁନିକ କବି ଅସୁମାରି ଭାବନାର ସଂକୋଚନ ପାଇଁ ରୂପକଳ୍ପ ଗ୍ରହଣ କରନ୍ତି । କବିତା ଏକ ରିପୋର୍ଟ ନୁହେଁ । ଏହା ଲେଖକ ଓ ପାଠକଙ୍କର ଧୀ-ଶକ୍ତିକୁ ଆଲୋଡ଼ିତ କରିଥାଏ । ତେଣୁ, କବିତାର ଭାଷା ବାଚ୍ୟ ନ ହୋଇ ବ୍ୟଞ୍ଜକ ହେବା ବିଧେୟ । ରୂପକଳ୍ପ ହିଁ ଏଥିପାଇଁ ଏକ ପ୍ରଶସ୍ତ ମାଧ୍ୟମ । କିନ୍ତୁ ଯେଉଁ ଶବ୍ଦ ଚିତ୍ର ନିତାନ୍ତ ଅସ୍ପଷ୍ଟ ଏବଂ କେବଳ ମେଞ୍ଚାଏ ଅଡ଼ୁଆ ସୂତା ପରି ଅସଂବଦ୍ଧ ତାହା ଯେ ଅପସୃଷ୍ଟି ଏହା ଯେ କେହି ସମାଲୋଚକ କହିବେ । ରୂପକଳ୍ପଗୁଡ଼ିକ ସାର୍ବଜନୀନ ହେବା ଉଚିତ । ଆଡ଼େନ୍‌ଙ୍କ 'ଶୁଭ୍ର ଶିଶୁ' ଯେଉଁ ଚିତ୍ର ପ୍ରଦାନ କରେ ତାହା ସାର୍ବଜନୀନ ଏବଂ ଶାଶ୍ୱତ । ଆମ ପ୍ରାଚୀନ ସାହିତ୍ୟରେ ହସ ଯଶ ଓ ପୀୟୂଷର ବର୍ଣ୍ଣ ଧଳା ବୋଲି କୁହାଯାଇଛି । ଶୁଭ୍ରତା ଶୁଚିମନ୍ତତାର ଏକ କାଳଜୟୀ ପ୍ରତୀକ । ସେହିପରି 'ଜରଦ୍‌ଗବ' (ଅଧ୍ୟାପକ ନିତ୍ୟାନନ୍ଦ ଶତପଥିଙ୍କ କବିତାର ଏକ ଶୀର୍ଷକ) ଶବ୍ଦଟିରେ ନିହିତ ବର୍ଣ୍ଣିତ ସ୍ୱାଭାବିକ ଅସାମର୍ଥ୍ୟ, ସ୍ଥାଣୁତ୍ୱ, ପରାଶ୍ରୟିତା ଆଦି ବ୍ୟଞ୍ଜନା ସାର୍ବଜନୀନ ; କିନ୍ତୁ 'ସାଂଘାତିକ ରକ୍ତସଂହାରର ଲିରିକ୍' (ଦୀପକ ମିଶ୍ର) ଭଳି କବିତା ଶୀର୍ଷକ ଯେ ଏକାବେଳେକେ ଅବୋଧ ଏବଂ ବ୍ୟକ୍ତିସର୍ବସ୍ୱ ଚିନ୍ତାର ନିଦର୍ଶକ ଏହା ସାଧାରଣ ପାଠକ କହିବେ । (ଅସାଧାରଣ ଧୀ-ଶକ୍ତି ସମ୍ପନ୍ନ ପାଠକ ଗୋଷ୍ଠୀ ମଧ୍ୟରେ ଅନେକ ଅଧ୍ୟାପକ ମଧ୍ୟ ଥାଆନ୍ତି । କାରଣ, ସେମାନେ ଏପ୍ରକାର ଶୀର୍ଷକକୁ ଅଦ୍ୟାବଧି ଅର୍ଥ କରିଥିବା ଲେଖକର ହୃଦ୍‌ବୋଧ ହୋଇନାହିଁ । )

**କବିଙ୍କ ଛଦ୍ମଗାମ୍ଭୀର୍ଯ୍ୟ ସର୍ବୋଟେଦୀ ପରିହାର୍ଯ୍ୟ**

ଆଜକାଲିର କବିମାନେ ସ୍ୱକୀୟ ବଳିଷ୍ଠତା ପ୍ରତିପାଦନ ପାଇଁ ଆତ୍ମପକ୍ଷ ସମର୍ଥନମୂଳକ ନବୋଧ ଉକ୍ତି ବାଢ଼ି ବସନ୍ତି ଏବଂ ଏତଦ୍ୱାରା ସେମାନଙ୍କର ଛଦ୍ମଗାମ୍ଭୀର୍ଯ୍ୟର ସ୍ୱରୂପ ସ୍ପଷ୍ଟ ହୁଏ । ସେମାନେ କହନ୍ତି, ଜୀବନଯାତ୍ରାର ଜଟିଳତା ମଧ୍ୟରେ ବ୍ୟକ୍ତିମାନସ ଆଜି ନିତାନ୍ତ ଦୁର୍ବୋଧ ଏବଂ କବିତାରେ ତା'ର ପ୍ରତିଫଳନ ଘଟିବା ସ୍ୱାଭାବିକ । ଆଉ କେତେକ କହନ୍ତି, ସେମାନେ ଯାହା ଲେଖୁଛନ୍ତି ତାହାକୁ ବୁଝିବାର ମଥା ସମସ୍ତଙ୍କର ନାହିଁ । ସେମାନେ ଆଜି ଆମ କବିତାକୁ ଆନ୍ତର୍ଜାତିକ ଗୌରବରେ ଅନୁରଞ୍ଜିତ କରିବାକୁ ଯାଉଛନ୍ତି । ଫଳରେ ଏତେବାଟ ଦୌଡ଼ିବାର ଶକ୍ତି-ହୀନତା ମଧ୍ୟରେ ପଟାନ୍ତରବିହୀନ ଶକ୍ତିମତ୍ତାକୁ କଳନା କରିବା ଅସମ୍ଭବ । ଏପ୍ରକାର ଆସ୍ଫାଳନକାରୀମାନେ କେବଳ ଅନ୍ୟର କବିତା ଯେ ବୁଝିପାରନ୍ତି ନାହିଁ ତାହା ପ୍ରମାଣ କରିବା ପାଇଁ ଆବଶ୍ୟକ ହେଲେ ବହୁ ପଙ୍‌କ୍ତି ଯଥାକାଳରେ ଉଦ୍ଧାର କରିଦେଇ ହେବ । ତଥାପି ଉପରର ଆଧୁନିକ କବିତା ବିଶେଷାଙ୍କ ପ୍ରତି ସହୃଦୟ ବିଦଗ୍ଧ ପାଠକମାନଙ୍କ ଦୃଷ୍ଟି ଆକର୍ଷଣ କରାଯାଉଛି । ଦିଗନ୍ତରେ ଏକ ସ୍ଥାନରେ ଉଲ୍ଲିଖିତ ହୋଇଛି, 'ଆଧୁନିକ କବିତା ଲେଖିବା ସହଜ ମାତ୍ର ବୁଝିବା କଷ୍ଟକର ।' କବିତା ଲେଖି ନ ଜାଣି ଥିବା ବ୍ୟକ୍ତି ଛଦ୍ମଗାମ୍ଭୀର୍ଯ୍ୟ ପ୍ରଦର୍ଶନ କରି ଅବାଞ୍ଛିତ ଅପ-ସୃଷ୍ଟିରେ ଆତ୍ମନିୟୋଗ କରିବା ଅନୁଚିତ । ମହାକାଳର ଅଗ୍ନି ସେସବୁ ପୋଡ଼ି ଜାଳି ପାଉଁଶ କରିଦେବ ନିଶ୍ଚୟ ।

**ଖଣ୍ଡ ଚୈତନ୍ୟ ପ୍ରତି ଅବିଶ୍ୱାସ ପୋଷଣ କରିବାକୁ ହେବ**

ଆଧୁନିକ କବି ମନେକରନ୍ତି ଯେ, 'ମୁଁ' ଏକ ବିଖଣ୍ଡିତ ଚୈତନ୍ୟର ସମଷ୍ଟି ମାତ୍ର । ଏଥିରେ ଐକିକତାର ସ୍ୱର ଏକାନ୍ତ ଭାବେ ବ୍ୟାହତ । ମୁଁ ଏକ ସମୟରେ ଅଫିସରେ କର୍ମଚାରୀ ବିଶେଷ, ଅନ୍ୟ ସମୟରେ କ୍ଲବ୍ ଘରର ସଭ୍ୟ ଓ ଆଉ ଏକ କାଳରେ ଗୃହସ୍ୱାମୀ ବା ପତ୍ନୀ । ତେଣୁ ମୁଁଭି ବହୁଧା ଚେତନାର ସମଷ୍ଟି ମାତ୍ର । ବ୍ୟକ୍ତିର ବ୍ୟକ୍ତିତ୍ୱକୁ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାର କରିବାକୁ ହେବ । ମାନବର ସାମୂହିକ ବ୍ୟବହାର ତା'ର ବ୍ୟକ୍ତିତ୍ୱର ପରିଚାୟକ । କାବ୍ୟ କବିତାରେ ଅସଂଲଗ୍ନ ଭାବ ମଧ୍ୟରେ ବ୍ୟକ୍ତିଚେତନାର ବିଖଣ୍ଡିତ ସ୍ୱରୂପ ଆଦୌ ମନୋବିଜ୍ଞାନ ସମ୍ମତ ନୁହେଁ । ଏଣୁ ଏତାଦୃଶ ଛବି ସମ୍ବଳିତ କବିତା ଏକାନ୍ତ ଅସ୍ପଷ୍ଟ ।

ଏସବୁରେ ସ୍ୱେଚ୍ଛାକୃତ ଦୁର୍ବୋଧତା ଅନୁପ୍ରବେଶ କରେ । କବି ବ୍ରଜନାଥ ରଥ ଗୋଟିଏ ସ୍ଥାନରେ କହିଛନ୍ତି,…"କିନ୍ତୁ ଇଚ୍ଛାକୃତ ଓ ଆରୋପିତ ଦୁର୍ବୋଧତା କବିତାର ମର୍ମୋପଲବ୍ଧିରେ ବା ରସାସ୍ୱାଦନରେ କେବେ ହେଲେ ସାହାଯ୍ୟ ତ କରିବ ନାହିଁ, ବରଂ କବି ଓ ପାଠକ ମଧ୍ୟରେ ଏକ ଏକ ପ୍ରାଚୀର ହୋଇ ଛିଡ଼ା ହେବ । ରଥ ମହାଶୟଙ୍କ ଏ ମନ୍ତବ୍ୟ ନିତାନ୍ତ ଯୁଗୋପଯୋଗୀ ।

**ଶବ୍ଦର କୁଶଳ ପ୍ରୟୋଗ ପ୍ରତି ବହିର୍ମୁଖତା ପରିତ୍ୟାଗ କରିବାକୁ ହେବ**

ଆଧୁନିକ କବିତାରେ ଶବ୍ଦାର୍ଥର କୁଶଳ ପ୍ରୟୋଗ ପ୍ରତି କବି ଏକାନ୍ତ ବିମୁଖ । 'ଅଚଳନ୍ତି ଶବ୍ଦ' (ସଚି ରାଉତରାୟଙ୍କ ଭାଷାରେ) ପ୍ରୟୋଗ ଦିଗରେ କବିମାନେ ଖୁବ୍ ଧୁରୀଣ । ଏଠାରେ କେତେକ ଉଦାହରଣ ପ୍ରଦତ୍ତ ହେଉଛି :—

ସାମ୍ପ୍ରତିକ ରକ୍ତ ସମ୍ଭାରର ଲିରିକ୍, (ଦୀପକ ମିଶ୍ର)—ରେନୋ ଓ ଡିକାଡେନ୍‌ସର ଏପିକ୍ (ଜ୍ଞାନୀନ୍ଦ୍ର—ଗୋଦାବରୀଶ ମହାପାତ୍ରଙ୍କ ୧୯୬୭ ନିଆଁ ଖୁଣ୍ଟାରେ ପ୍ରକାଶିତ ସମାଲୋଚନା ଦ୍ରଷ୍ଟବ୍ୟ)—ସମସ୍ତ ଭୁଲାଏ ଆଜ (ଅନନ୍ତ ପଟ୍ଟନାୟକ)—ଦୁଧିଆଳ ରାତି ଯେବେ ମୋଆଡ଼କୁ ପିଠି କରି ଶୁଏ (ଅନନ୍ତ ପଟ୍ଟନାୟକ)—ଟେବୁଲ ବୋଜ୍ ଅଙ୍ଗୁଳିରେ ରେଲିଂ ଦେଲି ଗୁପି (ଅନନ୍ତ ପଟ୍ଟନାୟକ)—ବ୍ୟତିବ୍ୟସ୍ତ ଆକାଶଟା ନଇଁଗଲି ଅନେକ ତଳକୁ, ନିଶବ୍ଦ ଲିଙ୍ଗଟି ପରି ଲଙ୍ଗଳା ସାଧୁର । (ଉଦୟ ଦାସ)—ଜହ୍ନର ଉପତ୍ୟକାର ବସନ୍ତ ଆସିଲି ଦିନେ (ବିଜୟ ଦାସ) ।

"ଓଠର ଟେବୁଲ ପାଖେ କାଳର କ୍ୟାଣ୍ଟରର ମୁଁ, ଠରେ
କୋଟି କୋଟି ସ୍ୱପ୍ନର ମେନ୍ୟୁ ରଖି ବିମୂର୍ତ୍ତି ବାସନା ମୁଁ ଠାରେ ।
ଆଦେଶ ଦିଅ ପ୍ରୀତିର ଅଗ୍ନିମୟୀ ପ୍ରୀତିର ।

(ଅନନ୍ତ ପଟ୍ଟନାୟକ)

କବିତାରେ ଭାଷାର ଅକୁଶଳ ପ୍ରୟୋଗ ସମ୍ପର୍କରେ ହଜାର ହଜାର ଉଦାହରଣ ଦେଇ ହେବ । ଯଥେଚ୍ଛା ଇଂରେଜି ଶବ୍ଦର ବ୍ୟବହାରରୁ ମନେ ହେଉଛି ଯେ ଆମ ଭାଷା ଭାବପ୍ରକାଶ ପାଇଁ ଏକାନ୍ତ ଅଯୋଗ୍ୟ ।

ସମାଲୋଚନା କ୍ଷେତ୍ରରେ ମଧ୍ୟ ଭାଷା ପ୍ରୟୋଗରେ ବିକଳ ଅବସ୍ଥା ଦେଖନ୍ତୁ—

"ଜଣେ ସମାଲୋଚକ is the ideal reader, ଏବଂ ତାଙ୍କ ଘଣ୍ଟା ସବୁଲୋକଙ୍କ ଘଣ୍ଟାଠାରୁ ପାଞ୍ଚ ମିନିଟ ଆଗେଇ ଚାଲେ ।"

(ଶୁଭେନ୍ଦୁ ମୋହନ)

"ମୁଁ ଏଣ୍ଡ୍ ରାଣ୍ଡମ୍ ସ୍ମୃତିରୁ ଆଙ୍କି ଲେଖି ଯାଉଛି ।"

(ଶୁଭେନ୍ଦୁ ମୋହନ)

(ଏ ପ୍ରକାର ସମାଲୋଚନାର ନମୁନା ଯୁବ ଲେଖକ ସମ୍ମିଳନୀର ମୁଖପତ୍ରମାନଙ୍କରେ ବହୁପରିମାଣରେ ଲଭ୍ୟ ।)

ପ୍ରତିବେଶୀ ସାହିତ୍ୟ ସମାଲୋଚନା ଗ୍ରନ୍ଥମାନଙ୍କରେ ଏ ପ୍ରକାର ଭାଷା ବ୍ୟବହାର କ୍ୱଚିତ୍ ପରିଦୃଷ୍ଟ ହୁଏ । ବିଶେଷ କରି ହିନ୍ଦୀ ସାହିତ୍ୟ, ଯାହାକି ବର୍ତ୍ତମାନ ସର୍ବାଧିକ ପରିମାଣରେ ସମାଲୋଚନା ଗ୍ରନ୍ଥ ପ୍ରକାଶ କରୁଛି, ସେଥିରେ ହିନ୍ଦୀକୁ ହିଁ ଭାବପ୍ରକାଶର ମାଧ୍ୟମ ଭାବେ ଗ୍ରହଣ କରା-ଯାଇଛି । ଆଧୁନିକ କବିତା ଅଧ୍ୟୟନ ପାଇଁ ଇଲାଚନ୍ଦ୍ର ଯୋଶୀ, ଡା: ଇନ୍ଦ୍ରନାଥ ମଦାନ, ଦିନକର ରାମଧାରୀ ସିଂହ, ଡା: ଦେବରାଜ ଧର୍ମବୀର ଭାରତୀ, ଆଚାର୍ଯ୍ୟ ନନ୍ଦ ଦୁଲାଲ ବାଜପେୟୀ, ଡା: ନଗେନ୍ଦ୍ର, ନାମବର ସିଂ, ମାଥୁର ଗିରିଜା କୁମାର, ଲକ୍ଷ୍ମୀକାନ୍ତ ବର୍ମା, ଶିବଦାସ ସିଂ ଚୌହାନ୍, ଅବଲୋକନ ଭଗବତ୍ ସ୍ୱରୂପ ମିଶ୍ର, ନରେନ୍ଦ୍ର ଦେବ୍ ବର୍ମା ଆଦିଙ୍କର ଗ୍ରନ୍ଥାବଳୀ ପାଠ କଲେ ହିନ୍ଦୀଭାଷା ପ୍ରତି ସେମାନଙ୍କର ଶ୍ରଦ୍ଧା ସ୍ପଷ୍ଟ ଉପଲବ୍ଧି କରିହେବ ।

ଆଧୁନିକ କବିତାଗୁଡ଼ିକର ବିଶ୍ଳେଷଣ କରାଯିବା ପାଇଁ ପତ୍ର ପତ୍ରିକାରେ ଧାରାବାହିକ ଉଦ୍ୟମ ହେବା ଆବଶ୍ୟକ । ବାଲେଶ୍ୱରରୁ ପ୍ରକାଶିତ ଏବଂ ଏ ଦିଗରେ ଯତ୍ସାମାନ୍ୟ ଚେଷ୍ଟା ହୋଇଛି । ଓଡ଼ିଶାର ଲବ୍ଧପ୍ରତିଷ୍ଠ ପତ୍ର ପତ୍ରିକାରେ ଏ ଉଦ୍ୟମ ଯେତେ ଶୀଘ୍ର ଆରମ୍ଭ ହୁଏ ସେତେ ଭଲ ।

---

# ମୋ ଦୃଷ୍ଟିରେ
# ସାଂପ୍ରତିକ କବିତାର ସ୍ୱରଲିପି

**ଅଧ୍ୟାପକ ନୀଳାଦ୍ରିଭୂଷଣ ହରିଚନ୍ଦନ**

କବିତାର ଏକ ନିରବଚ୍ଛିନ୍ନ ଧାରା ଯୁଗ ଯୁଗ ଧରି ପ୍ରବାହିତ ହୋଇ ଆସିଛି । ଅନେକ ସମୟରେ ମନେହୁଏ କବିତାର ଅଭିନବ ଭାବ-ସଂପଦ କେଉଁ ଏକ ଗୁପ୍ତ ଗହ୍ୱରରେ ସଞ୍ଚିତ ହୋଇ ରହିଛି । ଏ ସଂପଦର ଯେପରି ଶେଷ ନାହିଁ । କବିତାର ବହୁ ଧ୍ୱନି, ବହୁ ରଙ୍ଗ ଯୁଗ ଯୁଗ ଧରି ଭିନ୍ନ ଭିନ୍ନ କବିର ଲେଖନୀ ସାହାଯ୍ୟରେ ପ୍ରତିଧ୍ୱନିତ ଓ ପ୍ରତିବିମ୍ବିତ ହୋଇ ଉଠିଛି । କବିର ସୃଷ୍ଟି-ସଂପଦ ଯେତେବେଳେ ଦେଶ କାଳର ସୀମାକୁ ଅନାୟାସରେ ଲଙ୍ଘନ କରିପାରେ, ସେତେବେଳେ ତାହା ହିଁ ବାସ୍ତବ ପକ୍ଷରେ ହୋଇ ଉଠେ ଆଧୁନିକ । ଏଇ ଦେଶ କାଳର ସୀମା ଲଙ୍ଘନ କ୍ଷମତା ଯୋଗୁଁ ହିଁ ଆଧୁନିକ କବିତା ଆଜି ଆମ ନିକଟରେ ଚିର ନୂତନ ଭାବରେ ଦେଖା ଦେଇଛି ।

ଆଜିର କବିତା ଆଧୁନିକ ଯୁଗ-ମାନସକୁ ବାସ୍ତବ ରୂପାୟନ ପ୍ରଦାନ କରିବାକୁ ସମର୍ଥ ହୋଇଅଛି । ଏହି ଆଧୁନିକତା ମୂଳରେ ବିଦେଶୀୟ ଭାବଧାରାର ସ୍ୱାକ୍ଷର ସୁସ୍ପଷ୍ଟତର ; ତଥାପି ଏ କବିତାର ମୂଳ ସ୍ୱର ପ୍ରାଚ୍ୟ ସଂସ୍କୃତିକୁ ଉପେକ୍ଷା କରି ପାରିନାହିଁ । ମୁଖ୍ୟତଃ ଆଧୁନିକ କବିତା ୟୁରୋପର ଚିନ୍ତା ବିକାଶ ସହିତ ଏକାନ୍ତ ଭାବରେ ଜଡ଼ିତ । ପ୍ରଥମେ ଶିଳ୍ପ-ବିପ୍ଳବ ଓ ନୂତନ ଅର୍ଥନୈତିକ ବିବର୍ତ୍ତନକୁ ଭିତ୍ତି କରି ଲୋକଚିତ୍ତରେ ଯେଉଁ ନୂତନତ୍ୱର ସୃଷ୍ଟି ସମ୍ଭବ ହୋଇଥିଲା, ତାହା ବିଶେଷରୂପେ ପରିମାର୍ଜିତ ହୋଇଛି ପ୍ରଥମ ବିଶ୍ୱଯୁଦ୍ଧ ଜନିତ ସର୍ବଗ୍ରାସୀ ଧ୍ୱଂସଲୀଳାର ପରବର୍ତ୍ତୀ ପ୍ରଭାବରେ । ଭାରତୀୟ କବିତା କ୍ଷେତ୍ରରେ ପୃଥିବୀର ଏ ବିରାଟ ପରିବର୍ତ୍ତନ

ପ୍ରତ୍ୟକ୍ଷ ଭାବରେ ପ୍ରଭାବ ପକାଇ ନ ଥିଲେ ମଧ୍ୟ ପରୋକ୍ଷ ଭାବରେ ଏହାକୁ ଯଥେଷ୍ଟ ପ୍ରଭାବାନ୍ୱିତ କରିଛି ।

ରେନେସାଁର ଚରମ ଅବଦାନ ହେଉଛି ବ୍ୟକ୍ତି-ସ୍ୱାତନ୍ତ୍ର୍ୟ । ବିଂଶ ଶତାବ୍ଦୀର ଯେତେବେଳେ ସାମାଜିକ ମୂଲ୍ୟବୋଧର ହ୍ରାସ ଦେଖା ଦେଇଛି, ସେତେବେଳେ ରେନେସାଁର ନୂତନତ୍ୱ ଆଧୁନିକ ମଣିଷ ମନରେ ସ୍ୱାଭାବିକ ଭାବେ ରେଖାପାତ କରିଛି । ସମାଜ-ମାନସ ସହିତ ଏକ ଦୈବକୃତ ଯୋଗ ସାଧନ ଫଳରେ ବ୍ୟକ୍ତି ସ୍ୱାତନ୍ତ୍ର୍ୟ ଏକ ଆତ୍ମ-ସଚେତନ ମନୋଭଙ୍ଗୀରେ ପରିଗଣିତ ହୋଇଛି । ଯୁଦ୍ଧର ଅଭିଜ୍ଞତା ମଣିଷକୁ ଅଧିକତର ସମାଜ-ସଚେତନ କରାଇ ପାରିଛି । ପୁଣି ଧର୍ମ-ଚେତନାକୁ ପରିହାର କରି ଊନବିଂଶ ଶତାବ୍ଦୀର ଜଡ଼ବାଦୀ ଓ ଯୁକ୍ତିବାଦୀ ବିଜ୍ଞାନ ମନୁଷ୍ୟର ସମାଜ ଓ ତା'ର ମୂଲ୍ୟବୋଧକୁ ଏକ ଐକ୍ୟ-ସୂତ୍ରରେ ଧରି ରଖିଛି । ବିଜ୍ଞାନର ଯୁଗାନ୍ତକାରୀ ଆବିଷ୍କ୍ରିୟା ବିଶେଷତଃ ପଦାର୍ଥବିଜ୍ଞାନ, ଜୀବବିଜ୍ଞାନ, ଗ୍ରହବିଜ୍ଞାନ ଓ ନୃବିଜ୍ଞାନ କ୍ଷେତ୍ରରେ ବିଭିନ୍ନ ଶୃଙ୍ଖଳିକର ତଥ୍ୟାନୁସନ୍ଧାନ ଫଳରେ ଜନ-ସମାଜରେ ଏକ ନୂତନ ଭାବର ସୂର୍ଯ୍ୟୋଦୟ ଘଟିଛି । ଶେଷରେ ମନସ୍ତତ୍ତ୍ୱର ଯୌନ-କାମନା, କ୍ଷମତା-ଲିପ୍ସା ଓ ପ୍ରାଣବାଦୀ ବ୍ୟାଖ୍ୟା ଊନବିଂଶ ଶତାବ୍ଦୀର ପାରଂପାରିକ ମୀତିବୋଧ ଉପରେ କୁଠାରାଘାତ କରିଛି । ମନୁଷ୍ୟର ଆଚରଣର ଯୌକ୍ତିକତା ଅର୍ଥଶୂନ୍ୟ ମନେ ହୋଇଛି । ରୋମାଣ୍ଟିକ୍ କବିମାନେ ପ୍ରେମର ଯେଉଁ ଅତୀନ୍ଦ୍ରିୟ ଆଦର୍ଶ ସ୍ଥାପନ କରିଥିଲେ, ତାହା ଲୋକଚକ୍ଷୁରୁ ସଂପୂର୍ଣ୍ଣ ଦୂରୀଭୂତ ହୋଇ ଯାଇଛି ।'

ଏହିପରି ଏକ ସଂଶୟାଚ୍ଛନ୍ନ ମୁହୂର୍ତ୍ତ କବିକୁ କିଂକର୍ତ୍ତବ୍ୟବିମୂଢ଼ କରି ପକାଇଛି । ତେଣୁ ଏକ ନେତିବାଚକ ଦୃଷ୍ଟିଭଙ୍ଗୀ ଐତିହ୍ୟଗତ ଆଦର୍ଶକୁ ଚୂର୍ଣ୍ଣୀଭୂତ କରି ଦେଇଛି । ତା'ର କବିତାରେ ସେ ଭୂତ, ଭବିଷ୍ୟତ ଓ ବର୍ତ୍ତମାନର ଏକ ଅସ୍ପଷ୍ଟ ରୂପ ଦ୍ୟୋତନା ଦେଖିବାକୁ ପାଇଛି । ସଂଶୟବୋଧ, ଜୀବନ-ଜିଜ୍ଞାସା, ବୈପ୍ଳବିକ ପରିବର୍ତ୍ତନ, ଜୀବନର କୁତ୍ସିତ ରୂପ ଦର୍ଶନ, ମାନସିକ ଦ୍ୱିଧାଦ୍ୱନ୍ଦ୍ୱ ଆଧୁନିକ କବିତାର ଉପଜୀବ୍ୟ ରୂପେ ଗୃହୀତ ହୋଇଛି । ଆଧୁନିକ କବିମାନେ ନୂତନ ଗଦ୍ୟଛନ୍ଦ ଓ ବିଚିତ୍ର ରୂପକଳ୍ପ ମାଧ୍ୟମରେ ଜଟିଳ ଜୀବନାନୁଭୂତିର ରାଜ୍ୟକୁ ବିସ୍ତୃତ କରିଛନ୍ତି । ଏହା ଫଳରେ ଆଧୁନିକ କବି ସାଧାରଣ ପାଠକ ନିକଟରେ ଦୁରୂହ ହୋଇ ଉଠିଛି, କିନ୍ତୁ ପ୍ରକୃତ ପକ୍ଷରେ ଦୁର୍ବୋଧ୍ୟ ହୋଇନାହିଁ ।

ଅବଶ୍ୟ ଗତ ୩୦ ବର୍ଷ ଧରି ଆଙ୍ଗିକର ଦ୍ରୁତ ପରିବର୍ତ୍ତନ ଏବଂ ପ୍ରକାଶନର ନିତ୍ୟ ନୂତନ ରୀତି ସାଧାରଣ ପାଠକଙ୍କୁ କେତେକ ପରିମାଣରେ ଅସନ୍ତୁଷ୍ଟ କରିଛି ।

ବହିର୍ଜଗତର ଚେତନାକୁ ସୂକ୍ଷ୍ମତର ଭାବରେ ଅନ୍ତରରେ ପରିସ୍ଫୁଟ କରାଇବା ଲାଗି କବି ଅନ୍ତର୍ଦୃଷ୍ଟିର ଆଶ୍ରୟ ଗ୍ରହଣ କରିଛି । ଗଭୀର ଅନ୍ତର୍ଦୃଷ୍ଟି ତାକୁ ବିଶେଷ ଭାଷା, ଶୈଳୀ ଓ ପ୍ରତୀକ ବ୍ୟବହାର କରିବାରେ ସାହାଯ୍ୟ କରିଛି । ଯୁଗମାନସ ସହିତ ବ୍ୟକ୍ତିମାନସର ବିରୋଧ ଯୋଗୁଁ ସେ ସମସ୍ତ ଅତିକଥନ ବର୍ଜନ କରିଛି । ପରିବର୍ତ୍ତିତ ମୂଲ୍ୟବୋଧରେ ମଣିଷର ପ୍ରେମ, ଅଶ୍ରୁ ପରି ଚିରନ୍ତନ ସମସ୍ୟାଗୁଡ଼ିକର ଉପସ୍ଥାପନା ପାଠକ ନିକଟରେ ସଂପୂର୍ଣ୍ଣ ନୂତନ ଭାବେ ଦେଖା ଦେଇଛି । ଏହି ନୂତନତ୍ୱ ଭିତରେ କେତେକ ନିର୍ଦ୍ଦିଷ୍ଟ ଆଙ୍ଗିକ ଓ ଆତ୍ମିକ ଲକ୍ଷଣ ପରିଦୃଷ୍ଟ ହୋଇଥାଏ ।

ଯାନ୍ତ୍ରିକ ସଭ୍ୟତାର କ୍ରମବିକାଶରେ ମଣିଷ ଦିନକୁ ଦିନ ଯାନ୍ତ୍ରିକ ହେବାକୁ ଲାଗିଛି । ଅନେକ ସମୟରେ ସେ ସଚେତନ ହୋଇ ଭାବ-ପ୍ରବଣତାକୁ ପ୍ରଶ୍ରୟ ଦେବାକୁ ଚେଷ୍ଟା କଲେ ମଧ୍ୟ ବିଫଳକାମ ହେଉଛି । ଏହି ଯାନ୍ତ୍ରିକତାର ନିଗଡ଼ ଭିତରୁ ସେ ନିଜକୁ ମୁକ୍ତ କରିବାକୁ ଅସମର୍ଥ ହେଉଛି । ତେଣୁ ତା' ଜୀବନରେ ଗଭୀର କ୍ଳାନ୍ତ ଓ ନୈରାଶ୍ୟବୋଧ ଆସି ଯାଇଛି । ଯୁଦ୍ଧୋତ୍ତର ପୃଥିବୀରେ ଏଇ ନୈରାଶ୍ୟବୋଧ କବିମନକୁ ବିକୃତ କରିଛି । ସେ ସ୍ୱପ୍ନ-ପ୍ରବଣତା-ବିହୀନ ଜଟିଳ ଜୀବନ ଯନ୍ତ୍ରଣାକୁ ତା'ର କାବ୍ୟ ମାଧ୍ୟମରେ ରୂପାୟିତ କରିବାକୁ ଚେଷ୍ଟା କରିଛି ।

କେତେକ କ୍ଷେତ୍ରରେ ଏକ ଗଭୀର ଅସନ୍ତୋଷ ସ୍ୱର ପରିସ୍ଫୁଟ ହୋଇଛି ମାର୍କସ୍‌ବାଦୀ ଦର୍ଶନର ପ୍ରଭାବରେ । ଏଇ ଦର୍ଶନ ଭିତରେ ସୃଷ୍ଟିର ନୂତନ ଯେପରି ଲୋକଚିତ୍ତରେ ଏକ ସମୟରେ ସମଗ୍ର ଆଲୋଡ଼ନ ସୃଷ୍ଟି କରିଥିଲା । ମଣିଷ ଦିନକୁ ଦିନ ଏପରି ଭାବରେ ପୃଥିବୀରେ ଗଭୀର ବାସ୍ତବତାର ସମ୍ମୁଖୀନ ହୋଇ ନିଷ୍ପେଷିତ ହୋଇ ପଡ଼ୁଛି ଯେ ତା' ନିକଟରେ ବଞ୍ଚିବାର ମୋହ ଅର୍ଥଶୂନ୍ୟ ପ୍ରତୀୟମାନ ହେଉଛି । ସେ ସାମ୍ୟବାଦୀ ଓ ସମାଜବାଦୀ ଚିନ୍ତାଧାରା ଭିତରେ ଏକ ନୂତନ ପୃଥିବୀର ସନ୍ଧାନ କରିଛି । ନୂତନ ଭାବଧାରା ତାକୁ ନୂତନ ସମାଜ ସୃଷ୍ଟିର ଆଶାରେ ଆଶାନ୍ୱିତ କରିଛି । ଏଇ ଚେତନା କେତେବର୍ଷ ଧରି ଆଧୁନିକ କବିତାର ଆତ୍ମିକ ପରିବର୍ତ୍ତନରେ ଅନେକ ପରିମାଣରେ ସହାୟତା କରିଛି ।

ବିଜ୍ଞାନର ପ୍ରମୁଖ ନୃତାତ୍ତ୍ୱିକ, ପ୍ଳାଙ୍କ୍, ବୋର୍, ଆଇନ୍‌ଷ୍ଟାଇନ୍ ପ୍ରମୁଖ ପଦାର୍ଥବିଜ୍ଞାନୀ ବିଜ୍ଞାନ କ୍ଷେତ୍ରରେ ଯେଉଁ ଅଭୂତପୂର୍ବ ପରିବର୍ତ୍ତନ ସୃଷ୍ଟି କଲେ ତାହା ଆଧୁନିକ ଜନଜୀବନକୁ ଗଭୀର ଭାବରେ ପ୍ରଭାବିତ କରିଛି । ବିଜ୍ଞାନର ଅଗ୍ରଗତି ସଙ୍ଗେ ସଙ୍ଗେ ମଣିଷ ମନରୁ ଧର୍ମ ପ୍ରତି ଆସ୍ଥା ସମ୍ପୂର୍ଣ୍ଣ ଲୋପ ପାଇଛି । ବିଜ୍ଞାନ କ୍ରମଶଃ ଧର୍ମର ଆସନ ଅଧିକାର କରି ବସିଛି । ଯାହା ଅଲଭ୍ୟ, ଅସମ୍ଭବ ପଦାର୍ଥ ଥିଲା ତାହା ମଣିଷର ଅତି ନିକଟରେ ଆସି ଉପସ୍ଥିତ ହୋଇଛି । ଧର୍ମ ମଣିଷ ନିକଟରେ ଅଫିମ୍ ନିଶା ପରି ପ୍ରତିପନ୍ନମାନ ହୋଇଛି । ବିଜ୍ଞାନ ମଣିଷ ସମାଜର ଅର୍ଥନୈତିକ ମାନଦଣ୍ଡ ବୃଦ୍ଧି କରିବାରେ ଏକ ଆଶୀର୍ବାଦ ଭାବରେ ଦେଖାଦେଇଛି; କିନ୍ତୁ ଏହା ଫଳରେ ମଣିଷର ଅର୍ଥ ଓ କ୍ଷମତା-ଲିପ୍‌ସା ଖୁବ୍ ବେଶୀ ପରିମାଣରେ ବୃଦ୍ଧି ପାଇଛି । ସେ ପରସ୍ପରକୁ ଅବିଶ୍ୱାସ କରିବାକୁ ଲାଗିଛି । ଏପରିକି ଅନେକ ସମୟରେ ନିଜକୁ ମଧ୍ୟ ବିଶ୍ୱାସ କରୁଛି । ଏପରି ଏକ ଅବିଶ୍ୱାସର ଧୂମ୍ରକୁଣ୍ଡଳୀ ଭିତରେ ଶ୍ୱାସରୁଦ୍ଧ ହେବା ବେଳେ ତା'ର ମାନସିକ ଅବସ୍ଥାର ପ୍ରତିଫଳନ କବିତା ଭିତରେ ପରିସ୍ଫୁଟ ହୋଇ ଉଠିଛି ।

ବିଶ୍ୱବିଖ୍ୟାତ ମନସ୍ତତ୍ତ୍ୱବିଦ୍ ଫ୍ରଏଡ୍‌ଙ୍କ ମନୋବିଜ୍ଞାନ ବିଶ୍ୱ-କ୍ଷେତ୍ରରେ ପୁଣି ଏକ ନୂତନ ପରିବର୍ତ୍ତନ ଆଣିବାରେ ସହାୟକ ହୋଇଛି । ତାଙ୍କର ମନସ୍ତତ୍ତ୍ୱ ଅନୁସାରେ ଅବଚେତନ ମନର କ୍ରିୟାକୁ ପ୍ରାଧାନ୍ୟ ଦିଆ ଯିବାରୁ ମଣିଷର ଚିନ୍ତାଧାରାରେ ବହୁ ପରିମାଣରେ ଅସଂଲଗ୍ନତା କ୍ରମଶଃ ପରିଲକ୍ଷିତ ହୋଇଛି । ଫ୍ରଏଡ୍‌ଙ୍କ ଆବିଷ୍କାର ଫଳରେ ବ୍ୟକ୍ତିତ୍ୱର ସ୍ୱରୂପ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଯାଇଛି । ମଣିଷର ଅବଚେତନ ମନରେ ପୁଞ୍ଜିଭୂତ ହୋଇ ରହିଥିବା ଅଭିଜ୍ଞତାମାନ ଯୌନକାମନା ସହିତ ସଂପୃକ୍ତ ଏବଂ ଏହି କାମନାକୁ ଗୋଟିଏ ଶକ୍ତି ସବୁ ସମୟରେ ଅବଦମିତ କରି ରଖିବାକୁ ଚେଷ୍ଟା କରୁଥିବାରୁ ମଣିଷମନରେ ବିଭିନ୍ନ ପ୍ରକାର କମ୍ପ୍ଲେକ୍ସ ବା ବିକାର ସୃଷ୍ଟି ହୁଏ । ଫ୍ରଏଡ୍‌ଙ୍କ ପରେ ଏଡ୍‌ଲର୍ ଓ ୟୁଙ୍ଗ ମଣିଷର ସହଜାତ କ୍ଷମତାଲିପ୍‌ସା କିପରି ତା'ର ଅବଚେତନ ମନକୁ ନିୟନ୍ତ୍ରଣ କରେ ତାହା ଦର୍ଶାଇଥିଲେ । ଚେତନ ମନର ସକଳ କ୍ରିୟା ଅବଚେତନ ମନ ଉପରେ ନିର୍ଭର କରୁଛନ୍ତି ବୋଲି ଜଣାପଡ଼ିବା ଫଳରେ ମଣିଷର ସ୍ୱାଧୀନ ଇଚ୍ଛା ଉପରେ ଆଉ ବିଶ୍ୱାସ ସ୍ଥାପନ କରି ହେଲା ନାହିଁ । ମଣିଷର ଅନ୍ତର୍ନିହିତ ବିପର୍ଯ୍ୟସ୍ତ ରୂପ କବିର ଲେଖନୀ ଭିତରେ ସ୍ପଷ୍ଟତର ହୋଇ

ଉଠିଲା । ସ୍ନେହ, ପ୍ରେମ, କରୁଣା ପରି ପ୍ରତିଷ୍ଠିତ ମୂଲ୍ୟବୋଧରେ ଘୋର ସଂଶୟ ଦେଖା ଦେଲା । ଏହା ଫଳରେ ଯେଉଁ ଅନିଶ୍ଚିତ ଉଦ୍‌ବିଗ୍ନତା ପରିଲକ୍ଷିତ ହେଲା ତା'ର ରୂପାୟନରେ କବିର ସୃଷ୍ଟି ଅସ୍ପଷ୍ଟ ହୋଇ ପଡ଼ିଲା । କ୍ରମଶଃ କବି ଦେହଜ କାମନା, ବାସନା ଓ ଐକାନ୍ତିକ ଅନୁଭୂତି-ଗୁଡ଼ିକୁ ସ୍ୱୀକାର କରିବାକୁ ଲାଗିଲା । ତେଣୁ ଆଧୁନିକ କବିତାରେ ଯୌନ-ଚେତନାର ପ୍ରାବଲ୍ୟ ପ୍ରାୟ ପରିଲକ୍ଷିତ ହୋଇଥାଏ ।

ସ୍ଥୂଳତଃ, ଆଧୁନିକ କବି ପୃଥିବୀର ଭିନ୍ନଯୁଗୀୟ ସଂସ୍କୃତି ଓ ଐତିହ୍ୟର ସଚେତନତା ଲାଭ କରି ତା'ର କବିତାର ସ୍ୱତଃସ୍ଫୂର୍ତ୍ତି ପ୍ରବାହକୁ ଆହୁରି ଜଟିଳତର କରି ପକାଇଛି । ପ୍ରତ୍ୟେକ ବସ୍ତୁର ସୂକ୍ଷ୍ମତମ ଅଧ୍ୟୟନ ଓ ମଣିଷର ଆତ୍ମବିରୋଧ ଭାବନାର ଏକ ବିଚିତ୍ର ସମନ୍ୱୟ ଘଟିଛି । ମଣିଷକୁ ଅନିକେତ ମନୋଭାବ ତା'ର ନିଜସ୍ୱ ସ୍ଥିତି ସଂପର୍କରେ ଅବିଶ୍ୱାସୀ କରି ତୋଳିଛି । ଫଳରେ ଭଗବାନ ଓ ପ୍ରଥାଗତ ନୀତି ଧର୍ମ ପ୍ରତି ତା'ର ଆସ୍ଥା ତୁଟି ଯାଇଛି । ସେ ପୁରାତନ ବିରୋଧରେ ପ୍ରତ୍ୟକ୍ଷଭାବରେ ବିଦ୍ରୋହ ଘୋଷଣା କରିଛି । ଏହି ବିଦ୍ରୋହର ଫଳ ସ୍ୱରୂପ ଯାନ୍ତ୍ରିକତାର ଜୟଗାନ ତା' ପକ୍ଷରେ ସ୍ୱାଭାବିକ ହୋଇ ଉଠିଛି । ଆଜିର କବିତାରେ ଏ ସମସ୍ତର ଦୃଷ୍ଟାନ୍ତ ଅବିରଳ ନୁହେଁ ।

ଆତ୍ମିକ ପରିବର୍ତ୍ତନ ପରି ଆଙ୍ଗିକ କ୍ଷେତ୍ରରେ ମଧ୍ୟ ଏକ ବିରାଟ ପରିବର୍ତ୍ତନ ଲକ୍ଷିତ ହୋଇଛି । ପୁରାତନ ଭାବାଂଶର ମୃତ୍ୟୁ ସଙ୍ଗେ ସଙ୍ଗେ କାବ୍ୟିକ ଛନ୍ଦ, ପ୍ରବହମାନ ଗୀତିମୟ ଧାରା ଅବଲୁପ୍ତ ହୋଇଛି । ଛନ୍ଦ ଓ ଯତିପାତ ଆଧୁନିକ ଜଟିଳ ମନର ବକ୍ତବ୍ୟକୁ ପ୍ରକାଶ କରିବା ଲାଗି ଅକ୍ଷମ ହୋଇଛି । ସାମ୍ପ୍ରତିକ ଯୁଗଚେତନାର ବିକ୍ଷିପ୍ତତା ଓ ଜଟିଳତାକୁ ପ୍ରକାଶ କରିବା ଲାଗି ବର୍ତ୍ତମାନ ଗଦ୍ୟ ହିଁ ପ୍ରଧାନ ମାଧ୍ୟମ । ମଣିଷ ମନରୁ ଯେତେବେଳେ ଗୀତିମୟତା ଲୋପ ପାଇ ଯାଇଛି, ତା'ର ଯନ୍ତ୍ରଣା ଜର୍ଜରିତ କବିତା ଭିତରେ ଗୀତିମୟତାର ଉପସ୍ଥିତି ସଂଭବ ହେବ କିପରି ? ଆଜିର ମାନସିକ ଦ୍ୱିଧାଦ୍ୱନ୍ଦ୍ୱର ପ୍ରକାଶନ ଗଦ୍ୟମୟ ହେବା ସ୍ୱାଭାବିକ ; କିନ୍ତୁ ଏହି ଗଦ୍ୟଛନ୍ଦ ଭିତରେ ମଧ୍ୟ ଏକ ନୂତନ ଧରଣର ମାଧୁର୍ଯ୍ୟ ରହିଛି । ତାହା ହେଉଛି ଅନ୍ତର୍ଛନ୍ଦ ବା ମଧ୍ୟ ମିଳନ । ରୁକ୍ଷ ଗଦ୍ୟଛନ୍ଦ ଭିତରେ ଏହି ମଧ୍ୟ ମିଳନର ଧ୍ୱନିମାଧୁର୍ଯ୍ୟ ହିଁ ପାଠକକୁ କେତେକ ପରିମାଣରେ ଆନନ୍ଦ ଦାନ

କରିଥାଏ, ନଚେତ୍ ଗଦ୍ୟ କବିତା ସଂପୂର୍ଣ୍ଣ ନୀରସ ଓ ବାହ୍ୟ କାବ୍ୟଧର୍ମ ବିବର୍ଜିତ ହୋଇ ପଡ଼ିଥାନ୍ତା ।

ଆଧୁନିକ କବିତାରେ ବାକ୍‌ରୀତି ସହିତ କାବ୍ୟିକ ରୀତିର ମିଳନ ବୈପ୍ଳବିକ ପଦକ୍ଷେପ । ସାହିତ୍ୟର, ଦରବାରରେ ବିଶେଷତଃ କବିତାର ଦରବାରରେ, ବାକ୍‌ରୀତିର ସାମାନ୍ୟତମ ସମ୍ମାନ ନ ଥିଲା । କିନ୍ତୁ ଆଧୁନିକ ଯୁଗରେ ଏହା ସର୍ବଶ୍ରେଷ୍ଠ ସମ୍ମାନ ଲଭ କରିଛି । ଆଧୁନିକ ମଣିଷ ମୁଖର ଭାଷା ପ୍ରୟୋଗର ଚେଷ୍ଟା କରିବାକୁ ଯାଇ କବି ପ୍ରଚଳିତ ଶବ୍ଦ, ଗ୍ରାମ୍ୟଶବ୍ଦ ବିଦେଶୀ ଶବ୍ଦର ବ୍ୟବହାର କରିବାକୁ ଚେଷ୍ଟା କରିଛି । ଗଦ୍ୟ, ପଦ୍ୟ ଓ କଥ୍ୟଭାଷାର ବିରାଟ ବ୍ୟବଧାନ ଏହା ଫଳରେ ଦୂରୀଭୂତ ହୋଇଛି । ପୁରାତନ କାବ୍ୟିକ ଶବ୍ଦର ବ୍ୟବହାର ମଧ୍ୟ ଏହା ସହିତ ସମନ୍ୱୟ ସାଧନ କରିଛି । ତେଣୁ ଭାଷା ସମ୍ବନ୍ଧୀୟ-ରକ୍ଷଣଶୀଳତାର ସାମାନ୍ୟ ସ୍ପର୍ଶ ଆଧୁନିକ କବିତାରେ ଦେଖିବାକୁ ମିଳେ ନାହିଁ, କେତେକ ସ୍ଥଳରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ କାବ୍ୟ ପୁରାଣରୁ ବା ସଦୁକ୍ତିରୁ ଉଦ୍ଧୃତ କବିତା ଭିତରେ ଲକ୍ଷିତ ହୁଏ । କବିତାର ଭାଷା ପ୍ରୟୋଗରେ ଏହି ଉଦ୍ଧୃତିଗୁଡ଼ିକ ଏକ ନୂତନ ଆସ୍ୱାଦନ ପ୍ରଦାନ କରିଥାଏ ।

ପ୍ରାଚୀନ ଉପମା ଓ ଶବ୍ଦଗୁଡ଼ିକ ଅନେକ ସମୟରେ ପରିହାର କରାଯାଇଥିଲେ ମଧ୍ୟ କେତେକ ସ୍ଥଳରେ ନୂତନ ଅର୍ଥରେ ଏଗୁଡ଼ିକର ବ୍ୟବହାର ରହିଛି । ପୁଣି ଆଧୁନିକ ମାନସ ଲବ୍ଧ ପ୍ରତୀକ ଓ ଚିତ୍ରକଳ୍ପ ସଂଯୋଜନା ସଂପୂର୍ଣ୍ଣ ବିଚିତ୍ର । ଅଧିକାଂଶ ଅକାବ୍ୟ ବସ୍ତୁ ବିଶେଷତଃ ସାଧାରଣ ଦୃଷ୍ଟିରେ ଯୁଗଯୁଗ ଧରି ଅନାଦୃତ ବସ୍ତୁ ଆଜିର କବିକୁ ଆକୃଷ୍ଟ କରିଛି । ପାଠକ ଏହି ଅବହେଳିତ ପଦାର୍ଥଗୁଡ଼ିକରେ ନୂତନତ୍ୱର ସନ୍ଧାନ ସହ୍ୟ କରି ବିସ୍ମିତ ହୋଇଛି । ପ୍ରତୀକ ଓ ଚିତ୍ରକଳ୍ପ ବୌଦ୍ଧିକ ପୃଷ୍ଠ-ଭୂମିରେ ଅଭିବ୍ୟକ୍ତିକୁ ଏକାନ୍ତ ଅର୍ଥପୂର୍ଣ୍ଣ ଭାବରେ ପ୍ରକାଶ କରିବାକୁ ସମର୍ଥ ହୋଇଛି । ପୁଣି ପ୍ରତୀକ ଓ ଚିତ୍ରକଳ୍ପର ରୂପବୈଚିତ୍ର୍ୟ ପାଠକମନରେ ଏକ ନୂତନ ରହସ୍ୟର ସଞ୍ଚାର କରିବା ସଙ୍ଗେ ସଙ୍ଗେ ତାକୁ ଏକ ଦୁର୍ବୋଧ ଅଥଚ ଆନନ୍ଦମୟ ଜଗତକୁ ଅପସାରିତ କରି ନେଇଛି ।

ସାଂପ୍ରତିକ କବିତାରେ ଶବ୍ଦ ପ୍ରୟୋଗରେ ବା ଶବ୍ଦ ଗଠନରେ ବହୁ ପରିମାଣରେ ମିତବ୍ୟୟିତା ଅବଲମ୍ବନ କରାଯାଇଛି । ଏହା ଫଳରେ

କବି ଅତିକଥନ ତ୍ୟାଗ କରି ଅର୍ଥଘନତ୍ୱ ଉପରେ ଗୁରୁତ୍ୱ ପ୍ରଦାନ କରି ପାରୁଛି । ଅତିକଥନ ବର୍ଜନ ଫଳରେ ସେ କେତେକ ସ୍ଥଳରେ ମଧ୍ୟବର୍ତ୍ତୀ ଚରଣକୁ ମଧ୍ୟ ଉଲ୍ଲେଖ କରୁ ନାହିଁ । ତେଣୁ ତା'ର ଚିନ୍ତାଧାରାରେ ଏକ ଉଲ୍ଲମ୍ଫନ ସୃଷ୍ଟି ହୋଇ ଦୁଇଟି ଚରଣ ଭିତରେ ପରସ୍ପର ସଂପର୍କହୀନତା ପ୍ରତିପନ୍ନମାନ ହେଉଛି । ଏହା ପ୍ରାଥମିକ ସ୍ତରରେ ପାଠକକୁ ହଠାତ୍ ବିଚଳିତ କରୁଛି । କିନ୍ତୁ ପରେ ପାଠକ ମନରେ ଏହି ସ୍ୱଳ୍ପ ଗଭୀର ରେଖାପାତ କରି ପାରୁଛି ।

ଆଧୁନିକ ମଣିଷ ମନର ସୂକ୍ଷ୍ମ ଅଭିବ୍ୟକ୍ତିକୁ ପ୍ରକୃଷ୍ଟ ରୂପାୟନ ଦେବା ଲାଗି କବିତାରେ ବହୁବିଧ ଆଙ୍ଗିକ ଓ ଆତ୍ମିକ ବିବର୍ତ୍ତନ ସାଧିତ ହୋଇଅଛି ; ତେଣୁ ଏ ନୂତନତ୍ୱକୁ ସ୍ୱାଗତ କରିବା ହେଉଛି ପ୍ରତ୍ୟେକ ଶିଳ୍ପୀ ତଥା ହୃଦୟଗ୍ରାହୀର ନୈତିକ କର୍ତ୍ତବ୍ୟ ।

———

# ମୋ ଦୃଷ୍ଟିରେ
# ସାଂପ୍ରତିକ କବିତାର ଅଧ୍ୟୟନ

ଅଧ୍ୟାପକ କାଳନ୍ଦୀଚରଣ ବେହେରା,

"Poetry is written in language and therefore it is a look about the sources of language. Language is a social product, the instrument where by men communicate and persuade each other; thus the study of Poetry's source can not be separated from the study of society."

-(Illusion & Reality-*Christopher Candwell*)

କବିତା ସମ୍ବନ୍ଧରେ ଅନୁଧ୍ୟାନ କରିବାକୁ ଗଲେ ବା ଆଲୋଚନା କରିବାକୁ ଗଲେ ଯଦି ସମାଜର ପ୍ରକୃଷ୍ଟ ଚିତ୍ର ପ୍ରତି ଦୃଷ୍ଟିପାତ କରିବା ଏକାନ୍ତ ଆବଶ୍ୟକ ହୁଏ, ସାମାଜିକ ଇତିହାସ ସମ୍ବନ୍ଧରେ ଜ୍ଞାନ ଆହରଣ ଅପରି- ହାର୍ଯ୍ୟ ହୋଇପଡ଼େ । ତେବେ ସମାଜ ଓ ସାହିତ୍ୟ ମଧ୍ୟରେ ସମ୍ପର୍କ ଯେ ଅତି ନିବିଡ଼, ଏଥିରେ ଦ୍ୱିମତ ହେବାର କୌଣସି ଅବକାଶ ନଥିପାରେ ନାହିଁ । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ସାହିତ୍ୟ ସମାଜର ଏକ ଊର୍ଦ୍ଧ୍ୱସ୍ୱଳ ଅଭିବ୍ୟକ୍ତି ଓ ସାମାଜିକ ଜୀବନର ଏକ ନିଖୁଣ ପ୍ରତିଛବି । ଯେଉଁ ସାହିତ୍ୟରେ ଜୀବନର ପ୍ରତ୍ୟେକ ଘାତ ପ୍ରତିଘାତ ଓ ସମସ୍ୟାର ଦାରୁଣ ଅଭାବ ପରିଲକ୍ଷିତ ହୁଏ, ସେ ସାହିତ୍ୟକୁ ଉନ୍ନତ ସାହିତ୍ୟର ଆଖ୍ୟା ଦେବାକୁ କପରି କୁଣ୍ଠାବୋଧ ହୁଏ । ଏହି ଦୃଷ୍ଟିରୁ ପୁରାଣଯୁଗର କଳ୍ପନାବିଳାସୀ କବିମାନଙ୍କର କପୋଳକଳ୍ପିତ, ସୁନେଲି ସ୍ୱପ୍ନଲୋକର କଳ୍ପରାଗରଞ୍ଜିତ ଅଜବ ପରୀକାହାଣୀ ବା ଦେବଦେବୀଙ୍କର ଆଖ୍ୟାୟିକା ତଥା ମଧ୍ୟଯୁଗୀୟ ନାରୀପଦର ନୂପୁର ନିକ୍ୱଣରେ ଅନୁରଣିତ, ପରକୀୟା

ଯୌପଲଳନାମାନଙ୍କର କଳେବରରେ ମୁଖଶତ ଏବଂ ଭଞ୍ଜୀୟ ନାୟିକା-ମାନଙ୍କର ଗୃହ୍ଠୂ, ଚନ୍ଦ୍ରଗ୍ରହନ, ନୀବିମୋଚନ, କୁଚମର୍ଦ୍ଦନ, ନିଷିଦ୍ଧ ଅଙ୍ଗ ଅନୁମୋଚନ ଓ ସମ୍ଭୋଗକାଳୀନ ଇସିଇସି ନାଦର ଶୃଙ୍ଗାରି ଉଚ୍ଚାରଣରେ ଭାରାକ୍ରାନ୍ତ ସାହିତ୍ୟକୁ 'ଗଣ' ସାହିତ୍ୟ ନ କହି 'ଜଣ' ସାହିତ୍ୟ ବୋଲି ପରିଚିତ କରାଇବା ଅଧିକ ସମୀଚୀନ। ଅଜବ କଳ୍ପନା-ବିଳାସିତାରେ ଭାରାକ୍ରାନ୍ତ ହୋଇଥିବାରୁ ଏ ଯୁଗୀୟ ସାହିତ୍ୟ ଓ ସାମ୍ପ୍ରତିକ ସାହିତ୍ୟ କ୍ଷେତ୍ରରେ ପ୍ରଭେଦ ଅନେକ-ବିସ୍ତୃତ। ପୂର୍ବବର୍ତ୍ତୀ ସାହିତ୍ୟର ପ୍ରାଧାନ୍ୟ ସ୍ୱୀକାର କରିବାକୁ ଯାଇ କେତେକ ସମାଲୋଚକ କହନ୍ତି ଯେ କଳା ପାଇଁ କଳା ବା Art for Art sake—ତେଣୁ ଓଡ଼ିଆର ଏହି ଦରବାରୀ ସାହିତ୍ୟ ବିରୋଧରେ ନାନା ପ୍ରକାର ସ୍ଲୋଗାନ ଉତ୍‌ଥିତ ହେଲା। ଆଧୁନିକ ଧର୍ମୀମାନେ ପୁରାତନର ଅସ୍ଥିମଜ୍ଜା ଭିତରୁ ସଂସ୍କୃତ ପ୍ରଭାବିତ ଭାଷାର ନିଗଡ଼ ଶିଳାବନ୍ଧନ ଦେହରୁ ସାହିତ୍ୟକୁ ଉନ୍ମୁକ୍ତ କରିବାକୁ ବ୍ୟାକୁଳ ହୋଇ ପଡ଼ିଲେ। ପାଶ୍ଚାତ୍ୟ ସାହିତ୍ୟ ଓ ସମସ୍ୟା ବିଜଡ଼ିତ ଘଟଣାର ଉଚ୍ଛଳ ପ୍ରବାହ, ସେମାନଙ୍କର ଦୃଷ୍ଟିଶକ୍ତିକୁ ସୁଦୂରପ୍ରସାରୀ କଲା। ଜ୍ଞାନାହରଣଶକ୍ତିକୁ ଋଦ୍ଧିମନ୍ତ କଲା। ତେଣୁ ପୁରାତନର ସୁଦୃଢ଼ ବନ୍ଧନରୁ, ଆଗ୍ରହ ବିଗ୍ରହରୁ, ମିଥନୟମରୁ ଆଧୁନିକ ସାହିତ୍ୟ ଯଦି ମୁକ୍ତିଲାଭ କରିଛି ବୋଲି ବିଗ୍ରହ କରାଯାଏ, ତେବେ ପାଶ୍ଚାତ୍ୟ ସାହିତ୍ୟ ଓ ପାଶ୍ଚାତ୍ୟ ପଣ୍ଡିତମାନଙ୍କ ନିକଟରେ ଆଧୁନିକ କବି ଓ ସାହିତ୍ୟିକମାନଙ୍କୁ ନିଶ୍ଚୟ କୃତଜ୍ଞତା ଜଣାଇବାକୁ ପଡ଼ିବ। କାରଣ ସେମାନଙ୍କର ଚିନ୍ତାଧାରା ଓ ଶୈଳୀର ଗୃହ୍ଣୁଖ ବ୍ୟତିରେକେ ଆଧୁନିକ ସାହିତ୍ୟର ଉଦ୍‌ଭବ ହୁଏତ ଅସମ୍ଭବ ହୋଇ ପଡ଼ିଥାନ୍ତା।

ସାଂପ୍ରତିକ କବିତା ସମ୍ବନ୍ଧରେ କୌଣସି ପ୍ରକାର ଟିପ୍ପଣୀ ବା ଆଲୋଚନା କରିବା ପୂର୍ବରୁ ସାଂପ୍ରତିକ କବିତାର ଉତ୍ପତ୍ତି ଓ ଉତ୍ପତ୍ତିର ଅପରିହାର୍ଯ୍ୟତା ସମ୍ବନ୍ଧରେ ଟିକିଏ ଆଲୋକପାତ କରିବା ଏକାନ୍ତ ଆବଶ୍ୟକ। ଏଥିପାଇଁ କେବଳ ଓଡ଼ିଆ ନୁହେଁ, ଭାରତର ସରହଦ୍ ଟପି ବିଶ୍ୱସାହିତ୍ୟ ସମ୍ବନ୍ଧରେ କିଛିର୍ ଆଲୋଚନା କରିବାକୁ ପଡ଼ିବ। କାରଣ ପୂର୍ବରୁ କହିଛି ଯେ ଓଡ଼ିଆ ସାହିତ୍ୟରେ ଆଧୁନିକତା ପୂରାପୂରି ପାଶ୍ଚାତ୍ୟ ସାହିତ୍ୟ ଉପରେ ନିର୍ଭର କରେ।

ପ୍ରାଚୀନ ସାହିତ୍ୟରେ କେତେକ ପାରମ୍ପରିକ ମିଥନୟମ ପ୍ରଚଳିତ ଥିଲା, ଯାହା କେତେକ ଚତୁର ଲୋକଙ୍କ ନିର୍ଦ୍ଦେଶରେ ସମାଜରେ ଭଗବାନ

ନାମରେ ହିଁ ଗଡ୍ଡାଳିକା ପ୍ରବାହରେ ଚାଲି ଆସୁଥିଲା । ଏହି ନିୟମରେ ରାଜା, ଜମିଦାର ଓ ଧର୍ମଯାଜକମାନେ ସର୍ବସାଧାରଣଙ୍କ ଉପରେ ନିଜର ଯଥେଚ୍ଛାଚାର ଜାହିର୍ କରୁଥିଲେ । ଭଗବାନଙ୍କର ଏହି ପ୍ରତିନିଧିଙ୍କ ବିରୋଧରେ ସର୍ବସାଧାରଣଙ୍କ ମନରେ ହୁଏତ ବିଦ୍ରୋହର, ପ୍ରତିବାଦର ଅଗ୍ନିସ୍ଫୁଲିଙ୍ଗ ବହିଃପ୍ରକାଶର ସନ୍ଧାନରେ ଉଦ୍‌ଗ୍ରୀବ ହୋଇ ଉଠିଥିଲା, ମାତ୍ର ଈଶ୍ୱର ନାମକ ଉପଢୌକନ ତାକୁ ସେ ସ୍ଫୁଲିଙ୍ଗ ବହିର୍ଗତ ହୋଇ ପାରୁ ନ ଥିଲା । କେତେକ ଲୋକଙ୍କୁ ସବୁଦିନ ପାଇଁ ବୋକା କରି ଦିଆଯାଇ ପାରେ, କିଛି ଲୋକଙ୍କୁ କିଛି ଦିନ ପାଇଁ ବୋକା କରି ଦିଆଯାଇ ପାରେ, ମାତ୍ର ସବୁଲୋକଙ୍କୁ ସବୁଦିନ ପାଇଁ ବୋକା କରି ରଖିବାର କଳ୍ପନା ଅଧିକ ନିର୍ବୋଧତା ବ୍ୟତୀତ ଆଉ କିଛି ନୁହେଁ । ଇତିହାସର ଏହି ପରମ ସତ୍ୟ ସମାଜ ନିମନ୍ତେ ହିଁ ରୂପ ପରିଗ୍ରହ ଧାରଣ କଲା । ଯୁଗଯୁଗ ଧରି ରାଜା ଓ ସାମନ୍ତମାନେ ଦାସଦାସୀମାନଙ୍କ ଉପରେ ଯେଉଁ ଅତ୍ୟାଚାର କରି ଆସିଛନ୍ତି, ପୁଞ୍ଜିପତି ଓ ଜମିଦାରମାନେ ଶ୍ରମିକ ଓ କୃଷୀମାନଙ୍କୁ ଯେପରି ଶୋଷଣ କରିଛନ୍ତି—ଧର୍ମ ନାମରେ ସର୍ବସାଧାରଣଙ୍କୁ ଧର୍ମ-ସଂରକ୍ଷକମାନେ ଯେପରି ଶୋଷଣ କରିଛନ୍ତି, ତା' ବିରୋଧରେ ଦିନେ ନା ଦିନେ ନିଶ୍ଚୟ ଯେ ପ୍ରତିବାଦର ସ୍ୱର ଉଚ୍ଚାରିତ ହେବ, ଏଥିରେ ସନ୍ଦେହ କରିବାର କିଛି ନ ଥିଲା । ଶିଳ୍ପ-ବିପ୍ଳବ ପରେ ପରେ ସମାଜରେ ଶ୍ରେଣୀ-ସଂଘର୍ଷ ଅତି ଭୟାବହ ଆକାର ଧାରଣ କଲା । ଯୁଗ ଯୁଗ ଧରି ନିଷ୍ପେଷଣର, ଅନ୍ତର୍ଜ୍ୱାଳାର ଓ ଅନୁଶୋଚନାର ବିରୋଧ ରୁଷର '୧୯୧୭ ଅକ୍ଟୋବର ଆନ୍ଦୋଳନ' ପରେ ପରେ ସମାଜର ସ୍ତର ଥରାଇ ଚିତ୍କାର କରି ଉଠିଲା । ଏ ଚିତ୍କାର ନିଷ୍ପେଷିତର—ଏ ପ୍ରତିବାଦ ଅତ୍ୟାଚାରିତର —ଏ ଆନ୍ଦୋଳନ ବୁଭୁକ୍ଷୁର ।

ଏହିଠାରେ ସୃଷ୍ଟି ହୁଏ ପ୍ରଗତିବାଦର ଭୂମିକା । ଭଗବାନଙ୍କ ଅସ୍ତିତ୍ୱ ସମ୍ବନ୍ଧରେ ଲୋକମାନେ କ୍ରମଶଃ ସନ୍ଦିହାନ ହୋଇ ଉଠନ୍ତି । ଅବଶ୍ୟ ଅକ୍ଟୋବର ବିପ୍ଳବ (ରୁଷର) ପୃଷ୍ଠପୀଠିକା ଉପରେ ଓଡ଼ିଆ ସାହିତ୍ୟର 'ପ୍ରଗତି' ଯୁଗ ସମ୍ପୂର୍ଣ୍ଣ ରୂପେ ନିର୍ଭର କରେନା, ତଥାପି ଏ ପରିପ୍ରେକ୍ଷୀରେ ରୁଷର ଅକ୍ଟୋବର ବିପ୍ଳବକୁ ସମ୍ପୂର୍ଣ୍ଣ ଅଗ୍ରାହ୍ୟ କରାଯାଇ ପାରିବ ନାହିଁ । ମୁଁ ପୂର୍ବରୁ କହିଛି ଯେ ପ୍ରଗତି ସାହିତ୍ୟର ଅନୁପ୍ରବେଶରେ ହିଁ ପ୍ରାଚୀନ କଠିନ ନିୟମମାନ ଓଡ଼ିଆ ସାହିତ୍ୟ ତଥା ସଂସ୍କୃତ-ପ୍ରଭାବିତ ଭାରତୀୟ ଅନ୍ୟାନ୍ୟ ସାହିତ୍ୟରୁ କ୍ରମେ କ୍ରମେ ଅପସାରିତ ହେବାକୁ ଲାଗିଲା । ପୁରାତନ

ପନ୍ଥୀମାନଙ୍କଠାରୁ ମୁଁ କ୍ଷମା ମାଗି ନେଉଛି, କାରଣ ଆଲୋଚନା କ୍ରମେ କେତେକ ସ୍ଥାନରେ ମୁଁ ପୁରାତନ ସାହିତ୍ୟକୁ ସମାଲୋଚନା କରିଛି । ଅବଶ୍ୟ ଓଡ଼ିଆ ପୁରାତନ ସାହିତ୍ୟର ମୂଲ୍ୟ ଆଦୌ ନାହିଁ ବୋଲି କହିବାର ସ୍ପର୍ଦ୍ଧା ମୁଁ ଆଦୌ କରୁନାହିଁ । କାରଣ ଓଡ଼ିଶାର ଗୌରବ ବୋଲି ଆଜ ଯଦି କିଛି ଥାଏ, ସେମାନଙ୍କ ମଧ୍ୟରେ ଓଡ଼ିଆ ପ୍ରାଚୀନ ସାହିତ୍ୟ ଅନ୍ୟତମ । ତେବେ ପ୍ରାଚୀନ ସାହିତ୍ୟକୁ କେବଳ (କାମୁଡ଼ି) ଜାବୁଡ଼ି ଧରିଲେ ଆମେ ବହୁ ପଛରେ ପଡ଼ି ରହିବା । ତେଣୁ ପ୍ରଗତିବାଦୀ ସାହିତ୍ୟର ପ୍ରାଧାନ୍ୟ ସ୍ୱୀକାର କରିବା ଏକାନ୍ତ ଆବଶ୍ୟକ । ଏଥିରେ ପୁରାତନ ସାହିତ୍ୟପ୍ରତି ଅସୂୟାଭାବ ନାହିଁ କିମ୍ବା ସାମ୍ପ୍ରତିକ ସାହିତ୍ୟ ପ୍ରତି ପ୍ରିୟାପ୍ରୀତିର କୌଣସି ସଙ୍କେତ ନାହିଁ । ତା'ପରେ ଆଧୁନିକ ସାହିତ୍ୟିକ-ମାନେ ପ୍ରାଚୀନ ସାହିତ୍ୟିକମାନଙ୍କୁ ଯେପରି ସମାଲୋଚନା କରୁଛନ୍ତି ମୁଁ ତା'ର ପକ୍ଷ ଆଦୌ ଗ୍ରହଣ କରେ ନାହିଁ ।

> "Complain against the dead, but do not sue.
> They never read you, much less injured you."
>
> (*Vernon Watkins*—Attinities)

ଏ ଦୃଷ୍ଟିରୁ ପୁରାତନ ସାହିତ୍ୟିକମାନଙ୍କୁ କମ୍ ସମାଲୋଚନା ବା ସେମାନଙ୍କ କୃତି ସମ୍ବନ୍ଧରେ ଗର୍ଜନ ତର୍ଜନ କରିବା ଅରଣ୍ୟରୋଦନ ସଙ୍ଗେ ସମାନ ବ୍ୟର୍ଥତା ଆଉ କିଛି ନୁହେଁ । ସେମାନଙ୍କ ସାହିତ୍ୟ ଅବଶ୍ୟ ଯତିଯମକର ଯାଦୁକାଠି ପ୍ରୟୋଗରେ ଭାରାକ୍ରାନ୍ତ ହୋଇଥିଲା, ଈଶ୍ୱରସତ୍ତା ବସ୍ତ୍ରାନରେ ପଞ୍ଚମୁଖ ହୋଇ ସାଧାରଣ ଜୀବନଠାରୁ ଦୂରେଇ ରହିଥିଲା, ସଂସ୍କୃତ ଭାଷାର ଗଭୀର ପୃଷ୍ଠରେ ଜୀବନରଙ୍ଗ ଦୂରେଇ ବସିଥିଲା, ତଥାପି ଏହାର ମୂଲ୍ୟବୋଧ ପ୍ରତି ସନ୍ଦେହ ପ୍ରକାଶ କରିବାର କିଛି ନାହିଁ । ଆଜ ଯୁଗର ସ୍ଲୋଗାନ, ପୁରାତନ ସାହିତ୍ୟରେ କିଛି ନାହିଁ ; କିନ୍ତୁ କିଛି ନାହିଁର ଆବରଣ ତଳୁ ପୁରାତନ ସାହିତ୍ୟ ଯେଉଁ ସୁଉନ୍ନତ ମଥା ଟେକି ଉଙ୍କି ମାରୁଛି, ଅତ୍ୟାଧୁନିକପନ୍ଥୀମାନେ ସେ ମଥାକୁ ଘୋଡ଼ାଇ ପକାଇବାକୁ ଯେତେ ପ୍ରଚେଷ୍ଟା କଲେ ବି ଜୟଯୁକ୍ତ ହେବାର ଆଶା କମ୍ । କାରଣ ପୁରାତନ ସାହିତ୍ୟର ଓ ଆଧୁନିକ ସାହିତ୍ୟର ଆଙ୍ଗିକରେ ବହୁ ପ୍ରଭେଦ ।

ସେ ଯାହା ହେଉ, ଇତିହାସର କ୍ରୂର ଉପହାସରେ ସାହିତ୍ୟରୁ ଧର୍ମବିଶ୍ୱାସର ଉତ୍ତରଳ ପ୍ରବାହ କ୍ରମଶଃ ଶିଥିଳ ହୋଇ ପଡ଼ିଲା ଏବଂ ଗଜଦନ୍ତ ପଲଙ୍କର ମୋହ ତେଜି ରେନେସାଁର ପ୍ରବାହରେ ସାହିତ୍ୟ ମାନବିକ ସହାନୁଭୂତିରେ, ସମ୍ବେଦନାରେ ଭରପୂର ହୋଇ ଉଠିଲା । ଡାରଉଇନିଜିମ୍ ସହିତ ପୁରାତନ ଉତ୍‌ମାର ସଂଘର୍ଷ ନ ହୋଇଛି, ଏକଥା କୁହାଯାଇ ପାରିବ ନାହିଁ । ପରିଶେଷରେ ଡାରଉଇନ୍‌ଙ୍କର ବିବର୍ତ୍ତନବାଦ ହିଁ ପ୍ରାଧାନ୍ୟ ବିସ୍ତାର କରିଛି ସାହିତ୍ୟରେ । ପାଶ୍ଚାତ୍ୟ ସାହିତ୍ୟରେ ଏ ସଂଘର୍ଷ କେବଳ ନୁହେଁ, ଭାରତୀୟ ସାହିତ୍ୟର ଦେହ-ଦେହଳୀରେ ମଧ୍ୟ ଏ ଉତ୍ତାଳ ତରଙ୍ଗର ଧକ୍‌କା ବାଜିଲା, ଯାହା ଫଳରେ ପ୍ରାଚୀନ ପାରମ୍ପରିକ ମାନ୍ଦିର ଭାଙ୍ଗି ଚୂରମାର ହୋଇଗଲା । ମାନବିକ ସମ୍ବେଦନାରେ ଅସ୍ଥିର ହୋଇ ହିନ୍ଦୀ ସାହିତ୍ୟର ପ୍ରଗତିବାଦୀ କବି ଦିନ୍‌କର ଅତି ଅଶ୍ରୁଳ କଣ୍ଠରେ ତାଙ୍କ 'ହାହାକାର'ରେ ଗାଇ ଉଠିଲେ—

"ଦେଖ୍ କଲେଜା ଫାଡ଼୍ ଦେ ବହେ
କୃଷକ୍ ଆଜ୍ ଶୋଣିତ୍‌କା ଧାରେ
ଓର୍ ଉଠୀ ଜାତୀ ଉନ୍ ପର୍‌ହୀ
ବୈଭବାଙ୍କା ଊଚୀ ଦୀବାରେଁ ।"

କବି ପ୍ରାଣର ଏ ଗଭୀର ଅଭିବ୍ୟକ୍ତି ସମଗ୍ର ବିଶ୍ୱର ବାତାବରଣରେ ଅନୁରଣିତ ହୋଇ ଉଠିଲା । ଓଡ଼ିଆ ସାହିତ୍ୟ ବା ଏଥିରୁ ବାଦ ପାଆନ୍ତା କିପରି ? ଦିନ୍‌କରଙ୍କ ଭାଷାର ପ୍ରତିଧ୍ୱନି ଓଡ଼ିଆ କବି ଲକ୍ଷ୍ମୀଧର ନାୟକଙ୍କ କଣ୍ଠରେ ଶୁଣାଯାଇଛି—

"ଦଳିତ ପତିତ ଜାଗିଛିରେ ଆଜ
ଜଠର ଜ୍ୱାଳାରେ ଉଠିଛି ତାତି
ଜଳିଛି ଆଜିରେ ଭୋଗ-ଜଂଆଁ ହୁଳା
ସବହରା ଯେ ଉଠିଛି ମାତି ।
ରୋଧିବ କେ ଆଜି ହାଡ଼ କଙ୍କାଳ
ମଡ଼ା ମଣିଷର ଏ ପଟୁଆର !"

ଚିରାଚରିତ ଈଶ୍ୱର-ବିଶ୍ୱାସ ଉପରେ ସ୍ୱର୍ଗତଃ ଭଗବତୀ ପାଣିଗ୍ରାହୀଙ୍କ ପ୍ରାଣରେ ଯେଉଁ ବ୍ୟଥା ଜାଗି ଉଠିଥିଲା, ତାହା ତାଙ୍କର ମାଂସାଶୀ ଗଳ୍ପରେ ଅତି ସୁନ୍ଦର ଭାବରେ ରୂପାୟିତ ହୋଇଛି ।

"ପ୍ରତି କଥାରେ ଈଶ୍ୱର ଈଶ୍ୱର ହୋଇ ଆମ ଦେଶଟା ଉଚ୍ଛନ୍ନ ହେଲା ;
କିନ୍ତୁ ଈଶ୍ୱରଙ୍କର ସତ୍ତା ତ କୋଉଠି ଦେଖିବାକୁ ମିଳେ ନାହିଁ ।"

କବି ମାୟାଧର ମାନସିଂହ ମଧ୍ୟ ଈଶ୍ୱରସତ୍ତା ସମ୍ବନ୍ଧରେ ସନ୍ଦିହାନ ହୋଇ ଭଗବାନଙ୍କ ବିରୋଧରେ ଅନୁଯୋଗ କରିଛନ୍ତି—

"ମାନବର ଦୁଃଖ କଷ୍ଟ ଜଗତର ତ୍ରାସ
କମେ କମେ ନିଏ ମୋର ଈଶ୍ୱର-ବିଶ୍ୱାସ ।"

ଭଗବାନଙ୍କ ବିରୋଧରେ ଅନନ୍ତ ପଟ୍ଟନାୟକଙ୍କର କଣ୍ଠସ୍ୱର ଆହୁରି ତୀକ୍ଷ୍ଣ, ଆହୁରି ମର୍ମଭେଦୀ ।

"ଈଶ୍ୱର ହେ ବିଶ୍ୱର ସେ କେ ? :କି ଯାଏ ଆସେ ତାହାର ସାଥେ
ତାହାର ପାଇଁ ଅନ୍ଧ ଭକ୍ତି ବୁକୁରେ କମ୍ପା ଶକ୍ତି ହାତେ ?"

ପ୍ରଗତିବାଦୀ ସାହିତ୍ୟର ଏ କେତୋଟି ଉଦାହରଣ ଦେବାର ଉଦ୍ଦେଶ୍ୟ ଏହି ଯେ ଆଧୁନିକ ସାହିତ୍ୟ କିପରି ମୁକ୍ତକଣ୍ଠରେ ପୁରାତନ ରୀତିନୀତି ବିରୋଧରେ ଉଦ୍‌ଘୋଷଣାମାନ କରିଛି, ଏହା ହିଁ ତା'ର ପ୍ରମାଣ । ପୁରାତନର ନିବିଡ଼ ଗଣ୍ଡିମଧ୍ୟରୁ ମାନବିକ ସମ୍ବେଦନାରେ ଉଜ୍ଜ୍ୱଳ ଆଧୁନିକ ସାହିତ୍ୟ କିପରି ମୁକ୍ତ ହେଲା, ଏହା ହିଁ ତା'ର ପ୍ରଥମ ନିଦର୍ଶନ । ଏହି ଦୃଷ୍ଟିରୁ ହୁଏ ତ ଆଧୁନିକ କବିତାର ସଂଜ୍ଞା ନିରୂପଣ କରିବାକୁ ଯାଇ ଓଡ଼ିଶାର ଅନ୍ୟତମ ଆଧୁନିକ କବି ସଚ୍ଚି ରାଉତରାୟ କହିଛନ୍ତି—

"ବାକ୍ ରୀତି ସଙ୍ଗେ କାବ୍ୟିକ ରୀତିର ସମନ୍ୱୟ ଘଟାଇବା ଏବଂ ନୂତନ ଜୀବନର ପ୍ରତିନିଧିତ୍ୱ କରିବା—ଏହା ହିଁ ହେଉଛି ନୂତନ କବିତାର ମୂଳମନ୍ତ୍ର ।"

ଆଜିର କବିତା ଯେ ସର୍ବଜନଗ୍ରାହ୍ୟ ହୋଇଛି ଏ କଥା କୁହା ଯାଇପାରିବ ନ । ଏଥିପାଇଁ ସାହିତ୍ୟର ଭାଷା ହିଁ ପ୍ରଧାନ ଅନ୍ତରାୟ ରୂପେ ଦଣ୍ଡାୟମାନ ହୋଇଛି । ଯେଉଁ ପର୍ଯ୍ୟନ୍ତ ବାକ୍ ରୀତି ଓ କାବ୍ୟିକ ରୀତିର ପୂର୍ଣ୍ଣ ସମନ୍ୱୟ ନ ଘଟିଛି, ସେ ପର୍ଯ୍ୟନ୍ତ ସାହିତ୍ୟ ସର୍ବସାଧାରଣଙ୍କର ବୋଧଗମ୍ୟ ହୋଇ ପାରିବ ନାହିଁ । ତେଣୁ ସାଂପ୍ରତିକ ସାହିତ୍ୟିକମାନେ ଏଥିପ୍ରତି ଦୃଷ୍ଟି ଦେବା ପାଇଁ ମୁଁ ବିନମ୍ର ଅନୁରୋଧ କରୁଛି । ଶ୍ରୀଯୁକ୍ତ ସଚ୍ଚି ରାଉତରାୟ ଭାଷାର ସରଳତା ସମ୍ବନ୍ଧରେ ସଂସ୍କୃତ ଭାଷାରୁ ମୁକ୍ତ ସାହିତ୍ୟ ସମ୍ବନ୍ଧରେ ଅନେକ କ୍ଷେତ୍ରରେ ମତ ବ୍ୟକ୍ତ କରିଛନ୍ତି । କିନ୍ତୁ ସେ ନିଜେ

ଯେ ସେ ପ୍ରଭାବରୁ ମୁକ୍ତ ହୋଇ ପାରିନାହାନ୍ତି, ତାହା ତାଙ୍କର ଅନେକ କବିତାରେ ପରିଲକ୍ଷିତ ହେଉଥିଲେ ବି ଏଠାରେ ମୁଁ ତାଙ୍କର 'ବିଚିତ୍ରବର୍ଣ୍ଣା' କବିତାର କିୟଦଂଶ ଉଦ୍ଧାର କରୁଛି—

> "ଗଭୀର ସମୁଦ୍ର ଜଳେ ହଠାତ୍ ସେ ମତ୍ସ୍ୟକନ୍ୟା ହୋଇ
> ଖେଳୁଥିଲା ବୈଦୁର୍ଯ୍ୟ ଓ ପ୍ରବାଳ ତୋରଣେ ।
> ଦାନ୍ତେ କାଟି ତରଙ୍ଗର କୁଞ୍ଚ କୁଞ୍ଚ କେଶ
> ଜଳ ଜଳ ଫସ୍‌ଫରସ କରୁଣ ଶିଖାରେ .."

ବୈଦୁର୍ଯ୍ୟ ଯେ ସରଳ ଓଡ଼ିଆ ଶବ୍ଦ ନୁହେଁ, ଏ କଥା ଯେ କେହି ନିଶ୍ଚୟ ସ୍ୱୀକାର କରିବେ । ପୁରାତନ ପ୍ରଭାବରୁ ସମ୍ପୂର୍ଣ୍ଣ ମୁକ୍ତି ପାଇବାକୁ ଅବଶ୍ୟ ଆକାଂକ୍ଷା ଅଧିବସାୟରେ ଯେ ଧାରଣା ନାହିଁ, ଏଥିରେ ଦ୍ୱିମତ କେହି ହେବେ ନାହିଁ । ତେବେ ଏଥିପାଇଁ ଆହୁରି କେତେ ବର୍ଷ ଆମକୁ ଅପେକ୍ଷା କରିବାକୁ ପଡ଼ିବ । ଯେ ଯାହା ହେଉ କାବ୍ୟିକ ଭାଷା ଓ କଥିତ ଭାଷା ମଧ୍ୟରେ ଯଥା ସମ୍ଭବ ସମନ୍ୱୟ ରଖି ସାଂପ୍ରତିକ ସାହିତ୍ୟ ରଚିତ ହେବା ଉଚିତ । ସାଧୁ, ତତ୍ସମ, ତଦ୍‌ଭବ ଓ ଆଭିଧାନିକ ଭାଷା ପରିହାର କରିବାକୁ ଧୃଷ୍ଟ ପ୍ରତିଜ୍ଞା କରି ବି ସମୟେ ସମୟେ ଆଧୁନିକ କବିତାର ପ୍ରଲୋଭନକୁ ଏଡ଼େଇ ପାରୁନାହିଁ । ତେବେ ଏ କଥା ନିଶ୍ଚୟ ସ୍ୱୀକାର କରିବାକୁ ପଡ଼ିବ ଯେ, ଯେଉଁ କବିତା ବାକ୍‌ଭଙ୍ଗୀରେ ଯେତେ ନିକଟବର୍ତ୍ତୀ ସେ କବିତା ସେତେ ହୃଦୟଗ୍ରାହୀ—ସେତେ ଜନପ୍ରିୟ ।

ସାଂପ୍ରତିକ କବିତା ଯେ ଯତିପାତ କିମ୍ବା ଧ୍ୱନିସାମ୍ୟ ବା ସେଇପରି କୌଣସି ନିର୍ଦ୍ଦିଷ୍ଟ ଆଙ୍ଗିକ ଉପରେ ନିର୍ଭରଶୀଳ, ଏ କଥା ନୁହେଁ, ବିଶ୍ୱ-ସାହିତ୍ୟରେ ଅନେକ କବିତା ଅଛି, ଯାହାର ଯତିପାତ ହୁଏ ନାହିଁ । କିନ୍ତୁ ଏ କବିତାଗୁଡ଼ିକର ବେଶ୍ ପ୍ରତିଷ୍ଠା ରହିଛି । ତେଣୁ ପୁରାତନପନ୍ଥୀମାନେ ଯତିହୀନ କବିତା ଦେଖି ଅସୂୟାଭାବ ପୋଷଣ ନ କରି ମେଳଥିବା ମିତାକ୍ଷର କବିତା ଓ ଅମେଳଯୁକ୍ତ କବିତାକୁ ପରସ୍ପରର ପରିପୂରକ ଭାବେ ଗ୍ରହଣ କରିନେଲେ ଅଧିକ ସମୀଚୀନ ହେବ ।

ଆଧୁନିକ କବିତା ସମ୍ବନ୍ଧରେ ଆଲୋଚନା କରିବାକୁ ଯିବା ସମୟରେ ଏହି ପ୍ରଗତିପନ୍ଥୀ ସାହିତ୍ୟର ପ୍ରତିଷ୍ଠାତା ବା ପୂର୍ବସୂରୀମାନଙ୍କ ନାମ ସ୍ମରଣ ନ କଲେ ଅନ୍ୟାୟ ହେବ । ସାଂପ୍ରତିକ କବିତା (ମୁକ୍ତ କବିତା

ଓ ଗଦ୍ୟ କବିତା'ର ପୂର୍ବସୂରି ହ୍ୱାଇଟମ୍ୟାନ୍, ଟୁର୍ଗେନିଭ, ହପକିନ୍ସ, ଡ୍ରାଇଡେନ, ଲରେନସ୍ ଏବଂ ଫରାସୀ ପ୍ରତୀକବାଦୀ କବିଗୋଷ୍ଠୀ—ମାଲାର୍ମେ, ରାଁବୋ, ଭରଲେନ୍ ଗଦ୍ୟଧର୍ମୀ କବିତା ଲେଖି ବିଶ୍ୱ ସାହିତ୍ୟରେ ପ୍ରତିଷ୍ଠା ଲାଭ କରି ସାଇଛନ୍ତି ! ଠିକ୍ ସେହି ସମୟରେ ସାହିତ୍ୟରେ ମୁକ୍ତଛନ୍ଦ କବିତା ଯୋଗୁ ଏଜ୍‌ରା ପାଉଣ୍ଡ, ଏଲିୟଟ୍, ଫଲ୍‌ଫୁଲର୍, ଆରାଁଗ, ଅଡେନ୍, ସ୍ପେଣ୍ଡର, ଡେଲୁଇସ୍, କମିଙ୍ଗସ ପ୍ରଭୃତି ଉଚ୍ଚ ସମ୍ମାନର ଅଧିକାରୀ ହୋଇଛନ୍ତି । ତେଣୁ ଶ୍ରୀଯୁକ୍ତ ରାଉତରା ଯଥାର୍ଥରେ କହିଛନ୍ତି—

> ପଦ୍ୟର ଆବେଗ ସଙ୍ଗେ ଗଦ୍ୟର ଯୋଜନା, ସରଳ, ସ୍ୱଚ୍ଛନ୍ଦ ପ୍ରକାଶର ସମ୍ମିଶ୍ରଣ, ଏହା ହିଁ ହେଉଛି ଗଦ୍ୟଧର୍ମୀ ନୂତନ କବିତାର ବୈଶିଷ୍ଟ୍ୟ ଓ ଉପଯୋଗର ପ୍ରଧାନ ହେତୁ ।

ବିଶ୍ୱକବି ରବୀନ୍ଦ୍ରନାଥ ମଧ୍ୟ ଆଧୁନିକ କବିତା ସମ୍ପର୍କରେ କହିଛନ୍ତି ଯେ—

> ଆଧୁନିକ କାବ୍ୟର କାର୍ଯ୍ୟ ମନୋହରଣ ନୁହେଁ ମନୋଜୟ, ଲକ୍ଷ୍ୟ ଲାଳିତ୍ୟ ନୁହେଁ, ଯଥାର୍ଥ ବିଷୟୀର ଆସକ୍ତି ନୁହେଁ ବିଷୟର ଆସକ୍ତି ।

ପୂର୍ବରୁ କହିଛି ସାଂପ୍ରତିକ ସାହିତ୍ୟର ଉଦ୍‌ଭବ—ନାନା ସଂଘର୍ଷ, ସଂଗ୍ରାମ, ରାଷ୍ଟ୍ରବିପ୍ଳବ, ଶିଳ୍ପବିପ୍ଳବ, ବୈଜ୍ଞାନିକ ଉଦ୍ଭାବନ, ଦାର୍ଶନିକ ଚିନ୍ତା ବିଶ୍ଳେଷଣର ଅସ୍ଥିରତାରୁ ଇଉରୋପରେ ହିଁ ସମ୍ଭବ ହୋଇଛି । ଓଡ଼ିଆ ବା ଭାରତୀୟ ସାହିତ୍ୟରେ ସେହି ଚିନ୍ତାଧାରାର ପୁଷ୍କଳ ପରିପ୍ରକାଶ ସ୍ୱତଃ ପ୍ରତିଫଳିତ ହୋଇଥିବାରୁ ଏଠାରେ ସେହି ଚିନ୍ତାଧାରା ସମ୍ବନ୍ଧରେ ଦି'ପଦ କହିବା ଆବଶ୍ୟକ ହୋଇ ପଡ଼ୁଛି । ଏ ଚିନ୍ତାଧାରାକୁ ସାଧାରଣତଃ ୧ ସଂସ୍ଥିତିବାଦ (Existentialism) ୨ ଅତିବସ୍ତୁବାଦ (Surrealism) ୩ ଭବିଷ୍ୟତ୍‌ବାଦ (Futurism) ୪ ପ୍ରତୀକବାଦ (Symbolism) ଏବଂ ଚିତ୍ରକଳ୍ପ, ଅଭିବ୍ୟକ୍ତିବାଦ ଓ ପ୍ରଭାବବାଦ (Imagism, Expressionism & Impressionism),

ଫ୍ରାନସ୍ ଓ ଜର୍ମାନୀର ପ୍ରବର୍ତ୍ତିତ ଏକ ଦାର୍ଶନିକ ତତ୍ତ୍ୱ ଉପରେ ଆଧାରିତ ଏହି ସଂସ୍ଥିତିବାଦ ବା Existentialism ସେ ସମୟରେ ଦାର୍ଶନିକମାନଙ୍କ ଅପେକ୍ଷା କବିମାନଙ୍କୁ ହିଁ ଅତି ନିବିଡ଼ ଭାବରେ ପ୍ରଭାବିତ କରିଥିଲା । ପ୍ରଥମ ମହାଯୁଦ୍ଧ ପରେ ମଣିଷ ସମାଜରେ ଯେଉଁ ପ୍ରକାର ଅସ୍ଥିର ଓ ଅବ୍ୟବସ୍ଥିତ ଅବସ୍ଥାର ସୃଷ୍ଟି ହୋଇଥିଲା, ତା' ବିରୋଧରେ ତଥା

ସମାଜରେ ନିଜର ସ୍ଥିତି ଓ ମର୍ଯ୍ୟାଦାବୋଧ ସମ୍ପର୍କରେ ଲେଖକମାନେ ମସୀଯୁଦ୍ଧ ଚଳାଇଥିଲେ, ତା'ର ସୁଦୂରପ୍ରସାରୀ ପ୍ରଭାବ ଯେ ଓଡ଼ିଆ ସାହିତ୍ୟ ଉପରେ ପଡ଼ି ନାହିଁ, ଏ କଥା କିଏ କହି ପାରିବ ନାହିଁ ।

ଅତିବସ୍ତୁବାଦ ବା Surrealism ପ୍ରଥମ ମହାଯୁଦ୍ଧ ପରେ କେତେକ ଅର୍ଥଗୃଧ୍ନୁ ପିଶାଚଙ୍କର ଶୋଷଣ ଓ ଅତ୍ୟାଚାରର ବିରୋଧରେ ସ୍ପଷ୍ଟ ପ୍ରତିବାଦର ଜ୍ୱଳନ୍ତ ପ୍ରତୀକ । ମଧ୍ୟବିତ୍ତ ଶ୍ରେଣୀର ଚେତନା ଓ ଯୁକ୍ତିପ୍ରବଣତା ହିଁ ଏହି ଆନ୍ଦୋଳନର ପୃଷ୍ଠପୀଠିକା ଥିଲା । ତେବେ ଏ ସମୟରେ କବିତା କ୍ଲିଷ୍ଟ ଓ ବୈଜ୍ଞାନିକ ଉପମା ଯୋଗୁଁ ବିଶେଷ ଜନପ୍ରିୟତା ଲାଭ କରି ପାରି ନ ଥିଲା ।

ଭବିଷ୍ୟତ୍‌ବାଦ ବା Futurism ସେହିପରି ପ୍ରଗତି-ପନ୍ଥୀଙ୍କର ଏକ ପ୍ରାଣଖୋଲା ସ୍ଲୋଗାନ୍ । ଏମାନଙ୍କ ମତରେ ପ୍ରାଚୀନ ସାହିତ୍ୟ ଉଦ୍ଭଟ ପରିକଳ୍ପନାରେ ପର୍ଯ୍ୟବେଶିତ, ସ୍ୱପ୍ନ-ପ୍ରବଣତାରେ ଭାରାକ୍ରାନ୍ତ, ତଥା ସ୍ୱର୍ଗାରୋହଣ ଓ ନରକଦଣ୍ଡ ପରି ଅବାସ୍ତବ ମତରେ ପରିପୂର୍ଣ୍ଣ ; ତେଣୁ ଏମାନେ ପୁରାତନକୁ ବା ଅତୀତକୁ ସମ୍ପୂର୍ଣ୍ଣ ଅସ୍ୱୀକାର କରନ୍ତି । ବର୍ତ୍ତମାନର ଜୀବନ ସେମାନଙ୍କ ଲେଖାର ଉପଜୀବ୍ୟ—ଗତିଶୀଳତା ହିଁ ସେମାନଙ୍କ ଲେଖାର ମୂଳମନ୍ତ୍ର ।

ପ୍ରତୀକବାଦ ବା Symbolism ଆଜିର କବିତାରେ ମୁଖ୍ୟତଃ ପ୍ରଧାନ ସ୍ଥାନ ଅଧିକାର କରି ବସିଲାଣି । ଏ ସମ୍ପର୍କରେ ପ୍ରତୀକଧର୍ମୀ କବିଙ୍କର ମତ ଯେ, ପ୍ରତୀକ ଦ୍ୱାରା କବିତାକୁ ଅଧିକ ମାର୍ମିକ ଓ ସୌକୁମାର୍ଯ୍ୟମୟ କରି ପ୍ରକାଶ କରାଯାଇ ପାରିବ । ଏହି ପ୍ରତୀକବାଦ ଦେଶର ସମସ୍ତ ବସ୍ତୁ ସହିତ ସମ୍ବନ୍ଧାନ୍ୱିତ । ପ୍ରାଚୀନ ପ୍ରତୀକଗୁଡ଼ିକ, ଯଥା—ସୂର୍ଯ୍ୟ-ପଦ୍ମ, ଚନ୍ଦ୍ରଚକୋର, ମେଘଚାତକ ପ୍ରଭୃତି ଅତି ପୁରୁଣା ହୋଇଗଲାଣି । ସେପରି ପ୍ରତୀକ ଆଜି ପ୍ରାୟ ବିଲୁପ୍ତ ହେଲାଣି । ଆଜିର ପ୍ରତୀକ ସମ୍ପୂର୍ଣ୍ଣ ନୂତନଧର୍ମୀ ।

କେତେକ ମାମୁଲି ଶବ୍ଦାବଳୀ ସହଜାତ ସମସ୍ତ ପ୍ରବୃତ୍ତିକୁ ଯଥାଯଥ ଭାବରେ ଉଦ୍ରେକ କରିବା ଦିଗରେ ଯଥେଷ୍ଟ ନୁହନ୍ତି । ତେଣୁ ସ୍ପଷ୍ଟ ଅଭିବ୍ୟକ୍ତି ନିମନ୍ତେ ହିଁ ଚିତ୍ରକଳ୍ପ ବା Imageର ପ୍ରୟୋଗ ଅପରିହାର୍ଯ୍ୟ । ବାସ୍ତବତାକୁ ଉପଲବ୍ଧି କରିବାରେ ଯେଉଁଠି କଠିନତା ଦୃଷ୍ଟିଗୋଚର ହୁଏ, ସେହିଠାରେ ହିଁ ଚିତ୍ରକଳ୍ପ ଆଶୀର୍ବାଦର କାର୍ଯ୍ୟ କରେ । ସେଇଥିପାଇଁ

T. E. Hume ବୋଧହୁଏ କହିଛନ୍ତି, "Each word must image scene, not a counter." ଚିତ୍ରକଳ୍ପର ପ୍ରାଧାନ୍ୟ ଆଜିର ପ୍ରତ୍ୟେକ ଲେଖକ ପ୍ରାୟ ସ୍ୱୀକାର କରିଥାନ୍ତି । କାରଣ ଚିତ୍ରକଳ୍ପ ମାଧ୍ୟମରେ କବିତା ଅତ୍ୟନ୍ତ ବୋଧଗମ୍ୟ ହୋଇଥାଏ ।

> "A poetty of images endeavours to arrest you to make you continuously see a physical thing to prevent you gliding through an abstract process."

(Speculations : New york, 1923: 134)

ଚିତ୍ରକଳ୍ପର ଜଣେ ଶ୍ରେଷ୍ଠ ପୃଷ୍ଠପୋଷକ ଭାବରେ T. E. Hume କହୁଥିଲେ—

> "ସାଦା କଥା ଆଉ କହିବ ନାହିଁ । ଏହାର କିଛି ମୂଲ୍ୟ ନାହିଁ । ସବୁ ସମୟରେ ଆନାଲୋଜି ବା ସାଦୃଶ୍ୟକୁ ବ୍ୟବହାର କରିବ । ଏହା ଅନ୍ୟ ଏକ ନୂତନ ଜଗତର ସନ୍ଧାନ ଦେବ ।"

"Imagism" ଗ୍ରନ୍ଥରେ Stanley K. Cottmanଙ୍କ ମତ ଏ ସମ୍ପର୍କରେ ଏଠାରେ ଉଲ୍ଲେଖ କଲେ ଅଧିକ ସମୀଚୀନ ହେବ ।

> "The mind or intellect apprehends external phenomena in such a way that he can know them ; it places a veil between man and reality. It is the artist who, emancipated from the necessity of action, can lift the veil and expose reality."

ଏଣୁ ଚିତ୍ରକଳ୍ପ ବା Imageର ପ୍ରାଧାନ୍ୟ ଯେ ସାମ୍ପ୍ରତିକ ସାହିତ୍ୟରେ ଏକ ପ୍ରକାର ଅପରିହାର୍ଯ୍ୟ ଅଙ୍ଗରୂପେ ବିବେଚିତ ହେଉଛି, ଏଥିରେ ସନ୍ଦେହ ପ୍ରକାଶ କରିବାର କିଛି ନାହିଁ । Time & Forewill (Newyork 1910) ଗ୍ରନ୍ଥରେ ବାର୍ଗସଁ ମଧ୍ୟ ଏ ଉକ୍ତିର ସାର୍ଥକତା ପ୍ରତିପାଦନ କରିବାକୁ ଯାଇ କହିଛନ୍ତି—

"The poet is he with whom feelings develop into images and the images of themselves into words which translate them while obeying the laws of rhythem."

T.S. Eliotଙ୍କର ପଦେ କବିତା ଏ ସମ୍ପର୍କରେ ଉଦ୍ଧାର କଲେ ହୁଏତ ଅଧିକ ସଙ୍ଗତ ହେବ ।

"When the evening is
spread against the sky,
Like a patient
etherized on the table."

ବାସ୍ତବରେ ଉପମା ବା ଚିତ୍ରକଳ୍ପଟି ଅତି ସୁନ୍ଦର ହୋଇଛି । ଅପରେସନ୍ ଟେବୁଲ ଉପରକୁ ଅପରେସନ୍ ହେବା ନିମନ୍ତେ ଆସିଥିବା ଅବସନ୍ନ ରୋଗୀ ଭଳି ସନ୍ଧ୍ୟା ଆକାଶର ଗୋଟାଏ କୋଣରେ ଅତି ଦୟନୀୟ ଭାବରେ ଶୋଇଛି ।

ବର୍ତ୍ତମାନ ଆଧୁନିକ କବିତାର ଛନ୍ଦ ସମ୍ବନ୍ଧରେ କିଛି ଆଲୋକପାତ କରିବା ପ୍ରୟୋଜନ ନିଶ୍ଚୟ । ମୁକ୍ତଛନ୍ଦ (Verselibre) ଆଧୁନିକ କବିତାର ମର୍ମକଥା ପରିପ୍ରକାଶରେ ଅଧିକ ଉପଯୋଗୀ । ଫରାସୀ କବିଙ୍କ ଦ୍ୱାରା ପ୍ରବର୍ତ୍ତିତ ଏହି ନିୟମ ପ୍ରାୟ ପ୍ରତ୍ୟେକ ଆଧୁନିକ କବିଙ୍କୁ ପ୍ରଭାବିତ କରିଛି । ହୁଇଟ୍‌ମ୍ୟାନ୍, ଫ୍ରାନ୍‌ସିସ୍ ଭିଲେଁ, ଗ୍ରିଫିନ୍, ଏମିଲ ଭେରହାରେଁ ଏବଂ ଫ୍ରାନ୍‌ସିସ୍ ଜେମସ୍ ବହୁକ୍ଷେତ୍ରରେ Verselibreର ସୁଷ୍ଠୁ ପ୍ରୟୋଗ-ମାନ କରିଛନ୍ତି । କିନ୍ତୁ ସେମାନେ କେତେକ ସ୍ଥଳରେ ପ୍ରଚଳିତ ପାରମ୍ପରିକ ଛନ୍ଦକୁ ପରିହାର କରିପାରି ନାହାନ୍ତି । Free Verseର ପ୍ରାଧାନ୍ୟ ସ୍ୱୀକାର କରିବାକୁ ଯାଇ Amy Lowell ଯଥାର୍ଥରେ କହିଛନ୍ତି—

"That a poem in free verse may achieve the effect of the return by the recurrence of one particular time-length between accents."

ପୂର୍ବରୁ ମୁଁ କହିଛି ଏବଂ ବର୍ତ୍ତମାନ ସେହି କଥାର ପୁନରାବୃତ୍ତି ମାତ୍ର କରି ମୁଁ କହିବାକୁ ଚାହେଁ ଯେ ଯେଉଁସବୁ ଆଙ୍ଗିକରେ ପାଶ୍ଚାତ୍ୟ ସାହିତ୍ୟର ବିଶ୍ୱ ପରିପୁଷ୍ଟ, ସାଂପ୍ରତିକ ଓଡ଼ିଆ କବିତା ହିଁ ସେସବୁ

ଆଙ୍ଗିକ ଉପରେ ସମ୍ପୂର୍ଣ୍ଣ ନିର୍ଭର କରେ । ବୈଜ୍ଞାନିକମାନଙ୍କର ପ୍ରତିଭାର ଚରମ ବିକାଶ ଯୋଗୁଁ ମଣିଷ ଆଜି ଯେପରି ଗ୍ରହ ଗ୍ରହାନ୍ତରରେ ପ୍ରବେଶ କରିବାରେ ସଫଳକାମ ହୋଇ ପାରିଛି, ବୌଦ୍ଧିକ ବିକାଶ ଫଳରେ ସମାଜରେ ଯେପରି ମଣିଷ ମଣିଷ ମଧ୍ୟରେ ଦୂରତ୍ୱ କ୍ରମଶଃ ସଙ୍କୁଚିତ ହୋଇପଡ଼ୁଛି, ଠିକ୍ ସେହିପରି ପାଶ୍ଚାତ୍ୟ ସାହିତ୍ୟର ବିଭିନ୍ନ ଆଙ୍ଗିକରେ ପ୍ରଲୁବ୍ଧ ହୋଇ ସାଂପ୍ରତିକ ଓଡ଼ିଆ କବି ପ୍ରାଚୀନ ପଦ୍ଧତି ଓ ଚିନ୍ତାଧାରାରୁ ସମ୍ପୂର୍ଣ୍ଣ ମୁକ୍ତ ହେବା ପାଇଁ କ୍ଷାନ୍ତିକାରୀ ପ୍ରଚେଷ୍ଟାରୁ ବିରତ ହୋଇନାହାଁନ୍ତି । ଆଜିର ଓଡ଼ିଆ କବିର ଚିନ୍ତାଧାରା ସମଗ୍ର ବିଶ୍ୱ ସାହିତ୍ୟର ଚିନ୍ତାଧାରା ଦ୍ୱାରା ହିଁ ଉଜ୍ଜ୍ୱଳ । ଆଜିର ଓଡ଼ିଆ କବି ଯାହା ଚିନ୍ତା କରୁଛି, ଯେଉଁ ସବୁ ଉପଢୌକନରେ ନିଜର କବିତା-ସୁନ୍ଦରୀକୁ ମହିମାନ୍ୱିତ କରୁଛି, ସମଗ୍ର ବିଶ୍ୱସାହିତ୍ୟରେ ତା'ର ପ୍ରତିବିମ୍ବ ହିଁ ଅତି ସୁନ୍ଦର ଭାବେ ରୂପାୟିତ ହେଉଛି । ମୋ ବିଚାରରେ ସାମ୍ପ୍ରତିକ କବିତା (ସ୍ୱାଧୀନୋତ୍ତର କବିତା-ଗୁଡ଼ିକୁ ମୁଁ ସାଂପ୍ରତିକ କବିତା ଭାବରେ ଗ୍ରହଣ କରୁଛି । କାରଣ ତା' ପୂର୍ବର କବିତାଗୁଡ଼ିକୁ ସାଂପ୍ରତିକ କବିତା ଭାବରେ ଗ୍ରହଣ କରିବା ଏ କ୍ଷୁଦ୍ର ପ୍ରବନ୍ଧରେ ସମ୍ଭବପର ନୁହେଁ ) ସମଗ୍ର ବିଶ୍ୱ କବିଙ୍କୁ ଗୋଟିଏ ବିଶ୍ୱବଳୟର ନିର୍ଦ୍ଦିଷ୍ଟ ବିନ୍ଦୁରେ ପହଞ୍ଚାଇ ପାରିଛି । ତା' ନ ହୋଇଥିଲେ ଓଡ଼ିଆ କବି ଅଧ୍ୟାପକ ଜୟନ୍ତ ମହାପାତ୍ର ବିଶ୍ୱ ଦରବାରରେ ଜଣେ ଶ୍ରେଷ୍ଠ କବିର ଆସନ ଅଳଙ୍କୃତ କରି ପାରି ନ ଥାନ୍ତେ ବା ଓଡ଼ିଆ ଚିନ୍ତାଧାରା ବିଶିଷ୍ଟ ସମାଲୋଚକ ଓ କବିଙ୍କୁ ଉଦ୍‌ବୁଦ୍ଧ କରି ପାରି ନ ଥାନ୍ତା । ସେ ଯାହା ହେଉ ଅଧ୍ୟାପକ ମହାପାତ୍ରଙ୍କୁ ଯେ ଏ ଜାତି ସମ୍ମାନ ପ୍ରଦର୍ଶନ କରିବ ଏଥିରେ ଆଉ ସନ୍ଦେହ ନାହିଁ । (ପୂର୍ବରୁ ଅବଶ୍ୟ ସେ ଏକପ୍ରକାର ଅନାମ-ଧେୟ ଥିଲେ । )

ସ୍ୱାଧୀନତା ପରେ ପରେ ଯେଉଁ କେତେକ କବି ନିଜର ସୁଷ୍ଠୁ ଲେଖାଦ୍ୱାରା ଓଡ଼ିଆ କବିତାରେ ପରିବର୍ତ୍ତନ ଆଣିବାକୁ ପ୍ରଚେଷ୍ଟା କରିଥିଲେ, ସେମାନଙ୍କ ଭିତରୁ ଗୋଦାବରୀଶ ମହାପାତ୍ର, ଗୋଦାବରୀଶ ମିଶ୍ର, କାଳିନ୍ଦୀ ଚରଣ ପାଣିଗ୍ରାହୀ, ଗୋପାଳ କାନୁନ୍‌ଗୋ, ରାଧାମୋହନ ଗଡ଼ନାୟକ, କୃଷ୍ଣଚନ୍ଦ୍ର କର, ଜ୍ଞାନୀନ୍ଦ୍ର ବର୍ମା, ବିଦ୍ୟୁତ୍‌ପ୍ରଭା ଦେବୀ, ବୀରକିଶୋର ଦାସ ପ୍ରଭୃତିଙ୍କୁ ଭୁଲିବା ନୁହେଁ । କିନ୍ତୁ ଏମାନେ ଆଧୁନିକ ଯୁଗର କବି ବୋଲି ନିଜକୁ ପରିଚୟ ଦେଉଥିଲେ ମଧ୍ୟ ଏମାନଙ୍କ କବିତା ପୂର୍ବବର୍ତ୍ତୀ ପରମ୍ପରାରୁ ଆଦୌ ମୁକ୍ତ ନ ଥିଲା ; ବରଂ ଆଧୁନିକ ଚିନ୍ତାଧାରା ଓ

ଆଙ୍ଗିକମାନ ଏମାନଙ୍କ ଲେଖାରେ ପୂର୍ବଭଳି ଅତି ଦୟନୀୟ ଭାବରେ ସଙ୍କୁଚିତ ହୋଇ ରହିଥିଲା । ପୁରାତନ ଆଭରଣରୁ ମୁକ୍ତି ପାଇବା ପାଇଁ ଅତି ବିକଳ ଭାବରେ ପ୍ରଗତିବାଦୀ କବିଙ୍କୁ ମିଠି ମିଠି କରି ଚାହିଁ ରହିଥିଲା । ଏ ଦୁର୍ଗତିରୁ ରକ୍ଷା ପାଇବା ପାଇଁ ଆର୍ତ୍ତଚିତ୍କାର କରୁଥିଲା । ସମୟର ଦ୍ରୁତ ଗତିଶୀଳତାରେ ସାଂପ୍ରତିକ କବିତାର ଆଙ୍ଗିକ ପରିବର୍ତ୍ତିତ ହେଲା । ପ୍ରଗତି-ବାଦୀ ଚିନ୍ତାଧାରା ନେଇ ଓଡ଼ିଆ କବିତାକୁ ରସୋଜ୍ଜ୍ୱଳ କରିବାକୁ ଆଗେଇ ଆସିଲେ ସାଂପ୍ରତିକ କବିତାର ଶ୍ରେଷ୍ଠ ସାଧକ ସଚ୍ଚିଦାନନ୍ଦ ରାଉତରାୟ, ଅନନ୍ତ ପଟ୍ଟନାୟକ, ଡା: କୁଞ୍ଜବିହାରୀ ଦାଶ, ଗୁରୁପ୍ରସାଦ ମହାନ୍ତି, ବେଣୁଧର ରାଉତ, ସୀତାକାନ୍ତ ମହାପାତ୍ର, ରମାକାନ୍ତ ରଥ, ଭାନୁଜୀ ରାଓ, ଜୀବନାନନ୍ଦ ପାଣି, ବିନୋଦ ରାଉତରାୟ ଓ ରବୀନ୍ଦ୍ରନାଥ ସିଂହ ପ୍ରଭୃତି କେତେକ ତରୁଣ ଓ ପ୍ରତିଷ୍ଠିତ କବି ।

ଏମାନଙ୍କ ମଧ୍ୟରୁ ସଚ୍ଚିଦାନନ୍ଦ ରାଉତରାୟଙ୍କ ଦାନ ଅବିସ୍ମରଣୀୟ । କବିତାରୁ ପୁରାତନ ଯୁଗର ସମସ୍ତ ପ୍ରକାର ଉପଢୌକନକୁ ପରିହାର କରି ଆଧୁନିକ କବିତାକୁ ନୂତନ ଆଙ୍ଗିକରେ ସଜ୍ଜିତ କରିବାରେ ଶ୍ରୀଯୁକ୍ତ ରାଉତରାୟଙ୍କର ଉଦ୍ୟମ ଆଜିସୁଦ୍ଧା ଅବ୍ୟାହତ ଅଛି । ତାଙ୍କ କବିତାରେ ସୁନ୍ଦର ସୁନ୍ଦର ଚିତ୍ରକଳ୍ପର ଯେଉଁ ସୁ-ପ୍ରୟୋଗ ହୋଇଛି, ତାହା ହିଁ ତାଙ୍କୁ ଏକ ନୂତନ ଯୁଗର ସ୍ରଷ୍ଟାର ସମ୍ମାନ ନିଶ୍ଚୟ ପ୍ରଦାନ କରିବାରେ କାର୍ପଣ୍ୟ ପ୍ରଦର୍ଶନ କରିବ ନାହିଁ । ଏଠାରେ ତାଙ୍କ କବିତାରୁ କିୟଦଂଶ ଉଦ୍ଧାର କରିବା ଆବଶ୍ୟକ ବୋଲି ମୁଁ ମନେକରେ ।

"ହିରର ମାଛର ଗାର୍ଫିକ୍ ଗନ୍ଧ କୋଣ
ହଠାତ୍ ଫେରିଲା, କପରି ଫେରିଲା ଜାଣ ?
ସୁନାର ମାଛର ଅଖିର ପ୍ରସ୍ରବଣ
ହଠାତ୍ ଯେ ତା'ର ଗତିପଥେ ଦେଲା ଧକ୍କା ।"

(ଜ୍ୟାମିତି : ପାଣ୍ଡୁଲିପି)

"ନାନା ମୁହୂର୍ତ୍ତିର ବିମ୍ବେ
ନିଜକୁ ଦେଖିବା ଭୁଲ ନାନା ମୃତ ଘଟଣାର କାଚେ
- ସହରର ମିଞ୍ଜି ମିଞ୍ଜି ଜଳସିମା ବତୀ ଖୁମ୍ବେ ଖୁମ୍ବେ

ଅବା କେଉଁ ଅମୁହାଁ ସୁଡ଼ଙ୍ଗେ
ଅବା ନିଷ୍ପିଦ୍ଧ ଗଳିରେ
ନିଜକୁ ଦେଖିବା ସେହି ଭଙ୍ଗା ବାରଣ୍ଡାରେ
ନିର୍ଜନ ସିଡ଼ିରେ ।"

(ସ୍ୱଗତ)

ଶ୍ରୀଯୁକ୍ତ ରାଉତରାୟଙ୍କ ରଚନାର ଉଦ୍ଧୃତି 'ଉଦ୍ଧାର' କରିବାକୁ ଗଲେ ମନ ସହଜରେ ପରିତୃପ୍ତ ହୁଏ ନାହିଁ । ତାଙ୍କର ପ୍ରତ୍ୟେକ କବିତା ମୋତେ ମୁଗ୍ଧ କରିଛି । ତେଣୁ କ'ଣ ବା ଉଦ୍ଧୃତି ମୁଁ ଏଠାରେ ପ୍ରକାଶ କରିବି । ଏ କ୍ଷୁଦ୍ର ପ୍ରବନ୍ଧରେ ତାଙ୍କ କୃତି ଆଲୋଚନା ଅସମ୍ଭବ । ତେଣୁ ଉପରୋକ୍ତ ଦୁଇଟି ଉଦ୍ଧୃତି ଦେଇ ତାଙ୍କଠାରୁ ମୁଁ ବିଦାୟ ନେଉଛି । ତେବେ ତାଙ୍କର ସ୍ୱଗତ, ପାଣ୍ଡୁଲିପି ଓ କବିତା ୧୯୬୨ ଓଡ଼ିଆ କବିତା ସାହିତ୍ୟରେ ଚିର ଦେଦୀପ୍ୟମାନ ହୋଇ ରହିବ, ଏଥିରେ ସନ୍ଦେହ ପ୍ରକାଶ କରିବାର କିଛି ନାହିଁ । ତେବେ ତାଙ୍କର କବିତାରେ ମୁଁ ଗୋଟିଏ ଅଭାବ ଅନୁଭବ କରେ ଯେ, ତାଙ୍କ କବିତାର ବିକାଶ ଆଦୌ ନାହିଁ, ତାଙ୍କର ପ୍ରତ୍ୟେକ କବିତାରେ ହିଁ ଗୋଟିଏ ଧାରା ପରିଦୃଷ୍ଟ । ରାଧାନାଥ ଯେପରି ନୂଆଯୁଗ ସୃଷ୍ଟି କରି ସେହି ଯୁଗରେ ହିଁ ଗୋଳେଇ ଘାଣ୍ଟି ହୋଇଥିଲେ, ଶ୍ରୀଯୁକ୍ତ ରାଉତରାୟ ଠିକ୍ ସେହିପରି ତାଙ୍କ ମୂଳ ଲେଖାର ସରହଦ୍ ଅତିକ୍ରମ କରି ପାରିନାହାନ୍ତି ବୋଲି ମୁଁ ଅନୁଭବ କରେ । ଅବଶ୍ୟ ମୋର ଏ ମତ ପ୍ରମାଦପୂର୍ଣ୍ଣ ହୋଇପାରେ ; ତେବେ ମୋ ନିଜ ବିଶ୍ୱାସକୁ ଅନ୍ୟର ପ୍ରଭାବରେ ସଂକୁଚିତ କରି ଦେବାକୁ ମୁଁ କୁଣ୍ଠାବୋଧ କରୁଛି ।

ସଚ୍ଚିଦାନନ୍ଦ ରାଉତରାୟଙ୍କ ପ୍ରବର୍ତ୍ତିତ ଧାରାରେ ଅନୁପ୍ରାଣିତ ହୋଇ ଆଜି ଯେତେ ଜଣ କବି ଆଉଟିକେ ପ୍ରଗତିଶୀଳ ଚିନ୍ତାଧାରାର ପ୍ରୟୋଗ ସେମାନଙ୍କ କବିତାରେ କରିଛନ୍ତି, ସେମାନେ ହେଲେ ଗୁରୁପ୍ରସାଦ ମହାନ୍ତି, ସୀତାକାନ୍ତ ମହାପାତ୍ର, ରମାକାନ୍ତ ରଥ ଓ ଜୀବନାନନ୍ଦ ପାଣି । ଏମାନଙ୍କ କବିତାରେ ପାଶ୍ଚାତ୍ୟ କବିଙ୍କର ପୁଷ୍କଳ ଚିନ୍ତାଧାରାର ମଞ୍ଜୁଳ ସମନ୍ୱୟ ଘଟିଛି । ଶ୍ରୀଯୁକ୍ତ ରାଉତରାୟ ତାଙ୍କ କବିତାରେ ଯାହା ପୂରଣ କରିପାରି ନାହାନ୍ତି, ଏମାନେ ତାହା ଓଡ଼ିଆ କବିତାକୁ ଦାନ କରିଛନ୍ତି ବୋଲି ମନେହୁଏ । ଗୁରୁପ୍ରସାଦ ମହାନ୍ତିଙ୍କ ଲେଖାର ଚିତ୍ରକଳ୍ପ ବାସ୍ତବରେ ଅନବଦ୍ୟ ।

"ଆଜି ନିଶବ୍ଦ ଚଇତ ଯାଏ ଗଳି ଗଳି ରାସ୍ତା ରାସ୍ତା
ଘୋଡ଼ାଗାଡ଼ି ରିକ୍‌ସାଗାଡ଼ି ଚଢ଼ି
ଇଲେକ୍‌ଟ୍ରିକ ଆଲୁଅରେ ଲକ୍‌ସ ସାବୁନ, ଡାଲଡେଲ
ଗୁଡ଼ାଖୁ ବା ହାଇଦର ବଢ଼ି
ଚୈତର ସପନ ନେଇ ତୁମଠାରୁ ଇନ୍ଦ୍ରଜାଲ ନେଇ
ଗାନ୍ଧୀଟୋପି ପିନ୍ଧି ବୁଲେ ଏ ରାସ୍ତାରେ ଭିଡ଼ ଠେଲି ଠେଲି ।

(କପୋତ-କପୋଣି : ଗୁରୁପ୍ରସାଦ ମହାନ୍ତି)

ଶ୍ରୀଯୁକ୍ତ ସୀତାକାନ୍ତ ମହାପାତ୍ରଙ୍କ କବିତାଗୁଡ଼ିକ ମଧ୍ୟ ତାଙ୍କୁ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ବଞ୍ଚେଇ ରଖିପାରିବ ବୋଲି ମୋର ପୂର୍ଣ୍ଣ ବିଶ୍ୱାସ । ବିଶେଷ କରି ବର୍ତ୍ତମାନ ସେ ଆଦିବାସୀ ସଂସ୍କୃତି ଉପରେ ଓ ସେମାନଙ୍କ କବିତାଗୁଡ଼ିକୁ ଅନୁଧ୍ୟାନ କରି ଆଧୁନିକତାର ପୃଷ୍ଠରେ ପୁରାତନ ସଂସ୍କୃତିକୁ, ଭାବଧାରାକୁ ଓଡ଼ିଆ ସାହିତ୍ୟରେ ଯେପରି ଉଜ୍ଜୀବିତ କରିବାର କାନ୍ତକାରୀ ଅଧ୍ୟବସାୟ ଚଳାଇଛନ୍ତି, ତାହା ହିଁ ତାଙ୍କ କୃତିର ଶ୍ରେଷ୍ଠ ମୂଲ୍ୟାୟନ । ପୁରୁଣାକୁ ଖାଲି ଆଖିମିଟିକା ମାରିଲେ ଚଳିବ ନାହିଁ, ତା' ଦେହରୁ ଯେ ଅନେକ କିଛି ଶିଖିବାର ଅଛି, ଜାଣିବାର ଅଛି ଏକଥା ଶ୍ରୀଯୁକ୍ତ ମହାପାତ୍ର ଆଦିବାସୀ ସାହିତ୍ୟରୁ ପରୀକ୍ଷାମୂଳକ ଭାବେ ଗ୍ରହଣ କରୁଛନ୍ତି । ତାଙ୍କର ଏ ସାଧୁ ଉଦ୍ୟମ ସର୍ବାନ୍ତଃକରଣରେ ଜୟଯୁକ୍ତ ହେଉ, ଏହା ହିଁ ମୋର ଆଶା । ତାଙ୍କର ଦୁଇଟି କବିତା ସଙ୍କଳନ 'ରାତ୍ରି ଓ ଦୃଶ୍ୟ' ଏବଂ 'ଅଷ୍ଟପଦୀ' ଓଡ଼ିଆ କବିତା କ୍ଷେତ୍ରରେ ବେଶ୍ ପ୍ରତିଷ୍ଠା ଲାଭ କରିଛି । ପୁରାଣ ଓ ମିଥ୍‌ର ଅପୂର୍ବ ସମନ୍ୱୟ, ସୁସଂଗଠିତ ବୁଦ୍ଧିଦୀପ୍ତ କାବ୍ୟମାନସ, ପ୍ରକାଶଭଙ୍ଗୀର ସୌକୁମାର୍ଯ୍ୟ ଯୋଗୁ ହିଁ ତାଙ୍କ କବିତା ଆଜି ଖୁବ୍ ଜନପ୍ରିୟ । 'ମୃତ୍ୟୁନାଚ' କବିତାରୁ ଏ ଉଦ୍ଧୃତି ଦେବା ହୁଏତ ସେଇଥିପାଇଁ ସମୀଚୀନ ହେବ ।

"ବାନ୍ତ କରି ତୁମେ ଯିନା ଫିଙ୍ଗିଦେଲ ସତୀ ସୀତା
ପାରିଲନି ନିଜ ପେଟେ ରଖି
ତୁମର ସେ ଲେଲିହାନ ଶିଖା ଯିନା
ଦ୍ରୌପଦୀର ରୂପ ଶିଖି ଝଲସାଏ
ସେ ରୂପ ଗାରିମା ଯିନା କାଳିବୁକେ
ଶତ ପରାଜୟ-ଗ୍ଲାନି ନେଇଗଲା ଲେଖି
କାଲୁ ସେ ଗୌରବ ରୂପ
ଅଗ୍ନି କୁଣ୍ଡେ, ତପ୍ତତୈଳ, ତପ୍ତ ବୈତରଣୀ

ମୁଁ ଶୁଣେଛି ଦେଖେ ମୋର ଆପଣାର ଭାଇସବୁ
ଯନ୍ତ୍ରଣାରେ ବ୍ୟଥିତ ଅସ୍ଥିର, ଡୁବିଯାଇ ସେ କାନ୍ଦଣାରେ;
ହେ ଅନଳ, ତୁମେ ଆଜ ଆବଉ ତ ସେହି ରୂପେ
ଜଳପୋଡ଼ି ଆମେ ସବୁ
ସ୍ୱୟଂଭୂବ ମନୁ ସଚେ ହେଲୁ ଜାରଖାର ।"

(ମୃତ୍ୟୁନାଚ : ଅଷ୍ଟପଦୀ)

ମୃତ୍ୟୁ ମରଜୀବନରେ ଦିନେ ଦିନେ ନା ନଷ୍ଟପ୍ନ ଆସିବ । ଏଥିରେ ସନ୍ଦେହ ପ୍ରକାଶ କରିବାର କିଛି ନାହିଁ । ତଥାପି ଏ ମଣିଷ ମୃତ୍ୟୁର ନାଆଁ ଶୁଣିଲେ ଅସ୍ଥିର ହୋଇଉଠେ । ସ୍ୱପ୍ନ ଦେଖି ଅସ୍ଥିର ହୁଏ ।

"ମୁଁ ଦେଖୁଛି ସ୍ୱପ୍ନ ଖାଲି ରାତିପରେ ରାତି
ସାତରାତି ଭୟଙ୍କର ସ୍ୱପ୍ନ
ପ୍ରେତାତ୍ମାର ଶୋଭାଯାତ୍ରା ଏ ଆଖିକୁ କାଳଦେଇ
ପୁଣି ମୁଁ ଥରୁଛି ଭୟେ, କୋକୁଆ ଭୟରେ
ଭୟଙ୍କର ସ୍ୱପ୍ନ ସବୁ ମୋ ସ୍ଥିତିର ମୂଳଦୁଆ ଥରେ
ଭୁଷୁଡ଼ି ପଡ଼ିବ ଲାଗେ ଥର ଥର କେଉଁ ମୁହୂର୍ତ୍ତିରେ ।"

(ମାଟି ଓ ମଣିଷ : ଅଷ୍ଟପଦୀ)

ସୀତାକାନ୍ତ ମହାପାତ୍ରଙ୍କର କବିତାଗୁଡ଼ିକ ବାସ୍ତବରେ ଅତି ହୃଦୟସ୍ପର୍ଶୀ । ବିଶେଷ କରି କବିତାରେ ତାଙ୍କର ଜୀବନ-ଦର୍ଶନ ଯେପରି ପୁଷ୍କଳ ଭାବରେ ରୂପାୟିତ ତାହା ଅନନ୍ୟ ସାଧାରଣ । ସନ୍ଦେହ, ଯନ୍ତ୍ରଣା, ହତାଶା, ପରଶ୍ରୀକାତରତା ଆଜିର ସମାଜକୁ ଛିନ୍ନଛିନ୍ନ କରି ରଖିଅଛି । ଏଣୁ ସେ ଯଥାର୍ଥରେ ଲେଖିଛନ୍ତି—

"ଏଇ ମହା ଶୋଭାଯାତ୍ରା, ଏଇ ଘୋର ଗୁଇର ଗହଳି
ହୃଦୟରେ ଖାଲି ମୋର କଣ୍ଟାବୁଦା, ଧସାବାଲି
ନାଗଫେଣୀ ମରୁଭୂମି ଟୋପେ ନାହିଁ ଜଳ
ବାହୁଦର ଶବାଧାରେ, ଆକାଶରେ
ଏ ଆକାଶ ତୂର୍ଣ୍ଣ ଓ ମହଲ ।"

(ମାଟି ଓ ମଣିଷ : ଅଷ୍ଟପଦୀ)

ପ୍ରତ୍ୟେକ ଆଧୁନିକ କବିଙ୍କ ବିଷୟରେ ଦୀର୍ଘ ଆଲୋଚନା କରିବା ଏ କ୍ଷୁଦ୍ର ପ୍ରବନ୍ଧରେ ସମ୍ଭବପର ନୁହେଁ କମ୍ବା ପ୍ରତ୍ୟେକ ସାଂପ୍ରତିକ କବିଙ୍କୁ

ଏଠାରେ ପରିବେଷଣ କରିବା ମଧ୍ୟ ସମ୍ଭବପର ହୋଇ ପାରୁନାହିଁ । ଆଜିର ଓଡ଼ିଆ କବିତା କ୍ଷେତ୍ରରେ ଅନେକ ଆଧୁନିକ କବି ନୂତନ ପ୍ରତିଭା ନେଇ ବାହାରିଲେଣି । ସେମାନଙ୍କୁ ମୁଁ ସ୍ୱାଗତ କରୁଛି—ସେମାନଙ୍କ କୃତିକୁ ସମ୍ମାନ କରୁଛି । ତେଣୁ ଏ କ୍ଷୁଦ୍ର ପ୍ରବନ୍ଧରେ ସେମାନଙ୍କ ସମ୍ବନ୍ଧରେ ଦି'ପଦ ନ ଲେଖୁଛି ବୋଲି ସେମାନେ ଯେପରି ମୋତେ ଭୁଲ୍ ନ ବୁଝନ୍ତି । ମୁଁ ସକଳ ବିନମ୍ରତାର ସହିତ କହିବାକୁ ଚାହେଁ ଯେ ସେମାନଙ୍କ ଲେଖା ମୋତେ ନିବିଡ଼ ଭାବରେ ମୁଗ୍ଧ କରିଛି ।

ସାଂପ୍ରତିକ ଅନ୍ୟ ଜଣେ ଶ୍ରେଷ୍ଠ କବି ହେଉଛନ୍ତି ରମାକାନ୍ତ ରଥ । ତାଙ୍କର ଦୁଇଟି ସାର୍ଥକ କବିତା ସଂକଳନ 'କେତେ ଦିନର' ଓ 'ଅନେକ କୋଠରୀ' ସାଂପ୍ରତିକ କବି ଓ ସମାଲୋଚକଙ୍କୁ ଆକୃଷ୍ଟ କରିଛି । ପୁରାତନ କବିତାପ୍ରତି ତାଙ୍କର ଅସୂୟାଭାବ ନାହିଁ ; ବରଂ ପୁରାତନ ପରମ୍ପରାରୁ ହିଁ ସେ ତାଙ୍କ କବିତାର ଉପାଦାନ ଆହରଣ କରିଛନ୍ତି । ଏଠାରେ ତାଙ୍କ କବିତାର କିଛି ଅଂଶ ଉଦ୍ଧାର କରିବା ସମୀଚୀନ ମନେ କରୁଛି ।

"ଆମର ଅଗଣା ସାରା ମୃତ୍ତିକାଙ୍କର ସିଲ୍‌ହଟ ଓ ସେମାନଙ୍କ ଛାଇର ଫାଙ୍କରେ
ଫୁଙ୍ଗଲା ପିଠିରେ ଖରା ପୋଉଁଥାନ୍ତି ଅନ୍ୟାନ୍ୟ ଯୁବତୀ
ଆମେ ଦେଖି ନାହୁଁ ବାଘ, ଦେଖି ନାହୁଁ କୌଣସି ସ୍ତ୍ରୀ ଲୋକ
ତଥାପି ବିଶ୍ୱାସ କରୁ, ଶବ୍ଦଦ୍ୱାରା ଏ ବାଘ ଓ ସ୍ତ୍ରୀ ଲୋକ ନିର୍ମିତ
ଆମେ ବି ଶବ୍ଦର ଅଂଶ, ଆମେ ତେଣୁ ବାଘ ଓ ସ୍ତ୍ରୀ ଲୋକ ।
ଆମେ ସେ ଲକ୍ଷ୍ୟରେ କ୍ଷୁଧା, ସେ ମୁଖର ଅସହାୟ ହାତ
ରାହିର ଅନ୍ଧାର ଆମେ, ଜଙ୍ଗଲରେ ଘୋଷରା ପ୍ରଭାବ ।"

(ବାଘଶିକାର : ଅନେକ କୋଠରୀ)

ପୂର୍ବରୁ ପ୍ରକାଶ କରିଛି ଏବଂ ଅତି ବିନମ୍ରତାର ସହିତ ପ୍ରକାଶ କରୁଛି ଯେ ଏ କ୍ଷୁଦ୍ର ପ୍ରବନ୍ଧ ଭିତରେ ମୁଁ ଯେଉଁ ପ୍ରତିଷ୍ଠିତ ସାଂପ୍ରତିକ କବିମାନଙ୍କ ସମ୍ବନ୍ଧରେ ନୀରବ ରହିଛି ସେମାନଙ୍କ ପ୍ରତି ମୋର କୌଣସି ଅସୂୟାଭାବ ନାହିଁ । କେବଳ କ୍ଷୁଦ୍ର ପରିସର ଦୃଷ୍ଟିରୁ ମୁଁ ସେମାନଙ୍କ କୃତି ଆଲୋଚନାରୁ ବିରତ ରହିଛି । ଅନନ୍ତ ପଟ୍ଟନାୟକ, ଭାନୁଜୀ ରାଓ, ବେଣୁଧର ରାଉତ, ଡଃ କୁଞ୍ଜବିହାରୀ ଦାଶ, ଜୀବନାନନ୍ଦ ପାଣି, ବିନୋଦ ରାଉତରାୟ ଓ ବିବେକ ଜେନା ପ୍ରଭୃତିଙ୍କ କୃତିଗୁଡ଼ିକ ଓଡ଼ିଆ ସାଂପ୍ରତିକ କବିତାରେ ଅନବଦ୍ୟ-ଚିର ଦେଦୀପ୍ୟମାନ । ଆଗାମୀ କାଳରେ ଏମାନଙ୍କର

ଅମ୍ଳାନ କୃତିକୁ କିଏ ଅସମ୍ମାନ କରିବେ ନାହିଁ ନିଶ୍ଚୟ । ଏମାନଙ୍କ ବ୍ୟତିରେକେ ମଧ୍ୟ ଆହୁରି ଅନେକ ସାଂପ୍ରତିକ କବି ଓଡ଼ିଆ କବିତା କ୍ଷେତ୍ରରେ ନିଜ ସିଦ୍ଧିର ସ୍ୱାକ୍ଷର ରଖିବାକୁ ଆଗେଇ ଆସିଛନ୍ତି । ମୁଁ ସେମାନଙ୍କୁ ସ୍ୱାଗତ କରୁଛି ।

ପ୍ରବନ୍ଧର ଉପସଂହାର ଲେଖିବା ପୂର୍ବରୁ ମୁଁ ଏକ ଅପ୍ରିୟ ସତ୍ୟ କଥା ପ୍ରକାଶ କରିବାକୁ ଚାହୁଁଛି । ସେଉଁଥିରେ କି ମୁଁ ଅନେକ ସାଂପ୍ରତିକ କବିଙ୍କର ଶରବ୍ୟ ହୋଇପାରେ । ତଥାପି ସେତିକ ପ୍ରକାଶ ନ କଲେ ମୁଁ ନିଜେ ନିଜକୁ ଦୋଷୀ ମନେ କରିବି । ଆଧୁନିକ କବିତା ଦୁର୍ବୋଧ୍ୟ ବୋଲି ଯେଉଁ ଦୁଆ ଉଠୁଛି ଅବଶ୍ୟ ସେଥିରେ କେତେକ ଅସୂୟାଭାବ ଓ ଅତିରଞ୍ଜନ ରହିଛି ; ମାତ୍ର ଏହା ଯେ ସମ୍ପୂର୍ଣ୍ଣ ମିଥ୍ୟା ଏ କଥା କୁହାଯାଇ ନ ପାରେ । ଆଧୁନିକ କବିତାର ପୃଷ୍ଠପୋଷକମାନେ ଗର୍ବ କରନ୍ତି ଯେ ପୁରାତନ କବିମାନେ ଗଜଦନ୍ତ ପଲଙ୍କର ମୋହ, ନାରୀ ଦେହର ନିଷିଦ୍ଧ ଅଙ୍ଗର ଚଟୁଳ ପ୍ରଲୋଭନ ଓ ଭାଷା କସରତର ଯାଦୁକରୀ ମାୟାରୁ ମୁକ୍ତ ହୋଇ ନ ପାରି ସାହିତ୍ୟକୁ ଜଣ ସାହିତ୍ୟରେ ପରିଣତ କରିଥିବା ସ୍ଥଳେ ଏମାନେ ସେସବୁରୁ ମୁକ୍ତ ହୋଇ ଗଣସାହିତ୍ୟ ସୃଷ୍ଟି କରିଛନ୍ତି । କିନ୍ତୁ ପ୍ରକୃତରେ କେତେକ ସାଂପ୍ରତିକ କବିତା ପୁରାତନ କବିତା ଅପେକ୍ଷା ଆହୁରି ଦୁର୍ବୋଧ, ଆହୁରି ସୀମିତ ହୋଇ ପଡ଼ୁଛି । ଚିତ୍ରକଳ୍ପ ଓ ପ୍ରତୀକର ପ୍ରୟୋଗ କେତେକ ସ୍ଥଳରେ ଏପରି ଦୁର୍ବୋଧ ହେଉଛି ଯେ, ସେଥିରେ ସହଜରେ ପ୍ରବେଶ କରିବା ଅସମ୍ଭବ ହୋଇ ପଡୁଛି । କେତେକ କବି ମଧ୍ୟ ନିଜେ ପରେ ନିଜ କବିତାର ଅର୍ଥ ପରିପ୍ରକାଶରେ ଅକ୍ଷମ ହେଉଥିବାର ସ୍ପଷ୍ଟ ଉଦାହରଣ ମୁଁ ଦେଖୁଛି । ତେବେ ମୁଁ ଗଭୀର ଆଶା କରେ ଯେ ସାହିତ୍ୟ କ୍ଷେତ୍ରରୁ ଏ ଦୁଃସମୟ ଦୁର୍ବୋଧତା ଅଚିରେ ବିଲୋପ ହେବ ଓ ସାଂପ୍ରତିକ କବିମାନଙ୍କ ଆଲେଖ୍ୟରେ ଓଡ଼ିଆ କବିତାର ଉଚ୍ଛଳ ସ୍ରୋତ ସମଗ୍ର ବିଶ୍ୱ ସାହିତ୍ୟକୁ ମହାପ୍ଲାବନରେ ପ୍ଲାବିତ କରିବ— ସୌକୁମାର୍ଯ୍ୟରେ ଉଦ୍‌ଭାସିତ କରିବ ତଥା ଆନ୍ତଃସୌନ୍ଦର୍ଯ୍ୟରେ କବିତା ବିଶ୍ୱବଳୟକୁ ଅନୁରଣିତ କରିବ ।

———

# ମୋ ଦୃଷ୍ଟିରେ
# ସାଂପ୍ରତିକ କବିତାରେ ପ୍ରତୀକ

**ବିନୋଦ ଚନ୍ଦ୍ର ନାୟକ**

ଆଧୁନିକ ଓଡ଼ିଆ କବିତାରେ ଅନୁଭୂତି * ପ୍ରକାଶ କରିବା ପାଇଁ ପ୍ରତୀକର ଆଶ୍ରୟ ନିଆଯାଏ । କାବ୍ୟ ରଚନାର ଏ ନୂତନ ଧାରା ରୋମାଣ୍ଟିକ୍ କବିଙ୍କର ସମ୍ବେଗ (emotion) ପ୍ରକାଶର ବର୍ଜନ ପ୍ରୟାସରୁ ଉଦ୍‌ଭୂତ । ଆଧୁନିକ କବିଙ୍କର ଯୁକ୍ତି ହେଲା ଯେ ଅତୀତାନ୍ତ ଯୁଗର ରୋମାଣ୍ଟିକ୍ କବିଗଣ ଅତିମାତ୍ରାରେ ବ୍ୟକ୍ତି-କୈନ୍ଦ୍ରିକ ଏବଂ ଗୀତିଧର୍ମୀ ଶୈଳୀ-ଭୁକ୍ତ ; ତେଣୁ କବିତାରଚନାରେ ଏମାନଙ୍କର ସାର୍ଥକତା ନାହିଁ । ଯେଉଁ ଚମତ୍କାରିତା ବା ରସାସ୍ୱାଦନ ଏମାନେ ସମ୍ବେଗ ଏବଂ ଗୀତରେ ପ୍ରଦାନ କରୁଥିଲେ ସେହି ଚମତ୍କାରିତା ବା ରସାସ୍ୱାଦନ ଆଧୁନିକର ଧ୍ୱନିପ୍ରଧାନ ଶବ୍ଦ ଓ ପ୍ରତୀକ ପ୍ରୟୋଗ କରି ପ୍ରଦାନ କରନ୍ତି । 'ଧ୍ୱନିପ୍ରଧାନ୍ ଧର୍ମ' ପ୍ରସଙ୍ଗରେ ଏଲିୟଟ୍‌ଙ୍କର ଗୋଟିଏ ଉକ୍ତି ସ୍ମରଣୀୟ—

> "The chief use of the meaning of a poem, in the ordinary sense, may be to satisfy one habit of the reader to keep his mind diverted and quiet when the poem does its work upon him.
> ( The use of poetry and the use of criticism. )

---

* It is a concentration and a new thing-resulting from a great number of experiences which to the practical and active persons couldn't seem to be experiences at all.

(The Sacred Wood—*Eliot*)

ଅର୍ଥାତ୍ ଅର୍ଥର ବାସ୍ତବିକ୍ କୌଣସି ମୂଲ୍ୟ ନାହିଁ, କେବଳ ପାଠକ ଯେ ଏଥିରେ ଅଭ୍ୟସ୍ତ ଏଇ ହେତୁରୁ ତାହାଙ୍କୁ ଭୁଲାଇ ରଖିବା ପାଇଁ ଅର୍ଥର ସାମାନ୍ୟ ପ୍ରୟୋଜନ ହୁଏ ମାତ୍ର । ପାଠକ ଯେତେବେଳେ ଅର୍ଥ-ମନ୍ତ୍ରମାରେ ମୁଗ୍ଧ, ସେତେବେଳେ କବିତା ଅନ୍ୟ ଉପାୟରେ ତାହାଙ୍କ ଉପରେ ପ୍ରଭାବ ବିସ୍ତାର କରେ । ଅନ୍ୟ କଥାରେ ସଙ୍ଗୀତ ପରି ଏହି ଜାତୀୟ କବିତା ପାଠକଙ୍କ ଚୈତନ୍ୟକୁ ଆଚ୍ଛନ୍ନ କରି ରଖେ ଏବଂ ବୁଦ୍ଧି ଚାଳନା କରିବାର ଆଉ ଅବକାଶ ନ ଥାଏ । ଏଲିୟଟ୍‌ଙ୍କ 'ୱେଷ୍ଟଲାଣ୍ଡ'କୁ ତାହାର ଉଦ୍ଧୃତି ଉଲ୍ଲେଖ (Allusion) ବ୍ୟକ୍ତିଗତ ସ୍ମୃତିଚାରଣ ସତ୍ତ୍ୱେ ଏହି "ଭାବ ସଂଗୀତ"ର ମୂର୍ଚ୍ଛନା କୁହାଯାଇପାରେ ।

ଫରାସୀ ପ୍ରତୀକୀ କବି ମାଲର୍ମେ କହୁଥିଲେ, କବିତା ରଚିତ ହୁଏ ଶବ୍ଦ ଦ୍ୱାରା, ଭାବ (Idea) ଦ୍ୱାରା ନୁହେଁ । ସେ କହୁଥିଲେ ଶବ୍ଦର ଏକ ସୂକ୍ଷ୍ମ ବ୍ୟଞ୍ଜନା ଥିବା ଦରକାର—ସେ ବ୍ୟଞ୍ଜନା କିନ୍ତୁ ଅର୍ଥର ନୁହେଁ । ଅର୍ଥ କରିବାକୁ ବସିଲେ ଶବ୍ଦଟି ଜାତିଭ୍ରଷ୍ଟ ହେବ । କବି ଏପରି ଶବ୍ଦ ଯୋଜନା କରିବେ ଯେ କବିତାର କେବଳ ଗୋଟିଏ ମାତ୍ର ମାନସିକ ଅବସ୍ଥାର ଅସ୍ପଷ୍ଟ ଆଭାସ ମାତ୍ର ମିଳିବ । କୌଣସି ବିବରଣୀ ବା ପ୍ରତିରୂପ ଦେବା ପ୍ରୟାସ ଏଠାରେ ସର୍ବଥା ପରିତ୍ୟାଜ୍ୟ । ଏଇ ପଦ୍ଧତିରେ ରଚିତ ବିଷ୍ଣୁ ଦେଙ୍କ 'ଇଲୋରା' କବିତାର ଏକାଂଶ (ଅନୁବାଦ) ଉଦ୍ଧୃତ ହେଲା—

"ଯେ ଦକ୍ଷଯଜ୍ଞର ନାଟେ ସ୍ଥିତ କର୍ମେ ସଂହାରେ ସଂହାରେ
ରାଜସୂୟ ଅଶ୍ୱମେଧର ଯୁଗଗତ କୁମାରସମ୍ଭବେ
ନଟରାଜ ସର୍ବହରା ମାଲକଣ୍ଠ ଗାଲବାଦ୍ୟ ରବେ
ପଦେ ପଦେ ପୃଥ୍ୱୀ ଜାଗେ ସପ୍ତ ଚୋଳେ ସର୍ବସଂହାରେ ।"

କବି ବର୍ଣ୍ଣନାତ୍ମକ ଭଙ୍ଗୀ ପରିହାର କରି ବ୍ୟଞ୍ଜନାକୁ ଏତେ ସୂକ୍ଷ୍ମାତିସୂକ୍ଷ୍ମ କରିଛନ୍ତି ଯେ ବ୍ୟଞ୍ଜନାଟି ଠିକ୍ କ'ଣ ତାହା ହୃଦୟଙ୍ଗମ କରିବା ଦୁଃସାଧ୍ୟ ।

ଫରାସୀ ପ୍ରତୀକୀ କବି ବୋଦ୍‌ଲେୟାର ଓ ମାଲର୍ମେ ଇତ୍ୟାଦି ପ୍ରତୀକ ସାହାଯ୍ୟରେ ସଙ୍ଗୀତର ସମ୍ବେଗ କବିତାରେ ଫୁଟାଇବାକୁ ଚେଷ୍ଟା କରିଥିଲେ । ପ୍ରତୀକ ଏବଂ ରୂପକ (allegory) ଅଳଙ୍କାର ମଧ୍ୟରେ ପାର୍ଥକ୍ୟ

ଏଇ ଯେ ପ୍ରତୀକ ଅରୂପକୁ ରୂପ ଦିଏ, ପ୍ରତୀକ ପ୍ରୟୋଗ ଦ୍ୱାରା ପାଠକ ମନରେ କିପରି ସମ୍ବେଗ ଜାତ କରାଯାଇପାରେ ସେ ବିଷୟରେ ଏଲିୟଟ୍ କହନ୍ତି—

"The only way of expressing emotion in art is by finding an 'objective correlative', in other words a set of objects, a situation, a chain of events which shall be the formula of that particular emotion and that when the external facts, which must terminate in sensory experience, all given, the emotion is immediately evoked."

ଏ ସମ୍ବନ୍ଧରେ ରମାକାନ୍ତ ରଥଙ୍କର 'ଅତିଥି ସତ୍କାର' * କବିତାଟିର ଦୃଷ୍ଟାନ୍ତ ଦିଆଯାଉଛି । ଏଥିରେ ବସ୍ତୁଶ୍ରେଣୀ ଶଯ୍ୟା (a set of objects) ଓ ଘଟଣା ପ୍ରବାହ (chain of events), ଅବସ୍ଥିତି (situtiom) ସହିତ ଏପରି ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଯେ କୌଣସି ଏକ ଅଂଶ ସ୍ୱତନ୍ତ୍ର ଭାବରେ ଉଦ୍ଧାର କରି ସମଗ୍ର କବିତାର ରସୋପଲବ୍ଧି ପାଇଁ ଇଙ୍ଗିତ ଦେବା ସମ୍ଭବ ନୁହେଁ । ଅଥଚ ସମଗ୍ର କବିତା ଦେଇ ଭୀତି-ସ୍ତବ୍ଧ ଏକ ମୃତ୍ୟୁର ଭୟାନକ କରୁଣ ଶୀତଳ ହାତର ସ୍ପର୍ଶ ପାଠକକୁ ତନ୍ମୟ କରି ରଖେ । ପରିଷ୍କାର କରି ବର୍ଣ୍ଣନା ଦ୍ୱାରା ଏହାର ଅର୍ଥ ବୁଝାଇ ହୁଏନା—ହୃଦୟ ଦେଇ ଅନୁଭବ କରିହୁଏ—କବିଙ୍କର ଏକ କାରୁଣ୍ୟତମ ଅନୁଭୂତି ।

ସବୁବେଳେ ଭାଷା ପୂର୍ଣ୍ଣତମ ଭାବକୁ ପ୍ରକାଶ କରିବାକୁ ଅସମର୍ଥ ହୁଏ—ଏଇପରି ସଙ୍କଟରୁ ପରିତ୍ରାଣ କରେ କେବଳ ପ୍ରତୀକ । ୟେଟ୍‌ସ୍‌ଙ୍କ ଭାଷାରେ—

"Symbols are the only things free enough from all bonds to speak of perfection."

---

* ୧୯୭୦ ଶାରଦୀୟ ବିଶେଷାଙ୍କ 'ଝଙ୍କାର'ରେ ପ୍ରକାଶିତ ରମାକାନ୍ତ ରଥଙ୍କର 'ଅତିଥି ସତ୍କାର' କବିତା ଦ୍ରଷ୍ଟବ୍ୟ ।

ଅର୍ଥାତ୍‌, "ମନୋଜଗତର ସୀମାୟିତ ଏବଂ ସୀମାହୀନ—ଅନିର୍ବଚନୀୟ ଅଧ୍ୟାୟ ଲୋକକୁ କେବଳ ଆଭାସ ଓ ଇଙ୍ଗିତରେ ପ୍ରକାଶ କରିବାକୁ ପ୍ରତୀକର ଚେଷ୍ଟା ।" *

ପ୍ଲାଟୋ କିନ୍ତୁ ପ୍ରତୀକ ବ୍ୟବହାରର ପକ୍ଷପାତୀ ନ ଥିଲେ । ପ୍ରତୀକର ବ୍ୟବହାର ଆଦିମମାନବର କଳ୍ପନାପ୍ରସୂତ । ତେଣୁ ବୁଦ୍ଧି ଦ୍ୱାରା ଅନୁଶୀଳନ କରିବା କ୍ଷମତା ବୃଦ୍ଧିପ୍ରାପ୍ତ ହେଲେ—ପ୍ରତୀକର ପ୍ରୟୋଜନ ଆଉ ଅନୁଭୂତ ହୁଏ ନା । ଦର୍ଶନ ଓ ବିଜ୍ଞାନରେ ତେଣୁ ପ୍ରତୀକର ବ୍ୟବହାର ଅପ୍ରଚଳିତ ।

ସେ ଯାହା ହେଉ କବିତାରେ ପ୍ରତୀକ ମାଧ୍ୟମରେ ଅନୁଭୂତି ପରି-ପ୍ରକାଶ ନିଶ୍ଚୟ ଏକ ସର୍ବାଧୁନିକ ରୀତି । କାବ୍ୟରୀତିର ଆଙ୍ଗିକ ଓ ପ୍ରକାଶ-ଭଙ୍ଗୀ କାବ୍ୟ ଗୁଣାଙ୍କନର ମାନଦଣ୍ଡ ନୁହେଁ । କବିତା ପାଇଁ କାବ୍ୟରୀତି ଛଡ଼ା ଆହୁରି କିଛି ଦରକାର—ତାହା ହେଉଛି କବିର ଅନ୍ତର୍ଦୃଷ୍ଟି ଉପଲବ୍ଧି ଏବଂ ତାହାର ପରିପ୍ରକାଶ କ୍ଷମତା । ଶିଳ୍ପ ସୃଷ୍ଟିର ଫର୍ମୁଲା ପ୍ରୟୋଗ ଦ୍ୱାରା ଦୁର୍ବଳ ଶିଳ୍ପୀ ସାର୍ଥକ ଶିଳ୍ପ ସୃଷ୍ଟି କରିପାରେନା ।

---

* ୨୦ ବର୍ଷ—୬ଷ୍ଠ ସଂଖ୍ୟା ଭାଦ୍ର ୧୩୭୫ 'ଝଙ୍କାର'ରେ ପ୍ରକାଶିତ ଶ୍ରୀ ଦାଶରଥି ଦାସଙ୍କର 'ପ୍ରତୀକବାଦ' ଦ୍ରଷ୍ଟବ୍ୟ ।

## ମୋ ଦୃଷ୍ଟିରେ

# ସାଂପ୍ରତିକ ଓଡ଼ିଆ କବିତାର ଦୁର୍ବୋଧତା

### ଅଧ୍ୟାପକ ଶ୍ରୀ ଭଗବାନ ଜେନା

ଆଧୁନିକ ଓଡ଼ିଆ କବିତା କହିଲେ ଏହାର ଦୁର୍ବୋଧତା ହିଁ ପାଠକ ତଥା ଆଲୋଚକ ମନକୁ ଗ୍ରାସ କରିଥାଏ । ଏହି ଦୁର୍ବୋଧତା କ'ଣ ଓ କିପରି ଏହା ବୁଝାଇବାକୁ ଯିବା ନିଶ୍ଚୟ ନିର୍ବୋଧତାର ପରିଚୟସୂଚକ । ଏ ବିଷୟରେ ଗଲା କେତେ ବର୍ଷ ଧରି ଆଲୋଚନା ସମାଲୋଚନା ହୋଇ ଆସିଛି । ହୁଏତ ବେଶି ଆଲୋଚନା ହୋଇଛି ପ୍ରଥମ ଅବସ୍ଥାରେ—ଏବେ ସମାଲୋଚନା ଆରମ୍ଭ ହୋଇଛି । ଓଡ଼ିଆ କବିତାକୁ ଦୁର୍ବୋଧ କରିବାରେ ଯେଉଁମାନେ ଦାୟୀ ଏବଂ ସେମାନଙ୍କର ଗୁଣଗ୍ରାହୀମାନେ ଏହା ଯୁକ୍ତି କରି ଆସିଛନ୍ତି ଯେ ଓଡ଼ିଆ କବିତା ପ୍ରକୃତରେ ଦୁର୍ବୋଧ ନୁହେଁ । ଯାହା ଏଥିପାଇଁ ଦାୟୀ ତାହା ହେଲା ପାଠକର ସହାନୁଭୂତିଶୀଳତାର ଅଭାବ, ଅଜ୍ଞତା ଏବଂ ଅନେକାଂଶରେ ଅସହନଶୀଳତା । ସେ କାରଣଗୁଡ଼ିକ ମଧ୍ୟରୁ ଏକ କିମ୍ବା ଏକାଧିକ କାରଣ ସତ୍ୟ ହେଉ ବା ନ ହେଉ, ଦୁର୍ବୋଧତାର ପ୍ରତ୍ୟକ୍ଷ ଫଳ ସ୍ୱରୂପ କାବ୍ୟ କବିତା ସାଧାରଣ ପାଠକସମାଜରୁ ବହୁତ ଦୂରକୁ ଚାଲିଯାଇଛି । ଆଜିକାଲି ପତ୍ର ପତ୍ରିକାରେ କବିତାବିଭାଗକୁ ଏକ ଅର୍ଥହୀନ ସାଂଭ୍ରାନ୍ତିକତା ବୋଲି କେତେକ ପାଠକ ଗ୍ରହଣ କରି ସାରିଲେଣି ।

**କବି ଏକ ସାମାଜିକ ପ୍ରାଣୀ**

ଆଜିର ଯୁଗରେ ଏହା ନିଶ୍ଚୟ ସ୍ୱୀକୃତ ଯେ କବି କୌଣସି ଅତି-ମାନୁଷ ଶକ୍ତିର ଅଧିକାରୀ ନୁହେଁ । କବି ସମାଜରେ ବାସ କରେ ଏବଂ ତାହାର କାବ୍ୟିକ ଚେତନା କେବଳ ସାମାଜିକ ପରିବେଶରେ ବିଭିନ୍ନ ସାମାଜିକ କ୍ରିୟା ପ୍ରତିକ୍ରିୟାରୁ ହିଁ ସୃଷ୍ଟି ହୋଇଥାଏ । ଏହା ଯଦି ସତ୍ୟ ହୁଏ, ତା' ହେଲେ କବିତାର ମାଧ୍ୟମ ଅବଶ୍ୟ ସେପରି ହେବ ଯାହା ସାଧାରଣ ଅଭିଜ୍ଞତା-ସମ୍ପନ୍ନ ପାଠକ ପକ୍ଷରେ ବୋଧଗମ୍ୟ ହେଉଥିବ ।

କେତେକ ଆଲୋଚକ କହିଥାନ୍ତି, ଆଜିର କବିତା ଭାଷାସର୍ବସ୍ୱ ନୁହେଁ—ଏହା ଭାବଗର୍ଭିତ । ଏହି ଭାବର ପୁଣି ବିଭିନ୍ନ ସ୍ତର ଥାଇପାରେ । ମଣିଷର ମନରାଜ୍ୟରେ ଯେଉଁ ତିନୋଟି ସ୍ତର ଅଛି, ଯଥା—ଚେତନ, ଅବଚେତନ ଓ ଅଚେତନ—ଏ ତିନି ସ୍ତରର ଯୁଗପତ୍ ଆନ୍ଦୋଳିତ ଚିନ୍ତା-ପ୍ରବାହ ଓ ଭାବପ୍ରବାହକୁ ଉତ୍ତମ ରୂପେ ପ୍ରକାଶ କରିବା ସାଧାରଣ ଭାଷା ମଧ୍ୟରେ ସମ୍ଭବପର ନୁହେଁ । ଏଥିପାଇଁ ବିଭିନ୍ନ ରୂପକଳ୍ପ, ପ୍ରତୀକ ତଥା ଅନ୍ୟ ଅନେକ ସୂକ୍ଷ୍ମ ପ୍ରକାଶ ମାଧ୍ୟମର ଆବଶ୍ୟକତା ରହିଛି । ମୂଳତଃ ଏଥିପାଇଁ ଏକ ସ୍ୱତନ୍ତ୍ର ଭାଷାର ଆବଶ୍ୟକତା ଅଛି । ଏତଦ୍‌ବ୍ୟତୀତ, ଆଜିର ପାରମାଣବିକ ଯୁଗରେ ସମଗ୍ର ସଂଜ୍ଞା ସଂପୂର୍ଣ୍ଣ ଓଲଟପାଲଟ ହୋଇଯାଇଛି । ମଣିଷର ନୈତିକତା-ଜ୍ଞାନର ପରିବର୍ତ୍ତନ ହୋଇଛି । ସାମାଜିକ ସମସ୍ୟାର ବହୁଳତା ତଥା ଜଟିଳତା ଜୀବନକୁ ଭିନ୍ନ ରୂପ ଦେଇଛି । ଏସବୁ କାରଣରୁ ଆଜିର କବିତାର ଭାଷା ସାଧାରଣ ବୋଧଗମ୍ୟ ଭାଷା ହେବା ସମ୍ଭବପର ନୁହେଁ । ଏହା ବ୍ୟତୀତ, ଉଚ୍ଚଧରର କବିତାରେ ବୌଦ୍ଧିକତାର ପରିପ୍ରକାଶ ହେବା ସ୍ୱାଭାବିକ । ନଚେତ୍ କବିତା ଏକ ଶସ୍ତା ପଣ୍ୟରେ ପରିଣତ ହେବ ।

ଉପରୋକ୍ତ ସବୁ କାରଣ ବାରଣ ସତ୍ତ୍ୱେ ଏହା ଅବଶ୍ୟ ସତ୍ୟ ଏବଂ ସ୍ୱୀକାର୍ଯ୍ୟ ଯେ କବି ଏକ ସାମାଜିକ ପ୍ରାଣୀ ଏବଂ ସେ ସମାଜର ମୁଖ୍ୟ ପ୍ରଚଳିତ ଚିନ୍ତାଧାରା, ସମସ୍ୟାପ୍ରବାହ ତଥା ହର୍ଷାମର୍ଷରୁ ଊର୍ଦ୍ଧ୍ୱରେ ନୁହେଁ । ଯଦି ତା' ହୋଇଥାଏ, ତାହାହେଲେ ସେ ଅତିମାନୁଷ ବା ଅମାନୁଷ ଶ୍ରେଣୀର କବି ହୋଇପାରେ । କାରଣ କବି କେବେହେଲେ ସମାଜକୁ ଅବଜ୍ଞା ବା ଉପେକ୍ଷା କରି ନ ପାରେ । କବି ହୁଏ ତ ସମାଜର ଏକ ନିର୍ଦ୍ଦିଷ୍ଟ ଅବସ୍ଥାରେ ସ୍ଖଳନମୁଖୀ କ୍ଷୟିଷ୍ଣୁ ସାମାଜିକ ପ୍ରକ୍ରିୟାର କୁପ୍ରଭାବରେ ପ୍ରଭାବିତ ହୋଇପାରେ । କିନ୍ତୁ ଏକ ଗଠନମୁଖୀ ସୃଷ୍ଟିଶୀଳ ସମାଜରେ କ୍ଷୟିଷ୍ଣୁ ପ୍ରବୃତ୍ତିସଂପନ୍ନ ଏକ କବିକୁଳର ଆବିର୍ଭାବ [ସମାଜର] ବିକାଶ ପକ୍ଷରେ ଏକ ଅଭିଶାପ ବୋଲି ଧରିନେବାକୁ ହେବ । ଏହା ବ୍ୟତୀତ, କବିକୁ ଏକ ନିଷ୍ଠାପର ଆବେଗମୟ ଦ୍ରଷ୍ଟା ଏବଂ ଅସାଧାରଣ ସୃଜନୀ ପ୍ରତିଭାର ଅଧିକାରୀ ରୂପେ ଗ୍ରହଣ କରାଯାଇପାରେ । କବିଠାରେ ଏହି ଆବେଗପୂର୍ଣ୍ଣତା ଏବଂ ଅସାଧାରଣତ୍ୱ କେବଳ ସାମାଜିକ ବାସ୍ତବତା ଏବଂ ଅଭ୍ୟାସରୁ ହିଁ ଅଧିକ ମିଳିଥାଏ । ଏହା ଦେବଦତ୍ତ କି ଅତିମାନୁଷ ବା ପାଗଳାମିର ପରିଚାୟକ ନୁହେଁ । ଏପରି ଗୁଣସଂପନ୍ନ ହୋଇ କବି ହୁଏ ତ

ନିଜର ପ୍ରତିଭା ବଳରେ ଏକ କ୍ଷୟିଷ୍ଣୁ ସମାଜପ୍ରକ୍ରିୟାକୁ ନିଜର କବିତା ମାଧ୍ୟମରେ ଆସନ୍ନ ଧ୍ୱଂସ ମୁଖରୁ ରକ୍ଷା କରିପାରେ ; ନ ହେଲେ ନ କରିବ ପାରେ 'ଏଥିରେ ଦୁଃଖ ବା ଅନୁଶୋଚନା ନାହିଁ । କିନ୍ତୁ ଅନେକ ଯୁଗର ପରାଧୀନତା, ଅନ୍ଧବିଶ୍ୱାସ ଏବଂ ଜଡ଼ତା ପରେ ଏକ ନବଜାଗ୍ରତ, ସଚେତନ, ଗତିଶୀଳ ଆଜିର ଏ ସମାଜରେ କବିତାକୁ ମୁଷ୍ଟିମେୟ ବ୍ୟକ୍ତିବିଶେଷଙ୍କ ମଧ୍ୟରେ ପିଞ୍ଜରାବଦ୍ଧ କରି ରଖିବାର ଧାରାବାହିକ ଉଦ୍ୟମ ଯେ ଅସାମାଜିକ, ଏଥିରେ ସନ୍ଦେହର ଅବକାଶ ନାହିଁ । ଏହା ବୌଦ୍ଧିକତା, ଉଚ୍ଚ ମୂଲ୍ୟଜ୍ଞାନ, ସାମାଜିକ ଜୀବନରେ ଜଟିଳତା-କୁଟିଳତା ତଥା ଅନ୍ୟ ଯେ କୌଣସି ଛଦ୍ମ-ନିୟମ ସମର୍ଥିତ ହୋଇପାରେ, ସେଥିରେ କିଛି ଯାଏ ଆସେ ନାହିଁ । କବିର ଏପରି ଉଦ୍ୟମ ସର୍ବଥା ଅପ୍ରଶଂସନୀୟ । ଦୁଃଖ ଓ ପରିତାପର ବିଷୟ, ଏହା ହିଁ ଅନେକାଂଶରେ ଆଜିର ଓଡ଼ିଆ କବିତା ବିଷୟରେ ସତ୍ୟ ।

**କବି କାହିଁକି ଲେଖେ**

ଆଜି କାବ୍ୟକବିତାରାଜ୍ୟରେ ଏ କଥା ନିଶ୍ଚିତଭାବରେ ସ୍ୱୀକୃତ ଯେ କବି କେବଳ ନିଜର ଆତ୍ମୋଲ୍ଲାସ (self-delight) ପାଇଁ କବିତା ଲେଖେ ନାହିଁ । ସେ ମଧ୍ୟ ଇଚ୍ଛା ଆତ୍ମପ୍ରକାଶ ପାଇଁ କବିତା ସୃଷ୍ଟିକରେ ନାହିଁ । ତା'ର ନିଶ୍ଚୟ ଅନ୍ୟ କିଛି ଉଦ୍ଦେଶ୍ୟ ଥାଏ । ଉଦ୍ଦେଶ୍ୟହୀନ କବିତା ସୃଷ୍ଟି ସର୍ବଦା ଅସଫଳ ସୃଷ୍ଟି । ଏହା ମଧ୍ୟ ସତ୍ୟ ଯେ କବିତାକୁ ପାଠକମାନେ ଉତ୍ତମରୂପେ ବୁଝି ହୃଦୟଙ୍ଗମ ତଥା ଉପଭୋଗ କରନ୍ତୁ—ଏହା କବିର କବିତାସୃଷ୍ଟି ଅନ୍ତରାଳରେ ଏକ ଅବିଚ୍ଛେଦ୍ୟ ଅଭିପ୍ସା ରୂପେ ଲୁକ୍କାୟିତ ଥାଏ । ଏସବୁକୁ Communication କହନ୍ତି । କେବଳ କବିତା ନୁହେଁ, ସମଗ୍ର କଳା ସୃଷ୍ଟିରେ ହିଁ ଏହା ସତ୍ୟ । ସେ ଉଦ୍ଦେଶ୍ୟ ଯେତେ ସାର୍ବଜନୀନ, ସେ ସୃଷ୍ଟି ସେତେ ଗ୍ରହଣୀୟ, ସେତେ ସୁନ୍ଦର, ସେତିକି ସତ୍ୟ, ଏବଂ ଉଦ୍ଦେଶ୍ୟର ଉପଯୁକ୍ତ କଳାତ୍ମକ ପରିବେଷଣ ସୃଷ୍ଟିକୁ ଅଳ୍ପ ବା ବହୁକାଳ ସ୍ଥାୟୀ କରିଥାଏ । ଅନ୍ୟ-ପକ୍ଷରେ କବି ଯେତେବେଳେ ନିଜକୁ ଏକ ରୁଦ୍ଧ ମନ୍ଦିରର ଦେବତା ରୂପେ ଗ୍ରହଣ କରି ନିଜର କବିତା ସୃଷ୍ଟିକରେ, ଏହାର ବିଷୟବସ୍ତୁ ଗ୍ରହଣୀୟ ହେଉଛି କି ନାହିଁ ବା ଏହା ଅବୋଧ କି ଦୁର୍ବୋଧ ହେଉଛି, ଏହାର କି ଫଳାଫଳ ହେଉଛି—ଏସବୁ ଜାଣି ନ ପାରେ ବା ଜାଣି ମଧ୍ୟ ନିଜ

ଅଭ୍ୟାସରେ ବ୍ୟସ୍ତ ରହେ, ତାହାହେଲେ କବିତା ସମାଜରେ ଅତ୍ୟଳ୍ପ ସଂଖ୍ୟକ ପାଠକ ଦ୍ୱାରା ହିଁ ଆଦୃତ ହୋଇଥାଏ ।

ଏଠାରେ ଅନ୍ୟ କେତେକ ପ୍ରଶ୍ନର ଅବତାରଣା କରାଯାଇପାରେ । କବି ଜଣେ ସ୍ୱୟଂମନ୍ୟ ବୈଧାନିକ ବୋଲି ଇଂରାଜୀ ରୋମାଣ୍ଟିକ କବି Shelly କହିଥିଲେ । ଏହାର ଅର୍ଥ କବି ଜଣେ ବର୍ତ୍ତମାନ, ଭବିଷ୍ୟତ୍‌-ଦ୍ରଷ୍ଟା ରୂପେ ନିଜେ ନିଜ ବାଟରେ ସମାଜକୁ ଚଳାଇବା ପାଇଁ କବିତା ସୃଷ୍ଟି କରିପାରେ । ଏହା ଏହି ପରିପ୍ରେକ୍ଷୀରେ ସତ୍ୟ, ଯେତେବେଳେ କବିର ମତ ସର୍ବସାଧାରଣରେ ଆଦୃତ ହୁଏ ଏବଂ ବୋଧ ହୁଏ । ସାରା ସମାଜକୁ ଏକ ନିର୍ବୋଧ ଏବଂ ପଙ୍ଗୁସମାଜ ବୋଲି ମନେକରି କାମ କରିବା କବି ପକ୍ଷରେ ଏକ ଅପରିଚିତ ଅସ୍ପୃହଣୀୟ ପିତୃତ୍ୱ ପରି ମନେହେବ । ଏଣୁ ଏହି ସୀମିତ ପରିବେଶରେ କବିକୁ ଏକ ବୈଧାନିକ ବୋଲି ଗ୍ରହଣ କରାଯାଇପାରେ ; କିନ୍ତୁ କବି ଯେତେବେଳେ ନିଜକୁ ଏକମାତ୍ର ସ୍ରଷ୍ଟା, ଦ୍ରଷ୍ଟା ଓ ନିର୍ମାତାରୂପେ ସାରା ସମାଜ ଉପରେ ନିଜର ଆଧିପତ୍ୟ ବିସ୍ତାର କରିବାକୁ ଉଦ୍ୟତ ହୁଏ, ଏହା ସମ୍ପୂର୍ଣ୍ଣ ଅପ୍ରାସଙ୍ଗିକ ଏବଂ ଅସଙ୍ଗତ ବିବେଚିତ ହୋଇଥାଏ ।

ଏହିସବୁ ଦୃଷ୍ଟିରୁ ଆଜିର ଓଡ଼ିଆ କବିତାର ବିଗ୍ଭର କଲେ ନିରାଶ ହେବାକୁ ପଡ଼େ । ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟସୃଷ୍ଟିକୁ କେହି ସମାଲୋଚକ "ନାରୀ ଏବଂ ଡିକ୍‌ସନାରୀ"ରେ ପର୍ଯ୍ୟବସିତ କରିଥାନ୍ତି । ଯୁଗଦୃଷ୍ଟିରୁ କଳ୍ପନା ଏପଟ ସେପଟ କଲେ ଆଧୁନିକ ଓଡ଼ିଆ କବିତାର ଏକ ବିରାଟ ଅଂଶରେ ଏହା ହିଁ ଦେଖିବାକୁ ମିଳେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । "ନାରୀ" ପରିବର୍ତ୍ତେ ଏଠାରେ ଗ୍ରହଣ କରାଯାଇପାରେ ଯୌନସଂପର୍କୀୟ ସମସ୍ତ ଚିନ୍ତାବିଳାସ ବା ଚିନ୍ତାବିଭ୍ରାଟ । ଦୁର୍ବୋଧତାର ଆଜିର ରୂପ Dictionary ବାହାରେ ଅନ୍ୟ ଅନେକ ଅଭିଧାନଭୁକ୍ତ । ଏଠାରେ କେବଳ ଶବ୍ଦସମ୍ଭାରର କ୍ଲିଷ୍ଟତା ନାହିଁ, ଅଛି ପରିବେଷଣର ଜଟିଳତା । ଏଥିପାଇଁ ଅଧିକ ଆଲୋଚନା ଆବଶ୍ୟକ । କିନ୍ତୁ ଏହା ହିଁ ସାଧାରଣ ଚିତ୍ର ।

ଅନ୍ୟ ପକ୍ଷରେ, ଓଡ଼ିଶାର ଜୀବନ-ଚିତ୍ରକୁ ବିଶ୍ଳେଷଣ କରାଯାଉ । ଓଡ଼ିଶା ତଥା ଭାରତରେ (କେତେକ ମାହାନଗରୀକୁ ଛାଡ଼ିଦେଲେ) ଜୀବନ କ'ଣ ପ୍ରକୃତରେ ଜଟିଳ ? ଜଟିଳତା ହୁଏ ତ ବିଭିନ୍ନ କାରଣରୁ ସମାଜର

ମନୁଷ୍ୟର ବ୍ୟକ୍ତିବିଶେଷରେ ଥାଇପାରେ, ଅଛି ମଧ୍ୟ। ତା' କେବଳ ପାଶ୍ଚାତ୍ୟ ଢଙ୍ଗୀରେ ପାଳିତ-ଲାଳିତ ଏବଂ ପାଶ୍ଚାତ୍ୟ ସାହିତ୍ୟ ଦ୍ୱାରା ପ୍ରଭାବିତ ମାନସିକତା ପାଇଁ ସତ୍ୟ। ଆମର ସାମାଜିକ ରୀତିନୀତି, ଚିନ୍ତା-ଧାରା ଏବଂ ଆଦର୍ଶ ଅନେକାଂଶରେ ଏବେ ବି ସମ୍ପୂର୍ଣ୍ଣ ଅକ୍ଷତ ଏବଂ ସ୍ୱୟଂ-ସମ୍ପୂର୍ଣ୍ଣ। ଏଠି ନାହିଁ ଗୁରୁଶିଳ୍ପର ଘର୍ଘର ଘନଘଟା କିମ୍ବା ଆଧୁନିକ ଲଣ୍ଡନ-ନିଉୟର୍କର ଝିମ୍‌ଭିନ୍ ଦୈନନ୍ଦିନ ଜୀବନପ୍ରବାହ। ଏହାର ଅର୍ଥ କେହି ଯେପରି ନ ବୁଝନ୍ତି ଯେ ଆମେ ଦୁନିଆଁର ଚିନ୍ତାରାଜ୍ୟରୁ ନିଜକୁ ଅଲଗା ରଖି କୂପମଣ୍ଡୂକଭିର ଶିକାର ହେବା। ଭିଏତନାମ୍ ଜନତାର ସାମ୍ରାଜ୍ୟବାଦବିରୋଧୀ ସଂଗ୍ରାମ ବର୍ଣ୍ଣ-ଭେଦନୀତିରେ ବର୍ବରତା ବିରୋଧରେ ସଂଗ୍ରାମ ଏ ସବୁର ଚିତ୍ର ଆମ କାବ୍ୟ-କବିତାରେ ସ୍ଥାନ ପାଇବା ଉଚିତ; କାରଣ ଏହାକୁ ଆମ ଜାତି ସମର୍ଥନ କରିଆସିଛି। ଅପରନ୍ତୁ ଆଧୁନିକ ନୂଆ କବିତାରେ ପ୍ରତିଫଳିତ ଜଟିଳ ଦୁର୍ବୋଧତା ଆମ ସାଧାରଣ ଜୀବନରେ ଦେଖାଯାଏ ନାହିଁ। ହୁଏ ତ ବ୍ୟକ୍ତିବିଶେଷ ସମସ୍ୟା, ସ୍ୱାର୍ଥପରତା, ଅନ୍ତର୍ମୁଖୀନତା ବା ପ୍ରଚ୍ଛନ୍ନ ଯୌନଚିନ୍ତାବ୍ୟସ୍ତତା ସମାଜର ଏକ ନିର୍ଦ୍ଦିଷ୍ଟ କ୍ଷୁଦ୍ର ଗୋଷ୍ଠୀଗତ ବ୍ୟାପାର। ଏହାକୁ କବିତାରେ ସାରା ସମାଜର ଚିତ୍ର ରୂପେ ସାମାଜିକ ସ୍ୱର ରୂପେ ଗଢ଼ି ତୋଳିବାକୁ ଚେଷ୍ଟା କରିବା ଏକ ଅପ୍ରଶଂସନୀୟ ଉଦ୍ୟମ। ମନେହୁଏ, ପାଶ୍ଚାତ୍ୟ-ଜଗତର ସମସ୍ୟାମାନ ସାମାଜିକ କିମ୍ବା ପ୍ରତିକ୍ରିୟାର କୁପ୍ରଭାବ ଆମର କବିକୁଳ ମାନସ-ରାଜ୍ୟରେ ଏକ କୃତ୍ରିମ ରୂପ ସୃଷ୍ଟି କରିଛି ଏବଂ ସେମାନେ ସେ ରୂପର ସହଜ ଶିକାର ହୋଇଛନ୍ତି ମାତ୍ର। ଏଲିୟଟ୍‌ଙ୍କ, ଏଜ୍‌ରା ପାଉଣ୍ଡ ଇଂରାଜୀ ସାହିତ୍ୟରେ ଏକ ନିର୍ଦ୍ଦିଷ୍ଟ ଘଟଣା ପରିବେଶ ଓ ଯୁଗର ସୃଷ୍ଟି ତଥା ପରିପ୍ରକାଶ ମାତ୍ର। ଆମ ସାମାଜିକ ତଥା ଜାତୀୟ ଜୀବନରେ ଏହାକୁ କିମ୍ବା ଏହାର ପରବର୍ତ୍ତୀ ଅବସ୍ଥାକୁ ସୃଷ୍ଟିକରିବା ଉଦ୍ୟମ କେବଳ ଏକ କୃତ୍ରିମ ପରିସ୍ଥିତି ସୃଷ୍ଟି କରିଛି। ଆଧୁନିକ ପାଶ୍ଚାତ୍ୟ କବିତାର ସୁଗୁଣ ମଧ୍ୟରୁ ଯାହା ଆମ କବିତାର ବିକାଶରେ ଆବଶ୍ୟକ ଏବଂ ଗ୍ରହଣୀୟ, ସେଗୁଡ଼ିକୁ ଗ୍ରହଣ ନ କରି ପୂରାପୂରି ଅନୁକରଣ ତଥା ହନୁକରଣ ଫଳରେ ଅବସ୍ଥା ହୁଏ ତ ଏପରି ହୋଇଛି। ଏଲିୟଟ୍‌ଙ୍କର 'Hurry up it's time'ର ଇଙ୍ଗିତ ଆମ ସାମାଜିକ ଜୀବନରେ ପ୍ରାୟ ପରିଲକ୍ଷିତ ହୁଏ ନାହିଁ।

ଭାରତର ଜାତୀୟ ଜୀବନ ତଥା ଓଡ଼ିଶାର ସାମାଜିକ ଜୀବନ ଅଧୁନା ବିରାଟ ପରିବର୍ତ୍ତନର ସମ୍ମୁଖୀନ। ଏ ପରିବର୍ତ୍ତନ ଗ୍ରାମ୍ୟ ପରିବେଶ

ଠାରୁ ସହରର ଶିକ୍ଷାଯୁବତୀ—ସବୁ ଆଜି ସୁସ୍ପଷ୍ଟ । ଭାରତୀୟ କୃଷିସଂସ୍କୃତି ବର୍ତ୍ତମାନ ବିଜ୍ଞାନର ଦ୍ରୁତବର୍ଦ୍ଧମାନ ପ୍ରଭାବରେ ଶତଧା ଆନ୍ଦୋଳିତ । ମଣିଷର ବଞ୍ଚିବାର ତୀବ୍ର ଆକାଙ୍କ୍ଷା ତଥା ସୁଖସମୃଦ୍ଧିଭରା ଜୀବନଯାପନ କରିବାର ଲକ୍ଷ୍ୟ ବର୍ତ୍ତମାନ ନୂତନ ଉଦ୍ଦୀପନାରେ ଉଦ୍‌ଭାସିତ, ନୂତନ ସଂଳାପରେ ହର୍ଷୋତ୍‌ଫୁଲ୍ଲ । ଯୁଗ ଯୁଗର କାଳମାଭରା ଧର୍ମଧାରଣା ଆଜି ବହୁଧା ନଷ୍ଟ-ବିନଷ୍ଟ । ଭାଗ୍ୟଭଗବାନ ଉପରେ ଅନ୍ଧ ନିର୍ଭରଶୀଳତା ଲୁପ୍ତପ୍ରାୟ । ସମାଜର କୃତ୍ରିମ ଅହିଂସ ଶାନ୍ତ ପରିବେଶ ବର୍ତ୍ତମାନ ଶ୍ରେଣୀସଂଘର୍ଷର ଆବାଜରେ ପ୍ରତିଧ୍ୱନିତ । ଯୁଗ ଯୁଗର ବୁଭୁକ୍ଷୁ ନିଷ୍ପେଷିତ ମଣିଷ ଆଜି ପ୍ରାଚୀନତା ଓ ପରଂପରା ବିରୋଧରେ ବିଦ୍ରୋହ ଘୋଷଣା କରି ନୂତନ ମୁକ୍ତିର ସନ୍ଧାନରେ ସତତ ଧାବମାନ । ଏହା ଆଜି ଅଉ ସ୍ଲୋଗାନ ହୋଇ ରହିନାହିଁ । ବରଂ ଯେଉଁ କବି ସାହିତ୍ୟିକ ଏହାର ସମ୍ପୂର୍ଣ୍ଣ ବିପରୀତ ସମାଜଚିନ୍ତ ତଥା ଚିନ୍ତାର ଅବତାରଣା କରି ଆସୁଛନ୍ତି, ସେମାନେ ପ୍ରାଚୀନତା ତଥା ପରମ୍ପରାର ସ୍ଲୋଗାନ୍ ହିଁ ଦେଉଛନ୍ତି । ବର୍ତ୍ତମାନ ସମୟ ଆସିଛି—ଶ୍ରମିକ, କୃଷକ, କର୍ମଚାରୀ ତଥା ସାଧାରଣ ଯୁବସମାଜ ନିଜ ନିଜର ନୂତନ ପଥ ବାଛି ନେଉଛନ୍ତି । ସେମାନେ ପରସ୍ପରର ଲକ୍ଷ୍ୟ ଭିତରେ କୌଣସି ପାର୍ଥକ୍ୟ ବା ଅମେଳ ଦେଖୁନାହାନ୍ତି । ଏହା ହେଉଛି ସଭ୍ୟତାର ଜୟଯାତ୍ରା । ଏ ବିରାଟ ଜୟଯାତ୍ରାର ଗତି ଯେଉଁମାନେ ରୋଧ କରିବାକୁ ଚେଷ୍ଟା କରୁଛନ୍ତି, ସେମାନେ ହିଁ ଧ୍ୱଂସପ୍ରାପ୍ତ ବିଲୁପ୍ତ ହେବେ । ଶୋଭାଯାତ୍ରା ଗଲାଲାଣି, ଗଲବ । ଆଜିର ଯୁବଲେଖକର ଏହା ହିଁ ବ୍ରତ ଏବଂ ଆଚରଣ ହେଉ ଯେ ସେ ଉକ୍ତ ଜୟଯାତ୍ରାରେ ଯୋଗ ଦେଇ ନିଜର କର୍ତ୍ତବ୍ୟ କରିଯିବ । ସେ କର୍ତ୍ତବ୍ୟ ଶୋଷକ ମୁଷ୍ଟିମେୟଙ୍କ ପାଇଁ ନୁହେଁ, ଶୋଷିତ ସହସ୍ରଙ୍କ ପାଇଁ । ବିଭ୍ରାନ୍ତକାରୀ ଫନ୍ଦିଫିକିର (Divertionary tactics) କ୍ରମେ ଅଚଳ ହୋଇପଡ଼ୁଛି । ସତକୁ ସତ ଏବଂ ମିଛକୁ ମିଛ ବୋଲି କହିବାର ବେଳ ଆସିଛି । ଏହା ହିଁ ଆଜିର କବି କଳାକାରର ପରୀକ୍ଷାର ବେଳ ।

ଏହି ଦୃଷ୍ଟିରୁ ଦେଖିଲେ, ଆଜିର ଓଡ଼ିଆ ସାହିତ୍ୟ ତଥା କବିତା ରାଜ୍ୟରେ କେତେକ ମୁଷ୍ଟିମେୟ ଯୁବକବିଙ୍କ କ୍ଷୀଣ ପଦପାତ ହିଁ ଶୁଣାଯାଏ । ସେମାନଙ୍କ ଲେଖାମାନରେ ଅବଚେତନାର ଉତ୍ସାହ ଅଛି, ଏଥିରେ ସନ୍ଦେହ ନାହିଁ । କିନ୍ତୁ ସେଠାରେ ଅଧିକ ଆବଶ୍ୟକ ନିରପେକ୍ଷ ନିଷ୍ଠାପର ଜୀବନଚିନ୍ତା ତଥା ସମାଜଚିନ୍ତା—ଆହୁରି ଅଧିକ ଆବଶ୍ୟକ 'ସ୍ୱ-ଆଦର୍ଶ ପ୍ରତି ଗଭୀର

ଅନୁରକ୍ତି । ଆମ ସମାଜର ଏହି ସଂଘର୍ଷମୟ କାଳରେ ସବୁ ମୁକ୍ତିକାମୀ ଜନତା ଆମ ସାହିତ୍ୟକୁ କ୍ରମେ ଅଧିକ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁଲେଣି । ସେମାନଙ୍କ ଆଶାକୁ ବଞ୍ଚେଇବାକୁ ପଡ଼ିବ, ସେମାନଙ୍କ ସଂଗ୍ରାମରେ ସାହାଯ୍ୟ କରିବାକୁ ପଡ଼ିବ । ନଚେତ୍, କବି ଲେଖକର ସ୍ଥାନ ସେହି ପୌରାଣିକ ବିସ୍ମୃତିଗର୍ଭରେ କ୍ରମେ ଲୁପ୍ତ ହୋଇଯିବ; ଏଥିରେ ସନ୍ଦେହ ନାହିଁ । ପରିବର୍ତ୍ତନ ସ୍ରୋତର ସହ ବହିଯିବା ମଣିଷ ସମାଜର ଧର୍ମ । ସ୍ରୋତକୁ ପ୍ରତିରୋଧ କରିବା କେବଳ ଧ୍ୱଂସର କାରଣ । ଏ କ୍ଷୁଦ୍ର ଆଲୋଚନାର ପରିସର ଦୃଷ୍ଟିରୁ କେବଳ ବିଭିନ୍ନ ବିଷୟରେ ସଂକ୍ଷିପ୍ତ ସୂଚନା ଦିଆ-ଯାଇଛି । ଏ ବିଷୟରେ ଉଦାହରଣ ସହ ଅଧିକ ଆଲୋଚନା ଆବଶ୍ୟକ । ଯେଉଁ ନୂତନ ସ୍ୱର ଆଜିର ସାହିତ୍ୟରେ ଶୁଭିଲାଣି, ତା'ର ବେଶି ପର୍ଯ୍ୟା-ଲୋଚନା ଆବଶ୍ୟକ । ସବୁ ସତ୍ତ୍ୱେ ଆଜିର ଓଡ଼ିଆ କବିତାରେ ଅନେକ ଉପାଦେୟ ସୃଷ୍ଟି ହୋଇଆସିଛି ଏହା ସ୍ୱୀକାର୍ଯ୍ୟ; କିନ୍ତୁ ଏ ପ୍ରବନ୍ଧର ଆଲୋଚନା କେବଳ ସେହି କାବ୍ୟକବିତା ପାଇଁ, ଯାହା ସବୁ ସତ୍ତ୍ୱେ ଦୁର୍ବୋଧ, ଅସାମାଜିକ ଏବଂ ଯୌନଚିନ୍ତାପରିପୂର୍ଣ୍ଣ ।

ଏ ପ୍ରବନ୍ଧର ଆଧୁନିକ କବିତାରେ ଦୁର୍ବୋଧତାର ଉଦାହରଣ ଦେବାକୁ ଯାଇ ଉଦ୍ଧୃତିର ଆଶ୍ରୟ ନିଆଯାଇ ନାହିଁ । ପ୍ରଥମତଃ ଦୁର୍ବୋଧତା ବିବାଦୀୟ ପରି ପାଠକଙ୍କ ସମ୍ମୁଖରେ ସତ୍ୟ; ଦ୍ୱିତୀୟତଃ ଉଦ୍ଧୃତି ସଂପୂର୍ଣ୍ଣ ନ ହେଲେ ପୂର୍ବାପର ସଙ୍ଗତିବିହୀନ (out of context) ବୋଲି ଅଭିଯୋଗ କରାଯାଇପାରେ । କ୍ଷୁଦ୍ର ପରିସର ଦୃଷ୍ଟିରୁ ଏହା କରାଯାଇ ନାହିଁ ।

---

# ମୋ ଦୃଷ୍ଟିରେ

# ସାଂପ୍ରତିକ କବିତାରେ ଦୁର୍ବୋଧତା

**ଅଧ୍ୟାପକ ପରେଶଚନ୍ଦ୍ର ରାଉତ**

ଅନେକେ ଆଧୁନିକ କବିତାକୁ ଦୁର୍ବୋଧ ମନେ କରନ୍ତି । ଓଡ଼ିଆ କବିତାର ଇତିହାସରେ ଆଧୁନିକ କବିତା ଦୁର୍ବୋଧତାର ପ୍ରଥମ ଦୃଷ୍ଟାନ୍ତ ନୁହେଁ । ଦୁର୍ବୋଧତାର ପରମ୍ପରାର ଆରମ୍ଭ ଆଦିଯୁଗରୁ । କାହ୍ନୁପାଦ, ଲୁଇପାଦ, ଶବରପାଦ ଇତ୍ୟାଦିଙ୍କ ଦ୍ୱାରା ସାନ୍ଧ୍ୟ ଭାଷାରେ ରଚିତ ଚର୍ଯ୍ୟାପଦ ଆଧ୍ୟାତ୍ମିକ ରହସ୍ୟବାଦ ଯୋଗୁ ଦୁର୍ବୋଧ ହୋଇଥିଲା । ପଞ୍ଚସଖା ଯୁଗରେ ମଧ୍ୟ ଧର୍ମର ମାହାତ୍ମ୍ୟ ପ୍ରକାଶ କରିବା ପ୍ରୟାସରେ କାବ୍ୟକାରମାନେ ଅସ୍ପଷ୍ଟ ହୋଇଥିଲେ । ଅଚ୍ୟୁତାନନ୍ଦଙ୍କ ଶୂନ୍ୟସଂହିତା, ବଳରାମ ଦାସଙ୍କ ବ୍ରହ୍ମାଣ୍ଡ ଭୂଗୋଳ, ଜଗନ୍ନାଥ ଦାସଙ୍କ ତୁଳାଭିଣା ଓ ତତ୍କାଳୀନ ଭଜନମାନଙ୍କରେ ବିଭିନ୍ନ ଅସ୍ପଷ୍ଟ ଚିତ୍ରକଳ୍ପ ଓ ପ୍ରତିରୂପମାନଙ୍କର ବ୍ୟବହାର (ପ୍ରାଣପବନ ବା ଜୀବାତ୍ମାକୁ ହଂସକଳ୍ପ-ଚିତ୍ରରେ ପ୍ରକାଶ) ଏହାର ଉଦାହରଣ । ତା'ପରେ ରୀତିଯୁଗରେ ଉପେନ୍ଦ୍ରଭଞ୍ଜ, ଅଭିମନ୍ୟୁ, ଯଦୁମଣି ପ୍ରଭୃତିଙ୍କ କାବ୍ୟ କବିତା ବକ୍ରୋକ୍ତି, ଶ୍ଳେଷ, ବ୍ୟଞ୍ଜନା ଓ ଧ୍ୱନି ଇତ୍ୟାଦିର ବହୁଳ ବ୍ୟବହାର ଦ୍ୱାରା ଦୁର୍ବୋଧ ହୋଇଥିଲା । ଆଳଙ୍କାରିକତା ଏହି ଦୁର୍ବୋଧତାର କାରଣ । ରାଧାନାଥ ଯୁଗରେ ଓଡ଼ିଶାର ପ୍ରଥମ ଗୀତିକବି ମଧୁସୂଦନ ସ୍ୱକବିତାରେ ଉପନିଷଦର ଦର୍ଶନତତ୍ତ୍ୱ ଓ ବ୍ରାହ୍ମଦର୍ଶନତତ୍ତ୍ୱ ଉପସ୍ଥାପିତ କରିବାକୁ ଯାଇ ଦୁର୍ବୋଧ କବିତା ସୃଷ୍ଟି କରିଥିଲେ । ରାଧାନାଥଙ୍କ କବିତାକୁ ଦୁର୍ବୋଧ କୁହାଯାଇ ନାହିଁ ସତ ; କିନ୍ତୁ ତାଙ୍କ କବିତା ଉପରେ 'ଇନ୍ଦ୍ରଧନୁ' ପତ୍ରିକାର ଆକ୍ରମଣ ଏକଥା ପ୍ରତିପାଦିତ କରିଛି ଯେ କବିତା ଯେତେ ସରଳ ହେଉ ନା କାହିଁକି କବି ଯେତେବେଳେ ଏକ ଏକ ନୂତନ କାବ୍ୟଶୈଳୀ ବ୍ୟବହାର କରେ, ପାଠକ ଅନଭ୍ୟସ୍ତ ଥିବାରୁ ତାକୁ ସମ୍ପୂର୍ଣ୍ଣ ଓ ବେଳେବେଳେ ଆଂଶିକ ଭାବେ ମଧ୍ୟ ଉପଭୋଗ କରିପାରେ ନାହିଁ । ବୁଝିବା ଓ ଉପଭୋଗ କରିବା ଏହି ଦୁଇଟି କ୍ରିୟା ପୃଥକ୍ ନୁହନ୍ତି । ବୁଝିବାର ଅର୍ଥ ହେଉଛି

ଯଥାର୍ଥ କାରଣ ଯୋଗୁ ଉପଭୋଗ କରିବା । ପାଠକ ଯାହା ବୁଝେ ନାହିଁ ତାହା ଉପଭୋଗ କରିପାରେ ନାହିଁ ଏବଂ ଯାହା ଉପଭୋଗ କରେ ନାହିଁ ତାହା ବୁଝି ମଧ୍ୟ ପାରେ ନାହିଁ । କେତେକ ପାଠକ ରାଧାନାଥଙ୍କୁ ଉପଭୋଗ କରିପାରି ନ ଥିଲେ ଏବଂ ଭାବିଥିଲେ ଯେ ରାଧାନାଥଙ୍କ ଶୈଳୀ ଭଞ୍ଜଙ୍କର ଶୈଳୀଠାରୁ ନିକୃଷ୍ଟତର । ଏଥିରୁ ପ୍ରମାଣିତ ହେଉଛି ଯେ ସେମାନେ ରାଧାନାଥଙ୍କ କବିତା ଓ କାବ୍ୟଶୈଳୀ ପ୍ରକୃତଭାବେ ବୁଝିପାରି ନ ଥିଲେ । ରାଧାନାଥ ନିଜେ ଭଞ୍ଜଙ୍କ ଶୈଳୀଦ୍ୱାରା ପ୍ରଭାବିତ ହୋଇଥିଲେ, ତଥାପି ଏହା କହିବା ଯଥାର୍ଥ ହେବ ଯେ ଉପେନ୍ଦ୍ରଙ୍କ ଆଲଙ୍କାରିକତା ପ୍ରତି ପାଠକମାନେ ଏତେ ଦୂର ଅଭ୍ୟସ୍ତ ହୋଇପଡ଼ିଥିଲେ ଯେ ରାଧାନାଥଙ୍କ କବିତା ଉପଭୋଗ କରିବାରେ ତାହା ଏକ ବାଧା ସୃଷ୍ଟି କରିଥିଲା । ତା'ପରେ ସବୁଜଯୁଗରେ ବୈକୁଣ୍ଠନାଥଙ୍କ କବିତାରେ ଦୁର୍ବୋଧତା ପରିଲକ୍ଷିତ ହୁଏ । ବୈକୁଣ୍ଠନାଥଙ୍କ କବିତା ଦୁର୍ବୋଧ ହେବାର କାରଣ ହେଉଛି ତାଙ୍କର ରହସ୍ୟବାଦ । ରବୀନ୍ଦ୍ରନାଥଙ୍କ ପ୍ରଭାବ ଏହି ଦୁର୍ବୋଧତା ପାଇଁ କେତେକ ପରିମାଣରେ ଦାୟୀ ।

ଅନେକଗୁଡ଼ିଏ କାରଣ ଯୋଗୁ କବିତା ଦୁର୍ବୋଧ ହୋଇପାରେ । ପ୍ରଥମତଃ, କୌଣସି ବ୍ୟକ୍ତିଗତ କାରଣ ଯୋଗୁ କବି ଏକ ଅସ୍ପଷ୍ଟ ଶୈଳୀରେ ନିଜକୁ ବ୍ୟକ୍ତ କରିବାକୁ ବାଧ୍ୟ ହୋଇଥାଏ । ଏପରି ଶୈଳୀଦ୍ୱାରା କବିର ଅନୁଭବ ଯଦି ପାଠକର ବୋଧଗମ୍ୟ ନ ହୁଏ, ତେବେ ଏହା ଦୁଃଖର କଥା । କିନ୍ତୁ ଦୁର୍ବୋଧ ହେଲେ ମଧ୍ୟ କବି ଯେ ନିଜକୁ ବ୍ୟକ୍ତ କରି ପାରିଛି ଏହା ଏକ ଆନନ୍ଦର ବିଷୟ । ଦ୍ୱିତୀୟତଃ ଶୈଳୀର ନୂତନତ୍ୱ ଯୋଗୁ କବିତା ଦୁର୍ବୋଧ ହୋଇପାରେ । ଟି. ଏସ୍. ଏଲିୟଟଙ୍କ ମତରେ—

> "Sensibility alters from generation to generation in everybody. Whether we will or not but expression is only altered by a man of geneus. A great many second-rate poets, in fact, are second-rate just for this reason, that they have not the sensitiveness and consciousness to perceive that they feel differently from the preceding generation and therefore must use words differently."

ପ୍ରତ୍ୟେକ ଯୁଗରେ କୌଣସି କବି ଯେତେବେଳେ ନୂତନ ଶୈଳୀର ବ୍ୟବହାର କରିଛି, ସେତେବେଳେ ଦୁର୍ବୋଧ ବୋଲି ସମାଲୋଚିତ ହୋଇଛି । ଅଚ୍ୟୁତାନନ୍ଦ, ଭଞ୍ଜ, ମଧୁସୂଦନ, ବୈକୁଣ୍ଠନାଥ ଓ ଶଚୀରାଉତରାୟ କେହି ଏହି ଅଭିଯୋଗରୁ ବାଦ ଯାଇ ନାହାନ୍ତି । କିନ୍ତୁ ରାଉତରାୟଙ୍କ ପୂର୍ବବର୍ତ୍ତୀ ଓଡ଼ିଆ କବିମାନଙ୍କର କବିତାକୁ ପାଠକ ଦୁର୍ବୋଧ ବୋଲି ଉପେକ୍ଷା କରିନାହିଁ । କିନ୍ତୁ ଆଧୁନିକ କବିତାକୁ କେବଳ ଏହି କାରଣ ହେତୁ ପଢ଼ିବା ଉପଯୋଗୀ ବୋଲି ସେ ବିବେଚନା କରେ ନା । କବିତା ଦୁର୍ବୋଧ ହେବାର ତୃତୀୟ କାରଣ ହେଉଛି ଯେ ପାଠକ କୌଣସି ଗୋଟିଏ କବିର କବିତା ପଢ଼ିବା ପୂର୍ବରୁ ସେହି କବିର କବିତା ଯେ ଦୁର୍ବୋଧ ହେବ, ଏହା ଆଶଙ୍କା କରେ ; କିମ୍ବା ଉକ୍ତ କବିର କବିତା ପଢ଼ିବା ପୂର୍ବରୁ ତାକୁ ଅନ୍ୟମାନେ ଧାରଣା ଦିଅନ୍ତି ଯେ ଅମୁକ କବି ଖୁବ୍ ଦୁର୍ବୋଧ । ସାଧାରଣ ପାଠକକୁ ଯଦି ପୂର୍ବରୁ କୌଣସି କବିର ଦୁର୍ବୋଧତା ବିଷୟରେ ସତର୍କ କରାଇ ଦିଆଯାଏ, ତେବେ କବିତା ପଢ଼ିବା ସମୟରେ ତାର ମନରେ ଉଦ୍‌ବେଗ ଓ ସନ୍ଦେହ ଜାଗ୍ରତ ହୁଏ ; ଯାହା ଫଳରେ କବିର ଅନୁଭୂତିକୁ ଅନୁଭବ କରିବା ଓ କବିତାକୁ ଉପଭୋଗ କରିବା ପାଠକ ପକ୍ଷରେ ଅସମ୍ଭବ ହୋଇପଡ଼େ । ଏପରି ଅବସ୍ଥାରେ ପାଠକ କବିର ଅନୁଭୂତି ପ୍ରତି ସଚେତନ ନ ରହି ଛିଦ୍ରାନ୍ୱେଷଣ ହେବାକୁ ଚେଷ୍ଟା କରେ ଓ କବିତାରେ ଏପରି ବିଷୟମାନଙ୍କର ସନ୍ଧାନ କରେ ଯାହା କି ସେ ନିଜେ ମଧ୍ୟ ଜାଣେ ନା କିମ୍ବା କବିତାକୁ ଯେପରି ଠିକ ନ ଦିଏ ଏ ବିଷୟରେ ଅତି ସାବଧାନ ହୁଏ । ତଦ୍ଦ୍ୱାରା ତାହାର ଗ୍ରହଣଶକ୍ତି କ୍ଷୁଣ୍ଣ ହୁଏ ଓ ସରଳ କବିତାଟିଏ ମଧ୍ୟ ଦୁର୍ବୋଧ ହୋଇପଡ଼େ । କିନ୍ତୁ ଜଣେ ପ୍ରବୀଣ ପାଠକ (ଯାହାଠାରେ ଏହିଭଳି ଦୁର୍ବଳତା ନ ଥାଏ) କୌଣସି କବିତା ପ୍ରଥମ ଥର ପଢ଼ିଲାବେଳେ ଭାବାର୍ଥ ବୁଝିବା ପାଇଁ ଏତେ ବ୍ୟଗ୍ର ହୁଏ ନା । କାରଣ ସେ ଜାଣେ ଯେ ପ୍ରଥମ ଥର ପଢ଼ିଲାବେଳେ ଦୁର୍ବୋଧ ହୋଇଥିବା କବିତା କ୍ରମଶଃ ଖୁବ୍ ଉପଭୋଗ୍ୟ ହେବାର ସମ୍ଭାବନା ଯଥେଷ୍ଟ ରହିଛି । କବିତାର ଭାବାର୍ଥ (Internal meaning) ନ ବୁଝି ମଧ୍ୟ କବିତାକୁ ଉପଭୋଗ କରାଯାଇପାରେ । ଭାବ ଦୁର୍ବୋଧ ହେଲେ ମଧ୍ୟ କବିତାର ତାଳ ଓ ଶବ୍ଦ-ଯୋଜନା ପାଠକକୁ ଆନନ୍ଦ ଦେଇପାରେ । କବିତା ଦୁର୍ବୋଧ ହେବାର ଚତୁର୍ଥ କାରଣ ହେଉଛି ଯେ ପାଠକ ସାଧାରଣତଃ କବିତାରେ ଯାହା ପାଇବାକୁ ଆଶାକରେ ଓ ଯାହା ପାଇବାରେ ଅଭ୍ୟସ୍ତ, (ଜଣେ କବି

ହୁଏ ତ ସ୍ୱ-କବିତାରେ ସେ ସବୁକୁ ବାଡ଼ି ନ ଥାଇପାରେ) ଏ ଅବସ୍ଥାରେ ପାଠକ କିଂକର୍ତ୍ତବ୍ୟବିମୂଢ଼ ହୋଇ କବିତାଟିରେ ଯାହା ନାହିଁ ତାହା ହିଁ ଖୋଜି ବସେ ଓ ଏପରି ଭାବାର୍ଥର ଅନୁସନ୍ଧାନରେ ବ୍ୟସ୍ତ ହୋଇଉଠେ ଯେ ଯାହା କି କବିତାଟିରେ ନାହିଁ ଏବଂ ଯାହା କବି ନିଜ କବିତାରେ ପ୍ରକାଶ କରିବାର ଚେଷ୍ଟା ମଧ୍ୟ କରି ନାହିଁ ।

ଟି. ଏସ୍. ଏଲିୟଟ୍‌ଙ୍କ ମତରେ ପାଠକର କେବଳ ଗୋଟିଏ ପ୍ରକାରର ଶୃହିଦା ମେଣ୍ଟାଇବା ପାଇଁ କବିତାରେ ଭାବାର୍ଥର ବ୍ୟବହାର କରାଯାଇପାରେ । କବିତାଟି ପାଠକ ଉପରେ ସ୍ୱପ୍ରଭାବ ପକାଇଲାବେଳେ ଉକ୍ତ ଭାବାର୍ଥ ପାଠକ ମନକୁ ଭୁଲାଇ ସ୍ଥିର ରଖେ, ଗପବହିର ଚୋର ଯେପରି ରାତିରେ ଚୋରି କଲାବେଳେ କୁକୁରକୁ ଭୁଲାଇ ତାକୁ ଚୁପ୍ ରଖିବାକୁ ସାଙ୍ଗରେ କିଛି ମାଂସ ନେଇ ଯାଇଥାଏ । କିନ୍ତୁ ସବୁ କବି ଏହି ପନ୍ଥା ଅନୁସରଣ କରି ନ ପାରନ୍ତି । ହୁଏ ତ କୌଣସି କବି ଏହି ଭାବାର୍ଥକୁ ବାହୁଲ୍ୟ ମନେକରି କବିତାରୁ ଏହାକୁ ବାଦ ଦେଲେ କବିତାର ଆତ୍ୟନ୍ତିକତା (Intensity) ବୃଦ୍ଧି ପାଇବାର ସମ୍ଭାବନା ଉପଲବ୍ଧି କରିପାରେ । ବିଭିନ୍ନ ଯୁଗରେ ବିଭିନ୍ନ କାବ୍ୟଶୈଳୀର ବ୍ୟବହାର ସ୍ୱାଭାବିକ । ଗୋଟିଏ ଯୁଗରେ କାବ୍ୟଶୈଳୀ ସରଳ ଓ ଅକଠିନ ହୋଇ-ପାରେ । ଅନ୍ୟ ଏକ ଯୁଗରେ କାବ୍ୟଶୈଳୀ ଭିନ୍ନାର୍ଥକ ଜଟିଳ ଓ ଗମ୍ଭୀର ହୋଇପାରେ । କୌଣସି ଗୋଟିଏ ଯୁଗରେ ମଧ୍ୟ ଦୁଇ ଜଣ ଶକ୍ତିଶାଳୀ କବି ଦୁଇଟି ବିଭିନ୍ନ ଶୈଳୀର ବ୍ୟବହାର କରିପାରନ୍ତି; ଯଥା—ଇଂରାଜୀ ସାହିତ୍ୟର ଭିକ୍ଟୋରିଆନ୍ ଯୁଗରେ ଲର୍ଡ଼ ଟେନିସନ୍ ଓ ରବର୍ଟ ବ୍ରାଉନିଙ୍ଗ୍ ।

ଆଧୁନିକ ଯୁଗର କବିତା ସଂକ୍ଷିପ୍ତ ଓ ଜଟିଳ । ଦୀର୍ଘ କବିତା ପଢ଼ି ଉପଭୋଗ କରିବା ପାଇଁ ସମୟ ହୁଏ ତ ଆଜିର ପାଠକର ନାହିଁ । ଦୀର୍ଘ କବିତା ଲେଖିବା ପାଇଁ ସମୟ ହୁଏ ତ ଆଜିର କବି ମଧ୍ୟ ପାଏ ନା । ପୂର୍ବବର୍ତ୍ତୀ କବିମାନେ ଯଦି ଏତେ ବୃହତ୍ ଆକାରର କବିତା ସବୁ ଲେଖି ନ ଥାନ୍ତେ, ତେବେ ତାଙ୍କ କବିତା ହୁଏ ତ ଆହୁରି ପ୍ରଭାବଶାଳୀ ହୋଇପାରିଥାନ୍ତା । ଅବଶ୍ୟ ଦୀର୍ଘ କବିତା ଏବେ ମଧ୍ୟ ଲେଖାଯାଇପାରେ । କିନ୍ତୁ ଆଜିର ପ୍ରବୀଣ ପାଠକ ଅନ୍ୟାନ୍ୟ ଯୁଗର ପାଠକମାନଙ୍କ ଅପେକ୍ଷା ଦୀର୍ଘକବିତାରୁ ବହୁତ ବେଶୀ କାବ୍ୟସାମଗ୍ରୀ ଦାବୀ କରିବ । ପାଠକର ଏହି ଦାବୀ ଦୀର୍ଘ କବିତାର କାବ୍ୟକାର ମେଣ୍ଟାଇ ପାରିବ କି ? ତେଣୁ

କବିତାକୁ ସମୃଦ୍ଧ ଓ ନିଗୂଢ଼ କରିବାକୁ ହେଲେ ଯେ ଅପାର୍ଥ ଓ ସଂକ୍ଷିପ୍ତ କରିବାକୁ ହେବ, ଆଧୁନିକ କବି ଏହା ଉପଲବ୍ଧି କରି ଅନେକଗୁଡ଼ିଏ ଅନୁଭୂତିକୁ ସଂକ୍ଷିପ୍ତଭାବେ ପ୍ରକାଶ କରିବାର ପ୍ରୟାସରେ ପାଠକମାନଙ୍କ ନିକଟରେ ଦୁର୍ବୋଧ ହୋଇ ପଡ଼ୁଛି । ପାଠକମାନେ ଏହା ହୃଦୟଙ୍ଗମ କରିବା ଉଚିତ ଏବଂ ଏ କ୍ଷେତ୍ରରେ ଅଧିକ ଅଭିନିବେଶ ପ୍ରଦର୍ଶନ ପ୍ରୟୋଜନ ।

ଆଧୁନିକ କବିର ଲକ୍ଷ୍ୟ ହେଉଛି ଯେତେଦୂର ସମ୍ଭବ ଦୈନନ୍ଦିନ ବ୍ୟବହୃତ ଭାଷା ଜରିଆରେ କବିତା ସୃଷ୍ଟିକରିବା । ସଚ୍ଚି ରାଉତରାୟ ତାଙ୍କ କବିତା ୧୯୬୨ର ପୃଷ୍ଠବନ୍ଧରେ ଲେଖିଛନ୍ତି, ନୂତନ କବିତାର ଲକ୍ଷ୍ୟ, ଭାଷାକୁ ଯଥାସମ୍ଭବ ସରଳ କରି ଭାଷାର ସବୁପ୍ରକାର ଦୁର୍ବଳତାକୁ ଦୂର କରିବା ଏବଂ ତାକୁ କଥିତ ଭାଷାର ନିକଟତମ କରିବା ; କିନ୍ତୁ ସଚ୍ଚି ରାଉତରାୟଙ୍କ କବିତା ଦୁର୍ବୋଧ ବୋଲି ଅନେକେ ମତପ୍ରକାଶ କରନ୍ତି । "ରାଉତରାୟଙ୍କ କବିତାକୁ ଆପଣ ଦୁର୍ବୋଧ କାହିଁକି କହନ୍ତି ?" ଏ ପ୍ରଶ୍ନର ଉତ୍ତର ଦେଇ ଜଣେ ପାଠକ କହିଲେ, "କାରଣ ତାଙ୍କ କବିତା ବ୍ୟାଖ୍ୟା କରି ହୁଏ ନା ।" ଉକ୍ତ ପାଠକଙ୍କୁ ବୁଝାଇବାକୁ ଚେଷ୍ଟା କରାଗଲା ଯେ କବିତା କେବଳ ସ୍କୁଲ୍ ଓ କଲେଜର କ୍ଲାସମାନଙ୍କରେ ବ୍ୟାଖ୍ୟା କରାଯାଏ । ବ୍ୟାଖ୍ୟା କରାଯାଇ ପାରିବାଟା କବିତାର ଏକ ବିଶେଷ ଧର୍ମ ନୁହେଁ । ବ୍ୟାଖ୍ୟା କରାଯାଇ ପାରିବା ଭଳି ଭାବାର୍ଥ ବରଂ ଗଦ୍ୟ ପାଇଁ ବେଶି ଉପଯୋଗୀ । ଜଣେ ପାଠକ କବିତାଟିଏ ପଢ଼ିଲାବେଳେ କବିତାଟିକୁ ନିଜର ବୋଧଗମ୍ୟ କରିବା ପାଇଁ ଅନୁଶୀଳନ କରି ବ୍ୟାଖ୍ୟା କରେ ନା । ବ୍ୟାଖ୍ୟା କଲେ କବିତା ଆଉ କବିତା ହୋଇ ରହେ ନା । ତେଣୁ ବ୍ୟାଖ୍ୟା କରାଯାଇ ନ ପାରିଲେ କବିତା ଯେ ଦୁର୍ବୋଧ ହୋଇ ରହିଯିବ, ଏ ଯୁକ୍ତି ଠିକ୍ ନୁହେଁ । ଆଉ ଯାହା ବ୍ୟାଖ୍ୟା କରାଯାଇ ପାରେ ନା ତାହା ଯେ ମୂଲ୍ୟହୀନ, ଏ ଯୁକ୍ତି ମଧ୍ୟ ଅପ୍ରାସଙ୍ଗିକ । କାରଣ ଜୀବନରେ ଏପରି ଅନେକ ଅନୁଭୂତି ଅଛି ଯାହା ବ୍ୟାଖ୍ୟା କରାଯାଇ ପାରେ ନା । କିନ୍ତୁ ତା'ର ଅର୍ଥ ନୁହେଁ ଯେ ସେହି ଅନୁଭୂତିଗୁଡ଼ିକ ଦୁର୍ବୋଧ ବା ମୂଲ୍ୟ-ହୀନ । କେତେକ ଅତି ସାଧାରଣ ଅନୁଭୂତି ମଧ୍ୟ ବ୍ୟାଖ୍ୟା କରି ହୁଏ ନାହିଁ ।

କିନ୍ତୁ ଏ କଥା ମଧ୍ୟ ସ୍ୱୀକାର୍ଯ୍ୟ ଯେ ଆଧୁନିକ କବିତା ନାମରେ ଲେଖା ଯାଉଥିବା ଅନେକ କବିତା କୌଣସି ବିଶେଷ ଉଦ୍ଦେଶ୍ୟ ନ ଥାଇ

ସୁଦ୍ଧା ଦୁର୍ବୋଧ ହେଉଛନ୍ତି । ଏପରି କବିତାରେ ଦୁର୍ବୋଧତାର କାରଣ କେବଳ ସ୍ଥାନାନ୍ତରିତ ପଦବିନ୍ୟାସ ନୁହେଁ । ବରଂ ଏପରି କବିତାରେ ଚିତ୍ରକଳ୍ପଗୁଡ଼ିକ ପୂର୍ବାପର ସମ୍ବନ୍ଧ ନ ଥାଇ ଉଦ୍ଦେଶ୍ୟହୀନ ଓ ଆକସ୍ମିକ-ଭାବେ ବ୍ୟବହାର ହେବା ପରି ଜଣାପଡ଼ନ୍ତି ।

କିନ୍ତୁ ସବୁ ଆଧୁନିକ କବିତାକୁ ଦୁର୍ବୋଧ କହି ଉଡ଼ାଇ ଦେଇ ହେବ ନି । ମିଶ୍ରିତ, ବହୁବିଧ, ବହୁମୁଖୀ ଅନୁଭୂତିକୁ ପ୍ରକାଶ କରିବାକୁ ଯାଇ ଆଧୁନିକ କବି ପ୍ରଶସ୍ତ, ବିନ୍ଦ ଓ. ଜଟିଳ ହୋଇଛି । ଏପରି କବିତା ଯେ ଅନଭ୍ୟସ୍ତ ପାଠକକୁ ଟିକେ ବ୍ୟସ୍ତ କରିବ, ଏଥିରେ ସନ୍ଦେହ ନାହିଁ । ପାଠକକୁ ବୁଝିବାକୁ ହେବ ଯେ ସବୁ ଆଧୁନିକ କବି ଠକ ନୁହନ୍ତି । ଭଞ୍ଜଙ୍କ ଅସ୍ପଷ୍ଟ ଶୈଳୀ ହୁଏ ତ କିଛି ଗୋପନ ରଖିବା ଉଦ୍ଦେଶ୍ୟରେ ସୃଷ୍ଟି ହୋଇ-ଥିଲା (The decent obscurity of a learned language : Gibbon) । କିନ୍ତୁ ଆଧୁନିକ କବି ନିଜକୁ ସମ୍ପୂର୍ଣ୍ଣ ଭାବେ ବ୍ୟକ୍ତ କରିବାକୁ ଚେଷ୍ଟା କରିଛି । ହୁଏ ତ ପାଠକ ପ୍ରତ୍ୟେକ ବିଷୟକୁ ଖାଲି ଗୋଟିଏ ଦୃଷ୍ଟି-କୋଣରୁ ଦେଖିବାରେ ଏତେ ଅଭ୍ୟସ୍ତ ଯେ ସେହି ବିଷୟଟି ବିଭିନ୍ନ ଦୃଷ୍ଟିକୋଣରୁ ଦେଖାଇ ଦିଆଗଲେ ମଧ୍ୟ ସେ ଚିହ୍ନି ପାରେ ନି । କବି ତା ନିଜ କଳାରେ ପାରଦର୍ଶୀ ହେବାକୁ ଇଚ୍ଛା କରେ । ସମାଜର ସାଧାରଣ ପଦ୍ଧତି ଓ ଶିକ୍ଷା ସତ୍ତ୍ୱେ କବିକୁ ପାରଦର୍ଶୀ ହେବାକୁ ହୁଏ । କାରଣ ଏହି ପଦ୍ଧତି ଓ ଶିକ୍ଷା ବ୍ୟକ୍ତିତ୍ୱବିହୀନ ଭାବଧାରାମାନଙ୍କଦ୍ୱାରା ମଣିଷର ବ୍ୟକ୍ତିତ୍ୱ ଓ ବ୍ୟକ୍ତି-ଗତ ଭାବଧାରା, ଇଚ୍ଛା ଓ କୌତୂହଳକୁ ଅସ୍ପଷ୍ଟ କରି ସାଧାରଣ ନାଗରିକ-ମାନଙ୍କୁ ସୃଷ୍ଟିକରେ । କବି ଏହି ପଦ୍ଧତିର ଆକ୍ରମଣରୁ ତାର ଭାବଧାରା ଇଚ୍ଛା ଓ କୌତୂହଳକୁ ବଞ୍ଚାଇ ରଖିବାର ଚେଷ୍ଟାକରେ । ସେ ଜାଣେ ସେ କ'ଣ ଚାହେଁ ଓ କେବଳ ଯାହା ଅତ୍ୟାବଶ୍ୟକ, ଯାହାକୁ ବ୍ୟାଖ୍ୟା କରିବା ପ୍ରୟୋଜନ ନୁହେଁ ; କବିତାରେ ତାହା ହିଁ ବାଛେ । କବିପ୍ରାଣ ଆଚ୍ଛାଦିତ ବା ଆବୃତ ନୁହେଁ ବରଂ ସେ ମଣିଷକୁ ଓ ବିଭିନ୍ନ ପରିସ୍ଥିତିକୁ ଅନାବୃତ ଓ ଅନାଚ୍ଛାଦିତ ରୂପେ ଦେଖେ ଓ ପ୍ରକାଶ କରେ । ସାଧାରଣ ପାଠକ କିନ୍ତୁ ସାମାଜିକ ପଦ୍ଧତି ଓ ଶିକ୍ଷାର ପ୍ରଭାବଦ୍ୱାରା ଏକ ବ୍ୟକ୍ତିତ୍ୱବିହୀନ ଚେତନା ହୋଇ ପଡ଼ିଥାଏ ଏବଂ କବିର ଦୃଷ୍ଟିକୋଣକୁ ଗ୍ରହଣ କରିବା ତା ପକ୍ଷରେ କଷ୍ଟକର ହୋଇପଡ଼େ ଓ ସେ କବିକୁ ଦୁର୍ବୋଧ କହେ । ତେଣୁ ଭଲ କବିତା ଚିହ୍ନିବା ଓ ଉପଭୋଗ କରିବା ଓ ବାଜେ କବିତା ଉପେକ୍ଷା କରିବା, ବିଶେଷତଃ ନୂତନ ପରିସ୍ଥିତିର ସମ୍ମୁଖୀନ ହୋଇ ସମସାମୟିକ

କବିତାରୁ ଭଲ ନୂଆ କବିତା ଚିହ୍ନିବା କେବଳ ପାଠକର ଉନ୍ନତ ବ୍ୟକ୍ତି-ଗତ ସଂସ୍କୃତିଦ୍ୱାରା ସମ୍ଭବ ହୋଇପାରେ । ଏହି ସଂସ୍କୃତିକୁ ସର୍ବସାଧାରଣ ଯେ ନିଜର କରିପାରିବେ, ଏ ବିଷୟରେ ଆଶାୟୀ ହେବା ଆଧୁନିକ କବି ପକ୍ଷରେ କେବଳ ଆତ୍ମବିଡ଼ମ୍ବନା ହୋଇପାରେ ।

---

୧—ଟି· ଏସ୍ · ଏଲିୟଟଙ୍କ Johnson's London : A poem and the Vanity of Human Wishes ପ୍ରବନ୍ଧରୁ ଉଦ୍ଧୃତ ।

୨—ଟି· ଏସ୍ . ଏଲିୟଟଙ୍କ The use of poetry and the use of criticism

୩—ଏହି ପତ୍ରିକାର ଡିସେମ୍ବର ୧୯୬୫ ନବମ ଓ ଦଶମ ସଂଖ୍ୟାରେ ଏହି ପ୍ରବନ୍ଧ ଲେଖକଙ୍କ 'ଆଧୁନିକ କବିତାରେ ପ୍ରତିରୂପ ଓ ଚିତ୍ରକଳ୍ପର ବ୍ୟବହାର' ପ୍ରବନ୍ଧଟି ଦ୍ରଷ୍ଟବ୍ୟ ।

# ମୋ ଦୃଷ୍ଟିରେ
# ସାଂପ୍ରତିକ ସାହିତ୍ୟ ଶୃଙ୍ଖଳାରେ
# ବୋଧତା ପ୍ରସଙ୍ଗ

ଅଧ୍ୟାପକ **ପ୍ରଫୁଲ୍ଲକୁମାର ତ୍ରିପାଠୀ**

ସାହିତ୍ୟିକ ହେଉଛନ୍ତି ନିଜ ସମୟର ଶ୍ରେଷ୍ଠତମ ସଚ୍ଚେତନ ବନ୍ଧୁ । ଏହି କାରଣରୁ ହିଁ ସେ 'ସାଧାରଣ ଲୋକ'ଙ୍କଠାରୁ କିଛି ହାତ ଉପରେ ବା କେଇ ପାଦ ଆଗରେ ଥାଏ । ଜଣେ ସାହିତ୍ୟିକର ମାନସ-ଭୂମି ଓ ଜଣେ ପାଠକର ମାନସ-ଭୂମି ମଧ୍ୟରେ ଯୁଗେ ଯୁଗେ ବ୍ୟବଧାନ ରହି ଆସିଛି । ଏହି ବ୍ୟବଧାନକୁ ସଙ୍କୋଚିତ କରିବାକୁ ହେଲେ ଏକରେ ପାଠକର ପ୍ରଜ୍ଞା ଉତ୍ତୋଳନ ଦରକାର, ତା ନ ହେଲେ ସାହିତ୍ୟିକର ପ୍ରଜ୍ଞାସ୍ଖଳନ ଦରକାର । ଯେଉଁ ସାହିତ୍ୟିକମାନେ ଇତର ପାଠକ ସହ ବୁଝାମଣା କରନ୍ତି, ସେମାନଙ୍କ ହାତରେ ସାହିତ୍ୟ ଏକ 'ଖାଉଟି ଦ୍ରବ୍ୟ' ପାଲଟିଯାଏ । ମୁଁ ସେ ପ୍ରକାର ସାହିତ୍ୟିକ ଓ ସେ ପ୍ରକାର ସାହିତ୍ୟର ପାଠକଙ୍କ ସମ୍ବନ୍ଧରେ ନୀରବ ରହିବି । ଦ୍ୱିତୀୟତଃ, ଯେଉଁମାନେ ଏକ ଲକ୍ଷ୍ୟ ସାଧନ (ଯଥା :—କୌଣସି ଧର୍ମ ବା ରାଜନୈତିକ ମତବାଦର ପ୍ରଚାର ; ଯୋଜନା, ସ୍ୱଳ୍ପସଞ୍ଚୟ, ସମବାୟ, ପରିବାର ନିୟୋଜନ ବା ସେହିଭଳି ବିଷୟର ପ୍ରଚାର) ନିମନ୍ତେ ସାହିତ୍ୟ 'ବୁଣନ୍ତି', ସେମାନଙ୍କ ସମ୍ବନ୍ଧରେ ମୁଁ ନୀରବ ରହିବି ।

ମାତ୍ର ଯେଉଁମାନେ ସାହିତ୍ୟ ସୃଷ୍ଟିକୁ ଏକ ସୂକ୍ଷ୍ମ-କଳା ଶିଳ୍ପ ରୂପେ ଗ୍ରହଣ କରି, ଜନ୍ମ-ବିବର୍ତ୍ତିତ ମାନବ ଚେତନାର ବାହକ ବା ପ୍ରକାଶ ମାଧ୍ୟମ ରୂପେ ଗ୍ରହଣ କରନ୍ତି, ସେମାନେ ମୋ ମତରେ ପ୍ରଜ୍ଞାବାଦୀ ଗମ୍ଭୀର ସାହିତ୍ୟିକ । ସବୁ ଦେଶରେ ଓ ସବୁ କାଳରେ ଏ ଧରଣର ସାହିତ୍ୟିକ-ମାନେ ସଂଖ୍ୟାଲଘୁ ପାଠକ ସଂପ୍ରଦାୟର ଗ୍ରାହକତା ଲାଭ କରିଥାନ୍ତି । ଏହି ସଂଖ୍ୟାଲଘୁ ପାଠକ ସଂପ୍ରଦାୟ ସହିତ ସ୍ୱୀକାର ଅବଦାନ ପ୍ରଦାନ ନିମନ୍ତେ

ଏକ ସଂପର୍କର ସେତୁ ନିର୍ମାଣ କରିବା ଦିଗରେ ଏମାନଙ୍କର ନିର୍ଦ୍ଦିଷ୍ଟ ଦାୟିତ୍ୱ ଅଛି । ଏହି ସେତୁର ନାମ ହିଁ ସାହିତ୍ୟ । ପାଠକର ମାନସ-ଭୂମି ଓ ଲେଖକର ମାନସ-ଭୂମି ମଧ୍ୟରେ ଥିବା ବ୍ୟବଧାନକୁ ଯୋଡ଼ିବା ଦିଗରେ ଏହା ଏକ ଉଦ୍ୟମ । ଏହି ସେତୁର ଦୈର୍ଘ୍ୟ ଉପରେ ସାହିତ୍ୟର ମାନ ନିର୍ଭରଶୀଳ । ଦୈର୍ଘ୍ୟ ଯେତିକି କମିବ, ସାହିତ୍ୟର ମାନ ମଧ୍ୟ ସେତିକି କମିବ ।

ସଂଖ୍ୟାଲଘୁ ସଚେତନ ପାଠକ ସଂପ୍ରଦାୟର ବାହାରେ ମଧ୍ୟ ଅନେକ ପାଠକ ଅଛନ୍ତି । ଲିପି ସହିତ ପରିଚିତ ରହିବା ପାଇଁ ଗୃଷୀ-ମୂଲିଆମାନେ ଏବେ ବି ଅବୋଲକରା କାହାଣୀ, ଦଶକୁମାର ଚରିତ, ଶୁଆଶାରୀ କାହାଣୀ, ଗୋପାଳଭଣ୍ଡ ରହସ୍ୟ, ଅମର ଜୁମର କଥା, ଇତ୍ୟାଦି ଧରଣର ଲେଖା ପଢ଼ୁଛନ୍ତି । ଆଉ ଥୋକେ ଶସ୍ତା ଡିଟେକ୍‌ଟିଭ ଉପନ୍ୟାସ ବା ଦେହଧର୍ମୀ କାହାଣୀମାଳା କିମ୍ବା "ବାଘ ସିରିଜ", "ମିରିଗ ସିରିଜ", "ହାତୀ ସିରିଜ", "ଘୋଡ଼ା ସିରିଜ" ବହିମାନ ପଢ଼ୁଛନ୍ତି । ଏଭଳି ବହିର ଗ୍ରାହକ-ପାଠକ ସଂଖ୍ୟା କିଛି ଊଣା ନୁହେଁ ।

ଏ ଦୁଇ ଶ୍ରେଣୀର ପାଠକମାନଙ୍କ ପ୍ରତି ସଚେତନ ସାହିତ୍ୟିକର କୌଣସି ଦାୟିତ୍ୱ ଅଛି ବୋଲି ମୋର ମନେ ହେଉ ନାହିଁ,—ଅବଶ୍ୟ ଚେଷ୍ଟା କଲେ ଯେ ଏମାନଙ୍କର ପରିବର୍ତ୍ତନ କରି ନ ହେବ, ସେ କଥା ନୁହେଁ ।

ଦୁର୍ବୋଧତା କେବଳ ସାହିତ୍ୟର ସମସ୍ୟା ନୁହେଁ, ଏହା ସକଳ ଜ୍ଞାନ-କ୍ଷେତ୍ରର ସମସ୍ୟା । ବିଜ୍ଞାନ, ମନସ୍ତତ୍ତ୍ୱ, ଦର୍ଶନ ଓ ଅନ୍ୟାନ୍ୟ ବିଦ୍ୟାର ଅନେକ ପ୍ରସଙ୍ଗ ସାହିତ୍ୟ ଅପେକ୍ଷା ଅଧିକ ଦୁର୍ବୋଧ । ଦୁର୍ବୋଧ ଆକାଶର ଆୟତନ ମାପିବା ପାଇଁ ଯଦି ପକ୍ଷୀର ଡେଣାରେ ଶକ୍ତି ନାହିଁ, ତା'ହେଲେ ସେଥିପାଇଁ ଆକାଶକୁ ଦାୟୀ କରାଯାଇ ନ ପାରେ ।

ଶରୀରରେ ରକ୍ତ କିପରି ସଂଚାଳିତ ହୁଏ ? ଜଳଶକ୍ତି କିଭଳି ପ୍ରକ୍ରିୟାରେ ବିଦ୍ୟୁତ୍‌ଶକ୍ତିରେ ରୂପାନ୍ତରିତ ହୁଏ ? କିମ୍ବା ମଟରଗାଡ଼ି କିପରି ଚାଲେ ?—ଏସବୁ କଥା ଅନେକ ଲୋକ ବୁଝିପାରନ୍ତି ନାହିଁ । ତା'ହେଲେ ଏମାନେ ଯଦି ସାହିତ୍ୟ ବୁଝି ନ ପାରିଲେ, ସେଥିରେ ଜଣେ ସଚେତନ ସାହିତ୍ୟିକ ବିବ୍ରତ ବା ବିଶେଷ ଚିନ୍ତିତ ହେବାର କାରଣଇ ନାହିଁ ।

କୌଣସି ବିଷୟକୁ ବୁଝିବା ନିମନ୍ତେ ଆଗ୍ରହ ଦରକାର । ଏ ଆଗ୍ରହର ଅଭାବ ହେଲେ ସାହିତ୍ୟ ତ ଦୂରର କଥା, ନିତିଦିନିଆ ସାଧାରଣ ବିଷୟ ମଧ୍ୟ ଦୁର୍ବୋଧ ହୋଇପଡ଼େ ।

ମୁଁ ନିଜେ ତାସ୍ ଖେଳ, କ୍ରିକେଟ୍ ଖେଳ, ଶେଆର ବଜାର ଇତ୍ୟାଦି ବିଷୟ ମୋଟେ ବୁଝିପାରେ ନାହିଁ—ଏବଂ ଏଥିପାଇଁ ମୁଁ ଲଜ୍ଜିତ ବା ଦୁଃଖିତ ନୁହେଁ ; କାରଣ ମୁଁ ଭଲଭାବରେ ଜାଣେ ଯେ ଏସବୁ ବିଷୟ ପ୍ରତି ମୋର ଆଗ୍ରହ ନାହିଁ ।

ମୁଁ ବୁଝିପାରିବି ବୋଲି ଏସବୁ ବିଷୟକୁ ସରଳତର କରାଯାଇ ପାରିବ ନାହିଁ । ଅନୁରୂପ ଭାବରେ ସାଧାରଣ ଲୋକେ ବୁଝିପାରିବେ ବୋଲି ସାହିତ୍ୟରେ ସ୍ତରଚ୍ୟୁତି ଘଟାଯାଇ ପାରିବ ନାହିଁ ।

ଦୁର୍ବୋଧତା ସବୁବେଳେ ସାମୟିକ । ଦଶ ବର୍ଷ ତଳେ ଯାହା ଦୁର୍ବୋଧ ବିବେଚିତ ହେଉଥିଲା ଏବେ ତାହା ବେଶ୍ ସୁବୋଧ, ଏବଂ ଏବେ ଯାହା ଦୁର୍ବୋଧ ବିବେଚିତ ହେଉଛି, ଦଶ ବର୍ଷ ପରେ ପରିଚୟର ଘନିଷ୍ଠତା ଯୋଗୁଁ ହେଉ ବା ରୁଚିର ପରିବର୍ତ୍ତନ କିମ୍ବା ଚେତନାର ବିକାଶ ଯୋଗୁଁ ହେଉ, ତାହା ନିଶ୍ଚୟ ସୁବୋଧ ବିବେଚିତ ହେବ । ସାହିତ୍ୟିକର ଦାନ-ଶକ୍ତି ଓ ପାଠକର ଗ୍ରହଣ-ଶକ୍ତି ମଧ୍ୟରେ ଏକ ପାରସ୍ପରିକ ଯୋଗସୂତ୍ର ସ୍ଥାପିତ ନ ହେଲେ ସାହିତ୍ୟ ଦୁର୍ବୋଧ ହୋଇ ରହିବ ହିଁ ରହିବ ।

ସାହିତ୍ୟର ଦୁର୍ବୋଧତା ବିଷୟଟିକୁ ଅଧିକ ବୋଧ କରିବା ସକାଶେ ସମାଲୋଚକ C. K. Steadଙ୍କ କଳ୍ପିତ ତ୍ରିଭୁଜଟିର ଆଶ୍ରୟ ନିଆଯାଇ ପାରେ । ଏହି ତ୍ରିଭୁଜର ଭୂମିସଂଲଗ୍ନ ଦୁଇଟି ବିନ୍ଦୁ ମଧ୍ୟରୁ ଗୋଟିଏ 'ଲେଖକ' ଓ ଅନ୍ୟଟି 'ପାଠକ' ଏବଂ ତୃତୀୟ ଅର୍ଥାତ୍ ଶୀର୍ଷ ବିନ୍ଦୁଟି ହେଲା 'ଅନୁଭୂତି' ବା କାବ୍ୟାଭିବ୍ୟକ୍ତି । ଲେଖକ ଓ ପାଠକ ସମ୍ବନ୍ଧଟି ସବଳ ହେବ ନା ଦୁର୍ବଳ ହେବ ତାହା ଅନେକାଂଶରେ ଅନୁଭୂତି ବା କାବ୍ୟାଭିବ୍ୟକ୍ତି ଉପରେ ନିର୍ଭରଶୀଳ । ତ୍ରିଭୁଜଟି ଯଦି ସମବାହୁ ବିଶିଷ୍ଟ ହୁଏ ତାହାହେଲେ ଲେଖକର କାବ୍ୟାଭିବ୍ୟକ୍ତିକୁ ପାଠକ ସହଜରେ ବୁଝି-ପାରିବ । କାରଣ ଏ କ୍ଷେତ୍ରରେ ପରସ୍ପରଠାରୁ ପରସ୍ପରର ବ୍ୟବଧାନ ସବୁବେଳେ ସମାନ ।

ଏହା ଏକ ଆଦର୍ଶ କଳ୍ପନା । କାର୍ଯ୍ୟତଃ ଲେଖକ, ପାଠକ ଓ କାବ୍ୟାଭିବ୍ୟକ୍ତି ମଧ୍ୟରେ ଏ ସମନ୍ୱୟ କ୍ୱଚିତ ଦେଖିବାକୁ ମିଳିଥାଏ ।

ନିତିଦିନିଆ ସାଧାରଣ ଅନୁଭୂତିକୁ ଲିପିବଦ୍ଧ କରିନେବା ସାହିତ୍ୟିକର ଦାୟିତ୍ୱ ନୁହେଁ । ତାହା ସାମ୍ବାଦିକଙ୍କର କାର୍ଯ୍ୟ । ଯୁଗସ୍ରଷ୍ଟାଙ୍କୁ ଭିତ୍ତି କରି ସଚେତନ ସାହିତ୍ୟିକ ସବୁବେଳେ ସତ୍ୟର ଅନୁସାରୀ ହୋଇଥାଏ । ଏହି କାରଣରୁ ଏକ ଦୃଶ୍ୟମାନ ବାହ୍ୟ ବାସ୍ତବତା ଭେଦ କରି ସେ ଏକ ଭିନ୍ନ ବାସ୍ତବତାର ସମ୍ମୁଖୀନ ହୁଏ···ବାରମ୍ବାର । ଫଳତଃ ଜୀବନରେ ଅନୁଭୂତ ବାସ୍ତବତା ଓ ସାହିତ୍ୟରେ ବର୍ଣ୍ଣିତ ବାସ୍ତବତା ମଧ୍ୟରେ ଫରକ ରହିଯାଏ । କାରଣ ସାହିତ୍ୟିକ ଯାହା ଅନୁଭବ କରେ ତହିଁରୁ ଅନେକ ବଛାବଛି ଓ କାଟଛାଣ୍ଟ କଲା ପରେ ହିଁ ସାହିତ୍ୟ ସୃଷ୍ଟି କରିଥାଏ ।

ଏହି ଫରକ ବା ବ୍ୟବଧାନ ଯୋଗୁଁ ହିଁ ସାହିତ୍ୟରେ ଏକ ଶୃଙ୍ଖଳା ଓ ସଂଯମ ରକ୍ଷା କରିହୁଏ । ସଂଯମ ମାନେ ହିଁ ସଭ୍ୟତା । ଏଇ ପୃଥିବୀରେ ମଣିଷ ସମାଜକୁ ଅଧିକ ସଭ୍ୟ ଓ ସଂସ୍କୃତ କରିବା ଦିଗରେ ଓ ବ୍ୟକ୍ତିକୁ ପଶୁତ୍ୱ-ସ୍ତରରୁ ଊର୍ଦ୍ଧ୍ୱରୁ ଊର୍ଦ୍ଧ୍ୱକୁ ନେଇଯିବା ଦିଗରେ ସାହିତ୍ୟିକର ଦାୟିତ୍ୱ ଗୁରୁତ୍ୱପୂର୍ଣ୍ଣ । ପ୍ରତ୍ୟେକ ସଚେତନ ସାହିତ୍ୟିକ ବିଶ୍ୱାସ କରନ୍ତି ଯେ, ମନୁଷ୍ୟ ହିଁ ସୃଷ୍ଟିର ଶ୍ରେଷ୍ଠ ଜୀବ ; ସବୁ ମଣିଷ ସମାନ ଓ ଅଖଣ୍ଡ ସ୍ୱାଧୀନତାର ଅଧିକାରୀ । ନିଜ ବିଶ୍ୱାସକୁ ସାହିତ୍ୟ ରୂପ ଦେଇ ପାଠକ ମନରେ ଏହି ପ୍ରତ୍ୟୟ ସୃଷ୍ଟି କରିବା ହିଁ ସାହିତ୍ୟିକର ପ୍ରଥମ ଓ ଶ୍ରେଷ୍ଠ କର୍ତ୍ତବ୍ୟ ।

ଏହି ସ୍ୱ-ଆରୋପିତ ଦାୟିତ୍ୱ ଓ କର୍ତ୍ତବ୍ୟ ନିର୍ବାହ କଲାବେଳେ ଜଣେ ଆତ୍ମ-ସଚେତନ ସାହିତ୍ୟିକ ସାଧାରଣ ପାଠକ ସହ କାହିଁକି ବୁଝାମଣା କରିବ ? କଣ ଟଙ୍କା ପଇସା, ପଦବୀ ପୁରସ୍କାର ମିଳିବ ବୋଲି ନା କରତାଳି, କର୍ପୂରର ମାଳ, ସ୍ୱୀକୃତି ଓ ବାହାବା ମିଳିବ ବୋଲି !

କୌଣସି ଆତ୍ମସଚେତନ ସାହିତ୍ୟିକ ପରିସ୍ଥିତିର ଚାପ, ପାଠକର ଦାବୀ, ଅର୍ଥର ଲୋଭ କିମ୍ବା ପଦବୀର ମୋହ ଯୋଗୁଁ ସାହିତ୍ୟ ସୃଷ୍ଟି କରେ ନାହିଁ । ସେ ଏ ବିଷୟରେ ବେଶ୍ ସଚେତନ ଯେ ତାର ଅକ୍ଷର ମାନେ ଅ-କ୍ଷର । ଏଣୁ ଯାବତୀୟ ପ୍ରତିକୂଳ ପ୍ରଭାବକୁ ସେ ଉପେକ୍ଷା କରିପାରେ ।

ଉଚ୍ଚାଙ୍ଗ ସାହିତ୍ୟ ଦୁର୍ବୋଧ୍ୟ ହୋଇପାରେ, ମାତ୍ର ଦୁର୍ବୋଧ୍ୟ ଲେଖା ହୋଇଗଲେ ଉଚ୍ଚାଙ୍ଗ ସାହିତ୍ୟ—ଏ କଥା ସତ୍ୟ ନୁହେଁ । ସାହିତ୍ୟ ଉଚ୍ଚାଙ୍ଗ ହେବା ନିମନ୍ତେ ତହିଁରେ ଦୁର୍ବୋଧ୍ୟତା (ଯାହା ସର୍ବଦା ଆପେକ୍ଷିକ ଓ

ସାମୟିକ) ରହିବା ଜରୁରୀ ନୁହେଁ । କେବଳ ଯଶଲୋଭୀ କପଟ କରିବା ହିଁ ଜାଣି ବୁଝି ନିଜକୁ ଗ୍ରୁପ୍ସ୍‌ଭିନ୍ନ ରଖିଥାଆନ୍ତି । ମୁଁ ଏ ଧରଣର କପଟ-କବି-ମାନଙ୍କ ବିଷୟରେ ମଧ୍ୟ ନୀରବ ରହିବି ।

ସଂପ୍ରତି ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଲେଖକ ଓ ପାଠକ ମଧ୍ୟରେ ସୁସମ୍ପର୍କ ନାହିଁ ବୋଲି ପ୍ରଶ୍ନ ଉଠିଛି ।

୧୯୬୦ରେ ମଧ୍ୟ କେତେକେ କହୁଥିଲେ, ଲେଖକ-ପାଠକ ମଧ୍ୟରେ ସୁସଂପର୍କ ରହୁନାହିଁ ।

ତା ପୂର୍ବରୁ ମଧ୍ୟ ୧୯୫୦ ବା ୧୯୪୦ ବା ୧୯୩୦ରେ ମଧ୍ୟ ଅନୁରୂପ ପ୍ରଶ୍ନ ଉଠିଥିବ । ସବୁ ଯୁଗରେ ଲୋକେ ନିଜ ସମୟକୁ ହିଁ 'କଷ୍ଟ' ବୋଲି କହିଥାନ୍ତି...ଏହା ଆମର ଅଭ୍ୟାସରେ ପଡ଼ିଗଲାଣି ।

ମୁଁ ଯାହା ଜାଣେ ଏହା ଏକ କାଳ୍ପନିକ ସମସ୍ୟା ଏବଂ ଏହାର ଏକ କାଳ୍ପନିକ ସମାଧାନ କରି କିଛି ଲାଭ ନାହିଁ ।

ଓଡ଼ିଆ ସାହିତ୍ୟର ସାଂପ୍ରତିକ ଅବସ୍ଥା ଦେଖି ମୁଁ ଖୁବ୍ ସନ୍ତୁଷ୍ଟ; ଏହାର ଭବିଷ୍ୟତ ବିଷୟରେ ମୁଁ ଖୁବ୍ ଆଶାବାନ ।

ମୋର କୌଣସି ଆପତ୍ତି, ଅଭିଯୋଗ, ସମସ୍ୟା, ଅଭାବ ଆଦି ନାହିଁ ; ଅନ୍ତତଃ ସାହିତ୍ୟ କ୍ଷେତ୍ରରେ ।

ମୋର ଶ୍ରଦ୍ଧାଳୁ ପାଠକମାନଙ୍କ ନିକଟରେ ମୁଁ କୃତଜ୍ଞ ।

---

# ମୋ ଦୃଷ୍ଟିରେ ସାଂପ୍ରତିକ କବିତାର : ସମସ୍ୟା ଓ ସମ୍ଭାବନା

ଜେନାମଣି ଲକ୍ଷ୍ମୀକାନ୍ତ

[ କ ]

**ପ୍ରାରମ୍ଭିକୀ**

॥ ନାନା ମୁନିଙ୍କର ନାନା ମତ ॥ ସାଂପ୍ରତିକ କବିତା ବା ଆଧୁନିକ କବିତାର ଅର୍ଥ ଓ ସଂଜ୍ଞା ଯେମିତି ନାନା ମୁନି ଯେଉଁ ନାନା ମତ ପୋଷଣ କରୁଛନ୍ତି, ତାହା ଭିତରୁ ଏକ ସଂକ୍ଷିପ୍ତ, ସହଜ ଓ ସରଳ ସଂଜ୍ଞା ନିରୂପଣ ପ୍ରକୃତରେ ଆୟାସସାଧ୍ୟ । କାରଣ ଗତ ଓ ପ୍ରକୃତ ଯେମିତି ଦଶ ବର୍ଷ ପୂର୍ବେ ଆମେ ଯାହାକୁ ତଥାକଥିତ 'ଆଧୁନିକ-କବିତା' କହି ନାକ ଟେକୁ-ଥିଲେ, ତାହା ଏବେ ପାରମ୍ପରିକ କବିତା ରୂପେ ସଂପୂର୍ଣ୍ଣ ଭାବେ ଗୃହୀତ ନ ହେଲେ ମଧ୍ୟ କ୍ରମାଗତ ଯେ ସ୍ୱୀକୃତ ଓ ସମାଦୃତ ଲାଭ କରି ଲାଗିଛି, ଏଥିରେ ଦ୍ୱିମତ ନ ଥାଇ ପାରେ । ଅପର ଦିଗରୁ ଦେଖିଲେ ସେହିପରି ଆଜି ଆମେ ଯାହାକୁ 'ପ୍ରୟୋଗ-ବାଦ-କବିତା' କହୁଛେ, ତାହା କାଳକ୍ରମେ ପୁରାତନ ବୋଲି ପରିଗଣିତ ହୋଇପାରେ, ଯେହେତୁ ସମୟକୁ ସାକ୍ଷୀ ରଖି ପରି-ବର୍ତ୍ତନଶୀଳ ମାନସ ସହିତ ବାସ୍ତବତାର ସ୍ୱରୂପ ଉଦ୍‌ଘାଟନ କରିବା କମ୍ବା ବାକ୍‌ଶକ୍ତି ସଙ୍ଗେ କାବ୍ୟିକ ଶକ୍ତିର ସମନ୍ୱୟ ଘଟାଇବା ଏବଂ ନୂତନ ଜୀବନର ପ୍ରତିନିଧିତ୍ୱ କରିବା ହିଁ ଆଧୁନିକ କବିତାର ମୂଳମନ୍ତ୍ର ।

ଏବର କବିତାରେ ସାଂପ୍ରତିକ ଜୀବନରେ ଗ୍ଲାନିର ଚିହ୍ନ, କାଳର ଅବକ୍ଷୟୀ ସ୍ୱରୂପ, ଅସ୍ତିତ୍ୱକୁ ବିପନ୍ନ କଲା ଭଳି ଉପଲବ୍‌ଧିର ଜିଜ୍ଞାସା । ଯାହା ଏକ ଅସଂଲଗ୍ନ ସ୍ଥିତି ବିନ୍ଦୁ ନୁହେଁ, ବରଂ ନିରବଚ୍ଛିନ୍ନ ଧାରାର କ୍ରମ-ପରିଣାମ । ଏବଂବିଧ ସାଂପ୍ରତିକ କବିତାର ତାତ୍ପର୍ଯ୍ୟ ତଥା ଗତ ଓ ପ୍ରକୃତ

କଥା କହୁ କହୁ କେବେ ଆଧୁନିକ କବିତାର ସୁପରିଚିତ ଉଦ୍‌ଗାତା ନୋବେଲ ବିଜେତା ସ୍ୱର୍ଗତ କବି ଥୋମାସ ଷ୍ଟର୍ଣ୍ଣ ଇଲିଏଟ୍‌ଙ୍କ ଏଇ ଅମର ପଂକ୍ତିଗୁଡ଼ିକ ଆଲୋକ ଆଲୋଚନାର ସ୍ମୃତିକୁ ଏବେ ବି ମଧ୍ୟ ଆସେ—

> "Poetry is ofcourse not to be defined by its uses......It may effect revolutions in sensibility such as are periodically needed; may help to break up the conventional modes of perception and valuation which are perpetually forming, and make plople see the world afresh, or some new part of it. It may make us from time to time a little more aware of the deeper, unnamed feeling which form the substratum of our being, to which we rarely penetrate; for our lives are mostly a constant evasion of ourselves and an evasion of the viriable and sensible world. But to say all this only to say what you know already, if you have felt poetry and thought about your feelings."
>
> ( *T.S. Eliot* : The use of Poetry)

[ ଖ ]

**କବିତାର ଲକ୍ଷଣ ଓ ଧର୍ମ**

ଆଧୁନିକ କବିତାର ସ୍ରଷ୍ଟା ତା'ର ସୃଷ୍ଟିରେ ଗଦ୍ୟଛନ୍ଦ ଓ ମଣ୍ଡଳୀକୃତ କାବ୍ୟ ରୂପର ପ୍ରଯୋଜନାରେ ପ୍ରୟାସୀ । ଆଙ୍ଗିକ, ଆଭିମୁଖ୍ୟ, ସିମ୍ବଲ୍, ମିଥ୍, ଇମେଜ୍, ଫିଗ୍ୟୁରେଶନ୍, ଇନଭୋକେଶନ୍ ତା'ର ଏକର କାବ୍ୟ-କୃତିର ଆଧାର—ଯାହା ପଛରେ ବୈଷୟିକ କ୍ରିୟାପ୍ରକ୍ରିୟା, ବିଜ୍ଞାନ ଓ ମନୋବିଜ୍ଞାନର ଚିନ୍ତା ବିଚ୍ଛେଦକଳସ୍ୱର ପ୍ରସାରଣର ଏକ ପ୍ରଚ୍ଛନ୍ନ ପ୍ରତିକ୍ରିୟା ନିହିତ । ଯେଉଁ କବିତା ଅନ୍ତତଃ ବିଷୟବସ୍ତୁ ଦୃଷ୍ଟିରୁ ମଣିଷର ଖୁବ୍ ଆପଣାର ଅର୍ଥାତ୍ ପ୍ରାଚ୍ୟ ପାଶ୍ଚାତ୍ୟ, ଭାବ, ଅଭାବ, ବୁଦ୍ଧିବିଭ୍ରମ ଓ ବିକାଶର 'ରସାୟନିକ-ପ୍ରୟୋଗ-ଶାଳା'ରେ ସେଠାରେ ଭାବର

ତରଙ୍ଗ ଓ ଧ୍ୱନିର ପ୍ରବାହକୁ ନେଇ କବିତା ଉତ୍ପାଦନରେ କବି ଯେମିତି କି ପ୍ରଯତ୍ନଶୀଳ ! କବିତା ନିଜେ ହିଁ କବିତାର ଲକ୍ଷଣ ଓ ଧର୍ମ । କବିତାର ଆକୃତି ଖୁବ୍ ସଙ୍କୁଚିତ; ସ୍ରଷ୍ଟା ନିଜଠୁଁ ବାହାର ସୃଷ୍ଟିରେ ନିବିଷ୍ଟ ।

[ ଗ ]

କବିତାର ଚତୁଃସମ ଚତୁର୍ବର୍ଗ

ପ୍ରକୃତରେ କବିତାର ସର୍ବପ୍ରଧାନ ବୃତ୍ତି ହେଉଛି ବିବୃତି ଓ ଏହାର ଚତୁଃସମ ଯଥା (ଚନ୍ଦନ, ଅଗୁରୁ, କସ୍ତୁରୀ, କୁଙ୍କୁମ) ଓ ଚତୁର୍ବର୍ଗ ଯଥାକ୍ରମେ (ଧର୍ମ, ଅର୍ଥ, କାମ, ମୋକ୍ଷ) ହେଉଛି ଅଭିଜ୍ଞାନ (sense), ଅନୁଭବ (feeling) ସ୍ୱର (tone) ଏବଂ ଜିଜ୍ଞାସା (Intention) ଓ ଅନୁଭୂତି ସଞ୍ଚାର (Transmission of Understanding) ହିଁ ସଫଳ କାବ୍ୟ-ଜିଜ୍ଞାସାର ସ୍ୱରବର୍ଣ୍ଣ ଓ ବ୍ୟଞ୍ଜନବର୍ଣ୍ଣ । କବି ପ୍ରାଣର ମାର୍ମିକ ପ୍ରତିଧ୍ୱନି ଯାହା ଭବିଷ୍ୟତ୍ ଅତୀତ ଓ ବର୍ତ୍ତମାନର ଅନ୍ତମାନସର ଏକ ସଜ୍ଞାନ ବିନ୍ଦୁକୁ ନେଇଯାଏ । ସାଂପ୍ରତିକ କବିତା ବା ତଥାକଥିତ ଆଧୁନିକ କବିତାର ବୌଦ୍ଧିକ ମୂଲ୍ୟାଙ୍କନର ଅପରିହାର୍ଯ୍ୟ ପଞ୍ଚେନ୍ଦ୍ରିୟ ହେଉଛି :—

(୧) ସଂକ୍ଷେପଣ (Condensation)
(୨) ସନ୍ନିଧ୍ୟ ସ୍ଥିତି (Juxta Position)
(୩) ସ୍ୱତଃଚଳନ (Automotion)
(୪) ସଂବେଦାତ୍ମକ ପାରମ୍ପର୍ଯ୍ୟ (Emotional sequence)
(୫) ମୁକ୍ତ ସାହଚର୍ଯ୍ୟ (Free Association)

[ ଘ ]

ଖଜୁରୀ ଗଛର କଥା କାହାଣୀ

ଏବେ ଏବେ ଆଧୁନିକ କବିତାକୁ ନାକ ଟେକି କୁହାଯାଉଛି ଯେ ଏହା ସିଡ଼ି ଢାଞ୍ଚରେ କବିତା, ଇଲାଷ୍ଟିକ୍ ଫିତା, ଧୋବା ଖାତାର ହିସାବ, କାଠକଠିଙ୍ଗା ପାଇଁ ସୃଷ୍ଟି ଏବଂ କେହି କେହି ମଧ୍ୟ ଅଭିଯୋଗ ଆକ୍ଷେପ କରନ୍ତି "ଯେ ନିଜେ ଲେଖୁଛି, ସେ ମଧ୍ୟ କବିତାକୁ ବୁଝିବାକୁ

ଅକ୍ଷମ ।" ଏଠାରେ ପରିଷ୍କାର ଭାବେ ମନେରଖିବା ଉଚିତ ଯେ କବିତାର ମୌଳିକ ଧର୍ମ ହେଉଛି ସଂକ୍ରମଣ-ଶୀଳତା ଓ ବ୍ୟାପ୍ତି । ତା' ଛଡ଼ା ସେ ତ ଅନୁଭୂତି ଓ ଅନୁଭବର ଜୀବନର ପ୍ରତ୍ୟୟ । ଜୀବନଧର୍ମୀ, ପାରି-ପାର୍ଶ୍ୱିକ ଅବସ୍ଥାରୁ ତା'ର ଜନ୍ମ, ତାରି ଭିତରେ ବାସ୍ତବତା ଓ ତା'ର ପରିବେଶ ଏବଂ ପରିମିତି । ଗୋଧୂଳିର ଧୂସର କାକଳି ଓ ଫୁଲର ଅସ୍ପଷ୍ଟ ସୁରଭି ନେଇ ମଧ୍ୟ ସେ ବଞ୍ଚିଛି ଓ ବଞ୍ଚି ରହିବାକୁ ଚାହେଁ ଏହି ଧୂସର ଶୂନ୍ୟତା ଭିତରେ 'କୋମଳ ଗାନ୍ଧାର'ର ମାଦକତା ନେଇ ।

**କଙ୍କଡ଼ାକୁ ଗୋଳପାଣି ସୁହାଏ**

ଆଧୁନିକ କବିତାର ଏବଂବିଧ ଦୁର୍ବୋଧତା ଏବଂ ବୌଦ୍ଧିକ ଅଷ୍ଟାଙ୍ଗ ଯୋଗ ସାଧନା ଅନଭ୍ୟସ୍ତ ଓ ରକ୍ଷଣଶୀଳ ପାଠକର ଅରୁଚିକର ହେବା ସଂପୂର୍ଣ୍ଣ ଅସ୍ୱାଭାବିକ ନୁହେଁ । ଯାହାର କାରଣ ଓ ନିରାକରଣର ପନ୍ଥା ଅନେକ ଓ ଏକଭିନ୍ନ । ଶବ୍ଦକାଠିନ୍ୟ ନ ଥିଲେ ହେଁ ଭାବକାଠିନ୍ୟ ହେତୁ ବେଳେ ବେଳେ କବିତା ଏତେ ଅପାଂକ୍ତେୟ ହୋଇ ଯାଉଛି ଯେ ତହିଁରୁ କିଛି ରସ ଆସ୍ୱାଦନ କରିବା ସାଧାରଣ ପାଠକ ତ ଦୂରର କଥା, କାବ୍ୟ-ମୋଦୀ ଜଣେ ବୌଦ୍ଧିକ ପାଠକ ପକ୍ଷରେ ମଧ୍ୟ ଦୁରୁହ ପ୍ରଶ୍ନିତ ହେଉଅଛି । ଗୋଳପାଣି ଓ କଙ୍କଡ଼ାର ସଂପର୍କ ଆଧୁନିକ କବିତାର ପାଠକ ଓ ସ୍ରଷ୍ଟା ମଧ୍ୟରେ ଏ ପର୍ଯ୍ୟନ୍ତ ଆଶାନୁରୂପ ଭାବେ ସ୍ଥାପିତ ହୋଇ ନାହିଁ; ଏହା ନିଃସନ୍ଦେହ ।

[ ଡ ]

**କମଳ ଯାଉଛି ବାଳ—**

ତଥାକଥିତ ଆଧୁନିକ କବିତାର ଦୋଷଗୁଣ ଆଦିକୁ ଅନୁଶୀଳନ କଲାବେଳେ ଯେଉଁ ଦିଗଗୁଡ଼ିକ ଜଣେ ସମାଲୋଚକର ଦୃଷ୍ଟିପଥାରୂଢ଼ ହୁଏ, ସେଗୁଡ଼ିକ ହେଉଅଛି ନିମ୍ନୋକ୍ତ ମତେ ।

(୧) ଏହା ଏକାନ୍ତ ଅପାଂକ୍ତେୟ ।
(୨) ଶୈଳୀରେ ଶୃଙ୍ଖଳା ନାହିଁ ।
(୩) ପାଶ୍ଚାତ୍ୟ କବିତାର ଏହା ଅନ୍ଧାନୁକରଣ ।
(୪) ଏହାର ପାଠକ, ପ୍ରକାଶକ ବା ପୃଷ୍ଠପୋଷକ ନାହାନ୍ତି ।
(୫) ଉପଯୁକ୍ତ ସମାଲୋଚନା ମଧ୍ୟ ନାହିଁ ।

[ ଚ ]

ଏ ବର୍ଷ ସେଗୀ ଆର ବର୍ଷକୁ ବଇଦ

ଆଧୁନିକ କବିତାର ସେହି ସ୍ମରଣୀୟ ବର୍ଷ ୧୯୬୦ରୁ ଆନ୍ତ-ର୍ଜାତିକ କ୍ଷେତ୍ରରେ ଅଦ୍ୟାବଧି ବହୁ କାବ୍ୟ କୃତିର ଉଦ୍‌ଘୋଷଣା ଓ ସ୍ଫୁରଣ ହେବା ପରେ ଭାରତୀୟ ସାଂପ୍ରତିକ କବିତାରେ ସେ ସବୁର ପ୍ରତିସରଣ ଓ ପ୍ରତିଧ୍ୱନି ପ୍ରତିଶ୍ରୁତ ଓ ପ୍ରତିଧ୍ୱନିତ ହେବା ସଙ୍ଗେ ସଙ୍ଗେ ମନ୍ଥର ଗତିରେ ହେଲେ ମଧ୍ୟ କ୍ରମାଗତ ଭାବେ ପରମ୍ପରାଭୁକ୍ତ ହେବାରେ ଲାଗିଛି । ଏହା ସମୟକୁ ଭରା ଦେଇ ବଞ୍ଚିଛି, ବଞ୍ଚିବ ଏବଂ ପଛକୁ ନ ଫେରି ଆତ୍ମଜିଜ୍ଞାସାରେ ଆଗେଇ ଚାଲିବ । ଯେହେତୁ ଲକ୍ଷ୍ୟ ତା'ର ଉତ୍ତରଣରେ ।

[ ଛ ]

କାଲ ଠାର କାଲ ମା ଜାଣେ

ଆଜ ଆମର ଜ୍ଞାନର ସୀମା ସଂପ୍ରସାରିତ ଏବଂ ଆମର ସବୁ କିଛି କଳନା ଓ କଳ୍ପନାକୁ ଖୋଲାଖୋଲି ଭାବେ ବ୍ୟକ୍ତ କରିବାରେ ଆମେ ଆଗ ଭଳି ସହଜ ଓ ସମର୍ଥ ନୋହୁଁ । ଏଣୁ ଚିନ୍ତା ଓ କଳ୍ପନାର ରୂପାୟନ ଏବେ ଜଟିଳ ଓ ଦୁର୍ବୋଧ ହୋଇ ପଡ଼ୁଛି । ସମୟ ଶୋଇଛି । ମଣିଷ ଆଗେଇ ଚାଲିଛି । 'ସମୟ-ଜ୍ଞାନ' କାଳକ୍ରମେ ଖୁବ୍ ହ୍ରାସ ଓ ସଂକୁଚିତ ହୋଇଛି । ଚିନ୍ତାର କ୍ୱାଲିଟି ଓ କ୍ୱାଣ୍ଟିଟି ବଦଳି ଯାଇଛି । ଏହି ପରି-ପ୍ରେକ୍ଷୀରେ ଏକ ସ୍ଥିତିଶୀଳତା ପରେ ସ୍ୱାତନ୍ତ୍ର୍ୟୋତ୍ତର କବିତା ଗତିଶୀଳ ହୋଇଛି । ଫଳରେ ବହୁ ପରୀକ୍ଷା-ନିରୀକ୍ଷା ଭିତର ଦେଇ କବିତା ମଧ୍ୟ ବେଳେ ବେଳେ ଆକ୍ରମିତ ହେଉଛି । ଏହି ଗତିଶୀଳତା କ୍ରାନ୍ତଦର୍ଶିତାର ଲକ୍ଷଣ । ଏହି ଗତି ଦୁର୍ବାର, ପ୍ରତିରୋଧ କରିବା ପରିବର୍ତ୍ତେ ଆଧୁନିକ କବିତାକୁ ବରଂ ସହୃଦୟତାର ସହିତ ଗ୍ରହଣ କରିଯିବା ଉଚିତ । ଏକ ଦିଗରୁ ଏହି ପରିପ୍ରେକ୍ଷୀରେ ମାନସିକ ପ୍ରସ୍ତୁତି ପାଇଁ ସମୟ ଓ ମସ୍ତିଷ୍କର କିଛିଟା ସହନଶୀଳତା ଲୋଡ଼ା ଏବଂ ଅପର ଦିଗରେ କବିର ମାନସିକ ଚେତନା ଓ ପାଠକର ପ୍ରସ୍ତୁତ ଉଦ୍ଦୀପନା (Stoc kresponse)ର ମଧ୍ୟ ସୁ-ସମ-ସମନ୍ୱୟ ରହିବା ଉଚିତ ।

[ ଜ ]

ଠିକ ଘରର ଠିକଣା ଦବେଇ

କବିତାର ଦୁର୍ବୋଧ୍ୟତା ସଂପର୍କରେ ଚେତନା ଓ ସାଂପ୍ରତିକ ଜନ-ଜୀବନର ଯନ୍ତ୍ରଣା ଓ ପ୍ରଚ୍ଛନ୍ନ ପ୍ରଚ୍ଛାୟାବାଦର ଆଳ ବା ବାହାନା କଆଯାଉ ଥିଲେ ହେଁ ; ବହୁ କ୍ଷେତ୍ରରେ ଚିନ୍ତା ଓ ପ୍ରକାଶର 'ସଂଯୋଜକ-ଚେନାଲର' ସଫେଇରେ କାବ୍ୟକାରଙ୍କର ଅଣ-ସଫଳତା ହେତୁ ତାଙ୍କର ସଂପୃକ୍ତ ଚିନ୍ତା ରାଜ୍ୟରେ ଦୁର୍ବୋଧ୍ୟତା ଜମି ରହୁଛି; ଫଳରେ ଭାବ ପରି-ପ୍ରକାଶ ଅପାଂକ୍ତେୟ ହୋଇ ପଡ଼ୁଛି । ଏହା ଅନପେକ୍ଷିତ ଓ ଅବାଞ୍ଛନୀୟ ମଧ୍ୟ । ଏଥିପାଇଁ ଜଣେ ସ୍ରଷ୍ଟାର ଆତ୍ମ-ସଚେତନତାର ଓ ସଂଶୋଧନକୁ ଉପେକ୍ଷା କରିବା କୁତ୍ରାପି ସମୀଚୀନ ନୁହେଁ । ଏଠାରେ ସ୍ପଷ୍ଟୀକରଣ ଦିଆଯାଇ ପାରେ ଯେ ବହୁ କ୍ଷେତ୍ରରେ ଶବ୍ଦକାଠିନ୍ୟ ନ ଥିଲେ ହେଁ ଭାବ କାଠିନ୍ୟ ହେତୁ କବିତା ଦୁର୍ବୋଧ୍ୟତାର ଆକୃତି ବା ଆଶ୍ରୟ ନେଉଅଛି । ଗୋଟିଏ କଥା କହିଲେ ବୋଧହୁଏ ପରିଷ୍କାର ହେବ ଯେ ଗାଁ ପରିମଳ ଧୋବାକୁଠରୁ ଜଣାପଡ଼େ । ଯେହେତୁ ଫିଲୋସଫି ସ୍ୱଭାବତଃ ଦୁର୍ବୋଧ-ଧର୍ମୀ ନୁହେଁ, ତେଣୁ 'ଫିଲୋସଫି' 'ବାଦ' ବୌଦ୍ଧିକ ଅଷ୍ଟାଙ୍ଗ ଯୋଗ, ସାଧନା' ନାଁରେ ନିଜର କବିତାର ବକ୍ତବ୍ୟକୁ ବୁଝିଲା ଭଳି କିନ୍ତୁଟା ସରଳ ଓ ପ୍ରାଞ୍ଜଳ ଭାବେ ବ୍ୟକ୍ତ ନ କରି ପାରି ଦୁର୍ବୋଧ କରିବାର ସ୍ୱାଧିକାର କୌଣସି ଉଦାର ସ୍ରଷ୍ଟାର ମଧ୍ୟ ନାହିଁ ।

[ ଝ ]

ଗୋଦାବରୀ ଟେଲ ତଳକୁ ଅନା

ପାରମ୍ପରିକ କବିତା ବିଷୟବସ୍ତୁ ଦୃଷ୍ଟିରୁ ଯଦି ଚ ମଣିଷର ଖୁବ୍ ଆପଣାର ଓ ଜୀବନଧର୍ମୀ ; ତା ସତ୍ତ୍ୱେ କାବ୍ୟକୃତିରେ କାବ୍ୟିକ ଅପରିହାର୍ଯ୍ୟତାର ଅଭାବ ରହିବା ଫଳରେ ଅର୍ଥାତ୍ ଭାବ ପରିବାହକ ବା ଆକୃତି (Form) ଓ କବିତାର ପରିବହନ ସାମଗ୍ରୀ ବା କବିତାର୍ଥ (Inner meaning) ଭିତରେ ସଂହତିର ଅନୁରୂପ ଅଭାବ ରହିବା ଯୋଗୁଁ ସଚ୍ଚିବାବୁଙ୍କ ଭାଷାରେ—

"ମାଛ ତାର ରୂପ ଭେକ ହେଉନ ତ ଚିହ୍ନି,
ପାଣି ମିଶା ଦୁଧ ଅବା ଦୁଧ ମିଶା ପାଣି ।

ଶୁଭେ ଖାଲି ଝିଆଲର ଚେଟ୍ରା ମେଟ୍ରା ଗତ,
ଯେଉଁପରି ଆସ୍ପନ୍ତି ବେଂହେଡ଼ା ବା ବାଲ୍ଲ ।

(ଚେତନାର ବିଚ୍ଛେଦ ଅନ୍ତେ—ସଚି ରାଉତରାୟ)

[ ଙ ]

ନ ଦେଖିଲି ଓଉ ଛ' ଫଣ୍ଡା

କେତେକ କ୍ଷେତ୍ରରେ ଟେକ୍‌ନିକ୍ ନାଆଁରେ ମଧ୍ୟ ଚମତ୍କାରିତା ଦେଖାଇବାର ଅବାଞ୍ଛିତ ପ୍ରୟାସ ଆଖିକୁ ଆସୁଛି । ଏଠାରେ ସ୍ମରଣ ରଖିବାର କଥା, କବିତା ହିଁ କବିତା । ଶୈଳୀଗତ ଏକ ଫେଜ୍ ଏବଂ ଅନୁଭୂତିର ପକ୍ୱତା ଓ ବିଶଦତା ଉପରେ ହିଁ ପ୍ରଯୋଜିତ ରୂପକଳ୍ପର ସୌନ୍ଦର୍ଯ୍ୟ ଓ ସଫଳତା ମୁଖ୍ୟତଃ ନିର୍ଭର କରେ । ଭିତରେ କିଛି ନ ଥାଇ କଖାରୁ ଫୁଲର ରୂପାନ୍ତର ନେଇ ଲାଭ କିଛି ବି ନାହିଁ—

[ ଚ ]

ବିଲୁଆକୁ ବିଣ୍ଟଭୂଆ ସାକ୍ଷୀ

ଅବଶ୍ୟ ଏବେର ପୃଥିବୀ ଖୁବ୍ ସଙ୍କୁଚିତ ହେବା ଯୋଗୁଁ ବିଭିନ୍ନ ପ୍ରାନ୍ତର ସ୍ରଷ୍ଟାଙ୍କ ଭିତରେ ଭାବାତ୍ମକ ଏକତା ବଢ଼ିଛି । ଫଳରେ ସାଂପ୍ରତିକ ଭାରତୀୟ କବିତାରେ ସାହିତ୍ୟର ଅନ୍ୟାନ୍ୟ ବିଭବ ଭଳି ମଧ୍ୟ ଆମେ ପାଶ୍ଚାତ୍ୟ ସାହିତ୍ୟର ପ୍ରଚ୍ଛନ୍ନ ପ୍ରଭାବ ଉପଲବ୍ଧି କରୁଛେ ।

ଅବଶ୍ୟ ସମତୁଲ ନ ହେଲେ ବି ଭାରତୀୟ ସାହିତ୍ୟର ସଂସ୍କୃତିର ପ୍ରଭାବ ବି ସେହିପରି ବିଦେଶୀ ସାହିତ୍ୟରେ ଏବେ ଆମେ ଦେଖୁଛେ । ଅବଶ୍ୟ ଅତ୍ୟାଧୁନିକ ପାଶ୍ଚାତ୍ୟ କବିତାର ସ୍ୱୀକାର ଅଙ୍ଗୀକୃତ ଓ ଆତ୍ମସ୍ଥ ହେବା ଉଚିତ । ଆମ ପାଣି ପବନକୁ ପୂରା ନ ହେଲେ ବି ଅନ୍ତତଃ କିଛିଟା ସୁହେଇଲା ଭଳି ହେବା ଉଚିତ । ବିଶ୍ୱାସ ପରେ ବିଶ୍ୱାସ କରିବା ଉଚିତ । ତେଣୁ ଆମ ପକ୍ଷରେ ଆସ୍ଥାବାନ୍ ହେବା ଉଚିତ । କିଛିଟା ଉଦାର ହେବା ଉଚିତ; ଆଉ କିଛି ସହୃଦୟ ମଧ୍ୟ ହେବା ବାଞ୍ଛନୀୟ ।

[ ୦ ]

ଲମ୍ବ, ଫଣାତ ସବୁ ଆଡ଼କୁଡାଏ

କବିତା ଅର୍ଦ୍ଧ ସୃଷ୍ଟି··· । ପାଠକର ଆଦୃତ ଓ ସ୍ୱୀକୃତରେ ତାହା ସଂପୂର୍ଣ୍ଣତା ଲଭ କରେ । ଧଗଯାଂଉ ଯଦ୍ଧ ସାଂପ୍ରତିକ କବିତାର ଜଟିଳତା ଓ ଦୁର୍ବୋଧତା ଏକ ବିଶେଷ ଧରଣର ସାମାଜିକ ଓ ମାନସିକ ପ୍ରଗତିର ପ୍ରତିଫଳନ ଓ ଏହା ଅବଶ୍ୟମ୍ଭାବୀ । ତା ହେଲେ ସୀମିତ ପାଠକଙ୍କର ସଂଖ୍ୟା ବଢ଼ାଇବାର ପ୍ରଚେଷ୍ଟା ସର୍ବାଦୌ କରଣୀୟ । ପାଠକଗୋଷ୍ଠୀ କମ୍ବା ସ୍ରଷ୍ଟା ଦୁହିଁଙ୍କୁ ଅନ୍ତତଃ କିଛିଟା ଓହରିବା ଆବଶ୍ୟକ ସେଇ ଚଳମାନ ବିନ୍ଦୁ ଉଦ୍ଦେଶ୍ୟରେ ଯାହାର ଅନ୍ୟ ନାମ 'ସଂଯୋଗ' ଏବଂ ଏ ସଂଯୋଗ ବ୍ୟକ୍ତିତ ଭାରସାମ୍ୟ ରକ୍ଷା ଅତୀବ ଦୁରୂହ । ଏଥିପାଇଁ ପର୍ଯ୍ୟାପ୍ତ ପ୍ରଚାର ପ୍ରସାର ଓ ଆବୃତ୍ତି ତଥା କବିତା ପାଠଚକ୍ର, ପାଠକଗୋଷ୍ଠୀ ସୃଷ୍ଟି ତଥା ଗଣାଦୃତ ପାଇଁ ପ୍ରଚେଷ୍ଟା ଓ ପଦକ୍ଷେପ ନେବାର ପ୍ରକୃଷ୍ଟ ସମୟ ଆସିଛି ଏଇଲେ । ପ୍ରକାଶକଙ୍କର ଏକ ଗଠନମୂଳକ ଭୂମିକା ଅବଶ୍ୟ ଏ ଦିଗରେ ରହିଛି । ସରକାରୀ ଓ ଅଣସରକାରୀ ସମସ୍ତ 'ଗଣ ମାଧ୍ୟମ'ର ଅନୁରୂପ ଭାବେ ଏଥିପାଇଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଅବଦାନ ମଧ୍ୟ ରହିଛି ।

[ ଡ ]

ଜଳଜ ଦୀପତଳେ ଅନ୍ଧାର

ସାଂପ୍ରତିକ କବିତାର ସୁରକ୍ଷା ଓ ପ୍ରତିଷ୍ଠା ଲାଗି ଉପଯୁକ୍ତ ସମାଲୋଚନା ଆବଶ୍ୟକ । କବିତାରେ ନବୀନତା, ବିଭିନ୍ନତା ଓ ପରିବର୍ତ୍ତନଶୀଳତା ଭଳି ସମାଲୋଚନାରେ ନୂତନ ଦୃଷ୍ଟିଭଙ୍ଗୀ ଓ ବ୍ୟାପକତା ମଧ୍ୟ ଆସିବା ସ୍ପୃହଣୀୟ । ଏଥିପାଇଁ ନିରପେକ୍ଷତା ଓ ସହୃଦୟଶୀଳତା ଖୁବ୍ ଦରକାର ମଧ୍ୟ । ଆଲୋକ ଆଲୋଚନାରେ ତଥାକଥିତ ସାଂପ୍ରତିକ କବିତାର ବିଦ୍‌ଦର୍ଶନ ବା ଅର୍ଥ-ଅନୁଶୀଳନ ବିଷୟରେ ଆଉ ଏତେ ମୁଣ୍ଡ ନ ଖେଳେଇ ସେଇସବୁ କବିତାଗୁଡ଼ିକରେ କବିତ୍ୱ କେତେ ପ୍ରତିପାଦିତ ହେଉଛି, ସେଥିପ୍ରତି ଆଲୋକପାତ କଲେ ଆହୁରି ଭଲ ହୁଅନ୍ତା ।

[ ଢ ]

ଖୁଣ୍ଟ ଗୁଣ୍ଠଣ ଘୋଡ଼ା କୁଦେ

କବିତାର ମୂଲ୍ୟବୋଧ ଓ ପ୍ରାଣବୋଧ ନେଇ କବିତା ବଞ୍ଚି ରହେ । କବିତାର ଐଶ୍ୱର୍ଯ୍ୟ କେବଳ ଆବୃତ୍ତି, ଅଳଂକୃତ ଭାଷା (Figurative

Language) ଶବ୍ଦ ସଂଯୋଜନା, ବ୍ୟାଖ୍ୟା ବା ବକ୍ରୋକ୍ତି ଉପରେ ଷୋଳଅଣା ନିର୍ଭର କରେ ନି; ଅନୁରୂପ ଭାବେ ଏହା ନିର୍ଭର କରେ ଅନ୍ୟ ଉପରେ, ତା'ର ପ୍ରଭାବର ପ୍ରଚ୍ଛନ୍ନତା ଉପରେ ।

ବାସ୍ତବରେ କବିତାର ମର୍ମ୍ମ ଓ ରୂପ ବିଚାର; ଏକ ଜୈବ ପ୍ରକ୍ରିୟାରେ ଯୁଗନଦ୍ଧ, ଯେଣୁ ଶବ୍ଦ ମାଧ୍ୟମରୁ ଭାବର ପ୍ରକାଶ; କିନ୍ତୁ ଧ୍ୱନି ମାଧ୍ୟମରୁ ଭାବର ସଂସ୍କରଣ : ତେଣୁ କୁହାଯାଇଛି :—

"Poetry is music of thought conveyed
to us in the music of language."

[ Chalfield ]

ଏସବୁ ସତ୍ତ୍ୱେ ଏହା ସର୍ବସ୍ୱୀକୃତ ଯେ କବିତାର ସଂଜ୍ଞା ହିଁ କବିତା ଓ ସେ ଏକ କଳା ତଥା ଜୀବନର ନିର୍ଯ୍ୟାସ । ନିଜ ଜୀବନକୁ ଚିହ୍ନିଲେ ଅନ୍ୟ ଜୀବନର ବେଦନା ତା' ଭିତରେ ପ୍ରତିକୃତ ଓ ପ୍ରତିଧ୍ୱନିତ ହେବା ସ୍ୱାଭାବିକ ।

[ ଣ ]

**ଅଜସ୍ର ଆଉ ବାରବାଟୀ ବୃକ୍ଷ**

ନୂତନତ୍ୱର ଅର୍ଥ ଜିଜ୍ଞାସା-ଭଙ୍ଗୀର ନୂତନତ୍ୱ । ଏହାର ଅର୍ଥ ଶବ୍ଦ ଯୋଜନାର ନୂତନତ୍ୱ ନୁହେଁ କେବଳ । ସେହିଭଳି ପ୍ରଗତିଶୀଳ କହିଲେ କେବଳ ପାରିଭାଷିକ ଶବ୍ଦୋଚ୍ଚାରଣ ବା ତଥ୍ୟ-କଥନ ନ ହୋଇ କାବ୍ୟ-କୃତିରେ ମଣିଷର ଛବି ଆପଣାର, ସାମାଜିକ ବାସ୍ତବତାବାଦର ପ୍ରକୃତ ଭାବା-ବେଗର ହୃଦୟଙ୍ଗମ ଓ କାବ୍ୟିକ ରୂପାନ୍ତର ହିଁ ହେବା ସ୍ପୃହଣୀୟ । ଏଇ ପରିପ୍ରେକ୍ଷୀରେ ଇଦାନିଂ ଜୀବନର ବାସ୍ତବତା ଭିତରେ ପ୍ରୟୋଗଶାଳାର କାବ୍ୟ-ଜିଜ୍ଞାସାରେ ସତ୍ୟଶିବସୁନ୍ଦରର ସନ୍ଧାନ ଓ ସମୀକ୍ଷା ହିଁ ସର୍ବତୋ ଲୋଡ଼ା । ସେ ସତ୍ୟ ହେଉଛି ଜୀବନର ଓ ବାସ୍ତବତାର; ସେ ସତ୍ୟ ଅଗ୍ନିମାନ ଯାହା କଅଁଳ ନୁହେଁ ବି । ସେ ଶିବ ହେଉଛି ଅଭିବୃଦ୍ଧିର, ପ୍ରଗତିର ଓ କଲ୍ୟାଣର ସିଡ଼ିର ସଂବନମ୍ର ଫଳରୁ ଉପରକୁ ଉଠି ସମସ୍ତଙ୍କୁ ଦେଖିବାର ଓ ଚିହ୍ନିବାର ପ୍ରୟାସ ଓ ଉପଗମ ଏବଂ ଜୀବନର ରୂପ-ଅରୂପର ଟ୍ରାଜିକ୍ ନିଃସଙ୍ଗତାର ତଥା ପରିବାସ୍ତବବାଦର ସାଧାରଣ ମଣିଷ ପାଖକୁ ପାଖେଇ ଯିବାର ପଦକ୍ଷେପ; ମାନବିକତାର ଉଷ୍ମତାରେ ନିଜକୁ ଅନ୍ୟ ସହ ସଂଯୋ-ଜିତ କରିବାର ଅଭିଯାନ ।

[ ଡ ]

**ସମାପିକା**

ପ୍ରାଣବନ୍ତ ଦେହ ପରି କବିତା ଅର୍ଥବନ୍ତ ଭାଷା କବି-ଆତ୍ମାର ସନ୍ତ୍ରୀ—

"Poet is a bard, a story teller, a man speaking to men and he is also a maker, a designer."

ଇଟା ଛଡ଼ା ଚୂନ ସିମେଣ୍ଟ ଛପ୍ପର ଏବଂ ବ୍ଲୁ ପ୍ରିଣ୍ଟସ୍ ଭଳି ନିର୍ଜୀବ ବସ୍ତୁ ସହିତ ଜଣେ ଇଞ୍ଜିନିୟରର ସମ୍ପର୍କ । ଅଥଚ ଜଣେ କାବ୍ୟ-ଶିଳ୍ପୀର ନିବିଡ଼ ସମ୍ପର୍କ ହିଁ ସୁକୋମଳ ଏବଂ ଅଦୃଶ୍ୟ ଆତ୍ମା ମନ ଓ ମନନ ଭଳି ମୂଲ୍ୟବାନ ବସ୍ତୁଙ୍କ ସହିତ ସମାଜର ଆତ୍ମା ଓ ମଣିଷର ସେଇ ଆତ୍ମାକୁ ଉପଲବ୍ଧି କରିବାର ବାକ୍ୟସ୍ୱର ହିଁ ମାନବତାର ନିଜସ୍ୱ ସଂଳାପ ସ୍ୱରୂପ ଏବଂ କବିତା ଜୀବନର ନିର୍ଯ୍ୟାସ ମାତ୍ର ।

---

# ମୋ ଦୃଷ୍ଟିରେ

# ସାଂସ୍କୃତିକ କବିତାରେ ଆହ୍ଲାଦ

**ରମାକାନ୍ତ ରଥ**

— ୧ —

କବିତା ଲେଖିବାରେ ଦୁଇଟି ଆନନ୍ଦ ଥାଏ,

(୧) ନିଜଦ୍ୱାରା କିଛି ପଠନଯୋଗ୍ୟ ଜିନିଷ ଲେଖାଯାଇଛି, ଏ ଚେତନାରୁ ଉଦ୍ଭବ ଆନନ୍ଦ, ଏବଂ

(୨) ଅନ୍ୟ କେତେଜଣ ତାକୁ ପଠନଯୋଗ୍ୟ ଭାବୁଛନ୍ତି, ଏ ଧାରଣାରୁ ମିଳୁଥିବା ଆନନ୍ଦ ।

ଯଦି କବିତାର ପ୍ରେରଣା ଏତେ ସରଳ ଏବଂ ଆନନ୍ଦ ହିଁ ତା'ର ମୂଳ ଉତ୍ସ, ତେବେ ତା'ର ମହାର୍ଘତା ସମ୍ବନ୍ଧରେ ବାଦାନୁବାଦ ଅବାନ୍ତର । ଆମେ କିନ୍ତୁ ସର୍ବଦା ଭାବିଆସିଛୁଁ ଯେ କାବ୍ୟଚେତନା ଅତ୍ୟନ୍ତ ଦୁର୍ଲଭ ପଦାର୍ଥ ଏବଂ କାବ୍ୟ ସାହିତ୍ୟର ପରମ୍ପରା ଅନୁଶୀଳନ କଲେ କୌଣସି ସଂସ୍କୃତିର ସନ୍ତୋଷଜନକ ପରିଚୟ ମିଳିପାରିବ । ଯାହା ଦୁର୍ଲଭ ତାହା ସରଳ ହେବାରେ କିଛି ଅସଙ୍ଗତି ନାହିଁ । ଶ୍ରୀ ରାମକୃଷ୍ଣ ପରମହଂସ ଜଣେ ଅସାଧାରଣ ବ୍ୟକ୍ତି ଥିଲେ ; କିନ୍ତୁ ଅନେକ ତାତ୍ତ୍ୱିକ ସମସ୍ୟାର ସମାଧାନ ସେ ଅତି ସରଳ ଦୃଷ୍ଟାନ୍ତ ଦ୍ୱାରା ଦେଉଥିଲେ । କଥିତ ଅଛି, ଜଣେ ଭକ୍ତ ତାଙ୍କୁ ପ୍ରଶ୍ନ କଲେ, "ଯେଉଁ ମହାତ୍ମା ସମାଧିସ୍ଥ ହୋଇ ବ୍ରହ୍ମଜ୍ଞାନ ଲାଭ କରନ୍ତି, ସେ ପୁନର୍ବାର କଥାବାର୍ତ୍ତା କରିପାରନ୍ତି ନା ନାହିଁ ?" ତା'ର ଉତ୍ତରରେ ପରମହଂସ କହିଲେ ଯେ ବ୍ରହ୍ମଜ୍ଞାନ ଲାଭ କରିବା ପରେ ନୀରବତା ସାଧାରଣ ନିୟମ ହୋଇଥିଲେ ହେଁ ସ୍ଥଳବିଶେଷରେ ତା'ର ବ୍ୟତିକ୍ରମ ହୋଇଥାଏ ଏବଂ ଜନସାଧାରଣଙ୍କ ମଙ୍ଗଳ ନିମିତ୍ତ କେଳେ-

ବେଳେ ସିଦ୍ଧ ମହାତ୍ମାମାନେ ଆଲୋଚନାରେ ବ୍ୟାପୃତ ହୋଇଥାନ୍ତି । ଯଥା :—

ମହୁମାଛି ଯେତେକ୍ଷଣ ଫୁଲେ ନ ବସଇ
ଗୁଣୁଗୁଣୁ ଶବ୍ଦେ ନାନା ଦିଗେ ଭ୍ରମୁଥାଇ ।
ଫୁଲେ ବସି ମଧୁପାନ ଆରମ୍ଭେ ଯେ କାଳେ
ନ ଥାଏ କୌଣସି ଶବ୍ଦ ଆଉ ତେତେବେଳେ ।
ମଧୁପାନ କଲାପରେ ପୁଣି ବେଳେ ବେଳେ
ଗୁଣୁଗୁଣୁ ଶବ୍ଦ କରି ଉନ୍ମତ୍ତରେ ବୁଲେ ।
ପାଣି ଭରିବାକୁ କୁମ୍ଭ ଜଳେ ବୁଡ଼ାଇଲେ
ଭକ ଭକ ଶବ୍ଦ କେତେ ଉଠିଁରୁ ବାହାରେ ।
ମାଠିଆ ସମ୍ୟକ୍ ଭାବେ ଯଦା ପୂର୍ଣ୍ଣ ହୁଏ
କୌଣସି ପ୍ରକାରେ ଆଉ ଶବଦ ନ ଥାଏ ।
ଅନ୍ୟ ମାଠିଆରେ ପୁଣି ଢଳାଢଳି କଲେ
ପୁନଶ୍ଚ ଶବଦ ଗୋଟେ ବାହାରେ ସେ କାଳେ ।

( ଶ୍ରୀଶ୍ରୀରାମକୃଷ୍ଣ ଲୀଳାମୃତ )

ଏ ଉଦାହରଣ ଦୁଇଟି ଅତ୍ୟନ୍ତ ସରଳ, ଅଥଚ ତଦ୍ଦ୍ୱାରା ଯେଉଁ ତତ୍ତ୍ୱର ବ୍ୟାଖ୍ୟାନ କରାଯାଇଛି, ତାହା ସାଧାରଣ ଅଭିଜ୍ଞତାର ଉପରେ । ସୁତରାଂ ସାହିତ୍ୟ-ସୃଷ୍ଟି ଏକ ଅସାଧାରଣ କୃତିତ୍ୱ ହେବା ସଙ୍ଗେ ସଙ୍ଗେ ଏକ ବୋଧଗମ୍ୟ ଓ ମୂଳତଃ ସରଳ ପ୍ରକ୍ରିୟା ହେବା ଅସମ୍ଭବ ନୁହେଁ । ଏ ସରଳ ପ୍ରକ୍ରିୟାର ପ୍ରେରଣା ଆନନ୍ଦ ହେବା ମଧ୍ୟ ଅସ୍ୱାଭାବିକ ନୁହେଁ; ଯେହେତୁ ଆନନ୍ଦ ବା ସନ୍ତୋଷ ବ୍ୟତିରେକେ ଲୋକ ସ୍ୱେଚ୍ଛାପ୍ରଣୋଦିତ ହୋଇ କାହିଁକି କଛି କାମ କରିବ ତାହା ବୁଝିବା ମୁସ୍କିଲ । ସାହିତ୍ୟରେ ଆନନ୍ଦର ସ୍ଥାନ ବିଷୟରେ ଅନେକ ତତ୍ତ୍ୱ ଅଛି । ଆରିଷ୍ଟୋଟଲ ଦୁଃଖାନ୍ତ ନାଟକ (ଟ୍ରାଜେଡ଼ି) ମଧ୍ୟ କପରି ଅହ୍ଲାଦକର ତାହା ବୁଝାଇଛନ୍ତି ଓ ସାହିତ୍ୟ ଦର୍ପଣକାର କାବ୍ୟ-ରସାନୁଭୂତିର ଆନନ୍ଦକୁ ବ୍ରହ୍ମ-ଉପଲବ୍ଧିର ଆନନ୍ଦ ସହିତ ତୁଳନା କରିଛନ୍ତି ("ବ୍ରହ୍ମାସ୍ୱାଦସହୋଦରଃ") ଏବଂ ସାହିତ୍ୟରେ ଦୁଃଖର ଘଟଣା ମଧ୍ୟ କପରି ସୁଖଦାୟକ ହୋଇଥାଏ ତା'ର ବିଶ୍ଳେଷଣ କରିଛନ୍ତି । ଯାହା ସାଧାରଣ ଅନୁଭୂତିରେ ଶୋକର କାରଣ, କାବ୍ୟ-ଜଗତରେ ତାହା ସୁଖର କାରଣ ହୋଇଥାଏ । ମମ୍ମଟ ଭଟ୍ଟ କାବ୍ୟପ୍ରକାଶର ଆରମ୍ଭରୁ କହିଛନ୍ତି, କାବ୍ୟରେ କେବଳ ଆନନ୍ଦ ହିଁ ଥାଏ ("ହ୍ଲାଦୈକ-

ମସ୍ତୀନ୍”) । କେହି କେହି ରସଜ୍ଞ ପଣ୍ଡିତ କାବ୍ୟକୁ ଏକ ସ୍ନେହଶୀଳା ପ୍ରେମିକାଠାରୁ ମିଳୁଥିବା ଶିକ୍ଷା ପରି ଆନନ୍ଦଦାୟକ ବୋଲି କହନ୍ତି । ଏସବୁ ମତ ପାଠକ ବା ଦର୍ଶକର ପ୍ରତିକ୍ରିୟା ଉପରେ ପ୍ରତିଷ୍ଠିତ, କିନ୍ତୁ ଏହା ମଧ୍ୟ ସତ୍ୟ ଯେ କାବ୍ୟାନୁଭୂତି ପରି କାବ୍ୟ ସୃଷ୍ଟିରେ ମଧ୍ୟ ଆନନ୍ଦ ହିଁ ଏକ ସର୍ବ-ପ୍ରଧାନ ଉପାଦାନ ।

ଅନ୍ୟାନ୍ୟ ଯେ କୌଣସି କଳା ପରି ଉଦ୍ଦିଷ୍ଟ ଅର୍ଥର ସଫଳ ପ୍ରକାଶ ଉପରେ କବିତାର ସାର୍ଥକତା ନିର୍ଭର କରେ । ସଙ୍ଗୀତରେ ଗୋଟିଏ ରାଗ ଦ୍ୱାରା ଉଦ୍ଦିଷ୍ଟ ଭାବର ପ୍ରକାଶ ସଫଳ ହେଲେ ସେ ରାଗଟିର ପରିବେଷଣ କୃତକାର୍ଯ୍ୟ ହେଲା ବୋଲି କୁହାଯାଏ । ସେ ରାଗଟିର ସାଫଲ୍ୟ ନିଜ ବାହାରେ ଥିବା ଏକ ବସ୍ତୁ ସୂଚାଇବାର ଦକ୍ଷତା ଉପରେ ନିର୍ଭର କରେ । ଚିତ୍ରକଳାରେ ମଧ୍ୟ କୌଣସି ଆକୃତି ବା ବର୍ଣ୍ଣ-ସମାବେଶ ସମାନ ଭାବେ କାମ କରେ । ଆଧୁନିକ ଚିତ୍ରକଳାରେ ବିଷୟବସ୍ତୁର ପ୍ରତ୍ୟକ୍ଷ ଅଙ୍କନ ଗୌଣ ହୋଇ ପଡ଼ୁଛି ଏବଂ ଅଙ୍କନ କେବଳ ଏକ ସୂଚକ ଭାବେ କାମ କରୁଛି ; ଏହାର ଔଚିତ୍ୟ ସମ୍ବନ୍ଧରେ ମତାନୈକ୍ୟ ରହିଛି ; କିନ୍ତୁ ସେ ବାଦାନୁବାଦକୁ ଛାଡ଼ିଦେଇ ଠିକ୍‌ଏ ଚିନ୍ତା କଲେ ଜଣାପଡ଼ିବ ଯେ ଦୃଶ୍ୟଚିତ୍ର ମୂଳତଃ ପ୍ରତୀକଧର୍ମୀ ଏବଂ ପାରମ୍ପରିକ ଚିତ୍ରକଳାରେ ମଧ୍ୟ ଅଙ୍କନର ପ୍ରଧାନ ଉଦ୍ଦେଶ୍ୟ ଥିଲା ସୂଚନା ଦେବା । ସଙ୍ଗୀତ ହେଉ ବା ଚିତ୍ରକଳା ହେଉ, ଉଭୟ କ୍ଷେତ୍ରରେ କଳା ନିଜର ପ୍ରକାଶିତ ସତ୍ତା ଭିତରେ ଆବଦ୍ଧ ନ ରହି ଶ୍ରୋତା ବା ଦର୍ଶକର କଳ୍ପନାଶକ୍ତିକୁ ଉଜ୍ଜୀବିତ କରାଇ ତାଙ୍କୁ ଉଦ୍ଦିଷ୍ଟ ଅର୍ଥର ଉପଲବ୍ଧି ଦିଗରେ ସାହାଯ୍ୟ କରେ । ସାହିତ୍ୟିକ କଳା ଏହାର ବ୍ୟତିକ୍ରମ ନୁହେଁ ଏବଂ ଶବ୍ଦବିନ୍ୟାସ ଦ୍ୱାରା ଅଭିପ୍ରେତ ଅର୍ଥର ଉପସ୍ଥାପନା ଏହାର ଏକମାତ୍ର ଲକ୍ଷ୍ୟ । ଭାଷା ଏବଂ ଭାଷା ଦ୍ୱାରା ସୂଚିତ ଅର୍ଥର ପାର୍ଥକ୍ୟ ଆମେ କେତୋଟି ଦୈନନ୍ଦିନ ଉଦାହରଣରୁ ଜାଣିପାରିବା । ଅନେକ ପରିସ୍ଥିତିରେ ଜଣେ ଭାବବିହ୍ୱଳ ଲୋକ କହିବା ସ୍ୱାଭାବିକ, "ମୁଁ କ'ଣ କହିବି ଭାବିପାରୁ ନାହିଁ ।" କୌଣସି ପ୍ରାକୃତିକ ସୌନ୍ଦର୍ଯ୍ୟରେ ଜଣେ ଆତ୍ମହରା ହୋଇଗଲେ ବା କୌଣସି ବିପର୍ଯ୍ୟୟରେ ସ୍ତମ୍ଭୀଭୂତ ହୋଇଗଲେ ସେ ତାଙ୍କର ଅନୁଭୂତି ବର୍ଣ୍ଣନା କରିବାକୁ ଭାଷା ପାଉ-ନାହିଁ ବୋଲି କହିଥାଏ । ଏ କ୍ଷେତ୍ରରେ ଉଦ୍ଦିଷ୍ଟ ଅର୍ଥ ଭାଷାଠାରୁ ପୃଥକ୍ ବୋଲି ପରିଷ୍କାର ଜଣାପଡ଼େ । ମୋଟାମୋଟି କହିବାକୁ ଗଲେ କୌଣସି କଳାକାର ପକ୍ଷରେ ବଡ଼ ଦାୟିତ୍ୱ ହେଲା ଅର୍ଥ ଏବଂ ପ୍ରକାଶ-ମାଧ୍ୟମ ଭିତରେ

ସଂଯୋଗ ସ୍ଥାପନ କରିବା ଏବଂ ଅଧିକାଂଶ କ୍ଷେତ୍ରରେ ଏ ଦିଗରେ ବିଫଳତା ହିଁ ତା'ର ଏକମାତ୍ର ନୈରାଶ୍ୟ । "ମୋ କବିତା (ବା ଚିତ୍ର) କେହି ବୁଝିଲେ ନାହିଁ ବା ତା'ର ଗୁହିଦା ବଜାରରେ ନାହିଁ" ଏ ନୈରାଶ୍ୟ କୌଣସି ପ୍ରକୃତ କଳାକାରର ନ ଥାଏ ; ତା'ର ବିଫଳତା ସେ ସ୍ୱୟଂ ଜାଣିପାରେ ଏବଂ ସେ ବିଫଳତା ହେଉଛି ଉଦ୍ଦେଶ୍ୟ ପ୍ରକାଶରେ ଅସମର୍ଥତା ।

ଯେଉଁଠି ଏ ଲକ୍ଷ୍ୟ ଆଂଶିକ ଭାବେ ମଧ୍ୟ ସାଧିତ ହୁଏ, ସେଠାରେ ଶିଳ୍ପୀ ଆହ୍ଲାଦିତ ହେବା ସ୍ୱାଭାବିକ । ଏକ କାତରଶୂନ୍ୟ, ସ୍ମିତଶୂନ୍ୟ ଓ କାଳ୍ପନିକ ଅଭିଜ୍ଞତାକୁ ବାସ୍ତବ କରିବାରେ ଆଉ କାହାର ଅବଦାନ ନାହିଁ ତା' ନିଜ ଛଡ଼ା । ତା' ନିଜ ବ୍ୟକ୍ତିତ୍ୱ ଅନ୍ୟାନ୍ୟ ଅସଂଖ୍ୟ ବ୍ୟକ୍ତିତ୍ୱଠାରୁ କୌଣସିମତେ ପୃଥକ୍ ନୁହେଁ ଏବଂ କାଳପ୍ରବାହରେ ସେ ମଧ୍ୟ ନିଶ୍ଚିହ୍ନ ହୋଇଯିବ, ଯେପରି ସୃଷ୍ଟିର ପ୍ରାରମ୍ଭରୁ ଅଗଣିତ ବ୍ୟକ୍ତିତ୍ୱ ନିଶ୍ଚିହ୍ନ ହୋଇ ଯାଇଛନ୍ତି ଏବଂ ଭବିଷ୍ୟତରେ ମଧ୍ୟ ହେବେ । କିନ୍ତୁ ଗୋଟିଏ କବିତା (ବା ନାଟକ, ବା ଉପନ୍ୟାସ, ବା ଚିତ୍ର ବା ଗୋଟିଏ ଗଦ୍ୟର ପରିବେଷଣ) ଦ୍ୱାରା ସେ ତା'ର ବ୍ୟକ୍ତିତ୍ୱର ସ୍ୱାତନ୍ତ୍ର୍ୟ ପ୍ରତିପାଦନ କରିଛି, ଦୈହିକ ବିଲୟ ପରେ ମଧ୍ୟ ସାଂସ୍କୃତିକ ଚେତନାରେ ତା'ର ବ୍ୟକ୍ତିତ୍ୱକୁ ଅନ୍ତତଃ କିଛି କାଳ ପାଇଁ ବଜାୟ ରଖିବାର ବ୍ୟବସ୍ଥା କରିଛି, ଏବଂ ତଦ୍ୱାରା କାଳର କ୍ଷମତାକୁ ପରାଭୂତ କରିଛି—ଏ ଚେତନା ଅପ୍ରତ୍ୟକ୍ଷ ଭାବେ ହେଲେ ମଧ୍ୟ ଆନନ୍ଦ-ଦାୟକ । କୌଣସି କବି ଯେ ସଚେତନ ଭାବେ ଏହି ଉଦ୍ଦେଶ୍ୟ ରଖି କବିତା ଲେଖେ ସେ କଥା ମୁଁ କହୁନାହିଁ; କିନ୍ତୁ ମନସ୍ତାତ୍ତ୍ୱିକମାନଙ୍କ କୃପାରୁ ଆମେ ଜାଣିଛୁଁ ଯେ ମଣିଷ ଅନେକ ସମୟରେ ନାନାବିଧ ଅପ୍ରତ୍ୟକ୍ଷ ଉଦ୍ଦେଶ୍ୟର ବଶବର୍ତ୍ତୀ ହୋଇ କାମ କରିଥାଏ ; ଏ କ୍ଷେତ୍ରରେ ସମ୍ଭବତଃ ତାହା ହିଁ ଘଟିଥାଏ ।

—୨—

ଏଠାରେ ପ୍ରଶ୍ନ ଉଠିପାରେ, ଆଧୁନିକ ଓଡ଼ିଆ କବିତା ଏପରି କିଛି ଅର୍ଥର ଅନୁଧ୍ୟାନ କରୁଛି କି ଯାହାର ଉପଲବ୍ଧି ଆନନ୍ଦଦାୟକ ହୋଇ-ପାରେ ? ଆହୁରି ପ୍ରଶ୍ନ ଉଠିପାରେ, ଆଦୌ କୌଣସି ଅର୍ଥର ଅନୁଧ୍ୟାନ କରାଯାଉଛି କି ? ଆଧୁନିକ କବିତାରେ କ୍ଷୋଭ, ନୈରାଶ୍ୟ, ଗ୍ଳାନି ଓ ବ୍ୟକ୍ତିଗତ ବା ସାମାଜିକ ନୃଶଂସତାର ବହୁଳ ବର୍ଣ୍ଣନା ଯୋଗୁଁ ଅଭିପ୍ରେତ ଅର୍ଥର ଉପଲବ୍ଧି ଆନନ୍ଦଦାୟକ ହେବ ବୋଲି ସନ୍ଦେହ ଉପୁଜିବା

ସ୍ୱାଭାବିକ । କାବ୍ୟର ଉପଲବ୍‌ଧିର ଆନନ୍ଦ କିନ୍ତୁ ସୁଖକର ଇନ୍ଦ୍ରିୟାନୁଭୂତି ନୁହେଁ, ଏବଂ କାବ୍ୟ ରଚନାର ଆନନ୍ଦ ମଧ୍ୟ ସବୁବେଳେ ଏକ ପ୍ରୀତିକର ଅଭିଜ୍ଞତାରୁ ଉଦ୍ଭବ ହୁଏ ନାହିଁ । ନିଜର ବ୍ୟକ୍ତିତ୍ୱକୁ କାଳର ପ୍ରଭାବରୁ ଅନ୍ତତଃ କିଛିକାଳ ପାଇଁ ମୁକ୍ତ ରଖିବାର ପ୍ରେରଣା ଗୁଡ଼ିଏ ସବୁବେଳେ ମଧ୍ୟ ଏକ ଅପ୍ରକଟ ଅଭିଜ୍ଞତା ବା ଭାବକୁ ପ୍ରକଟ କରିବାର ଆନନ୍ଦ କିଛି କମ୍ ଶକ୍ତିଶାଳୀ ପ୍ରେରଣା ନୁହେଁ । ଯେ ଅଭିଜ୍ଞତା ସୁଖଦାୟକ ନ ହେଲେ ସେ ଏକ ଅଶକ୍ତ ପ୍ରେରଣା ହେବ ତାହା ନୁହେଁ, ବରଂ ତାହା ଅଧିକ ସୃଜନଶୀଳ ହେବା ସମ୍ଭବ । ତା'ର କାରଣ ହୁଏତ ଏହା ଯେ ଏପରି କ୍ଷେତ୍ରରେ ସାହିତ୍ୟିକ ଚିତ୍ତବୃତ୍ତି ଓ ପରିପାର୍ଶ୍ୱ ଭିତରେ ଏକ ପ୍ରକାର ଉତ୍ତେଜକ ସମ୍ପର୍କ ସ୍ଥାପିତ ହୁଏ ଏବଂ ସେଥିପାଇଁ ପରିପାର୍ଶ୍ୱର କୌଣସି ଅବସ୍ଥା ଶାନ୍ତ ଓ ପ୍ରତିରୋଧଶୂନ୍ୟ ବାତାବରଣ ଭିତରେ ଗ୍ରାହ୍ୟ ହୁଏ ନାହିଁ । ସାହିତ୍ୟ ଶିଳ୍ପୀର ଚେତନା ପରିପାର୍ଶ୍ୱ ପ୍ରତି ପ୍ରତିକ୍ରିୟାରେ ଉତ୍କଟ ହୁଏ ଏବଂ ଏକ ମୂଳତଃ ପ୍ରତିକୂଳ ପରିସ୍ଥିତିରେ ବ୍ୟକ୍ତିର ସ୍ଥାନ ନିର୍ଦ୍ଦିଷ୍ଟ କରିବାକୁ ଉଦ୍‌ବିଗ୍ନ ହୁଏ । ସେହି ଆଦିମ ଭୟ—ମୃତ୍ୟୁ ଓ ବ୍ୟକ୍ତିତ୍ୱର ଚିରନ୍ତନ ବିଲୟଯୋଗୁଁ ସେ ବ୍ୟକ୍ତିର ସ୍ଥାନ ଉପରେ ଗୁରୁତ୍ୱ ଦିଏ ଏବଂ ସାହିତ୍ୟ ସୃଷ୍ଟି କ୍ରମଶଃ ବ୍ୟକ୍ତିମୁଖାପେକ୍ଷୀ ହୋଇପଡ଼େ ।

ଏ ପ୍ରକାର ସମ୍ପର୍କ ଯେ ଆଗରୁ ନ ଥିଲା ତାହା ନୁହେଁ, କିନ୍ତୁ ସମ୍ଭବତଃ କୌଣସି କାଳେ ତାହା କବିମାନଙ୍କୁ ଏତେ ଆକ୍ରାନ୍ତ କରୁ ନ ଥିଲା ଯେତେ ଆଜି କରୁଛି । ଏକ ବର୍ଣ୍ଣନାତ୍ମକ ସାହିତ୍ୟିକ ପରମ୍ପରାରେ ଏ ଦ୍ୱନ୍ଦ୍ୱ ଆକସ୍ମିକ ଓ ପରୋକ୍ଷ ଭାବେ ପରିସ୍ଫୁଟ ହେବା ସମ୍ଭବ ଏବଂ ପରିଶେଷରେ ପରିପାର୍ଶ୍ୱ ସହିତ ସାଲିସ୍‌ରେ ଲୀନ ହୋଇଯିବା ସ୍ୱାଭାବିକ । ତା'ର କାରଣ ଦ୍ୱିବିଧ । ପ୍ରଥମତଃ, ପାରିପାର୍ଶ୍ୱିକ ପରିସ୍ଥିତି ବ୍ୟକ୍ତିଗତ ଭାବେ କବିର ପରିପୋଷକ ଥିଲା । ଜାତି ଏବଂ ଆର୍ଥିକ ସଙ୍ଗତି ମୋଟାମୋଟି ଅପରିବର୍ତ୍ତିତ ରହୁଥିବାରୁ ସମାଜରେ ରହିଥିବା ଶ୍ରେଣୀବିଭାଗ ବିପନ୍ନ ହେଉ ନ ଥିଲା ଏବଂ କବି ଓ ପଣ୍ଡିତମାନେ ସାଧାରଣତଃ ଉଚ୍ଚତର ଶ୍ରେଣୀର ହୋଇଥିବାରୁ ସେମାନେ ସାମ୍ପ୍ରତିକ ପରିସ୍ଥିତିରୁ ଲାଭବାନ ହେଉଥିଲେ । ଦ୍ୱିତୀୟତଃ, ଯେଉଁ କେତେକ କ୍ଷେତ୍ରରେ ଏହାର ବ୍ୟତିକ୍ରମ ହେଉଥିଲା, ସେଠାରେ ଦୃଢ଼ ଭଗବଦ୍ ବିଶ୍ୱାସର ପରମ୍ପରା ଯୋଗୁଁ କୌଣସି ଦ୍ୱନ୍ଦ୍ୱ ଦୀର୍ଘକାଳସ୍ଥାୟୀ ହେଉ ନ ଥିଲା । ଯଦି ଏକ ପ୍ରତିକୂଳ ପରିସ୍ଥିତି ମନୁଷ୍ୟକୃତ ନୁହେଁ ଓ ବିଧିନିର୍ଦ୍ଦିଷ୍ଟ, ତା ପ୍ରତି ବିରୁଦ୍ଧାଚରଣ କେବଳ ଅର୍ଥହୀନ ନୁହେଁ, ଦୈବୀ

ଇଚ୍ଛାର ଅବାଧତା ମଧ୍ୟ ଯାହାର ପରିଣାମ ଇହଲୋକରେ ନ ହେଲେ ମଧ୍ୟ ପରଲୋକରେ ଅବଶ୍ୟ ମିଳିବ । କବିମାନସରେ ସୁତରାଂ ପରିପାର୍ଶ୍ୱ ପ୍ରତି ପ୍ରତିକ୍ରିୟା କୌଣସି ସୁଦୃଶ୍ୟ ସ୍ଥାନ ଅଧିକାର କଲି ନାହିଁ ଯାହା ଫଳରେ ପରିପାର୍ଶ୍ୱ ଗ୍ରାହ୍ୟ ନ ହେବାର ଦୁଃଖ କାବ୍ୟକବିତାରେ ପ୍ରତିଫଳିତ ହେଲିନାହିଁ ।

ଓଡ଼ିଆ କାବ୍ୟସାହିତ୍ୟରେ ଏ ଦ୍ୱନ୍ଦ୍ୱର ପ୍ରଥମ ଉଲ୍ଲେଖଯୋଗ୍ୟ ପ୍ରକାଶ ହେଲି ରାଧାନାଥଙ୍କ କବିତାରେ । ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ଯୋଗୁଁ ହେଉ ବା ସମାଜରେ ଘଟିଥିବା ପରିବର୍ତ୍ତନ ଯୋଗୁଁ ହେଉ, (ସମ୍ଭବତଃ ଉଭୟ କାରଣ ଯୋଗୁଁ), ରାଧାନାଥଙ୍କ କାବ୍ୟନାୟକ (ବା ନାୟିକା) ଏକ ମୂଳତଃ ପ୍ରତିକୂଳ ପରିସ୍ଥିତି ସହିତ ସଂଘର୍ଷରେ ବ୍ୟସ୍ତ । ଏ ପରିସ୍ଥିତି ଦୈବାକୃତ ହୋଇପାରେ ("ଉଷା"), ମନୁଷ୍ୟକୃତ ହୋଇପାରେ ("ପାର୍ବତୀ") ବା ଉଭୟକୃତ ହୋଇପାରେ ("କେଦାରଗୌରୀ"), କିନ୍ତୁ ବ୍ୟକ୍ତି ଓ ପରିସ୍ଥିତି ଭିତରେ ଦ୍ୱନ୍ଦ୍ୱ ତାଙ୍କ କବିତାର ମୂଳପିଣ୍ଡ । 'ପାର୍ବତୀ' କାବ୍ୟ (ଓ ତାର ଗଦ୍ୟ ଉପସଂହାରରେ) ଏ ଦ୍ୱନ୍ଦ୍ୱ ଏତେ ଆନ୍ତରିକ ଓ ତୀବ୍ର ଯେ ଏହା ପରେ ପରିପାର୍ଶ୍ୱକୁ ନିର୍ବିବାଦରେ ଗ୍ରହଣ କରିନେବା କବିମାନସ ପକ୍ଷରେ ଅସମ୍ଭବ ହୋଇପଡ଼ିଲି । ପାର୍ବତୀ ଚରିତ୍ରରେ ଏ ସଂଘର୍ଷର ପ୍ରତ୍ୟକ୍ଷ ପ୍ରମାଣ ମିଳେ ଏବଂ ଏହି ଚରିତ୍ରଟି ପରିବର୍ତ୍ତନଶୀଳ କବିମାନସର ସର୍ବ-ଶ୍ରେଷ୍ଠ ପ୍ରତୀକ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । କବିତାର ଆରମ୍ଭରୁ ପାର୍ବତୀ ପାରମ୍ପରିକ ମୂଲ୍ୟବୋଧକୁ ଗ୍ରହଣ କରୁଥିବା ଅନ୍ୟାନ୍ୟମାନଙ୍କ ପରି ଜଣେ ଏବଂ ସ୍ୱାମୀ ଓ ନିଜର ବଂଶମର୍ଯ୍ୟାଦା ପାଇଁ ଉଦ୍‌ବିଗ୍ନ ଜଣେ ନାରୀ ମାତ୍ର । କୌଶଲ୍ୟାର ବୃତ୍ତାନ୍ତ ତା'ଠାରୁ ଶୁଣିବା ଯାଏଁ ତାଙ୍କର ପ୍ରତିକ୍ରିୟା ଗତାନୁଗତିକ ଓ ସେଥିରେ କୌଣସି ପ୍ରଶ୍ନ ପଚାରିବାର ସ୍ପର୍ଦ୍ଧା ନାହିଁ । କୌଶଲ୍ୟା ପାଇଁ ସେ ଦୁଃଖିତ ହେଲେ ମଧ୍ୟ ତା'ର ପକ୍ଷ ସମର୍ଥନ କରିବା ସେ ଚିନ୍ତା କରିନାହାନ୍ତି ଯେହେତୁ ତା'ର ଆଚରଣ ବଂଶମର୍ଯ୍ୟାଦା ଓ ଲୌକିକତାର ବିରୁଦ୍ଧାଚରଣ କରିଛି । ସେ ଦୁଃଖ ସହିତ କୌଶଲ୍ୟା ପ୍ରତି ସମାଲୋଚନା ମିଶି ରହିଛି ଏବଂ ସେ ସମାଲୋଚନା ପ୍ରଚଳିତ ମୂଲ୍ୟବୋଧ ଦ୍ୱାରା ଉଦ୍‌ବୁଦ୍ଧ—

> **ଉତ୍କଳ-ଆକାଶେ ଅମଳ ଶଶାଙ୍କ**
> **ଗଙ୍ଗେଶ୍ୱର ନରସାଇଁ,**
> **ସୁତା ହୋଇ ତାଙ୍କ ଉତ୍କଳ-ଶ୍ରୀମୁଖେ**
> **କଳଙ୍କ ଦେଲୁ ଲଗାଇ ।**

ଏଡ଼େ ରାଜକୁଳେ ଜନ୍ମ ଲଭି ତୁହି
ହେଲୁ ପୁଣି କଳଙ୍କିନୀ,
ମହିଳା-ମଣ୍ଡଳ କଣ୍ଠେ ହାତ ଦେଲେ
ତୋର ଏ ଅନୀତି ଶୁଣି ।

ଏ ପ୍ରତିକ୍ରିୟାର ପ୍ରଧାନ ଉପାଦାନ ହେଲା ପ୍ରଚଳିତ ଆଚରଣବିଧିରୁ ବିଚ୍ୟୁତି ପାଇଁ ନିନ୍ଦାବାଦ । ପାର୍ବତୀ ଯେ ସ୍ନେହଶୀଳା ଜନନୀ ଏବଂ କନ୍ୟାର ଅସାମୟିକ ଦେହାନ୍ତ ପାଇଁ ମର୍ମାହତ ଏଥିରେ ସନ୍ଦେହ ନାହିଁ, କିନ୍ତୁ ବାତ୍ସଲ୍ୟ ଅପେକ୍ଷା ଆଚରଣବିଧିକୁ ବଜାୟ ରଖିବାର ସ୍ପୃହା ବଳବତ୍ତର ଏବଂ କବିତାର ଆରମ୍ଭରେ ପାର୍ବତୀ ଚିରାଚରିତ ମୂଲ୍ୟବୋଧରେ ଅନୁପ୍ରାଣିତା ଏକ ନାୟିକା ମାତ୍ର । କିନ୍ତୁ ଗଙ୍ଗେଶ୍ୱରଙ୍କ ବିଚ୍ୟୁତିକୁ ସେ ଏକ ଚିରାଚରିତ ସହନଶୀଳା ନାରୀ ଭାବରେ ଗ୍ରହଣ ନ କରି ପରିପାର୍ଶ୍ୱକୁ ଇଚ୍ଛାମତେ ବଦଳାଇବାର ଚେଷ୍ଟା କରିଛନ୍ତି ଏବଂ ସେ ଚେଷ୍ଟାର ପରିଣାମରେ ତାଙ୍କୁ ସ୍ୱାମୀଙ୍କୁ ହତ୍ୟା କରିବାକୁ ପଡ଼ିଛି । ବୈବାହିକ ଓ ପାରିବାରିକ ସମ୍ପର୍କକୁ ଅପରିବର୍ତ୍ତନୀୟ ବୋଲି ଗ୍ରହଣ କରି ନ ନେଇ ସେ ଏ ସମ୍ପର୍କକୁ ଦୁର୍ଭାଗ୍ୟ-ଜନକ ବୋଲି କହିବାକୁ ଦ୍ୱିଧାବୋଧ କରିନାହାନ୍ତି (ମୋର ସୁତା ଭାଗ୍ୟେ / ଏହି ପିତା, ହା ହା / ମୋହରି ଭାଗ୍ୟେ ଏ ପତି !) ଯାହା ଆମ ସାହିତ୍ୟରେ ଏକ ନୂଆଧରଣର ପ୍ରତିକ୍ରିୟା । ଏଠାରେ ମୁଁ ରାଧାନାଥଙ୍କର ମୌଳିକତା ପ୍ରଶଂସା କରିବାକୁ ଯାଉ ନାହିଁ, ଏବଂ ସେପରି କରିବା ମଧ୍ୟ କଷ୍ଟକର ଯେହେତୁ ଏସ୍କାଇଲସ୍‌ଙ୍କର ଆଗାମେମ୍‌ନନ୍ ନାଟକର କେବଳ ବିଷୟବସ୍ତୁ ନୁହେଁ, ଭାଷା ମଧ୍ୟ ରାଧାନାଥ ଅକୁଣ୍ଠିତଭାବେ ଗ୍ରହଣ କରିନେଇଛନ୍ତି । ଏ କଥା କିନ୍ତୁ ସ୍ୱୀକାର୍ଯ୍ୟ ଯେ ଓଡ଼ିଆ ସାହିତ୍ୟରେ ଏପରି ଏକ ଚରିତ୍ରର ସୃଷ୍ଟି ଏକ ଉଲ୍ଲେଖଯୋଗ୍ୟ ଘଟଣା ଓ ତା ପରେ ସାହିତ୍ୟରେ ବ୍ୟକ୍ତି-ପରିପାର୍ଶ୍ୱ ସଂଘର୍ଷର ବର୍ଣ୍ଣନା ବା ଅନୁଶୀଳନ ସ୍ୱାଭାବିକ ହୋଇପଡ଼ିଲା । ତା'ର ଏକତମ ପ୍ରକାଶ ହେଲା ବ୍ୟଙ୍ଗସାହିତ୍ୟରେ ଯେଉଁଥିରେ ସାମାଜିକ ବ୍ୟବସ୍ଥା ଓ ବ୍ୟକ୍ତି ବା ଗୋଷ୍ଠୀବିଶେଷଙ୍କର ଆଚରଣ ସମାଲୋଚିତ ହେବାକୁ ଆରମ୍ଭ କଲା । ନିଜେ ରାଧାନାଥ ଏ ଦିଗରେ ଅଗ୍ରଗାମୀ ଥିଲେ, ଯାହାର ପ୍ରମାଣ 'ଦରବାର' ଯାହାକୁ ବିଦେଶୀ ସାହିତ୍ୟରୁ ଆହୃତ ବୋଲି କୁହାଯାଇ ପାରିବ ନାହିଁ । ସେ କବିତାର :

ଅସାର ଝଟକ ହୋଇଅଛି ସାର,
ଭଣ୍ଡତାର ବଢ଼ିଯାଇଛି ପ୍ରସାର ।

କହୁଛନ୍ତି ଲେକେ ଉପାଧି ଅଂଶାରେ,
ମନୁଷ୍ୟର ପୂଜା ଷୋଡ଼ଶୋପଚୁରେ ।
ମନୁଷ୍ୟ ତୋଷିବା ପାଇଁ ସହୁ କଷ୍ଟ,
ମନୁଷ୍ୟ-ପଦରୁ ହେଉଛନ୍ତି ଭ୍ରଷ୍ଟ...

ଏକ ନୂତନ ଚେତନା ଓ ଯୁଗୋପଯୋଗୀ ଭାଷାର ଦୃଷ୍ଟାନ୍ତ ।

ବଂଗ ଦ୍ୱାରା ପାଶ୍ଚାତ୍ୟଙ୍କ ଅନ୍ୟାନ୍ୟର ସମାଲୋଚନା ଓଡ଼ିଆ କାବ୍ୟ-ପରମ୍ପରାରେ ଏକ ନୂତନ ଧାରା ଯାହାକୁ ଫକୀରମୋହନ ସେନାପତି, ଲକ୍ଷ୍ମୀକାନ୍ତ ମହାପାତ୍ର ଓ ଗୋଦାବରୀଶ ମହାପାତ୍ର ସମୃଦ୍ଧ କଲେ । ବ୍ୟକ୍ତିଗତ ଅଭିଜ୍ଞତା ଭିତରେ ଏ ସନ୍ଦର୍ଭରେ ଉଗ୍ରତା କିନ୍ତୁ ଆଧୁନିକ ଓଡ଼ିଆ କବିତାର ପ୍ରଧାନ ପ୍ରେରଣା ଏବଂ ଏହାର କାରୁଣ୍ୟ ଅତି ଉଚ୍ଚସ୍ୱରରେ ନ ହେଲେ ମଧ୍ୟ ଆଧୁନିକ କବିତାର ପ୍ରତ୍ୟେକ ଅଭିମୁଖ୍ୟ ଓ ପରୀକ୍ଷାରେ ସୁସ୍ପଷ୍ଟ । ଏ କଥା ଅବଶ୍ୟ ମାନିନେବାକୁ ହେବ ଯେ ସବୁକ୍ଷେତ୍ରରେ ସଂଘର୍ଷର ଅଭିଜ୍ଞତା ଆନ୍ତରିକ ନୁହେଁ ଏବଂ ଅନେକ ଜାଗାରେ ତାକୁ କବିତାର ପ୍ରଧାନ ଉପଜୀବ୍ୟ କରାଯାଇଛି ଯେହେତୁ ତାହା ହିଁ ଅନେକ ସଫଳ କବିତାର ପ୍ରେରଣା ହୋଇଛି; କିନ୍ତୁ ଏଠାରେ ଆମେ କେବଳ ଆନ୍ତରିକ ଅଭିଜ୍ଞତା-ମାନଙ୍କର ଆଲୋଚନା କରୁଛୁ ଏବଂ ଯେଉଁମାନଙ୍କର କାବ୍ୟଦୃଷ୍ଟି ଏକ ବ୍ୟକ୍ତିଗତ ଚେତନାରେ ଉଜ୍ଜ୍ୱଳ ସେହିମାନଙ୍କୁ ହିଁ ଆଖି ଆଗରେ ରଖିଛୁ । ସେମାନେ ନିଶ୍ଚୟ ମୁଷ୍ଟିମେୟ, କିନ୍ତୁ ସୌଭାଗ୍ୟବଶତଃ କାବ୍ୟିକ ପରମ୍ପରାରେ ସଂଖ୍ୟାଗରିଷ୍ଠତାର କୌଣସି ଅର୍ଥ ବା ପ୍ରଭାବ ନାହିଁ ।

ଆଧୁନିକ ଓଡ଼ିଆ କବିତାର ସମଗ୍ରକାଳ ଆଲୋଚନା କରିବା ମୋର ଉଦ୍ଦେଶ୍ୟ ନୁହେଁ । ସୁତରାଂ ସତ୍ୟବାଦୀ ଓ ସବୁଜଯୁଗ ଦେଇ କିପରି ଏ ଚେତନାର କ୍ଷୁଦ୍ରବୀଜ ଆଧୁନିକ କାଳରେ ମହାଦ୍ରୁମରେ ପରିଣତ ହେଲା, ତାହା ଏଠାରେ ପ୍ରତିପାଦନ କରାଯାଉ ନାହିଁ । ସତ କହିବାକୁ ଗଲେ ତାହା ଏକ ଅପଚେଷ୍ଟା ହେବ ଯେହେତୁ ଏକ ନିୟମ କାବ୍ୟ ଜଗତରେ କୌଣସି ଚେତନାର ବିକାଶ ଓ ପ୍ରାଣୀ ବା ଉଦ୍ଭିଦ ଜଗତରେ ଜୀବନର ବିକାଶକୁ ନିୟନ୍ତ୍ରିତ କରେ ନାହିଁ । ପୁଣି ବର୍ତ୍ତମାନର ଦୃଷ୍ଟିଭଙ୍ଗୀ ନେଇ କୌଣସି ପୂର୍ବବର୍ତ୍ତୀ ସାହିତ୍ୟର ବିଗ୍ରହ କଲାବେଳେ ପ୍ରମାଦ ଘଟିବା ସ୍ୱାଭାବିକ ଏବଂ ପୂର୍ବବର୍ତ୍ତୀ ସାହିତ୍ୟିକମାନଙ୍କର ପ୍ରେରଣାର ଭୁଲ ତର୍ଜମା କରିବା ମଧ୍ୟ ସ୍ୱାଭାବିକ । କେବଳ ଆଧୁନିକ କବିତାର ଏକ ପ୍ରଧାନ

ଉପାଦାନ ଯେ ସମ୍ପୂର୍ଣ୍ଣ ଆକସ୍ମିକ ନୁହେଁ ଓ ତା'ର ଏକ ଐତିହାସିକ ପୃଷ୍ଠଭୂମି ଥାଇପାରେ, ଏ କଥା ଚୂମ୍ବକରେ ସୂଚାଇଦେବା ହିଁ ଉଦ୍ଦେଶ୍ୟ ।

—୩—

ବ୍ୟକ୍ତି ଓ ପରିପାର୍ଶ୍ୱ ଭିତରେ ଉତ୍ତେଜିତ ସମ୍ପର୍କର ପ୍ରଧାନ ପରିଣାମ ହେଲା ବ୍ୟକ୍ତିତ୍ୱର ନିଜକୁ ଅସ୍ୱୀକାର କରିବା । ପରିପାର୍ଶ୍ୱ ଏକ ନିର୍ଦ୍ଦିଷ୍ଟ ବସ୍ତୁ ନୁହେଁ ଓ ତା ସହିତ ସଂଘର୍ଷର କୌଣସି ଭୌତିକ ପ୍ରମାଣ ନାହିଁ, ନିଜର ଚେତନଶୀଳତା ଯୋଗୁଁ ବ୍ୟକ୍ତି ବିଭିନ୍ନ ପରିସ୍ଥିତି ସହିତ ନିଜର ସମ୍ବନ୍ଧ ସ୍ଥିର କରିବାକୁ ଚେଷ୍ଟା କରେ ଏବଂ ଯେତେବେଳେ ତାହା ଶାନ୍ତ ଓ ଗ୍ରହଣୀୟ ନ ହୁଏ, ଏକ ପୃଥକ୍ ଧରଣର ସମ୍ବନ୍ଧ ପାଇଁ ବ୍ୟକ୍ତିର ମାନସିକ ପ୍ରସ୍ତୁତି ଆରମ୍ଭ ହୁଏ । ସେପରି ପ୍ରତ୍ୟେକ ଚେଷ୍ଟା ଫଳରେ ସେ ଦେଖେ ଯେ ତା ନିଜର ସଂଜ୍ଞା ଓ ପ୍ରକୃତି ବଦଳିଯାଉଛି ଏବଂ ତା ନିଜର ବ୍ୟକ୍ତିତ୍ୱ ଅନେକ ଅପ୍ରତ୍ୟାଶିତ ଗୁଣବିଶିଷ୍ଟ । "ଭଗବାନଙ୍କର ଦେହାନ୍ତ ହୋଇଗଲା"—ନିତ୍‌ସେଙ୍କର ଏହି ଉକ୍ତି ଉପରୋକ୍ତ ପ୍ରସ୍ତୁତିର ଅବଶ୍ୟମ୍ଭାବିତା ଦେଖାଇବାକୁ ଚେଷ୍ଟା କରେ । ତାଙ୍କ ମତରେ ଏଣିକି ବ୍ୟକ୍ତି ଦୈବଶକ୍ତିରେ ଆସ୍ଥା ରଖି କୌଣସି ସିଦ୍ଧାନ୍ତ ନେଇପାରିବ ନାହିଁ ଏବଂ ( ତାଙ୍କର ପ୍ରକାଶଭଙ୍ଗୀର ନାଟକୀୟତା ଓ ଆଡ଼ମ୍ବର ବାଦ୍ ଦେଇ ଯଦି ଦେଖାଯାଏ ) ଯେହେତୁ ତାକୁ ନିଜର ପ୍ରତ୍ୟେକ ସିଦ୍ଧାନ୍ତ ନିଜେ ହିଁ ନେବାକୁ ହେବ ତାକୁ ତା'ର ଅଦ୍ୟାବଧି ସୀମିତ ବ୍ୟକ୍ତିତ୍ୱର ପରିସରକୁ ବ୍ୟାପ୍ତ କରିବାକୁ ହେବ ।

[Better to have no God, better to set up desting on one's own account, better to be a fool, better to be God oneself !]

କାଳକ୍ରମେ ନିତ୍‌ସେ ନିଜର ନାଟକୀୟ ପ୍ରକାଶଭଙ୍ଗୀ ଦ୍ୱାରା ଅତି-ମାତ୍ରାରେ ଅଶାନ୍ତ ହୋଇ ଏ ତତ୍ତ୍ୱର ଯେଉଁ ବିକାଶସାଧନ କଲେ, ତାହା ଏକ ହାସ୍ୟାସ୍ପଦ ଅତିରଞ୍ଜନ ଏବଂ ଭଗବାନଙ୍କ ପ୍ରତି ତାଙ୍କର ବ୍ୟକ୍ତିଗତ ବିବାଦ ଥିଲା ପରି କେତେକ ମଣିଷଙ୍କୁ ଅତିମାନବ ଆଖ୍ୟା ଦେଇ ସେ ଭଗବାନଙ୍କ ସମକକ୍ଷ କରିବା ଦ୍ୱାରା ନିଜର ମୂଳତତ୍ତ୍ୱର ବିରୁଦ୍ଧାଚରଣ

ନିଜେ କଲେ । ଅତିମାନବରୁ (ତାହା ଯାହାଠାରେ ଥାଉ ନା କାହିଁକି) ବ୍ୟକ୍ତିତ୍ୱର ଉତ୍କର୍ଷଠାରୁ ପୃଥକ୍ ଏବଂ ତଦ୍ଦ୍ୱାରା ଅନ୍ୟମାନଙ୍କର ବ୍ୟକ୍ତିତ୍ୱର ବିକାଶକୁ ଅସ୍ୱୀକାର କରାଯାଏ । ତେବେ ନିତ୍ସେଙ୍କ ଦର୍ଶନ ଏଠାରେ ଆଲୋଚ୍ୟ ନୁହେଁ ଏବଂ ଆଧୁନିକ ସାହିତ୍ୟର ଅଭିମୁଖ୍ୟର ଦୃଷ୍ଟାନ୍ତ ଦେବା ପାଇଁ ହିଁ ତାଙ୍କର ପ୍ରସଙ୍ଗ ଅବତାରଣା କରାଗଲା । ଆଧୁନିକ ସାହିତ୍ୟିକ ଅଭି-ମୁଖ୍ୟରେ ବ୍ୟକ୍ତିତ୍ୱର ପ୍ରାଧାନ୍ୟ ଯୋଗୁଁ ତା'ର ଅନୁଶୀଳନ ସବୁ ଦେଶର ସାହିତ୍ୟରେ କରାଗଲା ଏବଂ ତା'ର ପରିଣାମ ଯଦିଓ ସର୍ବଦା ସୁପାଠ୍ୟ ସାହିତ୍ୟ ନୁହେଁ, ତାକୁ ମନେରଖିଲେ ଅନ୍ତତଃ କେତେକ କ୍ଷେତ୍ରରେ ଲେଖକର ଉଦ୍ଦେଶ୍ୟ ବୁଝିବା ସହଜସାଧ୍ୟ ହୋଇପଡ଼ିବ ।

ଏହାର ଅର୍ଥ ନୁହେଁ ଯେ ବ୍ୟକ୍ତି ନିଜ ପକ୍ଷରେ ନିତ୍ୟନୂତନ ହୋଇ ରହିବ; କିନ୍ତୁ ଏ କଥା ସତ ଯେ ସେ ତା'ର ବ୍ୟକ୍ତିତ୍ୱର ଯେଉଁ ସଂଜ୍ଞା ପାଇବ ତାହା ତା'ର ପରିସ୍ଥିତି ଦ୍ୱାରା ପୂରାପୂରି ନିର୍ଣ୍ଣୀତ ନୁହେଁ, ବରଂ ତାହା ପରିସ୍ଥିତିକୁ ଜିଜ୍ଞାସା କରେ, ତାକୁ ପ୍ରଭାବିତ କରିବାକୁ ଚେଷ୍ଟା କରେ ଓ ତା ସହିତ ନୈରାଶ୍ୟଜନକ ସମ୍ପର୍କ ଯୋଗୁଁ ଅବସାଦ ଅନୁଭବ କରେ । ସେ ଯାହାହେଲେ ବି ସେ ବ୍ୟକ୍ତିତ୍ୱର କାବ୍ୟିକ ପ୍ରକାଶ କାଳର ଧ୍ୱଂସକାରିତା ପ୍ରତି ଏକ ଆହ୍ୱାନ ଏବଂ ବ୍ୟକ୍ତିଗତ ସ୍ତରରେ ସେ ଆହ୍ୱାନ ଯେ ସନ୍ତୋଷବିଧାନ କରେ, ଆନନ୍ଦ ଦିଏ ଏହା ନିଃସନ୍ଦେହ; ବରଂ ପରିସ୍ଥିତିକୁ ଜିଜ୍ଞାସା କରିବା ଦ୍ୱାରା ସେ ଆହ୍ୱାନ ଆହୁରି ଶକ୍ତିଶାଳୀ ଜଣା-ପଡ଼େ; ସୁତରାଂ ଆହୁରି ଅଧିକ ଆନନ୍ଦ ଦିଏ । ଅତଏବ ନୈରାଶ୍ୟ, କ୍ଷୋଭ ଓ ଗ୍ଲାନିଜର୍ଜ୍ଜରିତ ଓଡ଼ିଆ କବିତା ସମ୍ଭବତଃ କବିର ଏକ ମାନସିକ ଗୃହିଦା ମେଣ୍ଟାଉଛି । ବାକି ପାଠକମାନେ ଯେ ଦୁଃଖପୂର୍ଣ୍ଣ ଅଭିଜ୍ଞତା ବା ଘଟଣାର କାବ୍ୟିକ ଉପଲବ୍ଧି ଦ୍ୱାରା ଆନନ୍ଦ ପାଇପାରନ୍ତି, ସେକଥା ଆଗରୁ ସୂଚାଇ ଦିଆଯାଇଛି । କାବ୍ୟିକ ଅଭିଜ୍ଞତା ସୁଖପୂର୍ଣ୍ଣ କି ଦୁଃଖପୂର୍ଣ୍ଣ ସେଥିରେ କିଛି ଯାଏ ଆସେ ନାହିଁ, ଉପଲବ୍ଧିରେ ଆନନ୍ଦ ମିଳେ ଯଦି ସେ ଅଭିଜ୍ଞତାକୁ ପାଠକ ନିଜସ୍ୱ କରିପକାଏ । ଏହା ଖୁବ୍ ଆଚମ୍ବିତ କଥା ନୁହେଁ, ଏବଂ "ତାଙ୍କ ଅକ୍ଷିରୁ ଆନନ୍ଦାଶ୍ରୁ ବୋହିଗଲା" ପରି ଅଭିବ୍ୟକ୍ତି ଆମ ଭାଷାରେ ସ୍ୱାଭାବିକ ଭାବେ ବ୍ୟବହୃତ ହୁଏ । ଦୁଃଖରେ ପୁଲକିତ ହେବାଟି ମଧ୍ୟ ସେହିପରି ସ୍ୱାଭାବିକ ଅଭିଜ୍ଞତା ଓ ଅଭିବ୍ୟକ୍ତି । ସେଠାରେ ବ୍ୟକ୍ତି ନିଜର ସୀମା ଅତିକ୍ରମ କରି ଏକ ସାର୍ବଜନୀନ ଓ ଆନ୍ତରିକ

ଅଭିଜ୍ଞତାରେ ମିଶିଯାଏ ଏବଂ ସମ୍ଭବତଃ ତଦ୍ଦ୍ୱାରା ତା'ର ଢକ୍‌ଦ୍ୱାର୍ ନିଃସଙ୍ଗତା ଦୂରୀଭୂତ ହେଉଥିବାରୁ ସେ ପୁଲକିତ ହୋଇଥାଏ । ମତେ ଯଦି ଆଧୁନିକ କବିତାରୁ ଗୋଟିଏ ଉଦାହରଣ ଦେବାକୁ ନିହାତି ବାଧ୍ୟ କରାଯିବ, ମୁଁ ଗୁରୁପ୍ରସାଦ ମହାନ୍ତିଙ୍କର 'କାଳପୁରୁଷ'ର ଉଦ୍ଧୃତାଂଶର ନଜିର୍ ଦେବାକୁ ସାହସ କରିବି ।

---

# ମୋ ଦୃଷ୍ଟିରେ
# ସାଂପ୍ରତିକ ଓଡ଼ିଆ ସାହିତ୍ୟରେ
# କବି ଓ କବିତା

**ଏକାଦଶୀ ପ୍ରସାଦ ବୋଇତାଇ**

ସବୁବେଳେ ଆମ ସାଙ୍ଗରେ ରହି ଯେ ଆମର ହିତସାଧନ କରୁଛି ସେ ହେଲା ସାହିତ୍ୟ । ଓଡ଼ିଆ ଭାଷାରେ ଲେଖାଯାଉଥିବା ସାହିତ୍ୟ ହିଁ ଓଡ଼ିଆ ସାହିତ୍ୟ । ସାଂପ୍ରତିକ ଅର୍ଥ ବର୍ତ୍ତମାନ । ବର୍ତ୍ତମାନର ଯୁଗଯନ୍ତ୍ରଣା, ଉପସ୍ଥିତ ମନର ଚିନ୍ତା ଚେତନାକୁ ସ୍ପର୍ଶ କରି ଓଡ଼ିଆ ଭାଷାରେ ଲେଖାଯାଉଥିବା ସାହିତ୍ୟ ହେଉଛି ସାଂପ୍ରତିକ ଓଡ଼ିଆ ସାହିତ୍ୟ । ଆଉ ବର୍ତ୍ତମାନ ଦେଖାଦେଇଥିବା ଓଡ଼ିଆ ସାହିତ୍ୟରେ ଅଗଣିତ କବି ଓ ସେମାନଙ୍କର କବିତା ।

ପ୍ରକୃତ ପକ୍ଷରେ କବି କହିଲେ ଆମେ ବୁଝୁ ଯାହାର ତିନୋଟି ଆଖି ଅଛି । ସାଧାରଣ ମଣିଷ ତା'ର ଦୁଇଟି ଆଖିରେ ଯାହା ଦେଖେ, ଜଣେ କବି ତା'ର ଦୁଇଟି ଆଖିରେ ତାହା ହିଁ ଦେଖେ, କିନ୍ତୁ ସେ ତା'ର ତୃତୀୟ ଆଖିରେ ସାଧାରଣ ମଣିଷ ନ ଦେଖିପାରୁଥିବା ଜିନିଷକୁ ହିଁ ଦେଖିପାରେ । ତାହା ତାହାର ଜ୍ଞାନନେତ୍ର ବା ଦିବ୍ୟଚକ୍ଷୁ । ସାଧାରଣ ମଣିଷ ପ୍ରତ୍ୟେକ ଜିନିଷର ବହିରାବରଣଟାକୁ ହିଁ ଦେଖେ । କିନ୍ତୁ ଜଣେ ଦିବ୍ୟଦ୍ରଷ୍ଟା କବି ପ୍ରତ୍ୟେକ ବସ୍ତୁର ବାହ୍ୟ ରୂପକୁ ଭେଦକରି ତା'ର ଅନ୍ତର୍ନିହିତ ଗୂଢ଼ତତ୍ତ୍ୱକୁ ଆବିଷ୍କାର କରି ଜନସମାଜ ଆଗରେ ଉପସ୍ଥାପନ କରି ନିଜର ତଥା ପାରିପାର୍ଶ୍ୱିକ ସମାଜର ହିତସାଧନ କରେ । କବି ଜୟକୃଷ୍ଣ ମିଶ୍ରଙ୍କ ଭାଷାରେ :

**ଖୋଲି ଆଖିକୁ ଯା ପରବେ ବନ,**
**ତହିଁ ସେ ଦେଖଇ ନନ୍ଦନ କାନନ ।**

ଖାଲି କାନକୁ ଯା ବନପକ୍ଷୀ ରବ,
ଫୁଲ ଭିଡ଼ି ଯାର ସଂସାର ବିଭବ ।
କୁସୁମିତ ଲତା ଦୋଳେ ଯା ପବନେ,
ସୁରସୁନ୍ଦରୀ ସେ ହସଇ ନର୍ତ୍ତନେ ।
ଅସାର ଯା କିଛି ଦିଶଇ ରସାର,
ଘବୃତକୁ ଚଲ୍ଲ ଶାଶ୍ୱତ ସଂସାର ।

ବଳରେ ମର ସଂସାରରେ ସ୍ୱର୍ଗର ପାରିଜାତ ଫୁଟାଇବା ପାଇଁ ପ୍ରୟାସୀ ହେଉଥିଲା ଏବଂ ତାହା ହିଁ ଥିଲା ସେ ସମୟର, ସେ ସମାଜର ଚିନ୍ତା ଓ ଚେତନା । କିନ୍ତୁ ଆଜି ? ଆଜିର ଯାନ୍ତ୍ରିକ ଯୁଗରେ ଯେତେବେଳେ ପ୍ରତ୍ୟେକ ମଣିଷର ମନ ଯନ୍ତ୍ରଣାରେ ବହୁଧା ହୋଇ ଭାଙ୍ଗିପଡ଼ୁଛି, ଆଜି ଯେତେ-ବେଳେ କେବଳ ବେଗ ହିଁ ଉନ୍ନତିର ଲକ୍ଷଣ ବୋଲି ଧରି ନିଆଯାଇଛି, ଆଜି ଯେତେବେଳେ ମଣିଷର ମନ ଦ୍ୱନ୍ଦ୍ୱ ମଧ୍ୟରେ ହିଁ ସୀମାବଦ୍ଧ, ଆଜିର ଯୁଗ ଯନ୍ତ୍ରଣାରେ ପ୍ରତ୍ୟେକ ମଣିଷ ଯେତେବେଳେ ଉତ୍କ୍ରାନ୍ତ, ସେତେବେଳେ କଳ୍ପନା ପରିବର୍ତ୍ତେ ବାସ୍ତବତା ହିଁ ଆମ୍ଭମାନଙ୍କର ଅଧିକ କାମ୍ୟ, ଅଧିକ ଆଦରଣୀୟ, ଅଧିକ ହିତକର । ଆଉ ସେଥିପାଇଁ ଆଜି କେବଳ ଓଡ଼ିଆ ସାହିତ୍ୟରେ କାହିଁକି, ପ୍ରତ୍ୟେକ ସାହିତ୍ୟରେ କବିମାନଙ୍କର ସଂଖ୍ୟା ଅଧିକ । ବର୍ତ୍ତମାନ ଯୁଗର ପ୍ରତ୍ୟେକ ଲୋକ ତା'ର ମନର ଆବେଗକୁ ଭାଷାରେ, କବିତାରେ ପ୍ରକାଶ କରିବାକୁ ଚେଷ୍ଟିତ । ସେ ତା'ର ନିଜ ମନର ଯନ୍ତ୍ରଣାକୁ ଭାଷାରେ ପ୍ରକାଶ କରି କିଛିଟା ଆଶ୍ୱସ୍ତି ଲାଭ କରିବାକୁ ଚାହେଁ; କିନ୍ତୁ ଗୋଟିଏ କଥା ଲକ୍ଷ୍ୟ କରିବାର କଥା ଯେ ବର୍ତ୍ତମାନ ଓଡ଼ିଆ ସାହିତ୍ୟରେ ଯେତେ ଜଣ କବି କବିତା ଲେଖାଲେଖି କରୁଛନ୍ତି ତା' ମଧ୍ୟରୁ ବହୁ ଅକବି କବି ନାମରେ ପରିଗଣିତ ହେଉଛନ୍ତି କହିଲେ ଆଦୌ ଦୋଷାବହ ହେବ ନାହିଁ । ଥିଏଟର ପାର୍ଟିରେ ମେକ ଅପ୍ ନେଇ ଯେମିତି ପ୍ରକୃତ ପକ୍ଷରେ ଯିଏ ଯାହା ନୁହେଁ, ତାହା ଦର୍ଶକମାନଙ୍କ ଆଗରେ ଦର୍ଶାଇ-ବାକୁ ପଡ଼େ କିମ୍ବା ସ୍ୱଳ୍ପକେଶଧାରିଣୀ ଯେମିତି କୃତ୍ରିମ କେଶ ଲଗାଇ ଜୁଡ଼ା ପାରି ପଦାରେ ଦେଖେଇ ହୁଏ, ସେମିତି କେତେକ ଅକବି ସାଂପ୍ରତିକ ଓଡ଼ିଆ ସାହିତ୍ୟରେ କବି ବୋଲି ଜଣେଇ ହେବାର ଚେଷ୍ଟା କରୁଛନ୍ତି । ଆମେ ଯାହା ନୁହଁ ପଦାରେ ତାହା ଦେଖେଇ ହେବା ଯଦିଓ ମଣିଷର ଏକ ଜନ୍ମଗତ ଅଭ୍ୟାସ, ତଥାପି ସାହିତ୍ୟକ୍ଷେତ୍ରରେ ଏ ପ୍ରକାର ଦେଖେଇ ହେବାର ଇଚ୍ଛାଟା ଆଦୌ ଅଭିନନ୍ଦନୀୟ ନୁହଁ । ଏହାଦ୍ୱାରା ନା ନିଜର

ଉନ୍ନତି ହେବ ନା ସମାଜର ଉନ୍ନତି ହେବ ! ସାଂପ୍ରତିକ ଓଡ଼ିଆ ସାହିତ୍ୟରେ ମୁଷ୍ଟିମେୟ କେତେଜଣଙ୍କୁ ଛାଡ଼ିଦେଲେ ଅଧିକାଂଶ ନାୟିକାଙ୍କ ଏହି ପର୍ଯ୍ୟାୟଭୁକ୍ତ ବୋଲି ମନେହୁଏ । ଅବଶ୍ୟ ପୁରୁଷ ଅକବି ଯେ ନାହାନ୍ତି ତାହା ନୁହେଁ; କିନ୍ତୁ ନାରୀ ଅକବିମାନଙ୍କ ସଂଖ୍ୟା ଅଧିକ । ଆହୁରି ପୁଣି ଚିନ୍ତା କରିବାର ବିଷୟ ଯେ—ଏହି ପ୍ରକାର ଅକବି ସୃଷ୍ଟି କରିବାରେ ପ୍ରତ୍ୟକ୍ଷ ଭାବରେ ସାହାଯ୍ୟ କରୁଛି ଏକ ପ୍ରତିଷ୍ଠିତ ସମ୍ବାଦପତ୍ରର ସାହିତ୍ୟ-ପୃଷ୍ଠା ।

ଅକବିମାନଙ୍କୁ ଛାଡ଼ିଦେଲେ ଆମେ ଯେତେବେଳେ କବିମାନଙ୍କ ମଧ୍ୟରେ ପ୍ରବେଶ କରୁ ସେତେବେଳେ ଦେଖିବାକୁ ପାଉଁ ବିଭିନ୍ନ ଗୋଷ୍ଠୀ-ଚେତନା । ଅନାମ, ଅଣାକାର, ଅବୁଝା, ଅ[illegible], ଅକବିତା ପ୍ରଭୃତି ଅକବିଙ୍କ ଗୋଷ୍ଠୀଠାରୁ ଆରମ୍ଭ କରି ଙ, ଞ, ଲୁ, ଡାଗୀ, ନକ୍ଷତ୍ର, ବିପ୍ଲବୀ, ହିପ୍ପିଗୋଷ୍ଠୀ ପର୍ଯ୍ୟନ୍ତ ବହୁ ସାହିତ୍ୟଗୋଷ୍ଠୀ ଏବେ ଦୃଷ୍ଟିଗୋଚର ହୁଏ । ସର୍ବୋପରି ଏକ ଉଚ୍ଚ ବେତନଶ୍ରେଣୀଗୋଷ୍ଠୀ ନାମକ ଆଉ ଏକ ଗୋଷ୍ଠୀ ଦେଖିବାକୁ ମିଳେ । ଏ ଗୋଷ୍ଠୀର ସ୍ୱରୂପ ଅନ୍ୟ ଗୋଷ୍ଠୀମାନଙ୍କଠାରୁ ସମ୍ପୂର୍ଣ୍ଣ ତଫାତ୍ । ଅନ୍ୟ ଗୋଷ୍ଠୀମାନଙ୍କ ପରି ଏମାନଙ୍କର ଗୋଷ୍ଠୀଚେତନା ନାହିଁ କିମ୍ବା ଏମାନଙ୍କର ଗୋଷ୍ଠୀର ଚିନ୍ତାଧାରା ବିଷୟରେ କିଛି ଧାରା-ବାହିକ ନିୟମ ଲିପିବଦ୍ଧ ହୋଇ ନାହିଁ । କେବଳ ଏତିକି ଯେ ସେମାନେ ବାଛି ବାଛି ପରସ୍ପର ପରସ୍ପରର ପ୍ରଶଂସା ହିଁ କେବଳ କରନ୍ତି ଲେଖା ମାଧ୍ୟମରେ । ଏକ ଅର୍ଥରେ ଗୋଷ୍ଠୀ-ଚେତନା ଉଚିତ୍ । କୌଣସି ଏକ ବଳିଷ୍ଠ ଚିନ୍ତାଧାରାକୁ ସମାଜ ଆଗରେ ଏକୁଟିଆ ପ୍ରତିପାଦନ କରିବା ଅପେକ୍ଷା ଗୋଟିଏ ଗୋଷ୍ଠୀ ତାହାର ମତବାଦକୁ ସୁଦୃଢ଼ ଭାବରେ ଉପ-ସ୍ଥାପିତ କରିପାରିବ । ଏହି ଦୃଷ୍ଟିରୁ ସତ୍ୟବାଦୀର ପଞ୍ଚସଖାଗୋଷ୍ଠୀ ଆମ୍ଭମାନଙ୍କର ଆଦର୍ଶମୟ । କିନ୍ତୁ ସାଂପ୍ରତିକ ଓଡ଼ିଆ ସାହିତ୍ୟରେ ଦେଖା-ଦେଇଥିବା ବିଭିନ୍ନ ସାହିତ୍ୟିକଗୋଷ୍ଠୀଚେତନା ଉପରେ ଦୃଷ୍ଟି ନିକ୍ଷେପ କଲେ ଦେଖାଯାଏ ଯେ କେତେକ ଗୋଷ୍ଠୀ ଏକ ଏକ ଅଦ୍ଭୁତ ଖିଆଲରେ ପର୍ଯ୍ୟବେସିତ ହୋଇଥିବା ଗୋଷ୍ଠୀ । କିଏ କହିଲେଣି ଆମେ କାୟମନ-ବାକ୍ୟରେ ଲଙ୍ଗଳା ହୋଇ ବୁଲିବୁ ତ, କିଏ କହିଲେଣି ଆମେ ଖାଲି ହାଣିବୁ, କାଟିବୁ, ଲୁଣ୍ଠତରାଜ କରିବୁ, ରକ୍ତନଦୀ ବୁହାଇବୁ । ଚିନ୍ତା କରିବାର ବିଷୟ ଏହି ଯେ ଏସବୁ ଚେତନା ସାହିତ୍ୟରେ ଖାଲି ଗୋଟାଏ ଚମକ ଆଣି ନିଜ ପ୍ରତି ଅନ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରିବାର ଏକ ଏକ

ଫନ୍ଦି । କିନ୍ତୁ ଏହା ଖାଲି ଅସମୟ ଲେଖାଏଁ ଖରାଦିନିଆ ବର୍ଷା । କ୍ଷଣକରେ ଦେଖା ଦେଇ କ୍ଷଣକରେ ଚାଲିଯିବା କଥା; ପାଣିରେ ଗାର ପକାଇ ତା'ର ସ୍ଥିତି ବିଷୟରେ ଚିନ୍ତା କରିବା କଥା । ଏହା ବ୍ୟତୀତ କେତେକ କବି ଅଛନ୍ତି, ଯେଉଁମାନଙ୍କର କୌଣସି ଗୋଷ୍ଠୀ-ଚେତନାରେ ବିଶ୍ୱାସୀ ନ ଥିଲେ ବି କେବଳ ଗୋଷ୍ଠୀ ମାଧ୍ୟମରେ ନିଜର ନାମକୁ ପଦାରେ ପ୍ରକାଶ କରାଇବାର ଲାଳସା ତାଙ୍କୁ ଗୋଷ୍ଠୀଭୁକ୍ତ କରାଇଛି, ଯାହାଦ୍ୱାରା କି ସେମାନେ ନିଜର ସ୍ୱକୀୟ ଚିନ୍ତାଧାରାକୁ ବଳି ଦେଇ ଗୋଷ୍ଠୀ ଚେତନାଭିମୁଖୀ କବିତା ଲେଖିବାକୁ ବାଧ୍ୟ ହୁଅନ୍ତି—ଯେମିତି ରାଜନୀତିକ ଦଳରେ ନିଜର ମତକୁ ଜଳାଞ୍ଜଳି ଦେଇ କେତେକ ରାଜନୈତିକ ଲୋକ ଟିକେଟ ପାଇ ଇଲେକ୍‌ସନରେ ଠିଆ ହେବା ଉଦ୍ଦେଶ୍ୟରେ ଦଳର ମତକୁ (ଅନ୍ୟାୟ ହେଲେ ବି) ମାନି ନେଇଥାନ୍ତି । ଏହାଦ୍ୱାରା ଦଳର ବା ଗୋଷ୍ଠୀର ତ ଉନ୍ନତି ହେବା ଦୂରର କଥା, ନିଜର କିମ୍ବା ସମାଜର ବା ସାହିତ୍ୟର କାହାରି ହେଲେ ହିତସାଧନ ହୋଇପାରେ ନା ।

ସାଂପ୍ରତିକ ଓଡ଼ିଆ କବିତାରେ ଆଉ ଏକ ଉଲ୍ଲେଖନୀୟ ବିଷୟ ହେଉଛି କବିତାରେ ଦୁର୍ବୋଧତା, ଅବୋଧତା ଓ ଅଶ୍ଳୀଳତା । ଦୁର୍ବୋଧତା ଓ ଅବୋଧତା ପୁଣି ଦୁଇ ଦୁଇ ପ୍ରକାର । ଭାଷାଗତ ଓ ଭାବଗତ । ଯେଉଁମାନେ କିଛି କିଛି ସାହିତ୍ୟ ଚର୍ଚ୍ଚା କରୁଛନ୍ତି ସେମାନେ ନିଶ୍ଚୟ ଅନୁଭବ କରୁଥିବେ ଯେ ଆଜିର ଓଡ଼ିଆ ସାହିତ୍ୟରେ କେତେଜଣ କବି ନୂତନ ପରୀକ୍ଷା ନିରୀକ୍ଷା ବା ଆଧୁନିକ କବିତା ନାମରେ ଉଭୟ ଭାଷା ଓ ଭାବରେ ଆଉ କେହି କେହି କେବଳ ଭାଷା ବା କେବଳ ଭାବରେ ଦୁର୍ବୋଧତା ବା ଅବୋଧତା ଭର୍ତ୍ତି କରିବାରେ ବ୍ୟସ୍ତ । ଏହି ଦୁର୍ବୋଧତା, ଅବୋଧତା ଓ ଅଶ୍ଳୀଳତା ନେଇ ବିଭିନ୍ନ ସାହିତ୍ୟ ଆସରରେ, ରାସ୍ତାଘାଟରେ ସାହିତ୍ୟିକମାନଙ୍କ ମେଳରେ ନାନା ବାଦାନୁବାଦ ସୃଷ୍ଟି ହେଉଥିଲେ ମଧ୍ୟ ରାଜାଙ୍କର ଅଦୃଶ୍ୟ ପୋଷାକଜନିତ ଲଙ୍ଗଳା ହେବା ଖବରଟା କେହି ପ୍ରକାଶ୍ୟରେ କହିବାକୁ ରାଜି ନୁହନ୍ତି । ସତ୍‌ସାହସର ଅଭାବ ଏହାର କାରଣ ନୁହେଁ । କାରଣ ହେଉଛି ଆଧୁନିକ କବିତା ନାମରେ ସେମାନେ ଅବୋଧ ବା ଦୁର୍ବୋଧ କବିତା ଲେଖି ଏହି ଅବୋଧ ବା ଦୁର୍ବୋଧ ଜନନେତାଙ୍କଠାରୁ ଯେତେବେଳେ ବା···ହା···ବା ପାଇସାରି କବି ହିସାବରେ ପ୍ରତିଷ୍ଠିତ ହୋଇ ସାରିଲେଣି ବୋଲି ଧରିନିଆଯାଉଛି, ଯେତେବେଳେ ତାଙ୍କ ବିରୋଧରେ ସ୍ୱର ଉତ୍ତୋଳନ କଲେ ସ୍ୱର ଉତ୍ତୋଳନ କରୁଥିବା ବ୍ୟକ୍ତିର ଜ୍ଞାନର ଆଙ୍କୁଡ଼ି

ସେ ସମସ୍ତ କବିମାନଙ୍କର ସାହିତ୍ୟିକ ଜ୍ଞାନର ଶିଖରକୁ ଠିକ୍ ଭାବରେ ସ୍ପର୍ଶ କରିପାରୁ ନାହାଁ ବୋଲି ଧରିନିଆଯିବ । ଯାହା ହେଉ, ସୁଖର କଥା ଯେ ଅନେକ ଦିନ ତଳେ କବି ଘାପଦ୍ଧ ମିଶ୍ର ଜୀବନାଭଙ୍ଗରେ ଧାରାବାହିକ ଭାବେ ନିଜର ତଥା ଅନ୍ୟ କେତେଜଣ କବିଙ୍କର ସାହିତ୍ୟ ସୃଷ୍ଟିକୁ ବୁଝାଇବାକୁ ଚେଷ୍ଟା କରିଥିଲେ । ସାହିତ୍ୟିକ ଜନତା ତାହା କପରି ଭାବରେ ଗ୍ରହଣ କଲେ, ତାହା ସେହି ଜନତା ହିଁ ଜାଣନ୍ତି । ମୋଟ ଉପରେ କହିବାର କଥା, ଯେତେବେଳେ କବିତାରେ ବ୍ୟବହାର କରାଯାଉଥିବା ରୂପକଳ୍ପଗୁଡ଼ିକ ଆତ୍ମକେନ୍ଦ୍ରିକ ହୋଇ ଯାଉଛନ୍ତି, ସେତେବେଳେ କବିତା ଅବୋଧ ହେବା ସ୍ୱାଭାବିକ । ଏସବୁ କ୍ଷେତ୍ରରେ କବି ନିଜକୁ ପାଠକମାନଙ୍କ ସହିତ ସାମିଲ କରିପାରେ ନା, ଯାହା ଫଳରେ ସେ ସମାଲୋଚନାର ପାତ୍ର ହୁଏ ।

ଆଉ କେତେକ ଗୋଷ୍ଠୀର କବି ଆଧୁନିକ ଓଡ଼ିଆ କବିତା ନାମରେ କେବଳ ଅଶ୍ଳୀଳତା ପ୍ରକାଶ କରିବାରେ ବ୍ୟସ୍ତ । ସେମାନଙ୍କ ମତରେ ସେମାନେ କିଛି ନୂଆ ସୃଷ୍ଟି କରିବାକୁ ଚାହାନ୍ତି, ପରମ୍ପରାକୁ ଭାଙ୍ଗି ଦେବାକୁ ଚାହାଁନ୍ତି ; ଅଶ୍ଳୀଳ ଶବ୍ଦଟାକୁ ଅଭିଧାନରୁ ଉଠେଇ ଦେବାକୁ ଚାହାଁନ୍ତି । ଲଙ୍ଗଳା ହେବା ଅର୍ଥ ଯଦି ନୂଆ ହୁଏ, ଆଧୁନିକ ସଭ୍ୟସମାଜରୁ ପୁରାତନ ପ୍ରସ୍ତରଯୁଗକୁ ଫେରିଯିବା ଯଦି ନୂଆ ସୃଷ୍ଟି ହୁଏ, ଲୁଗା ଜାମା ପିନ୍ଧି ସମାଜରେ ଗତି କରୁଥିବା ବୟସ୍କ ଲୋକମାନେ ଶେଯରେ ଶୋଇଥିବା ଲଙ୍ଗଳା ଶିଶୁ ଅବସ୍ଥାକୁ ଫେରିଯିବା ଯଦି ଆଧୁନିକତା ବୋଲି ଧରାଯାଏ, ଯେଉଁ ବାଟ ଦେଇ ଆମେ ଗତି କରି ଆସିଛୁ, ସେଇ ବାଟ ଦେଇଁ ଆମର ପ୍ରାଥମିକ ଅବସ୍ଥାକୁ ପ୍ରତ୍ୟାବର୍ତ୍ତନ କରିବା ଯଦି ଆମର ଉନ୍ନତି ବୋଲି କୁହାଯାଏ, ତାହାହେଲେ ଅଶ୍ଳୀଳତା ଏକ ନୂଆ ସୃଷ୍ଟି ବୋଲି କହିବା କିଛି ଭୁଲ ନୁହେଁ । ଏକଥା ହୁଏତ ସତ ଯେ କୌଣସି ଶବ୍ଦକୁ ଅଶ୍ଳୀଳ ବୋଲି ଧରିବା ଭୁଲ ; କିନ୍ତୁ ଶବ୍ଦ ସାଙ୍ଗରେ ଅଶ୍ଳୀଳ ଭାବରେ ସମ୍ବନ୍ଧର ହିଁ ଅଶ୍ଳୀଳତା ପ୍ରକାଶ କରେ । ମୋଟ ଉପରେ ଲେଖାରେ ସ୍ଥଳବିଶେଷରେ ଏବଂ ଅର୍ଥବିଶେଷରେ ସାଧାରଣରେ ବ୍ୟବହାର କରାଯାଉ ନ ଥିବା ଶବ୍ଦ ହୁଏତ ବ୍ୟବହାର କରାଯାଇପାରେ ; କିନ୍ତୁ ଭାବରେ ଅଶ୍ଳୀଳତା ପ୍ରକାଶ କରିବା ଦ୍ୱାରା କବିତାର ରସାତ୍ମକ ମୂଲ୍ୟ କ୍ଷୁଣ୍ଣ ହୁଏ, ଯେମିତି ରାସ୍ତାରେ ବୁଲୁଥିବା କୌଣସି ଲଙ୍ଗଳା ଲୋକକୁ ଦେଖି ଆମ ମନରେ କୌଣସି ଭାବାନ୍ତର ସୃଷ୍ଟି ହୁଏ ନା କିମ୍ବା ଦୋକାନରେ ବିକ୍ରୀ ହେଉଥିବା କୌଣସି ସରସ୍ୱତୀ ମୂର୍ତ୍ତି ବା ଫଟୋକୁ ଦେଖି କୌଣସି ଭକ୍ତିଭାବ ଆସେ ନା

ଅଥଚ ଦେହରେ ଆବରଣ ଥିବା କୌଣସି ନାରୀ ପ୍ରତି ଆମର ମନ ଆକର୍ଷିତ ହୁଏ ଓ ନାନା ବେଶରେ ସଜ୍ଜିତ ହୋଇଥିବା ଦେବୀପ୍ରତିମା ପ୍ରତି ମନରେ ସ୍ୱତଃ ଭକ୍ତି ଆସେ । ଏହିସବୁ ଦୃଷ୍ଟିରୁ ଆମେ ଯେମିତି ଖାଇବା ପାଇଁ ବଞ୍ଚିବା ଉଚିତ ନୁହଁ, କିନ୍ତୁ ବଞ୍ଚିବା ପାଇଁ ଖାଇବା ଉଚିତ; ସେମିତି ଆମର ଲେଖାରେ ହୁଏ ତ ଅଶ୍ଳୀଳତା ପ୍ରକାଶିତ ହୋଇପାରେ; କିନ୍ତୁ ଅଶ୍ଳୀଳତା ପ୍ରକାଶ ପାଇଁ ଆମର ଲେଖିବା ଉଚିତ ନୁହଁ କିମ୍ବା ଆମର ଲେଖା ଅଶ୍ଳୀଳସର୍ବସ୍ୱ ହେବା ଉଚିତ୍ ନୁହଁ । ବୟସନ୍ଧିବିଶେଷରେ ସମସ୍ତଙ୍କ ମନରେ କିଛି ନା କିଛି ଅଶ୍ଳୀଳତାର ଚିନ୍ତା ଆସେ । ତାକୁ ତ ଆମେ ମନରୁ ବାଦ ଦେଇ ପାରିବା ନି ! କଥା ହେଉଛି, ତାକୁ ଆମେ କିପରି ଭାବରେ ଆବରଣ ଦେଇ ପ୍ରକାଶ କରିବାକୁ ପଡ଼ିବ ଯାହାଦ୍ୱାରା କି ତଥା-କଥିତ ଆଦିମ ଯୁଗର ଅସଭ୍ୟତା ବା ଅଶ୍ଳୀଳତା ବାହାରକୁ ଦେଖା-ଯିବ ନି । ଯେପରି ଶର୍କରା ଓ ସ୍ନେହଜାତୀୟ ଖାଦ୍ୟ ବା ଦୁଗ୍ଧ ଓ ଫଳରସ ଜାତୀୟ ପାନୀୟ ମଧ୍ୟରେ ପୁଷ୍ଟିସାର ରୂପକ ଉପାଦେୟ ବସ୍ତୁର ଆବରଣ ଭିତରେ ମଳ ଓ ପରିସ୍ରା ରୂପକ ଅଖାଦ୍ୟ ଓ ଅରୁଚିପୂର୍ଣ୍ଣ ପଦାର୍ଥମାନ ଆତ୍ମଗୋପନ କରିଥାନ୍ତି, ସେହିପରି ଆମର ଅଶ୍ଳୀଳ ଚିନ୍ତାଗୁଡ଼ିକ ଶ୍ଳୀଳ ଭାଷାର ଆବରଣ ଭିତରେ ପ୍ରକାଶିତ ହେଲେ ତାହା ଆମକୁ ଅରୁଚିକର ବୋଧହେବ ନାହିଁ ।

ଭାଷାର ସରଳତା ଓ କଠିନତା ନିର୍ବିଶେଷରେ ଆଜିକାର ଯୁଗ-ଯନ୍ତ୍ରଣାରେ ଆଧାରିତ କବିତାଗୁଡ଼ିକ ହିଁ ସାଧାରଣ ମଣିଷର ଚିନ୍ତା ଓ ଚେତନାକୁ ସ୍ପର୍ଶ କରିବା ସ୍ୱାଭାବିକ; ଆଉ ତାହା ହିଁ ହେଉଛି ଗଣସାହିତ୍ୟ ଓ ସାଂପ୍ରତିକ ଓଡ଼ିଆ ସାହିତ୍ୟର ପ୍ରୟୋଜନୀୟ ବସ୍ତୁ ।

———

# ମୋ ଦୃଷ୍ଟିରେ

# ସାଂସ୍କୃତିକ ଓଡ଼ିଆ

# କାବ୍ୟ-ସାହିତ୍ୟରେ ଉଲଗ୍ନତା

ଅଧ୍ୟାପକ ଶ୍ରୀ ପ୍ରତାପ ଚନ୍ଦ୍ର ଦାସ

"If you would understand an author, you must understand his age."— *Goethe.*

ଯଦି ଆମେ ଜଣେ ଲେଖକର ହୃଦୟକୁ ଉପଲବ୍ଧି କରିପାରିବା, ତା'ହେଲେ ଅମେ ତତ୍କାଳୀନ ଯୁଗକୁ ହୃଦୟଙ୍ଗମ କରିପାରିବା । ଏହା ଅତି ନିଛକ ସତ କଥା । ଗେଟେଙ୍କର ଏ ଉକ୍ତି ଯଥାର୍ଥରେ ଠିକ୍ । ସାହିତ୍ୟିକର ହୃଦୟର ଦର୍ପଣ ହେଉଛି ସାହିତ୍ୟ । ସେ ଯାହା ଚିନ୍ତା କରେ, ତାହା ସାହିତ୍ୟରେ ଫୁଟାଏ । ବାସ୍ତବଜୀବନର ପ୍ରତିଛବି ହେଉଛି ସାହିତ୍ୟ । ବାସ୍ତବ ଜୀବନରେ ଯାହା ଘଟେ, ତାକୁ ଶିଳ୍ପୀ ରୂପ ଦିଏ ତା'ର ସାହିତ୍ୟ-ଶିଳ୍ପରେ । ତେବେ ସମାଜରେ ଘଟୁଥିବା କପଟ 'କୁ' ଓ 'ସୁ'ର (ଶିବ ନୁହେଁ) ପ୍ରତିବିମ୍ବ ଦେବା ଉଚିତ ସାହିତ୍ୟର ଲକ୍ଷଣ ନୁହେଁ । ନିଛକ ବାସ୍ତବତାର snap shot ସାହିତ୍ୟରେ ଅନେକ କ୍ଷେତ୍ରରେ ସ୍ୱ-ହିତ ସାଧନ କରି ନ ଥାଏ । ଯଥାର୍ଥ ସାହିତ୍ୟିକ ସାହିତ୍ୟରେ ସବୁ ସମୟରେ ସତ୍ୟ, ଶିବ, ସୁନ୍ଦରର ପ୍ରତିଷ୍ଠା କରିଥାନ୍ତି । ତେଣୁ ମାଥ୍ୟୁ ଅ଼ର୍ନୋଲଡ଼ଙ୍କ ଭାଷାରେ—"Literature is the criticism of life"ର ଯୁକ୍ତିକୁ କିଛି ପରିମାଣରେ ଖଣ୍ଡନ କରି ଓସ୍କାର ଓ୍ୱାଇଲଡ୍ କହିଛନ୍ତି—

"Literature always anticipates life, It does not copy it; but moulds it to its purpose."

( ସାହିତ୍ୟ ବାସ୍ତବ ଜୀବନର ଅପେକ୍ଷା ରଖେ । ଏହା ଯେତେବେଳେ ଯାହା ଯେମିତି ଦେଖେ, ଠିକ୍ ଅବିକଳ ସେମିତି ନକଲ କରିଦିଏ

ନାହିଁ, କିନ୍ତୁ ଏହା ନିଜର ଉଦ୍ଦେଶ୍ୟ ସାଧନ ପାଇଁ ଜୀବନକୁ ଗଢ଼ିଥାଏ । )
ବାସ୍ତବ ପ୍ରତିଚ୍ଛବିକୁ ସାହିତ୍ୟରେ ରୂପ ନ ଦେଇ ଜନର କଲ୍ୟାଣ ପାଇଁ
ବାସ୍ତବର ଚିତ୍ର ପ୍ରଦାନ କରିଥାଆନ୍ତି । ଚିତ୍ର ଓ ପ୍ରତିବିମ୍ବ (ପ୍ରତିଛବି) ଦେଖ୍ଣୁ
ଏକ ନୁହେଁ । କୌଣସି ଜାତି ଓ ବ୍ୟକ୍ତି ପକ୍ଷରେ ସାହିତ୍ୟ ହେଉଛି ତା'ର
ଅମୂଲ୍ୟ ବିଭବ ।

ସାହିତ୍ୟ ଆମ ସଂସ୍କୃତିର ପ୍ରତୀକ । ତାକୁ ସଭ୍ୟତାର ପ୍ରତୀକ
ଭାବରେ ଗ୍ରହଣ ବା ଚିତ୍ରଣ କରିବା ଠିକ୍ ହେବ ନାହିଁ । ସାହିତ୍ୟରେ
ସଂସ୍କୃତି ରହିବା ଦରକାର ; ସଭ୍ୟତା ରହିଲେ ତାହା ପ୍ରତିବିମ୍ବ ବା
ଉଲଗ୍ନ ସଭ୍ୟତାରେ ପରିଣତ ହୋଇଯାଏ । ସଭ୍ୟତାର ପ୍ରତିଛବି
ସାହିତ୍ୟରେ ରହୁ ; କିନ୍ତୁ ଏପରି ପ୍ରତିଛବି ରହିବା ଦରକାର ଯାହା କି
ମାନବଜୀବନର ମାଙ୍ଗଲ୍ୟର ଦ୍ୟୋତକ ହେବ । ସେ ସଭ୍ୟତା ଯଦି ଜନ-
କଲ୍ୟାଣ ନ କରି ଅକଲ୍ୟାଣକର ହୁଏ, ତା'ହେଲେ ସେ ସାହିତ୍ୟ-ସୃଷ୍ଟିର
ଅର୍ଥ କ'ଣ ? ତାହା ସାହିତ୍ୟ ଦରବାରରେ ହୁଏ ତ ଭଲ ପୋଷାକପତ୍ର
ପିନ୍ଧି ଆଗ ଆସନରେ ବସିପାରେ ; କିନ୍ତୁ ତା'ର ସେହି ପୋଷାକ ତଳେ
ଏକ ଜୀର୍ଣ୍ଣଶୀର୍ଣ୍ଣ ରୋଗାକ୍ରାନ୍ତ ଶରୀର ଯେ ବିଦ୍ୟମାନ ଥିବ, ଏଥିରେ ସନ୍ଦେହ
ନାହିଁ ।

ସାହିତ୍ୟରେ ଯୁଗରୁଚି ପ୍ରତିଫଳିତ ହୁଏ । ଏହା ସତ କଥା ;
ହେଲେ ସାହିତ୍ୟରେ ଯୁଗର ରୁଚି ଆଣେ କିଏ ? ଆଉ ବଦଳାଏ କିଏ ?
ସାହିତ୍ୟିକ ନା ସଭ୍ୟ ମଣିଷ ? ଯୁଗରୁଚିର ପରିବର୍ତ୍ତନର କର୍ଣ୍ଣଧାର
ହେଉଛି ସେ ଯୁଗର ସାହିତ୍ୟିକ । ସାହିତ୍ୟିକ ସୁସଂସ୍କୃତ ହେବା ଉଚିତ,
ସେ ଆଧୁନିକ ଯୁଗର ସଭ୍ୟ ମଣିଷ ହୁଅନ୍ତୁ ବା ନ ହୁଅନ୍ତୁ । ମହାର୍ଘ
ପୋଷାକ ପିନ୍ଧି ନିଜର ସଂସ୍କୃତି ସମ୍ବନ୍ଧରେ ଅଜ୍ଞ ହେବା ଯାହା, ମାନବ
କଲ୍ୟାଣକୁ ଆଖି ଆଗରେ ନ ରଖି ଆଜିର ସଭ୍ୟତାରେ ପ୍ରଭାବିତ ହୋଇ
'କୁ' ସାହିତ୍ୟ ସୃଷ୍ଟି କରିବା ସେଇଆ । ଆଜିର କେତେକ ସାହିତ୍ୟିକଙ୍କର
ଲେଖଣୀରେ ତାହା ହିଁ ହେଉଛି । ସେମାନେ ଅସ୍ୱାସ୍ଥ୍ୟକର ସାହିତ୍ୟ ସୃଷ୍ଟି
କରୁଛନ୍ତି । ସାହିତ୍ୟରେ ଉଲଗ୍ନତା ସୃଷ୍ଟି କରି ଆନନ୍ଦ ପାଇବା ଓ ଆନନ୍ଦ
ଦେବା ଏମାନଙ୍କର ଲକ୍ଷ୍ୟ । ସମାଜକୁ ବ୍ୟାଧିଗ୍ରସ୍ତ କରିବା ଯଦିଓ
ଏମାନଙ୍କର ଇଚ୍ଛା ନୁହେଁ, ତଥାପି ସେ ସାହିତ୍ୟର ପ୍ରଭାବ ସମାଜକୁ ତାହା
ଆପେ ଆପେ କରିଦେଉଛି ।

ନଗ୍ନତା ଓ ବାସ୍ତବତା ଓତଃପ୍ରୋତ ଭାବରେ ଜଡ଼ିତ ହେଲେ ହେଁ ଏକ ନୁହେଁ । ସାମ୍ପ୍ରତିକ କାଳର ବହୁ ପୂର୍ବରୁ ସାହିତ୍ୟରେ ମଧ୍ୟ ବାସ୍ତବତା ଥିଲା । ଫକୀରମୋହନ ସାହିତ୍ୟରେ ବାସ୍ତବତାର ଚିତ୍ର ଅଙ୍କନ କରିଛନ୍ତି । ନିଛକ ବାସ୍ତବତାର 'କୁ'ର ଚିତ୍ର ଆଙ୍କି, ତା'ର ମନ୍ଦ ପରିଣତି ପ୍ରତି ଜନ-ମାନସର ଘୃଣାଭାବ ଜାଗ୍ରତ କରାଇ ସେ ସେ ଆଜି ଓଡ଼ିଆ ସାହିତ୍ୟରେ ଯଶସ୍ୱୀ ହୋଇ ପାରିଛନ୍ତି । ସାହିତ୍ୟରେ ନଗ୍ନବର୍ଣ୍ଣନା ଯୁଗେ ଯୁଗେ ରହିଆସିଛି । ଯୁଗେ ଯୁଗେ ମଧ୍ୟ ସେଥିପାଇଁ ସାହିତ୍ୟିକମାନେ ସମାଲୋଚନାର କଷଟିପଥରରେ କଷା ହୋଇଛନ୍ତି । ସେମାନଙ୍କର ମହତ୍ତ୍ୱର ମୂଲ୍ୟାଙ୍କନ ମହାକାଳ କରି ଦେଇଛି । ଅଧୁନାତନ କେତେକ ଲେଖକଙ୍କ ଲେଖାରେ ଯେଉଁଭଳି ନଗ୍ନତା ପ୍ରକାଶ ପାଉଛି, ତାହା ଯେ ଆଗରୁ ନ ଥିଲା ସେ କଥା ନୁହେଁ । ଯୁଗେ ଯୁଗେ ଏହା ପରିଦୃଷ୍ଟ ।

ମହାକାଳର ସ୍ରୋତ ଭଲ ଓ ଭେଲ, ଶ୍ରେୟ ଓ ହେୟ, ଗ୍ରହଣୀୟ ଓ ବର୍ଜନୀୟ—ଏ ଉଭୟର ସମାଧାନ କରିଦେବ । ଯେଉଁମାନେ ଅତି ବାସ୍ତବତା ଉପରେ ପ୍ରାଧାନ୍ୟ ଦେଇ ନଗ୍ନତା ସୃଷ୍ଟି କରୁଛନ୍ତି, ସେମାନେ ଅନ୍ତତଃ ସେହି ନିର୍ଦ୍ଦିଷ୍ଟ ସୃଷ୍ଟି ନିମନ୍ତେ ଯେ ଶ୍ରେୟସ୍ଥଳରେ ହେୟ ଓ ପୂଜ୍ୟ ସ୍ଥଳରେ ନିନ୍ଦ୍ୟ—ଏଥିରେ ସନ୍ଦେହ ନାହିଁ । ଏହି କାରଣରୁ ଓଡ଼ିଆ ସାହିତ୍ୟରେ ଉପେନ୍ଦ୍ର ଭଞ୍ଜ ଓ ରାଧାନାଥ ଏବଂ ମାନସିଂ ଆଦି ପ୍ରତିଷ୍ଠିତ କବିମାନେ ସମାଲୋଚିତ ହୋଇଥାନ୍ତି । କିନ୍ତୁ ଫକୀରମୋହନ ବାସ୍ତବତାର ନଗ୍ନ ରୂପ ଆଙ୍କି ମଧ୍ୟ ସମାଲୋଚିତ ହୋଇ ନାହାନ୍ତି । ତା'ର କାରଣ ସେ ଯେଉଁ ସ୍ଥଳରେ 'କୁ'ର ଅତି ବାସ୍ତବ ରୂପ ପ୍ରଦାନ କରିଛନ୍ତି, ସେଠାରେ ତା'ର ମନ୍ଦ ପରିଣତି ଦର୍ଶାଇ ସମାଜକୁ ବ୍ୟାଧିମୁକ୍ତ କରାଇବାର ପ୍ରଚେଷ୍ଟା କରିଛନ୍ତି । ସେଇ କାରଣରୁ ବାସ୍ତବତାର ନଗ୍ନ-ରୂପ-ଶିଳ୍ପୀ ଫକୀରମୋହନ ଚିର ପ୍ରଶଂସ୍ୟ ।

ଓଡ଼ିଆ କାବ୍ୟସାହିତ୍ୟ ଉପରେ ଦୃକ୍‌ପାତ କଲେ ଦେଖାଯାଏ ଯେ ଉପେନ୍ଦ୍ର ଭଞ୍ଜ ଓ ରୀତିଯୁଗର ଅନ୍ୟାନ୍ୟ କବିମାନେ ରୀତିଯୁଗୀୟ ସାହିତ୍ୟିକ ଧର୍ମରେ ଦୀକ୍ଷିତ ହୋଇ ପ୍ରେମ ବର୍ଣ୍ଣନାରେ ନାରୀର ଅତି ବାସ୍ତବ ରୂପ ବର୍ଣ୍ଣନା ଦେବାରେ ନିଜକୁ ଗୌରବ ମନେ କରିଛନ୍ତି । ସେମାନେ ଏପରି କି କାମକଳାର ଚୌଷଠୀ ବନ୍ଧରୁ କେତେକ ବନ୍ଧର କାମକ୍ରୀଡ଼ା ଚିତ୍ର ଓ ନାରୀର ଯୌନାଂଶର ଚିତ୍ର ଅଙ୍କିତ କରି ସାହିତ୍ୟକୁ ଶୃଙ୍ଗାରରସସିକ୍ତ

ସିକ୍ତ କରି ଯାଇଛନ୍ତି; ଯାହାକୁ କି ବିଶ୍ରାମାଗାରରେ କିମ୍ବା ପଞ୍ଚ ଜଣଙ୍କ ଆଗରେ ମୁଖରେ ଉଚ୍ଚାରଣ କରି ତା'ର ଅର୍ଥ ଆଦୌ ପ୍ରକାଶ କରି ହେବ ନାହିଁ । କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ରଚନାରୁ ଗୋଟିଏ ଦୁଇଏ ଉଦାହରଣ ଦିଆଯାଉ—

"ବାଳ ଘନ ଜାନୁ-ଶିର ଗୁହାରେ
ସ୍ଥିତ ତା ଭାନୁ କି ଆସ ବାହାରେ ।
ଅଧୋମୁଖରୁ ଶୋଣିତ ବମନ
କଚ୍ଛପ କି କରଇ ଯେନ ମନ ।"

୩୪ ଛାନ୍ଦ—ଲାବଣ୍ୟବତୀ

କିମ୍ବା

"ମଦନ ରମଣୀ ଉରୁ ବିପରୀତ
ଲସ ଅବନୀ ପ୍ରକାର ଶୋଭିତ ।

× × ×

କୁଚ ମର୍ଦ୍ଦନ ହୋଇଲା ତାଡ଼ିତ
ନାନା ଧ୍ୱନି ତେନା ତେନା ସତ ।"

—ପ୍ରେମସୁଧାନିଧି

ଅଥବା

"ଲାବଣ୍ୟ ଜଳରେ କୋମଳ କଢ଼ି
ପଦ୍ମରେ ସ୍ତନ ଆସୁଥିଲା ବଢ଼ି ।
ରହୁଥିଲା ମୋର କର ଭିତରେ
କେତେ ହେବଣି ସେ ପୟୋଧରେ ।"

—ସୁବର୍ଣ୍ଣରେଖା

ଭଞ୍ଜଙ୍କର ଉପରୋକ୍ତ ଉଦ୍ଧୃତରେ ଭାଷାର ରଙ୍ଗ ପ୍ରଲେପ ଯେତେ ଦେଲେ ସୁଦ୍ଧା ତା'ର Skeleton ବା କଙ୍କାଳ ଯେ ଅସୌଜନ୍ୟ—ଏଥିରେ ସନ୍ଦେହ ନାହିଁ । ଯୌନ ଆଲୋଚନା ପାଇଁ ସ୍ୱତନ୍ତ୍ର ଗ୍ରନ୍ଥମାନ ରହିଛି । ବାତ୍ସାୟନଙ୍କ ପରି ପଣ୍ଡିତମାନେ ପୂର୍ବରୁ ବହୁ ଯୌନଶାସ୍ତ୍ର ବା କାମଶାସ୍ତ୍ର ରଚନା କରି ଯାଇଛନ୍ତି । ଯୌନଶାସ୍ତ୍ର ଓ ସାହିତ୍ୟ ଗ୍ରନ୍ଥ—ଏ

ଏକ କଥା ନୁହେଁ । ସାହିତ୍ୟ ଜୀବନରେ, ସମାଜରେ ହିତସାଧନ କରେ । ଯୌନଶାସ୍ତ୍ର ଦାମ୍ପତ୍ୟ ଜୀବନକୁ ରସମୟ କରେ ; ଜନଜୀବନର ମଧ୍ୟ ହିତସାଧନ କରେ । ତଥାପି ସାହିତ୍ୟ ସୌଜନ୍ୟ ତଥା ସଂସ୍କୃତିର ରୁଚିକୁ ମାର୍ଜିତ କରେ । ସାହିତ୍ୟ ପରିବର୍ତ୍ତନଶୀଳ, ମାତ୍ର ଯୌନଶାସ୍ତ୍ର ଅପରିବର୍ତ୍ତନୀୟ । ଯୌନଶାସ୍ତ୍ର ଶରୀରଚର୍ଚ୍ଚା କରେ, ଆଉ ମାନସିକ ଚର୍ଚ୍ଚା କରେ ସାହିତ୍ୟ । ଶରୀର ଓ ମନ ଉଭୟ ଓତପ୍ରୋତ ଜଡ଼ିତ ହେଲେ ବି ବିବେକ ସାହାଯ୍ୟରେ ମନ ଶରୀରକୁ ସଂଯମିତ କରାଏ, ପଶୁମାର୍ଗକୁ ଛୁଡ଼ାଏ ନାହିଁ । ନୋହିଲେ ମଣିଷ, ମଣିଷ ପଦବାଚ୍ୟ ନ ହୋଇ ପଶୁ ପାଲଟି ଯାଆନ୍ତା । ସାହିତ୍ୟରେ ଶୃଙ୍ଗାର ରସ କାମ୍ୟ । ମାତ୍ର ସେହି ଶୃଙ୍ଗାରରସକୁ ଯୌନ ଆଲୋଚନାରେ ପର୍ଯ୍ୟବେସିତ କଲେ ତାହା ସୀମା ଲଙ୍ଘନ କରେ । ସେଥି-ପାଇଁ ବ୍ୟଞ୍ଜନା ଦରକାର ; ବର୍ଣ୍ଣନା ନୁହେଁ । ବର୍ଣ୍ଣନା ହେଲେ ତାହା ବରଂ କାମଶାସ୍ତ୍ର ହେବ; ମାତ୍ର ସାହିତ୍ୟ ଗ୍ରନ୍ଥ ହେବ ନାହିଁ । ଉପେନ୍ଦ୍ରଭଞ୍ଜଙ୍କର ରଚନାରେ ଯେଉଁଠି ସୂଚନାତ୍ମକ ବ୍ୟଞ୍ଜନା ରହିଛି, ସେଠାରେ ତାଙ୍କ ସାହିତ୍ୟ ଅଶ୍ଳୀଳ ବୋଲି ଧରାପଡ଼େ ନାହିଁ ; ମାତ୍ର ଯେଉଁ ସ୍ଥାନରେ ନାରୀର ଗୁପ୍ତ ଅଙ୍ଗର ଦୀର୍ଘ ବର୍ଣ୍ଣନା ରହିଛି, ସେଠାରେ ପାଠକ ଉଲଗ୍ନ ଯୌନ ବର୍ଣ୍ଣନା ବୋଲି ଅନୁଭବ କରିଛି । ବୈଷ୍ଣବୀୟ କାବ୍ୟରେ ରାଧାକୃଷ୍ଣଙ୍କର ଅପ୍ରାକୃତ ପ୍ରେମବର୍ଣ୍ଣନାର ଆଳରେ କବି ସ୍ୱୀୟ ଅନୁଭୂତିର ପରିଚୟ ଦେଇଯାଇ ଅଛନ୍ତି । ଅପ୍ରାକୃତ ନାରୀର ଗୋପନୀୟ ଅଙ୍ଗ ବର୍ଣ୍ଣନାରୁ କାଳ-କ୍ରମେ ଉପେନ୍ଦ୍ର, ରାଧାନାଥ ତଥା ସବୁଜଯୁଗ ଓ ଆଧୁନିକ ଯୁଗର କବି-ମାନେ ପ୍ରାକୃତ ନାରୀର ଅଙ୍ଗ ବର୍ଣ୍ଣନାକୁ ଖସି ଆସିଲେ । କ୍ରମେ ଈଶ୍ୱରଙ୍କ ନାମରେ ଧ୍ୱଜା ଟେକି ଯୌନ ଗାନ କରିବାର ପ୍ରୟାସ କମିଗଲା । ବାସ୍ତବ ଜଗତର ଯୌନଜୀବନର ଜୟଗାନ କଲା ଆଧୁନିକ କବି ବ୍ୟଞ୍ଜନାଦ୍ୱାରା, ସାହିତ୍ୟ ଶୃଙ୍ଗାର ରସାଶ୍ରୟୀ ହୋଇ, ହେଲା ସୁନ୍ଦର ଓ ମଞ୍ଜୁଳ । ରାଧାନାଥ ସୂକ୍ଷ୍ମ ବ୍ୟଞ୍ଜନାରେ ନାରୀର ଅଙ୍ଗସୌନ୍ଦର୍ଯ୍ୟର ବର୍ଣ୍ଣନାରେ ଚରମ ପରା-କାଷ୍ଠା ଦେଖାଇଲେ । ଉଦାହରଣ :— ବିମଳା ସୁନ୍ଦରୀର ରୂପ ପ୍ରକାଶରେ କବି ଗାଇଛନ୍ତି—

ସ୍ତନ ଜଘନର ମଧ୍ୟେ କଟିକାମ—
ତାର୍ଥ ପ୍ରାପ୍ୟେ ପ୍ରତିଭାତ,
ତାର୍ଥକାକ ପ୍ରାପ୍ୟେ ଲକ୍ଷି ନେତ୍ର ଯହିଁ
କରୁଥାଇ ଆତଯାତ,

ଘନ ଜଘନାର ଘନ ଜଘନ କି
କାମ-କର୍ଣ୍ଣିକର ଫନ୍ଦା ?
ହରୁ ଯୁଗେ କହି- ତମେ ମଣି କାମ—
କସି କି ହୋଇଛ ବନ୍ଦା ?
—ଅଦ୍ଭୁତକେଶରୀ-୧ମ ସର୍ଗ

କିନ୍ତୁ ରାଧାନାଥ ବର୍ଣ୍ଣନା ପାଇଁ ନୁହେଁ, ଭାରତୀୟ ସଂସ୍କୃତିରେ କଳଙ୍କ ଲେପିଥିବାରୁ ପାର୍ବତୀ ଇତ୍ୟାଦି କାବ୍ୟ ପାଇଁ ଦୂଷିତ । ତେଣୁ ଅଶ୍ଳୀଳତା ଦୋଷରେ ଅଭିଯୁକ୍ତ । ତଥାପି ଗଙ୍ଗେଶ୍ୱରଙ୍କର ଶେଷ ପରିଣତି ଅର୍ଥାତ୍ ରାଣୀ ପାର୍ବତୀଙ୍କ ଦ୍ୱାରା ଗଙ୍ଗେଶ୍ୱରଙ୍କୁ ହତ୍ୟା ପାଠକ ମାନସରେ ଏକ ବିଭୀଷିକା ସୃଷ୍ଟି କରେ । କନ୍ୟା ମୃତ ପିତାର ପାପାଚାର ପ୍ରାୟଶ୍ଚିତ୍ତ ପାଠକକୁ ସତ୍‌ପଥକୁ ଟାଣି ଆଣେ । ତଥାପି ରାଧାନାଥ ଏଥିପାଇଁ ସମାଲୋଚିତ । ତେବେ ଶୃଙ୍ଗାର ରସ ବା ପ୍ରେମ ବର୍ଣ୍ଣନାରେ ବୈଷ୍ଣବ କବିର ଦର୍ଶନ ବା ଭଞ୍ଜୀଯୁଗକବିର ସମ୍ଭୋଗପିପାସା କିମ୍ବା ରାଧାନାଥ ଯୁଗର ଇନ୍ଦ୍ରିୟ ଲାଳସା ଅଥବା ସବୁଜଯୁଗ କବିଙ୍କର ଇନ୍ଦ୍ରିୟାତୀତ ପ୍ରେମ ପରି ଆଜିର ଅତ୍ୟାଧୁନିକ ଓଡ଼ିଆ କବିତାରେ ପ୍ରେମର ଉଲଗ୍ନ ବର୍ଣ୍ଣନା ମଧ୍ୟ ଲକ୍ଷ୍ୟ କରାଯାଉଛି । ତା'ଛଡ଼ା ଗଳ୍ପ-ଉପନ୍ୟାସ ଆଦିରେ ଅତି ବାସ୍ତବତାର ବର୍ଣ୍ଣନା ଦେବାକୁ ଯାଇ ଲେଖକମାନେ କପଟ ନଗ୍ନତା ସୃଷ୍ଟି କରିବାଦ୍ୱାରା ପୁଷ୍କଳତା ପରିବର୍ତ୍ତେ କଳୁଷତା ସାହିତ୍ୟରେ ସୃଷ୍ଟି କରୁଛନ୍ତି ।

ସାଂପ୍ରତିକ ଯୁଗର କବି ଅତି ବାସ୍ତବ ଚିତ୍ର ପରିବେଷଣ କରିବାକୁ ଯାଇ ଗାଇଛନ୍ତି—

"ସେଇ ଝାଳ, ଲହୁ, ଲୁହେ
କିଏ ବାଟିଲା ନାରୀର ସ୍ତନ
କିଏ ତା'ର ଯୌନଦ୍ୱାରେ ବାଜିକଲା ଛୁରୀ ।"
— ମାଟିଆ ବୁରୁଜର ଜହ୍ନ (ସଚ୍ଚି ରାଉତରାୟ)

କିମ୍ବା

ତରୁଣ କବି ଚଣ୍ଡୀଚରଣ କରଙ୍କ "ଶ୍ରୀଲତାକୁ ଉପଦେଶ" କବିତାରେ—

"ଝିଟିପିଟିଙ୍କର ଟେବୁଲ ଡ୍ରୟରରେ ହାତ ଦେବ ନାହିଁ
ଅବଶ୍ୟ ମୁଁ ଦେଖି ନାହିଁ ତା' ଭିତରେ ବିଷଧର ସାପ

(ଅବଶ୍ୟ ତମେ ବି ଯାଦର ଜାତ ସାପକୁ ଡର ନା)
ଦଗ୍ଧ ଜାନୁ, ଦଗ୍ଧ ଯୋନି, ଭସ୍ମୀଭୂତ ସ୍ତନ ଚୂଡ଼ା
ଅସଂଖ୍ୟ ହଲଚଟ୍ନା ନାଗ୍ନ ବନ୍ଦନୀ ଗର୍ଭରେ ମୋର ଉତ୍ସାର ଭିତରେ
ଟଢ଼ ଟ୍ଭିକି ଫୁଇଷ୍ଟାଙ୍କେ କରିଥିଲେ ନଷ୍ଟ ଯେଣୁ ସେମାନେ ମୋ'ର ନିଦ୍ରା
ନାଚ ନାଚ ହଲଗ୍ନରେ ମୋ ସୈନ୍ୟର ଚଟାଣ ଉପରେ ।"

— (କଳିଙ୍ଗ ଶାରଦୀୟ ବିଶେଷାଙ୍କ, ୧୯୬୯)

କାମ୍ୟ

ରାମକୁମାର ଅଗ୍ରୱାଲଙ୍କ "ବବର" କବିତାରେ—

"୫୦ ଏବଂ ଜିଉମାନେ ଖୋଜୁଛନ୍ତି ନାରଫେଣୀ କଣ୍ଠା
ଶୂନ୍ୟଗର୍ଭା ସମୁଦ୍ର ଖେଳୁଛି ମାଛଙ୍କ ର କ୍ରୀଡ଼ା
ଫୁଲର ସ୍ତବକ ଖୋଜେ ଦଂଶ ଗୁଡ଼ି ପେଟରେ ମଲ୍ଲି ଯିବାକୁ
ବବର ଖୋଜୁଛି ସାପ,
ଶତ୍ରୀ ଏବଂ ସେମାନଙ୍କ ସହଚର ଖୋଜୁଛନ୍ତି ଅଳଣାରେ ଆଶ୍ରୟ ନିକଏ ।
ମୁଁ ରକ୍ତ ଯୋଗିନୀ ଗାଏ
ନଣୀଥର ସଂକ୍ଷେପ ବାଣରେ
ମୁଁ ଶ୍ରାବଣୀ ମୂର୍ତ୍ତି ପିଟେ କାମନାର ଉଦ୍ଧସ୍ତ ମଧ୍ୟାହ୍ନେ
ଦେଖେ ଓ ଅସଂଖ୍ୟ ଜ୍ୱାଳା
ଶତାବ୍ଦୀର ଶେଷ ।"

—(ନବପତ୍ର-ଜୁଲାଇ-ସେପ୍ଟେମ୍ବର, ୧୯୬୮)

କବି ପ୍ରମୋଦଚନ୍ଦ୍ର ମିଶ୍ର ପ୍ରେମର ସଂଜ୍ଞା ଦେବାକୁ ଯାଇ କବିଙ୍କର କୁକୁର ରତି ଜାତ ହୋଇଛି । "ପଶୁ ପକ୍ଷୀମାନେ ପ୍ରେମ କରିବାର ସ୍ୱାଧୀନତା ପାଇଛନ୍ତି ; କିନ୍ତୁ ମଣିଷ ଭାଗ୍ୟରେ ସେଇ ପ୍ରେମର ସ୍ୱାଧୀନତା ନାହିଁ ବୋଲି କବି ଅତି ଦୁଃଖରେ ଏହା ଗାଇଛନ୍ତି ।" ବାସ୍ତବିକ ଏଭଳି କବିତା ପାଠ କଲେ ତରୁଣ ପାଠକ ଉପରେ କି ପ୍ରଭାବ ପଡ଼ିବ ତାହା ଚିନ୍ତା କରିବାର କଥା । "ଇନ୍ଦ୍ରାୟୁଧ" ଗ୍ରନ୍ଥରେ ସେହିପରି ଗୋଟିଏ ଭାଷା ପରିମଣ୍ଡିତ ବର୍ଣ୍ଣନା ଶୁଣନ୍ତୁ—

"ତା'ର ବୁକୁର ବୀଣାରେ
ମୁଁ ଫୁଟାଏଁ ସହସ୍ର ସୁର
ଝଙ୍କାର ।

ତା'ର ଅନ୍ତଃ-ମନ୍ଦିରରେ
ମୁଁ ଦିଏଁ ପୁଷ୍ପାଞ୍ଜଳି
ସହସ୍ରବାର କାମନାର ।"

ସାଂପ୍ରତିକ କାଳରେ ଓଡ଼ିଆ ସାହିତ୍ୟରେ ଏହିଭଳି ବହୁ ଯୌନ-ରସୋତ୍ତୀର୍ଣ୍ଣ ଭାବ ବର୍ଣ୍ଣନା ରହିଅଛି । ଯେଉଁମାନେ ଏହାର ସପକ୍ଷରେ ମତପୋଷଣ କରନ୍ତି—ସେମାନେ ନିବିଡ଼ ଭାବରେ "ଶୃଙ୍ଗାର ଚେତ୍ନା କବି" ଭାବଧାରା ଉପରେ ପ୍ରାଧାନ୍ୟ ଦିଅନ୍ତି । ସେମାନେ ପ୍ରାଚୀନକାଳର ମନ୍ଦିର-ଗାତ୍ରର ଅଶ୍ଳୀଳ ଯୌନଚିତ୍ରଠାରୁ ଆରମ୍ଭ କରି ରାସ୍ତାଘାଟରେ ଶ୍ୱାନ ସଙ୍ଗମ ମଧ୍ୟ ଦେଇ ଲୁପ୍ ଓ ନିରୋଧ ପର୍ଯ୍ୟନ୍ତ ଉଦାହରଣ ଦେଇପାରନ୍ତି । ତାହା ମାନି ନିଆଯାଇ ପାରେ । କାରଣ ଦାର୍ଶନିକ ଫ୍ରୟେଡ଼ଙ୍କ ତତ୍ତ୍ୱ ସର୍ବଦା ବିଦ୍ୟମାନ ଓ ଅନିବାର୍ଯ୍ୟ । ବାସ୍ତବ କ୍ଷେତ୍ରରେ ସାହିତ୍ୟ ସୃଷ୍ଟି ହୁଏ ଜୀବନର ମଧ୍ୟାହ୍ନରେ ଓ ଉପଭୋଗ୍ୟ ହୁଏ ମଧ୍ୟ ଏହି ଜୀବନର ବସନ୍ତ କାଳରେ । ବାଲ୍ୟ ଓ ବାର୍ଦ୍ଧକ୍ୟରେ ସାହିତ୍ୟର ରସମାଧୁର୍ଯ୍ୟର ଚର୍ଚ୍ଚା ହୁଏ ନା । ତେଣୁ ଆଦିରସ ସାହିତ୍ୟର ନିଶ୍ଚିତ ଭାବରେ ଯେ ଏକ ଅପରିହାର୍ଯ୍ୟ ରସ—ଏଥିରେ ଅଣୁ ମାତ୍ର ସନ୍ଦେହ ନାହିଁ । ହେଲେ, ନାରୀକୁ ଉଲଗ୍ନ କଲେ ସେ ସୁନ୍ଦର ଦିଶେ ନି; କିନ୍ତୁ ତା'ର ଅବୟବକୁ ଢାଙ୍କି ମୃଦୁମନ୍ଦ ମଳୟରେ ତା'ର ଅଙ୍ଗଲତିକାରୁ ସୂକ୍ଷ୍ମ ଭାବରେ ତା'ର ଅଗୋଚରରେ ସେଇ ଗୁପ୍ତ ଅଙ୍ଗକୁ ଦେଖାଇବାରେ କବିର ଯେଉଁ ମାଦକତା ବା ସାହିତ୍ୟିକ ଆନନ୍ଦ ରହିଛି, ତାହା ତା'ର ଉଲଗ୍ନ ଲଙ୍ଗଳାରେ ନାହିଁ । ଉଲଗ୍ନ ଲଙ୍ଗଳାରେ ବରଂ ତା'ଠାରେ ଅସୁରୁଣୀର ବିଭୀଷିକା ରହିଛି । କବିତା କ୍ଷେତ୍ରରେ ମଧ୍ୟ ଠିକ୍ ସେଇ କଥା ।

ଜନଜୀବନର ନିତ୍ୟ ପ୍ରାତ୍ୟହିକ ଘଟଣା ପ୍ରବାହ, ଆମ ଅଧୁନାତନ ସାହିତ୍ୟରେ ପ୍ରତିଫଳିତ ହେବାର କଥା । ବର୍ତ୍ତମାନ ଜନସଂଖ୍ୟା ବୃଦ୍ଧି ତଥା ଅର୍ଥନୈତିକ ଅସଙ୍ଗତି ହେଉଛି ଏକ ପ୍ରଧାନ ଘଟଣା । ଏଥିପାଇଁ ପରିବାର ନିୟନ୍ତ୍ରଣ ମାଧ୍ୟମରେ ଯୌନଚର୍ଚ୍ଚା ଏକାନ୍ତ ଅପରିହାର୍ଯ୍ୟ ହୋଇ ଉଠିଛି । ତେଣୁ ପିତା, କନ୍ୟା, ମାତା, ପୁତ୍ର, ବଧୂ, ବାନ୍ଧବ ସମସ୍ତଙ୍କ ସମକ୍ଷରେ ଯୌନଚର୍ଚ୍ଚା ଖୋଲାଖୋଲି ଭାବରେ ସରକାରଙ୍କ ତରଫରୁ ରେଡ଼ିଓ ତଥା ଅନ୍ୟାନ୍ୟ ପ୍ରାଚୀର ଓ ପତ୍ରର ପରିଦ୍ୱାରା କରାଯାଉଛି । ପିଲାଏ 'ନିରୋଧ'କୁ ଫୁଙ୍କି ବେଲୁନ୍ କରୁଛନ୍ତି । ରେଡ଼ିଓରେ ଆଲୋଚନା

ବେଳେ ଅବିବାହିତ ବୟସ୍କ ପୁଅ-କନ୍ୟା ପିତାମାତାଙ୍କ ସାମ୍ନାରେ ବସି ରହି-ପାରନ୍ତି ନାହିଁ ; କିନ୍ତୁ ଆଗ୍ରହର ସହିତ ଶୁଣୁଥାଆନ୍ତି । ସ୍କୁଲ କଲେଜରେ ପୁଅ ଝିଅମାନେ ମିନି ଡ୍ରେସ୍ ଓ ଚପା ପୋଷାକ ପିନ୍ଧି ପରସ୍ପରକୁ ଆକର୍ଷଣ କରିବା ପାଇଁ ଚେଷ୍ଟିତ । ତଥାପି ଏତେ ପ୍ରଗ୍ରତି ସତ୍ତ୍ୱେ ବି ଆମକୁ ଲୁଗା ପିନ୍ଧିବାକୁ ପଡ଼ିବ । ଯୌନଜ୍ଞାନ ଆବଶ୍ୟକ, ମାତ୍ର ଚର୍ଚ୍ଚା ନୁହେଁ । ସେ ଚର୍ଚ୍ଚାର ସ୍ଥଳୀ ଅନ୍ୟତ୍ର, ସାହିତ୍ୟରେ ନୁହେଁ ।

ପ୍ରାଚୀନ ଯୁଗରେ ସାହିତ୍ୟରେ କୃଷ୍ଣଙ୍କର ଗୋପୀମାନଙ୍କର ବସ୍ତ୍ର-ହରଣ ଲୀଳା ରହିଛି, ମଧ୍ୟଯୁଗ ଓ ଅଧୁନିକ ଏବଂ ଅତ୍ୟାଧୁନିକ ଯୁଗ ଆଜି ସବୁ ଯୁଗରେ ଯୌନସମ୍ବନ୍ଧୀୟ ସାହିତ୍ୟ ରହିଛି ଓ ରହିବ । ହେଲେ ସାହିତ୍ୟରେ ସୀମା ଲଙ୍ଘନ କରି ଶ୍ଳୀଳତା ହରାଇବା ଉଚିତ ନୁହେଁ ।

ସମୟର ସ୍ରୋତରେ ସାହିତ୍ୟର ଗତିପ୍ରଗତି ପଥରେ ଧାବମାନ ହେବ । ନୂତନ ନୂତନ ପରୀକ୍ଷାନିରୀକ୍ଷା ଓ ସମସ୍ୟା ସାହିତ୍ୟରେ ଉଦ୍ଭବ ହେବ । ଏଥି ସହିତ କବି ବା ସାହିତ୍ୟିକଙ୍କୁ ମନେରଖିବାକୁ ହେବ ଯେ ସେ ସାହିତ୍ୟ ସୃଷ୍ଟି କରୁଛି । ଗୋଟିଏ ସଭ୍ୟ ସଂସ୍କୃତ ସମାଜ ପାଇଁ ଏକ ସ୍ୱପ୍ନ ସେ ସୃଷ୍ଟି କରିଯାଉଛି । ଜନତାର ଚିନ୍ତାଧାରା ତା'ର ଶିଳ୍ପରେ ରୂପ ଲାଭ କରୁ । ସତକଥା ସାହିତ୍ୟିକ ଲେଖୁ ; ତଥାପି ସୁ-ଆଦର୍ଶକୁ ସେ ଭୁଲି ନ ଯାଉ । କୁ-ଚିତ୍ର ଆଙ୍କିବା ସଙ୍ଗେ ସଙ୍ଗେ ତା'ର କୁ-ପରିଣାମର ସମ୍ଭାବ୍ୟ ମଧ୍ୟ ଭାବିବା ଉଚିତ । ତା ନ ହେଲେ ଆମ ସମାଜ ଭୁଷୁଡ଼ି ପଡ଼ିବ ।

ଓଡ଼ିଆ ସାହିତ୍ୟରେ ଯେ କାବ୍ୟରାଜ୍ୟରେ ଏ ଉଲଗ୍ନତା ପ୍ରକାଶ ପାଉଛି ତାହା ନୁହେଁ ; ଗଳ୍ପ, ନାଟକ ଓ ବିଶେଷ କରି ଉପନ୍ୟାସରେ ଏହାର ବହୁଳତା ଦୃଷ୍ଟିଗୋଚର ହେଉଛି । ( ତହିଁ ବିଚାର ପାଇଁ ସ୍ୱତନ୍ତ୍ର ପ୍ରବନ୍ଧ ଆବଶ୍ୟକ । )

କେବଳ ଓଡ଼ିଆ ସାହିତ୍ୟ ନୁହେଁ; ଭାରତୀୟ ପ୍ରାନ୍ତୀୟ ସାହିତ୍ୟ ତଥା ଇଂରାଜୀ ସାହିତ୍ୟରେ ଏ ଧରଣର ସାହିତ୍ୟିକ ଅଶ୍ଳୀଳତା ବା ଉଲଗ୍ନତା ସର୍ବତ୍ର ବିଦ୍ୟମାନ ।

ପାଠକର ରୁଚି ଯାହା ହେଉ ନା କାହିଁକି, ଲେଖକର କର୍ତ୍ତବ୍ୟ, ପାଠକର 'କୁ' ରୁଚିକୁ ବଦଳାଇ 'ସୁ' ରୁଚିରେ ପରିଣତ କରାଇବା ଓ ସମାଜର କଲ୍ୟାଣ ସାଧନ କରିବା । ଜନଜୀବନର ଅତି ବାସ୍ତବ ଛବି ସିଧାସଳଖ ଫଟୋ ପରି Snap shot ନ ନେଇ ଅର୍ଥାତ୍ ପ୍ରତିବିମ୍ବ ନ କରି ଜୀବନର ମାଙ୍ଗଲ୍ୟ ନିମିତ୍ତ ସାହିତ୍ୟରେ ସୌନ୍ଦର୍ଯ୍ୟ ସୃଷ୍ଟି କରି ସୁଚିତ୍ର ଅଙ୍କନ କରିବା । ସତ୍ୟ, ଶିବ, ସୁନ୍ଦରର ଉପାସନା କରିବା ହେଉଛି କବିର କର୍ତ୍ତବ୍ୟ ।

———

# ମୋ ଦୃଷ୍ଟିରେ ସାଂସ୍କୃତିକ ବଳୟାରେ ଚେତନା ପ୍ରବାହ

ବାଳଗୋପାଳ ପୁରୋହିତ

ବୈଦିକ ସାହିତ୍ୟରେ କବି ଆତ୍ମା ଓ ବ୍ରହ୍ମ ସମାନ ଅର୍ଥବୋଧକ ଶବ୍ଦ । ବ୍ରହ୍ମ-ବୈଦିକ-ଚିନ୍ତନ ସାହିତ୍ୟ ସେ କାଳର ଜାତି, ପରିବାର, ଧର୍ମବିଶ୍ୱାସ ଓ ନୈତିକତା ସବୁରି ଉପରେ ପ୍ରଭାବ ବିସ୍ତାର କରି ଖ୍ରୀଷ୍ଟୀୟ ଜୀବନକୁ ସଞ୍ଚାଳିତ କରୁଥିଲା । ସଭ୍ୟତାର ଶୈଶବରୁ ମଧ୍ୟଯୁଗ ପର୍ଯ୍ୟନ୍ତ ଅନେକ ଶତକ ଧରି ଈଶ୍ୱର ବିଶ୍ୱାସ ଉପରେ ନିର୍ଭର କରି ସାହିତ୍ୟ ଓ ଶିଳ୍ପକଳା ବିକାଶଲାଭ କରି ଆସିଥିଲା । ୟୁନାନର ଦାର୍ଶନିକ ପ୍ଲାଟୋ କବିଙ୍କୁ ଏକ ନୈତିକ ଦାର୍ଶନିକର ଆସନରେ ଉପବିଷ୍ଟ କରାଇଥିଲେ । ତେଣୁ ହୋମରଙ୍କ ମହାକାବ୍ୟରେ ମଧୁମାଦକତା (Honeyed muse) ଦେବାଙ୍ଗନା ଚରିତ୍ରର ପ୍ରବେଶ କରି ହୋଇଥିବା ଯୋଗୁଁ ତାଙ୍କୁ ମିଥ୍ୟାନୁ-କୃତି କର୍ତ୍ତା, ବାସନା ଉତ୍ତେଜକ ଓ ଅନୈତିକ ବୋଲି କୁହାଗଲା । ପ୍ରାଚ୍ୟ ସାହିତ୍ୟରେ ଉପନିଷଦ ରଚନା କାଳ ପରି କବିତାର ରସାସ୍ୱାଦନ ସ୍ୱରୂପ ଓ ସୌନ୍ଦର୍ଯ୍ୟ ବ୍ୟଞ୍ଜନା ମହାକାବ୍ୟକାଳରେ ପୁଷ୍ଟିଲାଭ କରିଥିଲା । ଭାରତରେ ଏହି କାବ୍ୟିକ ପରମ୍ପରା ଭାସଙ୍କ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିଥିଲା । କାଳିଦାସ ତଥା ଉତ୍ତର-କାଳିଦାସ କାଳରେ କେତେକ ପରିବର୍ତ୍ତନ ଦେଖାଗଲା । ସାମନ୍ତୀୟ ଏବଂ ମଧ୍ୟକାଳୀନ ବ୍ୟବସ୍ଥା ଅତିକ୍ରମ କଲା ପରେ ଉଦ୍ୟୋଗିକ ଯୁଗରେ କବିର କାର୍ଯ୍ୟ, ପ୍ରୟୋଜନ ଓ ପ୍ରେରଣା କେନ୍ଦ୍ର ବଦଳିଗଲା ଧର୍ମ ବିଶ୍ୱାସର ରସ ଉତ୍ସ କ୍ରମେ କ୍ରମେ ଶୁଷ୍କ ହୋଇ ଆସିଲା । ପ୍ରାକୃତ-ବିଜ୍ଞାନର ଉତ୍କର୍ଷ ସାଧନ ଫଳରେ ସାହିତ୍ୟ ଓ କାବ୍ୟିକ-କଳା ସୁସଜ୍ଜିତ, ସୁବିନ୍ୟସ୍ତ ଓ ନିୟମାନୁବର୍ତ୍ତୀ ହେବାକୁ ଲାଗିଲା । ମନୋବିଜ୍ଞାନ ମଣିଷର ବ୍ୟକ୍ତିତ୍ୱର ବ୍ୟାପକ ସଂଧାନ ନେଇ କବିଙ୍କୁ ଅଲୌକିକ କଳ୍ପନା ଅସାଧାରଣ

ପୁରୁଷ ହେବାର ଭ୍ରାନ୍ତ ଧାରଣାକୁ ମୂଳୋତ୍ପାଟନ କରି ତାଙ୍କୁ ଏକ ସାମାନ୍ୟ ସମ୍ବେଦନଶୀଳ ମନୁଷ୍ୟରେ ପରିଣତ କରାଇଲା । ଅନୁଭୂତିର ତୀବ୍ରତା ଏବଂ ମାନବତା ପ୍ରତି ଦୃଷ୍ଟିକୋଣ ଦ୍ୱାରା କବିର ବ୍ୟକ୍ତିତ୍ୱର ନିର୍ମାଣ ହେବାକୁ ଲାଗିଲା । ଏହି ପୃଷ୍ଠଭୂମିରେ ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଆଧୁନିକ କବିତାର ଜନ୍ମ ।

ଚଳିତ ଶତାବ୍ଦୀର ପ୍ରଥମ ଦଶକ ବେଳକୁ କଳାସାହିତ୍ୟ ଜଗତରେ ଆଧୁନିକ-ଚେତନା ପ୍ରବାହ ସଂପର୍କରେ ପାଶ୍ଚାତ୍ୟର ବିଶିଷ୍ଟ ତାର୍କିକ ପଣ୍ଡିତ ଉଇଲିୟମ୍-ଜୋନସ୍ କହିଛନ୍ତି —

> ......"Conciousness then, does not appear to itself chopped up in bits......it is nothing jointed, it flows. A 'river' or' stream' is the metaphor by which it is most naturally described. In talking of it hereafter, let us call it the stream of thought, of conciousness, or of subjective life." (1)

ଏହି ଚେତନାର ଅବବୋଧରେ ଫରାସୀ ଦାର୍ଶନିକ ହେନେରୀ ବାର୍ଗେଶଁ ବାସ୍ତବିକତାର ଅବଧାରଣା ପାଇଁ ପ୍ରଜ୍ଞା (intelligence) ଉପରେ ସହଜ ଅନୁଭୂତ ଜ୍ଞାନ (intuition) ସଜ୍ଞାନ ଅନୁଭୂତିର ଗୁରୁତ୍ୱ ଦର୍ଶାଇ କହିଛନ୍ତି—

> "The artist becomes the flag bearer of intuition in its interminable struggle against logic and reassre. (2)

ତାଙ୍କ ମତରେ ଜୀବନ ହେଉଛି ଏକମାତ୍ର ବାସ୍ତବ ସତ୍ତା ଯାହା ସୃଜନଶୀଳ । ପ୍ରତ୍ୟେକ ମୁହୂର୍ତ୍ତରେ ନୂତନତ୍ୱର ବିକାଶ ନୂତନତ୍ୱର ସୃଷ୍ଟି ହେଉଛି ପରିବର୍ତ୍ତନଶୀଳ ଜୀବନୀଶକ୍ତିର ଧର୍ମ । ଆତ୍ମ ନୁଭବ ବାସ୍ତବସତ୍ତାର

---

(1) Principles of Psychology—William Jones.

(2) The modern age—edited by Boris Ford.

ସମଗ୍ର ଜ୍ଞାନ ଦେବାକୁ ସମର୍ଥ ହୋଇଥାଏ । ସ୍ଥିତି ହେଉଛି ବାସ୍ତବସତ୍ତାର ମୂଳପିଣ୍ଡ । ସମୟକ୍ରମ (duration)କୁ ସେ ସ୍ଥିତି ଆଖ୍ୟା ଦେଇଛନ୍ତି । ପୁନଶ୍ଚ ବର୍ଗଶଁ ମସ୍ତିଷ୍କ ଓ ଚେତନା ମଧ୍ୟରେ ପାର୍ଥକ୍ୟ ଦେଖିଛନ୍ତି । ସେ କହନ୍ତି ଯେ, ଚେତନା ମସ୍ତିଷ୍କରୁ ଉତ୍ପନ୍ନ ନୁହେଁ, ମସ୍ତିଷ୍କ ଚେତନା କ୍ରିୟାର ଆଧାର ହୋଇପାରେ । ପୁଣି ତାଙ୍କ ମୁକ୍ତ ନୈତିକତା, ସମାଜବଦ୍ଧ ନୁହେଁ । ଏହାର ଉପଲବ୍‌ଧି କେବଳ ଅନ୍ତର୍ଦୃଷ୍ଟି ବା ଆତ୍ମାନୁଭବ ଦ୍ୱାରା ହିଁ ସମ୍ଭବ । ଏହି ଚେତନା ରାଜ୍ୟରେ ବିଚରଣ କରିବେଳେ ମଣିଷ କେବଳ କୌଣସି ସମାଜ ପ୍ରତି କର୍ତ୍ତବ୍ୟଶୀଳ ନ ହୋଇ ସାର୍ବଜନୀନତାର ବକ୍ଷରେ ନିଜର ସତ୍ତା ହଜାଇ ଦେଇଥାଏ । ବିଶ୍ୱସାହିତ୍ୟର ବିକାଶ ଧାରାରେ ବର୍ଗଶଁଙ୍କ ଏହି ଚିନ୍ତାର ଦାନ ଅତୁଳନୀୟ ବୋଲି କୁହାଯିବ । ଏହି ଚିନ୍ତାର ପରିପୋଷକତାରେ ବର୍ଗଶଁ ସୃଜନଶୀଳ କଳାକ୍ଷେତ୍ରରେ କବିତା ଶ୍ରେଷ୍ଠତମ କଳା ବୋଲି ମତପ୍ରକାଶ କରିଛନ୍ତି । ସଙ୍ଗେ ସଙ୍ଗେ ତାଙ୍କର ସାଂପ୍ରତିକ କାଳର ଭର୍ଜିନିଆ ଉଲଫ୍, ହକ୍‌ସଲେ ଓ ପ୍ରୁସ୍ତଙ୍କ ପ୍ରଭାବଶାଳୀ ଗଦ୍ୟସୃଷ୍ଟି ସମ୍ବନ୍ଧରେ ଅନୁଦାର-ଭାବ ପ୍ରଦର୍ଶନ କରୁଥିବାର ଇଙ୍ଗିତ ରହିଛି । ଫ୍ରଷ୍ଟର କିନ୍ତୁ ସଙ୍ଗୀତକୁ ଉପନ୍ୟାସର ନିକଟତମ ସମାନ୍ତର-କଳା 'music—the novel's nearest parallel' ବୋଲି କହିଗଲେ ।

ଫ୍ରଏଡ଼ୀୟ ଅଚେତନ (unconcious) ତର୍କସିଦ୍ଧ ଚିନ୍ତାରୁ ଅବାଧିତ ଶକ୍ତିଦ୍ୱାରା ଅପରିବର୍ତ୍ତିତ ଏକ ଅବିଛିନ୍ନ ଚେତନା ସ୍ରୋତକୁ ପ୍ରକାଶ କରେ । ବିକଳ୍ପ ମୁହୂର୍ତ୍ତରେ ଫ୍ରଏଡ଼ ଅଚେତନକୁ ଏକ ବାସ୍ତବ ମାନସିକ ସ୍ଥିତି—the true psychic reality ବୋଲି ସୂଚାଇଛନ୍ତି । ଅବଚେତନର ସ୍ୱପ୍ନାବସ୍ଥା ଜୀବନ ଅଭିଜ୍ଞତାର ଅପୂର୍ବ ବିଚିତ୍ର ଅନୁରଞ୍ଜିତ ଚିତ୍ର ପ୍ରତିଫଳିତ କରାଏ । ସମୟ ଓ ସ୍ଥିତିର ଦୂରବୀକ୍ଷଣୀୟ (telescopic) ପ୍ରତିକ୍ରିୟାଦ୍ୱାରା ତାହା କେବଳ ଜୀବନର ଗୂଢ଼ ଅର୍ଥ ପ୍ରକାଶ କରିବାରେ ସମର୍ଥ ହୁଏ । ଏଣୁ ଜୀବନ-ଅନୁଭୂତିର ଅପୂର୍ବ ବିଚିତ୍ର ଅନୁରଞ୍ଜନଶୀଳ କ୍ଷେତ୍ର ଏହି ଅବଚେତନ, ମଣିଷର ବାହ୍ୟ ସାମାଜିକ ଜୀବନର ସାଧାରଣ ରୁଚିବୋଧ ଓ ଜାଗତିକ ଜୀବନର ସକଳ ପ୍ରଜ୍ଞାପରିପୂର୍ଣତାକୁ ତଲ୍ଲୀନ କରାଇ, ସ୍ୱକ୍ଷେତ୍ରର ବହୁ ବର୍ଣ୍ଣାଢ଼୍ୟ ଭାବନାର ଚିତ୍ରଫଳକ ଉପସ୍ଥାପିତ କରେ । ସୃଜନ-କଳାରେ ତା'ର ଉପସ୍ଥାପନା ତେଣୁ ଅନନ୍ୟ ଓ ଭାବ-ବିନାମୟ । ଫ୍ରଏଡ଼ ଅବଚେତନକୁ ବିକଳ୍ପ ପ୍ରକାଶନକାଳର ବ୍ୟକ୍ତିର ସ୍ୱଚ୍ଛନ୍ଦ-ଚିନ୍ତା-ଉତ୍ସରଣର ଉର୍ବର କ୍ଷେତ୍ର ବୋଲି ଦର୍ଶାଇବା ପରେ ପରେ,

ସାମାଜିକ ବିଧି-ନିଷେଧ-ବଦ୍ଧ ଜୀବନର ଅସତ୍ୟ ଆବରଣକୁ ଉନ୍ମୋଚିତ କରି ଉନ୍ମୁକ୍ତ-ଚେତନାର ଉଚ୍ଛଳ-ପ୍ରବାହରେ ଆଗେଇ ଧାଇଁଲେ—ଚେତନଶୀଳ ସ୍ରଷ୍ଟାଗଣ । ତବେଥି ରିଚର୍ଡ୍‌ସନ, ଜେମସ୍ ଜଏସ୍ ପ୍ରଭୃତି ଜୀବନ-ବାଦୀ ଗୋଷ୍ଠୀ, ସେମାନଙ୍କ ଅନୁସାରୀ ଗରଟ୍ରୁଡ଼ ଷ୍ଟେନ, ଦାଦ ଗ୍ରିଷ୍ଟସ ଫ୍ୟୁଚରିଷ୍ଟସ ଅଧିକନ୍ତୁ ନୂତନ ପ୍ରତୀକବାଦୀ ତଥା ଅନ୍ତ-ବାସ୍ତବବାଦୀ ସେମାନଙ୍କ ଲେଖାରେ ଜୀବନ-ଅଭିଜ୍ଞତାର ନୂତନ ମୂଲ୍ୟବୋଧର ବଳିଷ୍ଠ ଉପାଦାନ ସବୁ ନେଇ ପ୍ରେରଇଲେ । ସମସ୍ତେ ସେଇ ମୂଳ-ଉତ୍ସରୁ ଉଜ୍ଜୀବିତ ଚେତନା-ଧାରାର ସ୍ରୋତକୁ ବିଭିନ୍ନ ରୂପ, ଆଙ୍ଗିକ, ଶୈଳୀ ଓ ଭାଷାଦ୍ୱାରା ବିଭିନ୍ନ ଧରଣରେ ପ୍ରୟୋଗ କରି ଚାଲିଲେ । କ୍ରମବର୍ଦ୍ଧିଷ୍ଣୁ ସମାଜୀକୃତ, ସାମ୍ୟବାଦୀ ପ୍ରଲୁବ୍ଧ ଓ ନିର୍ଦ୍ଦିଷ୍ଟ ମାନଭୂକ୍ତ ଏକ ଜଗତରେ ସୃଜନଶିଳ୍ପୀ ଯାହାକିଛି ଅନୁପମ ଅଦ୍ୱିତୀୟ, ତାହାର ପ୍ରକାଶ କରିବା ଲାଗି ସଦାସର୍ବଦା ବ୍ୟାକୁଳ ହୋଇ ଉଠିଲେ । ସମସ୍ତ ମତବାଦର ଅନ୍ତରଙ୍ଗ ସମନ୍ୱୟ ରଖି ନିଜକ ବ୍ୟକ୍ତିଗତ ଅଭିଜ୍ଞତାକୁ ଏକ ଯାନ୍ତ୍ରିକ ପ୍ରକାରର ନିଗଡ଼ରେ ବାନ୍ଧି ନ ରଖି ବିଭିନ୍ନ ଶୈଳୀର ମୁକ୍ତ-ପ୍ରୟୋଗଦ୍ୱାରା ଆଧୁନିକ ସ୍ରଷ୍ଟା ନୂତନ ଅର୍ଥ ଖୋଜିବାରେ ଲାଗିଲେ । ମନୁଷ୍ୟର ମୁକ୍ତ-ଚେତନାକୁ କିପରି କେଉଁ ବାଟରେ ସଠିକ ଭାବେ ପ୍ରକାଶ କରାଯାଇ ପାରିବ, ହେତୁବାଦୀ ଜୀବନ-ଠାରୁ ସମ୍ପୂର୍ଣ୍ଣ ପୃଥକ—ହେତୁପୂର୍ଣ୍ଣ ମାନସିକ ଉତ୍ତେଜନାମୟ ଜୀବନ ଓ ଜଗତର ଗଭୀରତମ ମୂହୂର୍ତ୍ତଗୁଡ଼ିକର ବାସ୍ତବ-ସ୍ଥିତି ଭିତର ଅନୁକ୍ରମ କିପରି ଠିକେ ଠିକେ ନିଜର କାବ୍ୟକଳାରେ ପ୍ରକାଶ କରାଯାଇପାରିବ, ତାହାର ଚେଷ୍ଟା ଚାଲିଲା । ଏବର ବିଟ୍, ଏଙ୍ଗ୍ରି ଜେନେରେସନ, ହିପ୍‌ପି-ଇଜ୍‌ମର କବିଗଣ ପରିବର୍ତ୍ତିତ ସ୍ତରରେ ଯୁଦ୍ଧୋତ୍ତର ଜଗତର ସକଳ ମୂଲ୍ୟ-ବୋଧକୁ ଅଚଳ ଓ ଅକାମୀ କରିବାକୁ ଲାଗିଲେ । ଏହା ହିଁ ଆଧୁନିକ କାବ୍ୟ-କଳାର ସମଗ୍ର ଚେତନ-ପ୍ରବାହର ମୁଖରିତ କଳରୋଳ ।

ଏହି ଚେତନାର ଅନୁକ୍ରମରେ ସୋଭିଏଟ୍ ସାହିତ୍ୟରେ ସାଂପ୍ରତିକ କବିତାର ସମସ୍ୟା ନେଇ ଆଲୋଚନା ହେଲା ଯେ—

"× × × there is a sense of certain heralding of a principally new-leap, a sense of soaring that must come."

ଉକ୍ତ ସମାଲୋଚକଙ୍କ ମତରେ —

"Poetry is seeking. The outline of these

quests are roughly sketched. From the aesthetic aspects one may sum them up as quests for the synthesis, in genre and theme of simplicity, laconism and experimentalism, of the energy of poetic thought, of realist multimeanigness, even of symbolism, of the analytical plastic elements." (3)

ସପ୍ତଦଶ ଶତାବ୍ଦୀଠାରୁ ଆରମ୍ଭ କରି ବିଂଶ ଶତାବ୍ଦୀର ପ୍ରାରମ୍ଭକାଳ ପର୍ଯ୍ୟନ୍ତ ପାଶ୍ଚାତ୍ୟ ଚେତନା ଓ ଭାରତ ଚେତନା ମଧ୍ୟରେ ଯେଉଁ ଗୁଣାତ୍ମକ ପାର୍ଥକ୍ୟ ରହିଥିଲା, ବିଂଶ ଶତାବ୍ଦୀରେ ଆଜ ସେ ପାର୍ଥକ୍ୟ ରହିଲା ନାହିଁ । ବ୍ରିଟିଶ ଶାସନକାଳରେ ଭାରତୀୟ ସଂସ୍କୃତିର ଅଭ୍ୟୁଦୟ ଓ ଜନ-ଜାଗୃତି ପାଇଁ ପଲାସି ଯୁଦ୍ଧଠାରୁ ଜାତୀୟ ସେନାବାହିନୀର ପରିଚାଳନା ପର୍ଯ୍ୟନ୍ତ ବାହ୍ୟାନ୍ତର ଉଦ୍ୟମ ଚାଲେ ଆଭ୍ୟନ୍ତରୀଣ ସାଂସ୍କୃତିକ ବିପ୍ଳବର ସଂଘାତ ଓ ସମନ୍ୱୟ ଭିତରେ ଅବ୍ୟାହତ ମୌଳିକ-ଚେତନା ଏବଂ ପାର୍ଥକ୍ୟରେ ସେତୁ ରଚନା କରିଗଲା । ସମସାମୟିକ ବିଶ୍ୱସାହିତ୍ୟର ପୃଷ୍ଠଭୂମିରେ ଭାରତୀୟ ସାହିତ୍ୟ ଆଡ଼କୁ ଦୃଷ୍ଟି ଫେରାଇଲେ ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ପ୍ରାଚ୍ୟ-ପାଶ୍ଚାତ୍ୟର ସମନ୍ୱୟ, ଦେଶାତ୍ମବୋଧ ଓ ଉଚ୍ଚାକାଂକ୍ଷାପୂର୍ଣ୍ଣ ଏବଂ ବିଶ୍ୱ-ମାନବିକବାଦ ଦ୍ୱାରା ସାହିତ୍ୟ ଉଦ୍‌ବୁଦ୍ଧ ଥିଲା । ରବୀନ୍ଦ୍ରନାଥ, ଇକ୍‌ବାଲ, ଭାରତୀଙ୍କ ରଚନାବଳୀ ଅନୁଶୀଳନ କଲେ ଏହା ସ୍ପଷ୍ଟବୋଧହେବ । ରବୀନ୍ଦ୍ରନାଥ ନୋବେଲ ପୁରସ୍କାର ପାଇବା ପରେ ଓ ପ୍ରଥମ ମହାସମରର ପରବର୍ତ୍ତୀ କାଳରେ ଭାରତରେ ଛାୟାବାଦ, ରହସ୍ୟବାଦ କିମ୍ବା ସବୁଜ-ବାଦ ନାମରେ ବିଭିନ୍ନ ବାଦର ସୃଷ୍ଟି ଦେଖାଗଲା ; କିନ୍ତୁ ଏ କାଳର ସାହିତ୍ୟରେ ବାସ୍ତବବାଦ ଅପେକ୍ଷା କଳ୍ପନା-ପ୍ରବଣତା ଅଧିକ ସ୍ଥାନ ପାଉଥିଲା । ପରେ ଗାନ୍ଧିଜୀଙ୍କ ସ୍ୱାଧୀନତା ଆନ୍ଦୋଳନର ପ୍ରଭାବରେ କଳ୍ପନାଶ୍ରୟୀ ସାହିତ୍ୟ ଆଦର୍ଶୋନ୍ମୁଖୀ ହେବାରେ ଲାଗିଲା । ତୃତୀୟ ଦଶକର ଶେଷ ଅଡ଼କୁ ହିନ୍ଦୀସାହିତ୍ୟରେ ପ୍ରେମଚନ୍ଦଙ୍କ ନେତୃତ୍ୱରେ 'ପ୍ରଗତିଶୀଳ ଲେଖକ ସଂଘ' ଗଠିତ ହୋଇ ଭାରତୀୟ ସାହିତ୍ୟରେ ନୂତନ ପ୍ରଗତିଶୀଳତା ଦେଖାଦେଇଥିଲା । ଛାୟାବାଦୀ ଓ ସବୁଜବାଦୀ ନିଜ ଚିନ୍ତାଧାରା

(3) Problems of poetry— Andrian meldenor—Soviet literature— March 1969.

ବଦଳାଇ ପ୍ରଚେଷ୍ଟାବାଦୀ ବୋଲାଇଲେ । ରାଧାନାଥ ଊନବିଂଶ ଶତାବ୍ଦୀର ଶେଷକାଳରେ, ମଧ୍ୟଯୁଗୀୟ କାବ୍ୟ-ରୀତିଧର୍ମ୍ୟରୁ ବିଚ୍ଛିନ୍ନ ହୋଇ, ପାଶ୍ଚାତ୍ୟ ଓ ପାଶ୍ଚାତ୍ୟ-ପ୍ରଭାବିତ ବଙ୍ଗଳା ସାହିତ୍ୟର ବିଦଗ୍ଧ ପାଠକ ହୋଇ, ଓଡ଼ିଆ କବିତାରେ ଯେଉଁ ନୂତନ ସମଯୋଚିତ ସଚେତନତା ଓ ଅନ୍ତର୍ଦୃଷ୍ଟିର ପ୍ରଚଳନ କଲେ । ତା'ର ପ୍ରବାହ ଓ ପ୍ରଭାବ ପ୍ରାୟ ଚତୁର୍ଥ-ଦଶକ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିଥିଲା । ପ୍ରକୃତି-ଅନୁଭୂତି, ସ୍ୱାବଗତ-ବୋଧ ଓ ଦେଶାତ୍ମ-ବୋଧ ଯାହା ମୁଖ୍ୟତଃ ପରବର୍ତ୍ତୀକାଳରେ ଅନ୍ୟାନ୍ୟ କବିଙ୍କ ରଚନାରେ ସ୍ପଷ୍ଟ ହୋଇ ଉଠିଛି, ତାହାର ମୂଳ ପ୍ରେରଣା ଉତ୍ସ ଥିଲା ରୋମାଣ୍ଟିକ-ଚେତନା । ଏହି ରୋମାଣ୍ଟିକ ଚିନ୍ତାଧାରାର ପ୍ରବାହରେ ଚିନ୍ତାମଣି, ନନ୍ଦକିଶୋର, କୁନ୍ତଳାକୁମାରୀ, ଗୋଦାବରୀଶ (ମିଶ୍ର), ଲକ୍ଷ୍ମୀକାନ୍ତ, ପଦ୍ମଚରଣଙ୍କ ଧର୍ମଦର୍ଶନ ତତ୍ତ୍ୱାନୁଚିନ୍ତୀ ନୂତନ ବୋଧ-ବୈଭୂର୍ଯ୍ୟ ଓ ସୌନ୍ଦର୍ଯ୍ୟସୃଷ୍ଟି ପ୍ରୟାସ କାବ୍ୟ-କବିତାରେ ସ୍ପଷ୍ଟ ହୋଇ ଦେଖାଗଲା । ପରବର୍ତ୍ତୀ କାଳରେ ବୈକୁଣ୍ଠନାଥ, କାଳନ୍ଦୀ ଚରଣ, ଅନ୍ନଦାଶଙ୍କର ପ୍ରଭୃତି ସବୁଜ-ଦଳୀଙ୍କ ସ୍ୱପ୍ନବାଦିତା, କଳ୍ପନା-ବିଳାସ ତଥା ଆତ୍ମ-କୈନ୍ଦ୍ରିକତା ମଧ୍ୟରେ ପ୍ରକାଶଲାଭ କଲା । ତୃତୀୟ-ଦଶକର ଶେଷାର୍ଦ୍ଧକାଳକୁ କିନ୍ତୁ ଓଡ଼ିଆ ଗୀତିକବିତା କ୍ଷେତ୍ରରେ ନବ-ରୂପାନ୍ତର ସ୍ପଷ୍ଟତର ହେବାକୁ ଲାଗିଲା । ଏହି ସମୟ ମଧ୍ୟରେ ସ୍ୱପ୍ନବାଦୀ କଳ୍ପନାମୁଖରତା ରାଜନୈତିକ ସଂଘାତ ଫଳରେ ରୂଢ଼ ବାସ୍ତବତା ଆଡ଼କୁ ମୁହାଁ ଫେରାଇଲା । ଏକଦା ରୋମାଣ୍ଟିକ କାବ୍ୟାଦର୍ଶରେ ଅନୁପ୍ରାଣିତ ହୋଇ କବିତା ରଚନା କରୁଥିବା ବହୁ କବିଙ୍କର ଦୃଷ୍ଟିଭଙ୍ଗୀ ଚତୁର୍ଥ ଦଶକର ଶେଷଆଡ଼କୁ ହଠାତ୍ ଦିଗ-ପରିବର୍ତ୍ତନ କରି ବସିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ବେଳକୁ ଓଡ଼ିଆ ସାହିତ୍ୟରେ କାବ୍ୟିକ-ଚେତନାର ରମ୍ୟ-ବୋଧର ବିସ୍ତାରକ୍ଷେତ୍ର ସଙ୍କୁଚିତ ହୋଇ ଆସିଲା । ସବୁଜଯୁଗୀୟ ଲେଖକମାନଙ୍କ ମଧ୍ୟରେ ଏକ ପକ୍ଷେ ରବୀନ୍ଦ୍ରନାଥଙ୍କ କପୋଳକଳ୍ପନା ଓ ଅତୀନ୍ଦ୍ରିୟବାଦ ଏବଂ ଅନ୍ୟ ପକ୍ଷେ ଗାନ୍ଧୀୟ ଆଦର୍ଶବାଦୀ କଠୋର ବାସ୍ତବିକତା—ଉଭୟ ପ୍ରଭାବର ଅନ୍ତଃସଂଘର୍ଷ ଦେଖାଦେଲା । ରବୀନ୍ଦ୍ରନାଥଙ୍କ ଅତୀନ୍ଦ୍ରିୟବାଦର ନିଷ୍ଫଳ ଆବେଦନ ଓ ଗାନ୍ଧୀୟ ଆଦର୍ଶବାଦର ଅଚେତନ ଅତୃପ୍ତି ଫଳରେ ମାନସିଂହ ହେଲେ ବିଚ୍ଛେଦବାଦୀ । ଫ୍ରଏଡ଼ଙ୍କ ଯୌନଚେତନାର ପ୍ରଭାବରେ ହୃଦୟାବେଗର ଶାଶ୍ୱତ ଉଦ୍‌ବେଗର ଓ ଯୌବନର ଉଚ୍ଛ୍ୱାସ ତାଙ୍କ କାବ୍ୟ-କୃତିରେ ଉଦ୍‌ବେଳିତ ହୋଇ ଉଠିଲା । ପରେ ପରେ ମାର୍କସ ଓ ଫ୍ରଏଡ଼ଙ୍କ

ପ୍ରଭାବ ଅନ୍ୟ କବିଙ୍କ କୃତିରେ ସ୍ପଷ୍ଟରୁ ସ୍ପଷ୍ଟତର ହୋଇ ଦେଖାଦେଲା । ମାର୍କସ ଦର୍ଶନରେ ଉଦ୍‌ବୁଦ୍ଧ ହୋଇ ଓଡ଼ିଶାରେ ଯେଉଁ ଅଭ୍ୟୁଦୟ-ସାହିତ୍ୟ ସୃଷ୍ଟି ହୋଇଥିଲା, ତହିଁର ଆବାହକ ଥିଲେ ଭଗବତୀଚରଣ ପାଣିଗ୍ରାହୀ । ତାଙ୍କ ପଛକୁ ବାମପନ୍ଥୀ ଲେଖକ-ଗୋଷ୍ଠୀ ସଙ୍ଘଶ୍ରୀ ସଚି ରାଉତରାୟ, ଅନନ୍ତ ପଟ୍ଟନାୟକ ଓ ମନମୋହନ ମିଶ୍ରଙ୍କ କାବ୍ୟରଚନାରେ ଆନ୍ତର୍ଜାତୀୟ ଚେତନାର ବଳିଷ୍ଠ ମୁଦ୍ରାଙ୍କ ପ୍ରତିଫଳିତ ହେଲା । ନିତ୍ୟାନନ୍ଦ, ରାଧାମୋହନଙ୍କ କାବ୍ୟରେ ଜାତୀୟ-ବୋଧିନୀ ଚେତନାର ଘର୍ଘର-ଘୋଷ ପ୍ରତିଧ୍ୱନିତ ହେଲା ।

ସମସାମୟିକ ବିଶ୍ୱସାହିତ୍ୟ ସହ ସମତାଳ ରଖି ଓଡ଼ିଆ କବିତାର ସର୍ବାଧୁନିକ ରୂପ ଦେଖାଗଲା, ଚଳିତ ଶତାବ୍ଦୀର ପ୍ରଥମାର୍ଦ୍ଧର ଶେଷରେ । କବି ସଚି ରାଉତରାୟ ପରମ୍ପରାକୁ ଭାଙ୍ଗି କବିତାର ଆଙ୍ଗିକ ରୂପ ବୈଚିତ୍ର୍ୟ ସୃଷ୍ଟି କରିବା ଭିତରେ ତାଙ୍କର ବିପ୍ଳବୀ ମନର ନିର୍ଭୀକ ପ୍ରକାଶ କଲେ । ତାଙ୍କ ପରେ ପରେ ଗୁରୁପ୍ରସାଦ ମହାନ୍ତି, ଭାନୁଜୀ ରାଓ ପ୍ରଭୃତି ଓଡ଼ିଆ କବିତାରେ ନୂତନ ଦିଗନ୍ତର ସନ୍ଧାନ ଦେବାକୁ ଲାଗିଲେ । ପଞ୍ଚମ ଦଶକରେ ଏମାନଙ୍କ କବିତାରେ ଯ୍ରିଟ୍‌ସ, ମାଲର୍ମେ, ଆରାଗଁ, ହୁଇଟ୍‌ମ୍ୟାନ୍, ମାୟାକୋଭକ୍‌ସି, ଇଲିୟେଟ୍, ଟ୍ରେଣ୍ଡର, ପାଉଣ୍ଡ ପ୍ରଭୃତିଙ୍କ ବିଭକ୍ତ ଚିତ୍ତବୃତ୍ତିର ଏକ ଏକ ଅଭିବ୍ୟକ୍ତିର ଛାପ ପ୍ରତିଫଳିତ ହେଲା । ଅବଚେତନ ମନର ସ୍ପନ୍ଦନର ଅନୁସରଣ କରିବା ପାଇଁ ବାସ୍ତବ ଜୀବନର ଯଥାର୍ଥ ପରିପ୍ରକାଶ ନିମିତ୍ତ ଗଦ୍ୟକବିତା ଉତ୍କୃଷ୍ଟ ମାଧ୍ୟମ ରୂପେ ବିବେଚିତ ହେଲା । ନୂତନ ଭାବ ସ୍ପନ୍ଦନକାରୀ, ଐତିହ୍ୟମୁକ୍ତ, ସ୍ଥାନୀୟ ଚେତନାଶୂନ୍ୟ ଭୌଗୋଳିକ ବ୍ୟାପ୍ତି ନେଇ ଆତ୍ମ-ଅନ୍ୱେଷା ତଥା ବିଶ୍ୱସଚେତନତା ନେଇ ଦେଖାଦେଲେ ଏକକ ସ୍ରଷ୍ଟାରୂପେ କବି ଶ୍ରୀ ବିନୋଦ ଚନ୍ଦ୍ର ନାୟକ । ସମନ୍ୱୟବାଦୀ ନୂତନ କାବ୍ୟଧାରାର ସ୍ରଷ୍ଟା ରୂପେ ଜ୍ଞାନୀନ୍ଦ୍ର ବର୍ମା, ଚନ୍ଦ୍ରମଣି ବେହେରା, ବେଣୁଧର ରାଉତ, ଜୀବନାନନ୍ଦ ପାଣି, ଜାନକୀବଲ୍ଲଭ ମହାନ୍ତି, ବିଦ୍ୟୁତ୍‌ପ୍ରଭା ଦେବୀ, ରମାକାନ୍ତ ରଥ ଓ ସୀତାକାନ୍ତ ମହାପାତ୍ର ଦେଖାଦେଲେ ।

ତୃତୀୟ ଚତୁର୍ଥ ଦଶକର ଓଡ଼ିଆ କବିତାର ମାର୍କସପନ୍ଥୀ ସାମ୍ୟବାଦୀ ଚିନ୍ତାସ୍ରୋତର ଉଚ୍ଛ୍ୱାସ ପଞ୍ଚମଦଶକରେ ଭଟ୍ଟା ପଡ଼ି ଆସିଥିଲେ ମଧ୍ୟ ରାଜ୍ୟସ୍ତରୀୟ ରାଜନୈତିକ ନିଷ୍ଠୁର ପରିବେଶ ଭିତରେ ଉଗ୍ରଜାତୀୟ ଚେତନାମୂଳକ ରଚନାବଳୀର ଆବେଦନର ବ୍ୟାପ୍ତି (ଗୋଦାବରୀଶ

ମହାପାତ୍ରଙ୍କ ଦୃପ୍ତ ରଚନାବଳୀ) ପାଠକ ମନରେ ବ୍ୟାପକ ସମାଜ-ଚେତନାର ଗଭୀରତମ ସ୍ପର୍ଶ ଖେଳାଇଦିଏ—ବହୁ ମଧ୍ୟରୁ ଗୋଟିଏ ଉଦାହରଣ—

× × × ଭୁଲିବ ନାହିଁଟି ଲବେ,
ମାଟି ବାଲି ବୋଲା ମଫସଲି ତଳ
ରକ୍ତ ପାଲଟେ ଯହିଁ ଲୁହ ଝାଳ
ସେଇଠି ପଖାଳ ଖାଇଯିବ ଅରେ
ଶାଗଲୁଣ ମରିଚରେ ।

(ଗରିବର ଦୁର୍ଗାସ୍ତବ)

ପଞ୍ଚମ-ଷଷ୍ଠ ଦଶକରେ ପୃଥିବୀର ରାଜନୀତି, ଅର୍ଥନୀତି ଓ ସାମାଜିକ କ୍ଷେତ୍ରରେ ଯେଉଁ ନୂତନ ଓ ଜଟିଳ ପରିସ୍ଥିତିର ଉଦ୍ଭବ ହେଲା, ସେସବୁର ପ୍ରତିକ୍ରିୟା ଓଡ଼ିଆ କବିତାରେ ଅସ୍ୱୀକାର କରିବାର ନୁହେଁ । ଭାରତୀୟ ସ୍ୱାଧୀନତା ଉପରେ ବିଦେଶୀ ଆକ୍ରମଣର ଆତଙ୍କ, କୂଟନୈତିକ କ୍ଷେତ୍ରରେ ବିଶ୍ୱାସଘାତକତା, ପଡ଼ୋଶୀ ରାଷ୍ଟ୍ରର ନିଷ୍ଠୁର ବର୍ବରତା ଓ ସର୍ବୋପରି ଗଣତାନ୍ତ୍ରିକ ସମାଜବାଦର ଆପାତତଃ ବ୍ୟର୍ଥତା, ତହିଁ ସଙ୍ଗେ ସଙ୍ଗେ ଅନ୍ତଃରାଷ୍ଟ୍ରୀୟ ସଂଘର୍ଷ, ଅସନ୍ତୋଷ, ଅଭାବ ଦାରିଦ୍ର୍ୟର ନଗ୍ନ ନିଷ୍ଠୁର ପରିହାସ ଏବଂ ବ୍ୟର୍ଥତାକୁ ଇନ୍ଧନ ଯୋଗାଇ ଜନଜୀବନକୁ ନିରାଶାର ଜତୁ-ଘରରେ ସନ୍ତୁଳିବାକୁ ଲାଗିଲେ । ତୃତୀୟ-ଚତୁର୍ଥ ଦଶକର ଜଗତର ସର୍ବବାଦିତ ଆଧୁନିକ କବି-ସମାଲୋଚକଙ୍କ ଦୃଷ୍ଟିଭଙ୍ଗୀରେ ସାରବତ୍ତା ଏତେବେଳକୁ ଓଡ଼ିଆ କବିତାରେ ପ୍ରମାଣିତ ହୋଇଛି—

'The essential vision of a poet is a vision of the boredom, and the horror and the glory.' (4)

ଏହି boredom, ଓ horrorର ସ୍ପଷ୍ଟାଚ୍ଛନ୍ନ ଚିତ୍ରକଳ୍ପ ଓଡ଼ିଆ କବିତାର ବିଭିନ୍ନ କବିଙ୍କ ଭିନ୍ନ ଭିନ୍ନ ସ୍ୱରଭଙ୍ଗୀରେ ଶୁଣିବାକୁ ମିଳିଲା । କେତୋଟି ଉଦାହରଣ ନିଆଯାଉ—

ସମସ୍ତର ଯେସବୁ ଭଗ୍ନାଂଶ
ଦେଇ ମୁଁ ଗଢ଼ିଛି ଗୋଟିଏ ଜୀବନ

(4) The use of poetry : T. S. Eliat.

ଏକକ ନିଜନ, ମୋର ରୂପକଳ୍ପ
ଅଥବା ବିଦଗ୍ଧ ମୋର ଚୈତନ୍ୟର
ଅମର ବିକଳ୍ପ ।

(ଏକ ମ୍ୟୁନିସିପାଲିଟି ନିର୍ବାଚନରେ ଶ୍ୱେତ
ଦେଇସାର, ସଚ୍ଚି ରାଉତରାୟ—୧୯୬୦)

ହତାଶା ଓ ଗ୍ଲାନିର ଚେତନାର ତଳେ ତଳେ ଅନ୍ୟନ ଓଡ଼ିଆ-
କବିର ଆଲୋକଦୃଷ୍ଟି ଅତ୍ୟନ୍ତ ଶାଣିତ ।

"ହଠାତ୍ ମୁଁ ଅନ୍ଧ ହେଲି ଇଏ କେଉଁ ଆଲୋକ ଜ୍ୱାଳାରେ
ଅନେକ ରଙ୍ଗର ବର୍ଣ୍ଣେ ! ମେଞ୍ଚା ମେଞ୍ଚା ବିଚିତ୍ର ପୀଡ଼ାରେ
(ଯେ ପୂର୍ବ ଅନନୁଭୂତ) ସଚକିତେ ନିଜେଇ ବିହ୍ୱଳ
ଅଦ୍ଭୁତ ବେଦନାନନ୍ଦେ, ମଗ୍ନତାରେ, ନିଜଭାବେ ନିଜେ ପୋଡ଼ିଜଳି ।
ବୋଧହୁଏ ହଜିଗଲି ଆଲୋକର ନିରନ୍ତ ବ୍ୟାପ୍ତିରେ
ନିଜକୁ ହିଁ ଶଲି ନିଜେ ଇଏ ଯେଉଁ ଅଭିଭୂତ ନିର୍ବାକ ମୁହୂର୍ତ୍ତରେ ।

(ଦୁଇଟି ଅଖିର ସୂର୍ଯ୍ୟାବର୍ତ୍ତ—ଶ୍ରୀ ବେଣୁଧର ରାଉତ, ୧୯୬୦)

କବି ଶ୍ରୀ ରମାକାନ୍ତ ରଥଙ୍କ ଆତ୍ମିକ ସତ୍ତା ଏକ ଶୈଳ୍ପିକ ଅନୁଭୂତି
ସହ ବସ୍ତୁମାଧ୍ୟମରେ ଅସମତା ଓ ବିଚ୍ଛିନ୍ନତାର ଅନୁଭୂତି ଓ ଆବେଗର
ସଫଳ ସଂଯମ ରୂପ ଦେଇ 'ଚଉପ୍ରହର'ରେ ଦେଖିଛୁ—'ସତର୍କ ଔଦ୍ଧତ୍ୟ
ମୋର ସମୁଦ୍ରର ପ୍ରାଚୀନ ହତାଶା' ପୁଣି 'ଇନ୍ଦ୍ରଧନୁ'ରେ ସନ୍ଦେହ—
ତା'ପରେ ଦେଖିଲୁଁ ଆମେ ତମ ସଙ୍ଗେ ହଠାତ୍ ଦିଗନ୍ତେ / ବିଭିନ୍ନ ବହ୍ନିରେ
ଦଗ୍ଧ ଇନ୍ଦ୍ରଧନୁ ଆଦ୍ର୍ର ପୁଣି ସ୍ଫଟିକ ବର୍ଷାରେ / ସାପ ପରି ଚକ ଚକ
କରୁଥିଲା ଆକାଶର ସନ୍ଦେହ ଭିତରେ × × × ।

ପଞ୍ଚମ ଦଶକର ମଧ୍ୟକାଳରୁ ଷଷ୍ଠ ଦଶକ ଶେଷ ପର୍ଯ୍ୟନ୍ତ ଓଡ଼ିଆ
କବିତା ସମସ୍ତ ପରୀକ୍ଷାଶୈଳୀ ନିଜସ୍ୱ କରିନେଇ ଭାରତୀୟ ତଥା
ଆନ୍ତର୍ଜାତିକ ଚେତନା ସହ ସମତାଳ ରଖି କାବ୍ୟସୃଷ୍ଟି କ୍ଷେତ୍ରରେ
ପ୍ରୟୋଗାତ୍ମକ ରଚନାରେ ଆହୁରି ପାଦେ ଆଗେଇଲା ପରି ମନେହୁଏ ।
ସାଂପ୍ରତିକ ଚେତନାଧାରାର ଏକ ଏକ ବିଶିଷ୍ଟ ସ୍ରୋତର ପ୍ରସରଣ ପ୍ରବାହରେ
ଓଡ଼ିଆ କବିତା ଆଜି ଋଦ୍ଧିମନ୍ତ । ଜଣେ ଅନ୍ତରଙ୍ଗ ପାଠକ ହିସାବରେ
ଆମକୁ କବିର ବ୍ୟକ୍ତିଗତ ତଥା ନିର୍ବ୍ୟକ୍ତିକ ଶିଳାତ୍ମକ ପ୍ରକାଶଭଙ୍ଗୀରେ

ନିହିତ ଅଗଣିତ ତେଉର ସମଗ୍ର ଉଚ୍ଛ୍ୱାସର ଅନ୍ତର୍ନିହିତ ଶକ୍ତି ଓ ଭଙ୍ଗୀରେ ସ୍ଥିତିଶୀଳ ଜୀବନ-ବୋଧ ସହିତ ଗଭୀର ପରିଚୟ ଓ ଆତ୍ମାନୁଭବ ଏକାନ୍ତ ଆବଶ୍ୟକ ହୋଇଉଠେ । ବିଶ୍ୱଚେତନାର ପରିପ୍ରେକ୍ଷୀରେ ଆଜିର ମଣିଷ ଦୈନନ୍ଦିନ ଜୀବନର ଅହରହ ସଂଗ୍ରାମ ଭିତରେ ନିଜର ବାସ୍ତବ ସ୍ଥିତି ସମ୍ବନ୍ଧରେ ଅଧିକ ରହସ୍ୟ ଜାଣିବାକୁ ଚାହୁଁଛି । ସଂଗୃହୀତ ଓ ଅନୁଭୂତ ଜ୍ଞାନ ମିଶାଇ ନୂଆ ନୂଆ ଆଦର୍ଶ ଗଢ଼ୁଛି । କିନ୍ତୁ ଅନେକାନେକ ଆଦର୍ଶ ସମାଜର ପରିକଳ୍ପନା କରି ସୁଦ୍ଧା ସେସବୁ ଆଦର୍ଶକୁ ବାସ୍ତବ ରୂପ ଦେଇ-ପାରୁ ନାହିଁ । ଏପରି ଏକ ଅନିଶ୍ଚିତ ପରିବେଶ ମଧ୍ୟରେ କବି ଓ ସ୍ରଷ୍ଟାର ପ୍ରକୃତ ସ୍ଥିତି ସମ୍ବନ୍ଧରେ ଆମର ଧାରଣା ସ୍ପଷ୍ଟ ହେବା ଉଚିତ । ସ୍ରଷ୍ଟା ହେଉଛି ସମାଜର ସମୁନ୍ନତ ଚେତନଶୀଳ ବ୍ୟକ୍ତି । ମଣିଷର ଦୈନ୍ୟ ଓ କର୍ମ ସଂପର୍କରେ ତାଙ୍କ ମତାମତ ସାଧାରଣ ଅପେକ୍ଷା ମହତ୍ତର । ବ୍ୟକ୍ତିର ଆନନ୍ଦ ଓ ନିରାନନ୍ଦ ଅବସ୍ଥା, ଅନୁଭୂତି ଓ ଅଭିଜ୍ଞତା ପ୍ରତି ତାଙ୍କ ସଗଭୀର ଦୃଷ୍ଟି ରହିଥାଏ । କବିଙ୍କୁ ବ୍ୟକ୍ତିବାଦୀ ବୋଲି କହିବା ଅର୍ଥ ଏଇଆ ନୁହେଁ ଯେ ସେ ନିଜ ଭିତରୁ ଯାହା ସୃଷ୍ଟି କରନ୍ତି, ତାହା କେବଳ ହିଁ ନିଜ ପାଇଁ । ସ୍ୱାନୁଭୂତ ଜ୍ଞାନସ୍ତରର ସୃଷ୍ଟି ସମାଜର ଅନେକାନେକ ବ୍ୟକ୍ତିର ସନ୍ତ୍ରମଶୀଳ ଅନୁଭୂତି ସହ ଗଭୀର ସଂପର୍କ ସ୍ଥାପନ କରେ । ସେସବୁ କେବଳ ହିଁ ସାମାଜିକ ଆବଶ୍ୟକତାଗୁଡ଼ିକର ଅଭିବ୍ୟକ୍ତିର ସୂଚନା ଦେଇ ନ ଥାନ୍ତି; ନିର୍ଦ୍ଦିଷ୍ଟ ସମୟ, ସ୍ଥାନ ଓ ପରିବେଶ ମଧ୍ୟରେ ମାନବୀୟ ଅବସ୍ଥାକୁ ବ୍ୟକ୍ତ କରିଥାନ୍ତି । ସକଳ ଅନବଧାରିତ ଆଦର୍ଶର ସମୟୋଚିତ ସଂଶୋଧନ କରି କରି ମଧ୍ୟ ଆଜିର ମଣିଷ ସନ୍ତୁଷ୍ଟ ନୁହେଁ । ତେଣୁ ସେ ନିଜର ମନ, ଇଚ୍ଛା ଓ ବିଶ୍ୱାସ ସକଳ କ୍ଷେତ୍ରରେ ପରଖିବାକୁ ଚାହେଁ । ଯୁଗର ବିକଟ ପରିସ୍ଥିତିରେ ସମସ୍ତ ପରୀକ୍ଷା-ନିରୀକ୍ଷା ଭିତରେ ସମଗ୍ର ବିଶ୍ୱାସ ଓ ସ୍ଥିତି ମଧ୍ୟ ତାକୁ ଅସାରଶୂନ୍ୟ ଓ ଅସଙ୍ଗତ ବୋଧ ହେବାରେ ଲାଗିଛି । ଦର୍ଶନର ତର୍କ ଓ କଳା-କୃଷ୍ଟି ଚେତନାର ବିଭିନ୍ନ ତାତ୍ତ୍ୱିକ ମତବାଦ ମଧ୍ୟ ଦେଇ ଗତି କରି ପ୍ରତି ପଦକ୍ଷେପରେ ସ୍ରଷ୍ଟା ଖୋଜୁଛି ନୂତନ ମୋଡ଼, ନୂତନ ଚେତନା-ପ୍ରବାହରେ ନୂତନ ଉଚ୍ଛ୍ୱାସ । ଓଡ଼ିଆ ସାହିତ୍ୟରେ 'କବିତା-୧୯୬୨' ଓ 'ଅ-କବିତା-୧୯୬୮'ର ବ୍ୟବଧାନ ଭିତରେ ନୂତନ-ଚେତନାର ସ୍ୱର ସମସ୍ତ ପରିବର୍ତ୍ତନକୁ ସହଜ ଭାବରେ ଗ୍ରହଣ କରି ନେଇଛି । ସବୁଠାରୁ ବୈଚିତ୍ର୍ୟ ହେଉଛି ସର୍ବାଧୁନିକ କବିଗୋଷ୍ଠୀର ଉଲଂଘନ-ଚେତନା । ସେମାନେ ପଞ୍ଚମ ଦଶକ ପର୍ଯ୍ୟନ୍ତ ପ୍ରଚଳିତ ଓଡ଼ିଆ କବିତାର 'ଆଧୁନିକତା' ପ୍ରତି ମଧ୍ୟ ଅବଜ୍ଞା

ପ୍ରଦର୍ଶନ କରୁଥିବା ପରି ମନେହୁଏ । 'ଝଞ୍ଜାନିଳ' ଗୋଷ୍ଠୀର କବିତାର ଇସ୍ତାହାରରେ :

"ପୂର୍ଣ୍ଣ ସ୍ୱାଧୀନତାର ବଲ୍‌ଗା, ସ୍ୱାନ ପ୍ରଚଣ୍ଡ ଅଶ୍ୱଗତିକୁ କବିତାର ଆତ୍ମ-ଶକ୍ତି ବୋଲି ଘୋଷିତ ହୋଇଛି । କବିତାର ଧ୍ୱାନ୍ତ ଉଲ୍ଲଙ୍ଘନ ଯଦି ମାତୃ-ଭୂମିର ମଶାଣିକା ପଛରେ ମରୁପିପାସୀ ତୃଷାର୍ତ୍ତ ମନର ଉଚ୍ଚାରଣ ହୁଏ—ତା'ର ଅସହ୍ୟ-ଆବହର ପ୍ରମୂର୍ତ୍ତିନ ହୁଏ; ତେବେ ତହିଁରେ କୃଷ୍ଣସାର ମୃଗର ଅଗ୍ରଗତି ଯେତିକି ପରିମାଣରେ ପ୍ରକାଶିତ, ତୃଷାର୍ତ୍ତ ମନର ଆବେଦନ ସେତିକି ପରିମାଣରେ ସ୍ପଷ୍ଟ ।"

ମନେ ହୁଏ, ସପ୍ତମ ଦଶକର ଓଡ଼ିଆ କବିର ଏହି ତୃଷାର୍ତ୍ତ ମନର ଉଲ୍ଲଙ୍ଘନ-ଚେତନା କବିତାର ପ୍ରାଣଶକ୍ତି । ପାଶ୍ଚାତ୍ୟ କାବ୍ୟ-କବିତାର ଅନୁକରଣ, ଐତିହ୍ୟ ଓ ପୁରାଣର ବୌଦ୍ଧିକ ସଜ୍ଞା-ନିରୂପଣ ଓ ନୂତନ ଅର୍ଥରେ ଗଣ୍ଠିସ୍ଥାନ ବର୍ତ୍ତମାନ ଓ ଅତୀତ ମଧ୍ୟରେ ସମନ୍ୱୟ ସ୍ଥାପନ ଯାହା-ସବୁ ସପ୍ତମ ଦଶକ ପର୍ଯ୍ୟନ୍ତ ଉଣାଅଧିକେ ଓଡ଼ିଆ କବିତାରେ ପ୍ରଚଳିତ ଥିଲା ତାହା ସପ୍ତମ ଦଶକର ତରୁଣ କବିର ଆଉ ଧ୍ୟେୟ ହୋଇ ରହିଲା ନାହିଁ । ଅତୀତ ପ୍ରତି ଅସମ୍ମାନ ପ୍ରଦର୍ଶନ ସେମାନଙ୍କ ଉଦ୍ଦେଶ୍ୟ ନ ହେଲେ ମଧ୍ୟ ଆଜିର ପରିପ୍ରେକ୍ଷୀରେ ସେମାନେ ଅତୀତ ପରମ୍ପରାର ଅବାସ୍ତବ ମୂଲ୍ୟ-ହୀନତାକୁ ହିଁ ଧରି ନେଇଛନ୍ତି । ମନେହୁଏ, ବର୍ତ୍ତମାନ ହିଁ କବିର ନିଜସ୍ୱ—ନିଜର ଅହଂ ହିଁ ଆଦର୍ଶ । କୋଳାହଳ ବା ରେ'ରେ'କାର ଧର୍ମୀ ବିଶୁଦ୍ଧ ଭବାବେଗ ବା ପ୍ରବଣତାବାଦୀ ଗୋଷ୍ଠୀ ବିରୁଦ୍ଧରେ ମଧ୍ୟ ଏମାନଙ୍କର ସ୍ୱର ପ୍ରଚ୍ଛନ୍ନ । ବ୍ୟକ୍ତିଗତ ପ୍ରେମ, ପ୍ରଣୟ, ଅଶ୍ରୁ, ଆକାଙ୍କ୍ଷା, ହତାଶା, ବିଫଳତା ପ୍ରଭୃତି ବହୁ ଖଣ୍ଡିତ-ଚେତନା ଗୋଟିଏ କବିତା ଦେହରେ ଠେସି ହୋଇ ପାଠକର ଚେତନା ସହିତ ଯୋଗସୂତ୍ର ରକ୍ଷା କରିବାରେ ଅସମର୍ଥ ହେଉଥିବାରୁ ଅନେକ କବିତା ଆବେଦନ-ଦୃଷ୍ଟିରୁ ଚେତନା ଦୌର୍ବଲ୍ୟର ଗ୍ରାସିତ ହେଉଛନ୍ତି ।

ଆଧୁନିକ ଓଡ଼ିଆ କବିତାର ବହୁ ଆଲୋଚିତ ଅଶ୍ଳୀଳ ( ? ) ବା ଯୌନ-ଚେତନା ସଂପର୍କରେ କେବଳ ଏତିକି କହିବି ଯେ ଆଜିର ସାମାଜିକ ପରିବେଶରେ ସୃଜନ-କଳାରେ ଅଶ୍ଳୀଳ-ଚେତନାର ପ୍ରକାଶ ସାମନ୍ତବାଦୀ/ସମାଜ-ବ୍ୟବସ୍ଥାର ରୂପାନ୍ତର ଧନତାନ୍ତ୍ରିକ ଦୁଃଶାସନ ଗ୍ରଷ୍ଟ୍ରାସ୍ତର ସମାଜର ଆବହରୁ ସାହିତ୍ୟରେ ବିପ୍ଳବର ନୂତନ ଦିଗନ୍ତର

ସୂଚନା ଦେବାରେ ଅସ୍ପଷ୍ଟ ଭୂମିକା ଗ୍ରହଣ କରିଛି । ଅମୂର୍ତ୍ତିକ୍ କବିତ୍ୱର ପ୍ରକାଶ ଶିଳ୍ପୀର ବାହ୍ୟ-ବାସ୍ତବତାର ପ୍ରତିକ୍ରିୟାର ଫଳରୂପେ କେବଳ ପ୍ରକାଶିତ ନ ହୋଇ ଅନ୍ତର୍ମୁଖୀନ ହେଲେ ପ୍ରବୃତ୍ତିମନ୍ୟତାରୁ ଶୂନ୍ୟବୋଧ ଓ ନିବୃତ୍ତି-ଚେତନା ପ୍ରକାଶ ପାଏ । ଅନାମଗୋଷ୍ଠୀର କବିତାରେ ବୋଧହୁଏ ଏଇ ଚେତନା କ୍ରିୟାଶୀଳ—ଯାହାର ପରିଣତି ସ୍ୱରୂପ ଏକ ନୈର୍ବ୍ୟକ୍ତିକ ସୃଷ୍ଟି-ଚେତନାରେ ଈଶ୍ୱରଙ୍କ ଅପ୍ରକାଶ ପ୍ରେମ ଓ ଆନନ୍ଦର ସନ୍ଧାନରେ ବର୍ତ୍ତମାନର ସନ୍ଧ୍ୟା ନିରୂପଣ ପାଇଁ ବଳିଷ୍ଠ ଅଭିଳାଷ ରହିଛି । କେବଳ ଗୋଟିଏ ଉଦ୍ଧୃତିରୁ ଏହା ସ୍ପଷ୍ଟ ହେବ—

× × ×

ସେ'ତ ମୋର ନୁହେଁ—ସେ'ତ ତୋର ନୁହେଁ
ମହାକାଳର ସେ ଏକ ନୈର୍ବ୍ୟକ୍ତିକ ଶିଶୁ
ଯେ ଫାଡ଼ିବ ଅନ୍ତନାଡ଼ି ଅନ୍ଧାରର
ଆଣିବ ଆଲୋକ ଆମକୁ ଦେଖାଇବା ଲାଗି
ସେ ତୋ ଭୃତ୍ୟ ହେବ ନି, ସଖା ବି ହେବ ନି
ତୋ ସନ୍ତାନ ନୁହେଁ ସେ—ପ୍ରିୟା ବି ହେବ ନି
ସେ କେବଳ ପ୍ରଳୟ—ସେ କଳ୍କୀ
ଛେଦିବ ସମସ୍ତ ଛଳନାର ମିଥ୍ୟା ସଂପର୍କ
ସଭିଏଁ ଏକାକୀ ହେବା
ଏବଂ ତା'ପରେ—

('ଅନାମ' ସାମୟିକ ସଂକଳନ, ଅକ୍ଟୋବର-୭୧)

'ଏବଂ ତା'ପରେ'—ସୂଚନାରେ ଏକ ନବସମାଜ ନିର୍ମାଣର ଇଙ୍ଗିତ ରହିଛି; କିନ୍ତୁ ନିର୍ଦ୍ଦିଷ୍ଟ ରୂପରେଖ ନାହିଁ । ଚଳିତ ଦଶକର ପ୍ରାରମ୍ଭରୁ ଓଡ଼ିଆ କବିତା ଦୁର୍ବୋଧତା / ଅବୋଧତା ଅଭିଯୋଗର ପ୍ରବଳ ସ୍ରୁଅ ଅତିକ୍ରମଣ ସାରି, ଅଶ୍ଳୀଳତା / ବିଭତ୍ସତାର ଆବର୍ତ୍ତ ମଧ୍ୟରୁ ମୁକ୍ତ-ପ୍ରକାଶର ସରଳ ଅନାସକ୍ତ ଗତି-କ୍ରମ ଅନୁସରଣ କରିବାରେ ଲାଗିଛି । ବିଭିନ୍ନ ଗୋଷ୍ଠୀ ନିଜ ନିଜର ଘୋଷଣାପତ୍ର ଜରିଆରେ ଆଗାମୀକାଲର ସାହିତ୍ୟ ରଚନା ଲାଗି ଆହ୍ୱାନ ଜଣାଇଛନ୍ତି । ଏକ ଗୋଷ୍ଠୀ ଓଡ଼ିଆତ୍ୱର ମୌଳିକତାରେ ବିଶ୍ୱାସ କରୁଥିଲାବେଳେ ଅନ୍ୟ ଏକ ଗୋଷ୍ଠୀ ନବ-

ଚେତନାର ସମ୍ବର୍ଦ୍ଧନାକାଂକ୍ଷୀ ରୂପେ ବର୍ତ୍ତମାନ ସମାଜ ବ୍ୟବସ୍ଥା ବିରୁଦ୍ଧରେ ସଂଗ୍ରାମ ଘୋଷଣା କରି କହୁଛନ୍ତି—

'ସଂଗ୍ରାମ ଘୋଷଣା ଆମର ନୁହେଁ ବରଂ ଗୋଷ୍ଠୀରୁ ଆନ୍ତର୍ଜାତିକ ସମନ୍ୱୟ ।'

କିନ୍ତୁ, ଦେଖିବାକୁ ଅଛି ଏହି ଭିନ୍ନ ଭିନ୍ନ ଗୋଷ୍ଠୀ-ଚେତନା, କେତେଦୂର ନିଷ୍ଠାପର, ଯୁକ୍ତି-ପ୍ରତିଷ୍ଠା ଏବଂ ଯଥାର୍ଥ । ପରିଶେଷରେ ଏତିକି କହି ପ୍ରବନ୍ଧଟି ଶେଷ କରିବି ଯେ, ଗତ ଦଶକର ବିଚ୍ଛିନ୍ନ-ଚେତନା ପରସ୍ପରବିରୋଧୀ ଅନୁଚିନ୍ତା, ଉତ୍କଟ ଯୌନ-ବୋଧ, ଆତ୍ମ-ବିଳାସରୁ ଓଡ଼ିଆ କବିତା ଉତ୍ତୀର୍ଣ୍ଣ ହୋଇ ଚଳିତ ଦଶକରେ ଏକ ନିଶ୍ଚିତ ପଦକ୍ଷେପ ଗ୍ରହଣ କରିବ ବୋଲି ଆଶା କରାଯାଏ ।

———

# ମୋ ଦୃଷ୍ଟିରେ
# ସାଂପ୍ରତିକ ଓଡ଼ିଆ
# କବିତାରେ ବିପ୍ଳବର ସ୍ୱର

**ହୁସେନ ରବିଗାନ୍ଧୀ**

ସାଂପ୍ରତିକ ଓଡ଼ିଆ କବିତାକୁ ଯଦି ଗୋଟିଏ ବାକ୍ୟରେ ଆଲୋଚନା କରାଯାଏ ( ଯେଉଁଥିରେ ପ୍ରଗତିବାଦ ବା ବାସ୍ତବବାଦର ଚିହ୍ନ ନାହିଁ, ତାହା ରୋମାଣ୍ଟିକ୍ ବି ହୋଇପାରେ କିମ୍ବା ଜେମାଦେଈ କାନ୍ଦଣା ବି ହୋଇପାରେ ), ତେବେ ଏହା ହିଁ କୁହାଯାଇ ପାରିବ ଯେ, ଦିବାସ୍ୱପ୍ନ ଦେଖୁଥିବା କବିମାନେ ନିଜ ନିଜ କବିତା ମାଧ୍ୟମରେ ଟି. ଏସ୍. ଏଲିଅଟ୍‌ଙ୍କୁ ଝପି ଆଗକୁ ଯାଇପାରି ନାହାନ୍ତି ଏବଂ ପ୍ରାୟ ଗୋଟାଏ ଦଶକରୁ ଊର୍ଦ୍ଧ୍ୱ ସମୟ ହେଲା ଟି. ଏସ୍. ଇଲିଅଟ୍ ୟୁରୋପର ପୁରାତନ ସ୍ମରଣିକା ହୋଇ ସାରିଥିଲେ ସୁଦ୍ଧା ଓଡ଼ିଆ ସାହିତ୍ୟରେ ତାଙ୍କର ଭୂତ ଆମକୁ ଜଳ ଜଳ କରି ଦିଶୁଛି । ଖୁବ୍ କମ୍ କବି ଏଇ ଭୂତର କବଳଗ୍ରସ୍ତରୁ ନିଜକୁ ମୁକ୍ତ ରଖି ପାରିଛନ୍ତି । ( ଅବଶ୍ୟ ଏମାନେ ସଂଖ୍ୟାରେ ନଗଣ୍ୟ । )

ତେଣୁ ଏଇ ଗତାନୁଗତିକତା ଏବଂ ଇଲିଅଟୀୟ ପରମ୍ପରାକୁ ଭାଙ୍ଗି ପ୍ରଥମେ କେତେକ କ୍ଷୀଣ ଶବ୍ଦ ଶୁଭିଥିଲା । ମାତ୍ର ସେସବୁ ସ୍ୱର ଏତେଟା ଦୃଢ଼ ନ ଥିଲା ଏବଂ ଇଲିଅଟୀୟ ଭାବନାଭୂତ ସଙ୍ଗେ ସେମାନେ ମୁକାବିଲା କରିବାକୁ ଯଦିଓ ଶକ୍ତି ରଖୁଥିଲେ, ହେଲେ ସାମର୍ଥ୍ୟ ପାଇପାରି ନ ଥିଲେ । କିନ୍ତୁ ବିଗତ ଷଷ୍ଠ ଦଶକର ଶେଷଠାରୁ ( ଯେବଠାରୁ ଓଡ଼ିଆ ସାହିତ୍ୟ-କ୍ଷେତ୍ରରେ ବେଳା, ଅଗ୍ନି, ସବୁଜ ବିପ୍ଳବ, ସ୍ଫୁଲିଙ୍ଗ, ଚେତାବନୀ, ଜ୍ୱାଳା, ସଂବିତ୍ ଇତ୍ୟାଦି ଇତ୍ୟାଦି ପତ୍ରପତ୍ରିକାମାନ ପ୍ରକାଶିତ ହେବାକୁ ଲାଗିଲେ ) ଓଡ଼ିଆ କବିତାରେ ବିପ୍ଳବର ସ୍ୱର ଖୁବ୍ ଦୃଢ଼ଭାବେ ଶୁଣାଯାଉଛି ।

ଏହାପରେ ଅଧିକ ଅଗ୍ରସର ହେବା ପୂର୍ବରୁ ବିପ୍ଳବର ଅର୍ଥ କ'ଣ ଓ ସାହିତ୍ୟରେ ଏହା କାହିଁକି ଦରକାର, ସେ ସମ୍ବନ୍ଧରେ ସ୍ପଷ୍ଟ ହୋଇଯିବା ଉଚିତ୍ । ନଚେତ୍ ଏହା ଯଦି ସ୍ପଷ୍ଟ ନ ହୁଏ, ପ୍ରବନ୍ଧଟି ଅସଙ୍ଗତ (Contradictory) ଏବଂ ନେତିମୂଳକ ହୋଇଯିବାର ସମ୍ଭାବନା ଅଛି । ବିପ୍ଳବ କହିଲେ ଏକ ପୁରାତନ ପଦ୍ଧତିକୁ ଭାଙ୍ଗି ଆଉ ଏକ ସଂପୂର୍ଣ୍ଣ ନୂତନ ପଦ୍ଧତିର ସର୍ଜନା । ଏକ ଗୋଷ୍ଠୀ ହସ୍ତରୁ ସମସ୍ତ ସୁଖସୁବିଧା ଆଣି ପ୍ରତ୍ୟେକ ବ୍ୟକ୍ତି ମଧ୍ୟରେ ତା'ର ସୁଷମ ବଣ୍ଟନ ହିଁ ହେଉଛି ବିପ୍ଳବ । ଏହା ପ୍ରତ୍ୟେକ ଯୁଗରେ, ପ୍ରତ୍ୟେକ କ୍ଷେତ୍ରରେ ହୋଇ ଆସିଛି । ତେଣୁ ଯେ ଯାଏଁ ରାଜନୈତିକ କ୍ଷେତ୍ରରେ ବିପ୍ଳବ ନ ହୋଇଛି, ସେ ଯାଏଁ ଅର୍ଥନୈତିକ କ୍ଷେତ୍ରରେ, ସାମାଜିକ କ୍ଷେତ୍ରରେ, ସାହିତ୍ୟ, କଳା, ସଂସ୍କୃତି, ଦର୍ଶନ ଇତ୍ୟାଦି କୌଣସି କ୍ଷେତ୍ରରେ ବିପ୍ଳବ ଅସମ୍ଭବ ।

ଆଉ ଏହି ବିପ୍ଳବୀ ସାହିତ୍ୟର ପ୍ରୟୋଜନ ଲୋକମାନଙ୍କୁ ପ୍ରଶାସନିକ କ୍ଷେତ୍ରରେ ନିଜ ନିଜର ଅଧିକାର ପାଇବା ପାଇଁ ବିପ୍ଳବ କରିବାକୁ ପ୍ରେରଣା ଦେବା, ଏଥିପାଇଁ ତାଙ୍କ ମନରେ ଜାଗରଣ ଜନ୍ମାଇବା । ପ୍ରାକ୍‌ବିପ୍ଳବ କାଳରେ ଆଗାମୀ ବିପ୍ଳବୀମାନଙ୍କୁ ଶାରୀରିକ । ମାନସିକ ଓ ନୈତିକ ପ୍ରଶିକ୍ଷଣ ଦେବା ଏବଂ ଏହି ବିପ୍ଳବୀ ସାହିତ୍ୟ ତା'ର ନୈତିକ ଶକ୍ତିକୁ ପ୍ରଚଳିତ ପୁରାତନ ସମାଜବ୍ୟବସ୍ଥା ବିରୁଦ୍ଧରେ ସଂଗ୍ରାମ କରିବାକୁ ପ୍ରସ୍ତୁତ କରିବା ପାଇଁ କ୍ଷେତ୍ର ପ୍ରସ୍ତୁତ କରିବା ।

ଅନେକ ବ୍ୟକ୍ତି କହିଥାନ୍ତି, ବିପ୍ଳବ ମାନେ ନୂତନର ସୃଷ୍ଟି; ମାତ୍ର ତାହା ହିଂସା (ରକ୍ତପାତ) କଦାପି ନୁହେଁ । ବର୍ତ୍ତମାନ ଏହା ସର୍ବବିଦିତ ଯେ, ବିପ୍ଳବର ପ୍ରକୃତ ଅର୍ଥ ହେଉଛି ଧନବାଦୀମାନଙ୍କ ପାଖରୁ ଉତ୍ପୀଡ଼ିତ ସର୍ବହରାଶ୍ରେଣୀ ତାଙ୍କର ଅଧିକାର ବଳପୂର୍ବକ ଦଖଲ କରିବା ଓ ଦାସ ସମାଜକୁ ଭାଙ୍ଗି ଶ୍ରେଣୀବିହୀନ ସମାଜ ଗଠନ କରିବା । ଶ୍ରେଣୀବିହୀନ ସମାଜର ଦର୍ଶନ-ପ୍ରବର୍ତ୍ତକ ମନୀଷୀ କାର୍ଲ୍ ମାର୍କସ କହନ୍ତି—

> "The history of all hitherto existing society is the history of class struggles...........in a word, oppressor and oppressed, stood in constant opposition to one another, carried on an uninterrupted, now hidden, now open

fight, a fight that each time ended, either in a revolutionary recons—titution of society at large, or in the common ruin of the contending classes."

ତେଣୁ ନିପୀଡ଼ିତ ସର୍ବହରାଶ୍ରେଣୀ ନିଜର ଅଧିକାର ପାଇବା ପାଇଁ ଯେ ନିରମିଷାଶୀ ସାଜି ଶୋଷିତମାନଙ୍କଠାରୁ ମୁକ୍ତିଭିକ୍ଷା ମାଗିବେ, ଏହା ଭାବିବା କମ୍ବା କହିବା କେବଳ ପୁଞ୍ଜିପତି ଓ ତାଙ୍କର ଗୋଡ଼ାଣିଆ-ମାନଙ୍କୁ ଯିନା ସୁହାଇବ, ପୀଡ଼ିତଶ୍ରେଣୀର କ୍ଷତିସାଧନ କରିବା ବ୍ୟତୀତ ଆଉ କିଛି କରିପାରିବ ନାହିଁ ।

ବିଶ୍ୱବିପ୍ଳବର ଅନ୍ୟତମ ପୁରୋଧା ମାଓ-ସେ-ତୁଂଙ୍କ ଭାଷାରେ :

"The revolution is not a dinner party to be attended nor an essay to be written......it is an act of violance, by which one class (oppressed) overthrows another (oppressors)."

ଅତଏବ ଏହି ପରିପ୍ରେକ୍ଷୀରେ ବର୍ତ୍ତମାନର ବିପ୍ଳବର ସଂଜ୍ଞାକୁ ବିଚାର କରି ଓଡ଼ିଆ କବିତାକୁ ଦେଖିଲେ, ବିପ୍ଳବର ସ୍ୱର ଓଡ଼ିଆ ସାହିତ୍ୟରେ ଶୈଶବାବସ୍ଥାରେ ଥାଇପାରେ, ମାତ୍ର କ୍ଷୀଣ ନୁହେଁ । ପ୍ରାକ୍ ସ୍ୱାଧୀନତା କାଳରେ ଓଡ଼ିଆ କବିତା ରାଜ୍ୟରେ ସଚ୍ଚି ରାଉତରାୟ (ଅଧୁନା ପଦ୍ମଶ୍ରୀ), ଅନନ୍ତ ପଟ୍ଟନାୟକ, ମନମୋହନ ମିଶ୍ର, ରଘୁନାଥ ଦାସ ଇତ୍ୟାଦିଙ୍କର ଦୃଢ଼ସ୍ୱର ଶୁଣାଯାଇଛି ।

ଏତିକବେଳେ ଓଡ଼ିଆ ପ୍ରଗତିଶୀଳ କବିତାରୂପୀ ବନ୍ଦ ଘଣ୍ଟାରେ ଗୁବ ମୋଡ଼ିଲେ ଓଡ଼ିଆ ସାହିତ୍ୟର ମାୟାକୋଭସ୍କି, କବି ରବି ସିଂ । ସୁଖର କଥା, ଏକଦା 'ନିଃସଙ୍ଗ ପଦାତିକ' କବି ରବି ସିଂ ଆଜି ଏକାକୀ ନୁହନ୍ତି । ତାଙ୍କ ପାଦ ସହିତ ପାଦ ମିଳାଇ ବହୁ ତରୁଣ ଲଙ୍ଗ୍ ମାର୍ଚ୍ଚ ଆରମ୍ଭ କରିଛନ୍ତି, ଯାହାର ସମାପ୍ତି କେବେ ସମ୍ଭବ ନୁହେଁ । ପୁଣି ପୁରାତନ ଶିବିରକୁ ଫେରିଆସି କବି ମନମୋହନ ମିଶ୍ର ପୁନରାୟ ନୂତନର ସୃଷ୍ଟିରେ ମଜ୍ଜିଗଲେଣି । ସଚ୍ଚି ରାଉତରାୟ ପେଣ୍ଡୁଲମ୍ ଭଳି କେବେ ବିପ୍ଳବୀ ଶିବିରରେ ତ କେବେ ପ୍ରତିବିପ୍ଳବୀ ଶିବିରରେ ଦେଖାଯାଉଛନ୍ତି ।

ଅଗ୍ନିମୟ 'ପାଣ୍ଡୁଲିପି' ଓ 'ଅଭିଯାନ'ର କବି ସଚ୍ଚିଦାନନ୍ଦଙ୍କ ଅଧୁନା କୁହାଇ କୁହାଇ ଯାହା ସୃଷ୍ଟି କରୁଛନ୍ତି, ତାହା ବାହାନା ମାତ୍ର···କିନ୍ତୁ ସେ ବେଶୀ ପରିମାଣରେ ଫ୍ରଏଡ଼ଙ୍କ ଶିଷ୍ୟ ଅଟନ୍ତି ।

କିନ୍ତୁ କଥା ହେଉଛି, ସାହିତ୍ୟରେ ଏ ସଂଗ୍ରାମର ସ୍ୱର କାହିଁକି ଏବଂ କାହା ପାଇଁ ?

ଏହାର ଯଥାର୍ଥ ଉତ୍ତର ଦେଇଛନ୍ତି ଶାନ୍ତିଦୂତ ମାଓ-ସେ-ତୁଂ । ସେ କହିଛନ୍ତି—

"ଆମେ ଯେଉଁ ସଂଗ୍ରାମ କରୁଛୁ, ସେହି ସଂଗ୍ରାମ ମଧ୍ୟରେ ବିଭିନ୍ନ ରକମର ସାମ୍ମୁଖ୍ୟ (Fornt) ଅଛି, ଯଥା—ସଂସ୍କୃତି ସାମ୍ମୁଖ୍ୟ, ମିଲିଟାରି ସାମ୍ମୁଖ୍ୟ ଇତ୍ୟାଦି । ଆମେ ଯଦି ଶତ୍ରୁକୁ ନିପାତ କରିବାକୁ ଚାହୁଁ, ତା'ହେଲେ ଆମକୁ ପ୍ରଥମେ ବନ୍ଧୁକଧାରୀ ସେନାବାହିନୀ ଉପରେ ନିର୍ଭର କରିବାକୁ ପଡ଼ିବ ; କିନ୍ତୁ ଏହା ଯଥେଷ୍ଟ ନୁହେଁ—ଲେଖକବାହିନୀ ମଧ୍ୟ ଆମର ଦରକାର । ଏଇ ଲେଖକବାହିନୀ ବିପ୍ଳବ ସାମ୍ମୁଖ୍ୟରେ ସୈନ୍ୟବାହିନୀ ପରି ମଧ୍ୟ ଅପରିହାର୍ଯ୍ୟ । କାରଣ ଏଇ ବାହିନୀ (ଲେଖକମାନେ) ଶତ୍ରୁ ବିରୋଧରେ ସଂଗ୍ରାମ ପାଇଁ ଆମର ଏକତାକୁ ଦୃଢ଼ କରନ୍ତି । ·· ସାହିତ୍ୟ ଯେପରି ଜନତାକୁ ଏକତାବଦ୍ଧ ଓ ଶିକ୍ଷିତ କରିପାରେ ଏବଂ ଶତ୍ରୁକୁ ବିଧ୍ୱସ୍ତ ଓ ନଷ୍ଟଭ୍ରଷ୍ଟ କରିବା ପାଇଁ ଶକ୍ତିଶାଳୀ ହତିଆର ହୋଇପାରେ । ସେଥିପାଇଁ ଆମେ ଚାହୁଁ ସାହିତ୍ୟକୁ ପୂର୍ଣ୍ଣାଙ୍ଗ ବିପ୍ଳବଯନ୍ତ୍ରର ଅନ୍ତର୍ଭୁକ୍ତ ଏକ ମୁଖ୍ୟ ଅଂଶରେ ପରିଣତ କରିବାପାଇଁ । ·····

ଆମେ ଯାହା ଲେଖୁନା କାହିଁକି ତାହା ଏପରି ହେବା ଉଚିତ୍, ତାଙ୍କର ଅଗ୍ରଗତିକୁ ଆହୁରି ଗତିଶୀଳ କରିବ ଏବଂ ତାଙ୍କର ପଛୁଆ ମନୋଭାବକୁ ଦୂର କରି ବିପ୍ଳବକୁ ଆଗେଇ ନେବ ।"

ଏବଂ କାହା ପାଇଁ ସାହିତ୍ୟ ଉଦ୍ଦିଷ୍ଟ ହେବା କଥା, ସେ ସମ୍ପର୍କରେ ମଧ୍ୟ ମାଓ ଏକ ଯଥାର୍ଥବାଦୀ ଭାବେ କହିଛନ୍ତି—

"ଶ୍ରମିକ, କୃଷକ, ସୈନିକ ଓ ତାଙ୍କର 'କ୍ୟାଡ଼ର'—ଏଇମାନେ ଆମର ପାଠକଗୋଷ୍ଠୀ । ଏହି କାରଣରୁ ଏହି ସବୁ ଶ୍ରେଣୀର ଲୋକଙ୍କୁ ବୁଝିବାର ଓ ଜାଣିବାର ସମସ୍ୟା ଉଠେ । ଏମାନଙ୍କୁ ବୁଝିବାକୁ ଓ ଜାଣିବାକୁ ହେଲେ ବିଭିନ୍ନ ପାର୍ଟି ସଂଗଠନ, ଗ୍ରାମ୍ୟଜୀବନ, କାରଖାନା ଜୀବନ ଏବଂ ସୈନିକ ଜୀବନ ସହ ପରିଚିତ ହେବାକୁ ହୁଏ ଏବଂ ଏ କାମ ସହଜ ନୁହେଁ ।"

ବାସ୍ତବରେ ଏ କାମ ସହଜ ନୁହେଁ । ତେଣୁ ସମସ୍ତେ ଏଇ ପଥର ପାନ୍ଥୀ ହେବା ଅସମ୍ଭବ । ତଥାପି ଓଡ଼ିଆ ଭାଷାରେ ଏହି ସ୍ୱର ସମସ୍ତ କଠିନ ଆବରଣକୁ ଭେଦକରି ନିଜର ସୁପ୍ତ ଅଙ୍କୁରକୁ ଉଦ୍‌ଗମ କରିପାରିଛି । ବର୍ତ୍ତମାନ ଏହି ବୃକ୍ଷ ବଢ଼ିବାରେ ଲାଗିଛି । କେବଳ ଯଥାଯଥ ସାର, ପାଣି ଇତ୍ୟାଦି ଯୋଗାଇଥିଲେ, ଏହା ଦିନେ ଏକ ମହାଦ୍ରୁମରେ ପରିଣତ ହେବ, ଏଥିରେ ସନ୍ଦେହ ନାହିଁ ।

କବି ରବି ସିଂ ବ୍ଲାଷ୍ଟ ଫର୍ଣ୍ଣେସ୍ ପରି ସ୍ୱରରେ କହୁଛନ୍ତି—

"ରକ୍ତ ବାନ୍ତି କରେ ମୋ ଲେଖନୀ
ସେ ରକ୍ତେ ଧ୍ୱଂସର କାଁଟ
ସୃଜନର ନୂଆ ମନ୍ଦାକିନୀ ।
ମୋ' କବିତା ନେଇଛି ଶପଥ
ସାମାଜିକତାର ବୁକେ
ସୃଷ୍ଟି କରେ ନୂଆ ନୂଆ କ୍ଷତ ।

ରଘୁନାଥ ଦାସ ସମୟର ତେଜିରେ ଉଭେଇ ଗଲେ ସୁଦ୍ଧା ସମୁଦ୍ରର ଗର୍ଜନ ପରି ଆଜି ତାଙ୍କର ବାଣୀ ହାନ୍ତର ବେଳାଭୂମିରେ ଗର୍ଜି ଉଠୁଛି—

"ଯାହାର ଏ ପଦଧ୍ୱନି ଶୁଣାଯାଏ ହୃଦ୍ୱର ମେରୁରେ
ମାଞ୍ଚୁରିଆ ଯେତେ ଯେତେ ୟାଂଶି ତଟେ ଇରାବତୀ କୂଳେ
ସାଇଗନ୍ ଉପକଣ୍ଠେ, ଇଣ୍ଡୋନେସିଆ, ଉତ୍ୟକ୍ତ ମାଳୟେ
ଯାହାର ଉନ୍ନତ ଧ୍ୱଜା ଉଡ଼େ ଉଠେ ଅସ୍ତ ହିମାଳୟେ
ଯା' ଲାଗି ମଶାଲ ତେଜେ ସମ୍ମିଳିତ ଦକ୍ଷିଣ ଆଫ୍ରିକା
ଅଷ୍ଟ୍ରେଲିଆ ନାବିକର କଣ୍ଠେ କଣ୍ଠେ ଯା' ଲାଗି ପ୍ରତୀକ୍ଷା
ଅବାହନ ଗୀତ ଯାର ଶୁଭେ ଶୁଭେ ଲକ୍ଷ କୋଟି ଜିଭେ
ଜାଣେ ଜାଣେ ସେମାନେ ଆସିବେ ।

ସର୍ବହରାମାନଙ୍କର ଆବାହନୀ କରିଛନ୍ତି ଶ୍ରୀଦାସ । ଓଡ଼ିଆ ସାହିତ୍ୟ ଏବେ ବି ଶ୍ରୀଦାସଙ୍କ କଲମକୁ ଚାହିଁଛି । କାଳେ କିଛି ନୂତନର ସ୍ୱାକ୍ଷର ନେଇ ସେ ଫେରିବେ କି ଆଉ !

କବି ବ୍ରଜନାଥ ରଥ ଭାରତୀୟ ସାମ୍ୟବାଦୀ ଆନ୍ଦୋଳନ ସହ ଯୁବାବସ୍ଥାରୁ ସଂପୃକ୍ତ । ହେଲେ, ତାଙ୍କର ସ୍ୱର ସାମୟିକ ଭାବେ ଷଣ୍ଢ

ଦଶକରେ ଯୌନଧର୍ମୀ ହୋଇଯାଇଥିଲେ । ବର୍ତ୍ତମାନ ସେ ପୁଣି ସଂଗ୍ରାମ ଭିତରକୁ ଆସିବା ପାଇଁ ପ୍ରଯତ୍ନ କରୁଥିବାର ସୂଚନା ତାଙ୍କ ଲେଖାମାରୁ ମିଳେ ।

ସଚ୍ଚି ରାଉତରାୟଙ୍କୁ ଏଠାରେ ଉଲ୍ଲେଖ ନ କଲେ ଓଡ଼ିଆ ବୈପ୍ଳବିକ କବିତା ପ୍ରତି ପକ୍ଷପାତ ହେବ । ତାଙ୍କ ଭାଷାରେ ନିଆଁ (ବିପ୍ଳବ) କେବେ ମରେ ନି । ଯେପରି କି ସୁପ୍ତ ଝିଙ୍କୁ କୌଣସି ଅସ୍ତ୍ରାଗାରରେ ବନ୍ଦୀ କରାଯାଇ ପାରେ ନା । ତା ବ୍ୟତୀତ—

“ଭିସୁଭିଏସକୁ ସୁରିର ପାଦେ ବନ୍ଦୀ କରିବ ତୁମେ ?
ଆରେ ହତଭାଗା ଭଗାଂଶୀକାରୀ ବର୍ଷିତ ଶାସନ ନାମେ
ତମ ନାସଦାନ ଭିତରେ ଭରୁଚି ବିପ୍ଳବ ପିବ ଲୁଚି ?
ଶୁଣି କେବେ କାହିଁ ଜାଣି ନ ଲଢ଼େଇ, କରି ନ ସାମନା କିଛି ।

କିନ୍ତୁ ଏ ସବୁ ସତ୍ତ୍ୱେ ସଚ୍ଚିବାବୁ ଆଜି ଯୌନସାହିତ୍ୟର ପୂଜାରୀ ।

ମନମୋହନ ମିଶ୍ର ସାଂପ୍ରତିକ ଓଡ଼ିଆ ଭାଷାର ମହାନ ଗଣକବି । ମଧ୍ୟବର୍ତ୍ତୀକାଳରେ ହୁଏ ତ କିଛି ସମୟ ପାଇଁ ସେ ନୀରବ ହେଲେ, ପୂର୍ବପରି ତାଙ୍କର ସ୍ୱର ଏବେ ବି ଜ୍ୱାଳାମୟୀ । ସର୍ବହରା ମୁକ୍ତିଯୁଦ୍ଧର ଅନ୍ୟାନ୍ୟ ସୈନିକ ଗଣକବି ମନମୋହନ ମିଶ୍ର କୃଷୀ ଓ ଶ୍ରମିକ ପାଇଁ ଗାଇଛନ୍ତି—

“କାରଖାନା, ଖଳାବାଡ଼ି, ଖାଦାନ ବାଗାନରେ;
ଏକ ହୁଅ ତୁ ଭାରତ ଜନତା ସଂଗ୍ରାମର ମଇଦାନରେ ।”

ଏଇ ଉଦ୍‌ବୋଧନରେ ଭରି ରହିଛି ଶହ ଶହ ବର୍ଷର ବୈପ୍ଳବିକ ଚେତନାର ସ୍ୱର । ଏଥିରେ କୌଣସି ସନ୍ଦେହ ନାହିଁ ଯେ, ଶ୍ରୀଯୁକ୍ତ ମିଶ୍ର ହିଁ ପ୍ରକୃତ ପକ୍ଷେ ଓଡ଼ିଶାର ମହାନ ବିପ୍ଳବୀ ଗଣକବି ।

ସ୍ୱାଧୀନତା ପରବର୍ତ୍ତୀ ତରୁଣ ବିପ୍ଳବୀ କବିମାନଙ୍କର ସ୍ୱର ଆହୁରି ଦୃଢ଼, ତେଜୋଦୀପ୍ତ, ଗମ୍ଭୀର ଏବଂ ଆତ୍ମବିଶ୍ୱାସରେ ଓତଃପ୍ରୋତ ଭାବେ ଜଡ଼ିତ । ଏ ସ୍ୱର ଆଜି ଓଡ଼ିଆ ଭାଷାର ତଥାକଥିତ ମଠାଧୀଶ ଓ ମହନ୍ତ-ମାନଙ୍କର ମସ୍‌ନଦକୁ ଦୋହଲାଇ ଦେଇଛି । ଏହି ସ୍ୱରକୁ କେବଳ ପ୍ରତିଷ୍ଠିତ ସମ୍ପାଦକମାନେ ହିଁ ନୁହନ୍ତି, ବହୁ ପ୍ରତିଷ୍ଠିତ ସାହିତ୍ୟିକ, ରାଜନୀତି ନେତା ମଧ୍ୟ ସ୍ୱୀକାର କଲେଣି । ବର୍ତ୍ତମାନର ଅଗଣତାନ୍ତ୍ରିକ ଉପାୟରେ ଅତ୍ୟା-

ଗୃହର ସାହାଯ୍ୟ ନେଇ ଯେଉଁ କୁଷ୍ଠରୋଗାଗ୍ରସ୍ତ ସମାଜପଦ୍ଧତି ପ୍ରଚଳିତ ଅଛି, ତାକୁ ଆଉ ସହ୍ୟ କରିପାରୁ ନ ଏଇମାନଙ୍କର ଲେଖନୀ । ସେମାନେ ଶ୍ରେଣୀସଂଗ୍ରାମକୁ ତେଜୟୁାନ୍ ଓ ତ୍ୱରାନ୍ୱିତ କରିବା ପାଇଁ ଦୃଢ଼ ଉଦ୍ୟମଶୀଳ । ଏଥିପାଇଁ ସେମାନେ ଉତ୍ପୀଡ଼ନାହାନ୍ତି ଶାସନକଳକୁ, ଆତ୍ମସମର୍ପଣ କରିନାହାନ୍ତି ଅନ୍ୟାୟ ନିକଟରେ, ସାଲିସ୍ କରିନାହାନ୍ତି ପଙ୍ଗୁ ସମାଜ ସହ । ବିପ୍ଳବୀ କବିମାନେ କେବଳ ବୈପ୍ଳବିକ କବିତା ଲେଖି ସନ୍ତୁଷ୍ଟ ରହି ନାହାନ୍ତି; ବରଂ ଓହ୍ଲାଇଛନ୍ତି ସବଂହରାର ସଂଗ୍ରାମ ମଇଦାନକୁ ଖଟିଖିଆ ଶ୍ରେଣୀ ସହ କାନ୍ଧକୁ କାନ୍ଧ ମିଳାଇ । ଏଥିପାଇଁ ପ୍ରଚଳିତ କୁଷ୍ଠରୋଗାଗ୍ରସ୍ତ ସାମାଜିକ ଆଇନ-କାନୁନ୍ ଦ୍ୱାରା ଧରା ହୋଇ ବନ୍ଦୀଗୃହର ଶୋଭାବର୍ଦ୍ଧନ କରିଛନ୍ତି ଏଇମାନଙ୍କ ମଧ୍ୟରୁ ଅଧିକାଂଶ । ତେଣୁ ଏମାନଙ୍କର ଲେଖନୀ କାରାରୁଦ୍ଧର ମୁକ୍ତି ପାଇଁ ମେଘନାଦ ପ୍ରାଚୀର ଭାଙ୍ଗିଦେବା ଉଦ୍ଦେଶ୍ୟରେ ଅନବରତ ହୋଇ ଉଠିଛି ମୁଖର । ଓଡ଼ିଶାର ଜଣେ ପ୍ରତିଷ୍ଠିତ ସାହିତ୍ୟିକ ଡଃ ହରେକୃଷ୍ଣ ମହତାବ ବାଧ୍ୟ ହୋଇ ସ୍ୱୀକାର କରି କହୁଛନ୍ତି : ଶାନ୍ତି, ଶୃଙ୍ଖଳା ସଂରକ୍ଷିତ ହୁଏ ଶାସନ ଦ୍ୱାରା ଏବଂ ସେ ଶାସନ ନ୍ୟାୟପରାୟଣ, ସମସ୍ତଙ୍କ ପ୍ରତି ସମଭାବାପନ୍ନ ବା ଗୋଟିଏ ଶବ୍ଦରେ ଗଣତାନ୍ତ୍ରିକ ବୋଲି ବିଶ୍ୱାସ ରହିବା ନିତାନ୍ତ ଆବଶ୍ୟକ ।

... କିନ୍ତୁ ଶାସନ, ଗଣତାନ୍ତ୍ରିକ ଗୁଣ ପ୍ରତି ଆଦୌ ଧ୍ୟାନ ନ ଦେଇ ଯଦି କେବଳ ତା'ର ବାହ୍ୟ ରୂପ (form) ଶାନ୍ତିରକ୍ଷା ଉପରେ ଜୋର୍ ଦିଆହୁଏ, ତେବେ ଶାସନ ପ୍ରତି ଅବିଶ୍ୱାସ ହେବ ହିଁ ହେବ । ସେ ପୁଣି କହୁଛନ୍ତି : "ଗଣକୁ ଛାଡ଼ିଦେଇ କେବଳ ଆକୃତି ବା ବାହ୍ୟରୂପରେ ଜୋର୍ ଦେବାରୁ ଯେପରି ଧର୍ମକୁ ଅଫିମ ବୋଲି କୁହାହେଲା, ସେହିପରି ଗଣତନ୍ତ୍ରକୁ ଏକ ରାଜନୈତିକ ପ୍ରବଞ୍ଚନା ବୋଲି କୁହାଯାଉଛି । ଏହା ହିଁ ହେଉଛି ଆଜିର ଦେଶବ୍ୟାପୀ ଅସନ୍ତୋଷ ଓ ତଜ୍ଜନିତ ବିଶୃଙ୍ଖଳାର ମୌଳିକ କାରଣ । ଯେଉଁଠି ଶାନ୍ତିଶୃଙ୍ଖଳାଭଙ୍ଗକୁ ନିନ୍ଦା କରାହେଉଛି, ତା' ପୂର୍ବରୁ ସେଠି ଠିକ୍ ସେହି ସ୍ୱରରେ ଶାସନର ଦୋଷତ୍ରୁଟିକୁ ନିନ୍ଦା କରିବାକୁ ହେବ ।"

ତେଣୁ ଧନବାଦୀ ସମାଜର ଶାନ୍ତିଶୃଙ୍ଖଳା ଏବଂ ଆଇନ୍ କାନୁନକୁ ଭ୍ରୂକ୍ଷେପ ନ କରି ଏକ ଶୋଷଣବିହୀନ, ଶ୍ରେଣୀହୀନ ସମାଜ ବ୍ୟବସ୍ଥା ଗଠନ କରିବା ପାଇଁ ବର୍ତ୍ତମାନର ତରୁଣ ବ୍ୟଗ୍ର ହୋଇ ଉଠିଛି । ତେଣୁ ଆଜିର

ଏଇମାନେ ବହୁ ବୁର୍ଜୁଆ ବୁଦ୍ଧିଜୀବୀଙ୍କଠାରୁ ମଧ୍ୟ ସମର୍ଥନ ପାଇ ପୂର୍ଣ୍ଣମାତ୍ରାରେ ପ୍ରଜ୍ୱଳିତ ହୋଇଛନ୍ତି ଏବଂ ସାମାଜିକ ଅସମାନତାକୁ ନିଜର ଲେଲିହାନ୍ ଶିଖାରେ ଧ୍ୱଂସ କରିବା ପାଇଁ ସର୍ବଦା ଅବିରାମ ଗତିରେ ଚେଷ୍ଟା ଚଳାଇ-ଛନ୍ତି ମଧ୍ୟ । ଅତଏବ ଏଇ ଅନ୍ଧାରି ରାଜ୍ୟକୁ ଚୂର୍ମାର୍ କରିବା ପାଇଁ ତା'ର କଲମରୁ ଝରୁଛି ଆଜି ଅଗ୍ନି ସ୍ଫୁଲିଙ୍ଗ । ତରୁଣ ବିପ୍ଳବୀ କବି ପ୍ରସନ୍ନ କୁମାର ପାଟଶାଣୀ ଏମାନଙ୍କ ମଧ୍ୟରେ ଅଗ୍ରଣୀ । "କେଉଁ ପାତାଳକୁ ଯାଇ ଫେରି-ନାହିଁ ରଜାପୁଅ ଦେଇଛୁ ବା ବେକ, ଆଦିବାସୀ ଟୋକା ସତେ ଲଗାଇଛୁ ତା' ରକ୍ତ ତିଳକ ।" ସେ ପୁଣି କହୁଛନ୍ତି, "ସହରର ତରଜୁ କି ତଉଲୁଛି ଅରଣ୍ୟର ମାଂସ ! କେତେଦିନ ଅମଣିଷ ମଣିଷକୁ କରିବ ତଲ୍ଲସ ?" ବୌଦ୍ଧିକତାର ପୃଷ୍ଠ ଦେଇ ସେ ଗଣମାନସକୁ ବିପ୍ଳବର ଦୀକ୍ଷା ଦେବାରେ ନିମଜ୍ଜି ଯାଇଛନ୍ତି ।

ଅଧୁନା ବିପ୍ଳବୀ ଶିବିରରେ ଯୋଗ ଦେଇଥିବା ରୋମାଣ୍ଟିକ୍ କବି ସଦାଶିବ ଦାସଙ୍କର ବିଦ୍ରୋହୀର ସ୍ୱରରେ ଭରି ରହିଥାଏ ତୀବ୍ର ବାକ୍ୟବାଣ ଏବଂ ଶାଣିତ ଭାଷା । ବୁର୍ଜୁଆ ଧନବାଦୀମାନଙ୍କ ବିରୁଦ୍ଧରେ ବିଷ ଉଦ୍‌ଗାର କରି ତାଙ୍କ ଲେଖନୀ ଦୁନିଆକୁ କହୁଛି, "ବୁଝିଲି ଏବେ ଦୁନିଆଁ ସାରା ଶୋଷିତ ଲାଗି ତୀବ୍ର ଉପହାସ । ଖଟିଖିଆଙ୍କ ମେହନତରେ ନୂଆ ଦୁନିଆଁ ହସିବ ଯେବେ ପୂର୍ବ ହେବ ରକ୍ତ ।"

କ୍ଷେତ ଓ ଖମାରର କବି ଈଶ୍ୱର ନାୟକ । ତରୁଣ ଅରୁଣ ପରି ସେ ବେଗବାନ୍ । କେବଳ ସେ ବିପ୍ଳବର ଆବାହନୀ ଗାଇଛନ୍ତି ତା' ନୁହେଁ, ଖଟିଖିଆ ଶ୍ରମଜୀବୀବର୍ଗ ପାଇଁ ଲଢ଼େଇ କରି ଆବଦ୍ଧ କାରାର ପ୍ରାଚୀର ମଧ୍ୟେ ଅନେକ ଥର ଅତିଥି ହୋଇଛନ୍ତି । ଦଳିତ ଜନତାର ଜଣେ ଶୁଭାକାଙ୍କ୍ଷୀ ଭାବେ ସାଲିସ୍‌ବିହୀନ ସଂଗ୍ରାମର କଥା ଘୋଷଣା କରି କହୁଛନ୍ତି, "ବିପ୍ଳବ ଆସିଛୁ ଆସୁ ଧରଣୀକୁ ମାଡ଼ିଯାଉ ଥରେ, ପୃଥିବୀର ଦଳିତ ଜନତା ଏ ଝଡ଼କୁ ସ୍ୱାଗତଂ କରେ । ଏଇ ଝଡ଼ ଗୀତ ଗାଏ ବଞ୍ଚିବାର ପାଇଁ ଏବଂ ବଞ୍ଚାଇବା ପାଇଁ, ସମାଜର ଖାଲ ଢିପ ପୋଛିଦେଇ ସାଲିସ୍‌ର ପ୍ରଶ୍ନ ଏଠି ନାହିଁ ।"

ତ୍ରିଲୋଚନ ହୋଳ, ଆକୁଳୀ ମିଶ୍ର, ବୈଷ୍ଣବ ଚରଣ ସାମଲ, ସମରେନ୍ଦ୍ର ନାୟକ ଓ ଆହୁରି କେତେ ମଧ୍ୟ ଏହି ବୈପ୍ଳବିକ ସ୍ୱରରେ ନିଜର ସ୍ୱର ମିଶାଇ ପାରମ୍ପରିକ ସମାଜ ବ୍ୟବସ୍ଥା ବିରୁଦ୍ଧରେ ଓ

ଶ୍ରେଣୀସଂଗ୍ରାମକୁ ଆଗେଇ ନେବା ପାଇଁ ସିଂହନାଦ କରି କବିତା କ୍ଷେତ୍ରରେ ଆଗେଇ ଚାଲିଛନ୍ତି ।

କିନ୍ତୁ ବର୍ତ୍ତମାନ ଏଇ ଗୋଟିଏ ବର୍ଷ ମଧ୍ୟରେ ବାଣପୁରର ପାଞ୍ଚଟି ତରୁଣ ଅବଧୂତଗୋଷ୍ଠୀ ଗଠନ କରି ଛନ୍ଦ ନାମରେ ଯେଉଁ କବିତାମାନ ଲେଖୁଛନ୍ତି, ବାସ୍ତବିକ ଓଡ଼ିଆ କବିତାରେ ବୌଦ୍ଧିକ ଦିଗରୁ ଏହା ଏକ ମହାନ୍ ବୈପ୍ଳବିକ ଧ୍ୱନି । ହୁଏ ତ ଏମାନେ ବିବାଦରୁ ଊର୍ଦ୍ଧ୍ୱରେ ନାହାନ୍ତି, ତଥାପି ଏମାନଙ୍କୁ ଅସ୍ୱୀକାର କରିବାର ଦୁଃସାହସ 'ବୁର୍ଜୁଆ ସମାଲୋଚକ'-ମାନଙ୍କର ମଧ୍ୟ ନାହିଁ । ଏହି ପଞ୍ଚସଖା ଅବଧୂତ କବିଗୋଷ୍ଠୀ ହେଲେ; ଅଗ୍ନି ଶର୍ମା, ଅଖିଳ ପତି, ଅଗ୍ରଦୂତ, ଅଗ୍ରଗାମୀ ଏବଂ ପ୍ରଜାପତି । ସାଂପ୍ରତିକ ଓଡ଼ିଆ ବୈପ୍ଳବିକ କବିତା ଏମାନଙ୍କୁ ଛାଡ଼ି ପୂର୍ଣ୍ଣାଙ୍ଗ ନୁହେଁ । ଏମାନେ ପ୍ରତିଷ୍ଠିତ ହୋଇପାରିବେ କି ନା, ତାହା ଭିନ୍ନ କଥା ; ମାତ୍ର ନିଶ୍ଚିତରୂପେ ଏମାନେ ଯେ ବିପ୍ଳବୀ ସମୟର ସେତୁବନ୍ଧ, ଏହା ଅସ୍ୱୀକାର କରିହେବ ନାହିଁ ।

ତେଣୁ ଏହି ବୈପ୍ଳବିକ ସ୍ୱରକୁ କେହି ପ୍ରଚାରଧର୍ମୀ କହୁ, କେହି ପାମ୍ଫଲେଟ୍ ସାହିତ୍ୟ କହୁ ବା ଷ୍ଟେଟ୍‌ମେଣ୍ଟ କହୁ, ଯାଏ ଆସେ ନା ! କିନ୍ତୁ ଆଗାମୀ ଉଜ୍ଜ୍ୱଳ ସକାଳରେ ଏହା ହିଁ ବିବେଚିତ ହେବ ଓଡ଼ିଶାର ଶ୍ରେଷ୍ଠ ସାହିତ୍ୟ ରୂପରେ । ଏହି ସତ୍ୟକୁ ଅଧୁନା ପ୍ରତିକ୍ରିୟାଶୀଳଗୋଷ୍ଠୀ ସ୍ୱୀକାର କରନ୍ତୁ ବା ନ କରନ୍ତୁ ; ଏହା ଧ୍ରୁବ ସତ୍ୟ ଯେ, ମୁକ୍ତି କାମୀ ମଣିଷର କଣ୍ଠସ୍ୱର ଅଧିକ ଦିନ ଦବାଇ ରଖାଯାଇ ପାରେ ନା ଏବଂ ସମସ୍ତ ସ୍ୱର ମରିବାର ନୁହେଁ । କାରଣ ଏ ସ୍ୱର ଯୁଗର ଯନ୍ତ୍ରଣା ମଧ୍ୟରୁ ଜନ୍ମଲାଭ କରିଥିବା ବୁଦ୍ଧର । ଏ ସ୍ୱର ହତାଶା ମଧ୍ୟରୁ ଜାତ ହୋଇ ଆଶାର ସ୍ୱପ୍ନ ରଶ୍ମି ସଦୃଶ । ଏ ସ୍ୱର କାଳଜୟୀର, ଆଗାମୀ କାଳର ।

———

# ମୋ ଦୃଷ୍ଟିରେ
# ସାହିତ୍ୟରେ ରହସ୍ୟବାଦ ଓ
# ସାଂପ୍ରତିକ ଦୃଷ୍ଟିକୋଣ

ଡଃ ଦୋଲଗୋବିନ୍ଦ ଶାସ୍ତ୍ରୀ

**ପୂର୍ବାଭାସ**

ସାହିତ୍ୟରେ ରହସ୍ୟବାଦ ବା ରହସ୍ୟବାଦୀ ସାହିତ୍ୟର ସୃଷ୍ଟି ଅତି ସୁପ୍ରାଚୀନ । ବିଭିନ୍ନ ଯୁଗରେ ସାହିତ୍ୟର ଏହି ରହସ୍ୟବାଦ କେବଳ ନବ ନବ ରୂପାନ୍ତର ଲାଭ କରିଥାଏ ।

ସାହିତ୍ୟରେ ରହସ୍ୟବାଦ କ'ଣ—ଏ ବିଷୟରେ ଟିକିଏ ସୂଚନାର ପ୍ରୟୋଜନ । ସାଧାରଣତଃ ସ୍ରଷ୍ଟା ଯେତେବେଳେ ଅରୂପ ଭାବକୁ ରୂପ ଦାନ କରେ, ତାହାର ନାମ ସୃଷ୍ଟି । ସାହିତ୍ୟ ସ୍ରଷ୍ଟା ବା କବି ଯେତେ-ବେଳେ ମନ୍ମୟଭାବକୁ ବାଙ୍ମୟ ରୂପ ଦାନ କରେ, ତାହା ହୁଏ ସାହିତ୍ୟ । କିନ୍ତୁ ସମସ୍ତ ସମୟରେ କବି ସ୍ରଷ୍ଟା ଭାବକୁ ପ୍ରକାଶ କରିବା ପାଇଁ ଯେଉଁ ଭାଷାକୁ ମାଧ୍ୟମରୂପେ ଗ୍ରହଣ କରେ, ସେହି ଭାଷାର ଅଭିଧା ଅର୍ଥ କବିର ଭାବକୁ ପ୍ରକାଶ ନ କରି ଅନ୍ୟ ଗୋଟିଏ ଅର୍ଥ ପ୍ରକାଶ କରେ, ଅଥଚ ତା'ର ବ୍ୟଞ୍ଜନା ଓ ଧ୍ୱନିରେ କବି ସ୍ରଷ୍ଟାର ଭାବ ସଂପୂର୍ଣ୍ଣ ଆତ୍ମଗୋପନ କରି ରହିଥାଏ, ସେତେବେଳେ ସେହି ସୃଷ୍ଟି ସମାଲୋଚକର ଭାଷାରେ ରହସ୍ୟବାଦୀ ସାହିତ୍ୟ ଆଖ୍ୟା ଲାଭ କରେ ।

ଅବ୍ୟକ୍ତକୁ ବ୍ୟକ୍ତର ଭାଷାରେ, ଅସୀମକୁ ସୀମିତ ଦେହରେ; ଅରୂପକୁ ରୂପ ମଧ୍ୟରେ, ବୋଧାତୀତକୁ ବୁଦ୍ଧିର ଭାଷାରେ ପ୍ରକାଶ କରିବାକୁ ହେଲେ ଦୁର୍ବୋଧତା ବା ରହସ୍ୟ ଅବଶ୍ୟମ୍ଭାବୀ । ଏଥିପାଇଁ ପ୍ରତୀକ, ରୂପକ, ସିମ୍ବଲ (Symbol), ଇମେଜାରି (Imagery) ବା ଅତ୍ୟାଧୁନିକ ସ୍କେଚ୍ (Sketch) ପ୍ରଭୃତି ଏହି ରହସ୍ୟବାଦର ଭାଷା ।

ପୃଥିବୀର ପ୍ରାଚୀନତମ ସାହିତ୍ୟ ଋଗ୍‌ବେଦରେ ମଧୁବିଦ୍ୟା ବା ସୋମଯାଗର ଯେଉଁ ଉଲ୍ଲେଖ ଦେଖାଯାଏ, ତାହା ଏହି ରହସ୍ୟବାଦୀ ସାହିତ୍ୟର ସର୍ବପ୍ରାଚୀନତମ ନମୁନା ବୋଲି ଗ୍ରହଣ କରାଯାଇପାରେ ।

ଅପାମ ସୋମମ୍ ଅମୃତା ଅଭୂମ ଅଗନ୍ମ ଜ୍ୟୋତିରବିଦାମ ଦେବାନ୍ (ଋକ୍‌ସୂକ୍ତ ୮ । । ୪୮ । ୩) ଏଷୋ ଦେବ ଅମର୍ତ୍ତ୍ୟଃ (୯ । ୬୦ । ୧)— ଅର୍ଥାତ୍ ସୋମଲତାର ରସ ପାନ କଲେ ମନୁଷ୍ୟ ଅମରତ୍ୱ ଲାଭ କରେ, ସୋମରସରୂପୀ ଦେବତା ସର୍ବଦର୍ଶୀ, ସର୍ବଚକ୍ଷୁ ଏବଂ ଅମର୍ତ୍ତ୍ୟ ପ୍ରଭୃତି ବାକ୍ୟ ଦ୍ୱାରା ଯଦି କେବଳ ସୋମଲତା ବା ମାଦକତା ସୃଷ୍ଟି କାରୀ ସୋମରସକୁ ଲକ୍ଷ୍ୟ କରାହୋଇ ଥାଆନ୍ତା, ତେବେ ଏହି ବିଶ୍ୱବନ୍ଦିତ ଆଧ୍ୟାତ୍ମିକ ସାହିତ୍ୟରେ ସମଗ୍ର ନବମ ମଣ୍ଡଳଟି ସୋମଦେବତାଙ୍କ ଉଦ୍ଦେଶ୍ୟରେ ଉକ୍ତ ହୋଇ ନ ଥାଆନ୍ତା । ଋଗ୍‌ବେଦର ଏହି ସୋମରସ ପ୍ରକୃତ ପକ୍ଷରେ ମାଦକତାର ଆସବ ନୁହେଁ । ଏହା ବିଶ୍ୱସ୍ରଷ୍ଟାଙ୍କ ପ୍ରତି ହୃଦୟର ପ୍ରେମରସ । କିନ୍ତୁ ସ୍ୱର୍ଗୀୟ ଅପ୍ରାକୃତ ପ୍ରେମରସର ଅଭିବ୍ୟକ୍ତି ହୋଇଛି ଯେଉଁ ଭାଷା ମାଧ୍ୟମରେ, ସେ ଭାଷା ଆପାତତଃ ସୋମରସକୁ ବ୍ୟକ୍ତ କରୁଛି, ଏହା ହିଁ ସାହିତ୍ୟରେ ରହସ୍ୟବାଦ ।

ବସ୍ତୁ ବିଷୟରେ ସାଧାରଣଜ୍ଞାନ ସମସ୍ତଙ୍କର ଥାଏ । ସମସ୍ତେ ନିଜ ଜୀବନରେ ଯେଉଁ ଆନନ୍ଦ, ନିରାନନ୍ଦ, ମିଳନ-ବିରହ, ଆଶା-ନୈରାଶ୍ୟ, ଶଠତା-ସରଳତା, କରୁଣା-ଅନୁକମ୍ପା ପ୍ରଭୃତି ନିତ୍ୟନୈମିତ୍ତିକ ପ୍ରତି ମୁହୂର୍ତ୍ତରେ ଉପଲବ୍ଧି କରନ୍ତି, ତାହାକୁ ହିଁ ପ୍ରତ୍ୟକ୍ଷଭାବରେ ଉପଜୀବ୍ୟ କରି ରହସ୍ୟବାଦୀ ସାହିତ୍ୟ ସୃଷ୍ଟି ହୋଇଥାଏ ; କାରଣ ଆଧ୍ୟାତ୍ମ ବା ଅତି ମାନସ ବସ୍ତୁର ଅବଧାରଣା ସାଧାରଣ ପାଠକ ପକ୍ଷରେ ଗ୍ରହଣ କରିବା ସହଜ ନୁହେଁ, ସେଥିପାଇଁ ଉପର୍ଯ୍ୟୁକ୍ତ ପ୍ରତୀକ ବା ରୂପକର ଆଶ୍ରୟ ନେବାକୁ ହୁଏ, କିନ୍ତୁ ଅନେକ ସମୟରେ ତାହାକୁ ଭୁଲ ବୁଝିବାର ସମ୍ଭାବନା ମଧ୍ୟ ଥାଏ ଏବଂ ସେ ପ୍ରକାର ଭୁଲ ବୁଝି ସେହି ସମସ୍ତ ରୂପକର ପ୍ରତ୍ୟକ୍ଷ ପ୍ରୟୋଗକୁ ନିଜ ଜୀବନରେ ସାଧନ କରିବାର ପ୍ରୟାସରୁ ବହୁ ବହୁ ଭ୍ରଷ୍ଟ ତଥାକଥିତ ଆଧ୍ୟାତ୍ମିକ ସାଧନଭଜନ ମାର୍ଗ ସୃଷ୍ଟି ହୋଇଛି ଏବଂ ବହୁ ସମାଲୋଚକ ମଧ୍ୟ ତଦ୍ରୂପ ରୂପକର ଅଭିଧା ଅର୍ଥକୁ ମୁଖ୍ୟଭାବରେ ଗ୍ରହଣ କରି ସେହି ସମସ୍ତ ସାହିତ୍ୟର ଭ୍ରାନ୍ତଅର୍ଥ ପ୍ରଚାର କରିଅଛନ୍ତି ।

ଋଗ୍‌ବେଦର ସୋମ ରସପାନ, ଓମର ଖୈୟାମର ସୁରା-ସାକୀ, ଚର୍ଯ୍ୟା-ପଦର ଶବରଡୋମ୍ବୀ ପ୍ରଭୃତିର ବିକୃତ ଅର୍ଥ ଗ୍ରହଣକାରୀ ପାଠକ ବା ସମାଲୋଚକ ବିରଳ ନୁହନ୍ତି । ସାହିତ୍ୟ ଜଗତରେ ଏହା ଏକ ଦୁର୍ବୁଦ୍ଧିର ବିଳାସ ମାତ୍ର ।

**ରହସ୍ୟବାଦର ଉତ୍ସ**

ସାହିତ୍ୟ କ୍ଷେତ୍ରରେ ଏ ପ୍ରକାର ବିରୋଧାଭାସଯୁକ୍ତ ରହସ୍ୟ କୁହେଳିକାର ପ୍ରୟୋଜନ କାହିଁକି ହୁଏ, ସ୍ରଷ୍ଟା ଏ ପ୍ରକାଶଭଙ୍ଗୀର ଆଶ୍ରୟ କାହିଁକି ଗ୍ରହଣ କରନ୍ତି, ଏ ପ୍ରଶ୍ନ ସ୍ୱତଃ ମନରେ ଉଦିତ ହୁଏ ।

ସାହିତ୍ୟର ଉପଜୀବ୍ୟ ଏହି ଅନନ୍ତବୈଚିତ୍ର୍ୟବିମଣ୍ଡିତ ସୃଷ୍ଟି ତାର ଆତ୍ମା ଓ ତାର ସ୍ରଷ୍ଟା ଏବଂ ସାହିତ୍ୟ ଏହି ସୃଷ୍ଟିର ସର୍ବୋତ୍ତମ ପ୍ରକାଶ କେବଳ ମାତ୍ର ମନୁଷ୍ୟ ପାଇଁ, ଅନ୍ୟ କୌଣସି ସୃଷ୍ଟ ଜୀବ ବା ବସ୍ତୁ ପାଇଁ ସାହିତ୍ୟ କୌଣସି କାଳରେ ଉଦ୍ଦିଷ୍ଟ ନୁହେଁ । ବସ୍ତୁତଃ ସୃଷ୍ଟିର ଆତ୍ମା ବା ଚୈତନ୍ୟ, ସ୍ରଷ୍ଟା ଓ ମାନବସୃଷ୍ଟି—ଏ ଗୁଟିଏ ତତ୍ତ୍ୱ ବା ସତ୍ୟ ସର୍ବଦା ବିରୁଦ୍ଧଗୁଣ ସମନ୍ୱିତ, ରହସ୍ୟଘନ ଓ ଅନିର୍ବଚନୀୟ । ତନ୍ମଧ୍ୟରେ ସୃଷ୍ଟିର ପ୍ରାଣକେନ୍ଦ୍ର ଆତ୍ମା ଓ ସ୍ରଷ୍ଟା—ଏ ତତ୍ତ୍ୱ ଦୁଇଟି ସର୍ବାପେକ୍ଷା ରହସ୍ୟମୟ । ଏ ଦୁଇଟି ଯୁଗପତ୍ ଅବ୍ୟକ୍ତ ଓ ବ୍ୟକ୍ତ, ଅରୂପ ଓ ରୂପବାନ୍, ସଗୁଣ ଓ ନିର୍ଗୁଣ, ନିରାକାର ଓ ଆକାର ବିଶିଷ୍ଟ, ସବିଶେଷ ଓ ନିର୍ବିଶେଷ । ସାହିତ୍ୟସ୍ରଷ୍ଟା ଏହି ତତ୍ତ୍ୱତ୍ରୟର ରହସ୍ୟକୁ ଆବିଷ୍କାର କରନ୍ତି, ବ୍ୟାଖ୍ୟା କରନ୍ତି ; ଏହି ରହସ୍ୟମୋଚନ ଓ ବ୍ୟାଖ୍ୟା ଯେଉଁ ଭାଷାରୂପ ଗ୍ରହଣ କରେ, ତାହା ହିଁ ସାହିତ୍ୟ ବା ପ୍ରାଚୀନ ଆଳଙ୍କାରିକ ଭାଷାରେ କାବ୍ୟ ନାମରେ ଅଭିହିତ ହୁଏ । ତତ୍ତ୍ୱର ବ୍ୟକ୍ତ, ରୂପମୟ, ସବିଶେଷ ସ୍ୱରୂପର ରହସ୍ୟ ଯେତେବେଳେ କବିସ୍ରଷ୍ଟାର ହୃଦୟରେ ବିଭିନ୍ନ ଭାବରେ ସ୍ଫୂର୍ତ୍ତି ଘଟାଇ ଭାଷାରୂପ ଗ୍ରହଣ କରେ, ତାହା ହୁଏ ମନ୍ମୟ ସାହିତ୍ୟ, କବିସ୍ରଷ୍ଟା ଯେତେବେଳେ ଅବ୍ୟକ୍ତ, ଅରୂପ, ନିର୍ବିଶେଷ ପ୍ରକାଶର ସ୍ୱରୂପ ଭାଷା ମାଧ୍ୟମରେ ଉଦ୍‌ଘାଟିତ କରେ ବା ଉଭୟ ସ୍ୱରୂପର ସାମଞ୍ଜସ୍ୟ ଓ ସମନ୍ୱୟର ରହସ୍ୟ ଆବିଷ୍କାର କରିବା ପାଇଁ ସ୍ୱକୀୟ ଭାବରୂପକୁ ଭାଷାରୂପ ଦାନ କରେ, ସେତେବେଳେ ତାହା ହୁଏ ତନ୍ମୟ ସାହିତ୍ୟ ବା ରହସ୍ୟବାଦୀ ସାହିତ୍ୟସୃଷ୍ଟି ।

ରହସ୍ୟବାଦ କୌଣସି ତତ୍ତ୍ୱ ବା ମତବାଦ ନୁହେଁ । ଏହା ସ୍ରଷ୍ଟାର ଗୋଟିଏ ବିଶିଷ୍ଟ ପ୍ରକାଶଭଙ୍ଗୀ । ସ୍ରଷ୍ଟା ସୃଷ୍ଟିର ଅନ୍ତର୍ନିହିତ ରହସ୍ୟକୁ ଯେ ଭାବରେ ପ୍ରତ୍ୟକ୍ଷ କରନ୍ତି, ଅନୁଭବ କରନ୍ତି, ସୃଷ୍ଟିର ଯାବତୀୟ ବୈଚିତ୍ର୍ୟ କବିସ୍ରଷ୍ଟାର ମାନସ ଫଳକରେ ଯେଉଁ ଭାବରେ ପ୍ରତିଫଳିତ ହୁଏ, ଅନୁରଣିତ ହୁଏ, ତାହାକୁ ଏହି ବିଶିଷ୍ଟ ପ୍ରକାଶଭଙ୍ଗୀ ମାଧ୍ୟମରେ ଭାଷାରୂପ ଦାନକରିବା ସମୟରେ କବି ମାନବର ସହଜଭାଷା, ବୋଧଗମ୍ୟ ଭାଷାକୁ ଏକାନ୍ତ ଅପର୍ଯ୍ୟାପ୍ତ ଅନୁଭବ କରେ ! ଏଣୁ ଅବ୍ୟକ୍ତ ଚେତନାକୁ ବ୍ୟକ୍ତଭାଷାରେ, ଅବ୍ୟାନୁଭୂତିକୁ ଅବ୍ୟ ଶବ୍ଦରେ ପ୍ରକାଶ କରିବା ପାଇଁ ସେ ସମ୍ପୂର୍ଣ୍ଣ ସ୍ୱକୀୟ ପଦକଦମ୍ବର ଆଶ୍ରୟ ନେବାକୁ ବାଧ୍ୟ ହୁଏ; ସେତେବେଳେ କବି ମଧ୍ୟ ହୋଇଯାଏ ଅତ୍ୟନ୍ତ ରହସ୍ୟମୟ ଲୋକର ଅଧିବାସୀ ; ତାର ପ୍ରତୀକ, ଉପମା, ରୂପକ—ସବୁକିଛି ଅବଲମ୍ବନ ମଧ୍ୟ ରହସ୍ୟାଚ୍ଛନ୍ନ ହୁଏ—ଆପାତବିରୋଧୀ, ଅସଂଲଗ୍ନ, ଅସ୍ପଷ୍ଟ, ସାମଞ୍ଜସ୍ୟହୀନ, ଅବାସ୍ତବ ବୋଲି ପ୍ରତୀତ ହୁଏ । ଉପନିଷଦର ଋଷି ଯେତେବେଳେ ଏହି ଦେହରେ ଆତ୍ମା ଓ ପରମାତ୍ମାଙ୍କ ଅବସ୍ଥିତି ଓ କ୍ରିୟାକୁ

ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟା
ସମାନେ ବୃକ୍ଷେ ପରିଷସ୍ୱଜାତେ(—?)

ପୃଥିବୀର ଆଦିକାବ୍ୟ ବା ସାହିତ୍ୟ ବେଦ, ଉପନିଷଦ ଓ ବ୍ରହ୍ମସୂତ୍ର ବିଶ୍ୱସ୍ରଷ୍ଟାଙ୍କୁ ଈଶ୍ୱର ବା ବ୍ରହ୍ମ ନାମରେ ଅଭିହିତ କରିଛନ୍ତି । ସେହି ଈଶ୍ୱର ବା ବ୍ରହ୍ମ ଯୁଗପତ୍ ଅବ୍ୟକ୍ତ ଓ ବ୍ୟକ୍ତ, ଅରୂପ ଓ ରୂପମୟ, ସବିଶେଷ ଓ ନିର୍ବିଶେଷ ।

ଏହି ବ୍ରହ୍ମ ଅଶବ୍ଦମସ୍ପର୍ଶମ ରୂପମବ୍ୟୟମ୍ (କଠ: ୧ । ୩ । ୧୫)—ଏହି ବ୍ରହ୍ମ ଅଶବ୍ଦ, ଅସ୍ପର୍ଶ, ଅରୂପ, ଅବ୍ୟୟ । ପୁନଶ୍ଚ ସେହି ବ୍ରହ୍ମ ଦ୍ୱେବାବ ବ୍ରହ୍ମଣୋ ରୂପେ (ବୃହଦାରଣ୍ୟକ: ୨ । ୩ । ୧), ଏତଦ୍ ବୈ ସତ୍ୟକାମ ପରମ୍ ଅପରଞ୍ଚ ବ୍ରହ୍ମ (ପ୍ରଶ୍ନ: ୫ । ୨)

ଯଥା ସୁଦୀପ୍ତାତ୍ ପାବକାଦ୍ ବିସ୍ଫୁଲିଙ୍ଗା
ସହସ୍ରଶ: ପ୍ରଭବନ୍ତେ ସରୂପା:
ତଥାକ୍ଷରାଦ୍ ବିବିଧା: ସୋମ୍ୟ ଭାବା:
ପ୍ରଜାୟନ୍ତେ ତତ୍ର ଚୈବାପିଯନ୍ତି ॥ (ମୁଣ୍ଡକ: ୨ । ୧ । ୧)

ଆତ୍ମର ମଧ୍ୟ ସେହି ବ୍ରହ୍ମ

ସର୍ବକର୍ମା ସର୍ବକାମଃ ସର୍ବଗନ୍ଧଃ ସର୍ବରସଃ । (ଛାନ୍ଦୋଗ୍ୟ: ୩ । ୧୪ । ୨)

କେତେବେଳେ ମଧ୍ୟ ସେହି ବ୍ରହ୍ମ

ମହାନ୍ ପ୍ରଭୁର୍ବୈ ପୁରୁଷଃ ପ୍ରେୟଃ ପୁତ୍ରାତ୍ ପ୍ରେୟୋ ବିତ୍ତାତ୍, ପ୍ରେୟଃ ଅନ୍ୟସ୍ମାତ୍ ସର୍ବସ୍ମାତ୍, ରସୋ ବୈ ସଃ ।

ବ୍ରହ୍ମ କେବଳ ରସସ୍ୱରୂପ ନୁହଁନ୍ତି, ସେ ଆନନ୍ଦମୟ ମଧ୍ୟ । ତାହାଙ୍କୁ ଉପଲବ୍ଧି କଲେ ଆତ୍ମା ମଧ୍ୟ ରସସିକ୍ତ ଓ ଆନନ୍ଦମୟ ହୋଇଥାଏ ।

**ସାମ୍ପ୍ରତିକ ରହସ୍ୟବାଦ**

ଓଡ଼ିଆ ସାହିତ୍ୟରେ ମଧୁସୂଦନଯୁଗ ପର୍ଯ୍ୟନ୍ତ ଯେଉଁ ରହସ୍ୟବାଦ ଆତ୍ମପ୍ରକାଶ କରିଛି, ତାହାର ପ୍ରଧାନ ଆଭିମୁଖ୍ୟ ଥିଲା ଅବ୍ୟକ୍ତକୁ ବ୍ୟକ୍ତ କରିବା । ସେଥିପାଇଁ ବ୍ୟକ୍ତବସ୍ତୁ ଓ ବ୍ୟକ୍ତ ଭାଷାର ମାଧ୍ୟମ ସ୍ୱୀକାର । କିନ୍ତୁ ସାଂପ୍ରତିକ ଓଡ଼ିଆ ସାହିତ୍ୟରେ ଅର୍ଥାତ୍ ବିଶେଷତଃ ଅତ୍ୟାଧୁନିକ କବିଗୋଷ୍ଠୀର ସୃଷ୍ଟିଚୟରେ ଯେଉଁ ରହସ୍ୟବାଦ ପ୍ରତିଫଳିତ ହୋଇଛି, ତାହାର ବିଷୟବସ୍ତୁ ଅବ୍ୟକ୍ତ ନୁହେଁ, ରହସ୍ୟ ନୁହେଁ । ତାହା ଅତି ବ୍ୟକ୍ତ, ଅତି ପ୍ରକଟ ବାସ୍ତବ ଜୀବନ ଓ ବସ୍ତୁତତ୍ତ୍ୱକୁ ଅବ୍ୟକ୍ତ ରହସ୍ୟମୟ କରିବାର ଏକ ଆପ୍ରାଣ କୃତ୍ରିମ ପ୍ରୟାସ । ଏ ପ୍ରକାର ପ୍ରୟାସ ମଧ୍ୟରେ ଆଧୁନିକ କବିସ୍ରଷ୍ଟାର ସତ୍ୟର ସ୍ୱରୂପ ଉଦ୍‌ଘାଟନ କରିବାର ସ୍ପୃହା ଯେ କିଞ୍ଚିତ୍ ବିଦ୍ୟମାନ୍ ତାହା ଅବଶ୍ୟ ସ୍ୱୀକାର୍ଯ୍ୟ । କିନ୍ତୁ ସେ ସତ୍ୟ ଉଦ୍‌ଘାଟନ ପାଇଁ ଯେଉଁ ସାଧନା, ଯେଉଁ ନିର୍ମଳ ମାନସିକ ପ୍ରସ୍ତୁତି-ବା ହୃଦୟରେ ସତ୍ୟର ସ୍ୱତଃ ସ୍ଫୁର୍ତ୍ତି ନିମିତ୍ତ ଯେଉଁ ତଟସ୍ଥ ପ୍ରତୀକ୍ଷମାଣ ନମ୍ରମୟ ଆଗ୍ରହ, ତାହାର କୌଣସି ସୂଚନା ଏ ସୃଷ୍ଟିରେ ନାହିଁ । ଏଥିରେ ଅଛି—ନର୍ଦ୍ଦମାର ପଙ୍କକୁ ଖିନ୍ନଭିନ୍ନ କରି, ଘାଣ୍ଟି ଚକଟି ରାସ୍ତାରେ ଇତସ୍ତତଃ ବିକ୍ଷିପ୍ତ କରି 'ସତ୍ୟ କେଉଁଠି ଅଛି' ତାହା ତଳେ ତଳେ ଅନୁସନ୍ଧାନ, ଅଥବା ଦେହର ପ୍ରତ୍ୟେକ ଅଙ୍ଗପ୍ରତ୍ୟଙ୍ଗ, ଶିରପ୍ରଶିରକୁ କାଟି ଚିନ୍ନ ଚିନ୍ନ କରି ଆତ୍ମାର ଅନୁସନ୍ଧାନ, ଅଥବା ପୁଷ୍ପକୁ ଦଳିଚକଟି ସୁଷମା ଓ ସୌରଭ କେଉଁଠାରେ ଅଛି, ଆବିଷ୍କାର କରିବାର ପାଗଳସୁଲଭ ନିଷ୍ଫଳ ଅପପ୍ରୟାସ । ଏହାର ଉଦାହରଣ ଅତ୍ୟାଧୁନିକ କବିତା ପୁସ୍ତକଗୁଡ଼ିକର ପ୍ରାୟ ପ୍ରତି ଛତ୍ରରେ ଦେଖାଯାଏ । କେବଳ କେତୋଟି ମାତ୍ର ଉଦ୍ଧାର କରି ଉକ୍ତିକୁ ଅଧିକ

ଉନ୍ନତି ନ କରିବା ଯୁକ୍ତିଯୁକ୍ତ । ଦୁଃଖର ବିଷୟ, କେତେକ ପ୍ରକାଶକଗୋଷ୍ଠୀ ଏ ପ୍ରକାର ଅପସୃଷ୍ଟି ଓ ଅନାଗୃହରର ପ୍ରଶ୍ରୟ ଦେଉଛନ୍ତି କେବଳ ଅର୍ଥ ଲୋଭରେ । ଭିତରେ ଯାହା ଥାଉ ନା କାହିଁକି, କେବଳ ସୁଦୃଶ୍ୟ ଆକର୍ଷଣୀୟ ପ୍ରଚ୍ଛଦପଟ ଏବଂ ଲେଖକ ବା ତାଙ୍କ ସମର୍ଥକଙ୍କର ଦୁର୍ବୋଧ୍ୟ-ଭାଷାର କୁହେଳିକାମୟ ମୁଖବନ୍ଧ, କଟିବନ୍ଧ ବା ପୃଷ୍ଠବନ୍ଧଟିଏ ଖଞ୍ଜି ଦେଲେ ହେଲା । ତାହା ଉପରେ ଯଦି କେତେଖଣ୍ଡ ପଣ୍ୟଜୀବୀମାନଙ୍କ ପରି ଅନବଗୁଣ୍ଠିତା ଅନାବୃତା ଛବି ଯୋଡ଼ି ଦିଆଯାଏ, ତେବେ ମଣିକାଞ୍ଚନ ସଂଯୋଗ । ଖ୍ୟାତନାମା ପ୍ରକାଶକମାନଙ୍କର ଏହି ବାରବନିତା ବ୍ୟବସାୟର ପ୍ରତିଯୋଗିତା ଏକ ପ୍ରକାର ଉତ୍କଟ ଆକାର ଧାରଣ କଲାଣି । କିନ୍ତୁ ଯେଉଁ ସାହିତ୍ୟ ସ୍ରଷ୍ଟାଙ୍କର ଜାତିଧର୍ମ ନଷ୍ଟ କରିବା ହିଁ ଏ ବ୍ୟବସାୟର ମୂଳଧନ, ସେମାନେ ସେ ବ୍ୟବସାୟରୁ ଦୁଇବେଳା ଆହାର ଯୋଗାଇବାର ଅର୍ଥ ମଧ୍ୟ ପାଇପାରନ୍ତି ନାହିଁ ।

ଏ ପ୍ରକାର ସୃଷ୍ଟିକୁ ଯଦି ସାହିତ୍ୟ ଆଖ୍ୟା ଦିଆଯାଏ, ତେବେ କାଗଜରେ ଛପା ହୋଇଥିବା ଯେ କୌଣସି ଲେଖା ଏପରି କି ପାଗଳର ଅସମ୍ବଦ୍ଧ ପ୍ରଳାପ ମଧ୍ୟ ସାହିତ୍ୟ ପଦବାଚ୍ୟ ହେବ । ସମଗ୍ର ବିଶ୍ୱସୃଷ୍ଟି ଛନ୍ଦୋମୟ, ଜୀବନ ମଧ୍ୟ ଛନ୍ଦୋମୟ, ଛନ୍ଦହୀନ ସୃଷ୍ଟି ନିରର୍ଥକ, ଛନ୍ଦହୀନ ଜୀବନ ମଧ୍ୟ କେବଳ ଉନ୍ମତ୍ତର ଜୀବନ ।

ଯୁଗଧର୍ମ ମୁଁ ସ୍ୱୀକାର କରେ । ନୂତନକୁ ବରଣ କରି ନେବାର ସଶ୍ରଦ୍ଧ ଆବାହନୀ ମୁଁ ଗାଇବାକୁ ଉଲ୍ଲାସ ବୋଧ କରେ, କିନ୍ତୁ ସାହିତ୍ୟ ସୃଷ୍ଟି ନାମରେ ଯାହା ସୃଷ୍ଟି ହେଉଅଛି, ସେଥିରେ ଆଶାନ୍ୱିତ ହେବାର ଲକ୍ଷଣ ମୋଟେ ନାହିଁ, ବରଂ ଆତଙ୍କିତ ହେବାର କାରଣ ଯଥେଷ୍ଟ ଦେଖୁଛି । ବାସ୍ତବବାଦୀ ସାହିତ୍ୟ ନାମରେ ଦେହ ବା ମନ ଭିତରର ମଇଳାକୁ ଦେହସାର ବୋଲି ହେବା ଅଥବା ରାସ୍ତାରେ ବିକ୍ଷିପ୍ତ କରିବା ନାମ ସାହିତ୍ୟସୃଷ୍ଟି ନୁହେଁ ।

ଯେଉଁ ସମାଜର ସାଧାରଣ ଜନତା ଏ ପର୍ଯ୍ୟନ୍ତ ସାହିତ୍ୟର ପାଠଶାଳାରେ ଭର୍ତ୍ତିହୋଇ ନାହାଁନ୍ତି, ଯେଉଁମାନଙ୍କର ରୁଚି ଓ ରସବୋଧ ସେହି ଜନଜୀବନ ପରି ହୀନ, ଦୁର୍ବଳ ଓ ପଙ୍ଗୁ, ବିଦେଶରୁ ଆଦର୍ଶ ଧାରି କରି ଏବଂ ତାହାର କଦର୍ଥ କରି ସେମାନଙ୍କର ସେହି ମୂର୍ଖତା ଓ ମୂଢ଼ତାକୁ

ହିଁଦ୍ୟ ଦେବା ଯେ କେତେଦୂର ବିପଜ୍ଜନକ, ତାହା ଏବେ ବି ଭାବିବାର ସମୟ ଯଦି ଆସି ନ ଥାଏ, ତେବେ ସେ ସମୟ ଆଉ ଆସିବ ବୋଲି ମନେ ହୁଏ ନା । ରାଷ୍ଟ୍ରୀୟ ସାଧନାକ୍ଷେତ୍ରରେ ବର୍ତ୍ତମାନ ଯେପରି ଉତ୍କଟ୍ଠାରେ ପ୍ରୟୋଜନ ଅଛି, ସେହିପରି ସାହିତ୍ୟକ୍ଷେତ୍ରରେ ରୁଚି ଓ ରସବୋଧକୁ ଶୋଧନ ଓ ସଂଯମନ ବା ନିୟନ୍ତ୍ରଣ କରିବା ପାଇଁ ଜନମନୋବୃତ୍ତି ଉପରେ ଅଭିଜାତରୁଚିର ଶାସନ ଅତ୍ୟାବଶ୍ୟକ । ମଧୁସୂଦନ, ଗଙ୍ଗାଧର, ଫକୀର-ମୋହନଙ୍କର ଯୁଗପ୍ରଭାବ ଶେଷ ହୋଇଛି ବୋଲି ଭାବି ଯେଉଁମାନେ ଉଲ୍ଲାସରେ ଓଡ଼ିଆ ସାହିତ୍ୟ ଜଗତରେ ଉତ୍କଟ ଅନାଚାର ଆରମ୍ଭ କରିଦେଇଛନ୍ତି, ସେମାନେ ଜାଣିରଖନ୍ତୁ, ଏ ଯୁଗ ଶେଷ ହେବାର ଯୁଗ ନୁହେଁ । ବିଦେଶରୁ ଧାରକରା ଉଗ୍ର ଆଧୁନିକତାର ଆଦର୍ଶ ଠିଆକରି —ବାସ୍ତବତା ବା ଜୀବନସତ୍ୟର ଛଳ ଦେଖାଇ ଯେଉଁମାନେ ଜନ-ମନର ବିକୃତ ରୁଚିର ପରିଚର୍ଯ୍ୟାକୁ ହିଁ ସାହିତ୍ୟର ବ୍ରତକରି ସାରିଛନ୍ତି, ସେମାନେ ସାହିତ୍ୟକୁ ହତ୍ୟାକରି ଆତ୍ମହତ୍ୟାର ପଥ ପରିଷ୍କାର କରୁଛନ୍ତି ।

ପ୍ରକାଶନର ବିଜ୍ଞାପନ ପ୍ରଚୁର କରି ସାହିତ୍ୟର ଏହି ଅନାଚାର ବା ସାହିତ୍ୟ ସଂସାରରେ ଏହି କଳଙ୍କିତ ଅପସୃଷ୍ଟିକୁ ବଞ୍ଚାଇ ରଖିବାର ଯାବତୀୟ ପ୍ରୟାସ କେବଳ କାଳର ସାମାନ୍ୟ ଝଞ୍ଜାପବନରେ ଅଗାଡ଼ି ସଦୃଶ ଉଡ଼ିଯିବ । ଏ ସୃଷ୍ଟି ଯୁଗଜୟୀ, କାଳଜୟୀ ମୃତ୍ୟୁଞ୍ଜୟୀ ସୃଷ୍ଟିର ଆସନ କୌଣସି କାଳରେ ଲାଭ କରିପାରିବ ନାହିଁ—ଏହା ଯେତେ ଅପ୍ରିୟ ହେଲେ ମଧ୍ୟ ନିର୍ମମ ସତ୍ୟ । ଭବିତବ୍ୟ ହିଁ ତାର ସାକ୍ଷ୍ୟ ଦେବ ।



# ମୋ ଦୃଷ୍ଟିରେ ସାଂପ୍ରତିକ ଓଡ଼ିଆ କବିତାରେ ସମାଜଚେତନା

ଅଧ୍ୟାପକ ଦୀପକ ମିଶ୍ର

କେବଳ ଓଡ଼ିଆ କବିତା କାହିଁକି, ପୃଥିବୀର ( ଆପାତତଃ ଆମେ ଯେତିକି ଅବଲୋକନ କରିଛୁ ) ପ୍ରାୟ ସମସ୍ତ ଭାଷାର କବିତାରେ— କବିତାର ଜନ୍ମଲଗ୍ନରୁ ସମାଜ ଓ ସାମାଜିକ ଚେତନାର ବିଭିନ୍ନ ରୂପାନ୍ତର ପ୍ରତିବିମ୍ବିତ ହୋଇଛି, ହୋଇଛି ପ୍ରତିଫଳିତ ; ଏହାର ଏକମାତ୍ର ମୌଳିକ ଅଥଚ ଅତି ସାଧାରଣ କାରଣ ହେଉଛି କବିର ସାମାଜିକ ସ୍ଥିତି ଓ ବ୍ୟକ୍ତିତ୍ୱ । କିନ୍ତୁ ତଫାତ୍ ଏତିକି ଯେ, ଭୌଗୋଳିକ ମାନଚିତ୍ରରେ ସମାଜର ଆବରଣ ଯାହା, କବିତାରେ ତାହାର ପ୍ରତିରୂପ ସବୁବେଳେ ତାହା ହୋଇ ନାହିଁ ; ଅପର ପକ୍ଷରେ ଏହି ସାମାଜିକ ଚେତନା ଏକ ଅବଶ୍ୟମ୍ଭାବୀ ପରିବର୍ତ୍ତନ ମାଧ୍ୟମରେ ପ୍ରକାଶ ପାଇଛି ବିଭିନ୍ନ ରୂପରେ ବିଭିନ୍ନ ସମୟର କବିତା-ମାନଙ୍କରେ । ସାରଳା ଦାସଙ୍କଠାରୁ ଆରମ୍ଭ କରି ରାଧାନାଥଙ୍କ ପର୍ଯ୍ୟନ୍ତ ଯାବତୀୟ କାବ୍ୟକବିତାରେ ବହୁଳାଂଶରେ ସାମାଜିକ ଚେତନାର ଆତ୍ମପ୍ରକାଶ ଥିଲା ଅପରିହାର୍ଯ୍ୟ ଓ କବିସତ୍ତାର ସୌଷ୍ଠବର ପରିପୂର୍ତ୍ତିତା ସ୍ୱୀକାର୍ଯ୍ୟ ହେଉଥିଲା ଉକ୍ତ କାବ୍ୟର ସାମାଜିକ ପ୍ରଭାବର ମାତ୍ରା ଉପରେ; ତେଣୁ ସମସ୍ତ କାବ୍ୟିକ ରସବୋଧ ଓ ଉତ୍ତମର୍ତ୍ତିତା ସତ୍ତ୍ୱେ ସେକାଳର କବିମାନଙ୍କୁ ଅନ୍ୟ ଏକ ଭୂମିକାରେ ଅଭିନୟ କରିବାକୁ ପଡ଼ୁଥିଲା ଏବଂ ଏଇ ଅଭିନୟର ଜନ୍ମ ଦାୟିତ୍ୱବୋଧରୁ—ତାହା ଇଚ୍ଛାକୃତ ହେଉ ବା ସଂସ୍କାରସମ୍ମତ ହେଉ । ଏତଦ୍‌ବ୍ୟତୀତ ସେତେବେଳର କବିମାନେ ସମାଜର ଭିନ୍ନ ଭିନ୍ନ ସ୍ତର ସହିତ ଏଭଳି ଜଡ଼ିତ—ଉଭୟ ମାନସିକ ଓ ଦୈହିକ ସ୍ତରରେ ଯେ ବେଳେବେଳେ ନାନା ଉପଦେଶ, ନୀତିବାକ୍ୟ ଓ ଉପାଖ୍ୟାନର ଛତା ତଳେ ନିଜକୁ ରଖି ସମାଜ ପ୍ରତି ସେମାନଙ୍କ କର୍ତ୍ତବ୍ୟ ସମ୍ପନ୍ନ କରୁଥିଲେ । ଏହା ମଧ୍ୟ ଠିକ୍ ଯେ, ମଧ୍ୟଯୁଗୀୟ ସମାଜ ପର୍ଯ୍ୟନ୍ତ

ଲୋକେ କାବ୍ୟ-କବିତା ମାଧ୍ୟମରେ ସେମାନଙ୍କ ଚିନ୍ତାଧାରାକୁ କେତେ-କାଂଶରେ ଉପାନ୍ତରିତ କରୁଥିଲେ ; ନଚେତ୍ ସେହି ମହାଭାରତ ଓ ରାମାୟଣ ଅନ୍ତର୍ଗତ ବିଭିନ୍ନ ଆଖ୍ୟାୟିକାକୁ କେନ୍ଦ୍ରକରି, ସେଇ ପରିଚିତ ଚରିତ୍ର-ମାନଙ୍କୁ ପ୍ରଧାନ ଚରିତ୍ରରେ ପରିଣତ କରି ସମାଜକୁ ପ୍ରଭାବିତ କରିବାର ଅଧିକାର କବିମାନେ ପାଇଥାନ୍ତେ କିପରି ? ଏବେ ବି ଓଡ଼ିଶାର ପୁରପଲ୍ଲୀର ସାମାଜିକ ଚେତନା ଏଇ ରଚନା ମାଧ୍ୟମରେ ସ୍ପଷ୍ଟ ହୋଇଉଠେ । କିନ୍ତୁ ଏଇ ଶତାବ୍ଦୀର ପ୍ରାୟ ୩୦।୪୦ ଶତକ ବେଳକୁ ହଠାତ୍ ଏକ ଧକ୍କା ଆସେ, ଯାହା ଫଳରେ ଆମ ସମାଜରେ ଏକ ଶ୍ରେଣୀର ବ୍ୟକ୍ତିମାନେ ଆଗେଇ ଆସନ୍ତି ଏଇ ନୂତନ ଆଘାତର ନୂତନ ଧ୍ୱନିରେ ବିମୋହିତ ହୋଇ ଓ ଏମାନଙ୍କ ପ୍ରଚେଷ୍ଟାରେ ସାହିତ୍ୟର ମୋଡ଼—ବିଶେଷ ଭାବରେ କବିତାର ଛକର ରଙ୍ଗ ଓ ମାନଚିତ୍ର ସଂପୂର୍ଣ୍ଣ ବଦଳିଯାଏ ; ଯଦିଚ ଏଇ କବିମାନଙ୍କ କାବ୍ୟିକ ଚେତନା ଓ ସେ ଚେତନାର ଦର୍ପଣରେ ପ୍ରତିବିମ୍ବିତ ସମାଜର ଆତ୍ମା ଏବଂ ଏହି କବିମାନଙ୍କ ସ୍ୱରରେ ପ୍ରତିଧ୍ୱନିତ ସମାଜର ଭାଷା ଏ ଯାଏଁ ସେଇ ସମାଜର ଅତି ଅବଶ୍ୟ ବ୍ୟକ୍ତିଙ୍କ ନିକଟରେ ସଫଳ ଭାବରେ ପହଞ୍ଚି ପାରି ନାହିଁ କି ପାରୁ ନାହିଁ ବୋଲି ସେହି ବ୍ୟକ୍ତିମାନଙ୍କୁ ପ୍ରତିନିଧିତ୍ୱ କରୁଥିବା ବ୍ୟକ୍ତି ହିଁ ଅଭିଯୋଗ କରିଥାନ୍ତି । ଏହାର ଅନ୍ୟତମ ମୁଖ୍ୟ କାରଣ ଭାବରେ ସେମାନେ ଯୁକ୍ତି କରନ୍ତି ଯେ, ଆଜିର କବି (ବିଶେଷ ଭାବରେ ୪୦ ଦଶକରୁ ୭୦ ଦଶକ କିମ୍ବା ଆଜିଯାଏଁ) ଏକ ଭିନ୍ନ ଶ୍ରେଣୀର; ତାହାର କବିତା, କବିତାର ରୂପରେଖ, ଶୈଳୀ, ଭାଷା, ଆତ୍ମା ଓ ଏହାର ସାଧାରଣ Communication (ଯାହାକୁ ମୁଁ ସାମାଜିକ ଚେତନାର ଅନ୍ୟ ରୂପ ବୋଲି ଭାବେ) ଏକ ଅଲଗା ଅନୁଭୂତିର, ଯାହା ସହିତ ଏଇ ସମାଜ ଅନ୍ତର୍ଭୁକ୍ତ ମଣିଷର କୌଣସି ସମ୍ପର୍କ ନାହିଁ । କିନ୍ତୁ ଏଭଳି ଯୁକ୍ତିକୁ କିଛିକ୍ଷଣ ସ୍ଥଗିତ ରଖି ନିରପେକ୍ଷ ଭାବରେ ବିଚାର କଲେ ଏତିକି ଜଣାଯାଏ ଯେ, ଆଜିର କବି ଆଜିର ସମାଜକୁ ଯେତିକି ଆତ୍ମସ୍ଥ କରିବାକୁ ଚେଷ୍ଟା କରିଛି, ଏକକ ଖଣ୍ଡରେ ତାହା ଅମ୍ଳାନ ଓ ସୁସ୍ପଷ୍ଟ । ଯୁଗଚେତନା ହିଁ ସମାଜଚେତନା ଏବଂ ଏଇ ବୋଧର ମନସ୍ତାତ୍ତ୍ୱିକ ଓ ବୌଦ୍ଧିକ ପରିସର ମାଧ୍ୟରେ କବିର ନିଜସ୍ୱ ସତ୍ତା ଏତେ ବେଶୀ ବିକ୍ଷିପ୍ତ ଓ ବିପର୍ଯ୍ୟସ୍ତ ଯେ ହଠାତ୍ କୌଣସି ସାମାଜିକ ସଂଜ୍ଞା ବା ମତ ନିର୍ଦ୍ଧାରଣ କରିବା ତା' ପକ୍ଷେ ସମ୍ଭବ ନୁହେଁ ; ଅଥଚ ସେ ଅତ୍ୟନ୍ତ ପରିଷ୍କାର କଣ୍ଠରେ ଉଚ୍ଚାରଣ କରୁଛି ତା'ର ଅନୁଭୂତିର ଓ Involvement ର ଦୁର୍ବୋଧ

ଅବସ୍ଥାର ଭାଷାକୁ ତାହା କେତେବେଳେ ଦୃଢ଼ ଓ ଅନ୍ୟବେଳେ କ୍ଷୀଣ । ସାମାଜିକ ପରିଧିରେ କବି ଯେବେ କାୟିକ ଓ ମାନସିକ ଜଡ଼ିତ, ସେ ସମୟରେ ତା' କଣ୍ଠରେ ଧ୍ୱନିତ ହୁଏ 'ବାଜିରାଉତ'ର ସମାଜଚେତନା; କିନ୍ତୁ ସେ ଯେତେବେଳେ ଜଣେ ଦର୍ଶକର ସ୍ଥାନର ଅସହାୟ ଅବସ୍ଥାରେ ଥାଏ, ସେତେବେଳେ ସେ ଉଚ୍ଚାରଣ କରେ 'ସ୍ୱଗତ'ର ବା କବିତା-୧୯୬୨ର ବା ୧୯୬୪ର । ଏବର କବିମାନଙ୍କ ପ୍ରାୟ ସମସ୍ତ କର୍ତ୍ତବ୍ୟ କୌଣସି ନା କୌଣସି ଦର୍ଶକ ଭୂମିକାରେ ସନ୍ନିବେଶିତ ଏବଂ ଏପରି ଅବସ୍ଥା ପାଇଁ ଦାୟୀ ଏଇ ସମାଜ । ଶ୍ରୀକରସର୍ବସ୍ୱ ଆଜିର କବି ତା'ର କବିତାରେ ସମାଜ ପ୍ରତି ଯେତେ ବିଦ୍ରୂପ ଉକ୍ତି ଘୋଷଣା କରୁ ପଛକେ, ସମାଜର ଅନ୍ଧକାରକୁ ଯେତେ ବେଶି ଖୋଲିବାକୁ ଚେଷ୍ଟା କଲେ ମଧ୍ୟ-ତାହାର ନିଜସ୍ୱ ସତ୍ତା (ମୁଖ୍ୟତଃ ଶ୍ରୀକର ଲେଭରେ) ସେଇ ଅସହାୟତା ଗଣ୍ଡିରେ ଆବଦ୍ଧ ; ତେଣୁ ତା'ର ଅଭିବ୍ୟକ୍ତି କ୍ଷୀଣ ଓ ବିକ୍ଷିପ୍ତ; ତେଣୁ ସେ କବି ନୁହେଁ ସମାଜ ସଂସ୍କାରକ ବା କୌଣସି ରାଜନୈତିକ ଚିନ୍ତାଧାରାର ଶବବାହକ, ଯେହେତୁ ଆଜିର ସମାଜ ମୌଳିକ ସ୍ତରରେ ରାଜନୀତି-ଅଧ୍ୟୁଷିତ ସମାଜ । ସାଂସାରିକ ଜୀବନରେ କବି ଏହିଭଳି ଏକ ସମାଜ ସହିତ ପ୍ରତ୍ୟକ୍ଷ ସାଲିସ କରେ ଓ ତା'ର କାବ୍ୟ ଜୀବନରେ ଏହା ପ୍ରତି ମୁହଁ ଘୂରେଇନେବା ପାଇଁ ଚେଷ୍ଟା କରେ—ଏଇପରି ଏକ ସାଙ୍ଘାତିକ ସଙ୍ଘର୍ଷରେ ତା'ର କବିତାର ଭ୍ରୂଣ ସଞ୍ଚାର ଓ ଜନ୍ମ । ତେଣୁ ସେ ଲେଖେ—

> "ସାଧୁତା, ଚରିତ୍ରବତ୍ତା ଏସବୁ ଆଜି ଦୁନିଆରେ ବିରଳ । ମୁଁ ଯେବେ ମରୁଥିଲି ହାସ୍ପାତାଲେ ମୋ ଆଲମାରୀରୁ ସେମାନେ ଚୋରେଇ ନେଲେ କମଳା, ଅଙ୍ଗୁର । ଆହୁରି ଚୋରେଇ ନେଲେ ଦିନରୁ ଆଲୋକ, ରାତିର ଉତ୍ତାପ, ଆକାଶରୁ ଇନ୍ଦ୍ରଧନୁ·········× × × ମୁଁ ବିବ୍ରତ ନୁହେଁ ତାଙ୍କ ଉଦାସୀନତା ପାଇଁ ମୁଁ ନିଶ୍ଚିନ୍ତ ମରିଥାନ୍ତି କମଳା, ଅଙ୍ଗୁର ଖାଏ କି ନ ଖାଏ, କିନ୍ତୁ ଏମାନେ ରହିବେ ଚିରକାଳ ଭୂଗର୍ଭରେ ଏବଂ ଚିରକାଳ ଧୂଳି-ଧୂସରିତ ଧୃଷ୍ଟି ହସ ହସୁଥିବେ ।"

କମଳା, ଅଙ୍ଗୁର ଓ ଡାକ୍ତରଖାନା ଯେପରି ଏକପକ୍ଷରେ ବ୍ୟକ୍ତିଗତ ସାମାଜିକ ଜୀବନର ଦୁଃସହତା ଓ କ୍ଳାନ୍ତତାର Image, ଠିକ୍ ଆକାଶରୁ ଇନ୍ଦ୍ରଧନୁ; ରାତିରୁ ଉତ୍ତାପ ଓ ଦିନରୁ ଆଲୋକ ପ୍ରଭୃତି ମାଧ୍ୟମରେ ଏକ ସାର୍ବଜନୀନ ଓ ବ୍ୟାପକ ହତାଶା ଅଥଚ ଅସହାୟତାର

ରୂପ ପ୍ରକାଶ ପାଇଛି, ଯାହା ସ୍ଥାନ, କାଳ ଓ ପାତ୍ର ନିର୍ବିଶେଷରେ ଯେ କୌଣସି ସଚେତନ ପାଠକକୁ ସ୍ପର୍ଶ କରେ । (ପରମ ସୌଭାଗ୍ୟ ମୋର) ।

ସେଇପରି "କାଠଘୋଡ଼ା ପାଣି ପି" କବିତାରେ ଏକ ଜୀବନ୍ତ ଏବଂ ଅନୁଭୂତିସମ୍ପନ୍ନ ସାମାଜିକ ଚେତନାର ଆତ୍ମପ୍ରକାଶ, ଯେଉଁଠି କବି ନିଜକୁ ନିକ୍ଷେପ କରିଛନ୍ତି ଲକ୍ଷ ଲକ୍ଷ ପୀଡ଼ିତ ଓ ନିଷ୍ପେଷିତ ଜୀବନର ବିଶାଳ ଅଗ୍ନିକୁଣ୍ଡରେ ଏବଂ ଖୁବ୍ ପରିଷ୍କାର ଅଥଚ ମଧୁର ଭଙ୍ଗୀରେ ସଚେତନ କରାଇଛନ୍ତି ସେଇମାନଙ୍କୁ, ଯେଉଁମାନେ ନିଜର ଭୋଗର ଚରିତାର୍ଥ ନିମନ୍ତେ ସବୁ କିଛି କରିବାକୁ ପଶ୍ଚାତ୍ପଦ ହୁଅନ୍ତି ନାହିଁ, ହୁଅନ୍ତି ନାହିଁ ଦ୍ୱିଧାଗ୍ରସ୍ତ—

> "ହୁଏ ତ ବା ନିର୍ଜୀବ ସୁନାର ସେ ପରିଥିବ ସ୍ୱାପ୍ନିକ ପରଶ ; ଅସ୍ୱୀକାର ହସ କାହିଁ, ରସ କାହିଁ , କାହିଁ କିବା ହରଷ ? × × × "ବିଶ୍ୱରେ ତୋଳି ଥରେ ଐକ୍ୟର ଶାନ୍ତିର ଅଶ୍ରୁତ ମିନାର ଜାଗ ଜାଗ, ଏ ମାଟିକି କର ଅଜ ସ୍ୱାନର ।"

ଇତ୍ୟାଦି ପଙ୍କ୍ତିରେ କବିର ସାମାଜିକ ଚେତନା ଆକ୍ଷିଣ ପୁନଶ୍ଚ ଗମ୍ଭୀର । କିନ୍ତୁ "ଓଟପକ୍ଷୀଚରିତମ୍" କବିତାରେ କବି ସମାଜର ସାଂପ୍ରତିକ ପରିସ୍ଥିତିର ବିଭିନ୍ନ ବିଭାଗ ପ୍ରତି ତୀବ୍ର ବିଦ୍ରୂପାତ୍ମକ ଅଭିବ୍ୟକ୍ତି ସିଧାସଳଖ ଭାବରେ ପ୍ରକାଶ କରିଛନ୍ତି । ଏକ କ୍ଷମାହୀନ ଉତ୍ତପ୍ତ କଣ୍ଠସ୍ୱର ଏଠି ବର୍ତ୍ତମାନ ଓ ଭବିଷ୍ୟତ ପାଇଁ କଠୋର ପ୍ରତିବାଦ ପ୍ରତିପାଦିତ ହୋଇଛି ସମାଜର ସମସ୍ତ ବ୍ୟଭିଚାର ଓ ବିଧାନ ବିରୁଦ୍ଧରେ । ଯେମିତି—

> "ସେ ଭୂତ ଜାଣିବ କ'ଣ, ତମେ ବି ତ ଜାଣ ନାହିଁ, ଏକ ମାତ୍ର ମୁହିଁ ଜାଣିଚ ମହିମା ମୋର ; ମାନେ ନାହିଁ, ମାନୁ ନାହିଁ ମୁଁ ଖାଇଚ ହଜାର ହଜାର, ପୋଲରୁ ରାସ୍ତାରୁ କିବା ସରକାରୀ କୋଠିରୁ, ନୂଆଶାଳାରୁ—ଇତ୍ୟାଦି ସ୍କୁଲରୁ ।"

କିନ୍ତୁ ଏଇ ମାର୍ମିକ ପରିପ୍ରକାଶରେ କବି ବେଶ ମାର୍ଜିତ ଓ କାବ୍ୟିକ ଶୈଳୀ ଓ ଆତ୍ମା ବେଶ୍ ଚମତ୍କାର—ଅନ୍ୟାନ୍ୟ ତଥାକଥିତ ବିଦ୍ରୋହୀ କବିମାନଙ୍କ କର୍କଶ ଓ ଅତିରଞ୍ଜିତ ମାତ୍ରାଦୋଷ କେଉଁଠି ମୁହୂର୍ତ୍ତିକ ପାଇଁ କବିତାର ଆତ୍ମାକୁ ଅବରୁଦ୍ଧ କରି ନାହିଁ; କରି ନାହିଁ ବିକଳାଙ୍ଗ । ଏଇ କବିତାରେ ସମାଜର ବିଧିବ୍ୟବସ୍ଥା ଶାଣିତ ସମାଲୋଚନାରେ ବରଂ ବେଶୀ ଦୟନୀୟ ଜଣାପଡ଼େ ; କାରଣ କବି ନିଜକୁ ଏଇ ସାମାଜିକ ପରିବେଶ

ମଧ୍ୟରେ ରଖି ନିଜର ମଧ୍ୟ ସମାଲୋଚନା କରିଛନ୍ତି—କେଉଁଠି ମହର୍ଷିବାଣୀ ପରି ଉପଦେଶ ଅଜାଡ଼ି ନାହାନ୍ତି (ଅପ୍ରି ପୃଥ୍ୱୀ କବିତାର ପଂକ୍ତି ମଧ୍ୟ ଏଠି ଲକ୍ଷଣୀୟ) କିମ୍ବା ଆପଣାକୁ ପୃଥକ ରଖି ଅନ୍ୟର ଦୋଷତ୍ରୁଟି ଦେଖାଇବା ପାଇଁ ଉଦ୍‌ଗ୍ରୀବ ହୋଇନାହାନ୍ତି । ସେ ଏକ ଗୃହବିକ ବର୍ଣ୍ଣନା ଦେବା ସଙ୍ଗେ ସଙ୍ଗେ ନିଜର ଅସହାୟତା ସମ୍ପର୍କରେ ମଧ୍ୟ ସଜାଗ ଓ ସଚେତନ—ତେଣୁ ତାଙ୍କ ମତରେ ଏଇ ସମାଜର ଏଇ ରୂପ କଦାପି ଚିରସ୍ଥାୟୀ ନୁହେଁ— "କ୍ଷମା କର ଭଗବାନ, ଜ୍ଞାନମୂଢ଼ ଭାବମୂଢ଼, ନିର୍ବିଗ୍ନର ଜାତିକ ଆମର ।" × × × × କିମ୍ବା "ମୁଁ କାହାର ସାଦାସିଧା ଭଦ୍ରଲୋକ ହବରେ ରାମ କୃଷ୍ଣ କୃଷ୍ଣ ହରେ ?" ଏଇଭଳି ପ୍ରଶ୍ନବାଚୀ ମଧ୍ୟରେ ନିଜକୁ ଆବଦ୍ଧ ରଖିଛନ୍ତି ଅନ୍ୟ ବହୁ ଭଦ୍ରଲୋକଙ୍କ ପରି । ସେଥିପାଇଁ କବିର ସାମାଜିକ ସତ୍ତା ଏଠି ପ୍ରତ୍ୟେକ ବ୍ୟକ୍ତିର ସାମାଜିକ ସତ୍ତା ସହିତ ଅନୁପୂରକ ଏବଂ ଭବିଷ୍ୟତ ବଂଶଧରମାନଙ୍କ ପାଇଁ ଏ କବିତା ବର୍ତ୍ତମାନ ସମାଜର ଅନ୍ୟତମ ମୁଖପତ୍ର ହୋଇ ରହିବ, ଏହା ନିଃସନ୍ଦେହ । ଆମର ଶଠତା, ଛଳନା, ମିଥ୍ୟାବାଦିତା ଓ ଆଉ ଅନ୍ୟାନ୍ୟ ଅନ୍ଧକାରପରିପୂର୍ଣ୍ଣ କୋଣଗୁଡ଼ିକୁ ଖୋଲାଖୋଲି ଭାବରେ ଚିତ୍ରଣ କରାଯାଇଛି, ଯେମିତି—

> "ଆମେ ସବୁ ସାଦାସିଧା ଭଦ୍ରଲୋକ ଜାଣୁ ନାହିଁ ଦୁର୍ନୀତି ଅନୀତି; ଆମେ ସବୁ ଭଦ୍ରଲୋକ ଜାଣୁନାହିଁ ଲାଞ୍ଚ ମିଛ ଅର୍ଥ-ଆତ୍ମସାତ୍; ଆମେ ସବୁ ଭଦ୍ରଲୋକ ସପାଗରୁ ଧରୁ ବୁଲ କରୁନାହିଁ; ଅନ୍ନଭିକ୍ଷା ଅନ୍ୟ ଭିକ୍ଷା ମାଧୁକରୀ ବୃତ୍ତି; ଆମେ ସବୁ ଭଦ୍ରଲୋକ ଧର୍ମ ମାନୁ ଷଟ୍‌କର୍ମର ଶେଷଟି ବ୍ୟତୀତ, ଆମେ ସବୁ ଭଦ୍ରଲୋକ ମାନେ ଆମେ ବିନା ଯୁଦ୍ଧେ ସୂଚ୍ୟଗ୍ର ମେଦିନୀ ନ ଦେବା ବୀରଙ୍କ ପୁର ହରେ କୃଷ୍ଣ ହରେ ରାମ ହରେ ।"

ସାଂପ୍ରତିକ ଓଡ଼ିଆ କବିତାରେ ସମାଜଚେତନା ସହିତ କବିଙ୍କ ରାଜନୈତିକ ମତବାଦର ଏକ ସୁମଧୁର ମିଳନ ଲଗ୍ନ ଘଟିଛି ଓ ଏଇ ଶୁଭ-ଲଗ୍ନର ଶଙ୍ଖଧ୍ୱନିର ସାତଳ ପରିଧି ବେଳେ ବେଳେ ମନକୁ ବେଶ ଆଚ୍ଛନ୍ନ କରେ । ନିରନ୍ନ ଜନତାର ବୁଭୁକ୍ଷୁ ମନ ଓ ହୃଦୟର ବିଳାପ, ତୃଷାର୍ତ୍ତ ଦୃଷ୍ଟିର ଅସ୍ଥିରତା ମଧ୍ୟରେ କବି ଖୋଜି ଖୋଜି ପାଇଛି ତା'ର ନିରାପଦ ସ୍ଥାନ; କିନ୍ତୁ ତା'ର ସମବେଦନା ଏବଂ ସମବେଦନଶୀଳତା ଆତ୍ମଗୋପନ କରିପାରି ନାହିଁ; ତେଣୁ ଆକ୍ଷେପ ଓ ଆଶ୍ଳେଷ ଜରିଆରେ ସେ କହିଛି—

> "ଲଢ଼େ ମୁଁ ମାରିବେ, ଲଢ଼େ ମୁଁ ଧୀରିବେ, ମୁଖର ସହ ଲଢ଼େ ! ନିଜ ବନ୍ଦନା ପଢ଼େ, ସଜନରେ ନିଜ ବନ୍ଦନା ପଢ଼େ ।"

ଅନ୍ୟତ୍ର ସାମାଜିକ ପରିବେଶରେ ନିଜର ତିକ୍ତତା ପ୍ରକାଶ କରିଛନ୍ତି—

"ହ୍ରିଦ୍ଧ ଏବୋଟ୍ରମ ? ଓହ୍ଲାଏ ନ ସିଫଲିସ୍ ଗୃହିଣୀ ପଲ୍ଲୀର ସଙ୍କୁଳା ଯେନ ପଣ୍ୟଙ୍କଶୀ କାରୁଣ୍ୟ କରନ୍ତେ ? ଅଭିଆତ୍ରୀ ସଭ୍ୟତାର ବର୍ଣାଣ୍ଡି ସ୍ତନାଗ୍ରୁ ଝଡ଼େ ନା ତୃଷାର୍ତ୍ତ ଶିଶୁ, ଦାରିଦ୍ର୍ୟ ଦରେଛି ?"

ରାଜନୀତି ଓ ଜାତୀୟବାଦର ପୃଷ୍ଠଭୂମିରେ ଏକ ବ୍ୟାପକ ସମାଜ-ଚେତନା ଏଇ ପଂକ୍ତିଗୁଡ଼ିକରେ ବିଦ୍ୟମାନ । ଆଜିର ସମାଜର ଏକ ଅଭିନବ ଚିତ୍ର ଦେବାକୁ ଯାଇ ଗୋଟିଏ ସକାଳର ରୂପକଳ୍ପ ମାଧ୍ୟମରେ ଏବଂ ଏଇ ସକାଳକୁ କେନ୍ଦ୍ର କରି ସମୁଦାୟ ଚିତ୍ରପଟର ଯେଉଁ ପରିଚୟ କବି ଦେଇଛନ୍ତି, ତାହା ନିର୍ମମ ଭାବରେ ବାସ୍ତବିକ—

"ଏ ସକାଳ ସାଧାରଣ, ଅତି ସାଧାରଣ ! ଝର୍ଣ୍ଣି ପଡ଼େ ସ୍ୱପ୍ନର କରେଛି, ଖୁଣ୍ଟ ବୁଲେ ରଶ୍ମିର ଟୁକୁଡ଼ା, ବୃଷ୍ଟିମୟ ଦୃଷ୍ଟିହୀନ ଅକର୍ମୀ ଅକାଳେ ହଣାହଣି କଣାବକା, ରକ୍ତସା-ଟଣା, ବସ୍ତା-ବୁହା ଜୀବିକା କିବା ହେ, ଛିଦ୍ରପଥ ଏ ସକାଳ ଛିତରାର । ସାଧାରଣ, ଗୌଣ ସାଧାରଣ ! ଛିନ୍ନଭିନ୍ନ କଲିଜାର ହତାଶା-କଲେଜେ ଏ ସକାଳ ପାଠ ପଢ଼େ ଅଶ୍ଳୀଳ ଶ୍ଳୀଳତା । × × × କବିତାର କ୍ଲୋରଫର୍ମେ ଏ ସକାଳ ଯୌନମୟ ଆଧ୍ୟାତ୍ମ ପ୍ରଳାପ ।"

କ୍ରମେ ସମାଜର ସଂଜ୍ଞା ଓ ପ୍ରୟୋଜନବୋଧ ଓଡ଼ିଆ କବିଙ୍କ ନିକଟରେ ଏକ ନୂତନ ରୂପରେ ଦେଖାଦେଲା । ନିଜ କାବ୍ୟିକ ମନର ଅଭିବ୍ୟକ୍ତି ଦିଗରେ ସାମାଜିକ ପରିବେଶର ପ୍ରଭାବ ଧୀରେ ଧୀରେ ସଙ୍କୁଚିତ ହେବାକୁ ଲାଗିଲା ଓ କବି ଯେତିକି ପରିମାଣରେ ତା'ର ବ୍ୟକ୍ତିଗତ ଜୀବନରେ ସମାଜଦ୍ୱାରା ପ୍ରଭାବିତ ହେଲା, ତାହାର ଖୁବ୍ କ୍ଷୀଣ ଅଂଶ ତାହାର କବିତାରେ ସ୍ଥାନ ପାଇଲା; କାରଣ ମଣିଷ ସହିତ ସମାଜ ମଧ୍ୟ ଏକ ବିକ୍ଷିପ୍ତ ଓ ବିଚ୍ଛିନ୍ନ ବ୍ୟକ୍ତିତ୍ୱର ଅଂଶୀଦାର । ତେଣୁ କବିର ନିଜସ୍ୱ ଜୀବନରେ ସଂଘାତ, ସଂଶୟ, ସଂଶ୍ଳିଷ୍ଟତା, ଆବେଗ, ପ୍ରେମ, ସୁଖ-ଦୁଃଖ, ଆଲୋକ, ଅନ୍ଧାର, ଆଶା ଓ ହତାଶା ସେମାନଙ୍କ ବିରୋଧାଭାସର ମାନଚିତ୍ର ପ୍ରସ୍ତୁତ କଲେ; କବି ଏହାକୁ ଉପଭୋଗ କରିବା ବ୍ୟତୀତ ଅନ୍ୟ ପନ୍ଥା ତା' ପାଇଁ ନାହିଁ । ସେଇଥିପାଇଁ ତା'ର Poetic sensibilityର ପୃଷ୍ଠଭୂମି ବା Canvas ସବୁବେଳେ ସମାନ ନୁହେଁ ; ହେବା ମଧ୍ୟ ସମ୍ଭବପର ନୁହେଁ ଏବଂ ବସ୍ତୁତଃ ସେଇଥିପାଇଁ ତା'ର କବିତାରେ ସମାଜର କେଉଁ ରୂପ କେତେବେଳେ କିଭଳି ଭାବରେ ଦେଖାଦିଏ, ତାହା ଜାଣିବା ମୁସ୍କିଲ ।

ମୋର ଯେତେଦୂର ମନେହୁଏ ବର୍ତ୍ତମାନ କବି ନିକଟରେ ସମାଜ କୌଣସି ନିର୍ଦ୍ଦିଷ୍ଟ ସଂଜ୍ଞାସୂଚକ ରାଷ୍ଟ୍ରୀୟ ମତବାଦ ନୁହେଁ; ନୁହେଁ କିଛି ସଂଖ୍ୟକ ବ୍ୟକ୍ତିମାନଙ୍କ ଏକ ମିଳନକ୍ଷେତ୍ର ବା କୌଣସି Abstract idea। ତାହାର ବ୍ୟକ୍ତି-ବିଶ୍ୱରେ ଅନ୍ୟାନ୍ୟ ସମସ୍ତ ଜାଗତିକ ଓ ଆଧିଭୌତିକ ଅନୁଭୂତି ପରି ସମାଜ ମଧ୍ୟ ଅନ୍ୟ ଏକ ଅନୁଭୂତି ମାତ୍ର; ଯଦିଚ ଏଥିରେ Realityର ମାତ୍ରା ଟିକିଏ ଅଧିକ; ତେଣୁ ମୋ କବିତାରେ ଏତିକ ପରିମାଣରେ ସମାଜର ଚିତ୍ର ରଖିବି ଓ ଏଇଭଳି ଭାବରେ ଅବତାରଣା କଲେ ପାଠକର ସମାଜଚେତନା ଉଦ୍ରେକ କରାଇବାରେ ମୁଁ ସମର୍ଥ ହୋଇ ପାରିବି—ଏମିତି ଚିନ୍ତା'ରେ କଲମ କାମୁଡ଼ି କୌଣସି ନିଚ୍ଛକ କବି ବର୍ତ୍ତମାନ କବିତା ଲେଖେ ନାହିଁ ବୋଲି ମୋର ବିଶ୍ୱାସ। ଆଜିର କବି ଏଇ ନିଃସଙ୍ଗ ନିକ୍ଷତ୍ର; ପୁଣି ଏ ନକ୍ଷତ୍ର କ୍ଷୁଦ୍ରତମ ବର୍ତ୍ତମାନର କୃତ୍ରିମ ବ୍ୟବଧାନର ପରି-ପ୍ରେକ୍ଷୀରେ; ଯାହା ପାଇଁ ସେ ସମାଜକୁ ଦାୟୀ କରିପାରେ। ତାହାର ସମ୍ମୁଖ ସମସ୍ତ ବିକ୍ଷିପ୍ତତା, ବିଚ୍ଛିନ୍ନତା ଓ ବିଭକ୍ତିକୁ ନିଜ ଭିତରେ ହଜମ କରି କେଉଁ ନିଭୃତ ନିଗୁଟିଆ କୋଠରିର ମୁକ୍ତାର ରୂପ ଗଢ଼ିବା। ତାହାର ଆଖିରେ ବାହାର ସମାଜର ବହୁଖଣ୍ଡିତ କରୁଣ ଅନ୍ଧକାର, ଅଜସ୍ର ଅହଂର ପ୍ରଚଣ୍ଡ ଆଘାତ; ତା'ର ମନରେ ସ୍ୱାତିନକ୍ଷତ୍ରର କ୍ୱଚିତ ଆଲୋକ ଏବଂ ଏଇ ଆଲୋକର ରେଖାକୁ ସେ ଗୁହାଁରୁ ଚିରସ୍ଥାୟୀ ଭାବରେ ସାଇତି ରଖିବାକୁ। ବର୍ତ୍ତମାନ କବିର ଆତ୍ମା ତା'ର ବାହ୍ୟ ଜଗତରେ ପ୍ରକୃତରେ ନିଃସହାୟ ଓ ନିଃସଙ୍ଗ; ତେଣୁ ତା'ର ବୌଦ୍ଧିକ ଉଚ୍ଚାରଣ ଏବର ସମାଜରେ ମଧ୍ୟବିତ୍ତର ଏକ ଅସହାୟ ଆର୍ତ୍ତନାଦ ପରି ଅନ୍ୟଙ୍କୁ ଜଣାଯାଏ। କବିର ଯନ୍ତ୍ରଣା, ଦୁଃଖ ଓ ରକ୍ତାକ୍ତ ଅଭିବ୍ୟକ୍ତି ଆଜି ଜଣାପଡ଼େ ଏକ ଦୁର୍ବୋଧ ଶିଳାଲେଖର ଅର୍ଥହୀନ ଅଭିରୁଚି ପରି। କିନ୍ତୁ ତାହାର ଲୁହରେ କେତେ ଯେ ମନନଶୀଳତା ଓ ମରୁଦ୍ୱୀପର ସବୁଜ ହାହାକାର ଓ କେତେ ଯେ ବୌଦ୍ଧିକ ଅଭିଳାପ୍ସାର ପ୍ରଶ୍ନବାଚୀ, ତାହାର ବିଚାର ନ କରି, ତାହାର ଯଥାର୍ଥତା ଉପଲବ୍ଧି ନ କରି ତାହାକୁ 'କୁମ୍ଭୀର କାନ୍ଦଣା' ପର୍ଯ୍ୟାୟଭୁକ୍ତ କରି ସହଜରେ ଅନ୍ୟ ଛକ ବାଟେ ବାଟ ଭାଙ୍ଗିଯିବା ହିଁ ବର୍ତ୍ତମାନର ଅବସ୍ଥା। କବି ମଧ୍ୟ ଏକ ସାମାଜିକ ଜୀବ ଭଳି ଖୁବ୍ ଶାନ୍ତ ଗଳାରେ କହେ—

"ମୋ ପାଖରେ ଏତେ କ୍ଷୀର ଏତେ କଳା କେଉଁଠାରୁ ଆସେ ଓ ପୁଣି ମିଳାଇଯାଏ ମୁଁ ଭର୍ତ୍ତି କରିବା ପୂର୍ବେ ମୋ ମୁହଁ ସେଠାରେ ଏବଂ ଭାବେ

ଏ ଜଗତ ମୋ'ତେ ବୋଧେ ଦେଖିପାରୁ ନାହିଁ ! ଜଣେ ବା ଗୃହୀକ୍ ଏଠି ଜଣେ ଅବା ଦଶମାସ କଷ୍ଟ ଭୋଗ କରି ଟିକିଏ ଦେଖୁଛି ନାଆଁ ଏବଂ ପୁଣି ନାଆଁ ଦେବା ପାଇଁ ଯନ୍ତ୍ରଣାର ପୋଡ଼ା ମାଟିଆରେ ନିଜକୁ ଭସାଏ ଖାଲି । ଯନ୍ତ୍ରଣାର ହିସ ମିଳେ ନାହିଁ ! ! " ପୁନଶ୍ଚ—

"ତେଣୁ ମୁଁ ଗୃହୀକ୍ ଯେବେ ଫେରିଯିବ ମୋ ନିର୍ଦ୍ଦିଷ୍ଟ କୋ'ଠରୀ ଆଡ଼କୁ ଯେଉଁଠି ମୁଁ ଗୁଡ଼ିଥିଲି କୁଣ୍ଡା ଆଉ ଦୃଷ୍ଟି କେତେ ଶୋଇବାର ଉଦ୍ୟୋଗ ପର୍ବରେ; ବାଟରେ କାନ୍ଦୁଛି ଜଣେ ଏବଂ ମୋର ନଳି ଫ୍ୟାଣ୍ଟ ଯନ୍ତ୍ରଣାକୁ ରଖିଛି ସେଠାରେ ବୟସ କି କମିପାରେ ଯଦବା ମୁହଁରେ ଜଣେ ଲିପ୍‌ଷ୍ଟିର ଆଗ୍ରହ ବୁଲାଏ, ଯନ୍ତ୍ରଣା କି କମିପାରେ ଯଦି ବା ଦେହରେ ଜଣେ ଅମୃତର ସୋହାଗ ଖେଳାଏ ।"

ଆଜିର ସାମାଜିକ ଅସ୍ଥିରତାର ବହିଃରଙ୍ଗରେ କବିର ବାହ୍ୟିକ ସତ୍ତା ମଧ୍ୟ ଅସ୍ଥିର ଓ ହା-ହୁତାଶମୟ, ତେଣୁ ସେ କହେ—

"ଜୀବନ ଏକ ଦୈତ୍ୟକୁ ଶୂନ୍ୟ ଘର୍ଦ୍ଦଶ୍ୱାସ ମୋ ଦୃଷ୍ଟିରେ ଅହୋରାତ୍ର ବହେ ଅଣସ୍ତ୍ରଣ । ତେଣୁ ଆଉ ଛତା ଖୋଲି ଲାଭ କ'ଣ ? ଉପରେ ତ ଖରା ଆଜି କ୍ଳାନ୍ତ, ପ୍ରେମ ଆଜି ଅସମ୍ଭବ ପଥ ପରିଶ୍ରାନ୍ତ ।"

ଅନ୍ୟତ୍ର ଆମ ଏଇ ସମାଜରେ ବିଶେଷ ଭାବରେ ସହର-ସଭ୍ୟତା ସମ୍ପନ୍ନ ସମାଜରେ ପ୍ରାକୃତିକ ଜୀବନବୋଧ ଏତେ ମାତ୍ରାରେ ବିପର୍ଯ୍ୟସ୍ତ ଯେ ଏଇ କଟକ ସହରର କୌଣସି ଏକ ସନ୍ଧ୍ୟାକୁ ଲକ୍ଷ୍ୟ ରଖି କୁହାଯାଇଛି— "ଆଜି ସନ୍ଧ୍ୟା ବହୁ ଧମା ବନ୍ଧ୍ୟାଙ୍କର ବିକଳ ଗଭାରେ ରଜନୀଗନ୍ଧା ପରି ଜଣାଯାଏ କେବଳ କରୁଣ । ଅସଂଖ୍ୟ ଗାଉଁଲି ଲୋକଙ୍କ ହାତେ ବିଲାତି ହୋଟେଲର ଟେବୁଲରେ କଣ୍ଟା ଆଉ ଚାମଚର ଅଦ୍‌ଭୁତ ଚଳନ; ପରି ସନ୍ଧ୍ୟା ଭାଙ୍ଗେ ସହସ୍ର ଶଙ୍ଖ ପ୍ଲେଟରେ, ସନ୍ଧ୍ୟା ଭାଙ୍ଗେ କୁକୁରଙ୍କ ସହଚର କେତେକ ନଗ୍ନ ଉପବାସୀ ଶିଶୁଙ୍କ ଅକାଳ ବର୍ଦ୍ଧିତ ଚକ୍‌କଣ ପ୍ଳିହାରେ !" Isolation ଏବଂ Allhenation ଏଇ ଉଭୟର ବିଭୀଷିକା କ୍ରମଶଃ କବିକୁ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ କରି କେତେବେଳେ ଆତଙ୍କ ଓ କେତେବେଳେ ଆଶାର ଝଲକରେ ମୋହାଚ୍ଛନ୍ନ କରି ରଖିଅଛି । ଆତଙ୍କ-ଗ୍ରସ୍ତ ଅବସ୍ଥାରେ ସେ ମୃତ୍ୟୁ କମ୍ବା ସେଇଭଳି କୌଣସି ମର୍ମନ୍ତୁଦ ସ୍ୱର୍ଣ୍ଣର ପ୍ରଲେପ ଦେଖେ ତା'ର ଚତୁଃପାର୍ଶ୍ୱରେ ଘୂରିବୁଲୁଥିବା ଜୀବମାନଙ୍କ ବିଭିନ୍ନ ରଙ୍ଗ ଓ ରୂପର ମୁହଁରେ ଏବଂ ଅସହାୟଙ୍କଠାରେ କହିଉଠେ—

"କିଏ ବା କାହାକୁ ଦେବ ଆଶ୍ୱାସନା–; ମରିବାର ଇଚ୍ଛା ଯଦି ଗ୍ରାସ କରେ ସଭିଙ୍କ ଅନ୍ତର ! !"

ତେଣୁ ସେ ମଧ୍ୟ ନିଜକୁ ଏକ ମୁର୍ଦ୍ଦାର ବା ମୁର୍ଦ୍ଦାରହେବାକୁ ଯାଉଥିବା ସମାଜର ଅଙ୍ଗ ବୋଲି ଗ୍ରହଣ କରି ଉଚ୍ଚାରଣ କରେ—

"ଏଥର ଏ ସହର ଜଣାଗଲା ଚିହ୍ନା କେଉଁ ମୁର୍ଦ୍ଦାରମାନଙ୍କର ଏକ ପଟୁଆର ଏହାର ଆଖିରେ ଥିଲା ଶୂନ୍ୟ ମସ୍ତିଷ୍କର ଏକ ନୀଳ ଅପସ୍ମାର ଯେମିତି ଥୋକାଏ ବ୍ରାହ୍ମଣ, ସହରର ମୃତ୍ୟୁ ପାଇଁ କରୁଛନ୍ତି ଦୀର୍ଘ ପାରାୟଣ । ଏଥର, ଏ ସହର ଦେଖାଗଲା ଆତତାୟୀ ପଶ୍ଚିମ ସୂର୍ଯ୍ୟର ବୋଧହୁଏ ଶେଷ ତଦାରଖ ପାଇଁ ବାକିଥିବା ଜମି, ଏଠାରେ ସକାଳ ଓ ମଧ୍ୟାହ୍ନରେ, କାରଖାନା ଧୂଆଁରେ ସିଝିଥିବା ପରିଚିତ ଶାଗୁଣାଙ୍କ ଡେଣାରେ, ପ୍ରତି ମୁହୂର୍ତ୍ତରେ ଉଠିବାକୁ ଚେଷ୍ଟା କରୁଥିବା ନିସ୍ତବ୍ଧ ଘାସଙ୍କ ଦେହରେ ଯେମିତି କେତେ ବିକଳାଙ୍ଗ ଅତୀତର ଧୂସର ସନ୍ଧ୍ୟା ଗ୍ଲୁଲ୍ ଗ୍ଲୁଲ୍ କେଉଁ ଭୁରୁଣ ବିଦେଶୀ ବନ୍ଧା ପରି ଘୋଡ଼ାର ଗ୍ରୁପ ଦେଖି ଯାଉଅଛୁ ଅମି ! ମଧ୍ୟାହ୍ନର ସ୍ୱପ୍ନରେ ପ୍ରବାଳର ସ୍ମୃତି ନେଇ ଯାଉଅଛୁ ଅମି ! ! ଏଥର, ଏ ସହର ଶ୍ମଶାନରେ ପରିପୂର୍ଣ୍ଣ ନୂତନ କବର; ହୁଏତ ମୋ ଯିବା ପୂର୍ବେ ମୋ କାନରେ ପଡ଼ି ନାହିଁ କୌଣସି ମୃତ୍ୟୁର ଖବର ।"

ଏ ତ ଗଳ୍ପ ଖୁବ୍ ସିଧାସଳଖ ଭାବରେ ନିଜର ଅବଚେତନ ମନ ଉପରେ ପ୍ରଭାବ ପକାଇଥିବା ସମାଜର ବାହ୍ୟିକ ରୂପର କେତେକାଂଶ ମାତ୍ର ।

ବର୍ତ୍ତମାନର କବି ଏବର ସମାଜକୁ ଆସ୍ୱାଦ ଓ ଅନୁଭବ କରିଛି Mythର ଆଶ୍ରୟ ନେଇ ; ତେଣୁ ତା' ଦୃଷ୍ଟିରେ ମହାଭାରତର ସମାଜ ଓ ଆଜିର ସମାଜ ସହିତ କିଛି କିଛି ସାମ୍ୟ ଆସିଛି ଓ ତା'ର ଅନ୍ତଃଦୃଷ୍ଟିର ସ୍ୱରରେ ସେ କହିଛି—

"ମୁଁ ଯୁକ୍ତେଷ୍ଟି ଦେଖେ ମୋର ଆପଣାର ଭାଇ ସବୁ ଯନ୍ତ୍ରଣାରେ ବ୍ୟଥିତ ଅସ୍ଥିର ଡୁବିଯାଇ ସେ କାନ୍ଥରେ; ହେ ଅନଳ ! ତୁମେ ଆଜି ଆବିର୍ଭୂତ ସେଇରୂପେ ଜଳିପୋଡ଼ି ଆମେ ସବୁ ସ୍ୱୟଂଭୂବ ମନୁସୁତେ ହେଲୁ ଛାରଖାର ।।"

ସମାଜରେ ଯେଉଁ ମୃତ୍ୟୁ ନାଚ ଚାଲିଛି, ତାହାର ଭାବଗତ ଓ ଅସ୍ତିଗତ ପ୍ରତିପ୍ରକାଶର ଆଧାର ଏଇ ବ୍ୟକ୍ତିମାନେ । ତେଣୁ ଆଜିର

କବିର ଦୃଷ୍ଟିରେ ପିଣ୍ଡାରିକ, ପ୍ରଭାସ, ବଦ୍ରିକା, ବୃନ୍ଦାବନ ବା ହିରୋସୀମା, ନାଗାସାକି ଏବଂ କଟକ ଓ ଭୁବନେଶ୍ୱରର ଅତୀତ ଓ ବର୍ତ୍ତମାନ ସମାଜ ଉଦ୍ଭାସିତ ହୋଇଉଠିଛି । ସେ ମୃତ୍ୟୁର ନାଚ କେବଳ ଅତୀତ ସମାଜର ନୁହେଁ, ବର୍ତ୍ତମାନର ମଧ୍ୟ । ସେଇଥିପାଇଁ ହତାଶାର ପଦଧ୍ୱନିର ପ୍ରତିଧ୍ୱନି ସମ୍ଭବ ହୋଇଛି ଆଜିର କବିତାରେ ଯେତେବେଳେ କବି କହେ—

"ଧୂ-ଧୂ ଖାଁ ଖାଁ କରେ ଆଜି ବୁଜିଆଡ ସବୁଜର ତଳି । ଆଶା ନାହିଁ, ନାହିଁ ଆଶ୍ୱାସନା, ଦୂବଘାସ ଝିଏ ନାହିଁ—ବଉଦର ସ୍ୱପ୍ନ ନାହିଁ, ନାହିଁ ନାହିଁ ସବୁଜ ଦ୍ୟୋତନା ।"

ଅବକ୍ଷୟୀ ସମାଜ ଓ ମଣିଷ ମନର ଅବସ୍ଥା ଏଇଥିରୁ ବେଶ ବାରି ହୁଏ । ଧ୍ୱଂସଗାମୀ ଏଇ ସମାଜରେ ନିଃସଙ୍ଗତା ଏତେ ପ୍ରବଳ ଯେ, କବିର ରସମୟୀ ଆତ୍ମା ଚିତ୍କାର କରି ଉଠେ ଅବଶ୍ୟ ଖୁବ୍ ବିମୀତ ସ୍ୱରରେ—

"ଭାଙ୍ଗିଦେଲି ମିଛ ବାହ୍ଲାଘର, କାହାର କି ଦୋଷ ସତେ କରିଥିଲି କେହି ତ ନାହାନ୍ତି ଏଠି କାହା ସଙ୍ଗେ ଖେଳିବଇଁ ମୁହିଁ ?"

ସାଂପ୍ରତିକ ସମାଜର ଆଉ ଏକ ଅନ୍ତରଙ୍ଗ ଚିତ୍ର—

"ବିସ୍ତୀର୍ଣ୍ଣ ବର୍ତ୍ତମାନର ଓସାରିଆ ବାଇଶି ପାହାଚେ ଗଡ଼ି ଗଡ଼ି କିଏ କେବେ ଜାଣି ପାରିଥିଲା ସେଇଦିନ ଶିଖଣ୍ଡୀ ତା' ଆଗେ ଦେଖାଦେବ ରଥଚକ ଧସିଯିବ ମାଟିତଳେ, ସାପ କାମୁଡ଼ିବ ଅଥବା ସେ ଲଟେରିରେ ମୋଟା କିଛି ଟଙ୍କା ପାଇଯିବ ?"

କି ସୁନ୍ଦର ବିରୋଧାଭାସ ! ଏ ସମାଜରେ କବିର ସ୍ଥିତି କେତେ ଦୟନୀୟ ଓ କରୁଣ, ତାହାର ଏକ ବ୍ୟାପକ ଅଭିବ୍ୟକ୍ତି—

"ଆମେ ଖାଲି ଭଙ୍ଗାଘର, ପ୍ରାସାଦର ଜରାଜୀର୍ଣ୍ଣ ପ୍ରାଚୀର ପଶ୍ଚାତା ଶୂନଶାନ ଫାଙ୍କା ଘରେ କେଉଁ ରନ୍ଧ୍ର ଆଲୋକର କ୍ଷୀଣ ଏକ ରେଖା ।"

'ଶକୁନ' ଭଳି ଏକ ଦୀର୍ଘ କବିତାରେ ମଧ୍ୟ ଆମକୁ କେନ୍ଦ୍ର କରି ଝୁଲି ରହିଥିବା ସମାଜର ରୂପରେଖ ବେଶ ମର୍ମସ୍ପର୍ଶୀ । 'କାଳପୁରୁଷ'ରେ ସମାଜର ଆଂଶିକ ଓ ସାଙ୍କେତିକ ଚିତ୍ର ପାଠକକୁ ସ୍ତମ୍ଭୀଭୂତ କରେ ।

ଏସବୁ ସତ୍ତ୍ୱେ ଏତିକି କୁହାଯାଇପାରେ ଯେ, ବର୍ତ୍ତମାନ କବିତାର ଆତ୍ମାରେ ସମାଜଚେତନାର ସ୍ଥିତି ଅନ୍ୟାନ୍ୟ ସମସ୍ତ ଚେତନାର ସ୍ଥିତି ଭଳି ବେଳେ ବେଳେ ଗୌଣ ମଧ୍ୟ । କାରଣ ନିଛକ ଉତ୍କୃଷ୍ଟ କବିତାରେ କବିର

ପରିପନ୍ଥୀ ଅବଚେତନ ମନର ନିର୍ଦ୍ଦେଶ ହିଁ ସାଂଘାତିକ ଭାବରେ କାର୍ଯ୍ୟ କରେ । ସେଇ ଅବଚେତନ ମନର Canvasରେ ପ୍ରଜାପତିର ରଙ୍ଗ ଯେତିକି ଗ୍ରହଣୀୟ, ସେତିକି ସିଂହାଳୁଆର ରୁକ୍ଷତା; ଆଲୋକର ଝିକମିକ ଯେତିକି ଶୋଭିତ, ଅନ୍ଧକାରର ଚିତ୍କାର ସେତିକି ପ୍ରତିଫଳିତ । ସେଠି ରଙ୍ଗର ବୈଭବ ନାହିଁ, ତୁଳୀର ବୈଚିତ୍ର୍ୟ ଅଛି, ଅଛି ବୈଶିଷ୍ଟ୍ୟ । ବର୍ତ୍ତମାନ କବିତାର ଓ କବିର ଆତ୍ମାର ପରିପ୍ରକାଶ ଗୋଟିଏ ମାଧ୍ୟମର ଶେଷ ରକ୍ତ-ବିନ୍ଦୁର ନିଷ୍ଠୁରତମ ନିର୍ଯ୍ୟାସ ପର୍ଯ୍ୟନ୍ତ, ବୌଦ୍ଧିକ ଚେତନାର ଚରମତମ ଅବକ୍ଷୟ ପର୍ଯ୍ୟନ୍ତ । ତେଣୁ ବିଭିନ୍ନତାର ସ୍ୱାଦ ତା'ର ନିଶ୍ୱାସପ୍ରଶ୍ୱାସରେ, ପ୍ରହେଳିକାର ଶିହରଣ ତା'ର ପ୍ରତ୍ୟେକ ଅବୟବରେ ।

ଯେମିତି କୌଣସି ଶବ୍ଦ ବା ଶବ୍ଦମାନଙ୍କର ଅର୍ଥଦ୍ୱାରା କାବ୍ୟ ବା କବିତାର ବୋଧ ଜନ୍ମେ ନା; କାରଣ ଶବ୍ଦର ଇଙ୍ଗିତଟା ହିଁ ପ୍ରଧାନ ବସ୍ତୁ ଏବଂ ସେଇ ରହସ୍ୟ ଇଙ୍ଗିତର ବ୍ୟାଖ୍ୟା ଅଭିଧାନ ବା ବ୍ୟାକରଣରେ ମିଳେ ନାହିଁ; ଭାଷା ସମ୍ପର୍କରେ ଯେଉଁମାନେ ଏକାନ୍ତ ମର୍ମଜ୍ଞ, ସେମାନେ କେବଳ ତାହାର ସେଇ ରହସ୍ୟଟିକକ ବୁଝନ୍ତି; ସେଇମିତି ଆଜିର କବି ସମାଜକୁ ଗ୍ରହଣ କରେ ଇଙ୍ଗିତ ମାଧ୍ୟମରେ ଯାହା କି ତା'ର କବିତାର ପ୍ରାଣସ୍ପନ୍ଦନରେ ସାହାଯ୍ୟ କରେ । ଏହା ହିଁ ହେଉଛି ପ୍ରକୃତ କବି ବା କବିତାର ଅନ୍ୟତମ ଲକ୍ଷଣ । ନ ହେଲେ ଯୁଦ୍ଧ କବିତା, କଳାବଜାରୀ ବିରୁଦ୍ଧରେ କବିତା, ସରକାରଙ୍କ ବିରୁଦ୍ଧରେ ଲେଖା ଧୂମଧଡ଼ାକ୍ ଗୀତ ବା ଏ ସମାଜକୁ ଓଲଟାଇ ଦିଅ, ଭଗବାନଙ୍କୁ ଚିରି ଦିଅ, ଇତ୍ୟାଦି ସମାଜ-ଚେତନା ସମ୍ବଳିତ କବିତା ଯେତେ ଲେଖା ହେଉ ପଛକେ ତାହା କବିତାର ସୂକ୍ଷ୍ମ ତନ୍ତ୍ରୀ ଓ ରସଘନ ମୂର୍ତ୍ତିକୁ କେବେ ସ୍ପର୍ଶ କରିପାରିବ ନାହିଁ । ବାରମ୍ବାର ମନେ ରଖିବାକୁ ହେବ ଯେ, କବି—କବି, ସେ ସମାଜ ସଂସ୍କାରକ ନୁହେଁ । ତା'ପାଇଁ ରୌଦ୍ରର ପ୍ରଖରତା ବା ଜ୍ୟୋତ୍ସ୍ନାର ସ୍ନିଗ୍ଧତା ବା ଅନ୍ଧକାରର ଜଡ଼ତା ମୂଲ୍ୟବାନ, ସୂର୍ଯ୍ୟର ଦୂରତ୍ୱ ନୁହେଁ; ଚନ୍ଦ୍ର ଅଭିଯାନର ବୈଜ୍ଞାନିକ ଯନ୍ତ୍ରପାତିର ବ୍ୟବହାର ପଦ୍ଧତି ନୁହେଁ; କି ଅନ୍ଧାର କାହିଁକି କଳା ହେଲା ଏ ବିଶ୍ଳେଷଣ ନୁହେଁ । ଏଇ ଦୃଷ୍ଟିରୁ ସାଂପ୍ରତିକ ଓଡ଼ିଆ କବିତାରେ ଯେଉଁ କେତେ ଜଣ ସଫଳ ସ୍ରଷ୍ଟା ଅଛନ୍ତି, ସେମାନଙ୍କ କବିତାରେ ସମାଜଚେତନା ବେଶ ତୀକ୍ଷ୍ଣ ଅଥଚ ଶ୍ରୁତିକଟୁ ନୁହେଁ । କବିର ବ୍ୟକ୍ତି-ବିଶ୍ୱରେ ଆଜିର ସମାଜ କେଉଁଠି ଓ ଆଜିର ସମାଜରେ କବିର ବିଶ୍ୱ କେଉଁଠି, ସେ ସମ୍ପର୍କରେ Paul Engle and Joseph Langlandଙ୍କ ଏକ ସୁନ୍ଦର

ଉକ୍ତି ଉଦ୍ଧାର କରି ମୁଁ ଶେଷ କରିବି ମୋର ଏଇ ବିରକ୍ତିବ୍ୟଞ୍ଜକ ପ୍ରବନ୍ଧ—

"Sometimes the poet envies the gandy spectacles of other arts. There is the evening concert the conductor glittering with white tie and tails, the orchestra itself rows of fancy dress (why should those marvellous sound need all of this assertive clothing ?), the audience arrayed in an exuberance of clothes. There is the Museum opening, the corridors a babble of quests gazing at the works of art. There is the theatre opening, the critics like blackbirds roosting in the front rows, waiting for the first shy sound to come from the new creature of the play (before rattling its head with their savage beake.) Where is the poet ? He is alone, creating his private art, with something of a hope that it will see the public air one day, but knowing that few will buy his book and that even for his publisher to print it is an act of charity. Now and then he will give a reading, but this is a casual affair, however helpful it is in restoring the human voice to the written word."

ଏଇ ବର୍ଣ୍ଣନା କ'ଣ ଏଇ ଗୃହରେ, ଏଇ ସହରରେ ଓ ଏଇ ସମାଜରେ ଏହାର ସ୍ଥାନ ପାଇବ ନାହିଁ ? ତେଣୁ କବିତାର ଭାଷା ଓ ଭାବ Half-revea ledand Half-concealed ହୋଇ ରହୁ ଏବଂ ରହିବା ଉଚିତ ; କାରଣ ସବୁବେଳେ ସବୁ ସମାଜରେ କବିତା ବା କବି ସେଇ ସମାଜର ମୁଖପାତ୍ର ହେବା ମୋ ମତରେ ଠିକ୍ ନୁହେଁ । ତା'ର ସମାଜର ଅନ୍ତରଙ୍ଗ ବନ୍ଧୁ ହେଉ ତା'ର ନିର୍ଜନତା—କ୍ଷତି କ'ଣ ? ସେଇ ପୃଷ୍ଠଭୂମିରେ କ'ଣ ତାର ସମାଜଚେତନା ବିଲୁପ୍ତ ହେବ, ନା କବି ଜଣେ ଅସାମାଜିକ ବ୍ୟକ୍ତିରେ ପରିଣତ ହେବ ? ? ଏ ଭୟ ସାଂପ୍ରତିକ ଓଡ଼ିଆ କବିଙ୍କର ନାହିଁ ବୋଲି ମୋର ଆଶା ।

# ମୋ ଦୃଷ୍ଟିରେ
# ସାଂସ୍କୃତିକ ଓଡ଼ିଆ କବିତାରେ
# ମାନବବାଦୀ ଚିନ୍ତାଧାରା

**ଅଧ୍ୟାପକ ବୈଷ୍ଣବ ଚରଣ ସାମଲ**

ଯୁଗେ ଯୁଗେ ମାନବବାଦୀ ଚିନ୍ତାଧାରା କବି ଓ କଳାକାରଙ୍କୁ ପ୍ରେରଣା ପ୍ରଦାନ କରିଛି ଉଚ୍ଚତର ସାହିତ୍ୟ ସୃଷ୍ଟି କରିବାକୁ । ସାଧାରଣ ମଣିଷ ଅପେକ୍ଷା କବି ଓ କଳାକାର ମଣିଷର ଦୁଃଖରେ ମ୍ରିୟମାଣ ହୋଇ ପଡ଼ନ୍ତି ପ୍ରଥମେ । ସେମାନଙ୍କର ହୃଦୟ ହେଉଛି ଦରଦୀ ହୃଦୟ । ମଣିଷର ଯନ୍ତ୍ରଣା, ଦୁଃଖ, ଦୈନ୍ୟ କବିର ହୃଦୟରେ ସୃଷ୍ଟିକରେ ଆଲୋଡ଼ନ । ତେଣୁ ଏକ ସାର୍ବଜନୀନ ଉଦାର ମାନବିକ ଦୃଷ୍ଟିକୋଣ ନେଇ କବି ପ୍ରକାଶ କରେ ତା'ର ଅନ୍ତରର ବେଦନାବୋଧକୁ ଏବଂ ଯେତେବେଳେ ସେ ତା'ର ବ୍ୟକ୍ତି-ବିଶ୍ୱଚେତନାକୁ ପ୍ରକାଶ କରେ, ସେତେବେଳେ ତାହା ବିଶ୍ୱ-ବ୍ୟକ୍ତି-ଚେତନାରେ ରୂପାନ୍ତରିତ ହୋଇ ଅଗଣିତ ଜନତାର ହୃଦୟର ଭାବକୁ ମର୍ମିତ କରେ । ଏହି ହେତୁ ଆଦିକବି ବାଲ୍ମୀକଙ୍କର ରାମାୟଣର ଶ୍ଲୋକ 'ମା ନିଷାଦ...' ଆଜି ମଧ୍ୟ ଏକ ଉଦାର ସମ୍ବେଦନଶୀଳ ମାନବବାଦୀ ଚିନ୍ତାଧାରା ପ୍ରକାଶ କରିବା ସଙ୍ଗେ ସଙ୍ଗେ କୋଟି ଜନତାଙ୍କ ହୃଦୟକୁ ଅଭିଭୂତ କରେ । ସାହିତ୍ୟ ଓ କଳା କେବଳ କଳ୍ପନାର ବସ୍ତୁ ନୁହେଁ, କେବଳ କବିହୃଦୟର ପ୍ରତିଲିପି ନୁହେଁ । ଏହା କବିର ହୃଦୟ ମଧ୍ୟଦେଇ ସଂଯୋଗ ସ୍ଥାପନ କରେ ମନୁଷ୍ୟ ସହିତ ମନୁଷ୍ୟର, ମନୁଷ୍ୟ ସହିତ ସମାଜର ଏବଂ ବ୍ୟକ୍ତି ସହିତ ବିଶ୍ୱର । ତେଣୁ "କଳା ଓ ସାହିତ୍ୟ ମନୁଷ୍ୟ-ମନୁଷ୍ୟ ମଧ୍ୟରେ ଯେଉଁ ପରିମାଣରେ ଭାବ-ସଂଯୋଗ କରିପାରନ୍ତି, ସେହି ପରିମାଣରେ ସେମାନେ ଉନ୍ନତ ଓ ସମୃଦ୍ଧ ହୁଅନ୍ତି ।";(୧) ଏହି ଭାବ-ସଂଯୋଗ ଯେତିକି

(୧) 'ଝଙ୍କାର'—ସମ୍ପାଦକୀୟ—ଡଃ ହରେକୃଷ୍ଣ ମହତାବ, ୧୯ଶ ବର୍ଷ ବିଷୁବ ସଂଖ୍ୟା ।

ନିବିଡ଼ ଏବଂ ଯେତିକି ଘନିଷ୍ଟ, ସେତିକି ପରିମାଣରେ କାବ୍ୟ ଓ କବିତା ଶାଶ୍ୱତ ଏବଂ ଚିରନ୍ତନ ।

୯ଇତିହାସର ବିବର୍ତ୍ତନ ସଙ୍ଗେ ସଙ୍ଗେ ମଣିଷର ଚିନ୍ତାରାଜ୍ୟରେ ମଧ୍ୟ ଦେଖାଦେଇଛି ପରିବର୍ତ୍ତନ । ବୈଜ୍ଞାନିକ ଯୁକ୍ତିବାଦର ବିକାଶ ପାରମ୍ପରିକ ବିଶ୍ୱାସବାଦ (Theory of Belief) ଉପରେ କୁଠାରାଘାତ କରିଛି ଏବଂ ଏହି ହେତୁ ପାରମ୍ପରିକ ବିବର୍ତ୍ତନବାଦୀ ମାନବବାଦ (Evolutionary Humanism) ଏବେ ପରିବର୍ତ୍ତିତ ହୋଇ ସମାଜବାଦୀ ମାନବବାଦ ବା ବୈପ୍ଳବିକ ମାନବବାଦ (Revolutionary Humanism)ରେ ପରିଣତ ହୋଇଯାଇଛି । ଏହି ଦୁଇ ମାନବବାଦୀ ଚିନ୍ତାଧାରା ମଧ୍ୟରେ ଦେଖାଦେଇଛି ସଂଶୟବାଦ, ଅନିଶ୍ଚୟତାବାଦ, ଭାଗ୍ୟବାଦ (Fatalism), ବ୍ୟକ୍ତିବାଦ, ଅସ୍ତିତ୍ୱବାଦ (Existentialism) । ଏହି ଯେଉଁ ମାନବ-ବାଦୀ ମତବାଦସବୁ ସାରା ବିଶ୍ୱରେ ଦେଖାଦେଲା, ତାହାକୁ ବୁର୍ଜୋୟା ଉଦାର-ନୈତିକ ମତବାଦ ବା ବୁର୍ଜୋୟା ମାନବବାଦ ଏବଂ ବୁର୍ଜୋୟା ଜାତୀୟବାଦ ଭାବରେ ବିଭକ୍ତ କରାଯାଇପାରେ । ବୁର୍ଜୋୟା ମାନବବାଦ ସାଧାରଣତଃ ସହନଶୀଳତା, ଉଦାରତାବାଦ ଓ ଧର୍ମଭିତ୍ତିକ ମାନବବାଦ (Religion oriented Humanism) ଭାବରେ ରୂପାନ୍ତରିତ । ଏହି ମାନବବାଦୀ ଚିନ୍ତାଧାରା ମଧ୍ୟରେ ଦେଖାଦେଇଛି ଦେଶପ୍ରେମ, ଦେଶାତ୍ମବୋଧ, ଦେଶର ଡାକ, ଦେଶର ସ୍ୱାର୍ଥ ଓ ଦେଶର ଐକ୍ୟ । ଧର୍ମନିରପେକ୍ଷ ମାନବବାଦ (Secular humanism)ବୁର୍ଜୋୟା ମାନବବାଦର ଅନ୍ୟ ଏକ ରୂପାନ୍ତର । ଏହିସବୁ ଯେତେ ମାନବବାଦୀ ଚିନ୍ତାଧାରା ଦେଖାଦେଇଛି, ସେସବୁ ବ୍ୟକ୍ତି-କୃତ ସମାଜ ଚିନ୍ତା (Personified social thinking) । ମାତ୍ର ଏହା ପରେ ବିବର୍ତ୍ତିତ ହୋଇଯାଇ ସାମ୍ୟବାଦ ସମ୍ମତ ମାନବବାଦୀ ଚିନ୍ତାଧାରାରେ ପରିଣତ ହୋଇଛି, ଯାହାକୁ ମାର୍କସ୍ କହନ୍ତି—

> "Communism is humanism minus private property."

ଯେଉଁ ସାର୍ତ୍ରେ କହୁଥିଲେ, ସବୁ ହେଲା ମାତ୍ର କିଛି ହେଲା ନାହିଁ ଏବଂ ଯେ ଜୋର ଦେଉଥିଲେ "being and nothingness" ଉପରେ, ସେହି ସାର୍ତ୍ରେ ପରବର୍ତ୍ତୀ କାଳରେ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଉପରେ ଆସ୍ଥା ସ୍ଥାପନ କଲେ । ତେଣୁ କାଳକ୍ରମେ ଅର୍ଥନୀତି ହିଁ ମାନବବାଦକୁ ନିୟନ୍ତ୍ରିତ କଲା ଏବଂ ଏହି ହେତୁ ମାର୍କସ କହନ୍ତି—

"Art and literature are the superstructure built on the definite economic basis of the society."

ଡଃ ହରେକୃଷ୍ଣ ମହତାବ କହନ୍ତି :

"ବ୍ୟକ୍ତି ବା ସମାଜର ଜୀବନଦର୍ଶନ ସହିତ ସାହିତ୍ୟର ଘନିଷ୍ଠ ସମ୍ବନ୍ଧ । ଈଶ୍ୱରଙ୍କୁ କେନ୍ଦ୍ର କରି ହଜାର ହଜାର ବର୍ଷ ହେଲା ଯେଉଁ ଜୀବନ-ଦର୍ଶନ ପ୍ରବାହିତ ହୋଇଅଛି, ଯାହାକୁ ନେଇ ସାହିତ୍ୟ ଗଠ କରିଆସିଛି, ସେ ଜୀବନଦର୍ଶନକୁ ଆଉ ଏକ ଦର୍ଶନ ଅଧୁନା ଆହ୍ୱାନ କରୁଛି । ଏହି ଆହ୍ୱାନ ଫଳରେ ଯେଉଁ ଦ୍ୱନ୍ଦ୍ୱ ଉପୁଜିଛି, ସେଥିରେ ପୃଥିବୀର ବହୁ ଅଂଶରେ ଆହ୍ୱାନକାରୀ ଦର୍ଶନ ଜୟଲାଭ କରିଛି । ଏ ଦର୍ଶନଟିର କେନ୍ଦ୍ର ଈଶ୍ୱରଙ୍କ ପରିବର୍ତ୍ତେ ସମାଜ ।" (୨)

ଏହି ଚିନ୍ତାଧାରା କେବଳ ଓଡ଼ିଶାରେ କାହିଁକି, ସମଗ୍ର ବିଶ୍ୱରେ ଆଲୋଡ଼ନ ସୃଷ୍ଟି କରିଛି ବିଶେଷ କରି ବିଂଶ ଶତାବ୍ଦୀର ଆଦ୍ୟପାଦରୁ । ବିଜ୍ଞାନର ଅଗ୍ରଗତି ଏବଂ ତତ୍‌ସଙ୍ଗେ ସଙ୍ଗେ ସମାଜବିଜ୍ଞାନର ଉନ୍ନତି ଏଭଳି ଚିନ୍ତା ସୃଷ୍ଟି କରିବାରେ ସାହାଯ୍ୟ କରିଛି । ବିଂଶ ଶତାବ୍ଦୀରେ ମଣିଷର ମନୋରାଜ୍ୟରେ ଈଶ୍ୱରଙ୍କର ଅସ୍ତିନାସ୍ତି ସମ୍ବନ୍ଧରେ ଦେଖାଦେଇଛି ଦ୍ୱନ୍ଦ୍ୱ ଏବଂ ଏହାକୁ ସ୍ପଷ୍ଟ କରିଦେଇଛି ମାର୍କସୀୟ ଦର୍ଶନ । ତେଣୁ ଧର୍ମାନୁମୋଦିତ ମାନବବାଦ ପରିବର୍ତ୍ତେ ଅର୍ଥାନୁମୋଦିତ ମାନବବାଦ କ୍ରମେ ବିସ୍ତାରଲାଭ କରିଛି । ଏ ଚିନ୍ତା ହୁଏତ ବେଶି ଦିନ ପ୍ରଭାବ ପକାଇ ନ ପାରେ; ତଥାପି ସମଗ୍ର ବିଶ୍ୱଜନତାଙ୍କୁ ଏହି ଅର୍ଥାନୁମୋଦିତ ମାନବବାଦୀ ଚିନ୍ତାଧାରା ଆକୃଷ୍ଟ କରିଛି । ଏହି ଦୁଇ ମତବାଦ ମଧ୍ୟରେ କେତେବେଳେ ଜାତୀୟତାବାଦୀ ମାନବବାଦ ଏବଂ ପୁଣି କେତେବେଳେ ସଂସ୍କାରବାଦୀ ମାନବବାଦ ଚିନ୍ତାକ୍ଷେତ୍ରରେ ଅନୁପ୍ରବେଶ କରିଛି ।

## ଏ ପରିପ୍ରେକ୍ଷୀରେ ଓଡ଼ିଆ କବିତା

ଏହି ମାନବବାଦୀ ଚିନ୍ତାଧାରାର ପରିପ୍ରେକ୍ଷୀରେ ଓଡ଼ିଆ କବିତାକୁ ବିଚାର କଲେ ଏଥିରେ ବହୁମୁଖୀ ଭାବଧାରାର ଅନୁପ୍ରବେଶ ସ୍ପଷ୍ଟ ପରିଲକ୍ଷିତ ହୋଇଥାଏ । ଊନବିଂଶ ଶତକର ଶେଷଭାଗରେ ଆଧୁନିକ ଓଡ଼ିଆ

(୨) 'ଝଙ୍କାର', ସମ୍ପାଦକୀୟ—୨୧ବର୍ଷ, ବିଷୁବସଂଖ୍ୟା

ସାହିତ୍ୟର ନବ ଜାଗରଣର ଆଦ୍ୟ ବୈତାଳିକ ଭାବରେ କବିବର ରାଧାନାଥ ରାୟ ପ୍ରତିଷ୍ଠା ଅର୍ଜନ କରିଥିଲେ ହେଁ ତାଙ୍କର କାବ୍ୟକବିତାରେ ମାନବବାଦୀ ସ୍ୱର କ୍ଷୀଣ ଏବଂ ସ୍ଥଳବିଶେଷରେ ଯାହା ଅଛି, ତାହା ବିବର୍ତ୍ତନବାଦୀ ମାନବବାଦୀ ଚିନ୍ତା । ମଧୁସୂଦନ ଓ ଗଙ୍ଗାଧରଙ୍କ ମାନବବାଦୀ ଚିନ୍ତା ମଧ୍ୟ ଠିକ୍ ଏହିପରି । ତଥାପି ମଧୁସୂଦନଙ୍କର ମାନବବାଦ ଅଧ୍ୟାତ୍ମଭାବଭାବିତ । ଯଦିଓ ସେ ତୈଜସ ଦୃଷ୍ଟିବଳରେ ଏକ ଉଚ୍ଚତର ମାନବିକ ଚିନ୍ତାଧାରାକୁ ଈଶ୍ୱରାନୁଗତ ଭାବଧାରାରେ ସମନ୍ୱିତ କରି ବର୍ଣ୍ଣନା କରିଛନ୍ତି, ତଥାପି ତାହା ପାରମ୍ପରିକ ଏବଂ ବିବର୍ତ୍ତନଧର୍ମୀ ମାନବବାଦୀ ଦୃଷ୍ଟିକୋଣର ପରିଚାୟକ । ଏହି ପରିପ୍ରେକ୍ଷୀରେ ନନ୍ଦକିଶୋରଙ୍କର ମାନବବାଦ ପଲ୍ଲୀଭିତ୍ତିକ । ଏକ ଶାନ୍ତ ପ୍ରଶାନ୍ତ ଲଳିତ ପରିବେଶ ମଧ୍ୟରେ ସେ ମାନବବାଦର ବନ୍ଦନା କରିଛନ୍ତି ମାତ୍ର; କିନ୍ତୁ ଏ ସମୟରେ ଫକୀରମୋହନ ହିଁ ସଂସ୍କାରବାଦୀ ମାନବବାଦକୁ ରୂପାୟିତ କରିଛନ୍ତି ତାଙ୍କର କାବ୍ୟକବିତାରେ । ଊନବିଂଶ ଶତାବ୍ଦୀରେ ସମଗ୍ର ଭାରତବର୍ଷରେ ଯେଉଁ ସଂସ୍କାରର ବାର୍ତ୍ତା ଆଣିଥିଲେ ରାଜା ରାମମୋହନ ରାୟ, ଦୟାନନ୍ଦ ସରସ୍ୱତୀ, କେଶବଚନ୍ଦ୍ର ସେନ ପ୍ରଭୃତି ତା'ର ଏକ ମନୋଜ୍ଞ ଆଲେଖ୍ୟ ଫକୀରମୋହନଙ୍କ କାବ୍ୟକବିତାରେ ଦେଖିବାକୁ ମିଳିଥାଏ । ଗୋଟିଏ କଥାରେ କହିବାକୁ ଗଲେ ଫକୀରମୋହନ ସେନାପତିଙ୍କର ସଂସ୍କାରମୁଖୀ ମାନବବାଦୀ ଦୃଷ୍ଟିକୋଣ ପରବର୍ତ୍ତୀ କାଳର ଅର୍ଥାନୁମୋଦିତ ମାନବବାଦୀ ଚିନ୍ତାଧାରାର ନୈକଟ୍ୟ ଲାଭ କରିଛି ।

ଆଧୁନିକ ଓଡ଼ିଆ କବିତାର ଆଦ୍ୟ ଓଁକାର ପରେ ବିଂଶ ଶତାବ୍ଦୀର ଆଦ୍ୟଭାଗରୁ ଆଉ ଏକ ନୂତନ ଭାବବୋଧ ଓଡ଼ିଆ କବିତାକୁ ଘନିଷ୍ଠ ଭାବରେ ପ୍ରଭାବିତ କଲା ଏବଂ ଏହା ହେଉଛି ଜାତୀୟତାବାଦୀ ମାନବବାଦ । ଏ ଜାତୀୟତାବାଦରେ ଅନୁପ୍ରବେଶ କଲା ବୁର୍ଜୋୟା ଉଦାର ନୈତିକତାବାଦ । ଏହି ହେତୁ ଏହି ଜାତୀୟ ଚେତନାରୁ ସୃଷ୍ଟି ହେଲା— ଧର୍ମାନୁମୋଦିତ ଜାତୀୟବାଦୀ ମାନବବାଦ (Religious-oriented humanism) ଏବଂ ଧର୍ମନିରପେକ୍ଷ ମାନବବାଦ (Secular humanism) । ଏ ଚିନ୍ତା ୧୯୩୬ ମସିହା ପର୍ଯ୍ୟନ୍ତ ଓଡ଼ିଆ କବିତାକ୍ଷେତ୍ରରେ ସ୍ଥାୟୀଘନ ଅବସ୍ଥା ସୃଷ୍ଟି କଲା । ଜାତୀୟତାବାଦୀ ମାନବବାଦର ଉଦ୍‌ଗାତା ହେଲେ ପଣ୍ଡିତ ଗୋପବନ୍ଧୁ ଦାସ ଏବଂ ଏହି ମତବାଦଦ୍ୱାରା ପ୍ରଭାବିତ ହୋଇ ଆଉ ଯେଉଁମାନେ କବିତା ରଚନା କଲେ, ସେମାନେ ହେଲେ

ପଦ୍ମଚରଣ, ଗୋଦାବରୀଶ, ନୀଳକଣ୍ଠ, କୁନ୍ତଳାକୁମାରୀ, ଚିନ୍ତାମଣି ପ୍ରଭୃତି । ଏମାନଙ୍କ କବିତାରେ ସମ୍ବେଦନଶୀଳ ମାନବବାଦୀ ଚିନ୍ତାଧାରା ନାହିଁ; ମାତ୍ର ଏହା ଜାତୀୟତାବାଦୀ ଭାବଧାରାରେ ସମୃଦ୍ଧ ଏବଂ ବିଶେଷ ଭାବରେ ଏହା ଉପଦେଶାତ୍ମକ ମାନବବାଦୀ ଚିନ୍ତାଧାରାରେ ଅନୁପ୍ରାଣିତ । ଅତୀତ ଇତିହାସର ପୃଷ୍ଠପୀଠିକାରେ ତାତ୍କାଳିକ ଅବସ୍ଥାକୁ ବୈପ୍ଳବିକ ପଦ୍ଧତିରେ ସମନ୍ୱୟ କରି ମାନବବାଦର ପ୍ରଚାର କଲେ ଏମାନେ ଏବଂ ବେଳେ ବେଳେ ଏହା ବିଶ୍ୱମାନବିକ ଚିନ୍ତାଧାରାରେ ମଧ୍ୟ ଉଦ୍‌ବୁଦ୍ଧ ହୋଇଉଠିଲା, ଯଦିଓ ଏଥିରେ ବାସ୍ତବତା ପରିବର୍ତ୍ତେ ସମ୍ବେଦନଶୀଳ ଆଦର୍ଶବାଦୀ ମାନବବାଦ ପ୍ରମୂର୍ତ୍ତ ହେଲା । ଏହି ହେତୁ ଏ ମାନବବାଦ ଓଡ଼ିଆ କବିତା କ୍ଷେତ୍ରରେ ସ୍ଥାୟୀ ପ୍ରଭାବ ପକାଇପାରିଲା ନାହିଁ । ଦେଶ-ପ୍ରେମ, ଦେଶର ଡାକ, ଦେଶର ସ୍ୱାର୍ଥ ଇତ୍ୟାଦି ନାନାଦି ଚିନ୍ତା ଏ ମାନବବାଦର ଅନୁଗାମୀ; ମାତ୍ର ସୂକ୍ଷ୍ମ ଭାବରେ ବିଶ୍ଳେଷଣ କଲେ ଜଣାଯାଏ ଯେ, ଏହା ବୁର୍ଜୋୟା ନୈତିକତାବାଦୀ ମାନବବାଦର ପରିପୃଷ୍ଟକ ବ୍ୟତୀତ ଅନ୍ୟ କିଛି ହୋଇ ନ ପାରେ । ବାର ଶତ ବଢ଼େଇଙ୍କର ଚକ୍ରାନ୍ତ ଏବଂ ଧର୍ମପଦର ଆତ୍ମହତ୍ୟା ଏବଂ ଏହି ପୃଷ୍ଠଭୂମିରେ ମାନବବାଦର ଉଦ୍ଧାର ବୁର୍ଜୋୟା ସମାଜତାନ୍ତ୍ରିକ ବ୍ୟବସ୍ଥା ବ୍ୟତୀତ ଆଉ କ'ଣ ହୋଇପାରେ ? ତେଣୁ ଗୋପବନ୍ଧୁଙ୍କର ସମ୍ବେଦନଶୀଳ ମାନବବାଦୀ ଚିନ୍ତା ପ୍ରକଟିତ ହୋଇ-ଥିଲେ ହେଁ ତାହା ଜାତୀୟ ଚେତନାସମ୍ପୃକ୍ତ ଏବଂ ଅତୀତର ଆଲୋକରେ ଆଲୋକିତ; ମାତ୍ର ଉପଦେଶାତ୍ମକ ମାନବବାଦୀ ଅନୁଚିନ୍ତାରେ ଋଦ୍ଧିମନ୍ତ । ଏହି ହେତୁ ତାଙ୍କର—

"ନିଜ ସୁଖ ଲାଗି ଜାତ ନୁହେଁ ହିନ୍ଦୁ
ବିଶ୍ୱ ହିତେ ହିନ୍ଦୁ ପ୍ରତି ରକ୍ତବିନ୍ଦୁ ।"

ବା

"ମାନବ ଜୀବନ ନୁହଇ କେବଳ ବର୍ଷ ମାସ ଦିନ ଦଣ୍ଡ,
କର୍ମେ ଜୀଏ ନର କର୍ମ ଏକା ତାର ଜୀବନର ମାନଦଣ୍ଡ ।"

ଆଦି ଉକ୍ତିଗୁଡ଼ିକ ପ୍ରଚାରଧର୍ମୀ ଉପଦେଶାତ୍ମକ ମାନବବାଦୀ ଚିନ୍ତା ସୃଷ୍ଟି କରିଥାଏ ।

ବିଂଶ ଶତାବ୍ଦୀର ବିଂଶକରେ ବଙ୍ଗଳା ସାହିତ୍ୟରେ ଯେତେବେଳେ 'କଲ୍ଲୋଳ ଯୁଗ' ଏବଂ ହିନ୍ଦୀ ସାହିତ୍ୟରେ 'ଛାୟାବାଦୀ' ଯୁଗ, ଓଡ଼ିଆ ସାହିତ୍ୟରେ ସେତେବେଳେ ଦେଖାଦେଇଛି 'ସବୁଜ ଚେତନା'। ଗୋଟିଏ ଦିଗରେ ଜାତୀୟତାବାଦୀ ମାନବବାଦ ଏବଂ ଅନ୍ୟ ପଟରେ ତରୁଣସୁଲଭ ସବୁଜ ମାନବବାଦର ପରିକଳ୍ପନା। ଏହି ଚେତନାଧାର ମାନବବାଦ ରୋମାଣ୍ଟିକ-ଭାବ-ପ୍ରଣୋଦିତ। ଓ୍ୱାର୍ଡ୍‌ସଓ୍ୱାର୍ଥ, କଲେରିଜ୍, ବାଇରନ୍, କୀଟସ୍ ପ୍ରଭୃତି ରୋମାଣ୍ଟିକ୍ କବିମାନେ ଯେପରି ରୋମାଣ୍ଟିକ ମାନବବାଦର ଜୟଗାନ କରିଥିଲେ, ଓଡ଼ିଆ ସାହିତ୍ୟରେ ସବୁଜଯୁଗୀୟ ତରୁଣ କବିମାନେ ଠିକ୍ ଅନୁରୂପ ଭାବରେ ମାନବ ବନ୍ଦନା କରିଛନ୍ତି। କଲେରିଜ 'The Rime of the Ancient Mariner'ରେ ମାନବବାଦୀ ଦୃଷ୍ଟିକୋଣର ପରିଚୟ ଦେଇ ଲେଖିଛନ୍ତି—

"He prayeth well, who loveth well
Both man and bird and beast.
He paryeth best, who loveth best
All things both great and small;
For the dear God who loveth us,
He made and loveth all."

ଠିକ୍ ଏହିପରି ନ ହେଲେ ହେଁ ଏହାରି ମର୍ମରେ କବି ବୈକୁଣ୍ଠନାଥ ପଟ୍ଟନାୟକ ରଚନା କରିଛନ୍ତି 'ଚିଲିକାରେ ପକ୍ଷୀବଧ'କୁ ଲକ୍ଷ୍ୟ କରି। ସେ ଉପଲବ୍ଧି କରିଛନ୍ତି, "ଭୁଲିଛି ମାନବ ଆଜ ପ୍ରାଣର ସମ୍ମାନ।' ସେ ପୁଣି ଚିନ୍ତା କରିଛନ୍ତି—ଆଜିର ମଣିଷ ଅନ୍ତଃସାରଶୂନ୍ୟ। ତାର ଜୀବନର ସକଳ ପୁଣ୍ୟ ଆଜି ନିର୍ବାପିତ। ଏକ ବିଦଗଧ୍ ମାନବବାଦୀ ଦୃଷ୍ଟିକୋଣ ଏ କବିତାରେ ଦେଖିବାକୁ ମିଳିଥାଏ। 'ମୃତ୍ତିକା ଦର୍ଶନ" ମଧ୍ୟ ଏହି ଭାବର ପ୍ରକାଶକ। କବି ଅନ୍ନଦାଶଙ୍କର 'ପ୍ରଳୟ ପ୍ରେରଣା'ରେ ବୈପ୍ଳବିକ ମାନବବାଦର ସୂଚନା ପ୍ରଦାନ କରି ଲେଖିଛନ୍ତି—

"ଏହି ଭସ୍ମ ଅବଶେଷ
ଉପରେ ମୁଁ ରଚିବି ନନ୍ଦନ—
ମର୍ତ୍ତ୍ୟରେ ଅମରାବତୀ
ଜଡ଼ ଦେହେ ଜୀବନ-ସ୍ପନ୍ଦନ,

ମୁକ୍ତ ହୁଅ ମୁକ୍ତ ହୁଅ
ଜଗତର ଯେତେ ନରନାରୀ
ମୃତ ସମାଜର ଶିରେ
ସିଞ୍ଚିଦିଅ ସଞ୍ଜୀବନ ବାରି ।''

କବି ଅନ୍ନଦାଶଙ୍କର ରାୟ 'ପ୍ରଳୟ ପ୍ରେରଣା'ରେ ବୈପ୍ଳବିକ ଆବେଦନ ସୃଷ୍ଟି କରିଥିଲେ ହେଁ ଏହା ରୋମାଣ୍ଟିକ ମାନବବାଦର ଭାବ ପ୍ରକାଶ କରିଥାଏ, କିନ୍ତୁ ପରେ ସେ ଯେତେବେଳେ 'ସୃଜନର ସ୍ୱପ୍ନ' ଲେଖିଛନ୍ତି ସେତେବେଳେ ସେ ତାଙ୍କର ଏହି ବୈପ୍ଳବିକ ମାନବବାଦୀ ଦୃଷ୍ଟିକୋଣକୁ ଛଳନା ବୋଲି ସ୍ୱୀକାର କରିଛନ୍ତି । ତେଣୁ ସବୁଜଯୁଗୀୟ କଳ୍ପନାବିଳାସୀ ମାନବବାଦୀ ଭାବଧାରାର କବି ଭାବରେ ସେ ପରିଚିତ । ଏହି ସମୟରେ କାଳନ୍ଦୀଚରଣ, ହରିହର ପ୍ରଭୃତି କବିମାନେ ଯେଉଁ କବିତାମାନ ରଚନା କରିଛନ୍ତି, ସେସବୁ ରୋମାଣ୍ଟିକ ମାନବଧର୍ମୀ ଚିନ୍ତାଧାରାରେ ଉଦ୍ଧିମନ୍ତ ।

ଆଉ ଏକ ନୂତନ ମାନବବାଦୀ ଚିନ୍ତା

ସବୁଜଯୁଗୀୟ ରୋମାଣ୍ଟିକ ମାନବବବାଦୀ ଚିନ୍ତାଧାରା ପରେ ପରେ ଓଡ଼ିଆ କବିତା କ୍ଷେତ୍ରରେ ୧୯୩୬ ମସିହା ପରେ ଆଉ ଏକ ନୂତନ ମାନବବାଦୀ ଚିନ୍ତାଧାରା ଦେଖାଦେଇଛି । ତାହା ହେଉଛି ବୈପ୍ଳବିକ ମାନବ-ବାଦ (Revolutionary Humanism) । ଏ ମାନବବାଦ ଦୁଃଖଯନ୍ତ୍ରଣାର ଜୟଗାନ କରେ ନାହିଁ ; ମାତ୍ର ଦୁଃଖଯନ୍ତ୍ରଣାକୁ ଦୂର କରିବା ପାଇଁ ବିପ୍ଳବର ତୂର୍ଯ୍ୟନାଦ କରେ । ସାମାଜିକ ବୈଷମ୍ୟ ଏବଂ ବୈସାଦୃଶ୍ୟକୁ ବିଲୋପ କରି ସାମ୍ୟ ଏବଂ ମୈତ୍ରୀର ଏହା ପ୍ରଚାର କରେ । ଏ ମାନବବାଦ ସହନଶୀଳତା ପରିବର୍ତ୍ତେ ଶକ୍ତିର ପରୀକ୍ଷା ଚାହେଁ । ରକ୍ତ ବୁହାଇ ଅଶୁଚି ପୃଥିବୀକୁ ଶୁଚିମନ୍ତ କରିବାକୁ ଏହା ପ୍ରେରଣା ଦିଏ । ଯୁଗବିପ୍ଳବୀ ମାକ୍ସିମ ଗୋର୍କିଙ୍କ ବଜ୍ରଗମ୍ଭୀର ବାଣୀରେ ଏ ଯୁଗୀୟ ମାନବବାଦ ବିଶେଷ ଭାବରେ ଅନୁପ୍ରାଣିତ । ବିଂଶ ଶତାବ୍ଦୀରେ ଯେଉଁ ଦୁଇ ପ୍ରଧାନ ଚିନ୍ତାନାୟକ କଳା ଓ ସାହିତ୍ୟ କ୍ଷେତ୍ରରେ ପ୍ରଭାବ ବିସ୍ତାର କରିଛନ୍ତି, ସେମାନେ ହେଲେ ଫ୍ରଏଡ଼ ଓ ମାର୍କସ । ବୁର୍ଜୋୟା ସମାଜରେ ଫ୍ରଏଡ଼ ବିଶେଷ ପ୍ରଭାବ ବିସ୍ତାର ଲାଭ କରିଥିଲାବେଳେ ସାମ୍ୟବାଦୀ ସମାଜରେ ତଥା ଦଳିତ ସମାଜରେ ମାର୍କସଙ୍କର ପ୍ରଭାବ ବିଶେଷ ପ୍ରଣିଧାନଯୋଗ୍ୟ । ଓଡ଼ିଆ ସାହିତ୍ୟରେ ସାମ୍ୟବାଦୀ

ଚିନ୍ତାଧାରା ଦ୍ୱାରା ଅନୁପ୍ରାଣିତ ହୋଇ ଭଗବତୀଚରଣ ପାଣିଗ୍ରାହୀ ନବଯୁଗ ସାହିତ୍ୟ ସଂସଦ ଗଠନ କଲେ ଏବଂ ସେ ହେଲେ ଯଥାର୍ଥରେ ବୁର୍ଜୋୟା ମାନବବାଦୀ ଚିନ୍ତାଧାରାରୁ ମୁକ୍ତ ବୈପ୍ଳବିକ ମାନବବାଦର ପ୍ରାଣପ୍ରତିଷ୍ଠାତା । ନୈତିକ ଉପାଦାନରେ ରୂପାନ୍ତରିତ ବୈପ୍ଳବିକ ମାନବବାଦର ସମର୍ଥକ ଭାବରେ ଅନନ୍ତ ପଟ୍ଟନାୟକ, ସଚ୍ଚିଦାନନ୍ଦ ରାଉତରାୟ, ମନମୋହନ ମିଶ୍ର ଏବଂ ସୁନନ୍ଦ କର ପ୍ରଭୃତି କବିମାନେ ନବଯୁଗ ସାହିତ୍ୟ ସଂସଦର ହେଲେ ଯୋଗ୍ୟ ଦାୟାଦ ଏବଂ ସେହିମାନଙ୍କର ପ୍ରଚେଷ୍ଟାରେ ଓଡ଼ିଆ ସାହିତ୍ୟରେ ଏହି ନୂତନ ମାନବବାଦୀ ଚିନ୍ତାଧାରାର ସୂତ୍ରପାତ ହେଲା । ଏ ମାନବବାଦ ଧର୍ମରେ ବିଶ୍ୱାସ କଲା ନାହିଁ । ମଣିଷର ଶକ୍ତିରେ ମଣିଷ କଲା ବିଶ୍ୱାସ । ସ୍ୱର୍ଗ ନରକର ଭାବନାରେ ମଣିଷ ଆଉ ଭୀତତ୍ରସ୍ତ ନ ହୋଇ ବଞ୍ଚିବା ପାଇଁ ସଂଗ୍ରାମ କଲା । କେବଳ ଇଭୋଲ୍ୟୁସନ ନୁହେଁ, ରକ୍ତରଞ୍ଜିତ ରିଭୋଲ୍ୟୁସନ ମଧ୍ୟ ଦେଇ ମାନବବାଦର ପ୍ରତିଷ୍ଠା କରିବାକୁ ଏ ଯୁଗ ହେଲା ଅଧିକ ପ୍ରୟାସୀ । ଏଥିପାଇଁ 'ଚିତ୍ରଗ୍ରୀବ' ଉପନ୍ୟାସରେ ସଚ୍ଚି ରାଉତରାୟ ଲେଖିଛନ୍ତି, "ମଣିଷ ଦେବତାର ଆରାଧନା ଛାଡ଼ି ଦସ୍ୟୁର ଆରାଧନା କରିବାକୁ ଆଗେ ଶିଖୁ । ପ୍ରତେକ ସଭ୍ୟତାରେ ବାଲ୍ମୀକିଙ୍କ ଲେଖନୀ ପୂର୍ବରୁ ଦସ୍ୟୁ ରତ୍ନାକରର ଗଦାଟା ଆଗ ଦରକାର । ଆଗେ ମଣିଷକୁ ଶରୀର ଅଛି, ବଞ୍ଚିବାକୁ ହେବ । ଦସ୍ୟୁ ସେଇ ଶାରୀରିକ ଶକ୍ତିର ପ୍ରତୀକ । ମଣିଷ ଆଗେ ବଞ୍ଚୁ । ତା ପରେ ସେ କବିତା ଲେଖିବ, ସ୍ୱପ୍ନ ଦେଖିବ, ଅଭିସାର କରିବ କିମ୍ବା ବଂଶୀ ବଜାଇବ । ଦସ୍ୟୁ କହିଲେ ମୁଁ ବୁଝେ ନାହିଁ ଗଣ୍ଠିକଟା ବା ପକେଟମାର । ମୁଁ ବୁଝେ ଜଣେ ତାଜା ଯୁଆନ, ନିର୍ଭୀକ ଯୁବକ । କେହି ତାକୁ ଡାହାଣ ଗାଲରେ ଚାପୁଡ଼ାଏ ପକାଇଲେ ଯାହାର ଡାହାଣ ହାତ ସେହି ଅପମାନର ପ୍ରତିଶୋଧ ନେଇ ପାରୁଥିବ । ଜୀବନରେ ସେ ଅପମାନ ସହିବା ଆଗରୁ ମୃତ୍ୟୁକୁ ମନେ କରିବ ଶ୍ରେୟସ୍କର । ମନୁଷ୍ୟତ୍ୱର ଅପମାନକୁ ନିର୍ବିବାଦରେ ହଜମ କରିବା ଆଗରୁ ସେ ମଶାଣିପଦାକୁ ମନେ କରିବ ଅଧିକ କାମ୍ୟ ।' ଯେଉଁ ପ୍ରଗତିବାଦୀ ମାନବତାବାଦର ସ୍ୱର ସୃଷ୍ଟି କଲେ ରୁଷିଆରେ ଗୋର୍କି, ମାୟାକୋଭସ୍କି ; ସ୍ପେନରେ ନେରୁଦା, ଲୋର୍କା, ହିମେନେଜ ; ଇଟାଲିରେ କାର୍ଦୁସି, ଆଁଜୁ ଓ କୋସିମୋଦା ଏବଂ ଆମେରିକାରେ ହୁଇଟମ୍ୟାନ ସେହି ସ୍ୱର କ୍ରମେ ୧୯୩୭ ବେଳକୁ ଓଡ଼ିଶାର ନବଯୁଗର ତରୁଣ କବିମାନଙ୍କୁ ପ୍ରଭାବିତ କଲା । ତେଣୁ ସଚ୍ଚି ରାଉତରାୟ ନୂତନ ମାନବତାବାଦର ସମ୍ବର୍ଦ୍ଧନା ଜଣାଇ ଲେଖିଲେ—

"ଶତାବ୍ଦୀର ସିଂହଦ୍ୱାରୁ ଆସିଅଛୁ ଦୂତ
ଆଣିଅଛୁ ବାର୍ତ୍ତା ଭବିଷ୍ୟର ।
ଜୀବନର ସମ୍ଭାବନା ଯହିଁ ମୂର୍ତ୍ତିମାନ
ନାହିଁ ଯହିଁ ପ୍ରାଚୀର ପ୍ରାନ୍ତର
ଜାଗ ହେ ମାନବଶିଶୁ ଜାଗ ନରବ୍ରହ୍ମ
ଜାଗ ଧରି ଲୌକିକତା ଜ୍ଞାନ,
ଦୃଢ଼ ହୁଅ, ରୂଢ଼ ହୁଅ, ନିଅ ପ୍ରତିଶୋଧ
ମୁକ୍ତ ନ୍ୟାପା ଆନ ବାସନ୍ତର ।"

ସଚ୍ଚି ରାଉତରାୟଙ୍କର 'ଅଭିଯାନ', 'ପାଣ୍ଡୁଲିପି' ପ୍ରଭୃତି ଗ୍ରନ୍ଥମାନ ବୈପ୍ଳବିକ ମାନବବାଦର ସ୍ୱର ଉତ୍ତୋଳନ କରେ; ମାତ୍ର ୧୯୪୮ ମସିହା ବେଳକୁ ପ୍ରକାଶିତ 'ଭାନୁମତୀର ଦେଶ' କବିତା ଗ୍ରନ୍ଥରେ ତାଙ୍କର ଏ ମନୋଭାବ ବଦଳି କ୍ରମେ ରୋମାଣ୍ଟିକ ମାନବବାଦୀ ଚିନ୍ତାଧାରାରେ ଅନୁପ୍ରାଣିତ ହେବାକୁ ଲାଗିଲା । ଏହି ପରିପ୍ରେକ୍ଷୀରେ କବି ଅନନ୍ତ ପଟ୍ଟନାୟକ ବୈପ୍ଳବିକ ମାନବବାଦର ବାସ୍ତବ ଆଲେଖ୍ୟ ପ୍ରଦାନ କରିଛନ୍ତି ତାଙ୍କର ବିଭିନ୍ନ କବିତାରେ ଏବଂ ସେ ବୋଧହୁଏ ପ୍ରଥମ କବି, ଯେ କି ୧୯୩୭ ମସିହା ବେଳକୁ ଏ ଚିନ୍ତା ପ୍ରକାଶ କଲେ ତାଙ୍କର କାବ୍ୟକବିତାରେ । ଗଣଧର୍ମୀ ମାନବବାଦୀ ଚିନ୍ତାଧାରା ପ୍ରକାଶ କରି ସେ ଲେଖିଛନ୍ତି—

"ଜୀବନ ଦେଇ ରେ ଢାଳିଲୁ ରକ୍ତ
ତୋଳିଲୁ ସଉଧମାଳା,
ଆମରି ଲାଗି ହେଉ ଶାସନ ଶକ୍ତି
ଆମେ ହିଁ ସର୍ବହରା ।
ଝଞ୍ଜା ପବନ ସହି ହେ ସଘନ
ଗର୍ଭରେ ବୁଣିଲୁ ଧାନ,
ବରଷାଂକାଦୁଅ ଚକଟି କେତେ ରେ
ଛୁଣ୍ଡ କରିଲୁ ପ୍ରାଣ ।
ପହଞ୍ଚ ପ୍ରଭାତେ କାଟିଲୁ ଶସ୍ୟ
ହସିଲେ ଅଖିଳବାସୀ,
ଅତ୍ୟାଚାରୀର କବଳ କବଳେ
ନେଲେ କେ ସକଳ ଗ୍ରାସି ।"

୧୯୩୭ରୁ ୧୯୪୭ ପର୍ଯ୍ୟନ୍ତ ଅନନ୍ତ ପଟ୍ଟନାୟକ ହିଁ ଯଥାର୍ଥରେ ଓଡ଼ିଆ କବିତାକ୍ଷେତ୍ରରେ ନବଯୁଗର ମାନବବାଦୀ ଚିନ୍ତାଧାରାକୁ ପ୍ରମୂର୍ତ୍ତ କରିଛନ୍ତି ଏବଂ ସେ ସମୟର ବହୁ କବିଙ୍କୁ ଅନୁପ୍ରାଣିତ କରିଛନ୍ତି ଏହି ଭାବଧାରା ଦ୍ୱାରା । ସଚ୍ଚି ରାଉତରାୟଙ୍କର ବୈପ୍ଳବିକ ମାନବବାଦ ୧୯୪୮ ପରେ ଭସା ବାଦଲ ଭଳି ଉଭେଇ ଯାଇଛି ଏବଂ ୧୯୬୨ ବେଳକୁ ପାଶ୍ଚାତ୍ୟ ଚିନ୍ତାନୁମୋଦିତ ସାମନ୍ତତାନ୍ତ୍ରିକ ମାନବବାଦୀ ଚିନ୍ତାଧାରାକୁ ସେ ପ୍ରକାଶ କରିଛନ୍ତି ତାଙ୍କର ବିଭିନ୍ନ କାବ୍ୟକବିତାରେ ; ଯେତେବେଳେ ସେ ଲେଖୁଛନ୍ତି—

"ତେଣୁ ମୁଁ ତ ଭଗ୍ନଜାନୁ, ଖସିପଡ଼େ ମୋର ରାଇଫଲ
ଉଠାଇପାରେ ନା ଆଉ ଗାଣ୍ଡୀବ ଯେ ହାତ ଥରଥର
ହେ ମୋର ଶେଷ ଚନ୍ଦ୍ର ! ସଂଗ୍ରାମର ଶୁଭ୍ର କ୍ଷତସବୁ !
ତୁମେ ମୋତେ ଶାନ୍ତି ଦିଅ, ଦିଅ ନିଦ୍ରା, ଟାଣି ଦିଅ ତୁମ ମାୟାତମ୍ବୁ ।"

କବିତା ୧୯୬୨ —(ସ୍ୱଗତ)

ସଚ୍ଚି ରାଉତରାୟଙ୍କର କବିତାରେ ମାନବବାଦୀ ଦୃଷ୍ଟିକୋଣର ମୋଡ଼ ପରିବର୍ତ୍ତନ ହୋଇଥିଲେ ହେଁ ଏବଂ ଏକ ବିକଳ ବିଧ୍ୱସ୍ତ ସାମାଜିକ ଚିନ୍ତାରେ ତାଙ୍କର କବିତା କ୍ରମଶଃ ଜଡ଼ିତ ହୋଇଯାଇଥିଲେ ହେଁ କବି ଅନନ୍ତ ପଟ୍ଟନାୟକଙ୍କର ସମାଜବାଦୀ ମାନବବାଦ ଅପରିବର୍ତ୍ତନୀୟ ରହିଛି । ସେ କେଉଁଠି ନିଃସଙ୍ଗତାର, ଅନିଶ୍ଚିତତାର, ଅସହାୟତାର ଜୟଗାନ କରି ନାହାନ୍ତି ; ବରଂ ସର୍ବଦ ସେ ଜୀବନର ତୂର୍ଯ୍ୟନାଦ ଶୁଣାଇଛନ୍ତି । ଯନ୍ତ୍ରଣା-ଜର୍ଜରିତ ବ୍ୟକ୍ତିମାନସ ମଧ୍ୟ ଦେଇ ଯୁଗମାନସକୁ ପ୍ରକାଶ କରିଛନ୍ତି ତାଙ୍କର କବିତାରେ । ସେ ମୁଁତ୍ୱର ହୁଙ୍କାର ସୃଷ୍ଟି କରିଛନ୍ତି ସତ; ମାତ୍ର ଏହା ସାମାଜିକ 'ମୁଁ' । ମୁଁତ୍ୱର ସୀମିତ ବଳୟକୁ ଅତିକ୍ରମ କରି ଏହା ସମଗ୍ର ସମାଜର ମୁଁତ୍ୱ ସହିତ ସମନ୍ୱିତ ହୋଇଯାଏ । 'ନିଜ ବନ୍ଦନା ପଢ଼', 'ଚାଲିଲି ମୁଁ ଚାଲିଲି', 'ଆସିଚି ମୁଁ ଆସିଚି', 'ନୂଆ ବୋହୂଟି ସେ ଅନାଇଥାଏ' ଆଦି କବିତାମାନଙ୍କରେ ସେ ସମାଜବାଦୀ ବୈପ୍ଳବିକ ମାନବବାଦର ପରିଚୟ ପ୍ରଦାନ କରିଛନ୍ତି । ଏ ମାନବବାଦ କୌଣସି ପ୍ରତିବନ୍ଧକ ମାନେ ନାହିଁ । ରକ୍ତର ଦୁସ୍ତର ପାରାବାର ଲଙ୍ଘନ କରି ଏହା ଆଗେଇ ଚାଲିଛି ସାମ୍ୟ ପ୍ରତିଷ୍ଠା ଦିଗରେ । ତେଣୁ ସେ ଲେଖିଛନ୍ତି—

"ଯୁଗର ବକ୍ଷରେ ଅକାଳ ବସନ୍ତର ଛନ୍ଦଙ୍କା ମୁଁ ପୂରୁ ।
କପାଳର ଘର୍ମ ଭୂମର ଐଶ୍ୱର୍ଯ୍ୟରେ ନଈ
ମୁଁ ଆହିଚି, ମୁଁ ଆସିଚ ।"

(ଆସିଚ ମୁଁ ଆସିଚ)

ଠିକ୍ ସେ ଏଇପରି ନୂତନ ମାନବବାଦୀ ଚିନ୍ତାଧାରାର ପ୍ରତିଷ୍ଠା ପାଇଁ ପ୍ରାଣର ଆବେଗରେ ଗାଇ ଉଠିଛନ୍ତି—

"ଝଡରେ ରୁଧିର ଅଧୀରେ ଝର
ଅଶ୍ରୁ ସାଗରେ ଅଗ୍ନି-ବାଣୀ ତୁ, ଅନ୍ତରେ ମୋର ଜଳରେ ଜଳ ।
ଧୂସର ବାଲିର ବେଳାରେ ବେଳାରେ
ଶସ୍ୟ ସୁଷମା ଖେଳାରେ ଖେଳାରେ
ଝର ଯା ଝର ରେ ପ୍ରାଣର ଅଙ୍କରେ ପୋଛି ଦେଇ ମନୁ ଆପଣା ପର,
ଝଡରେ ରୁଧିର ଅଧୀରେ ଝର
ଜଗିଲ କାଳର କୃଷ୍ଣ-କପୋଳେ ସ୍ୱପ୍ନ-ତାରକା ଝର ରେ ଝର ।"

(ଝଡରେ ରୁଧିର)

କବି ଅନନ୍ତ ପଟ୍ଟନାୟକଙ୍କର ମାନବବାଦ ଯେତିକି ବୈପ୍ଳବିକ, ସେତିକି ସମ୍ବେଦନଶୀଳ । ଏହା ନୈତିକ ମାନବବାଦର ପରିପନ୍ଥୀ ନୁହେଁ; ବରଂ ମନୁଷ୍ୟର ଜନ୍ମଗତ ଅଧିକାରର ଦ୍ୟୋତକ ।

୧୯୪୭ ମସିହାରେ ପ୍ରକାଶିତ 'ଆଗାମୀ କାଲି' କବିତା ଗ୍ରନ୍ଥରେ ସାମ୍ୟବାଦୀ ଚିନ୍ତାପ୍ରସୂତ ମାନବବାଦୀ ଦୃଷ୍ଟିକୋଣର ପରିଚୟ ମିଳିଥାଏ । ଯେଉଁ କବି କାଳନ୍ଦୀଚରଣ ଥରେ ରୋମାଣ୍ଟିକ୍ ଭାବାଳୁତାରେ ନିମଗ୍ନ ଥିଲେ, ସେ ପୁଣି ଏହି ଗ୍ରନ୍ଥରେ ଲେଖିଲେ—

"କବିତା ଗଢ଼େ ଏକ ବିରାଟ ସମାଜର
ସବୁରି ଅଛି ଯହିଁ ବସୁରେ ହେଲେ ଘର ।
ସକଳେ ଲଢ଼ିବାକୁ ମୁଠାଏ ଦୁଧ ଭାତ
ଯୋଗ୍ୟ ଯେତେ ଯହିଁ ବାଳକ ବାଳିକା ତ ।
ଦୁଇଟା ଲୁଗା ଜାମା ସବୁରି ପାଇଁ ମିଳେ
ପଢ଼ିବା ପାଇଁ ବାଧା କାହାରି ନାହିଁ ଛଳେ ।
ବେକାର ରହିବାକୁ ନାହିଁଟି ଅଧିକାର
ସବୁରି ପାଇଁ କାମ ଯୋଗାଏ ସରକାର ।

କହିବ ! ତୁମେ କଥା ହବୁଣ ଭାଷା ଅଛୁ
ମୁଁ ହେବି ସମାଜର କବିତା ବସେ ରତ ।"

ଏଥିରେ ସାମ୍ୟବାଦୀ ମାନବବାଦର ଚିନ୍ତା ଦେଖିବାକୁ ମିଳିଲେ ହେଁ ଏହା ପ୍ରଗତିଧର୍ମୀ ହୋଇଛି ଏବଂ ଏହା ଠିକ୍ ସାଲିଆ ଭାଇଙ୍କ ମହାଭାରତରେ ବର୍ଣ୍ଣିତ ଯୁଧିଷ୍ଠିରଙ୍କ ଶୁଦ୍ରଙ୍କର କୃଷିକାରଙ୍କ ପ୍ରତି କର୍ତ୍ତବ୍ୟ ସମ୍ବନ୍ଧରେ ଉପଦେଶ ଭଳି ହୋଇଛି । ଏ ପର୍ଯ୍ୟାୟରେ ଯେଉଁ ଏକକଗଣ ମାନବବାଦୀ କବିତା ରଚନା କରିଛନ୍ତି ସେମାନେ /ହେଲେ ମାୟାଧର ମାନସିଂହ, ରାଧାମୋହନ ଗଡ଼ନାୟକ, କୁଞ୍ଜବିହାରୀ ଦାଶ, ନିତ୍ୟାନନ୍ଦ ମହାପାତ୍ର, କୃଷ୍ଣଚନ୍ଦ୍ର ତ୍ରିପାଠୀ ପ୍ରଭୃତି କବିମାନେ । ମାନସିଂହ ଏବଂ ଗଡ଼ନାୟକ ମନୋବୈଜ୍ଞାନିକ ମାନବବାଦରେ ବର୍ଣ୍ଣନା କରିଛନ୍ତି ଏବଂ ଏହା ସାମନ୍ତତାନ୍ତ୍ରିକ ସମାଜର ସମ୍ବେଦନଶୀଳ କବି ଦୃଷ୍ଟିର ଯଥାର୍ଥ ଆଲେଖ୍ୟ ପ୍ରଦାନ କରିଥାଏ । କବି ନିତ୍ୟାନନ୍ଦ ମହାପାତ୍ର ମାନବ ଓ ଦେବତାର ସମନ୍ୱୟ କରି ଲେଖିଛନ୍ତି—

"ସବୁରି ଉପରେ ମାନବ ସତ୍ୟ, ସତ୍ୟ ସ୍ରଷ୍ଟା ନର
ନର ନାରାୟଣ ଜଗାନ୍ତୁ ଆଜି ଏ ମନ୍ତ୍ର ଅଭୟବର ।
ପରମ ଅସ୍ତ୍ର ଅଣିବେ ଟିକିରେ ଶୂନ୍ୟ ଆଜି ଏ ଧରା ।
ମର ଏ ମନୁର ପୁଅ ଦୁଅରେ ପ୍ରେମର ଭିକ୍ଷା ଧରା ।
ଭୂମର ମନ୍ତ୍ରେ ମରତେ ଶୁଭିବ ଅମରାବତୀର ସ୍ୱନ
ଦେବତା ହେ ଆମେ ତୁମର ଧର୍ମ କରିବୁ ସଞ୍ଚାଳନ ।"

କିନ୍ତୁ କବି କୃଷ୍ଣଚନ୍ଦ୍ର ତ୍ରିପାଠୀ ମଣିଷକୁ ଏକମାତ୍ର ସତ୍ୟ ଭାବରେ ଗ୍ରହଣ କରି ଲେଖିଛନ୍ତି—

"ମଣିଷ ଏ ପୃଥିବୀରେ ସମସ୍ତ କ୍ଷମତା !
ମଣିଷ ଏ ପୃଥିବୀରେ ଏକମାତ୍ର ଧନ !
ମଣିଷ ଏ ପୃଥିବୀରେ ଏକାନ୍ତ ଗୌରବ !
ମଣିଷରେ ଦୂରେ ଦୂରେ ବହୁ ଦୂରେ
ଫିଙ୍ଗିଦେଲେ ତୁମେ
ଏ ଜୀବନ କେଡ଼େ ନିଃସ୍ୱ କେଡ଼େ ପ୍ରାଣହୀନ ।"

(ଅଗ୍ନିଶଙ୍ଖ)

କବି କୁଞ୍ଜବିହାରୀ ଠିକ୍ ଏହିଭଳି 'ଦେବତା ଓ ମଣିଷ' ଶୀର୍ଷକ କବିତାରେ ମନୁଷ୍ୟର ଜୟଗାନ କରିଛନ୍ତି । ସେ ଲେଖିଛନ୍ତି—

"ମଣିଷ ମୋ ପରଶେ ଦୂରେ
ଗିରି ବନେ ଗ୍ରାମେ ବା ନଗରେ
ଜନ୍ମେ, ମରେ, ଭଲ ପାଏ, ଯୁଦ୍ଧ କରେ,
ଧରଣୀର ସକଳ ବେଦନା ବହେ ଅନ୍ତଃସ୍ଥଳେ ।"

ଜ୍ଞାନୀନ୍ଦ୍ର ବର୍ମାଙ୍କର 'ହିରଣ୍ୟକଶ୍ୟପୁ' ଏହିଭଳି 'ମାନବବାଦ'ର ପରିଚୟ ପ୍ରଦାନ କରିଥାଏ । ୧୯୪୫ ମସିହା ପର୍ଯ୍ୟନ୍ତ ଓଡ଼ିଆ କବିତା କ୍ଷେତ୍ରରେ ଯେଉଁ ମାନବବାଦୀ ଚିନ୍ତାଧାରା ପ୍ରକାଶିତ ହୋଇଛି ତାହା ଅନନ୍ତ-ସଚି ରାଉତରାୟ ପ୍ରଭାବିତ ମାନବବାଦୀ ଚିନ୍ତାଧାରା ଏବଂ ଗୋଡ଼ ନାୟକ-ମାନସିଂହ-କୁଞ୍ଜବିହାରୀ ପ୍ରଭାବିତ ସମନ୍ୱୟଧର୍ମୀ ମାନବବାଦୀ ଭାବଧାରାର ଅନୁବର୍ତ୍ତୀ ।

**ସ୍ୱାଧୀନୋତ୍ତର ଓଡ଼ିଆ କବିତାରେ ବିକଳ-ମାନବବାଦ**

ଯେଉଁ ବୈପ୍ଳବିକ ମାନବବାଦୀ ସ୍ୱର ଓଡ଼ିଆ କବିତାରେ ସ୍ୱାଧୀନତା ପୂର୍ବରୁ ଝଙ୍କୃତ ହୋଇଥିଲା, ସ୍ୱାଧୀନତା ପରେ ଏହି ସ୍ୱର କ୍ରମେ ମ୍ରିୟମାଣ ହୋଇଉଠିଲା । ଏକମାତ୍ର ଅନନ୍ତ ପଟ୍ଟନାୟକଙ୍କର କେତେକ ମୁଷ୍ଟିମେୟ ସୃଷ୍ଟି ବ୍ୟତୀତ ଅନ୍ୟମାନଙ୍କର ଲେଖନୀ ଏ ଦିଗରେ ବନ୍ଦ ହୋଇଗଲା । ସଚି ରାଉତରାୟ ବିକଳ-ବିଧ୍ୱସ୍ତ ମାନବିକ ଚିନ୍ତାଧାରାକୁ ପ୍ରକାଶ କରି ନିଜର ଅସହାୟତାକୁ ରୂପାୟିତ କଲେ । ଏ ସମୟରେ ବିଶେଷ କରି ପାଶ୍ଚାତ୍ୟ ଦର୍ଶନ ପ୍ରଭାବ ବିସ୍ତାର କଲା । ପ୍ରଥମ ମହାଯୁଦ୍ଧୋତ୍ତର ଜଗତର ଅସହାୟତା ଓ ଅନ୍ତଃସାରଶୂନ୍ୟତାକୁ ଇଲିଅଟ୍ ଯେପରି ତାଙ୍କର କବିତାରେ ପ୍ରକାଶ କରିଥିଲେ, ସେହି ଭାବକୁ ସ୍ୱାଧୀନତା ପରେ ଓଡ଼ିଆ କବିତାରେ ଅନୁପ୍ରବେଶ କରାଗଲା । ଇଲିଅଟଙ୍କ ମାନବବାଦ ଉପ୍ଲାଣ୍ଡି ତେଣୁ ସେ 'Waste Land' ରେ ଲେଖିଛନ୍ତି—

"I will show you fear in a handful of dust."

ବିଂଶ ଶତାବ୍ଦୀରେ ସେ ପୁଣି ନିଜକୁ ଉପଲବ୍‌ଧି କରିଛନ୍ତି, "I was neither living nor dead."! ମଣିଷର ଏହି ଜୀବନ୍ମୃତ ଅବସ୍ଥାକୁ ସେ ମନୋଜ୍ଞ ଭାବରେ ପ୍ରକାଶ କରିଛନ୍ତି ଏବଂ ସେ ପୁଣି "The Hallow Men"ରେ ଲେଖିଛନ୍ତି—

"We are the hallow men
We are the stuffed men."

ଏବଂ ଏ ଜଗତ ସମ୍ବନ୍ଧରେ ସେ ଅସହାୟତା ପ୍ରକାଶ କରି ଉଲ୍ଲେଖ କରିଛନ୍ତି—

"This is the dead land
This is cactus land."

ଏବଂ ସେ ପୁଣି ଏ ଜଗତର ଅବସାନ ସମ୍ବନ୍ଧରେ ବର୍ଣ୍ଣନା କରିଛନ୍ତି—

"This is the way the world ends
This is the way the world ends
This is the way the world ends
No with a bang but a whimper."

କେବଳ ଏତିକି ନୁହେଁ, ସେ ପୁଣି "A song for Simeon" କବିତାରେ ଯୁଦ୍ଧପରବର୍ତ୍ତୀ ବିକଳ-ବିଧ୍ୱସ୍ତ ମଣିଷର ଭାବକୁ ପ୍ରକାଶ କରି ଲେଖିଛନ୍ତି—

"I am tired with my own life and
the lives of those after me,
I am dying in my own death and
the deaths of those after me."

ଇଲିଅଟ ଏଇ ଯେଉଁ ଚିନ୍ତା ଏବଂ ଚେତନା ତାଙ୍କର କାବ୍ୟ-କବିତାରେ ପ୍ରକାଶ କଲେ, ୧୯୪୭ ମସିହା ପରେ ଏହାର ଅନୁପ୍ରବେଶ ହେଲା ଓଡ଼ିଆ କବିତାରେ । ତେଣୁ ଆଶାବାଦୀ ମାନବିକ ଚିନ୍ତା କ୍ରମେ ନୈରାଶ୍ୟ ଏବଂ ଶୋଚନୀୟତା, ବ୍ୟଥା ଏବଂ ବିଫଳତାରେ ରୂପାନ୍ତରିତ ହେଲା । ଗୁରୁପ୍ରସାଦ ମହାନ୍ତି, ବେଣୁଧର ରାଉତ, ଚିନ୍ତାମଣି ବେହେରା, ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ), ରମାକାନ୍ତ ରଥ, ସୀତାକାନ୍ତ-ମହାପାତ୍ର, ଉମାଶଙ୍କର ପଣ୍ଡା ପ୍ରଭୃତି କବିମାନେ ଏହି ପାଶ୍ଚାତ୍ୟ ଦର୍ଶନାନୁମୋଦିତ ମାନବିକ ଭାବଧାରାକୁ ପ୍ରକାଶ କଲେ ସେମାନଙ୍କ କବିତାରେ । ୧୯୪୭-୧୯୬୦ ପର୍ଯ୍ୟନ୍ତ ମାର୍କସବାଦ-ପ୍ରଭାବିତ-ମାନବବାଦୀ ଚିନ୍ତାଧାରା ଉପାମେୟ ଭଳି ବଳୀୟମାନ ହୋଇଗଲା; ଯଦିଓ ବ୍ରଜନାଥ-ରଥଙ୍କର 'ମରୁଗୋଲାପ' କଳ୍ପିତ ଆଶା ଓ ଦ୍ୟୋତନା ସୃଷ୍ଟି କରିଥିଲା ।

ରବି ସିଂହଙ୍କର ଆବିର୍ଭାବ ଷଷ୍ଠ ଦଶକର ଦ୍ୱିତୀୟାର୍ଦ୍ଧ ; କିନ୍ତୁ ବହୁ କବିଙ୍କର ଯନ୍ତ୍ରଣାର ହାହାକାର ମଧ୍ୟରେ ଏମାନଙ୍କର ମାନବବାଦୀ ଚିନ୍ତାଧାରାର ସ୍ୱର କ୍ଷୀଣ ହୋଇଗଲା । ଏପରି କି ସଚ୍ଚି ରାଉତରାୟ ମଧ୍ୟ ଯନ୍ତ୍ରଣାର ସାମଗ୍ରୀକ ଗାନ କରିବାକୁ ଉଦ୍ୟତ ହେଲେ । କବି ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ) ଇଲିଅଟ୍‌ଙ୍କର ଦଗ୍‌ଧ ଅବସ୍ଥାକୁ ଜଗତ ଭଳି ରୂପ ଦେଇ ଲେଖିଛନ୍ତି—

> "କୋଟି ମାନବର ଶତ ସୁଖ ସ୍ୱପ୍ନ କାହିଁ
> ହଜିଯାଏ ମରଣର ଚିର ଅଭିସାରେ
> ମରୁଭୂଇର ବିଷାକ୍ତ ନିଃଶ୍ୱାସେ
> ଜାଳିଦିଏ ଶତାବ୍ଦୀର ସୁନାର ଫସଲ
> ଚକ୍ ଚକ୍ କରେ ତଳେ....
> ସଂଖ୍ୟାହୀନ, ପଚମାନ ଧୂସରିତ ଶବ
> ଆଉ ତାରି ଶୁଭ୍ର ଅସ୍ଥି, ମଜ୍ଜା, ମାଂସ,
> ବିରାଟ ବିଦ୍ରୂପ ।" (ସ୍ୱର୍ଣ୍ଣୀକ)

ଆଧୁନିକ ବିପର୍ଯ୍ୟସ୍ତ ଓ ବିଶୃଙ୍ଖଳ ସମାଜର ଚିତ୍ର ଆଜିର କବିତାରେ ବିଶେଷ ଭାବରେ ପ୍ରକଟିତ । ଆଜିର ସମାଜ ଏବଂ ଜୀବନ ସଙ୍କଟମୟ । ଏହି ସଙ୍କଟର ଚିତ୍ର ପ୍ରକାଶ କରୁଛି ଆଜିର କବି । ତେଣୁ ଅଧ୍ୟାପକ ଖଗେଶ୍ୱର ମହାପାତ୍ର ଯଥାର୍ଥରେ ଲେଖିଛନ୍ତି, "ଆଧୁନିକ ବିପର୍ଯ୍ୟସ୍ତ ଓ ବିଶୃଙ୍ଖଳ ସମାଜର ଚିତ୍ର ସହ ଦ୍ୱିଧା ଓ ସଙ୍କଟଗ୍ରସ୍ତ ଯୁଗମାନସର ପ୍ରତିବିମ୍ବ ଏ ଯୁଗର କାବ୍ୟଶିଳ୍ପ ମଧ୍ୟରେ ଜୀବନ୍ତ । ଆଧୁନିକ କାବ୍ୟକଳା ମାନବଧର୍ମୀ ଓ ଯୁଗୀୟ ସଙ୍କଟର ସମାଧାନ ଅନ୍ୱେଷୀ ।" (୩) ମନୁଷ୍ୟର ଅମିତ ଆକାଂକ୍ଷାଜନିତ ଆର୍ତ୍ତନାଦ, ପ୍ରାପ୍ତି ଓ ଅପ୍ରାପ୍ତିର ସଂଘର୍ଷ, ଜଡ଼ବାଦ ଓ ଅଧ୍ୟାତ୍ମବାଦର ସଂଘର୍ଷ ଏବଂ ତଜ୍ଜନିତ ମାନବିକ ସଙ୍କଟ—ଏ ସବୁ ସାଂପ୍ରତିକ କବିତାରେ ଆଜି ଅନୁରଣିତ । ଅର୍ଥବାଦାନୁମୋଦିତ ମାନବବାଦ ଯେ ଚିରସ୍ଥାୟୀ ନୁହେଁ, ଏ କଥା ଉପରେ ମତବ୍ୟକ୍ତ କରି ଡକ୍ଟର ହରେକୃଷ୍ଣ ମହତାବ ଲେଖିଛନ୍ତି—"ମାନବସମାଜର ଯେଉଁ ଉତ୍କଟ ଦ୍ୱନ୍ଦ୍ୱ ବର୍ତ୍ତମାନ ଚାଲିଛି, ସେଥିରେ ହୁଏ ତ ଅଧ୍ୟାତ୍ମବାଦ ଜିତୁ ବା ସମାଜବାଦ ଜିତୁ ବା

(୩) ଓଡ଼ିଆ କବିତା; ନବ-ପର୍ଯ୍ୟାୟ—ଖଗେଶ୍ୱର ମହାପାତ୍ର, ଜୀବନରଙ୍ଗ, ଅକ୍‌ଟୋବର, ୧୯୭୧ ।

ଉଭୟଙ୍କ ମଧ୍ୟରେ ଶେଷରେ ମିଳାମିଶା ହୋଇଯାଉ; ଯାହାର ସ୍ୱପ୍ନ ହେଗେଲ୍ ଓ ମହାତ୍ମା ଗାନ୍ଧୀ ଦେଖିଥିଲେ, କିନ୍ତୁ ଅର୍ଥବାଦର ସତ୍ତା କେତେବେହେଲେ ରହିବ ନାହିଁ । ଏଣୁ ଅର୍ଥବାଦମୂଳକ ସାହିତ୍ୟର ଅସ୍ତିତ୍ୱ ଆଉ ଅଳ୍ପ କାଳ ପାଇଁ । ପାଶ୍ଚାତ୍ୟ ସାହିତ୍ୟର ଭିତ୍ତି ଅର୍ଥବାଦ ।" (୪) ବାସ୍ତବିକ ଷଷ୍ଠ ଦଶକରେ ଓଡ଼ିଆ କବିତା କ୍ଷେତ୍ରରେ ଯେଉଁ ପରିବର୍ତ୍ତନ ଦେଖାଗଲା, ସେ ପରିବର୍ତ୍ତନ କେବଳ ଆଙ୍ଗିକଗତ ନୁହେଁ ; ଆତ୍ମିକ ମଧ୍ୟ । ଏ ଆତ୍ମିକ ହେଉଛି ପାଶ୍ଚାତ୍ୟ ଜଗତରୁ ଆମଦାନି ଅର୍ଥବାଦଭିତ୍ତିକ ମାନବବାଦ ଏବଂ ଏହା ସହିତ ଭାରତୀୟ ଅଧ୍ୟାତ୍ମବାଦର ସଂଘର୍ଷ । ଏହି ହେତୁ କବି ଗୁରୁପ୍ରସାଦ ଲେଖିଛନ୍ତି—

(କ) "ମୁଁ ଏଠି ଚମକି ଦେଖେ ପଥ ସଙ୍କେ ଖୁଣ୍ଟା ଗଛ ଛିଡ଼ାହୋଇ ରହେ ।"

(ଚମ୍ପାଫୁଲ)

(ଖ) "କିନ୍ତୁ ଆଉ କୁହୁଡ଼ିର ସ୍ଥବିରତା ମାଡ଼ିବସେ ମୂର୍ଚ୍ଛିତ ସହରର ଗ୍ରୀବ
ଏ ବର୍ଷର ନଷ୍ଟ ଆତ୍ମା ଖୋଜି ଅବା ପାଏ ନାହିଁ
ନିଃସହାୟ ମଣିଷର ମର୍ମାନ୍ତିକ ଭାଷା ।"

(ନିହତ ଗୋଧୂଳି)

(ଗ) ଭୟ ଆଉ ପାପ ମିଶି ଏ ସମସ୍ତ ଅନ୍ତଃସତ୍ତ୍ୱା······ଜୀବନର
ଭଗ୍ନାଂଶ କେବଳ

ତେଣୁ ଏହି ସହରର ଗଳିରେ ଛିନ୍ନ ପ୍ରାଣହୀନ ଦେହ ଓ କାମନା
ତେଣୁ ଏହି ସହରର ବିବର୍ଣ୍ଣ ଦେହରେ ଶୀତ ଖଦଡ଼ ଓ
ଉଲ୍‌ର ପୋଷାକ
ଭିତରେ ହଠାତ୍ ଆସି ଛିଡ଼ା ହୁଏ ସାମ୍ନାରେ
ଅଭିଶପ୍ତ ମଣିଷର ପାପ ଆଉ ଭୟର ପ୍ରେତାତ୍ମା ।"

(ହରେକୃଷ୍ଣ ଦାସ-୨)

ଏଇ ଯେଉଁ ଇଲିଅଟୀୟ ଭୟ ଏବଂ ହତାଶା ଗୁରୁପ୍ରସାଦଙ୍କୁ ଆକୃଷ୍ଟ କଲା ଏବଂ ପାଶ୍ଚାତ୍ୟ ଜଗତର ଶୋଚନୀୟତା, ବୈଫଲ୍ୟ ଓ ଅନ୍ତଃସାରଶୂନ୍ୟତା କବିଙ୍କୁ ପ୍ରଭାବିତ କଲା ତାର, ଚିହ୍ନ ତାଙ୍କର କବିତାରୁ ଦେଖିବାକୁ

(୪) 'ଝଙ୍କାର', ସମ୍ପାଦକୀୟ—୨୧ଶ ବର୍ଷ, ୧ମ ଖଣ୍ଡ ସଂଖ୍ୟା ।

ମିଳିଥାଏ । ଏ ଦଶକ ହେଉଛି ଅର୍ଥବାଦ ଏବଂ ଅଧ୍ୟାତ୍ମବୋଧ ମଧ୍ୟରେ ଦ୍ୱନ୍ଦ୍ୱର ସମୟ । ତେଣୁ ସେ 'କାଳପୁରୁଷ'ରେ ଆବେଗରେ ଗାଇ ଉଠିଛନ୍ତି—

"ହେ ଅକ୍ରୂର ହେ ଉଦ୍ଧବ ସଖା ମୋର ପ୍ରାଣର ଦୋସର
ତୁହି ତୁହି ଛଡ଼ା ତୁହି ପିଠିରେ ମୋ ତୁମ ଘର ବୋଝ ।"

ଏହିଭଳି ଏକ ବିକଳ-ମାନବବାଦୀ ସ୍ୱର ଗୁରୁପ୍ରସାଦ ସୃଷ୍ଟି କଲେ ତାଙ୍କର କବିତାରେ ଏବଂ ତାଙ୍କ ଆଖି ଆଗରେ ରଖି ଭାନୁଜୀ ରାଓ, ରମାକାନ୍ତ ରଥ, ବେଣୁଧର ରାଉତ ପ୍ରଭୃତି କବିତା ରଚନା କଲେ । ରମାକାନ୍ତ ରଥଙ୍କର ମାନବବାଦୀ ଦୃଷ୍ଟିକୋଣ କ୍ରମେ ସ୍ୱାଭାବିକତାରୁ ଦାର୍ଶନିକ ତତ୍ତ୍ୱ ମଧ୍ୟକୁ ଗତି କରିଛି । "କେତେଦିନ" ଠାରୁ "ଅନେକ କୋଠରୀ" ଏବଂ ତା'ପରେ ପୁଣି "ସନ୍ଦିଗ୍ଧ ମୃଗୟା"— ଏ ମତବାଦର ଯାଥାର୍ଥ୍ୟ ପ୍ରତିପାଦନ କରିଥାଏ । ସେ ଯେଉଁ ମାନବବାଦର ଚିତ୍ର ପ୍ରଦାନ କରିଛନ୍ତି ତାହା ଯନ୍ତ୍ରଣାକ୍ତ-ଅନ୍ତଃସାରଶୂନ୍ୟ । ବେଣୁଧର ରାଉତ, ରମାକାନ୍ତ ରଥ, ଯଦୁନାଥ ଦାସମହାପାତ୍ର ଓ ସୀତାକାନ୍ତ ମହାପାତ୍ର ପ୍ରଭୃତିଙ୍କର କେତୋଟି ଉକ୍ତି ନେଇ ଏହି ଯୁକ୍ତିକୁ ବଳବତ୍ତର କରାଯାଇପାରେ ।

**ରମାକାନ୍ତ ରଥ :**

(କ) "ନ ଦେଖିବା ଲୋକେ ଦେଖ,
ଜୀବନର ପ୍ରକୋଷ୍ଠରେ ଜୀବନ୍ତ ମରଣ ।"

(ପାରିଷଦର ଗୀତ)

(ଖ) "ହସ ଦିନା ମାଡ଼େ ମୋତେ,
ବାସ୍ତବିକ୍ ମୁଁ ଖୁବ୍ ବ୍ୟାକୁଳ ।"

(ଅପେକ୍ଷା)

(ଗ) ଆମେ ସେ ଶୁଖିଲା କାନ୍ଥ ଖିନ୍‌ଭିନ୍ କାଗଜର କର୍ମୌଜ

\+ \+ \+ \+

ସେମାନଙ୍କ ନାକପୁଡ଼ା ଅରୁଅଛି ଉପରେ ସତେ କି
ବାଘ ବସିଛି ଏବଂ ଖିନ୍‌ଭିନ୍ କରେ ମୋ ତଣ୍ଟି କି ।
ସତେ କି ଜୀବନ୍ତ ଫୁଲ ସୁଗନ୍ଧରେ ମୂର୍ଚ୍ଛା ଲାଗେ ମୋର
ଓ ମୁଁ ଦେଖେଁ ସଙ୍ଗୃହେ ପଡ଼ିଚି ମୋ ନଜର ମୁର୍ଦ୍ଦାର ।"

(ବାଘ ଶିକାର)

'ଅଷ୍ଟପଦୀ'ରେ ସୀତାକାନ୍ତ ମହାପାତ୍ର ମଧ୍ୟ ଏ ଯୁଗର ବିକଳ ବିଧ୍ୱସ୍ତ ଅବସ୍ଥାକୁ ମନ୍ମୟ ଭାବରେ ପ୍ରକାଶ କରିଛନ୍ତି । ଏଥିରେ ଇଲିଅଟୀୟ ପ୍ରଭାବ ସ୍ପଷ୍ଟ ବାରି ହୋଇଥାଏ । ଏଠି ମାନବବାଦର ଅନୁଭୂତି ଭ୍ରଷ୍ଟ ଏବଂ ବିପର୍ଯ୍ୟସ୍ତ । 'ଅଷ୍ଟପଦୀ'ର ନାୟକର ଜୀବନ ନାହିଁ କି ମୃତ୍ୟୁ ନାହିଁ—ଏକ ଜୀବନ୍ମୃତ ଅବସ୍ଥା । ତେଣୁ ସେ ଲେଖିଛନ୍ତି—

(କ) ସବୁ ଯାଏ ଜଳି ପୋଡ଼ି ମନ ଓ ଇନ୍ଦ୍ରିୟ
ଜଳିଯାଏ ଅନୁଭୂତି ସକଳ ଭାବନା
ସବୁ ସମ୍ଭାବନା ଆହା
ସବୁ ସ୍ୱପ୍ନ ସବୁ ଆଶ୍ୱାସନା
ଦାଉ ଦାଉ ଧପ ଧପ ଆକାଶକୁ ଲୁଦା ମାରେ ନିଆଁ
ଲହ ଲହ ରକ୍ତଜିହ୍ୱ; ଆକାଶ ଓ ପୃଥିବୀରେ
ସ୍ଫୁଲିଙ୍ଗ ଓ ଧୂଆଁ ।"

(ମୃତ୍ୟୁନାଚ)

(ଖ) "ଶୂନ୍ୟ ଏ ଆକାଶ ମାଟି, ଶୂନ୍ୟ ମନ ହୃଦୟର ଖୋପ "

(ମାଟି ଓ ମଣିଷ)

(ଗ) "ମୁଁ ଆଉ ପାରୁନି ଚିହ୍ନି ଆପଣାକୁ
ମୁଁ ଆଉ ପାରୁନି ଜାଣି କାହା ସ୍ଥିତି
ଆପଣାର ଛଡ଼ା ।"

(ଆଶ୍ୱିନ)

ଯଦୁନାଥ ଦାସମହାପାତ୍ର ମଧ୍ୟ ଅନୁରୂପ ଚିନ୍ତା ପ୍ରକାଶ କରି ଲେଖିଛନ୍ତି—

"ପୁରୁଣା ପୃଥିବୀ ଆଜି ବନ୍ଧୁବାର ଅଗ୍ନିଶିଖା । ତଳେ
ସୂର୍ଯ୍ୟର ଜଙ୍ଗଲ ଘର ଅନ୍ତଃସାରଶୂନ୍ୟ ହୋଇ ଜଳେ
ଜଳିଯାଏ ଅକାଳେ ମଣିଷ
ଶତାବ୍ଦୀର ମେରୁଦଣ୍ଡ ଭାଙ୍ଗିଯାଏ ଆଜି ଅହର୍ନିଶ ।"

(ବହୁଛି ବଳଙ୍ଗ ନଈ)

ଷଷ୍ଠଦଶକ ଏବଂ ସପ୍ତଦଶକ ଓଡ଼ିଆ କବିତାରେ ଯାହା ବର୍ଣ୍ଣନା କରାଯାଇଛି ସେ ସମସ୍ତ ବିକଳ ବିଧ୍ୱସ୍ତ-ଯନ୍ତ୍ରଣାକ୍ତ ମାନବବାଦୀ ସ୍ୱର ପ୍ରକାଶ କରେ । ଆଧୁନିକ କବିତା ସମ୍ପର୍କରେ ମତ ବ୍ୟକ୍ତକରି Lionel Trilling କହିଛନ୍ତି, ଏହା ହେଉଛି "An overwhelming

consiousness of evil." ମାତ୍ର ଏହା ପାଶ୍ଚାତ୍ୟ ଜଗତର ସାମାଜିକ ଚିନ୍ତାଦ୍ୟୋତକ । ଠିକ୍ ଏହିଭଳି ଉଦ୍ଭଟ (absurd) କଳ୍ପନା ମଧ୍ୟ ଏ ଦେଶରୁ ସୃଷ୍ଟି ହୁଏନାହିଁ । ଉଦ୍ଭଟ ମାନବବାଦ (absurd-humanism) ନିଃସଙ୍ଗତାର ଦ୍ୟୋତକ । ଆବସାର୍ଡ଼ ସମ୍ବନ୍ଧରେ ମତ ପ୍ରଦାନ କରି କାମ୍ୟୁ ଲେଖିଛନ୍ତି,"is born out of this human need and the unreasonable silence of the world." (୫) ଓଡ଼ିଆ କବିତା କ୍ଷେତ୍ରରେ ଏହି ସମୟରେ ଇଲୟୁଟୀୟ ଯନ୍ତ୍ରଣାବୋଧ ପ୍ରକାଶିତ ହେବା ସଙ୍ଗେ ସଙ୍ଗେ କାମ୍ୟୁଙ୍କର ଆବସାର୍ଡ଼ ଚିନ୍ତା ମଧ୍ୟ ପ୍ରବେଶ କରିଛି । ଫଳରେ ଓଡ଼ିଆ କବିତା ଏ ଦେଶର ମାଟି ମଣିଷକୁ ତ୍ୟାଗ କରି ବିଦେଶୀ ମାନବବାଦର ଶୋଚନୀୟତାକୁ ପ୍ରକାଶ କରିଛି, ଯାହା ଫଳରେ ଏ ଦେଶର ଧର୍ମବୋଧଗତ ମାନବବାଦ ସହିତ ସାମ୍ପ୍ରତିକ ମାନବବାଦର ସମନ୍ୱୟ ହୋଇପାରିଲା ନାହିଁ । ତେଣୁ ଜୀବନାନନ୍ଦ ପାଣି ଯଥାର୍ଥରେ ଲେଖିଛନ୍ତି—

"କ୍ଷମାକର ବାପା
ତୁମ ଅନ୍ତେ ମଧ୍ୟ ତୁମ ଭଙ୍ଗା ଆଶାବାଡ଼ି
ଯୋଡ଼ି ପାରିଲି ନା ଅବା ନୂଆ ଗୋଟେ ତିଆରି କରିବି
ତୁମ ପଙ୍ଗୁ ଗୋଡ଼ର ସ୍ମୃତିରେ ଶ୍ରଦ୍ଧାଞ୍ଜଳି ଦେଇ ପାରିଲି ନା ।" (୬)
(ନିର୍ଜନ କୋଠରୀ)

'ମାଟି ଓ ମଣିଷ'ରେ କବି ସୀତାକାନ୍ତ ମହାପାତ୍ର ଯେଉଁ ଆଶ୍ୱାସନା ପ୍ରଦାନ କରିଥିଲେ ତାର ଏକ ଚମତ୍କାର ବିଗ୍ରହ ଫୁଟି ଉଠିଛି ବ୍ରଜନାଥ ରଥଙ୍କର କବିତାରେ, ଯେତେବେଳେ ସେ ଲେଖୁଛନ୍ତି—

"ଫଟା ଭୂଇଁ କାନ୍ଦେ ଅଞ୍ଜଳି ଜଳ ଜଳ ଚୈତ୍ରର ଦହନେ
ଆକାଶର ସହବାସ ଲୋଡ଼ା ତାର ଏକାନ୍ତ ଗହନେ
ଟିକିଏ ପ୍ଲାବନ ଲୋଡ଼ା—ଲୋଡ଼ା ଖାଲି ଟିକିଏ ପ୍ଲାବନ
ସବୁଜ ଶସ୍ୟର ପାଇଁ ଖୋଜୁଛି ସେ ଆଷାଢ଼—ଶ୍ରାବଣ" । (୭)

ସପ୍ତଦଶକର ଶେଷ ଭାଗରେ ଅର୍ଥାତ୍ ୧୯୭୯ ମସିହା ବେଳକୁ କବି ବ୍ରଜନାଥ ରଥଙ୍କର ଏହି ମାନବବାଦୀ ଆଶ୍ୱାସନା ଏକ ନୂତନ ଭାବ,

(୫) Albert Camus—The Rebel—P. 31.
(୬) ନିର୍ଜନ କୋଠରୀ—ଜୀବନାନନ୍ଦ ପାଣି, 'ଝଙ୍କାର' ୨୧ଶ ବର୍ଷ ଷଷ୍ଠସଂଖ୍ୟା ।
(୭) ଫଟାଭୂଇଁର ବନ୍ଦନା, ବ୍ରଜନାଥ ରଥ, 'ଝଙ୍କାର' ୨୧ଶ ବର୍ଷ ଷଷ୍ଠସଂଖ୍ୟା ।

ଚେତନା ସୃଷ୍ଟି କରେ ଏବଂ ୧୯୭୦ ମସିହାରେ ଉମାଶଙ୍କର ପଣ୍ଡା'ଙ୍କର ପ୍ରକାଶିତ ଏକ କବିତା ନୂତନ ଜୀବନ ଆରମ୍ଭ ସମ୍ବନ୍ଧରେ ସଂକେତ ଦିଏ ।

"ମୁଁ ପୋଛୁଛି ଅଖି ଲୁହ । ମୁଁ କାହିଁ କାନ୍ଦୁଛି
ମୋତେ ଜଣା ନାହିଁ । ମୁଁ ନୁହେଁ କାହାରି ବନ୍ଧୁ
ସୋଦର ବା । ଅତି ଅପଣାର ଜନ ମୁଁ ନୁହେଁ କାହାର
ତଥାପି କାନ୍ଧରେ ମୋର ସମସ୍ତଙ୍କ ଶବାଧାର
ମୁଁ ବୋହୁଛି ମୋର ଶବ । ମୁଁ ଚାଲିଛି ସବା ଆଗେ
ଏଇଠୁ ବା ହେଲା ମୋର ଜୀବନ ଆରମ୍ଭ ।"

(ଏକ ଶବ ଶୋଭାଯାତ୍ରା)

ସପ୍ତଦଶକରେ ତେଣୁ ଷଷ୍ଠଦଶକରେ ବର୍ଣ୍ଣିତ ହୋଇଥିବା ଅର୍ଥାନୁମୋଦିତ ଯନ୍ତ୍ରଣାକ୍ତ ମାନବବାଦୀ ଚିନ୍ତାଧାରା ଗତିଶୀଳ ହୋଇଛି, ଯଦିଓ ସପ୍ତଦଶକର ଶେଷାର୍ଦ୍ଧରେ ଏ ଗତିରେ କ୍ରମେ ପରିବର୍ତ୍ତନ ଦେଖା-ଦେଇଛି । ଏ ଦଶକରେ ରମାକାନ୍ତବାବୁ ଏବଂ ସୀତାକାନ୍ତବାବୁ କ୍ରମେ ମାନବବାଦକୁ ଦର୍ଶନାଭିମୁଖୀ କରିଛନ୍ତି । ଏମାନଙ୍କ ଅନୁବର୍ତ୍ତୀ କବି ସୌଭାଗ୍ୟକୁମାର ମିଶ୍ର, ହରପ୍ରସାଦ ଦାସ, ବିବେକାନନ୍ଦ ଜେନା, ନିମାଇଁଚରଣ ପଟ୍ଟନାୟକ, ହରିହର ମିଶ୍ର, ଶୁଭେନ୍ଦୁମୋହନ ଦାସ, ପ୍ରହରାଜ ସତ୍ୟାନାରାୟଣ ନନ୍ଦ ପ୍ରଭୃତି ଯନ୍ତ୍ରଣାକ୍ତ ମାନବବାଦୀ ଚିନ୍ତାଧାରାକୁ ସେମାନଙ୍କ କବିତାରେ ପ୍ରକାଶ କରିଛନ୍ତି । ଏ ଦଶକରେ କେତେକ ମାନବବାଦକୁ ପ୍ରତିଷ୍ଠା କରିବାକୁ ଚାହିଛନ୍ତି ଅତୀତର ପୃଷ୍ଠପୀଠିକାରେ, କେତେକ ସାଂପ୍ରତିକ ପରିସ୍ଥିତିରେ ଏବଂ କେତେକ ଭବିଷ୍ୟତର କଳ୍ପନାରେ । ଏମାନଙ୍କୁ ଗୁଡ଼ିଦେଲାପରେ ନବଯୁଗ ସାହିତ୍ୟ ସଂସଦ ଦିନେ ଯେଉଁ ବୈପ୍ଳବିକ ମାନବବାଦ ପ୍ରକାଶ କରୁଥିଲା, ତାର ପୁନରାୟନ ହେଲା ସପ୍ତଦଶକର ଦ୍ୱିତୀୟାର୍ଦ୍ଧରେ । ଅବଶ୍ୟ ଏହା ପୂର୍ବରୁ ରବୀନ୍ଦ୍ରନାଥ ସିଂହ ତାଙ୍କର କାବ୍ୟକବିତାରେ ଏହି ମାନବବାଦୀ ଚିନ୍ତା ପ୍ରକାଶ କରିଛନ୍ତି ଏବଂ ଏ ଯାବତ୍ ସେ ସେହି ଆଦର୍ଶରେ ଅନୁପ୍ରାଣିତ ହୋଇ କବିତା ଲେଖିଛନ୍ତି । ତାଙ୍କ ବ୍ୟତୀତ ସଦାଶିବ ଦାଶ, ପ୍ରସନ୍ନକୁମାର ପାଟଶାଣୀ, ଅଶ୍ୱିନୀକୁମାର ମିଶ୍ର, ଶୁଭେନ୍ଦୁ ମୁଣ୍ଡ, ତ୍ରିଲୋଚନ ହୋତା, ଅମରେଶ ପଟ୍ଟନାୟକ, ନବୀନସୁନ୍ଦର ସୁବୁଦ୍ଧି, ହୁସେନ ରବି ଗାନ୍ଧୀ, ସମରେନ୍ଦ୍ର ଦାସ, ନିତ୍ୟାନନ୍ଦ ପତି ପ୍ରଭୃତି କବିମାନେ ବୈପ୍ଳବିକ ମାନବବାଦ ପ୍ରକାଶ କରିବାରେ ଯତ୍ନଶୀଳ । ରବୀନ୍ଦ୍ରନାଥ ସିଂହଙ୍କର 'ପଥପ୍ରାନ୍ତର କବିତା', 'ବିଷବାଣୀ', 'ଚରମପତ୍ର', 'କ୍ଷତ', 'ହରୀଶ୍ଚନ୍ଦ୍ର',

'ଦୁର୍ଗମଗିରି' ଆଦି କବିତା ପୁସ୍ତକରେ ବୈପ୍ଳବିକ ମାନବବାଦର ସ୍ୱର ତୀବ୍ର ହୋଇଉଠିଛି । ନରଦେବତାର ବନ୍ଦନା କରି ସେ ଲେଖିଛନ୍ତି—

"ପ୍ରାଣ-ମନ୍ଦିରେ ପ୍ରୀତିର ପୂଜକ
ନର-ଦେବତାର ବନ୍ଦନା ଗୀତି ଗାଇବି...
ନବାଶାର ସ୍ରୋତେ ଆଶାର ତରଣୀ ବାହିବି ।"
(ଆଜି ଏଇ ନବପ୍ରଭାତ ବେଳରେ)

ଆଜିର କବିତାରେ କବି ଖୋଜିବସୁଛି ତାର ଆତ୍ମାସତ୍ତାକୁ । ସେ ଆତ୍ମସତ୍ତାକୁ ସେ ମିଳାଇ ଦେଖୁଛି ବାହ୍ୟସତ୍ତା ସହିତ । ଆତ୍ମଜଗତ ଓ ବାହ୍ୟଜଗତର ସମନ୍ୱୟରେ କବିତା ହୁଏ ସାର୍ବଜନୀନ । ଆତ୍ମଜଗତରେ ଦେଖାଦେଉଥିବା ଆନ୍ଦୋଳନର ତରଙ୍ଗାୟିତ ଭାବବଳୟ ବାହ୍ୟଜଗତର ପ୍ରତ୍ୟେକ ବିନ୍ଦୁକୁ ସ୍ପର୍ଶ କଲେ ତେବେ ଯାଇ କବିତାର ହୁଏ ସାର୍ଥକତା । ଏଥିପାଇଁ ଆବଶ୍ୟକ ଋଷିଦୃଷ୍ଟି—ତୈଜସଦୃଷ୍ଟି । ଏ ଦୃଷ୍ଟି ବଳରେ କବି ଆତ୍ମଜଗତ ଓ ବାହ୍ୟଜଗତକୁ ଦେଖେ । ମୁଁତ୍ୱର ହୁଂକାରରୁ ସେ ହୁଏ ମୁକ୍ତ । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ଭାବଧାରାକୁ ଏକ ମହାବର୍ତ୍ତମାନରେ ସମନ୍ୱିତ କରେ ସେ । ମାତ୍ର ଯେଉଁଠି କବି କେବଳ ବୈଶ୍ୱାନର ଦୃଷ୍ଟିବିନ୍ଦୁରେ କବିତା ଲେଖେ, ସେତେବେଳେ ସେ ବାହ୍ୟ-ଜଗତକୁ ଦେଖେ ଏବଂ ସାମୟିକ ଯନ୍ତ୍ରଣାର ସ୍ୱରରେ କକ୍ଷଚ୍ୟୁତ ହୋଇ-ପଡ଼େ ।

"ହତାଶା ଓ ନୈରାଶ୍ୟ ଜୀବନରେ ଆସେ ସମସ୍ତଙ୍କର । କଳାକାରର ସମ୍ବେଦନଶୀଳ ମନରେ ହୁଏ ତ ଏହା ଆସେ ଅପ୍ରାତ୍ୟାହିତ ଭାବରେ, ଗଭୀର ଆନ୍ଦୋଳନ ରେ । ମଣିଷ ଜୀବନ ବିଷୟରେ ନୈରାଶ୍ୟ ଆସିବା ପାପ ନୁହେଁ; ପାପ ହେଉଛି ଏହି ନୈରାଶ୍ୟକୁ ପଳାୟନପନ୍ଥା ଖୋଜିବା, ଜୀବନରୁ ଗୁଟିଚିଟି ହୋଇ ପଳାଇବା, ଅଶ୍ରୁକୁ ଏକ ବର୍ଣ୍ଣ୍ୟବସ୍ତୁ ବୋଲି ଭାବିବା, ଅନ୍ୟ ଜୀବନର ପରିକଳ୍ପନାରେ ବର୍ତ୍ତମାନର ସ୍ଥିତିକୁ ଅସ୍ୱୀକାର କରିବା ।" (୮)

ତେଣୁ ବିଗତ ଦୁଇ ଦଶନ୍ଧିରେ ଯେଉଁସବୁ ମାନବବାଦୀ କବିତା ରଚନା କରାଯାଇଛି, ସେ ସମସ୍ତକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ଗୋଟିଏ ହେଉଛି ଯନ୍ତ୍ରଣାକ୍ତ ମାନବବାଦୀ ଚିନ୍ତାଧାରା । ଏହା ନୈରାଶ୍ୟଭାବଦ୍ୟୋତକ । ପାଶ୍ଚାତ୍ୟ ଚିନ୍ତାରୁ ଏହାର ଉଦ୍ଭବ । ଅର୍ଥବାଦ ଓ ଅଧ୍ୟାତ୍ମବାଦ ମଧ୍ୟରେ ଏହାର ଦ୍ୱନ୍ଦ୍ୱ । ବୁର୍ଜୋୟା

ମାନବବାଦର ବୈକଲ୍ୟ ଏଥିରେ ପ୍ରତିଫଳିତ । ଜୀବନର ସକଳ ଅସୀତ ଓ ଦୁର୍ନୀତିକୁ ପ୍ରକାଶ କରି ନୈତିକ ଜୀବନକୁ ମାର୍ଜିତ କରି ମାନବବାଦର ପ୍ରତିଷ୍ଠା କରିବାକୁ ଏ ଚିନ୍ତାଧାରା ପ୍ରଚ୍ଛନ୍ନ ପ୍ରେରଣା ପ୍ରଦାନ କରିଥାଏ । ଆଜି ମଣିଷ ସମୟସ୍ରୋତର ଏକ ଛକ ସ୍ଥାନରେ ଉପନୀତ । ଶୂନ୍ୟମଣ୍ଡଳର ରଙ୍ଗମଞ୍ଚରେ ଆଜି ତାର ଜୀବନନାଟକ ଅଭିନୀତ । ତେଣୁ ଆବୁ ସଏଦ ଅୟୁବ ଯଥାର୍ଥରେ ଲେଖିଛନ୍ତି—

> "The drama of human life takes place on the cosmic stage; it is infinitely extended in time if not in space. For the poet, the present is but a crosssection of the time-stream which stretches endlessly on both sides. He must therefore cultivate that extensity and comprehensiveness of vision which philosophers are wont to describe as viewing things sub specie aeternitatis." (୯)

ସାମ୍ପ୍ରତିକ କବି ତାର କାବ୍ୟକବିତାରେ ଏହି ଭାବଧାରା ପ୍ରତି ଅବହିତ ରହି ମାନବବାଦୀ ଦୃଷ୍ଟିକୋଣକୁ ରୂପାୟିତ କରୁଛି । ଏହି ହେତୁ ସାମ୍ପ୍ରତିକ କବିତାରେ ମାନବବାଦ କେତେବେଳେ ଯନ୍ତ୍ରଣାକ୍ତ ଏବଂ ନୈରାଶ୍ୟଦ୍ୟୋତକ । ପୁଣି ଏହି ନୈରାଶ୍ୟ ଓ ବୈଫଲ୍ୟରୁ ମୁକ୍ତି ପାଇଁ ଅଧ୍ୟାତ୍ମବାଦସମନ୍ୱିତ ମାନବବାଦୀ ଭାବଧାରା ବର୍ଣ୍ଣିତ ହୋଇଛି । ଏହା ଛଡ଼ା ବୈପ୍ଳବିକ ମାନବବାଦ ତୀବ୍ର ଆକାର ଧାରଣ କରିଛି । ଏହା ସ୍ଥଳ-ବିଶେଷରେ ପ୍ରଗତିଧର୍ମୀ ହୋଇଥିଲେ ହେଁ ବହୁ ସ୍ଥଳରେ ବେଶୀ ଜୀବନଧର୍ମୀ ମାନବବାଦୀ ହୋଇପାରିଛି । ମୋଟ ଉପରେ ଆଧୁନିକ ଓଡ଼ିଆ କବିତାରେ ମାନବବାଦର ବହୁମୁଖୀ ଦିଗନ୍ତର ବର୍ଣ୍ଣାଢ୍ୟ ରୂପବୈଭବ କମନୀୟଭାବରେ ବର୍ଣ୍ଣିତ ହୋଇଛି ଏବଂ ଭବିଷ୍ୟତରେ ଏହା ଅଧିକ ଶାଣିତ ଓ ମାର୍ଜିତ ତଥା ବାସ୍ତବଧର୍ମୀ ହେବା ପଥରେ ଯେ ଆଗେଇ ଚାଲିଛି, ସନ୍ଦେହ ନାହିଁ ।

——

(୮) ସାପ୍ତ ଓ ଦୃଷ୍ଟି—ମୁଖଶାଳା ଲିପି—ସୀତାକାନ୍ତ ମହାପାତ୍ର, ପନ୍ଦର ଅଣା ।

(୯) Poetry and Truth by Abu Sayed Ayyub Quest—July-Sept, 1968, P. 16

# ଲେଖକଙ୍କ ସାଂପ୍ରତିକ ଠିକଣା

୧ । ପ୍ରଫେସର ବିଧୂଭୂଷଣ ଦାସ, ଏମ୍. ଏ. (ପାଟନା),
ଏମ୍. ଏ. (କଲମ୍ବିଆ), ଡଲଟ୍ (ଅକ୍ସଫୋର୍ଡ଼),
ଏଫ୍. ଇ. ଡ. ଆଇ. (ୱାଶିଂଟନ),
ଉଚ୍ଚଶିକ୍ଷା ନିର୍ଦ୍ଦେଶକ, ଭୁବନେଶ୍ୱର ।

୨ । ପ୍ରଫେସର ଗୋଲୋକ ବିହାରୀ ଧଳ, ଏମ୍. ଏ. (ପାଟନା),
ଏମ୍. ଏ. (ଲଣ୍ଡନ), ଡପ୍. ଇନ୍. ରୁଷିୟାନ (ଉତ୍କଳ),
ବିଭାଗୀୟ ମୁଖ୍ୟ, ଓଡ଼ିଆ ବିଭାଗ,
ରେଭେନ୍ସା କଲେଜ, କଟକ-୩ ।

୩ । ଅଧ୍ୟାପକ ବେଣୁଧର ରାଉତ, ଏମ୍. ଏ., ଓଡ଼ିଆ ବିଭାଗ,
ରେଭେନ୍ସା କଲେଜ, କଟକ-୩

୪ । ଅଧ୍ୟାପକ ପରୀକ୍ଷିତ ନନ୍ଦ, ଏମ୍. ଏ., ଓଡ଼ିଆ ବିଭାଗ,
ସାମନ୍ତ ଚନ୍ଦ୍ରଶେଖର ସାନ୍ଧ୍ୟ କଲେଜ, ପୁରୀ

୫ । ଅଧ୍ୟାପକ ଗୌରୀକୁମାର ବ୍ରହ୍ମା, ଏମ୍. ଏ., ଡ. ଇଡ଼.
ଓଡ଼ିଆ ସରକାରଙ୍କ ପର୍ଯ୍ୟଟନ ବିଭାଗର ମୁଖ୍ୟ ଗାଇଡ଼୍
ଭୁବନେଶ୍ୱର

୬ । ଶ୍ରୀ ମନ ମୋହନ ମିଶ୍ର, ବି.ଏ., ରାଣୀହାଟ, କଟକ-୧

୭ । ଡକ୍ଟର ବେଣୀମାଧବ ପାଢ଼ୀ, ଏମ୍. ଏ., ପିଚ୍. ଏଚ୍. ଡ.
ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ,
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ବ୍ରହ୍ମପୁର, ଗଞ୍ଜାମ

୮ । ଶ୍ରୀ ଶ୍ରୀନିବାସ ଉଦ୍‌ଗାତା କବିକୁଟୀର, ବଲାଙ୍ଗିର ।

୯ । ଅଧ୍ୟାପକ ସୀତାକାନ୍ତ ମହାପାତ୍ର, ଏମ୍. ଏ., ଓଡ଼ିଆ ବିଭାଗ,
ବି. ଜେ. ବି. ସାନ୍ଧ୍ୟ କଲେଜ, ଭୁବନେଶ୍ୱର ।

୧୦ । ଅଧ୍ୟାପକ ପୀତାମ୍ବର ପ୍ରଧାନ, ଏମ୍. ଏ., ଓଡ଼ିଆ ବିଭାଗ,
ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜ, ବାରିପଦା ।

୧୧ । ଅଧ୍ୟାପକ ମେଘନାଦ ପ୍ରଧାନ, ଏମ୍. ଏ., ଓଡ଼ିଆ ବିଭାଗ,
ବେଧାଳ୍ପ ସାଇନ୍ସ କଲେଜ, ଭୁବନେଶ୍ୱର

୧୨ । ଅଧ୍ୟାପକ ଅବନୀ କୁମାର ବରାଳ, ଏମ୍. ଏ.,
ରିଡ଼ର, ଓଡ଼ିଆ ବିଭାଗ,
ଖୋର୍ଦ୍ଧା କଲେଜ, ଖୋର୍ଦ୍ଧା, ପୁରୀ

୧୩ । ଅଧ୍ୟାପକ ପଠାଣି ପଟ୍ଟନାୟକ, ଏମ୍. ଏ.,
ରିଡ଼ର, ଓଡ଼ିଆ ବିଭାଗ,
ଖ୍ରୀଷ୍ଟ କଲେଜ, କଟକ-୧

୧୪ । ଶ୍ରୀ ଭଗବାନ ପତି, ସହ ସଂପାଦକ, ଦୈନିକ ସମାଜ, କଟକ-୧

୧୫ । ଅଧ୍ୟାପକ ଭାସ୍କରଚନ୍ଦ୍ର ଖଣ୍ଟାଇ, ଏମ୍. ଏ., ଓଡ଼ିଆ ବିଭାଗ,
ଖ୍ରୀଷ୍ଟ କଲେଜ, କଟକ-୧

୧୬ । ଶ୍ରୀ ପ୍ରସନ୍ନ କୁମାର ପାଟଶାଣୀ, ବି. ଏ., ବାଲୁଗାଁ, ପୁରୀ,

୧୭ । ଆଡ଼ଭୋକେଟ୍ ଗୁରୁ ମହାନ୍ତି, ବି. ଏ., ଏଲ୍. ଏଲ୍. ବି.
ଓଡ଼ିଶା ହାଇକୋର୍ଟ, କଟକ-୨

୧୮ । ଡକ୍ଟର ଗୋପାଳ ଚନ୍ଦ୍ର ମିଶ୍ର, ଏମ୍. ଏ., ଡି. ଲିଟ୍
ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ,
ସମ୍ବଲପୁର ବିଶ୍ୱବିଦ୍ୟାଳୟ, ସମ୍ବଲପୁର

୧୯ । ଶ୍ରୀ ଅମିୟ ବସୁ, ବି. ଏ.
କ୍ୱାର୍ଟର ନଂ ସି/୯୭
ସେକ୍ଟର—୪, ରାଉରକେଲା-୨

୨୦ । ଶ୍ରୀ ନବକୁମାର ପଣ୍ଡା, ବି. ଏ.
ବି/୩୩, ସେକ୍ଟର-୧୯
ରାଉରକେଲା-୫

୨୧ । ଶ୍ରୀ ସୀତାକାନ୍ତ ମହାପାତ୍ର, ଆଇ. ଏ. ଏସ୍.
ମୁଖ୍ୟମନ୍ତ୍ରୀଙ୍କ ସଚିବ
ଭୁବନେଶ୍ୱର

୨୨ । ଶ୍ରୀ ଦୁର୍ଗାମାଧବ ମିଶ୍ର, ଆଇ. ପି. ଏମ୍.
ଏସ୍. ପି., ସି ଆଇ. ଡି., ସି. ବି.
(S. P., C. I. D., C. B)
କଟକ-୧

୨୩ । ଅଧ୍ୟାପକ ହରିହର ରଥ, ଏମ୍. ଏ.
ଇଂରାଜୀ ବିଭାଗ, କେଉଁଝର କଲେଜ, କେଉଁଝର

୨୪ । ଅଧ୍ୟାପକ ସୌରୀନ୍ଦ୍ର ବାରିକ, ଏମ୍. ଏ.
ଇଂରାଜୀ ବିଭାଗ, ଗଙ୍ଗାଧର ମେହେର କଲେଜ,
ସମ୍ବଲପୁର

୨୫ । ଅଧ୍ୟାପକ ପ୍ରଫୁଲ୍ଲକୁମାର ମହାନ୍ତି, ଏମ୍. ଏ.
ଇଂରାଜୀ ବିଭାଗ, ଖଲ୍ଲିକୋଟ କଲେଜ୍, ବ୍ରହ୍ମପୁର

୨୬ । ଅଧ୍ୟାପକ ସୌଭାଗ୍ୟକୁମାର ମିଶ୍ର, ଏମ୍. ଏ.
ଇଂରାଜୀ ବିଭାଗ, ବି. ଜେ. ବି. କଲେଜ, ଭୁବନେଶ୍ୱର

୨୭ । ଅଧ୍ୟାପକ କୃଷ୍ଣଚନ୍ଦ୍ର ଭୂୟାଁ, ଏମ୍. ଏ.
ଓଡ଼ିଆ ବିଭାଗ, ସିଟି କଲେଜ୍, କଲିକତା-୯

୨୮ । ଆଡ୍‌ଭୋକେଟ୍ ଯଦୁନାଥ ଦାଶ ମହାପାତ୍ର, ବି. ଏ., ଏଲ୍. ଏଲ୍. ବି.
ଏମ. ଏଲ. ଏ., ଓଡ଼ିଶା ବିଧାନ ସଭା, ଭୁବନେଶ୍ୱର

୨୯ । ଶ୍ରୀ ଜ୍ଞାନୀନ୍ଦ୍ର ବର୍ମା, ପେଟିନ୍ ସାହି, କଟକ-୧

୩୦ । ଅଧ୍ୟାପକ ଦୁର୍ଗାପ୍ରସନ୍ନ ପଣ୍ଡା, ଏମ୍. ଏ.
ଫକୀରମୋହନ କଲେଜ, ବାଲେଶ୍ୱର

୩୧ । ଅଧ୍ୟାପକ ମାଳାବିଭୂଷଣ ହରିଚନ୍ଦନ, ଏମ୍. ଏ.
ଓଡ଼ିଆ ବିଭାଗ, ଭଦ୍ରକ କଲେଜ, ଭଦ୍ରକ, ବାଲେଶ୍ୱର

୩୨ । ଅଧ୍ୟାପକ କାଳନ୍ଦୀଚରଣ ବେହେରା, ଏମ. ଏ.
ଓଡ଼ିଆ ବିଭାଗ, ବି. ଜେ. ବି. କଲେଜ, ଭୁବନେଶ୍ୱର

୩୩ । ଶ୍ରୀ ବିନୋଦଚନ୍ଦ୍ର ନାୟକ, ଏମ୍. ଏ.
ସଂପାଦକ, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର

୩୪ । ଅଧ୍ୟାପକ ଭଗବାନ ଜେନା, ଏମ୍. ଏ.
ଇଂରେଜୀ ବିଭାଗ, ଖୋର୍ଦ୍ଧା କଲେଜ୍, ଖୋର୍ଦ୍ଧା, ପୁରୀ

୩୫ । ଅଧ୍ୟାପକ ପରେଶଚନ୍ଦ୍ର ରାଉତ, ଏମ୍. ଏ.
ଇଂରାଜୀ ବିଭାଗ, ରେଭେନ୍‌ସା ସାନ୍ଧ୍ୟ କଲେଜ,
କଟକ-୩

୩୬ । ଅଧ୍ୟାପକ ପ୍ରଫୁଲ୍ଲକୁମାର ତ୍ରିପାଠୀ, ଏମ୍. ଏ.
ଇଂରାଜୀ ବିଭାଗ, ରାଉରକେଲା ବିଜ୍ଞାନ କଲେଜ,
ରାଉରକେଲା

୩୭ । ଶ୍ରୀ ଜେନାମଣି ଲକ୍ଷ୍ମୀକାନ୍ତ, ବି. ଏ.
ସହକାରୀ ଶ୍ରମ ଅଫିସର, ଶ୍ରମ ଅଫିସ,
କିଲ୍ଲା ମଇଦାନ, କଟକ-୧

୩୮ । ଶ୍ରୀ ରମାକାନ୍ତ ରଥ, ଆଇ. ଏ. ଏସ୍.
ଶାସନ ସଚିବ, କୃଷି ଓ ଜଙ୍ଗଲ ବିଭାଗ,
ଓଡ଼ିଶା ସଚିବାଳୟ, ଭୁବନେଶ୍ୱର

୩୯ । ଶ୍ରୀ ଏକାଦଶୀ ପ୍ରସାଦ ବୋଇତାଇ, ବି. ଏ.
ଓଡ଼ିଶା ସଚିବାଳୟ, ଭୁବନେଶ୍ୱର

୪୦ । ଅଧ୍ୟାପକ ପ୍ରତାପଚନ୍ଦ୍ର ଦାସ, ଏମ୍. ଏ., ବି. ଇଡ଼.
ଓଡ଼ିଆ ବିଭାଗ, ଆନନ୍ଦପୁର କଲେଜ,
ଆନନ୍ଦପୁର, କେନ୍ଦୁଝର

୪୧ । ଶ୍ରୀ ବାଳଗୋପାଳ ପୁରୋହିତ, ବି. ଏ.
ତହସିଲ ଅଫିସ, ବରଗଡ଼, ସମ୍ବଲପୁର

୪୨ । ହୁସେନ ରବି ଗାନ୍ଧୀ, ଏମ୍. ଏ., ଏଲ୍. ଏଲ୍. ବି., ସମ୍ବଲପୁର

୪୩ । ଡକ୍ଟର ଦୋଳଗୋବିନ୍ଦ ଶାସ୍ତ୍ରୀ, ଏମ୍. ଏ., ପି. ଏଚ୍. ଡି.
ଅଧ୍ୟାପକ ଓଡ଼ିଆ ବିଭାଗ,
ରେଭେନ୍ସା ସାନ୍ଧ୍ୟ କଲେଜ, କଟକ-୩

୪୪ । ଅଧ୍ୟାପକ ଦୀପକ ମିଶ୍ର, ଏମ୍. ଏ.
ଇତିହାସ ବିଭାଗ, କେନ୍ଦ୍ରାପଡ଼ା କଲେଜ,
କେନ୍ଦ୍ରାପଡ଼ା, କଟକ

୪୫ । ଅଧ୍ୟାପକ ବୈଷ୍ଣବଚରଣ ସାମଲ, ଏମ୍. ଏ.
ଓଡ଼ିଆ ବିଭାଗ, ରେଭେନ୍ସା ସାନ୍ଧ୍ୟ କଲେଜ,
କଟକ-୩

———